**UTTARKAKSHYA**
**(Autobiography of Dr. Satchidananda Rout-Roy)**

Published by : Manoj Kumar Mohapatra

**Grantha Mandir**, Binodbehari, Cuttack-2

Printed at : **OPTIMA PRINTS**, Sutahat, Cuttack-1

First Edition : December, 1998

Price : Rs. 160/-

ପ୍ରକାଶକ : ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର
ଅପ୍ଟିମା (ଅଫ୍‌ସେଟ୍) ପ୍ରିଣ୍ଟସ୍, ସୂତାହାଟ, କଟକ-୧

ପ୍ରଥମ ସଂସ୍କରଣ : ଡିସେମ୍ବର, ୧୯୯୮

ମୂଲ୍ୟ : ଟ. ୧୬୦/-
ସାଦାବନ୍ଧାଇ : ଟ. ୧୪୦/-

# ପ୍ରସ୍ତାବନା

ମୋର ଆତ୍ମଜୀବନୀ ମୋ ସମୟର ଆତ୍ମଜୀବନୀ । ମଣିଷ ତା' ସମୟର ଏପରି ଏକ ମୁହୂର୍ତ୍ତ ଯେଉଁଥିରେ ତା' ଶତାବ୍ଦୀର ପ୍ରଧାନ ପ୍ରଧାନ ଘଟଣାମାନ, ଯାହାକୁ ସେ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ ଅଂଗେ ଲିଭାଇଛି, ସୂଚୀତ ହେବାକୁ ବାଧ; କାରଣ ସେ ଏକ ବିଚ୍ଛିନ୍ନ ଏକକ ନୁହେଁ । ବିଂଦୁ ଭିତରେ ସିଂଧୁର ପରିଚୟ ପରି ଏ ପୁସ୍ତକଟି ମୋ' ଶତାବ୍ଦୀର ଏବଂ ତାହାର ପୂର୍ବବର୍ତ୍ତୀ ସମୟର ଏକ ବିଶ୍ୱସ୍ତ ପ୍ରତିଫଳନ କରିବାକୁ ଚେଷ୍ଟା କରିଛି ।

ମୋ' ଆତ୍ମଜୀବନୀ 'ଉରର-କକ୍ଷ' ମୋ' ଜୀବନର ପ୍ରଧାନ ପ୍ରଧାନ ଘଟଣାବଳୀକୁ କେତେଦୂର ପ୍ରତିଫଳିତ କରିପାରିଛି ତାର ବିଚାର ବିଦଗ୍ଧ ପାଠକପାଠିକାମାନେ ହିଁ କରିବେ । ସେଇମାନଂକ ପ୍ରେରଣା ଓ ଚାପରେ ହିଁ ମୁଁ ନିଜର ଜୀବନକାହାଣୀ ଲେଖିବାକୁ ପ୍ରବୃର ହେଲି । ଏହାର ପ୍ରଥମ ଭାଗ ପ୍ରକାଶପାଇଲା – ଦ୍ୱିତୀୟଭାଗ ପ୍ରକାଶ ଅପେକ୍ଷାରେ ରହିଛି – ଶୀଘ୍ର ପ୍ରକାଶପାଇବ ।

ଦ୍ୱିତୀୟ ଭାଗରେ ବର୍ଣ୍ଣିତ ହୋଇଛି ପୃଥିବୀର ବିଭିନ୍ନ ଦେଶରେ ଅନୁଷ୍ଠିତ ସାହିତ୍ୟ, ସଂସ୍କୃତି ଓ ସମାଜ କଲ୍ୟାଣ ବିଷୟକ ସେମିନାର୍ ଓ ସଭାସମିତିରେ ବକ୍ତୃତା ଗସ୍ତରେ ମୋର ଭୂମିକା ଓ ସକ୍ରୀୟ ଅଂଶ ଗ୍ରହଣର ବିବରଣୀ । ଅଧିକାଂଶ କ୍ଷେତ୍ରରେ ଭାରତ ସରକାରଂକ ଆନୁକୂଲ୍ୟରେ ହିଁ, ମୁଁ ବାରଂବାର ବକ୍ତୃତା ଗସ୍ତରେ ବିଭିନ୍ନ ଦେଶକୁ ଯାଇ ଦୀର୍ଘ ସମୟ କଟାଇଛି । ସେଇସବୁ ସଭା-ସମିତି ଓ ଆଲୋଚନାଚକ୍ର ପ୍ରଭୃତିରେ ମୋର ଭାଷଣ ଐତିହାସିକ ଗୁରୁତ୍ୱ ବହନକରେ । ଏହି ଦେଶମାନଂକ ମଧ୍ୟରେ ଦୁଇଦୁଇଥର ଆମେରିକା ଯାତ୍ରା, ପ୍ରାୟ ୮-୧୦ ଥର ଇଂଲଂଡ ଓ ଇଉରୋପ ଯାତ୍ରା, ପ୍ୟାରିସ୍, ରୋମ୍, ଜେନିଭା, ଇଜିପ୍ଟ ପରିଦର୍ଶନ ବିଶେଷ ଉଲ୍ଲେଖଯୋଗ୍ୟ । ଏହାଛଡ଼ା ଅଷ୍ଟ୍ରେଲିଆ ଓ ନ୍ୟୁଜିଲ୍ୟାଂଡ, ଥାଇଲ୍ୟାଂଡ, ଦୁଇଥର ବାଂଗଲାଦେଶ ଯାତ୍ରା, ସୋଭିଏତ୍ ୟୁନିୟନ୍, ଚେକୋସ୍ଲୋଭାକିଆ, ପୋଲାଂଡ ପ୍ରଭୃତି ଦେଶମାନଂକରେ ମାସ ମାସ ଧରି ଚାଲିଥିବା ସାଂସ୍କୃତିକ କାର୍ଯକ୍ରମ ଏବଂ ସମାଜକଲ୍ୟାଣ ସେମିନାର ପ୍ରଭୃତିରେ ଅଂଶଗ୍ରହଣ କରିଥିଲି । ମୋ' ସହିତ ମୋ' ସ୍ତ୍ରୀ ଭୂଦେବୀ ଦୁଇଥର ଇଲଂଡ, ରୁଷ୍ ପ୍ରଭୃତିରେ କେତେକ ସାଂସ୍କୃତିକ କାର୍ଯକ୍ରମରେ ମୋତେ ସାହାଯ୍ୟ କରିବା ଉଦେଶ୍ୟରେ ବିଦେଶ ଯାତ୍ରା କରିଛଂତି ଏବଂ ବିଦେଶରେ ଦୀର୍ଘ ସମୟ କଟାଇଛଂତି ।

ଉକ୍ତ ଦ୍ୱିତୀୟ ଭାଗରେ ବର୍ଣ୍ଣିତ ହୋଇଛି ୧୯୫୦ ମସିହା ପରଠାରୁ ଆଜି ପର୍ଯ୍ୟନ୍ତ ଭାରତବର୍ଷ ଏବଂ ଓଡ଼ିଶାରେ ମୋର କାର୍ଯ୍ୟକ୍ରମର ବିବରଣୀ । ୧୯୭୮ ମସିହାରୁ ୧୯୮୧ ମସିହା ପର୍ଯ୍ୟନ୍ତ ମୁଁ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ହିସାବରେ ଯେଉଁ ସବୁ କାର୍ଯ୍ୟ କରିଛି ସେଥିମଧ୍ୟରେ ଓଡ଼ିଶାର କୃତୀ ଲେଖକ, ଲେଖିକା, କଳାକାର, ଯଥା– ସଂଗୀତଶିଳ୍ପୀ, ନୃତ୍ୟଶିଳ୍ପୀ, ଅଭିନେତା, ଚିତ୍ରଶିଳ୍ପୀ, ସ୍ଥପତି ଓ କ୍ରୀଡ଼ାବିତ୍‌ମାନଙ୍କୁ ମାସିକ ୩୦୦ ଟଙ୍କାରୁ ୫୦୦ ଟଙ୍କା ପର୍ଯ୍ୟନ୍ତ ପେନ୍‌ସନ୍ ପ୍ରଦାନର ବ୍ୟବସ୍ଥା ଓ ସେଥିପାଇଁ ଆନ୍ଦୋଳନ ବିଶେଷ ଉଲ୍ଲେଖଯୋଗ୍ୟ । ସାହିତ୍ୟ କ୍ଷେତ୍ରରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, ଜ୍ଞାନପୀଠ ପୁରସ୍କାର, ସୋଭିଏତ୍ ଲ୍ୟାଣ୍ଡ ନେହେରୁ ପୁରସ୍କାର, ସାହିତ୍ୟ ଭାରତୀ ପୁରସ୍କାର, 'ପଦ୍ମଶ୍ରୀ ସମ୍ମାନ' ଲାଭ ପ୍ରଭୃତି ମଧ୍ୟ ମୋ ଜୀବନର ବିଶେଷ ଘଟଣା ରୂପେ ଉଲ୍ଲେଖ କରାଯାଇପାରେ । ତା'ଛଡ଼ା କେନ୍ଦ୍ର ସାହିତ୍ୟ ଏକାଡେମୀର ଫେଲୋ ରୂପେ ମୋର ମନୋନୟନ ଏବଂ ରାଉରକେଲା ଏବଂ କଟକରୁ 'ମହାକବି' ଉପାଧି ଲାଭ ଏବଂ ଆନ୍ଧ୍ର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ସମ୍ମାନସୂଚକ ଡି.ଲିଟ୍. ଉପାଧି ଲାଭ ଏବଂ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ 'ଉତ୍କଳ-ରତ୍ନ' ସମ୍ମାନ ଲାଭ ମଧ୍ୟ ଉଲ୍ଲେଖଯୋଗ୍ୟ ।

ଏହାଛଡ଼ା ଏ ପୁସ୍ତକରେ ମୋର ସାହିତ୍ୟ ସାଧନାର କ୍ରମବିକାଶର ଏକ ଚିତ୍ର ଦେବାକୁ ମୁଁ ଚେଷ୍ଟାକରିଛି । ମୁଁ ଦୀର୍ଘ ୭୦ ବର୍ଷ ଧରି ନିରବଚ୍ଛିନ୍ନଭାବେ ସାହିତ୍ୟ ସାଧନା କରିଆସୁଛି । ୧୯୨୮ ମସିହାରେ ମୋର ପ୍ରଥମ କବିତାଟି 'ପଞ୍ଚାମୃତ' ନାମକ ଏକ ପତ୍ରିକାରେ ପ୍ରକାଶପାଇଥିଲା । ଏହି ଦୀର୍ଘ ୭୦ ବର୍ଷ ମଧ୍ୟରେ ରଚିତ ଓ ପ୍ରକାଶିତ ମୋର କେତେକ ଗ୍ରନ୍ଥ ଇଂରାଜୀ ଓ ରୁଷ ଏବଂ ହିନ୍ଦୀ, ଉର୍ଦ୍ଦୁ, ପଞ୍ଜାବୀ ଓ ତେଲୁଗୁ ପ୍ରଭୃତି ଭାଷାରେ ଅନୂଦିତ ହୋଇ ପ୍ରକାଶପାଇଛନ୍ତି ଏବଂ ଆନ୍ତର୍ଜାତିକ ସୀକୃତି ଲାଭକରିଛନ୍ତି । ମୋର ସମସ୍ତ ପୁସ୍ତକର ଏକ କ୍ରମିକ ଗ୍ରନ୍ଥସୂଚୀ ପରିଶିଷ୍ଟରେ ସଂଯୋଜିତ ହୋଇଛି ।

ଦୁର୍ଭାଗ୍ୟର ବିଷୟ ମୋର ଅଧିକାଂଶ ପୁସ୍ତକ ୨-୩ ଦଶନ୍ଧି ଧରି ବଜାରରେ ମିଳୁନାହିଁ, ଅଥଚ ଓଡ଼ିଆ ସାହିତ୍ୟର ଛାତ୍ରଛାତ୍ରୀ ଓ ଗବେଷକ/ଗବେଷିକାମାନଙ୍କ ପାଇଁ ଏ ପୁସ୍ତକ ଗୁଡ଼ିକ ଏକାନ୍ତ ଅପରିହାର୍ଯ୍ୟ । ମୋ ସାହିତ୍ୟ କୃତି ଉପରେ ବହୁ ଗବେଷକ ଓ ଗବେଷିକା ଗବେଷଣା କରି ପି.ଏଚ୍‌ଡି. ଓ ଡି.ଲିଟ୍. ଡିଗ୍ରୀ ପାଇସାରିଛନ୍ତି । ବହୁ ଅଧ୍ୟାପକ ଅଧ୍ୟାପିକା ଓ ସାହିତ୍ୟିକ ବର୍ତ୍ତମାନ ଗବେଷଣା କରୁଛନ୍ତି । ମୋ ପୁସ୍ତକଗୁଡ଼ିକ ବଜାରରେ ନମିଳିବାରୁ ସେମାନେ ଭୀଷଣ ଅସୁବିଧାରେ ପଡ଼ିଛନ୍ତି । ପୂର୍ବ ପ୍ରକାଶକମାନେ ମୁଦ୍ରଣ ଖରଚ ଓ କାଗଜ ଖରଚ ପ୍ରାୟ ୧୦ ଗୁଣ ବଢ଼ିଯାଇଥିବା ଯୋଗୁ ସେ ସବୁର ପୁନର୍ମୁଦ୍ରଣ କରିବାକୁ ସାହସ

କରୁନାହାଁନ୍ତି । ମୁଁ ମୋ ପୁସ୍ତକଗୁଡ଼ିକର ପୁନଃ ପ୍ରକାଶ ଦିଗରେ ସାହାଯ୍ୟ କରିବାପାଇଁ କେନ୍ଦ୍ର ଓ ରାଜ୍ୟ ସରକାରଙ୍କୁ ଗତ ୧୦ ବର୍ଷ ଧରି ଲେଖିଆସୁଛି– ମାତ୍ର କିଛି ଫଳ ହୋଇନାହିଁ ।

ମୋର ସାହିତ୍ୟ କର୍ମ ଛଡ଼ା ଆମେରିକାର ହାର୍ଭାଡ୍ ବିଶ୍ୱବିଦ୍ୟାଳୟଙ୍କ ଆମନ୍ତ୍ରଣକ୍ରମେ ହାର୍ଭାଡ୍ ବିଶ୍ୱବିଦ୍ୟାଳୟ ଆନ୍ତର୍ଜାତିକ କଳା ବିଜ୍ଞାନ ସେମିନାର୍‌ରେ (୧୯୫୫, ଯାହା ଦୁଇମାସ ପର୍ଯ୍ୟନ୍ତ ଚାଲିଥିଲା) କେତୋଟି ଭାଷଣ ପ୍ରଦାନ, ଦୁଇମାସ ବ୍ୟାପି ଅଷ୍ଟ୍ରେଲିଆ ଓ ନ୍ୟୁଜିଲ୍ୟାଣ୍ଡରେ ଅନୁଷ୍ଠିତ ଆନ୍ତର୍ଜାତିକ ସମାଜକଲ୍ୟାଣ ସେମିନାରରେ ଅଂଶ ଗ୍ରହଣ ଏବଂ ୧୯୭୯ ଖ୍ରୀଷ୍ଟାବ୍ଦରେ ସୋଭିଏତ୍ ରୁଷରେ ଅନୁଷ୍ଠିତ ପୁଷିନ୍ ସେମିନାରରେ କବିତାପାଠ ଓ ଭାଷଣ ଦେବାର ସୁଯୋଗ ମିଳିଥିଲା । ଏହାଛଡ଼ା ମସ୍କୋ ବିଶ୍ୱବିଦ୍ୟାଳୟରେ ୧୯୬୯ ମସିହାରେ ଓଡ଼ିଶାର ଅନବଦ୍ୟ ପ୍ରାଚୀନ ଚିତ୍ରକଳା – ଯଥା ପଟଚିତ୍ର ଓ ପୋଥିଚିତ୍ର ପ୍ରଦର୍ଶନୀ କରିବା, ଲଣ୍ଡନ ବିଶ୍ୱବିଦ୍ୟାଳୟଙ୍କ ଆମନ୍ତ୍ରଣକ୍ରମେ ୧୯୮୨ ମସିହାରେ ସେମାନଙ୍କ ସ୍କୁଲ ଅଫ୍ ଓରିଏଣ୍ଟାଲ୍ ଆଣ୍ଡ୍ ଆଫ୍ରିକାନ୍ ଷ୍ଟଡିଜ୍‌ରେ ତିନିମାସ ବ୍ୟାପି ଓଡ଼ିଶାର ପଟଚିତ୍ର ଓ ପୋଥିଚିତ୍ର ପ୍ରଦର୍ଶନୀ କରିବା ଏବଂ ପ୍ୟାରିସ୍‌ର UNESCOରେ ଏବଂ ପୋଲାଣ୍ଡର ୱାରସ ବିଶ୍ୱବିଦ୍ୟାଳୟ ପ୍ରଭୃତିରେ ପ୍ରାଚୀନ ଚିତ୍ରକଳା ପ୍ରଦର୍ଶନୀମାନ କରିବା ମଧ୍ୟ ବିଶେଷ ଉଲ୍ଲେଖଯୋଗ୍ୟ ।

ମୁଁ ଓଡ଼ିଶାରେ ଥିବାବେଳେ ଏଠାରେ ସ୍ୱାଧୀନତା ଆନ୍ଦୋଳନ, ଦେଶମିଶ୍ରଣ ଆନ୍ଦୋଳନ, ଗଡ଼ଜାତ ପ୍ରଜାଆନ୍ଦୋଳନ ଏବଂ କୃଷକ ଓ ଛାତ୍ର ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ଥିଲି । ତେଣୁ ସେସବୁର ପ୍ରତିକ୍ରିୟା ମୋ' ଲେଖାରେ ତୀବ୍ରତର ରୂପ ନେବା ସ୍ୱାଭାବିକ । ଏହାଛଡ଼ା ମୁଁ କଲିକତାରେ ରହୁଥିବାବେଳେ 'ଅଗଷ୍ଟ ବିପ୍ଳବ – ୧୯୪୨' ସାଲ୍‌ରେ, ଅବିଭକ୍ତ ବଙ୍ଗ ଦେଶରେ ହୋଇଥିବା ବିଶ୍ୱର ଦାରୁଣତମ ଦୁର୍ଭିକ୍ଷ ଏବଂ ତା'ପରେ ଦେଶ ବିଭାଜନ, କଲିକତାରେ ଏବଂ ବିଶେଷକରି ମାଟିଆବୁରୁଜରେ ହୋଇଥିବା ଦେଶର ଭୀଷଣତମ ସାଂପ୍ରଦାୟିକ ଦଙ୍ଗା ଏବଂ ଏଥିରେ ଗାନ୍ଧିଜୀଙ୍କ ଉପସ୍ଥିତିରେ ଶାନ୍ତି ସ୍ଥାପନ ପାଇଁ ସକ୍ରୀୟ ଉଦ୍ୟମ ଏବଂ ସେହି ଅବସରରେ ପ୍ରାୟ ତିନି ସପ୍ତାହ ଗାନ୍ଧିଜୀଙ୍କ ନିକଟ ସାହଚର୍ଯ୍ୟ ଲାଭ, ଶରଣାର୍ଥୀ ସମସ୍ୟା ଏବଂ ସେଥିରେ ରିଲିଫ୍ କାର୍ଯ୍ୟ ଇତ୍ୟାଦି ମୋ ଜୀବନରେ ଯେପରି ପ୍ରତିକ୍ରିୟା ସୃଷ୍ଟିକରିଥିଲା ତାହା ଓଡ଼ିଶାରେ ରହୁଥିବା ବ୍ୟକ୍ତିମାନଙ୍କର ପ୍ରତିକ୍ରିୟାଠାରୁ ଭିନ୍ନ ଓ ତୀବ୍ରତର । ଏସବୁ କାର୍ଯ୍ୟକଳାପରେ ମୋର ଭୂମିକା ସୁଦୂରପ୍ରସାରୀ ଥିଲା । ତେଣୁ ମୋ' ଲେଖାରେ ସେ ସବୁ ଘଟଣାର ପ୍ରାଧାନ୍ୟ ବ୍ୟାପକ ରୂପ ନେବା ସ୍ୱାଭାବିକ । ଏହାଛଡ଼ା ପ୍ରବାସୀ ଓଡ଼ିଆ ସଂଗଠନ ଏବଂ

ବହୁ ଶ୍ରମିକ କଲ୍ୟାଣ କାର୍ଯରେ ମୁଁ ବିଶେଷ ଭାବରେ ଜଡ଼ିତ ଥିଲି । ତେଣୁ ଏସବୁ ଘଟଣାର ପ୍ରାଧାନ୍ୟ ମୋ' ପୁସ୍ତକରେ ପ୍ରତିଫଳିତ ହେବା ସ୍ୱାଭାବିକ ଓ ସଂପୂର୍ଣ ସଂଗତ । ଏଥିପାଇଁ ମୋର ତତ୍କାଳୀନ ପୃଷ୍ଠଭୂମି ବିଚାର କରିବା ଉଚିତ ।

ଏ ପୁସ୍ତକ ରଚନା ୧୯୯୦ ମସିହାରେ ଆରଂଭ ହୋଇଥିଲା । ୧୯୯୨ ମସିହାରୁ ଏହା 'ଅମୃତାୟନ' ମାସିକ ପତ୍ରରେ ଧାରାବାହିକ ଭାବେ ପ୍ରକାଶ-ପାଇଆସୁଛି । ଏଥିପାଇଁ ଏ ପତ୍ରିକାର ସଂପାଦକ ଶ୍ରୀମତୀ ଗୀତା ହୋତା ଏବଂ ଶ୍ରୀ ସାତକଡ଼ି ହୋତା ବିଶେଷ ଧନ୍ୟବାଦାର୍ହ ।

ଏଥି ମଧ୍ୟରେ ମୋର ଆଖି ଗ୍ଲୁକୋମାଦ୍ୱାରା ଆକ୍ରାଂତ ହୋଇ ମୋର ଦୃଷ୍ଟିଶକ୍ତି ବହୁତ କମିଯାଇଛି । ତେଣୁ ମୋତେ ଶ୍ରୁତିଲିଖନ ଉପରେ ହିଁ ନିର୍ଭର କରିବାକୁ ପଡୁଛି । ଏଣୁ ମୁଁ ନିଜେ ପାଂଡୁଲିପି ସଂଶୋଧନ ବା ମୁଦ୍ରଣକାଳରେ ପ୍ରୁଫ୍ ସଂଶୋଧନ କରିବା ସଂଭବ ହୋଇପାରିନାହିଁ ।

ପରିଶେଷରେ 'ଗ୍ରଂଥମଂଦିର'ର ସ୍ୱତ୍ୱାଧିକାରୀ ଶ୍ରୀ ଅଭିରାମ ମହାପାତ୍ର, ଯେ କି କେବଳ ଜଣେ ବିଶିଷ୍ଟ ପ୍ରକାଶକ ନୁହଂତି, ସେ ଜଣେ ଉତ୍ତମ ନିରୀକ୍ଷକ ମଧ୍ୟ – ଏ ପୁସ୍ତକଟି ପ୍ରକାଶ କରିବାରେ ତାଂକର ସାହାଯ୍ୟ ସହଯୋଗ ବିଶେଷ ଉଲ୍ଲେଖଯୋଗ୍ୟ । ଶେଷରେ ମୋର ଆଶା ଓ ବିଶ୍ୱାସ 'ଉତ୍ତର-କକ୍ଷ' ପାଠକପାଠିକା ଓ ସୁଧୀ ସମାଜରେ ଆଦୃତ ହେବ ।

ମିଶନ୍‌ରୋଡ୍
କଟକ-୭୫୩୦୦୧
ଫୋନ୍ : ୬୦୧୫୭୮

**ସଚ୍ଚିଦାନଂଦ ରାଉତରାୟ**
ତା ୨୦ । ୧୦ । ୧୯୯୮

## ସୂଚୀପତ୍ର

ପ୍ରଜା-ଆଂଦୋଳନ : ବାଜି ରାଉତ ଓ ଅନ୍ୟ କର୍ମୀମାନଂକର ସହିଦତ୍ୱ ପ୍ରାପ୍ତି, ଢେଂକାନାଳ ସହିଦ ବାହିନୀ, ପଶ୍ଚିମବଂଗ ସରକାରଂକ ପୁସ୍ତକରେ ଓଡ଼ିଆ ସହିଦ, ଗଡ଼ଜାତ ପ୍ରଜା-ଆଂଦୋଳନରେ ମୋର ଭୂମିକା, ଢେଂକାନାଳରେ ଦିନେ, ରାଜନୈତିକ ପେନ୍‌ସନ୍, ଢେଂକାନାଳ ପ୍ରଜା-ଆଂଦୋଳନର ନେତୃବୃନ୍ଦ, ବାଜି ରାଉତର ଗାଁ, 'ମାର୍ ତୁ ଯେତେ ଗୁଳି', ଗୁଣାତ୍ମକ ପରିବର୍ତନ, ଗଡ଼ଜାତ ଅତ୍ୟାଚାରର ନମୁନା, ରଣପୁରର ନରହଂତା 'ମାଘମାସିଆ', ଯତନନଗର, ଅବାଧ ନାରୀଉପଭୋଗ, ଯତନନଗରର କଳଂକିତ ଇତିହାସ, ରାଜାଂକ ବୀଭତ୍ସ କର୍ମ, ପଟ୍ଟାୟତଂକ ନିର୍ବାସନ, ଛାମୁଂକ କଥା ହିଁ ଥିଲା ଆଇନ୍, ଅକଥ୍ୟ ଅତ୍ୟାଚାର, ଗଡ଼ଜାତ ମିଶ୍ରଣ, 'ଭାରତ ଛାଡ଼' ଆଂଦୋଳନ ଓ ଓଡ଼ିଶା ଗଡ଼ଜାତ, ଗଡ଼ଜାତ ମିଶ୍ରଣ ପାଇଁ ପଦକ୍ଷେପ, ମହତାବଂକ ପ୍ରସ୍ତାବ ବିଫଳ, ବୃହତ୍ତର ଓଡ଼ିଶା ଗଠନ ବିରୋଧରେ ଷଡଯଂତ୍ର, ନୀଳଗିରି ମିଶ୍ରଣ – ଆଦ୍ୟପର୍ବ, ଷଢେଇକଳା, ଖରସୁଆଁ, ଭାଷା ଆଂଦୋଳନ, କଳିକତାରେ ଲୋକମତ ଗଠନ, ସମୟର ପରିହାସ, ଓଡ଼ିଶା ବୋର୍ଡ଼ମିଲ୍‌ସ୍ ଲିମିଟେଡ୍ : ଏକ ବଳିଦାନ, ପ୍ରବଳ ଛାତ୍ର ଆଂଦୋଳନ, ଚିର ପ୍ରଦୀପ୍ତ, କେଂଦୁପତ୍ର ହିଁ କାଳ ହେଲା : ଗଡ଼ଜାତ ପ୍ରଜା-ଆଂଦୋଳନରେ ଆମର କାର୍ଯ୍ୟ, ବାଜିରାଉତର ପ୍ରେତାତ୍ମା ।

୧୭ । **ସପ୍ତଦଶ ଉଲ୍ଲାସ – ଛାତ୍ର ଆଂଦୋଳନରେ ମୋର ଭୂମିକା : କଂଗ୍ରେସ ସରକାରର ପ୍ରତିକ୍ରିୟାଶୀଳ ନୀତି –** ୨୩୯

ଶିକ୍ଷାବୋର୍ଡର ପରିବର୍ତନ ଦାବି, ଦଂଡବିଧାନ କଂଗ୍ରେସ ଓ ମୁଁ, ସରୋଜିନୀ ନାଇଡୁଂକ ଆଗମନ, ଛାତ୍ର ଆଂଦୋଳନରେ ମୋର କାରାବାସ, ପୁସ୍ତକ ବାଜ୍ୟାପ୍ତି : 'ରକ୍ତଶିଖା' ଓ 'ଉଠ ଜାଗଭୋକୀବଂଦୀ' ବାଜ୍ୟାପ୍ତ,ମେଡ଼ିକାଲ ସ୍କୁଲ ଛାତ୍ର, ଛାତ୍ର-ଧର୍ମଘଟ : ଏକ ଖଂଡଯୁଦ୍ଧ, ଓଡ଼ିଶା ଛାତ୍ରଜଗତର ହାଲ-ଚାଲ : ରାଷ୍ଟ୍ରପତିଂକଠାରୁ ତାର, ଛାତ୍ରମାନଂକର ସତ୍ୟାଗ୍ରହ ନିଷ୍ପତ୍ତି, କାଲି ୨୦ ତାରିଖ ଏପ୍ରିଲ୍‌ଠାରୁ ସତ୍ୟାଗ୍ରହ ଲଢ଼େଇ ଆରଂଭ । କମ୍ରେଡ ବିଶ୍ୱନାଥ ପଶାଏତ୍ – ପ୍ରଥମ ସତ୍ୟାଗ୍ରହୀ ବାହିନୀ, ସତ୍ୟାଗ୍ରହୀ ବାହିନୀରେ ଯୋଗ-ଦିଅ : ଶପଥପତ୍ର, ସତ୍ୟାଗ୍ରହର ପ୍ରଥମ ଦିବସ, ସତ୍ୟାଗ୍ରହର ଦ୍ୱିତୀୟ ଦିବସ, ସତ୍ୟାଗ୍ରହ ସମରର ତୃତୀୟ ଦିବସ, ସରକାରଂକ ସହ ମିଳାମିଶା, ପଂଡିତ ନୀଳକଂଠ ମଧ୍ୟସ୍ଥି ହେଲେ, ମୋ ବିରୋଧରେ ମୋକଦ୍ଦମା ସରକାର ଉଠାଇଲେ ନାହିଁ, ପଂଡିତ ନୀଳକଂଠ ଦାସଂକ ମୁଖ୍ୟମଂତ୍ରୀଂକୁ ଉତ୍ତର ।

—



[ ପିତାମହୀ କେଳିଦେବୀଙ୍କ ସହ ବାଳକ ସଚ୍ଚିରାଉତରାୟ,
ପଛରେ ଦଦା ଲଳିତମୋହନ ଛିଡ଼ାହୋଇଛନ୍ତି ]



[ ପିତା ପ୍ରସନ୍ନ କୁମାର ରାଉତରାୟ
(ସଚ୍ଚି ରାଉତରାୟ ବଡ଼ବାପା ସଦାନନ୍ଦଙ୍କର
ପୋଷ୍ୟପୁତ୍ର ହୋଇଯାଇଥିଲେ) ]



[ ମହନୀ ଅପା ]



[ ଡକ୍ଟର ଜଗନ୍ନାଥ ଦାସ – ମହନୀ ଅପାଂକ ସ୍ୱାମୀ ]



[ ସଚ୍ଚି ରାଉତରାୟଂକ ପରିବାର (ଉପବିଷ୍ଟ ସଚ୍ଚିରାଉତରାୟ ଓ
ପତ୍ନୀ ଭୂଦେବୀ । ପଛ ଧାଡ଼ିରେ ଶ୍ରୀହର୍ଷ, ଚିତ୍ରା, ମଂଜୁଶ୍ରୀ ଓ ଉଦୟନ) ]



[ ଖୋର୍ଦ୍ଧାଗଡ଼ପୋଖରୀ ଓ ଭଂଗା ପ୍ରାଚୀର ]



[ ମାଟିଆବୁରୁଜରେ ପ୍ରବାସୀ ଓଡ଼ିଆ ସମ୍ମିଳନୀ ; ଉଦ୍‌ଘାଟକ, ପଶ୍ଚିମବଙ୍ଗର ମୁଖ୍ୟମଂତ୍ରୀ ଡା. ପ୍ରଫୁଲ୍ଲ ଚଂଦ୍ର ଘୋଷ, ମୁଖ୍ୟ ଅତିଥି ଓଡ଼ିଶାର ମୁଖ୍ୟମଂତ୍ରୀ ଡ. ହରେକୃଷ୍ଣ ମହତାବ, ସଭାପତି ଚିଂତାମଣି ଆଚାର୍ଯ୍ୟ (କୁଳପତି ଉତ୍କଳ ବିଶ୍ୱବିଦ୍ୟାଳୟ), ଅଭ୍ୟର୍ଥନା ସମିତିର ସଭାପତି ସଚ୍ଚି ରାଉତରାୟ ]



[ ଶହୀଦ ବାଜି ରାଉତ ]



[ ଇଂରେଜ ପୁଲିସ୍ ଗୁଳିରେ ନିହତ ଢେଂକାନାଳର ଶହୀଦ ସେନା ]



[ ସୁନିତୀ ଚୌଧୁରୀ, (କୁମିଲ୍ଲା) କୁମିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କୁ ହତ୍ୟା କରିଥିଲେ । ]



[ ଶାନ୍ତି ଘୋଷ, (କୁମିଲ୍ଲା) କୁମିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କୁ ହତ୍ୟା କରିଥିଲେ । ]



[ ବିପ୍ଳବିନୀ ବୀଣା ଦାସ, (କଲିକତା) ବଙ୍ଗ ଗଭର୍ଣରଙ୍କୁ ଗୁଳିକରିଥିଲେ । ]

# ପ୍ରଥମ ଉଲ୍ଲାସ

## ଅବତାରଣା

'ଉତ୍ତରକକ୍ଷ'ରେ ବସି ପଛକୁ ଚାହିଁଲେ ଯାହା ଦେଖାଯାଏ, ତାହା କେବଳ ସ୍ମୃତି ଆଉ ସ୍ମୃତି। ଜୀବନର ଉତ୍ତରାୟଣ ପଥରେ ପାଦ ଦେଇ ଅତୀତକୁ ସ୍ମରଣ କରିବା ସ୍ୱାଭାବିକ ହେଲେ ମଧ୍ୟ ସହଜ ନୁହେଁ। ସବୁ କଥା ଯେ ଠିକ୍‌ଠିକ୍ ମନେପଡ଼ିବ, ସେ ବିଷୟରେ ମୁଁ ନିଶ୍ଚିତ ନୁହେଁ। ତଥାପି ଉତ୍ତରବୟସରେ ପୂର୍ବଜୀବନର ସ୍ମୃତି-ଚିତ୍ର ଆଂକିବାର ଏଭଳି ପ୍ରୟାସ ଅପରିହାର୍ଯ୍ୟ ହୋଇପଡ଼ିଛି ଜନମତର ପ୍ରଭାବରେ।

ଜୀବନର ନାନା ତିକ୍ତ-ମଧୁର-କଷାୟ ଅନୁଭୂତି ମଧ୍ୟରେ ସାହିତ୍ୟିକ ଜୀବନର ଘଟନାବଳୀକୁହିଁ ମୁଁ ବିଶେଷ ଗୁରୁତ୍ୱ ଦିଏ। କାରଣ ଗତ ସତୁରି ବର୍ଷଧରି ଓଡ଼ିଆ ସାହିତ୍ୟର ଇତିହାସ ସଂଗେ ମୁଁ ଘନିଷ୍ଠ ଭାବରେ ଜଡ଼ିତ। ସିଦ୍ଧି ଓ ସମ୍ମାନର ମୁଁ ଯେପରି ଅଧିକାରୀ, ବ୍ୟର୍ଥତା ଓ ବିଡ଼ଂବନାର ମଧ୍ୟ ମୁଁ ସେହିପରି ବା ତା'ଠାରୁ ବେଶୀ ଶରବ୍ୟ ହୋଇଆସିଛି। ସାହିତ୍ୟକ୍ଷେତ୍ରରେ ପାଦଦେବା ମୁହୂର୍ତ୍ତରୁହିଁ ବାଧା, ବିଘ୍ନ ଓ ତୀବ୍ର ପ୍ରତିକ୍ରିୟାର ସମ୍ମୁଖୀନ ହେବାକୁ ପଡ଼ିଛି। ଏକ ସଂଗଠିତ ପ୍ରତିକ୍ରିୟା, କେତେବେଳେ ପ୍ରକାଶ୍ୟରେ ଏବଂ କେତେବେଳେ ବା ପରୋକ୍ଷରେ, ଯେପରି ମୋର ପିଛା ଧରିଛି। ବହୁ ସ୍ୱନାମୀ ବେନାମୀ ସମାଲୋଚନାର ଝଡ଼ ମୋ' ମୁଂଡ ଉପରଦେଇ ବହିଯାଇଛି। ମୋ ବିରୁଦ୍ଧରେ ଯେତେ ବ୍ୟଂଗ, ବିଦ୍ରୂପ ସମାଲୋଚନାର ଲେଖା— ସାଟାୟାର୍, ପାରୋଡି, ଲେଂପୁନ, ବରଲେକ୍‌ସ୍‌ଠାରୁ ଆରଂଭକରି କୁତ୍ସାରଟନାଯାଏ ଦୈନିକ ଓ ମାସିକ ପତ୍ରିକାମାନଂକର ପୃଷ୍ଠା ମଂଡନ କରିଛି, ତାହା ଭାରତବର୍ଷରେ ଖୁବ୍ କମ୍ ଲେଖକଂକ ଭାଗ୍ୟରେ ଜୁଟିଥିବ। ସାହିତ୍ୟ ସଭାରେ ଏସିଡ୍ ଫୋପଡ଼ା ମଧ୍ୟ ଅଂଗେ ଲିଭାଇବାକୁ ପଡ଼ିଛି। ପ୍ରାୟ କୋଡ଼ିଏ ବର୍ଷ ତଳେ ମୋ ବାଁପଟ କପାଳରେ ପଡ଼ିଥିବା ଏସିଡ୍ ଦାଗ ଭୃଗୁପାଦଚିହ୍ନପରି ଏବେ ମଧ୍ୟ ଶୋଭାପାଉଛି। ପ୍ରଥମ ଅବସ୍ଥାରେ ଲେଖାଲେଖି ଆରଂଭ କଲାବେଳେ ଘରେ ବହୁ ବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଛି; ପରେ ଅବଶ୍ୟ ସମସ୍ତଂକର ଦେହସୁହା ହୋଇଯାଏ।

ସ୍ଥିତାବସ୍ଥା ସଂଗେ ଲଢ଼େଇ ଝଗଡ଼ା ଆରଂଭ ହେଲେ କ୍ଷତବିକ୍ଷତ ହେବା କିଛି ନୂଆ କଥା ନୁହେଁ। ଓଡ଼ିଆ ସାହିତ୍ୟର ସ୍ରୋତମୁଖକୁ ବହୁଦିନଧରି ଏକ

ଜଗଦ୍ଦଳ ପଥର ମାଡ଼ିବସିଥିଲା। ସାହିତ୍ୟର ଗତିସ୍ରୋତ କ୍ଷୀଣରୁ କ୍ଷୀଣତର ହୋଇଆସୁଥିଲା। ରୀତିଯୁଗର ଅଳଂକରଣ ଓ କହିବା ଚାତୁରୀ ଓ ଶବ୍ଦବାହୁଲ୍ୟ କ୍ରମେ ହ୍ରାସପାଉଥିଲା। 'ସବୁଜ'ମାନଂକର ଫାଂକା ରୋମାଂଟିସିଜିମ୍ ମଧ ପାଠକଂକ ଚିତ୍ତକୁ ଛୁଇଁପାରୁନଥିଲା। ଏପରି ସ୍ଥଳେ ସାହିତ୍ୟରେ ଏକ ନୂଆ ଚେତନା ଓ ଆଂଗିକ ପ୍ରବର୍ତ୍ତନ କରିବା ନିତାଂତ ଜରୁରି ଥିଲା। କାରଣ ସାହିତ୍ୟରେ ଶୂନ୍ୟସ୍ଥାନ (ଭ୍ୟାକୁମ୍) ସୃଷ୍ଟିହେଲେ ତା' ସ୍ୱାଭାବିକ ନିୟମରେ ଶୀଘ୍ର ପୂରଣ ହୋଇଯିବାକଥା; ଅଥଚ୍ କୌଣସି ନୂତନ ସାହିତ୍ୟର ବୁନିଆଦ ସେପର୍ଯଂତ ଗଢ଼ିଉଠିନଥିଲା। ପୁରୁଣା ହଟିଯାଉଛି ଅଥଚ୍ ନୂଆ ଆସି ନାହିଁ, ଏପରି ଏକ ଘଡ଼ିସଂଧି ମୁହୂର୍ତ୍ତରେ ମୋତେ ଲେଖନୀ ଧରିବାକୁ ପଡ଼ିଥିଲା। ଯେଉଁ ନୂଆ ପ୍ରୟୋଗ ଓ ରୂପାଂତରର ଧାରା ପ୍ରଥମେ କାବ୍ୟ-କବିତା ଏବଂ ଗଳ୍ପ ଉପନ୍ୟାସ ସନ୍ଦଂର୍ଭରେ ମୋ ମାଧମରେ ଦେଖାଦେଲା, ତାହାକୁ ଓଡ଼ିଶାର ପାଠକ-ରୁଚି ଦ୍ୱିଧା କଟାଇ କ୍ରମେ ଗ୍ରହଣକରିନେଲା। ବିଷୟବସ୍ତୁରେ ମଧ ରାଜା ଓ ସଂଭ୍ରାଂତବଂଶୀୟ ପାତ୍ରପାତ୍ରୀଂକ ସ୍ଥାନରେ ସାଧାରଣ ମଣିଷଂକ ମୁହଁ ଦେଖାଦେଲା। ଯଥା— ଶ୍ରମିକ, କୃଷକ, ମଜଦୁର, ଶିକ୍ଷିତ ମଧବିତ୍ତ ଲୋକେ ଯଥା— କିରାନି, ନର୍ସ, ଛାତ୍ରଛାତ୍ରୀ ପ୍ରଭୃତି ପ୍ରତିଷ୍ଠାଲାଭକଲେ। ଏହା ପ୍ରକୃତରେ ଏକ ସାହିତ୍ୟ ଆଂଦୋଳନ ଥିଲା। ଓଡ଼ିଆ ସାହିତ୍ୟକୁ ଆଧୁନିକ ସାହିତ୍ୟ ସଂଗେ ଖାପ ଖୁଆଇବା ଏବଂ ଆଂତର୍ଜାତିକ ସାହିତ୍ୟର ଯାହା ଭଲ ଅଂଶ ତାହାକୁ ଆମ ଜଳବାୟୁରେ ଖାପଖୁଆଇ ଯଥାଯଥ ଭାବେ ପ୍ରୟୋଗ କରିବା ମୋର ଭୂମିକା ଥିଲା। ଏହା ଏକ ଐତିହାସିକ ଆବଶ୍ୟକତା ଥିଲା; କାରଣ ଓଡ଼ିଆ ସାହିତ୍ୟ ବିଶ୍ୱ-ସାହିତ୍ୟର ମହାସ୍ରୋତରୁ ବେଶୀ ଦିନ ବିଚ୍ଛିନ୍ନ ହୋଇ ରହିନପାରେ। ଆତର୍ଜାତିକ ଚିଂତା ଓ ଚେତନା ତାର ବନ୍ଦ ଦ୍ୱାରରେ ବାରଂବାର ଧକ୍କା ଦେଇଯାଉଥିଲା; କହୁଥିଲା 'ଅୟାମହଂଭୋ' (''ମୁଁ ଆସିଛି,'' ''ଦ୍ୱାର ଖୋଲ'') —ଠିକ୍ ଯେପରି ଦୁର୍ବାସା ଉଚ୍ଚସ୍ୱରରେ କହିଥିଲେ ଅସତର୍କା ଶକୁଂତଳାର କୁଟୀର ଦ୍ୱାରେ। ଦ୍ୱାର ଖୋଲିବାକୁହିଁ ପଡ଼ିଥିଲା। ଏ ଐତିହାସିକ ପ୍ରକ୍ରିୟାରେ ମୁଁ ଥିଲି ନିମିତ୍ତମାତ୍ର; ଇତିହାସହିଁ ଥିଲା ନାଟ୍ୟକାର।

ଏହା ସାଂଗକୁ ଥିଲା ପୁଣି କଳିଂଗର ବର୍ଣାଢ୍ୟ ସାହିତ୍ୟ ଓ ସଂସ୍କୃତିର ପୁନର୍ମୂଲ୍ୟାୟନ ଓ ବସ୍ତୁନିଷ୍ଠ ନୂତନ ବ୍ୟାଖ୍ୟାର ଦାବି। ପ୍ରବଣତା ଛାଡ଼ି ବିଜ୍ଞାନର ନୂତନ ଆଲୋକରେ ନୂତନ ଉଦ୍‌ଭାସ ଚାହୁଁଥିଲା ଏକ ମହାନ୍ ଦେଶର ସଭ୍ୟତା ଓ କାଳଜୟୀ ସାହିତ୍ୟକୃତି। କେତେକ ଭଂଡ ଗବେଷକ ଗବେଷଣାକୁ ଏକ [illegible]ଷକତାରେ ପରିଣତ କରିଥିଲେ। ଶସ୍ତାରେ ଫାଇଦା ଉଠାଇବା ଏବଂ ଅଳ୍ପକେ [illegible]ହାଦୁରି ନେବାହିଁ ଏମାନଂକର ଜୀବନର କାମ। ସାହିତ୍ୟର ପବିତ୍ର ମଂଦିରରୁ [illegible]ଯ୍ୟାର ବଣିକମାନଂକୁ ନିକାଲିବା ମୋର ପ୍ରଥମ କାମ ଥିଲା, ଠିକ୍ ଯିଶୁ ଯେପରି ଯଷ୍ଟି ଧରି ମଂଦିରରୁ ବଣିକମାନଂକୁ ଘଉଡ଼ାଇଦେଇଥିଲେ। ଏଥିପାଇଁ

ନାହିଁ-ନଥିବା ବାଧାବିଘ୍ନର ମୁକାବିଲା କରିବାକୁ ପଡ଼ିଛି ଏବଂ ପଡ଼ୁଛି ମଧ୍ୟ। ସାହିତ୍ୟ ଦେଶ-କାଳ-ପାତ୍ରର ଉର୍ଦ୍ଧ୍ୱରେ ଏକ ଦିବ୍ୟ ସ୍ଥାପତ୍ୟର ସ୍ୱାକ୍ଷର। ଏହାକୁ କେତେକ ସ୍ୱାର୍ଥାନ୍ୱେଷୀ 'ପଂଡିତଂ'ଙ୍କ ହାତରେ ଛାଡ଼ିଦେବା ଉଚିତ ନୁହେଁ; ନିରାପଦ ମଧ୍ୟ ନୁହେଁ। ଦେଶର ଭାବୀ ବଂଶଧରମାନେ ଏହି ଭୁଲ୍‌ଗୁଡ଼ିକୁ ମୁଖସ୍ଥ କରି ଡିଗ୍ରୀ ପରେ ଡିଗ୍ରୀ ହାସଲ କରିବେ; ଗବେଷଣା କରିବେ। ଅନେକେ ମଧ୍ୟ କଲେଣି। ଏହା ଓଡ଼ିଶାର ମହାନ୍ ସଂସ୍କୃତି ପକ୍ଷରେ ଶୁଭଂକର ନୁହେଁ; ତେଣୁ ଏସବୁର ସଠିକ ମାର୍ଗଦର୍ଶନ ଚାହି। ଏହା କରିବାକୁ ଯାଇ ମୋତେ ବହୁ ଭୁଲବୁଝାମଣାର ଶିକାର ହେବାକୁ ପଡ଼ିଛି। ପତ୍ତୁ; ମୋର ସେଥିକି ପରବାୟନାହିଁ। ମୁଁ ସତ୍ୟ ଓ ଆଲୋକର ପଥରୁ ହଟିଯିବାପାଇଁ ସାହିତ୍ୟକ୍ଷେତ୍ରକୁ ଆସିନାହିଁ। ମୁଁ ଆସିଛି ସାହିତ୍ୟକୁ ତାର ସୁମହାନ୍ ସତ୍ୟରେ ପ୍ରତିଷ୍ଠା କରିବା ପାଇଁ। କଳିଂଗଭାରତୀ ତାଂକର ମର୍ଯାଦାବଂତ ସ୍ଥାନରେ ପ୍ରତିଷ୍ଠା ପାଆଂତୁ, ଏହା ମୁଁ ଚାହେଁ। ଏଥିପାଇଁ ମିଥ୍ୟାର ଛାଲ ବୁଣିବାର ଆବଶ୍ୟକତା କ'ଣ? ନିଜ ସତ୍ୟରେହିଁ ସେ ଚିରମହିମାନ୍ୱିତା। ମିଥ୍ୟାର ପ୍ରଲେପ ବୋଳି ତାଂକ ମୁହଁକୁ ବିକୃତ କରିବା ଏକ ଅକ୍ଷମଣୀୟ ଅପରାଧ। ସାହିତ୍ୟ ଏସବୁର ବହୁ ଉର୍ଦ୍ଧ୍ୱରେ।

ଏଥିପାଇଁ ମୁଁ ରକ୍ଷଣଶୀଳ ଓ ସନାତନୀ ଗୋଷ୍ଠୀଂକର ଚକ୍ଷୁଃଶୂଳ ହୋଇ ଉଠିଥିଲି। ସେମାନଂକର ପ୍ରତିକ୍ରିୟା ମୋତେ ବହୁ ଭାବରେ ଆକ୍ରାଂତ କରିଛି ଏବଂ ଏବେ ମଧ୍ୟ କରେ; ମାତ୍ର ମୁଁ ମୋର ଭୂମିକାରେ ଅଟଳ।

ପୃଥିବୀ କ୍ରମେ ନିକଟତର ହୋଇଆସୁଛି। ତା'ଛଡ଼ା ବିଜ୍ଞାନର ଅଗ୍ରଗତି, ସମାଜବିଦ୍ୟା, ମନୋବିଜ୍ଞାନ ଓ ଦର୍ଶନ ତଥା ନଂଦନତତ୍ତ୍ୱରେ ବୈଜ୍ଞାନିକ ପରିବର୍ତ୍ତନ ଭାରତ ଓ ଓଡ଼ିଶାର ମଣିଷମାନଂକୁ ପ୍ରଭାବିତ କରୁଅଛି। ସେମାନେ ନୂତନ ଯୁଗର ଚେତନା ଓ ଚିଂତାଧାରା ସହିତ ପରିଚିତ ହେବାକୁ ଅପେକ୍ଷା କରି ରହିଥିଲେ; ତେଣୁ ଏହି ପ୍ରକ୍ରିୟାର ଦ୍ୱାର ବଂଦକରିବାର ଶକ୍ତି କାହାର ନଥିଲା।

ବୟସ ଆସି ଅଶୀ ଟପିଲାଣି। ଆଉ କେତେକାଳ ବା ମୁଁ ନିଜର ସବ୍ୟସାଚିତ୍ୱ ବଜାୟ ରଖିପାରିବି? ସେ ଯାହାହେଉ, ମୋ ଭିତରର ଯୋଦ୍ଧୃ ପୁରୁଷଟି ଯେ ସବୁବେଳେ ସଜାଗ ରହିଛି ଓ ରହିବ, ଏଥିରେ ମୋର ବିଶ୍ୱାସ ଧ୍ରୁବ ଅଟଳ ରହିଛି। ଏହି ବିଶ୍ୱାସର କ୍ଷୁଦ୍ର କଣାଟିଏ ନଥିଲେ ମଣିଷ ଟଳିପଡ଼ଂତା; ସିଧାହୋଇ ଛିଡ଼ାହୋଇ ପାରଂତା ନାହିଁ। ଏଇ ପ୍ରତ୍ୟୟର ବେଳାଭୂଇଁ ଉପରେ ଛିଡ଼ାହୋଇହିଁ ମଣିଷ ଆକାଶକୁ ଦେଖେ। ଉପଲବ୍ଧି କରେ ଯେ ତଳେ ମାଟି, ଉପରେ ଆକାଶ; ମଝିରେ ସେ ଏକ ଜୀବନସତ୍ତା, ହେଉ ପଛେ କ୍ଷୀଣ ବୁଦ୍‌ବୁଦଟିଏ।

ମୋ' ଆତ୍ମଜୀବନୀ ଏକ ଦିଗରୁ ମୋ' ସମୟର ଆତ୍ମଜୀବନୀ ମଧ୍ୟ। ମୋ' ସମୟରେ ଘଟିଥିବା ଘଟନାବଳୀ ଏଥିରେ ପ୍ରତିଫଳିତ ହେବାକୁ ବାଧ୍ୟ; କାରଣ ମଣିଷ ଏକ ବିଚ୍ଛିନ୍ନ ବ୍ୟକ୍ତିସତ୍ତା ନୁହେଁ, ସେ ତା'ର ସମୟର ପ୍ରତିବିଂବ।

ସାହିତ୍ୟର ବା କଳାର ପଟ୍ଟ ବିଚାର ନକରି ତାହାର ମୂଲ୍ୟାୟନ କରିବସିବା ଏକ ଭ୍ରମାତ୍ମକ ପଂଥା। ଏଭଳି ମୂଲ୍ୟାୟନ ବସ୍ତୁନିଷ୍ଠ ହୋଇନପାରେ; ତେଣୁ ମୁଁ ମୋ' ଆତ୍ମଜୀବନୀ ଲେଖିଲାବେଳେ ମୋ' ସମୟରେ ମୋ ଚାରିପଟେ ଘଟୁଥିବା ଘଟନାବଳୀ, ଯାହା ମୋର ଚିଂତା ଓ ଚେତନାକୁ ପରିବର୍ତ୍ତିତ କରି ଚାଲିଛି, ତା'ର ଏକ ଚିତ୍ରପଟ ଦେବା ଅପରିହାର୍ଯ୍ୟ ହୋଇପଡ଼ିଛି।

ଆତ୍ମଜୀବନୀ ଓ ଭ୍ରମଣକାହାଣୀ ଲେଖିବା ମୋ ଦିହାତି ହୁଏନାହିଁ। ତାର କାରଣ, ଜୀବନ ଏପରି ଏକ ବିଚ୍ଛିନ୍ନ ପ୍ରବାହ, ଯାହାର ଆଦିଅଂତ ବା ପୂର୍ବାପର କେହି ଜାଣଂତିନାହିଁ। ଯାହାର ପୂର୍ବାପର ନାହିଁ, ତାର ସାମଗ୍ରିକ ରୂପ ବା ରୂପାଂତରର ଧାରଣା ବା କିପରି କରିବା ସଂଭବ! ଯେଉଁମାନେ ଜୀବନଟା ଏମିତି ସେମିତି ବୋଲି ବୁଝାଂତି, କିଂବା ଏଟା କର, ଏଟା କର ନାହିଁ ବୋଲି ଦୀର୍ଘ ଉପଦେଶ ଦିଅଂତି, ମୁଁ ସେଇ ଗୁରୁଜୀମାନଂକଠାରୁ ଟିକିଏ ଦୂରରେ ରହିବାକୁ ପସଂଦକରେ; କାରଣ କାଳେ ସେମାନଂକ ଛିଟା ବାଜିଗଲେ ମୁଁ ବି ଜଣେ ଗୁରୁ ପାଲଟିଯିବି। ଗୁରୁ ବନିବାକୁ ମୋର ପ୍ରାଣରେ ଡର। ମୁଁ ଚାହେଁ ସବୁବେଳେ ଜଣେ ବେପରୱା, ମୁକ୍ତ ମଣିଷ ହୋଇ ରହିବାକୁ। ଇଚ୍ଛାକଲେ ଯେ ଗୁରୁ ବନି ହୁଅଂତା ନାହିଁ, ତା ନୁହେଁ। ଗୁରୁ ତ ଆଉ ଆକାଶରୁ ପଡ଼ଂତି ନାହିଁ। କିଂତୁ ଏଥିପାଇଁ ଯେଉଁଟି ଅସଲ ଗୁଣ ବା ଯୋଗ୍ୟତା ଲୋଡ଼ା, ଯାହାର ଅନ୍ୟ ନାମ ଛଳନା ବା ଆତ୍ମପ୍ରତାରଣା, ସେଇ ଜିନିଷଟି ମୋର ନାହିଁ! ଅନ୍ୟକୁ ବରଂ କିଛି ଠକାଯାଇପାରେ; କିଂତୁ ନିଜକୁ ଠକିବାର ଯଂତ୍ରଣା ସହ୍ୟ କରାଯାଇପାରିବ କି ?

ଭ୍ରମଣକାହାଣୀ କଥା ଯାହା କହିଲି, ତାହା ମଧ୍ୟ ଅନୁରୂପ। ଅନେକ ସମୟରେ ଯାତ୍ରାର ଶେଷହିଁ ପ୍ରକୃତରେ ଯାତ୍ରାର ଆରଂଭ। ତମର ଅନୁଭୂତିର ଚରମ ନିର୍ଯାସହିଁ ତମକୁ ଭୂୟୋଦର୍ଶନର କିଛି ଉପାଦାନ ଯୋଗାଇପାରେ। ତାପରେ ଏ 'ବିପୁଳାଚ ପୃଥ୍ୱୀ'ରେ ଜଣେ କେତେ କ'ଣ ବା ଜାଣିପାରିବ ? ଘଟଣାର ନିଃସମୟୀକରଣ ବିନା ତା'ର ପୂର୍ଣ ତାତ୍ପର୍ଯ୍ୟ ଧରାପଡ଼ିବନାହିଁ।

ମୁଁ ବହୁବାର ବହୁ କାମରେ ଏ ପୃଥିବୀ ଘୂରିବୁଲିଛି। ଅଷ୍ଟ୍ରେଲିଆ, ନିଉଜିଲାଂଡରୁ ଆରଂଭକରି ଥାଇଲାଂଡ, ବାଂଗଲା ଦେଶ, ସିଂହଳ, ଆମେରିକା, ଇଂଲଂଡ, ଫ୍ରାନ୍ସ, ଇଟାଲୀ, ଜର୍ମାନୀ ଇତ୍ୟାଦି ଏବଂ ସୋଭିଏଡ୍ ରୁଷ, ଚେକୋସ୍ଲୋଭାକିଆ, ପୋଲାଂଡ, ଜାପାନ, ଇଂଡୋନେସିଆ ପ୍ରଭୃତି ଦେଶମାନ ବହୁ ସେମିନାର୍ ଓ ଓଡ଼ିଶୀ ପୋଥି-ଚିତ୍ର ତଥା ପଟଚିତ୍ର ପ୍ରଦର୍ଶନୀମାନ କରିବାପାଇଁ ଏବଂ ବିଭିନ୍ନ ସେମିନାର୍‌ରେ ବକ୍ତୃତା ଦାନ ଗସ୍ତରେ ବହୁବାର ଭ୍ରମଣକରିଛି। ୧୯୫୨ ମସିହାରୁ ଆଜିଯାଏ ଦୀର୍ଘ ପଇଁଚାଳିଶ ବର୍ଷ କାଳ ସାରା ସଂସାରର ଏ ମୁଂଡରୁ ସେ ମୁଂଡଯାଏଁ ବହୁବାର ବୁଲି ଯାହା କିଛି ମନେରଖିଛି, ତାହା କେବଳ ଅନେକ ସ୍ମୃତି ଚିତ୍ରର ସାରାଂଶମାତ୍ର। ଯଥା ସମୟରେ ତାହା ଏ ପୁସ୍ତକରେ ପ୍ରତିଫଳିତ

ହେବା ସ୍ୱାଭାବିକ। କିଂତୁ ଖାଲି ସେଇଗୁଡ଼ିକ ଗୋଟିକ ପରେ ଗୋଟିଏ ସମୟାନୁକ୍ରମେ ଲେଖିବସିଲେ ତାହା ହୁଅଂତା ଏକ 'ମାଦଳା ପାଂଜି'; ଅର୍ଥାତ୍ ଦିନ, ତାରିଖ, ଘଟଣାର ଏକ ଦଂଡକାରଣ୍ୟ। କିଂତୁ ପ୍ରକୃତ ଭ୍ରମଣକାହାଣୀ ସେପରି ହୁଏନାହିଁ। ଯାତ୍ରୀ ବା ପର୍ଯଟକ ନହୋଇ, ହେବା ଚାହିଁ ଏକ ପରିବ୍ରାଜକ; ଯାହାର କଠାଉର ପ୍ରତ୍ୟେକଟି ଶବ୍ଦରୁ ଉଦ୍‌ଗରିତ ହେବ ବିଶ୍ୱଦର୍ଶନର ଶବ୍ଦଲିପି, ଏକ ନୂଆ ଦିଗଂତର ଆଶ୍ଚର୍ଯ ନକ୍‌ସା, ଯେପରି ମୋ' 'ସ୍ମୃତିରେ ମୋ କବିତାର ମେଲ୍‌ବୋର୍ନ୍ ହୋଇଉଠିଛି ଏକ ମାୟା-ନଗରୀ, ଯାହାର କୋମଳ ଇସ୍ପାତ ଆଲିଂଗନରୁ ମୁକୁଳିବାର ଉପାୟ ନାହିଁ। ('ପାଂଡୁଲିପି') ଏ ଗ୍ରହର ବଡ଼ ବଡ଼ ସହରଗୁଡ଼ିକ ଘୂରିଆସିଲେ ବା ସେଠାରେ ଭାଷଣ ପ୍ରଦାନ କରି କରତାଳି ସଂଗ୍ରହକଲେ ବା ଖବରକାଗଜ କିଂବା ଗଣମାଧ୍ୟମରେ ସେସବୁ ପ୍ରକାଶ ପାଇଲେ ତାହାକୁ ବିଶ୍ୱ ଦର୍ଶନ କୁହାଯିବନାହିଁ। ପକେଟରେ ଖଂଡେ ଟିପାଖାତା ଧରି ଦେଶଦେଶାଂତର ଘୂରିଆସିଲେ ଯାହା ହୁଏ, ତାହାକୁ ଏକ ଗସ୍ତକ୍ରମ କୁହାଯାଇପାରେ। ମୁଁ ଜଣେ ଯାତ୍ରୀ ବା ଟୁରିଷ୍ଟ ହୋଇ ରହିଯିବାକୁ ଚାହେଁନି; ହେବାକୁ ଚାହେଁ ପରିବ୍ରାଜକ ବା ଦ୍ରଷ୍ଟା, ଯିଏ ଦୃଶ୍ୟମାନ୍ ଭିତରେ ଦୃଶ୍ୟାଂତରର ସଂଧାନ ପାଏ। ଏଥିପାଇଁ ଲୋଡ଼ା ଯେଉଁ ଭୂୟୋଦୃଷ୍ଟି, ତାହା କ'ଣ ମୋର ଅଛି?

ମାତ୍ର ପୁଣି ସେଇ ଜୀବନଜିଜ୍ଞାସା ମୋତେ ବଟପତ୍ର ପରି ଏପାଖ ସେପାଖ କରେ। କୁଆଡ଼େ ଯିବି, କେଉଁଠିକି ଯିବି, କାହିଁକି ବା ଯିବି— ଏସବୁ ପ୍ରଶ୍ନର ଉତ୍ତର କ'ଣ ଏୟାର୍ ଟିକେଟରୁ ମିଳିବ? ସବୁବେଳେ ପୁଣି ସେଇ ଭାବନା, ସେଇ ଜଟିଳ ଅନୁଚିଂତା— ମୋର ଦେଶ କାହିଁ? ଯେଉଁ ଭୂଗୋଳ ମୋତେ ଘେରିରହିଛି, ତାହା କ'ଣ ମୋର ଦେଶ? ମୋର ଦେଶ କ'ଣ ଖାଲି ନଦୀ, ନାଳ, ପାହାଡ଼, ଜଂଗଲ, ପାର୍କ, ଉଦ୍ୟାନର ଏକ ବିଚିତ୍ର ପଶାପାଲି? କାହିଁ ସେ ମାୟାବୀ ଜଗତ୍, ଯେଉଁଠି ଈଶ୍ୱରଂକ ପରି ମୁଁ ଅଧିଷ୍ଠିତ ଅଖଂଡ ସ୍ୱାତଂତ୍ର୍ୟରେ— ଯେଉଁଠି ଆରଂଭ ନାହିଁ, ଅଛି ଉତ୍ସ; ବଂଧନ ନାହିଁ, ଅଛି ମୁକ୍ତି; ବୈଷମ୍ୟ ନାହିଁ, ଅଛି ସାମ୍ୟ; ଯାହା ଚିରମୁକ୍ତିର ଦେଶ।

ମଣିଷ ଯଦି ଜାଣିପାରଂତା ସେ କେଉଁଠୁ ଆସିଛି ଏବଂ କେଉଁଠିକି ଯିବ, ତେବେ ଜୀବନର ମୋଟାମୋଟି ତାତ୍ପର୍ଯ ତା ପାଖରେ ଧରାପଡ଼ଂତା। ସେ ସେତିକି ଜାଣିପାରିଲେ, ଗୋଟାଏ କାହିଁକି, ଦଶଟା ଆତ୍ମଜୀବନୀ ଲେଖିବସଂତା ତା'ର ନ୍ୟାଯ୍ୟ ପରିଣାମ ଓ ନିଜ ଅଦୃଷ୍ଟର ଆବିଷ୍କାରପାଇଁ। କିଂତୁ ସେ ତ କିଛି ଜାଣେନାହିଁ— ଜାଣେ କେବଳ ଏକ ମଧ୍ୟବର୍ତୀ କାଳଟାକୁ; ଯାହାର ଆରଂଭ ଓ ଶେଷ ଚିରରହସ୍ୟାବୃତ। 'ମଧ୍ୟ ଗ୍ରାମରେ ଘର' ଏତିକି କେବଳ ତାକୁ ଯାହା ଜଣା; ମାତ୍ର ତା' ପୂର୍ବରୁ . . . ? ତା'ପରେ . . . ?

ମୁଁ ତ ମୁଁ, ମୁନିଋଷିମାନେ ମଧ୍ୟ ଜୀବନସାରା କଠୋର ତପସ୍ୟା କରି

ଜାଣି ପାରିନାହାଂତି। ଜୀବନଟା କ'ଣ, ଏହାର ଉତ୍‌ପତ୍ତି ଓ ବିଲୟ କେଉଁଠି, ଏହାର ସ୍ରଷ୍ଟା କିଏ, ସେ ସ୍ୱୟଂଭୂ ବା କାରଣାତୀତ ନା ଆପେକ୍ଷିକ ଓ ଚିରପରିବର୍ତ୍ତମାନ। କିଏ ଏ ପ୍ରଶ୍ନର ଜବାବ ଦେବ??

ମଣିଷର ଜୀବନଜିଜ୍ଞାସା ଯଦି ତା'ର ଲେଖାରେ ପ୍ରତିଫଳିତ ନ ହୁଏ, ତେବେ ସେ ଖାଲି କେତେଗୁଡ଼ିଏ ଗତାନୁଗତିକ କଥା ଓ ପ୍ରଚଳିତ ଧାରଣାର ପୁନରାବୃତ୍ତି କରି କେଉଁ ସାର୍ଥକତା ପାଇବ? ଆମେ ଯାହା କରୁଁ, ଯାହା କହୁଁ, ତାହା ତ କେବଳ ଅନୁବାଦ। ସେଥିରେ ସ୍ୱାଧୀନ ଅବବୋଧ କାହିଁ? ଆମର ଭଲ ମଂଦ ବିଚାର, ସୁ-କୁ ଧାରଣା, ସବୁ ସେଇ ଆଦିମ କାଳରୁ ଗଢ଼ିଆସୁଥିବା ବଦ୍ଧମୂଳ ଧାରଣାର ଅନୁକୃତି (Pre-conditioned reflexes) ମାତ୍ର। ସେଥିରେ ସ୍ୱାଧୀନ ସ୍ପଂଦନ ନାହିଁ; ସ୍ୱାଧୀନ ଉପଲବ୍‌ଧି ନାହିଁ। ସେହି ବଦ୍ଧମୂଳ ଧାରଣା ହାତରୁ ମୁକ୍ତି ପାଇବାପାଇଁ କେ. କୃଷ୍ଣମୂର୍ତ୍ତି "ପସଂଦହୀନ ସଜାଗତା" (Choicelcss awareness) କଥାଟା କହିଥିଲେ। ଏହାର ଅର୍ଥ ମଣିଷର ପସଂଦ, ଅପସଂଦ, ଭଲ-ମଂଦର ବିଚାର ସବୁକିଛି ସଂଚିତ ଧାରଣା; ସୁତରାଂ ସ୍ୱୟଂକ୍ରିୟ ବ୍ୟବହାର ମାତ୍ର। ତେଣୁ ଏସବୁଥିରୁ ନିଜକୁ ମୁକ୍ତ କରି ମଣିଷ ନିଜକୁ ଏବଂ ତାର ପ୍ରତିଟି କ୍ରିୟା ଓ କାର୍ଯକୁ ନିରୀକ୍ଷଣ କରିବା ଉଚିତ। ତା' ହେଲେ ଯାଇ ସେ ବାସ୍ତବତାର ପ୍ରକୃତ ସ୍ୱରୂପ ଜାଣିପାରିବ; ନିଜକୁ ଓ ଯେଉଁ ବାସ୍ତବତାର ସେ ଭଗ୍ନାଂଶ ମାତ୍ର, ସେଇ ଅଖଂଡ, ଅବିଭାଜ୍ୟ ବାସ୍ତବତାର ସଂଧାନ ପାଇପାରିବ; ତାକୁ ମର୍ମେ ମର୍ମେ ଉପଲବ୍‌ଧି କରିପାରିବ। ସେ ମିଛ ଆଦର୍ଶ ପଛରେ ଭୁଆଁ ବୁଲିବ ନାହିଁ। ଆଦର୍ଶ ତ ମଣିଷ ପାଇଁ, ଜୀବନ ପାଇଁ; ମଣିଷ ଆଦର୍ଶ ପାଇଁ ନୁହେଁ। ମଣିଷର ଜୀବନ-ଦର୍ଶନକୁ ପ୍ରଭାବିତ କରେ ତା'ର ବିଶ୍ୱଦୃଷ୍ଟି (World-view), ଜୀବନର ଧ୍ୟାନ ଧାରଣା, ସାମାଜିକ ମୂଲ୍ୟବୋଧ, ଧାର୍ମିକ ଅବଧାରଣା ଓ ଆଚରଣ ଆଦି କିଛି ଆକସ୍ମିକ ଜିନିଷ ନୁହେଁ ବା ଆକାଶରୁ ପଡ଼ିନାହିଁ। ନାନା ସାମାଜିକ କାରଣ ଓ ପରିବେଶ ମଧ୍ୟରୁ ଏହା ବିକାଶ ଲାଭ କରିଛି। ସେଇ କାରଣଗୁଡ଼ିକର ପରିବର୍ତ୍ତନ ସଂଗେ ସଂଗେ ସେ ସବୁ ମଧ୍ୟ ପରିବର୍ତ୍ତିତ ହୋଇଚାଲିଥାଏ। ଏହି ପରିବର୍ତ୍ତନ ପୁଣି ସିଧାସଳଖ ନୁହେଁ; ନାନା ଅଂର୍ତ୍ତଦ୍ୱଂଦ୍ୱ ଓ ସଂଘର୍ଷ ଭିତରଦେଇ ଏହା ସଂଘଟିତ ହୋଇଥାଏ। ପ୍ରଥମେ ପରିମାଣାତ୍ମକ ପରିବର୍ତ୍ତନ ଘଟି ଘଟି କ୍ରମେ ତାହା ବସ୍ତୁର ବୈପ୍ଳବିକ ରୂପାଂତର ଘଟାଏ। ତେଣୁ ବସ୍ତୁର ଗୁଣାତ୍ମକ ପରିବର୍ତ୍ତନ ଯେ ଚେତନା ହୋଇପାରେ, ଏ ବିଷୟରେ ବହୁ ଦାର୍ଶନିକ ଏକମତ। ତେଣୁ ଚେତନା ବସ୍ତୁରୁ ସଂଭବ ବୋଲି ବହୁ ଦାର୍ଶନିକ କହିଯାଇଛଂତି। ଏହା ଖାଲି ଏକ ମାର୍କସୀୟ ଆପ୍ତବାକ୍ୟ ନୁହେଁ; ଭାରତର ନୈୟାୟିକମାନେ ମଧ୍ୟ ଏହାର ସୂଚନା ଦେଇଯାଇଛଂତି। ସେମାନେ କହଂତି, ମହୁଲରସ ଏକପ୍ରକାର ମିଷ୍ଟ ପାନୀୟ, ମାତ୍ର ଏହାର

ପରିମାଣାତ୍ମକ ପରିବର୍ତ୍ତନ ମାଧ୍ୟମରେ ଗତିକରି ଅର୍ଥାତ୍ ବହୁ ସମୟ ସିଝାଗଲେ ଏହାର ଗୁଣ ବଦଳିଯାଇ ମଦ୍ୟରେ ପରିଣତ ହୁଏ। ପଂଡ଼ିତ ନେହେରୁ ଥରେ କହିଥିଲେ, "Change is a partner of life." —କଥାଟା ସତ୍ୟ। ମଣିଷ-ଜୀବନ ଏବଂ ସମାଜ-ଜୀବନ ପରିବର୍ତ୍ତନର ନିୟମରୁ ବିମୁକ୍ତ ହୋଇନପାରେ।

ଯେଉଁମାନେ ମନେକରଂତି ଯେ ମଣିଷର ସମାଜ-ସଂପର୍କ ଏବଂ ତା' ଉପରେ ଭିତ୍ତିଶୀଳ ଧ୍ୟାନ, ଧାରଣା, ନୀତି, ନିୟମ, ଆଇନ୍‌କାନୁନ୍, ମୂଲ୍ୟବୋଧଗୁଡ଼ିକ ସନାତନ ଏବଂ ଅପରିବର୍ତ୍ତନୀୟ, ସେମାନେ ନିଜେ ଭୁଆଁ ବୁଲିବା ସଂଗେ ସଂଗେ ଅନ୍ୟକୁ ମଧ୍ୟ ଭୁଆଁବୁଲାଂତି। ସତ୍ୟ ସେମାନଂକ ଆଖି ଆଗରେ ଜଳଜଳ ହୋଇ ଠିଆହୋଇଥିଲେ ମଧ୍ୟ ସେମାନେ ତାକୁ ଦେଖିବାକୁ ଅସ୍ୱୀକାର କରଂତି। ପ୍ରତ୍ୟେକ ଜିନିଷକୁ ତାର କାର୍ଯ୍ୟ-କାରଣ ସଂପର୍କ ଦୃଷ୍ଟିରୁ ନ ଦେଖି ସେମାନେ ତାକୁ ଅଯଥା ରହସ୍ୟମୟ ଓ ଧୂଆଁଳିଆ କରିବାକୁ ଚେଷ୍ଟାକରଂତି। ସତ୍ୟକୁ ବିକୃତ କରିବା ଏମାନଂକର ଚିରାଚରିତ ଅଭ୍ୟାସ। ମୂଳ ବିଷୟଟିକୁ ବାଆଁକାଳିଆ କରିବା ପାଇଁ ଏମାନେ ବହୁ ମିଥ୍ୟାର ଆଶ୍ରୟ ନେଇଥାଂତି। ଗୋଟିଏ ମିଥ୍ୟାକୁ ଢାଂକିବାପାଇଁ ଶହେଟି ମିଥ୍ୟା ସୃଷ୍ଟି କରିବାକୁ ପଡ଼େ।

ଆମ ଓଡ଼ିଆ ସାହିତ୍ୟରେ ସବୁ ଦିଗରୁ ଐତିହାସିକ ବସ୍ତୁବାଦୀ ଚେତନାର ପ୍ରବର୍ତ୍ତନ ଏବଂ ଆଧୁନିକ କାବ୍ୟ ଆଂଦୋଳନ ଓ ବିଶ୍ୱ-ସାହିତ୍ୟର ଅନ୍ୟାନ୍ୟ କ୍ଷେତ୍ରରେ ଘଟିଥିବା ବୈପ୍ଳବିକ ପରିବର୍ତ୍ତନ ସଂଗେ ଓଡ଼ିଆ ସାହିତ୍ୟକୁ ସମନ୍ୱିତ କରିବା ପ୍ରଚେଷ୍ଟା ଏକ ଐତିହାସିକ ଦାୟିତ୍ୱରୂପେ ମୋ' ଜୀବନରେ ଗୃହୀତ ହୋଇଛି। ସାହିତ୍ୟର ବିଭିନ୍ନ ବିଭାଗ ଓ ବିଭାବରେ ଆଂଗିକ ତଥା ଆତ୍ମିକରେ ବୈପ୍ଳବିକ ରୂପାଂତର ସାଧନ କରିବା କିଛି କମ୍ କଥା ନୁହେଁ। ଏଥିପାଇଁ ଲୋଡ଼ା ବହୁ ଉତ୍ସର୍ଗୀକୃତ ଜୀବନର ନିରବଚ୍ଛିନ୍ନ ସାଧନା ଏବଂ ଗଭୀର ଅଧ୍ୟୟନ।

ଦୁର୍ଭାଗ୍ୟର ବିଷୟ, ମୋର ଏହି ଐତିହାସିକ ଭୂମିକା ପାଳନ କରିବାରେ ମୋତେ ସାହାଯ୍ୟ କରିବାପାଇଁ ଓଡ଼ିଶାରେ କୌଣସି ଭିତ୍ତିଭୂମି ବା ତାତ୍ତ୍ୱିକ ମୂଳଦୁଆ ରଚିତ ହୋଇନଥିଲା, ଯାହା ଅନ୍ୟାନ୍ୟ ଭାଷା ସାହିତ୍ୟମାନଂକରେ ବହୁ ଆଗରୁ, ପ୍ରାୟ ପ୍ରଥମ ମହାଯୁଦ୍ଧ ପରେ ପରେ ଆରଂଭ ହୋଇସାରିଥିଲା। ଦେଶରେ ସମାଜ-ବିଜ୍ଞାନ ନୂତନ ନଂଦନତତ୍ତ୍ୱ ଏବଂ ବିଜ୍ଞାନସମ୍ମତ ବିଚାରଧାରାର ପୃଷ୍ଠଭୂମି ନ ଥିଲେ ଆଧୁନିକ କଳା-ସାହିତ୍ୟର ଭୂୟୋବିକାଶ ପ୍ରାୟ ଅସଂଭବ। ତେଣୁ ମୋତେହିଁ ଏକାକୀ ମୋ' ସାହିତ୍ୟର ମୂଳଭୂମି ତିଆରି କରିବାକୁ ପଡ଼ିଛି। ପ୍ରାୟ ୨ ହଜାର ପୃଷ୍ଠାର ତାତ୍ତ୍ୱିକ ସଂଦର୍ଶନ ବା Estimological works ମୋତେ ଏକାକୀ କରିବାକୁ ପଡ଼ିଛି, ଯାହା ମୋର "କବିତା—୧୯୬୨" ଓ "ସାହିତ୍ୟ ବିଚାର" ଏବଂ "ଆଧୁନିକ ସାହିତ୍ୟର କେତେକ ଦିଗ" ଓ "ସାହିତ୍ୟର ମୂଲ୍ୟବୋଧ (୧୯୭୪)" ଇତ୍ୟାଦି। ସାହିତ୍ୟପ୍ରତି ମୋର

ଅଂଗୀକାର ଦିନକୁ ଦିନ ବଢ଼ିଚାଲିଛି।

ଏସବୁ କହିବାର ତାତ୍ପର୍ଯ୍ୟ ହେଉଛି, ଏକାକୀ ବହୁ କାମରେ ହାତଦେଇ ମୁଁ କେତେଦୂର କଣ କରିପାରିଛି ତାର ବିଚାରକ ମୁଁ ନୁହେ। ତାର ବିଚାରକ କେବଳ ଧୀମାନ ପାଠକଶ୍ରେଣୀ ଓ ମହାକାଳ।

ଆଧୁନିକ ସାହିତ୍ୟ ତ ଦୂରର କଥା, ପ୍ରାଚୀନ ସାହିତ୍ୟର ସଠିକ ତଥା ଯୁଗଭିତ୍ତିକ ମୂଲ୍ୟାୟନ ମଧ୍ୟ ଆମ ସାହିତ୍ୟରେ ଏ ପର୍ଯ୍ୟଂତ ହୋଇନାହିଁ। ସେ ଦିଗରେ ମଧ୍ୟ କିଛି କାମ କରିବାକୁ ପଡ଼ିଛି। 'ଦିଗଂତ' ପତ୍ରିକା ମାଧ୍ୟମରେ ଭଂଜ, କବିସୂର୍ଯ୍ୟ, ଜଗନ୍ନାଥ ଦାସ ପ୍ରଭୃତିଂକ ଅପ୍ରକାଶିତ ରଚନାମାନ ପୁନରୁଦ୍ଧାର କରି ପ୍ରକାଶ କରିବା ସଂଗେ ସଂଗେ ସାରଳାଦାସ ଓ ଉପରୋକ୍ତ ଗୀତିକବିମାନଂକର ଯଥାଯଥ ପୁନଃ ମୂଲ୍ୟାୟନ କରିବା ଦିଗରେ ମଧ୍ୟ କିଛି ପଦକ୍ଷେପ ମୁଁ ନେଇପାରିଛି। ଏହିପରି ଦେଖିବାକୁ ଗଲେ ବୟସ ବୃଦ୍ଧି ସଂଗେ ସଂଗେ ସାହିତ୍ୟପ୍ରତି ମୋର ପ୍ରତିବଦ୍ଧତା ମଧ୍ୟ ବଢ଼ିଚାଲିଛି; କମି ନାହିଁ।

ଏହାଛଡ଼ା ଦେଶ-ବିଦେଶରେ, ଆଂତର୍ଜାତିକ ପରିସରରେ ଓଡ଼ିଶାର ମହାନ୍ ଐତିହ୍ୟ ଏବଂ କଳା-କୀର୍ତ୍ତିର ଯଥାଯଥ ଉପସ୍ଥାପନା ଓ ବ୍ୟାଖ୍ୟା ପ୍ରାୟ ଗତ ତିରିଶ ବର୍ଷ ଧରି ମୋର ଏକ ନିୟମିତ କାର୍ଯ୍ୟକ୍ରମରେ ପରିଣତ ହୋଇଛି। ଏଥିପାଇଁ ବହୁବାର ଆମେରିକା, ଫ୍ରାନ୍ସ, ଇଟାଲୀ, ଜର୍ମାନୀ, ଶ୍ରୀଲଂକା, ଇଂଲଂଡ, ସୋଭିଏଟ୍ ରଷ୍, ପୋଲାଂଡ, ଚେକୋସ୍ଲୋଭାକିଆ, ବାଂଗଲାଦେଶ, ଅଷ୍ଟ୍ରେଲିଆ, ନିଉଜିଲାଂଡ, ଥାଇଲାଂଡ, ଜାପାନ, ଇଂଡୋନେସିଆ ପ୍ରଭୃତି ଯିବାକୁ ପଡ଼ିଛି ଏବଂ ସେଠାରେ ସାଂସ୍କୃତିକ କାର୍ଯ୍ୟକ୍ରମମାନଂକରେ ଅଂଶଗ୍ରହଣ କରିବାକୁ ପଡ଼ିଛି ଏବଂ ପଡୁଛି ମଧ୍ୟ।

ମାତ୍ର ଏସବୁ ସତ୍ତ୍ୱେ କାହିଁକି ମୋର ସବୁବେଳେ ମନେହୁଏ ମୁଁ ଯେପରିକି ଏ ପୃଥିବୀରେ ସଂପୂର୍ଣ ଏକାକୀ ଓ ଏକ ନିଃସଂଗ ପ୍ରତିମା। ଏ ଗ୍ରହରେ ମୁଁ ଦିନେ ବି ଶାଂତି ପାଇନାହିଁ। ଚାରିଆଡ଼େ ଏକ ବିଷାକ୍ତ ହାୱାରେ ମୁଁ ଯେପରି ଅଣନିଶ୍ୱାସୀ। ମନେହୁଏ "ଏଠି ନୁହେଁ, ଏଠି ନୁହେଁ, ଆଉ କେଉଁଠି ଯେପରି ମୋର ଘର—"; ନିଜ ଘରେ, ନିଜ ଦେଶରେ ଥାଇ ମଧ୍ୟ ମନେକରେ ମୁଁ ଯେପରି ଚିରପ୍ରବାସୀ। ଏଠି ମୋର ସ୍ଥାନ ନାହିଁ। ମୋର ସ୍ଥାନ ଯେପରି ଅନ୍ୟ କେଉଁଠି, କେଉଁ ଦୂରଦୂରାଂତରେ, କେଉଁ ଅଜଣା ରାଇଜରେ। କାହିଁକି ଏପରି ମନେହୁଏ ? ଏକ ଅକାରଣ ଦୁଃଖରେ ମୁଁ ଭାଂଗିପଡ଼େ; ଯଦିଚ ମୁଁ ଜାଣେ ଏ ଦୁଃଖର କୌଣସି ବାସ୍ତବ ହେତୁ ନାହିଁ। ଏହା କାରଣାତୀତ, ଏକ ପବିତ୍ର ଦୁଃଖ।

ଏଇ ଜୀବନକୁ ନେଇ ମୁଁ କଣ କରିବି ? ଘରେ ବାହାରେ ସବୁଠି ବିଷାକ୍ତ ଜୀବାଣୁର ଘନଘଟା। ଏଠି ସାହିତ୍ୟ ପାଇଁ ଶୁଚିବଂତ, ପୁଣ୍ୟବଂତ

ଜଳବାୟୁ କାହିଁ? ସବୁଠି ତ ବିଷ। ହସରେ ବିଷ, ଲୁହରେ ବିଷ, ଚୁମ୍ବନରେ ମଧ୍ୟ ବିଷ। କଳା ଓ ସାହିତ୍ୟର ସଂଗ୍ୟା ତ ମଣିଷ ତାର ଏକାକୀତ୍ୱକୁ ନେଇ କଣ କରେ। ତାହାହିଁ ତାର ନିର୍ଜନତାର ଫଳାଫଳକୁ ସେ ସମାଜକୁହିଁ ପ୍ରତିଦାନ ଦିଏ। ଯାହା ସମାଜଠୁ, ବହିଃ ପ୍ରକୃତିଠାରୁ ସେ ଆହରଣ କରିଥାଏ, ତାକୁ ପ୍ରାଣରସରେ ଜାରିତ କରି ସେଇ ସମାଜକୁ ଫେରାଇଦେବାହିଁ ସାହିତ୍ୟିକର କାମ, କଳାକାରର ଧର୍ମ; ମାତ୍ର ସେ ତାର ପବିତ୍ର ସର୍ଜନାକୁ କାହା ହାତକୁ ଟେକିଦେବ? କିଏ ଅଛି ଏଇ କଳୁଷିତ ପୃଥିବୀରେ, ଯିଏ ଅଂଜଳି ଭରି ଗ୍ରହଣ କରିବ ତାର ଦାନ? ସବୁଠି ତ ଦୁର୍ନୀତି, ଅନ୍ୟାୟର ବିଷ ହାଓ୍ବା।

ନିଜେ ସାହିତ୍ୟିକ ଓ କଳାକାର ବି କେଉଁ ଦୁର୍ନୀତିମୁକ୍ତ? ସାହିତ୍ୟକୁ ଏକ ଉପଲକ୍ଷ କରି ପ୍ରଚୁର ଫାଇଦା ଉଠାଇବା, ବିଭିନ୍ନ ବୋର୍ଡ ଓ କମିଟିମାନଂକର ସଦସ୍ୟ ବନି ନିଜେ ନିଜ ବହିର, କ୍ରେତା ବିକ୍ରେତା ଓ ମୂଲ୍ୟାୟକ ସାଜିବା ଆଜିକାଲି ସାହିତ୍ୟଜଗତରେ ଏକ ସାଧାରଣ ଦୃଶ୍ୟ। ଏହାର ପରିସର ଦିନକୁଦିନ ବିପୁଳ ଆୟତନ ଲାଭକରୁଛି। ସଚ୍ଚା ସମାଲୋଚକମାନେ ଯେଉଁମାନେ କି ସାହିତ୍ୟକୁ ଭ୍ରଷ୍ଟତା ହାତରୁ ବଂଚାଇପାରଂତେ, ଏହି କେତେଜଣ ମୁଷ୍ଟିମେୟ ଦୁଃସାହସୀ ଓ ଉଚ୍ଚାକାଂକ୍ଷୀ ଭାଗ୍ୟ-ଶିକାରୀମାନଂକର ଯଥାର୍ଥ ମୂଲ୍ୟାଂକନପୂର୍ବକ ଆଉ ପାଦେ ହେଲେ ଆଗକୁ ବଢ଼ିବାକୁ ଦିଅଂତେ ନାହିଁ, କହଂତେ 'ରୋକ— ଆଉ ଇଂଚେ ବି ଆଗକୁ ନୁହେଁ' —ଆଜି ସେମାନେ ପଦପଦବୀର ଗୋଡ଼ାଣିଆ ସାଜି ସେମାନଂକର ପ୍ରଚାର ଏବଂ ପ୍ରଶସ୍ତି ରଚନାରେ ବ୍ୟସ୍ତ— ନିଜ ନିଜର କ୍ଷୁଦ୍ର କ୍ଷୁଦ୍ର ସ୍ୱାର୍ଥସିଦ୍ଧି ପାଇଁ। ଗୋଟିଏ ଦିଓଟି ପତ୍ର-ପତ୍ରିକା ଓ ଗଣମାଧ୍ୟମ ମଧ୍ୟ ସେମାନଂକର ତୁଷ୍ଟିସାଧନାରେ ବ୍ୟସ୍ତ। ଆଉ ଦଳେ ତ ମଲ୍ଲୀନାଥ ସାଜି ଯେଉଁମାନେ ମଧ୍ୟମ କାଟର ଲେଖକ ସେମାନଂକୁ ରାତାରାତି ଆକାଶକୁ ଉଠାଇ ଦେଉଛଂତି। ଏମାନେ ଯେ କେବଳ ଓଡ଼ିଆ ସାହିତ୍ୟକୁ ଭ୍ରଷ୍ଟ କରୁଛଂତି ତା ନୁହଁ; ସମକାଳୀନ ଓଡ଼ିଆ ସାହିତ୍ୟରେ ଭୁଲ୍ ମୂଲ୍ୟବୋଧ ପ୍ରଚଳନ କରୁଛଂତି। ଏମାନଂକୁ ସମାଲୋଚକ ନକହି ବରଂ ଚାଟୁକାର କହିବାହିଁ ଉଚିତ ହେବ। ଏହାଠାରୁ ବଳି ବିଡ଼ଂବନା ଆଉ କଣ ହୋଇପାରେ? ଏ ପ୍ରକ୍ରିୟା ରାଧାନାଥଂକ ସମୟରୁ ଆରଂଭ ହେଲାଣି ବୋଲି ଶୁଣିଥିଲି। ସେ ନିଜ ସାହିତ୍ୟକୁ ଚଳାଇବାକୁ ସରକାରୀ କଳ ଓ ଜନମତକୁ ପ୍ରଭାବିତ କରୁଥିଲେ। ଯେଉଁମାନେ ତାଂକ ଲେଖାର ବିରୋଧ କଲେ, ସେ (ରାଧାନାଥ) ସେମାନଂକ ଉପରେ, ପରୋକ୍ଷରେ ହେଉ ପଛକେ, ଦାଉ ସାଧିବାକୁ ଛାଡୁନଥିଲେ। ସେତେବେଳର ସ୍କୁଲ ଛାତ୍ର ନିରୀହ ଗୋପବଂଧୁ ମଧ୍ୟ ତହିଁର ଶିକାର ହୋଇଥିଲେ। ମାତ୍ର ବର୍ତ୍ତମାନ ଏହା ସବୁ ସୀମା ଲଂଘନ କରି ଖୋଲା ବଜାରର ବସ୍ତୁ ହୋଇପଡ଼ିଛି; ତଥାପି ରାଧାନାଥଂକ ସମୟରେ ଯେଉଁ ଟିକକ ବିରୋଧୀ ସ୍ୱର (critical-

stance) ଶୁଣାଯାଉଥିଲା, ଯାହାର ପ୍ରକାଶ 'ଇଂଦ୍ରଧନୁ' ଓ 'ବିଜୁଳି' ପତ୍ରିକା ମାଧ୍ୟମରେ ସୂଚିତ ହେଉଥିଲା, ସେତକ ମଧ୍ୟ ଆଜି ଲୋପପାଇଲାଣି।

ଏପରି ଜଳବାୟୁରେ କଳା ଓ ସାହିତ୍ୟ ବଂଚିବ କିପରି; ବଢ଼ିବ କିପରି ? ସାଧାରଣ ଜୀବନରେ ସାହିତ୍ୟ ତାର ମର୍ଯାଦା ସ୍ଥାନ ହରାଇବାରେ ଲାଗିଛି। ଟେଲିଭିଜନ ବା ରେଡ଼ିଓର ପ୍ରଭାବରେ ଯେତେ ନୁହେଁ, ନିଜର ଆଭ୍ୟଂତରୀଣ ସଂକଟରେହିଁ ସାହିତ୍ୟର ଦୁର୍ଗ ଭୁଷୁଡ଼ିପଡ଼ୁଛି। ପ୍ରଚଳିତ ପାଠ୍ୟକ୍ରମରେ ଏହାର ସ୍ଥାନ କ୍ରମେ ଗୌଣରୁ ଗୌଣତର ହେବାରେ ଲାଗିଛି ଏବଂ ଆସଂତା ଶିକ୍ଷା ପଦ୍ଧତିରେ ଏହା ବୋଧହୁଏ ସର୍ବନିମ୍ନ ସ୍ତରକୁ ଖସିଯିବ। ସେକ୍‌ସପିଅର୍, କାଳିଦାସ, ଦାଂତେ, ଗେଟେ ଓ ରବୀଂଦ୍ରନାଥଂକ ସ୍ଥାନ ଅଧିକାର କରିବ କାରିଗରୀ ବିଦ୍ୟା ଏବଂ ଉଡ଼ାଜାହାଜ, ମୋଟରଗାଡ଼ି ପ୍ରଭୃତିର ଧାତବ କାହାଣୀ। ଏକ ପ୍ଲାଷ୍ଟିକ୍ ସାହିତ୍ୟ ଗଢ଼ିଉଠିବ। ବିଜ୍ଞାନର ଯେ ସ୍ୱତଂତ୍ର ମୂଲ୍ୟ ଅଛି, ତାହା କେହି ଅସ୍ୱୀକାର କରିପାରିବ ନାହିଁ; ମାତ୍ର ସାହିତ୍ୟକ୍ଷେତ୍ରରେ ତା'ର ଅନୁପ୍ରବେଶ ଉଚିତ ନୁହେଁ। ଏହି ପରିପ୍ରେକ୍ଷୀରେ ସମସାମୟିକ ସାହିତ୍ୟର ସ୍ଥିତି ଓ ସଂଭାବନା ବିଚାର କରିବାକୁ ହେବ।

ସାହିତ୍ୟ ଛଡ଼ା ବାକି ଯାହା ରହିଲା, ତାହା ହେଉଛି ଆପାତମଧୁର ରାଜନୀତି, ଯାହାର ନାମାଂତର ଆଜି ଭ୍ରଷ୍ଟାଚାର ଓ ଦୁର୍ନୀତି। ଆତ୍ମତ୍ୟାଗ ଓ ଦେଶପାଇଁ ଆତ୍ମବଳିର ସ୍ଥାନ ନେଇଛି ଆଜି ଅତିକାୟ ସ୍ୱାର୍ଥାଂଧତା, ଆଂଚଳିକତା ଓ ଭାଷା ପ୍ରଭୃତି, ଯାହା ଆଜି ଦଳୀୟ ସ୍ୱାର୍ଥସାଧନରେ ସୁଲଭ ଆୟୁଧରୂପେ ବ୍ୟବହୃତ ହେଉଛଂତି। ନାଗରିକ ସ୍ୱାଧୀନତା, ବ୍ୟକ୍ତି-ସ୍ୱାତଂତ୍ର୍ୟ ଏବେ ଯେପରି ସାଂଘାତିକ ଭାବରେ ବିପନ୍ନ, ତାହା ପୂର୍ବେ କେବେ ଦେଖାଯାଇନାହିଁ।

ସମସାମୟିକ ଚିତ୍ରପଟ ଉନ୍ମୋଚନ କଲେ ପ୍ରଥମେ ଯାହା ଆଖିରେ ପଡ଼େ, ତାହା ହେଉଛି କ୍ରମବର୍ଧମାନ ଭ୍ରଷ୍ଟାଚାର, ହତ୍ୟା, ଦୁର୍ନୀତି ଓ ନାରୀଧର୍ଷଣ, ଯାହାର ଇତିହାସ ଛବିରାଣୀଠାରୁ ଆରଂଭକରି ମାୟାତ୍ୟାଗୀ ପର୍ଯଂତ ବିସ୍ତୃତ। ଛବିରାଣୀ ଉପରେ ଲିଖିତ ମୋର 'ଅଂଗାର' କବିତାର ଏକ ପଂକ୍ତି ତଳେ ଦେଲି। ଏହା ୧୩.୧୦.୮୦ ତାରିଖରେ କଟକ ମେଡ଼ିକାଲ୍ କଲେଜ ହସ୍‌ପିଟାଲ୍‌ର ନର୍ସିଂହୋମ୍‌ରେ ଏକ ଅପରେସନ୍ ସକାଶେ ଥିଲାବେଳେ ଲେଖିଥିଲି –

> "କେଉଁ ଅଂଗାରରେ ମୁଁ ଲେଖିବି ସେ କଥା, କେଉଁ ଅକ୍ଷରରେ ?
> ଭୟରେ ଥରଂତି ବର୍ଣମାଳା,
> ଜାଣେ ଯେତେ ଭାଷା, ସର୍ବେ ଦ୍ୟଂତି ପଛଘୁଂଚା
> ଶବ୍ଦମାନେ ଲୁଚିଯାଂତି ଅଭେଦ ଉହାଡ଼େ
> ଶବ୍ଦ ବି ତ ପାପ, ଯେଣୁ ତାହା ଶୂନ୍ୟର ବିକାର,
> ତନ୍ମୟରୁ ହୋଇବା ବାଙ୍ମୟ,

ତଥାପି ସେ ପାତକରେ ହେବି ପଛେ ଭାଗୀ
ହେବି ବାଙ୍ମୟ
ହେବି ପଛେ ଶ୍ରୁତିର କିଂକର।
ପ୍ରଭୁ ମୋତେ କେଉଁ ଦୋଷେ କରିଥିଲ କବି
ଏ ଗ୍ରହରେ, ଦିନେ ବି ତ ପାଇନାହିଁ ଶାଂତି,
ନର୍କ ଖାଲି ନର୍କ!
ବୁଲିଛି ମୁଁ ଫେରାର ସୈନିକ ପରି
ଏ ମୁଂଡୁ ସେ ମୁଂଡ ଗୋଟା ପୃଥ୍ୱୀ, କେତେ ଥର,
ସବୁଠି ଶୁଣିଛି ଖାଲି ପଶୁର ହେଂଟାଳ।
ୟୁରୋପର ସବୁ ଘେଟୋ * ଠାରୁ ନୁହେଁ କମ୍।
ଏଇ ମୃତ୍ୟୁ।'' × × × (ଅଂଗାର)

× × × ×

ଏହାକୁ କେବଳ 'Celebration of immediacy' କହି ଉଡ଼ାଇ ଦିଆଯାଇନପାରେ। ଏହା କାଳରୁ କାଳାଂତରକୁ ଏକ ଯାତ୍ରା ଏବଂ ଶବ୍ଦରୁ ନିଃଶବ୍ଦକୁ ଏକ ଉତ୍ତରଣ। ତେଣୁ ଏଇ ପୃଥିବୀରେ, ଏଇ ଦେଶରେ ଏବଂ ଏଇ ନିର୍ଦ୍ଦିଷ୍ଟ ଚାଖଂଡେନାଁକୁ ଭୂଇଁ ଓଡ଼ିଶା ରାଜ୍ୟରେ ସାହିତ୍ୟ ଓ ସାହିତ୍ୟିକର ଜୀବନବୋଧ ତଥା ଜୀବନଦର୍ଶନ ଯାହା ହେବା ଚାହିଁ, ତାହାର ନିର୍ଭୁଲ ଉଚ୍ଚାରଣ 'ଉତ୍ତରକକ୍ଷ'ରେ ପ୍ରତିଧ୍ୱନିତ ହୋଇପାରିଲେ ମୁଁ ସୁଖୀ ହେବି। ତା'ଛଡ଼ା ମୋ' ବ୍ୟକ୍ତିଗତ ଜୀବନର ସୁଖ ଦୁଃଖ, ସ୍ୱବିରୋଧ ଓ ବିଡ଼ଂବନା ଏବଂ ନାନା ଘଟଣା-ବୈଚିତ୍ର୍ୟର ଲିପିଚିତ୍ର ଯଦି ଉଦ୍‌ଘାଟନ କରାଯାଇପାରେ, ତାହାହେଲେ ତାହା ହେବ ଓଡ଼ିଆ ଜୀବନୀ-ସାହିତ୍ୟର ଏକ ସାର୍ଥକ ମାଇଲ-ଚିହ୍ନ।

**ଭାଷା ଓ ଶବ୍ଦ ସଂପର୍କରେ –**

ମୋର ଭାଷାକୁ ନେଇ ବହୁଳ ଚର୍ଚ୍ଚା ହୋଇଥାଏ। କେହି କେହି ଏହାକୁ ତାରିଫ୍ କଲାବେଳେ ଅନ୍ୟ କେହି କେହି ନୂତନ ପ୍ରୟୋଗକୁ ବରଦାସ୍ତ କରିପାରଂତି ନାହିଁ। ଅନେକ ବିଦଗ୍ଧ ପାଠକପାଠିକା ମନେକରଂତି ଯେ, ଶବ୍ଦକୁ ନେଇ ଖେଳିବାକୁ ମୁଁ ଭଲପାଏ। ସେମାନେ ସବୁବେଳେ ମୋ' ରଚନାରୁ କିଛି 'ଚମତ୍କାରିତା' ଆଶାକରଂତି। ସେମାନଂକ ଚିଠିପତ୍ର ଓ କଥାବାର୍ତ୍ତାରୁ ଜଣାଯାଏ ଯେ, ମୋ' ରଚନାରେ– ତାହା କବିତା ହେଉ ବା ଗଳ୍ପ ବା ପ୍ରବଂଧ ହେଉ, ସେମାନେ ନୂଆ ନୂଆ ପ୍ରକାଶଭଂଗୀ, ଆଶ୍ଚର୍ଯ ଉପମା, ଚିତ୍ରକଳ୍ପ, ଅନୁସଂଗ, ପ୍ରତୀକ, ଅତିକଥା (ମିଥ୍) ଓ ମୌଳରୂପକ (archetypes) ପ୍ରଭୃତିର

* ଘେଟୋ – ଅଂଧାରୀ କୋଠରିଯୁକ୍ତ ନାଜୀ ବଂଦିଶାଳା।

ଉପଯୋଗ ଖୁବ୍ ଭଲପାଆଂତି । ସେମାନେ ବହୁ କବିତାର ବାକ୍ୟାଂଶ ଓ ପଂକ୍ତିମାନ ପ୍ରାୟ ମୁଖସ୍ଥ କରିପକାଇଛଂତି । ମୋତେ ଖୁବ୍ ଆଶ୍ଚର୍ଯ୍ୟ ଲାଗେ ଯେ ସେମାନେ ଯତିହୀନ, ଗଦ୍ୟଛଂଦ ଓ ବାକ୍‌ଛଂଦରେ ଲିଖିତ କବିତାମାନ କିପରି ୪୦-୫୦ ବର୍ଷଧରି ମନେରଖିଛଂତି ଏବଂ କାହିଁକି ବା ସେ ସବୁକୁ ଦୀର୍ଘ ସମୟ ଧରି ଏତେ ଭଲପାଆଂତି ? ଆଧୁନିକ କବିତା ଯତିପାତ ଓ ସାଂଗୀତିକତା ହରାଇ ମଧ୍ୟ ପାଠକ-ପାଠିକାଂକ ଚିତ୍ତରେ ରେଖାପାତ କରିପାରେ, ଏ ଧାରଣା ମୋର ଦୃଢ଼ହୋଇଛି । ମୋର ବହୁ ଅନୁରାଗୀ ପାଠକ-ପାଠିକାଂକ ମତରେ ମୁଁ କୁଆଡ଼େ ଶବ୍ଦର ଜଣେ ଯାଦୁକର, ଭାଷାର ଇଂଦ୍ରଜାଲ ସୃଷ୍ଟି କରିବା ମୋର ବାଆଁହାତର ଖେଳ ।

ମୋର ମନେହୁଏ ଛଂଦର ସଂକୋଚନ-ପ୍ରସାରଣଶୀଳତା (elasticity) —(ଯାହା ରବର ପରି ଲଂବିପାରେ ଏବଂ କମିପାରେ), ସଦ୍ୟତା ଏବଂ ସଜୀବତାହିଁ ତାର ପ୍ରଧାନ ଶକ୍ତି । ବାକ୍‌ଛଂଦରେ ଲିଖିତ କବିତାରେ ସେ ସୁଯୋଗ ପ୍ରଚୁର । ଶବ୍ଦଚୟନ କ୍ଷେତ୍ରରେ ଦେଖାଯାଏ ଗଚ୍ଛିତ ଶବ୍ଦସବୁ କ୍ରମେ ପୁରୁଣା ଓ ଦିହଘଷିଆ ହୋଇଯାଂତି ଏବଂ ପାଠକ ମନରେ କୌଣସି ନୂତନ ରସ-ଚେତନା ସୃଷ୍ଟି କରିପାରଂତି ନାହିଁ । ଘଷରା ମୁଦ୍ରାପରି ସେମାନେ କ୍ରମେ ଅଚଳ ହୋଇଯାଂତି, ଯେପରି 'ଚଂଦ୍ରମୁଖୀ' ବା 'କୋକିଳକଂଠୀ' । ଆଜିର ପାଠକ ମନରେ କେବଳ ଏକ ସାଧାରଣ ଜବାବହିଁ ଉଦ୍ରେକ କରିଥାଏ । ପାଠକ ମନର ପ୍ରସ୍ତୁତ ଉଦ୍ଦୀପନା ଓ ଜଡ଼ତାକୁ ଭାଂଗି ନୂଆ ସ୍ପଂଦନ ସୃଷ୍ଟି କରିବାର ଶକ୍ତି ଆଧୁନିକ କବିତାର ଥିବା ଦରକାର ।

ମୋର ଅନେକ ଉପମା ଓ ଚିତ୍ରକଳ୍ପ ହୁଏତ ଏକ 'ହଠାତ୍ ବିସ୍ମୟ' ସୃଷ୍ଟିକରେ, ଯାହା ମାମୁଲି ଶବ୍ଦ ପାରଂତେ ନାହିଁ । ଅନେକ ପାଠକ ଏଇସବୁ ପଢ଼ି ଆପାତ-ବିସ୍ମୟ କଟାଇ ଗଭୀର ରସବୋଧରେ ଅନୁପ୍ରାଣିତ ହେବାର ପ୍ରମାଣ ମିଳେ । 'ଟିଣର ଜହ୍ନ', 'ଅଫିମ ରାତି', 'ଝିଲ୍‌ପରି ସ୍ୱଚ୍ଛ ନୀଳ ଦି'ପହର', 'ମଖମଲଦେହୀ ବାଘ', 'ଚର୍ବିପରି ସ୍ନିଗ୍ଧ ନିଦ', 'ପଳାସର ନିଆଁ', 'ମାଇଲିଏ କ୍ଷୁଧା', 'ଦ୍ରାବିଡ଼ ଆଖି' ଏବଂ 'ପାର୍କର ବେଂଚ' ଉପରେ ଶୋଇଥିବା ପକେଟମାରୁ ମୁହଁ ଉପରେ ଖେଳୁଥିବା 'ଜହ୍ନ ଆଲୁଅ' ସେମାନଂକ ଚିତ୍ତରେ ଯେଉଁ ରେଖା କାଟିଛି, ତାହା ଗଚ୍ଛିତ ଶବ୍ଦ ପାରଂତେ ନାହିଁ; ତେବେ କବିତା ବା ଗଳ୍ପ ବା ନାଟକ କେବଳ କ୍ଷଣିକ ଚାଂଚଲ୍ୟକୁ ପୁଂଜି କରି ବଂଚିରହିନପାରେ । ଗଭୀର ଜୀବନବୋଧ, ମାନବିକ ଆବେଦନ, ଅଂତର୍ଦ୍ୟୋତନା ଏବଂ ସମାଜମାନସର ସଠିକ୍ ବ୍ୟାଖ୍ୟା ତାର ପ୍ରଧାନ ସଂବଳ ଓ ଉପଜୀବ୍ୟ ।

କେତେକ ପୁରୁଣା ଶବ୍ଦକୁ ମଧ୍ୟ ନୂଆ ରୀତିରେ ପ୍ରୟୋଗ କରି ତା' ଭିତରେ ନୂତନ ପ୍ରାଣ-ସଂଚାର କରାଯାଇପାରେ । ଉଦାହରଣସ୍ୱରୂପ, ସେକ୍‌ସପିଅର୍

କେତେକ ଶବ୍ଦ ମାମୁଲି ଅର୍ଥରେହିଁ ପ୍ରୟୋଗ କରିଥିଲେ; ଯଥା– ଲିଜ୍ (lease), ଏକର (acre)। ସେସବୁ ତାତ୍କାଳିକ ଗଚ୍ଛିତ ଶବ୍ଦ ଆଧୁନିକ କବିତାରେ ନୂଆ ରୀତିରେ ପ୍ରୟୋଗ ହୋଇ ଅଦ୍‌ଭୁତ ତାତ୍ପର୍ଯ୍ୟ ଲାଭକରିଛି। ପାଠକ ମନରେ ପ୍ରସ୍ତୁତ ଉଦ୍ଦୀପନା ବା Stock response ବଦଳରେ ନୂଆ ପ୍ରକାରର ଆବେଦନ ଓ ରସଚେତନା ସୃଷ୍ଟିକରିପାରୁଛି; ହେଲେ, ସେସବୁର ବି ଆୟୁକାଳ ପୂରିଆସୁଛି। ମୁଁ ଚାଳିଶ ଦଶକରେ 'ପାଂଡୁଲିପି'ରେ ଯେଉଁସବୁ ତାଜା, ଶାଣିତ ଓ ରସୋଜ୍ଜ୍ୱଳ ଶବ୍ଦ ଓ ପ୍ରତୀକମାନ ପ୍ରୟୋଗ କରିଥିଲି, ଯଥା– ମିନାର, ମୈନାକ, ମାରୀଚ, ଜରଦ୍‌ଗବ ପ୍ରଭୃତି, ସେସବୁ ବି ଆଜି ପୁରୁଣା ଜଣାଯାଉଛି। ବହୁଳ ବ୍ୟବହାରହିଁ ସେଥିପାଇଁ ଦାୟୀ। ତେଣୁ ଭାଷା ଓ ଶବ୍ଦ ବହୁଦିନ ଗଚ୍ଛିତ ରହିଲେ ଜଂକ୍‌ଲାଗିଯିବାର ଭୟ। ରେଜିକି ପରି ଶବ୍ଦ ମଧ୍ୟ ବହୁଳ ବ୍ୟବହାରଫଳରେ ଘଷରା ହୋଇଯିବାର ଭୟ ଅଛି।

ଏବେ ତ ଭାଷାରେ ଘଡ଼ିକେ ଘୋଡ଼ା ଛୁଟୁଛି। ପ୍ରତି ମୁହୂର୍ତ୍ତରେ ଭାଷାରେ ଆଲ୍‌କେମିକାଲ୍. ବା ମୌଳିକ ପରିବର୍ତ୍ତନ ଘଟିଚାଲିଛି। ବହୁ ନୂଆ ନୂଆ ଶବ୍ଦ ଓ ଇଡିୟମ୍ ଭାଷା ଭିତରକୁ ପଶିଆସୁଛଂତି। ସେମାନଂକୁ ସାଦରେ ସ୍ଥାନଦିଆଯାଉଛି। ଇଂରାଜୀ ଭାଷା ଚସେରଂକ ସମୟରେ ଯାହା ଥିଲା, ତାହା ବର୍ତ୍ତମାନ ବହୁତ ବଢ଼ିଗଲାଣି। କୁହାଯାଏ, ବର୍ତ୍ତମାନ ଇଂରାଜୀ ଭାଷାର ପ୍ରାୟ ୫୦ ପ୍ରତିଶତ ଶବ୍ଦ ବିଦେଶାଗତ ବା ଅନ୍ୟ ଭାଷାମାନଂକରୁ ଆସିଛି। ଫ୍ରେଂନ୍‌ଚ, ଜର୍ମାନ୍, ସ୍ପାନିଶ୍, ଇଟାଲୀୟାନ୍, ସୁଇସ୍, ସ୍କାଂଡିନେଭିଆନ୍ ପ୍ରଭୃତି ଭାଷାମାନଂକରୁ ହଜାର ହଜାର ଶବ୍ଦ ଆମଦାନି କରାଯାଇଛି ବା ସେମାନେ ବଳେ ପଶିଆସି ଇଂରାଜୀ ଶବ୍ଦକୋଷମାନଂକରେ ଆସ୍ଥାନ ଜମାଇ ବସିଛଂତି। ଏହା ପ୍ରାଣପ୍ରାଚୁର୍ଯ୍ୟର ଲକ୍ଷଣ। ଆମ ଭାରତବର୍ଷରୁ ଏବଂ ଓଡ଼ିଶାରୁ ମଧ୍ୟ ବହୁ ଶବ୍ଦ ଯାଇ ଇଂରାଜୀ ଭାଷାର ଅଂଗୀଭୂତ ହୋଇସାରିଲେଣି। ଏହି କ୍ରମବର୍ଧମାନ ସ୍ୱାଂଗୀକରଣ ପ୍ରକ୍ରିୟା ଯୋଗୁହିଁ ଇଂରାଜୀ ଭାଷା ଆଜି ଏତେ ସମୃଦ୍ଧ ଓ ଐଶ୍ୱର୍ଯ୍ୟଶାଳୀ। ଓଡ଼ିଶାର ଜଗନ୍ନାଥ 'ଏନ୍‌ସାଇକ୍ଲୋପେଡ଼ିଆ ଅଫ୍ ବ୍ରିଟାନିକା' ମାଧ୍ୟମରେ 'ଜଗରନଟ୍' ହୋଇ ବସିଛଂତି– ଯାହା ଏକ ଅତିକାୟ ରଥାରୂଢ଼ ନୃଶଂସ ଦେବତାରୂପେ ସାଧାରଣରେ ବୁଝାଏ; ଯାହାଂକ କ୍ରୂର ରଥଚକ୍ର ବହୁ ବୈକୁଂଠଲୋଭୀ ଭକ୍ତଂକୁ ଦଳିଚକଟିଦେଇ ଚାଲିଯାଏ। ଅଳ୍ପଦିନ ତଳେ ଲଂଡନରେ ଥିବାବେଳେ ଦେଖିଲି, ଆମ ଜଗନ୍ନାଥେ ଇଂଲଂଡରେ ମାଲ୍ ବୋହୁଛଂତି। ଆମ ଭାରତରେ ବଡ଼ ବଡ଼ ଟ୍ରକ୍‌ର ନାମ ଯେପରି ଅଶୋକା ଲେ'ଲାଂଡ଼, ବ୍ରେଡ୍‌ଫୋର୍ଡ ପ୍ରଭୃତି ରଖାଯାଇଛି, ଇଂଲଂଡରେ ସେହିପରି ସବୁଠାରୁ ଭାରୀ ଓ ବିରାଟକାୟ ଟ୍ରକ୍‌ର ନାମ 'ଜଗରନଟ୍'– ଯାହା ଓଜନ୍‌ଦାର୍ ବୋଝ ବୋହିବାକୁ ସକ୍ଷମ। ରଣପୁରରେ ଟେକାମାଡ଼ରେ ନିହତ ତତ୍କାଳୀନ ପଲିଟିକାଲ୍ ଏଜେଂଟ୍. ବେଜଲ୍‌ଗେଟ୍ ମଧ୍ୟ କ୍ରିୟା ପଦରେ

ପରିଣତ ହେଲେଣି; କେହି କାହାକୁ ଟେକାପଥର ମାରି ମାରିଦେଲେ 'bazelgatted' କୁହାଯାଉଛି ।

ଏହାଛଡ଼ା ପ୍ରତି ଭାଷାରେ ବହୁ ଗାଠନିକ ଏବଂ ମୌଳିକ ପରିବର୍ତ୍ତନ ଅପରିହାର୍ଯ୍ୟ ହୋଇଉଠୁଛି । ଯେଉଁ ଭାଷାର ଜୀବନୀଶକ୍ତି ଯେତେ ବେଶି, ତାହା ସେତିକି ପରିବର୍ତ୍ତନଶୀଳ । ଆଜିକାଲି ବହୁ acronym ବିଶେଷ୍ୟ (noun) ବା ସର୍ବନାମ (pronoun)ରେ ପରିଣତ ହେଲାଣି; ଯଥା— radar, ବି.ଜେ.ବି. (କଲେଜ), ପି.ଏମ୍. (ପ୍ରଧାନମଂତ୍ରୀ), ସି.ଏମ୍ (ମୁଖ୍ୟମଂତ୍ରୀ), ଡି.ଏମ୍. (ଜିଲ୍ଲାପାଳ) ବି.ଡି.ଓ. (ବ୍ଲକ୍ ଅଫିସର) ଇତ୍ୟାଦି । କ୍ରିୟାପଦ ସବୁ ସର୍ବନାମ ଓ ବିଶେଷ୍ୟ ପାଲଟିଯାଉଛଂତି; ଯଥା— ମେକ୍‌ୱେଲ୍ (ଦର୍ଜି ଦୋକାନ), ଗେଟ୍‌ୱେଲ୍ (ଔଷଧ ଦୋକାନ), know-how, go-slow ଇତ୍ୟାଦି ଇତ୍ୟାଦି । ବିଶେଷ୍ୟ ଓ ବିଶେଷଣ ମଧ୍ୟ କ୍ରିୟାପଦରୂପେ ଏବଂ syntax ବା ବାକ୍ୟବିନ୍ୟାସ ମଧ୍ୟ ପରିବର୍ତ୍ତିତ ହୋଇ ଚାଲିଛଂତି, ବିଶେଷ କରି କବିତାରେ ।

ପିଲାଦିନେ ଯାହାସବୁ ସ୍କୁଲ-କଲେଜରେ ଶିଖିଥିଲୁ, ତାହା ଓଲଟପାଲଟ ହୋଇଯାଉଛି । ଲଂଡନରେ 'ଟାଇମ୍‌ସ' ପତ୍ରିକାରେ ଦେଖିଲି, Broadcasted ବି ଲେଖାଗଲାଣି । ପ୍ରଥମେ ଛାପା ଭୁଲ୍ ଭାବିଥିଲି; ମାତ୍ର ୨-୩ ଥର ପଢ଼ି ତା'ପରେ ଏହା ବି ଠିକ୍ ବୋଲି ଧରିନେଲି । ଆମେରିକାର ପତ୍ରପତ୍ରିକାରେ ତ ଆହୁରି ସାଂଘାତିକ ଅବସ୍ଥା । ଏସବୁ ଦେଖି ଅବାକ୍ ହୋଇଯାଇଛି ।

ହଁ, ଭାଷାରେ ଧାତବ ବିଦ୍ୟାର ହଟଚମଟ କଥା କହୁଥିଲି— ଚାହୁଁ ଚାହୁଁ କିମିଆ ବଳରେ ଲୁହା ସୁନା ହୋଇଯାଉଛି । ପଚାଶ ବର୍ଷ ତଳେ ଏପରି ନଥିଲା । ଶବ୍ଦ ସବୁ ବଦଳୁଥିଲେ ସତ; କିଂତୁ ଖୁବ୍ ଧୀରେ ଧୀରେ ଭାବିଚିଂତି ବଦଳାଯାଉଥିଲା ।

ଶବ୍ଦକୁ ନେଇ ଖେଳିବାରେ ମୋର ଖୁବ୍ ଆନଂଦ । ମୁଁ ସେମାନଂକୁ ଭାଂଗିପାରେ, ଯୋଡ଼ିପାରେ; ଖଂଡ ଖଂଡ କରିଦେଇପାରେ; ପୁଣି ଜୀବନ ସଂଚାର କରିପାରେ । ''ଶ୍ମଶାନିତ ଭଂଗା ନୂଆଖାଲି'' ପୁଣି ନବଜୀବନ ପାଇ ହସିଉଠିପାରେ ('ପାଂଡୁଲିପି' —ଅଳକା ସାନ୍ୟାଲ୍) । ବେଳେବେଳେ ଭାବେ, ମୁଁ ଯେପରି ଏକ ପ୍ରଚଂଡ ବାଜିକର । ମୁଁ ଶବ୍ଦଂକୁ ନେଇ କ'ଣ କରିପାରେ ଏବଂ କ'ଣ ନ କରିପାରେ, ତାହା ମୁଁ ନିଜେ ବି ଜାଣେନାହିଁ ।

କେତେକ ବଂଧୁ କହଂତି ଏବେ ମୋ' କବିତାରେ ଠାଣି ବେଶି । କବିତାରେ ଯେ ପ୍ରସାଦଗୁଣ ରହିବ, ଏହା ତ ଅସ୍ୱୀକାର କରିହେବନାହିଁ— ହେଉ ତାହା ଆଧୁନିକ କବିତା ଅଥବା ପାରଂପରୀଣ କବିତା । କବିତା ଯଦି କବିତା ନ ହୁଏ, ତେବେ କ'ଣ ପାନଦୋକାନ ଜାରଗନ୍ ହେବ ? କବିତା ଯେତେ ସାଧାରଣ ହେଲେ ମଧ୍ୟ ସେଥିରେ କିଛି 'ଅସାଧାରଣ' ରହିବ । କବିତା ଯେତେ ବାକ୍‌ଧର୍ମୀ

ବା ଗଦ୍ୟଧର୍ମୀ ହେଉନା କାହିଁକି, ତା'ର କାବ୍ୟିକ ସୌଂଦର୍ଯ୍ୟ ନିଶ୍ଚୟ ଅବ୍ୟାହତ ରଖିବାକୁ ପଡ଼ିବ। କବିତା ତ ଯୁଧିଷ୍ଠିଂକ ରଥ। ସେ ଭୂଇଁର ଖୁବ୍ ନିକଟରେ ଥିଲେ ମଧ୍ୟ ଭୂଇଁରୁ ଆଗୁଂଳେ ଉପରେ ଚାଲିବା ତା'ର ସ୍ୱଭାବ। ଆଧୁନିକ କବିତାରେ ଗଦ୍ୟର ପରିଚ୍ଛନ୍ନତା ସଂଗେ କବିତାର ଆବେଗସଂଚାରୀ ସ୍ୱଭାବର ସଂମିଶ୍ରଣ ଓ ସମନ୍ୱୟ ନ ଘଟିଲେ ତାହା କବିତାହିଁ ହେବ ନାହିଁ– ଆଧୁନିକ ହେବା ତ ଦୂରର କଥା। ଅନେକ ଆଧୁନିକ କବି ବାହାଦୁରି ନିଅଂତି ଯେ ସେମାନେ କାବ୍ୟିକତାର ପାଖ ମାଡ଼ଂତି ନାହିଁ; ତେବେ ସେମାନେ ନିଜକୁ କବି କାହିଁକି କହଂତି? ବରଂ ଭାଷା-କାରିଗର ବା ପୋଏଟ୍ରି ଟେକ୍ନୋଲଜିଷ୍ଟ୍ ବା ସେଇଭଳି କିଛି କହିଲେ ତ ଭଲ ହୁଅଂତା! ଆବେଗ ଅଭିଜ୍ଞତାରେ ରୂପାଂତରିତ ହେଲେହିଁ କବିତା ହୁଏ। ନିଛକ ଗଦ୍ୟ ଓ ରସୋତ୍ତୀର୍ଣ୍ଣ କବିତା ମଧ୍ୟରେ ତାହାହିଁ ପାର୍ଥକ୍ୟର ପରିଖା; ପୁଣି ସଂଯୋଜନାର ସେତୁ।

ଆଧୁନିକ କବିତା ଅନେକ କିଛି ହରାଇଛି। ପାରଂପରୀଣ କାବ୍ୟର ବର୍ଣ୍ଣାଢ୍ୟ ଉତ୍ତରାଧିକାର ତା'ର ଆଉ ନାହିଁ। ସେ ହରାଇଛି ଯତି, ଯମକ, ଅଳଂକାର, ଅନୁପ୍ରାସ, ଶୃଙ୍ଖଳା। ଆତ୍ମିକ ଦିଗରୁ ସେ ହରାଇଛି ଭଗବଦ୍‌ବିଶ୍ୱାସ, ନୈସର୍ଗିକ କଳ୍ପନାଜଳ୍ପନା ଏବଂ ଯାଦୁବିଶ୍ୱାସ ଏବଂ ସର୍ବୋପରି ହରାଇଛି ସାଂଗୀତିକତା। ଏସବୁ ହରାଇ ସେ ଯାହା ପାଇଛି, ତାହା ହେଉଛି ଅଖଂଡ ସ୍ୱାଧୀନତା, ପ୍ରାଣୀନତା, ସଚେତନତା ଏବଂ ଚେତନାର ବିଚ୍ଛେଦ ଭିତରେ ଏକ ବହୁଧା-ବିଭକ୍ତ ବ୍ୟକ୍ତିତାର ସମୀକରଣ। କିଂତୁ ଅହରହ ଆତ୍ମନିର୍ବାସନ ଭିତରେ ମଧ୍ୟ ଆଧୁନିକ କବି ଏପରି କିଛି ସଂପୂର୍ଣ୍ଣତାର ସଂଧାନ ପାଇଛି, ଯାହା ଭଗ୍ନାଂଶ ହୋଇ ବି ପୂର୍ଣ୍ଣ, ଯେଉଁ ପୂର୍ଣ୍ଣରୁ ପୂର୍ଣ୍ଣ କାଢ଼ିନେଲେ ଅବଶିଷ୍ଟ ରହେ କେବଳ ପୂର୍ଣ୍ଣ। କାରଣ ସେ ପୂର୍ଣ୍ଣର ବିଶ୍ୱସ୍ତ ପ୍ରତିଫଳନ କରିପାରେ ତା'ର ଏକ କ୍ଷୁଦ୍ର ଭଗ୍ନାଂଶ— ଏକ ମୁହୂର୍ତ୍ତ ମଧ୍ୟ ନିଃସମୟକୁ, ଚିରଂତନକୁ ପ୍ରତିବିଂବିତ କରିପାରେ। କାରଣ ତାହା ଏକ ବିଚ୍ଛିନ୍ନ ଏକକ ନୁହେଁ, ମହାକାଳର ପ୍ରତୀକ ଓ ପ୍ରତିନିଧି, (Flitting image of time)।

ମାତ୍ର ଏହା ହେବ କିପରି? ସାଧାରଣ କବିତା ଏହା କରିପାରିବ କି? ସାଧାରଣ ଶବ୍ଦ, ମାମୁଲି ଭାଷା ଏଇ ପ୍ରାଣୋଜ୍ଜ୍ୱଳ ମୁହୂର୍ତ୍ତର ଦ୍ୟୋତନା ବହନ କରିପାରିବେ କି? ସେଥିପାଇଁ ଲୋଡ଼ା ନୂତନ ଶବ୍ଦ, ନୂତନ ବ୍ୟଂଜନା, ନୂତନ ଧ୍ୱନି, ନୂତନ ଚିତ୍ରକଳ୍ପ ଓ ପ୍ରତୀକ, ଯାହା ଆଭିଧାନିକ ଅର୍ଥର ଅତିରିକ୍ତ ଅନ୍ୟ ଏକ ଜଗତ୍‌ର ଦ୍ୱାର ଉଦ୍‌ଘାଟନ କରିପାରିବେ —ପ୍ରଜ୍ଞାକୁ ଟପି ସ୍ୱପ୍ନର ରହସ୍ୟଲୋକକୁ ପାଠକଂକୁ ନେଇଯିବେ ଏବଂ ବୁଦ୍ଧିର ପରିଚିତ ସୀମାରେଖା ଟପି ମଗ୍ନଚୈତନ୍ୟର ଅଜ୍ଞାତ ରାଜ୍ୟକୁ ପାଠକକୁ ଉତ୍ତୀର୍ଣ୍ଣ କରାଇ ନେଇପାରିବେ। ତେଣୁ କବିତାରୁ ପ୍ରସାଦଗୁଣ, ସୌଂଦର୍ଯ୍ୟ ହଟିଯିବା ପ୍ରଶ୍ନ ଉଠୁନାହିଁ।

ଆଗରୁ କହିଛି, ଆଧୁନିକ କବିତା ଅନେକ କିଛି ହରାଇଛି– ହରାଇଛି ସ୍ୱର, ରାଗ, ତାଳମାନ, ଅଳଂକାର, ବଂଶଗତ ବୈଭବ, ଗରିମା ସବୁକିଛି। ତାକୁ ଦାଂଡର ଭିକାରୁଣୀ କରିଦେବା କୌଣସି ପିତା ଚାହେଁନାହିଁ। ସେ ଶୁଭ୍ର ନିରାଭରଣ ଶୁଚିତାରେ ଅଳ୍ପ କେତୋଟି ଗହଣା ପିଂଧି ତା' କକ୍ଷରେ ଛିଡ଼ାହୋଇଛି– ନବୋଦିତା ଉଷା ପରି। ମୁଁ ତାକୁ କକ୍ଷଚ୍ୟୁତ କରିପାରିବି ନାହିଁ; ତା'ଠୁ ଆଉ କିଛି କାଢ଼ିନେବିନାହିଁ। କୌଣସି ପିତା ଏହା କରିନପାରେ।

ପ୍ରତିଟି ଶବ୍ଦର ଏକ ରଂଗ ଅଛି, ଗଂଧ ଅଛି ଏବଂ ସଂଭବତଃ ସ୍ପର୍ଶ ବି ଅଛି; ଯାହା ସ୍ପର୍ଶକାତର ଅଂଗୁଳିରେ ଛୁଆଁଯାଇପାରେ, ଅନୁଭବ କରାଯାଇପାରେ। ଏପରି ସ୍ଥଳେ ଶବ୍ଦମାନଂକୁ ଶ୍ରୁତିଲେଖକ ବା ଷ୍ଟେନୋଗ୍ରାଫରମାନଂଙ୍କ ଉପରେ ଛାଡ଼ି-ଦିଆଯିବ କିମିତି? ଶୁଣିଛି, ଅନେକ କବି ଓ ଲେଖକ ଷ୍ଟେନୋଗ୍ରାଫର ଲଗାଇ ବା ଶ୍ରୁତଲିଖନ ଡାକି କବିତା କିଂବା ଅନ୍ୟାନ୍ୟ ସାହିତ୍ୟ ରଚନା କରିଥାଂତି– ମୋର ଈର୍ଷା ହୁଏ।

କୌଣସି ଲେଖା ପ୍ରେସ୍‌କୁ ବା ପତ୍ରପତ୍ରିକାକୁ ପଠାଇବା ପର୍ଯ୍ୟଂତ ମୁଁ ଅନବରତ ବଦଳାଇଚାଲିଥାଏ। ଏଟା କାଟ, ସେଟା ଯୋଡ଼, ସମଗ୍ର ପଂକ୍ତି ବା ପୃଷ୍ଠାର ପୁନଃଲେଖନ– ଇଏ ମୋର ଏକ ଚିରଂତନ ଅଭ୍ୟାସ ବା ରୋଗ। ତେଣୁ କିଛି ଲେଖିବା ଅର୍ଥ ଭୀଷଣ ଅଶାଂତି ଓ ଅସ୍ଥିରତା ଭିତରେ ଅନବରତ ଛଟପଟ ହେବା। ରାତିରେ ଶୋଇବାବେଳେ ମଧ୍ୟ ସେଥିରୁ ତ୍ରାହି ମିଳେନାହିଁ। ବେଳେବେଳେ ଭାବେ, ଲେଖକ ହେବା ଏକ ଅଭିଶାପ। ଏଥିରେ ଶାଂତି କାହିଁ, ଆନଂଦ କାହିଁ? ଏ ଯନ୍ତ୍ରଣାରି ହାତରୁ ନିସ୍ତାର ବା କାହିଁ?

ଲେଖା ଛାପା ନହେଲାଯାଏ କିଛି ନୂଆ ଚିଂତାର ଅନୁପ୍ରବେଶ କିଂବା ଶବ୍ଦ ବା ବାକ୍ୟ ବଦଳାଇବାର ତାଗିଦ ଲେଖକକୁ ଶାଂତିରେ ଶୁଆଇଦେବ ନାହିଁ; ଖାଇବାବେଳେ ବି ସେଇ ଦୁର୍ଭାବନା, ପୁଂଜ ପୁଂଜ ଅଶାଂତି, ଅନ୍ୟମନସ୍କତା।

**କେତେକ ଅଂତରଂଗ ମୁହୂର୍ତ୍ତ–**

ସାହିତ୍ୟକର୍ମ ଛଡ଼ା ମୋ' ଜୀବନରେ ବହୁ ଘଟଣା ଓ ବହୁ ପର୍ଯ୍ୟାୟ ରହିଛି। ଓଡ଼ିଶାର ପଲ୍ଲୀଜୀବନ ଏବଂ ଓଡ଼ିଶା ପଲ୍ଲୀର ଶ୍ୟାମଳଶ୍ରୀ ଓ ପଲ୍ଲୀ ପ୍ରକୃତି ସଂଗେ ଅଂତରଂଗ ବଂଧୁତା ମୋ ଜୀବନର ପ୍ରସ୍ତୁତି ପର୍ବରେ ବହୁତ ଉପାଦାନ ଯୋଗାଇଛି। ବାଲ୍ୟବୟସରୁ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଭୂମିକା ନେବା ଏବଂ ସେଥିପାଇଁ ବହୁ ବାଧାବିଘ୍ନ ସହିବା ଓ ଦୁଃଖ-ନିର୍ଯ୍ୟାତନାର ମୁକାବିଲା କରିବା ମୋ' ଜୀବନରେ ବହୁବାର ଘଟିଛି। ଏହି ପ୍ରକ୍ରିୟାରେ ମୋ' ଜୀବନର ମୋଡ଼ ବଦଳିଯାଇଛି। ଏହାଛଡ଼ା ଗଡ଼ଜାତ ପ୍ରଜା-ଆଂଦୋଳନ, ଶ୍ରମିକ, କୃଷକ ଓ ଛାତ୍ର-ଆଂଦୋଳନରେ କଲିକତା ଓ ଓଡ଼ିଶାରେ ବନ୍ଦୀ ଜୀବନ ଯାପନ କରିବାକୁ ପଡ଼ିଛି। କଂଗ୍ରେସ ଓ ସ୍ୱାଧୀନତା ସଂଗ୍ରାମରେ ଗୁରୁତ୍ୱପୂର୍ଣ୍ଣ

ଭୂମିକା ଗ୍ରହଣକରିଛି। ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଦସ୍ୟ ଥିବାବେଳେ ୧୯୩୭ରୁ ୧୯୪୨ ମସିହା ପର୍ଯ୍ୟଂତ ଛାତ୍ର-ସଂଗ୍ରାମରେ ଓ ଅନ୍ୟାନ୍ୟ ଗଣ-ଆଂଦୋଳନରେ ନେତୃତ୍ୱ ନେଇ ଜେଲ୍ ଜୋରିମାନା ଆଦି ସଜା ଭୋଗିବାକୁ ପଡ଼ିଛି। ତା' ଆଗରୁ କଲିକତାର ସିଟି କଲେଜରେ ପଢୁଥିବାବେଳେ ମଧ୍ୟ ୨ ମାସରୁ ଅଧିକ କାଳ ଜେଲ୍ ବରଣ କରିବାକୁ ପଡ଼ିଛି ଆଇ.ଏ. ପରୀକ୍ଷା ଦେବାର ଅବ୍ୟବହିତ ପୂର୍ବରୁ। ଓଡ଼ିଶାରେ ଛାତ୍ର-ଆଂଦୋଳନରେ 'ଛାତ୍ର' ପତ୍ରିକା ପ୍ରକାଶ କରିଥିବା ଅପରାଧରେ ବିଶ୍ୱନାଥ ଦାସ ସରକାର ମୋ ବିରୁଦ୍ଧରେ ପ୍ରଦେଶ କଂଗ୍ରେସ କମିଟି ମଧ୍ୟସ୍ଥତାରେ ହୋଇଥିବା ମିଳାମିଶା ସର୍ତ୍ତ ଭଂଗ କରି ପ୍ରେସ୍ ଆକ୍ଟରେ ମକଦ୍ଦମା ଚାଲୁରଖଂତି। ବି.ଏ. ପରୀକ୍ଷା ପୂର୍ବରୁ ମୋତେ ୨୫୦ ଟଂକା ଜୋରିମାନା କିଂବା ୨ ମାସ ସଶ୍ରମ କାରାବାସ ସଜା ମିଳେ। ଏହାର ପ୍ରତିବାଦ ସ୍ୱରୂପ, ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟୀର ତତ୍କାଳୀନ ସଭାପତି ପଂଡିତ ନୀଳକଂଠ ଦାସ ଏବଂ ସାଧାରଣ ସଂପାଦକ ପଂଡିତ ଗୋଦାବରୀଶ ମିଶ୍ର ଉଭୟେ ସୁରଡ଼ା ପି.ସି.ସି. (P.C.C.) ମିଟିଂରେ ବିଶ୍ୱନାଥ ଦାସଂକ ସରକାରର ଅନ୍ୟ କେତେକ କାର୍ଯ୍ୟର ପ୍ରତିବାଦ ସହିତ ଏହାର ବିରୋଧ କରି ଇସ୍ତଫା ଦିଅଂତି। ପୁସ୍ତକ ବାଜ୍ୟାପ୍ତି ମଧ୍ୟ ଦୁଇ-ଦୁଇଥର ହୋଇଛି।

କଲିକତାରେ ଦୀର୍ଘ ୨୦ ବର୍ଷ ଚାକିରି ଜୀବନ ଭିତରେ ପ୍ରବାସୀ ଓଡ଼ିଆ ଆଂଦୋଳନରେ ଅଗ୍ରଭୂମିକା ନେବାକୁ ପଡ଼େ। ୧୯୪୩ ମସିହାରେ ସମଗ୍ର ବଂଗ ଦେଶରେ ଭାରତର ସର୍ବବୃହତ୍ ମନୁଷ୍ୟକୃତ ଦୁର୍ଭିକ୍ଷ ପଡ଼େ। ଏହି ସମୟରେ ମୋତେ ବହୁ ରିଲିଫ୍ କାର୍ଯ୍ୟ ସଂଗଠନ କରିବାକୁ ପଡେ। ଏହାପରେ ମାସାଧିକ କାଳ କଲିକତାରେ ଜାପାନୀ ବୋମାମାଡ଼ ସମୟରେ କେଶୋରାମ କଟନ୍ ମିଲ୍ ଏବଂ ଗାର୍ଡେନ୍‌ରିଚ୍ ବା ମାଟିଆବୁରୁଜ ଅଂଚଳରେ ବହୁ ପ୍ରତିରକ୍ଷାମୂଳକ କାର୍ଯ୍ୟ ସଂଗଠନ କରିବାକୁ ପଡ଼େ। ଏହାପରେ ଆସେ ଦେଶର ସବୁଠାରୁ ବଡ଼ ସାଂପ୍ରଦାୟିକ ହଣାକଟା ଓ ଦଂଗାହଂଗାମା। କଲିକତାରେ ସଂଗଠିତ ସାଂପ୍ରଦାୟିକ ଦଂଗା ସମଗ୍ର ଭାରତବର୍ଷରେ ବୃହତ୍ତମ ବୋଲି ଧରାଯାଇଥିଲା। ହଜାର ହଜାର ହିଂଦୁ ଓ ମୁସଲମାନ ଏହି ଦଂଗାରେ ପ୍ରାଣହରାଂତି। ଓଡ଼ିଶାର ପୂର୍ବତନ 'ପ୍ରଧାନମଂତ୍ରୀ' ଶ୍ରୀ ବିଶ୍ୱନାଥ ଦାସଂକୁ କଲିକତା ଡକାଇ ରିଲିଫ୍ କାର୍ଯ୍ୟ ଆରଂଭ କରୁଁ। ଏ ବିଷୟରେ ମୋର ପ୍ରଧାନ ସହାୟକ ଓ ସହକର୍ମୀ ଥିଲେ ନୀଳମଣି ରାଉତରାୟ, ସ୍ୱର୍ଗତ ହୃଦାନଂଦ ମଲ୍ଲିକ ଓ ଭୂତପୂର୍ବ ଏମ୍.ଏଲ୍.ଏ. ଶ୍ରୀ ରାମଚଂଦ୍ର ପଟ୍ଟନାୟକ।

ଏହାପରେ ଗାଂଧିଜୀ ଶାଂତି ସ୍ଥାପନ ପାଇଁ କଲିକତା ଆସଂତି। ବେଲିଆଘାଟଠାରେ ଆରଂଭହୁଏ ତାଂକର ଐତିହାସିକ ଅନଶନ। ଗାଂଧିଜୀଂକୁ ବହୁ ସଭା ସମିତିକୁ ଆମ ମିଲ୍‌ର କାଇଜର୍ ଗାଡ଼ିରେ ନେବାର ଓ ଆଣି ଛାଡ଼ିଦେବାର ଦାୟିତ୍ୱ ଅବିଭକ୍ତ ବଂଗଳାର ପ୍ରଧାନମଂତ୍ରୀ ସୁରାବର୍ଦ୍ଦି ସାହେବ

ମୋତେ ଦେଇଥିଲେ। ମୁଁ ସେତେବେଳେ ମାଟିଆବୁରୁଜରେ କେଶୋରାମ କଟନ୍ ମିଲ୍‌ର ମୁଖ୍ୟ ଶ୍ରମିକ କଲ୍ୟାଣ ଅଫିସର୍ (Labour Welfare Officer) ରୂପେ କାର୍ଯ୍ୟ କରୁଥାଏ। ମୁଁ କେଶୋରାମ କଟନ୍ ମିଲ୍‌ର ଷ୍ଟାଫ୍ କ୍ୱାଟର୍‌ରେ ସପରିବାର ରହୁଥାଏ। ସେଇ ଅବସରରେ ପ୍ରାୟ ୨ ସପ୍ତାହକାଳ ମୁଁ ଗାଂଧିଜୀଙ୍କ ନିକଟ ସଂପର୍କରେ ଆସିଥିଲି। ମୋର ଗୋଟିଏ କବିତା 'ଗାଂଧିଜୀ ଗହଣେ' ଏହାର ସ୍ମୃତି ବହନ କରେ ('ସ୍ୱଗତ')। ଏହାପରେ ଗାଂଧିଜୀ ନୂଆଖାଲି ଯାଆଂତି ଏବଂ ସେଠାରୁ ଫେରି ଅଳ୍ପଦିନ ପରେ ଦିଲ୍ଲୀଠାରେ ସହିଦ ହୁଅଂତି। ଏହାପରେ ଆରଂଭ ହୁଏ ଦେଶ-ବିଭାଜନ ଏବଂ ସ୍ୱାଧୀନତା ପର୍ବ। କୋଟି କୋଟି ଶରଣାର୍ଥୀ ଭାରତରୁ ପାକିସ୍ତାନ ପଳାଇଯାଆଂତି ଏବଂ ପାକିସ୍ତାନରୁ ଭାରତକୁ ଛୁଟିଆସଂତି ଲକ୍ଷ ଲକ୍ଷ କ୍ଷୁଧାର୍ତ୍ତ ଏବଂ ବାସ୍ତୁହରା ଶରଣାର୍ଥୀର ସ୍ରୋତ। ଭାରତ ସୀମାଂତରେ ସେମାନଂକର ଥଇଥାନ କରିବାପାଇଁ କେଶୋରାମ କଟନ୍ ମିଲ୍ ତରଫରୁ ବନଗାଁ ପ୍ରଭୃତିରେ କେତୋଟି ଆଶ୍ରୟ ଶିବିର ଖୋଲାଯାଏ। ଏହି ଶିବିରର ଦାୟିତ୍ୱ କିଛିଦିନ ମୋତେ ନେବାକୁ ପଡ଼ିଥିଲା। ଏଠାରେ ଲକ୍ଷ ଲକ୍ଷ ଭୟାତୁର ଆଶ୍ରୟପ୍ରାର୍ଥୀଂକର କରୁଣ ଆଖିର ଦୃଶ୍ୟ ମୋତେ ଏବେ ମଧ କିଛିଟା ଅଭିଭୂତ କରିପକାଏ। ସ୍ୱାଧୀନତା ପରେ ବହୁ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ କରିବାକୁ ପଡ଼େ। କଲିକତାରେ ଶ୍ରମିକ ସଂଗଠନ, ଅଷ୍ଟ୍ରେଲିଆ ଓ ନିଉଜିଲାଂଡଠାରେ ଅନୁଷ୍ଠିତ ଆଂତର୍ଜାତିକ ଶ୍ରମକଲ୍ୟାଣ ସମ୍ମିଳନୀରେ ଭାରତ ସରକାରଂକର ପ୍ରତିନିଧି ଭାବରେ (ପ୍ରାୟ ୨ ମାସ) ଅଂଶ ଗ୍ରହଣ ଏକ ବିଶେଷ ଘଟଣା ରୂପେ ଉଲ୍ଲେଖ କରାଯାଇପାରେ। ୧୯୫୫ ମସିହାରେ ଆମେରିକାର ହାର୍ଭାଡ ୟୁନିଭରସିଟି ଆଂତର୍ଜାତିକ କଳାବିଜ୍ଞାନ ସେମିନାର୍‌ରେ ସେମାନଂକ ଆମଂତ୍ରଣକ୍ରମେ ଅଂଶଗ୍ରହଣ ଏ ସମୟର ଆଉ ଏକ ବିଶେଷ ଘଟଣା। ମୁଁ ଏଇ ସମ୍ମିଳନୀ ଉଦ୍‌ଘାଟନ କରିଥିଲି ଏବଂ ପ୍ରାୟ ୮ ସପ୍ତାହକାଳ ଏଥିରେ ଭାଗନେଇଥିଲି। ମୋର ଅନ୍ୟତମ ସହକର୍ମୀ ଥିଲେ ହାର୍ଭାଡ୍‌ର ଆସୋସିଏଟ୍ ପ୍ରଫେସର୍ ଡକ୍ଟର ହେନେରୀ କିସିଂଜର (ସେ ପରେ ଆମେରିକାର ପ୍ରତିରକ୍ଷା ସଚିବ ହୋଇଥିଲେ ଏବଂ ଶାଂତି ପାଇଁ ନୋବେଲ୍ ପୁରସ୍କାର ମଧ ପାଇଥିଲେ)। ସେଠାରୁ ଫେରି ଜିନିଭାରେ I.L.O. (ଆଂତର୍ଜାତିକ ଶ୍ରମିକ ସଂଗଠନ)ରେ କିଛିଦିନ ଶ୍ରମମଂଗଳ କାର୍ଯ୍ୟାବଳୀ ଅଧୟନ କରିଥିଲି। ଏହାଛଡ଼ା କଲିକତାରେ ବହୁ ସାହିତ୍ୟ ସଂସ୍କୃତି ବିଷୟକ ସମ୍ମିଳନୀମାନ ମୋ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା। ଏସବୁର ପ୍ରସ୍ତୁତି ଦାୟିତ୍ୱ ମୋ ଉପରେ ନ୍ୟସ୍ତଥିଲା। ତାହା ମଧରେ ଉତ୍କଳ-ବଂଗ ସାହିତ୍ୟ ସମ୍ମିଳନୀ ଅନ୍ୟତମ। ଏହାଛଡ଼ା ପ୍ରବାସୀ ଓଡ଼ିଆ ସମ୍ମିଳନୀମାନ ମଧ ଅନୁଷ୍ଠିତ ହେଉଥିଲା। ମୁଁ ଅଭ୍ୟର୍ଥନା ସମିତିର ସଭାପତି ରୂପେ ଏସବୁର ଦାୟିତ୍ୱ ବହନକରୁଥିଲି।

ପୁଣି ୧୯୬୨ ମସିହାରେ ଷ୍ଟଡିମିଶନ୍ ଇଂଟରନ୍ୟାସନାଲ୍ ଅଫ୍ ଆମେରିକାର

ଆମଂତ୍ରଣ ଓ ଆନୁକୂଲ୍ୟରେ ଏକ ବକ୍ତୃତା-ଗସ୍ତରେ ଆମେରିକା ଭ୍ରମଣ କରିବାର ସୁଯୋଗ ମିଳିଥିଲା। ସମଗ୍ର ଆମେରିକାର ବିଭିନ୍ନ ଷ୍ଟେଟ୍‌ର ବିଶ୍ୱବିଦ୍ୟାଳୟ ମାନଂକରେ ଓ ବଡ଼ ବଡ଼ ସଂବାଦପତ୍ରମାନଂକଦ୍ୱାରା ଆୟୋଜିତ ସଭାମାନଂକରେ ସେତେବେଳେ ଭାରତରେ ଖୁବ୍ ଜୋରସୋର୍‌ରେ ଲାଗିଥିବା ଚୀନ-ଭାରତ ଲଢ଼େଇ ସଂବଂଧରେ ଏବଂ ଭାରତୀୟ ସଂସ୍କୃତି ଓ ସାହିତ୍ୟ ଉପରେ ଭାଷଣମାନ ଦେବାର ସୁଯୋଗ ଘଟିଥିଲା (ଏହା ଅବଶ୍ୟ କଲିକତା ଛାଡ଼ି ଓଡ଼ିଶା ଫେରି ଆସିବାର ଏକମାସ ପରର ଘଟଣା)। କଲିକତାରେ ଥିବାବେଳେ ବିଶିଷ୍ଟ ବଂଗୀୟ ସାହିତ୍ୟିକ ସ୍ୱର୍ଗତ ତାରାଶଂକର ବଂଦୋପାଧ୍ୟାୟ, ସ୍ୱର୍ଗତ ପ୍ରେମେଂଦ୍ର ମିତ୍ର ଏବଂ ଚିତ୍ରଶିଳ୍ପୀ ଶ୍ରୀଯୁକ୍ତ ଯାମିନୀ ରାୟ, କବି ଓ ଔପନ୍ୟାସିକ ଶ୍ରୀ ବୁଦ୍ଧଦେବ ବସୁ ଏବଂ ସେତେବେଳେ ନୂଆ ରାଜନୀତି କରୁଥିବା ଶ୍ରୀ ଜ୍ୟୋତି ବସୁ (ବର୍ତ୍ତମାନ ପଶ୍ଚିମବଂଗର ମୁଖ୍ୟମଂତ୍ରୀ) ପ୍ରଭୃତିଂକ ସହିତ ଘନିଷ୍ଠ ସାହଚର୍ଯରେ ଆସିଥିଲି। ଏହାଛଡ଼ା ଡକ୍ଟର ସୁନୀତି କୁମାର ଚାଟାର୍ଜୀ, ଡ. କାଳିଦାସ ନାଗ, ଶ୍ରୀ ହୁମାୟୂନ୍ କବୀର୍, ଶ୍ରୀ ବିଷ୍ଣୁ ଦେ ପ୍ରଭୃତିଂକ ସହିତ ଅଂତରଂଗ ସଂପର୍କ ସ୍ଥାପିତ ହୋଇଥିଲା। ଏହା ପୂର୍ବରୁ ଅବଶ୍ୟ କଲିକତା ସିଟି କଲେଜରେ ଛାତ୍ର ଥିବାବେଳେ ରବୀଂଦ୍ରନାଥଂକ ସହିତ ତାଂକର ଜୋରାଶାଂକ ବାସଭବନରେ ୨-୩ ଥର ସାକ୍ଷାତ ଓ ଆଲୋଚନା କରିବାର ସୌଭାଗ୍ୟ ମିଳିଥିଲା। ଔପନ୍ୟାସିକ ଶରତ୍ ଚାଟାର୍ଜି ଏବଂ ବିପ୍ଳବୀ ବାରିନ୍ ଘୋଷଂକ ସହିତ ମଧ୍ୟ ଅନେକ ଥର ସାକ୍ଷାତ ଓ ଆଳାପ ଆଲୋଚନା ହୋଇଥିଲା। କେଶୋରାମ୍ କଟନ୍ ମିଲ୍‌ର ବହୁ ଘଟଣା ମଧ୍ୟ ଦୃଢ଼ ରେଖା କାଟି ମନରେ ରହିଛି। ସେଠାରେ ଶ୍ରମିକ ପରିସ୍ଥିତି ଓ ଶ୍ରମିକମାନଂକ ଉପରେ ନାନାପ୍ରକାର ପ୍ରକାଶ୍ୟ ଓ ପରୋକ୍ଷ ଜୁଲମ୍ ଶେଷରେ ମୋତେ ଏକ୍‌ଜିକ୍ୟୁଟିଭ୍ ଅଫିସର୍ ପଦରୁ ଇସ୍ତଫା ଦେଇ ଓଡ଼ିଶା ଫେରିଆସିବାକୁ ବାଧ୍ୟକରେ।

୧୯୬୨ ମସିହାରେ ମୁଁ ଓଡ଼ିଶା ଫେରିଆସେ। 'ଦିଗଂତ' ପତ୍ରିକା ପ୍ରକାଶନ ଏବଂ ବହୁ ଗବେଷଣା କାର୍ଯରେ ଅଧ୍ୟୟନ ଏବଂ ଅଭିନିବେଶ, ଓଡ଼ିଶା ବୋର୍ଡ ମିଲ୍‌ସ ସ୍ଥାପନ ଏବଂ ତତ୍କାଳୀନ ମୁଖ୍ୟମଂତ୍ରୀ ପାଟଣା ମହାରାଜାଂକ ସରକାରଂକର ଆକ୍ରୋଶ ଫଳରେ ମିଲ୍‌ର ପତନ ଏ ସମୟର ତିକ୍ତ ଅନୁଭୂତି ମଧ୍ୟରୁ ଅନ୍ୟତମ। ଜଗତପୁର ଇଂଡଷ୍ଟ୍ରିଆଲ୍ ଷ୍ଟେଟ୍ ମଧ୍ୟରେ ସ୍ଥାପିତ ପ୍ରାୟ ୧୦ ଲକ୍ଷ ଟଂକା ମୂଲ୍ୟର ଏହି ମିଲ୍‌ଟି ଏବେ ମଧ୍ୟ ରହିଛି ଏବଂ ଏହାର ମେସିନ୍ ସବୁ ସେଠାରେ ଖତ ଖାଉଛି। ବାଜି ରାଉତର ପ୍ରତିଶୋଧ ମୋ ଉପରେ ଓଡ଼ିଶାର ରାଜାରାଜୁଡ଼ାମାନେ ଏପରିଭାବେ ନେବେ ବୋଲି ମୁଁ କେବେ ଆଶା କରିନଥିଲି। ଏହା ମୋ ଜୀବନରେ ଏକ ମସ୍ତ ଦୁର୍ଘଟଣା। ସହିଦ ବାଜିରାଉତର ଶବକୁ ପ୍ରାୟ ଏକଲକ୍ଷ ଲୋକଂକ ପଟୁଆରରେ ନେଇ ଆମେ କଟକ ଖାନନଗର ମଶାଣିରେ ୧୯୩୮ ମସିହା, ଅକ୍ଟୋବର ମାସ ୧୧ ତାରିଖ ରାତିରେ ପୋଡ଼ିଦେଇ

ଆସିଥିଲୁ। ମାତ୍ର ବାଜି ରାଉତ ୪୦ ବର୍ଷ ପରେ ସ୍ୱାଧୀନ ଭାରତରେ ମୋତେ ଅର୍ଥନୈତିକ କ୍ଷେତ୍ରରେ ଏପରି 'ଜୀବଂତ ସହିଦ' ବନାଇଦେବ ବୋଲି ମୁଁ କେବେହେଲେ କଳ୍ପନା କରିନଥିଲି।

୧୯୭୮ ମସିହାରୁ ୩ ବର୍ଷ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଦାୟିତ୍ୱ ନେବାକୁ ପଡ଼େ। ଓଡ଼ିଶାର କୃତୀ ଲେଖକ, କଳାକାର ଯଥା – ଚିତ୍ରଶିଳ୍ପୀ, ଭାସ୍କର, ଅଭିନେତା, ମଂଚଶିଳ୍ପୀ, ସଂଗୀତ-ଶିଳ୍ପୀ ତଥା କୃତୀ କ୍ରୀଡ଼ାବିତ୍‌ମାନଂକୁ ମାସିକ ପେନ୍‌ସନ୍ ଦେବା ସଂପର୍କରେ ମୋର ଅକ୍ଲାଂତ ଉଦ୍ୟମ ଫଳରେ ରାଜ୍ୟ ସରକାର ଶେଷରେ ଏହି ପେନ୍‌ସନ୍ ମଂଜୁର କରଂତି। ଏହା ମୋ ପକ୍ଷରେ ନିଶ୍ଚୟ ଆନଂଦର କଥା। ୧୯୮୧ ମସିହାରେ ମୁଁ ଲଂଡନରେ ଥିବାବେଳେ ଓଡ଼ିଶା ସରକାର ପ୍ରଥମ ଦଫାରେ ୧୬୨ ଜଣଂକୁ ଏହି ପେନ୍‌ସନ୍ ମଂଜୁର କରିଛଂତି ବୋଲି ଓଡ଼ିଶାରୁ ଆସିଥିବା ଜଣେ ଭଦ୍ରବ୍ୟକ୍ତିଂକଠାରୁ (ଶ୍ରୀ ହରିଶ୍ଚଂଦ୍ର ରାୟ) ଶୁଣି ବ୍ରିଟିଶ୍ ମିଉଜିୟମ୍ ସମ୍ମୁଖରେ ମୁଁ ଆନଂଦରେ ଆତ୍ମହରା ହୋଇଯାଇଥିଲି। ପ୍ରାୟ ସହସ୍ରାଧିକ କଳାକାର, ଲେଖକ ଓ କ୍ରୀଡ଼ାବିତ୍ ମାସିକ ୨୦୦ ଟଂକାରୁ (ବର୍ତମାନ ୩୦୦ ଟଂକା) ୫୦୦ ଟଂକା ପର୍ଯଂତ ଏହି ପେନ୍‌ସନ୍ ପାଉଛଂତି। ଏହାଛଡ଼ା ସର୍ବନିମ୍ନ ମାସିକ ପେନ୍‌ସନ୍ ୨୦୦ ଟଂକାକୁ ବଢ଼ାଇ ୩୦୦ ଟଂକା କରିବାପାଇଁ ପ୍ରବଳ ଆଂଦୋଳନ କରିବାକୁ ପଡ଼ିଥିଲା। ମାତ୍ର ସୁଖର କଥା, ଓଡ଼ିଶା ସରକାର ବର୍ତମାନ ତାହା କାର୍ଯରେ ପରିଣତ କରିଛଂତି। ମାତ୍ର ପ୍ରଥମେ ଏହି ପେନ୍‌ସନ୍ ପାଇଁ ଆଂଦୋଳନ ଆରଂଭ କଲାବେଳେ ମୋତେ ପ୍ରବଳ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା।

'ଦିଗଂତ' ମିଉଜିୟମ୍ ସ୍ଥାପନ ଏବଂ ଦେଶ-ବିଦେଶରେ ଓଡ଼ିଶାର ଶିଳ୍ପ, ଚିତ୍ରକଳା ଆଦିର ପ୍ରଦର୍ଶନୀ ଆଦି ଅନୁଷ୍ଠାନ କରିବା ମୋ ଜୀବନର ଅନ୍ୟ ଏକ ବିଶେଷ ପର୍ବ। 'ଦିଗଂତ' ମିଉଜିୟମ୍‌ରେ ବହୁ ପ୍ରାଚୀନ ଶିଳାଲିପି, ସ୍ଥାପତ୍ୟ ଏବଂ ସୁଂଦର ଚିତ୍ରପୋଥି ସଂଗ୍ରହ କରାଯାଇଥିଲା। ୧୯୮୨ ମସିହାରେ ସେ ସବୁର ଉପଯୁକ୍ତ ସଂରକ୍ଷଣ ସକାଶେ ମୁଁ ତାହା ନୂଆଦିଲ୍ଲୀସ୍ଥ ନ୍ୟାସ୍‌ନାଲ୍ ମିଉଜିୟମ୍‌କୁ ଦେଇ ଦେଇଛି। କଟକରେ ଏକ ମିଉଜିୟମ୍ ସ୍ଥାପନ କରିବାପାଇଁ ମୋର ପ୍ରବଳ ଇଛା ଥିଲେ ମଧ, ମୁଁ ବହୁ ଚେଷ୍ଟାକରି ମଧ, ସଫଳକାମ ହୋଇପାରିଲି ନାହିଁ। ତେଣୁ 'ଦିଗଂତ' ପତ୍ରିକା ଓ 'ଦିଗଂତ' ଲେଖକ କର୍ମଶାଳା (Writer's workshop) ମଧ ସଫଳ ହୋଇପାରିଲାନାହିଁ। 'ଦିଗଂତ' ପତ୍ରିକା ଏକ ଉଚ୍ଚକୋଟୀର ଗବେଷଣାଭିତିକ ଓ ସୃଜନଶୀଳ ସାହିତ୍ୟ ପତ୍ରିକା ରୂପେ ପ୍ରକାଶପାଉଥିଲା। ଏହା ସର୍ବତ୍ର ସ୍ୱୀକୃତ ହୋଇଥିଲା; ମାତ୍ର ଓଡ଼ିଶାର ପାଣିପାଗରେ ଏହା ବେଶୀ ଦିନ ତିଷ୍ଠିପାରିଲା ନାହିଁ।

'ଦିଗଂତ' ମିଉଜିୟମ୍ କେଂଦ୍ରସରକାରଂକୁ ହସ୍ତାଂତର କରିଦେବାପରେ ଏବଂ

ତା'ପୂର୍ବରୁ ପୃଥିବୀର ବହୁ ଦେଶରୁ ବହୁ ଅନୁଷ୍ଠାନପକ୍ଷରୁ ସେଠାରେ ଓଡ଼ିଶାର କଳା ପ୍ରଦର୍ଶନୀମାନ କରିବାପାଇଁ ଆମନ୍ତ୍ରଣ ଓ ଅନୁରୋଧ ଆସିଥିଲା । ମାତ୍ର ସମ୍ବଳର ଅଭାବ ହେତୁ ସବୁ କ୍ଷେତ୍ରରେ ଏହା କରିବା ମୋ ପକ୍ଷରେ ସଂଭବ ହୋଇପାରିନି । ତଥାପି ମୁଁ ଲଂଡନ ବିଶ୍ୱବିଦ୍ୟାଳୟଂକ ଅନୁରୋଧକ୍ରମେ ସେଠାରେ ସ୍କୁଲ୍ ଅଫ୍ ଓରିଏଂଟାଲ୍ ଏଂଡ୍ ଆଫ୍ରିକାନ୍ ଷ୍ଟଡିଜ୍ ଲାଇବ୍ରେରୀ ହଲ୍‌ରେ ଓଡ଼ିଶା ପୋଥିଚିତ୍ର ଓ ପଟ୍ଟଚିତ୍ରର ଏକ ମନୋଜ୍ଞ ପ୍ରଦର୍ଶନୀ ୧୯୮୨ ମସିହାରେ ସଫଳତାର ସହିତ ଅନୁଷ୍ଠିତ କରିଥିଲି । ଏହା ପ୍ରାୟ ୩ ମାସକାଳ ଚାଲିଥିଲା । ଏହାଛଡ଼ା ଲଂଡନରେ ଅନ୍ୟ କେତେକ ଜାଗାରେ ମଧ୍ୟ ଏହି ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା । ଏହା ପୂର୍ବରୁ ମସ୍କୋ ବିଶ୍ୱବିଦ୍ୟାଳୟରେ ୧୯୭୯ ମସିହାରେ ମ୍ୟାଡମ୍ ଗୁସେବା ଏବଂ ତାଂକ ସ୍ୱାମୀ ଏକାଡେମୀସିଆନ୍ ଡକ୍ଟର ଗୁସେବା ପ୍ରମୁଖ ଭାରତ-ବିଦ୍ୟା-ବିତ୍‌ମାନଂକ ସହଯୋଗରେ ଏକ ଓଡ଼ିଶୀ କଳା ପ୍ରଦର୍ଶନୀ ମୋ ଦ୍ୱାରା ଅନୁଷ୍ଠିତ ହୋଇଥିଲା । ପ୍ୟାରିସ୍‌ର ୟୁନେସ୍କୋଠାରେ ମଧ୍ୟ ଏସବୁ ଚିତ୍ରାବଳୀର ଏକ Slides show ମଧ୍ୟ ମୁଁ କରାଇଥିଲି । ବହୁ ଭାରତ-ବିଦ୍ୟାବିତ୍ ଓ ଗବେଷକ ତଥା ଅଧ୍ୟାପକ, ବୁଦ୍ଧିଜୀବୀ ଓ ଜନସାଧାରଣ ଏହି ପ୍ରଦର୍ଶନୀମାନ ପରିଦର୍ଶନ କରିଥିଲେ । ମସ୍କୋ ବିଶ୍ୱବିଦ୍ୟାଳୟ ପ୍ରଦର୍ଶନୀରେ ମସ୍କୋ ଟେଲିଭିଜନ ଓ ମସ୍କୋ ରେଡ଼ିଓ ଏହାର ଚିତ୍ର ଓ ବିବରଣୀମାନ ସୁଟିଂ ଓ ରେକର୍ଡ଼ିଂ କରାଇନେଇଥିଲେ ।

ଏହାଛଡ଼ା ବ୍ୟକ୍ତିଗତ ଜୀବନର ବହୁ ସୁଖଦୁଃଖ, ଆନଂଦ ଓ ଆଶାଭଂଗର ଚିତ୍ର ଆତ୍ମଜୀବନୀ ଭିତରକୁ ଚାଲିଆସିପାରେ । ନିଜର ପାରିବାରିକ ଜୀବନ, ସାମାଜିକ ପରିବେଶ ଓ ନାନା ଅଂତଃଦ୍ୱଂଦ୍ୱ ଓ ସ୍ୱବିରୋଧର କାହାଣୀ ଆତ୍ମଜୀବନୀରେ ପ୍ରବେଶ କରିବା ମଧ୍ୟ ସଂଭବ । ବହୁ ନାରୀ, ପୁରୁଷ, ବଂଧୁ ଓ ଶତ୍ରୁ ମୋ ଜୀବନ-ପୃଷ୍ଠାରେ ବିଶିଷ୍ଟ ଚରିତ୍ରରୂପେ ଦେଖାଦେଇଛନ୍ତି ଏବଂ କେତେକ ଲିଭି ମଧ୍ୟ ଯାଇଛନ୍ତି । ସେମାନେ ସମସ୍ତେ ସ୍ମରଣୀୟ । ମୁଁ ସେମାନଂକୁ ଯଥେଷ୍ଟ ମର୍ଯାଦା ଦିଏ ।

ଏହି ନେଳୀ ନକ୍‌ସା (ବ୍ଲୁ-ପ୍ରିଂଟ୍) ଉପରେ ମୋ ଆତ୍ମଜୀବନୀ ଛିଡ଼ାହେବ । ମାତ୍ର କେବଳ ବସ୍ତୁତା ନୁହେଁ, ମନନହିଁ ଏହାର ପ୍ରଧାନ ଆଧେୟ । ଏଭଳି ମନନଧର୍ମୀ ଜୀବନଚରିତ କେତେଦୂର ଜନପ୍ରିୟ ହେବ, ସେ ସଂଦେହ ମୁଁ ନିଜେ ମଧ୍ୟ କଟାଇ ଉଠିପାରିନାହିଁ ।

## ଆତ୍ମ-ଜୀବନୀ ବନାମ ଦିନପଂଜି –

ଆତ୍ମଜୀବନୀ ଡାଏରୀ ନୁହେଁ; ଡାଏରୀ ବି ଆତ୍ମଜୀବନୀ ବା ଜୀବନ-ସ୍ମୃତି ହୋଇନପାରେ । ଏହାର କାରଣ ସ୍ପଷ୍ଟ । ଜୀବନଟା କ'ଣ ଖାଲି କେତେଗୁଡ଼ାଏ ତାରିଖର ମାଳ, ଯାହାକୁ ବେକରେ ପକାଇ ମଣିଷ ଛକ ଉପରେ ଛିଡ଼ାହୋଇ କହିବ– 'ହେଇ ଦେଖ, ମୁଁ ସେଇ ଲୋକ, ଅମୁକ ସମୟରେ ଏହା କଲି,

ଏହା ନକଲି', ଇତ୍ୟାଦି ଇତ୍ୟାଦି। କେଉଁ ତାରିଖରେ ଜଣେ ଲୋକ ସକାଳୁ ସଂଜଯାକେ କ'ଣ କ'ଣ କରିଛି, ଏସବୁ ମିଶାଇ ଦେଲେ କ'ଣ ମଣିଷର ପ୍ରକୃତ ପରିଚୟ ମିଳିବ? ମଣିଷର ସବୁ କର୍ମର ଯୋଗଫଳରୁ ତା'ର ଜୀବନର ଚିତ୍ରପଟ ମିଳିବନାହିଁ। ତା'ର ସବୁ କର୍ମର ଓ ଅପକର୍ମର ସମୀକରଣହିଁ ତା'ର ଜୀବନର ଅର୍ଥ ଓ ଚେହେରା ଧରିରଖେ।

କିଂତୁ ଆଜିର ମଣିଷ ଯେପରି ବହୁଧା ବିଭକ୍ତ, ଯେପରି ବହୁ ଦ୍ୱିଧା, ଦ୍ୱଂଦ୍ୱ ଓ ବିରୋଧାଭାସର ଏକ କରୁଣ ସମାହାର— ସେଥିରେ ସେ କ'ଣ କଲା, କ'ଣ ନକଲା, ସେଥିରୁ ତାକୁ ବୁଝିବା ଏକ ଭୁଲ୍। ସେ କ'ଣ ଚାହେଁ, କ'ଣ ନଚାହେଁ, ଯାହା ଚାହେଁ ତାହା ସେ ନିଜେ ବି ଜାଣେନା। ତାହାହିଁ ଯେପରି ତା' ହୃଦୟର ଗଭୀରତମ ପ୍ରଦେଶର କାମ୍ୟ। ଯାହାକୁ ସେ ଭାବେ ଭଲ, ତାହାହିଁ ସବୁଠୁ ଖରାପ— ସେ ସଡ଼କ ଉପରେ ଛିଡ଼ାହୋଇ ଯାହା କହୁ ପଛକେ। ଏହି କ୍ରମାଗତ ହଁ-ନାହିଁର ଦ୍ୱଂଦ୍ୱ ଭିତରେ ମଣିଷ ଚାଲିଛି, ମଣିଷ ବଂଚିଛି ଏବଂ କାଳ-କାଳଧରି ବଂଚିବ। କଳାକାର ହେଲେ ତ ଏ ଅଂର୍ତଦ୍ୱଂଦ୍ୱ ଆହୁରି ପ୍ରବଳ।

ଏହାଛଡ଼ା ଏଇ ଯେଉଁ ଭଲମଂଦର ଧାରଣା, ସେଟା ବି କେଉଁ ଠିକ୍? ତାକୁ ମଣିଷ ପାଇଲା କେଉଁଠୁ? ତାହା ସହଜାତ ପ୍ରବୃତ୍ତି ନୁହେଁ। ତାକୁ ସେ ପାଇଛି ଏଇ ସମାଜଠାରୁ। ଏଇ ପଚାସଢ଼ା ପୋକଖିଆ ସମାଜ-ବ୍ୟବସ୍ଥା ଏବଂ ତା'ର ବଡ଼ପଂଡା ଓ ପୁରୋହିତମାନେହିଁ ତାକୁ ଶିଖାଇଛଂତି ଏଇଟା ଭଲ, ଏଇଟା ଭଲନୁହେଁ। ଯାହା ଯେତେବେଳେ ସମାଜକୁ ସୁହାଇଛି, ସେଇଟାହିଁ ସେତେବେଳଯାଏଁ ଭଲ ବୋଲି ଛପାମରାହୋଇଛି; ତା'ପରେ ତାହା ବଦଳିଯାଇଛି। ଆଉ ମୁହୂର୍ତ୍ତେ ବି ତାହା ଭଲନୁହେଁ; ନିପଟ ଖରାପ।

ଏଭଳି ଏକ ଆପୋଷବାଦୀ ଶ୍ରେଣୀ-ବିଭକ୍ତ ଓ ସ୍ୱବିରୋଧୀ ଦୋମୁହାଁ ସମାଜରେ ମଣିଷ କ'ଣ ମଣିଷପରି ବଂଚିପାରିବ? ଆଉ ରାଷ୍ଟ୍ର? ରାଷ୍ଟ୍ର ତ ସମାଜଦ୍ୱାରା ତିଆରି ଏକ ଛାଂଚ। ଯେଉଁ ସ୍ଥିତାବସ୍ଥାକୁ ସମାଜ ଜାବୁଡ଼ି ଧରିଛି, ସରକାର ତା'ର ଦେହରକ୍ଷୀ ନହୋଇ ଆଉ କ'ଣ ହେବ? ସେ ତା'ର ପୁଲିସ୍, ମାଜିଷ୍ଟ୍ରେଟ୍ ଓ ଧର୍ମଗୁରୁ ଏବଂ ଆଇନ୍-କାନୁନ୍, ନୀତିନିୟମକୁ ନେଇ ସେଇ ସ୍ଥିତାବସ୍ଥା ଚାରିପଟେ ରାତିଦିନ ପହରାଦେଉଛି। ସମାଜ ଯେଉଁପରି, ସରକାର ବି ସେଇପରି ହେବ। ସେଥିପାଇଁ କୁହାଯାଏ, "We get the government we deserve"। ସରକାର କିଛି ଆକାଶରୁ ପଡ଼େନାହିଁ; ଆମେହିଁ ତାକୁ ଗଢୁ ଆମକୁ ସୁହାଇବାଭଳି।

ତେଣୁ କହୁଥିଲି ତାରିଖ ଓ ଘଟଣାମୂଳକ ବିବରଣୀରୁ ମଣିଷର ପ୍ରକୃତ ପରିଚୟ ମିଳେନାହିଁ। ଆର୍. କେ. ନାରାୟଣ ତାଂକ ଆତ୍ମଜୀବନୀର ନାମ ରଖିଥିଲେ "My Dateless Diary"। ନାଁଟି ଭଲ। ମଣିଷର ନିତ୍ୟନୈମିତ୍ତିକ କ୍ରିୟାକଳାପର

ନିଛକ ବିବରଣୀ ଜୀବନ-ସ୍ମୃତି ହୋଇନପାରେ। ଆମର ସମସ୍ତ ଦୈନଂଦିନ କାର୍ଯ୍ୟ ଯାହା ଏକପ୍ରକାର ritualsରେ ପରିଣତ ହୋଇଛି – ସକାଳୁ ଖିଅରହେବାଠାରୁ ରାତିରେ ନିଦବଟିକା ଖାଇ ପତିବ୍ରତା ନାରୀ ପାଖରେ ଶୋଇପଡ଼ିବାଯାଏଁ ସବୁ ତ ରୁଟିନ୍; ଏକ ଧରାବଂଧା ଗତ। ଏଥିରେ କ'ଣ କିଛି ପ୍ରାଣସ୍ପଂଦନ ଅଛି? ଏଗୁଡ଼ାକୁ ଜୀବନ କୁହାଯିବ କେଉଁଥିପାଇଁ? ସର୍କସର ପଶୁକୁ ତାଲିମ ଦେଲେ ବି ସେ ପ୍ରାୟ ଏଥିରୁ ୯୦ ଭାଗ କାମ ଆମଠୁ ଭଲଭାବରେ କରିପାରିବ। ରୋବଟ୍ ତ ପୂରା ବୋଝଟା ଆରାମରେ ଉଠାଇପାରିବ।

ଜୀବନ ଏପରି ଏକ ମୁହୂର୍ତ୍ତ, ଯାହା ସମୟ ଓ ନିଃସମୟ ଭିତରେ ଘୂରୁଥାଏ। ରୋଜ୍ ଅଷ୍ଟପ୍ରହରୀ ଜୀବନରେ ଯାହା ଯାହା ଘଟେ, ତାହା ହେଉଛି ସମୟର କାରବାର। ସମୟର ମାନବୀକରଣ (ଅର୍ଥାତ୍ humanisation of time) ଯାହାର ଅର୍ଥ ଘଟନ। ସମୟର ନୈର୍ମାନବୀକରଣ ବା dehumanisation of time ହେଉଛି ଘଟନାହୀନତା। ଏଇ ଘଟନା ଓ ଘଟନାହୀନତା ମଧ୍ୟରେ, ସମୟ ଓ ନିଃସମୟ ମଧ୍ୟରେ ଜୀବନ ଘୂରପାକ୍ ଖାଏ; ଠିକ୍ ଘଡ଼ିର ଟିକ୍-ଟାକ୍ ଶବ୍ଦ ମଝିରେ ଥିବା ଛୋଟ ବ୍ୟବଧାନଟି ପରି। ଜୀବନ-ସ୍ମୃତି ସେଇ ବ୍ୟବଧାନର କାହାଣୀ। ଏହା ସମୟର ଚୌକାଠ ମଧ୍ୟରେ ବଂଦୀ ଜୀବନପ୍ରବାହକୁ ନିଃସମୟ ଆଡ଼କୁ ଘେନିଯାଏ। ସୀମାକୁ ସୀମାତୀତର ସଂଧାନ ଦିଏ। ସୁଦୂର ଡାକରା ମଣିଷ କାନରେ ବାଜେ; ସେ ଶୁଣୁ ବା ନ ଶୁଣୁ।

ଜୀବନସ୍ମୃତି ମଣିଷର ସାମଗ୍ରିକ ଜୀବନର ଚିତ୍ର ଦିଏ; ଖଂଡିତ ନିତିଦିନିଆ ଜୀବନ ବା ତା'ର ଘଟଣାବଳୀ ସଂଗେ ଘଟଣାତୀତର ସମନ୍ୱୟ ସ୍ଥାପନ କରେ। ତାହା ହେଲେହିଁ ଏହା ସାହିତ୍ୟ ହୁଏ; ନୋହିଲେ ଦିନପଂଜି ବା ଡାଏରୀ ହୋଇ ପଡ଼ିରହେ।

ହିଟ୍ଲରର ଡାଏରୀ ଥିଲା; ଏକ ଆତ୍ମଜୀବନୀ (Meinkenf) ବି ଥିଲା। ସେ ଆତ୍ମଜୀବନୀ ନାତ୍ସି ଦର୍ଶନର କିଛି ଅଂଶ ଓ ତୃତୀୟ ରାଇଖ ଏବଂ ତୃତୀୟ ଦଶକର ଜର୍ମାନୀର କିଛି ସଂବାଦ ପରିବେଷଣକରେ।

ମୋ ଆତ୍ମଜୀବନୀ ମୋ ଜୀବନର ଏକ ସାମଗ୍ରିକ ଚିତ୍ର ଦେଇପାରିବ ତ? –ଏ ପ୍ରଶ୍ନ ମୁଁ ନିଜକୁ ନିଜେ ପଚାରୁଛି। ମୁଁ କ'ଣ ସ୍ପଷ୍ଟ ଶବ୍ଦରେ କଚେରିରେ ସତ୍ୟପାଠ କଲାପରି କହିପାରିବି– ମୁଁ ଯାହା କହୁଛି ସତ କହୁଛି; ସତ ଛଡ଼ା ଅନ୍ୟ କିଛି କହୁନାହିଁ। ମୁଁ ତ କାଠଗଡ଼ାରେ ଆସାମୀ ହୋଇ ଛିଡ଼ାହୋଇନାହିଁ। ମୁଁ ଯାହା ଲେଖିବି, ଜଣେ ସ୍ୱାଧୀନ ଲେଖକ ଭାବରେ ହିଁ ଲେଖିବି। ମୋର ଡର କାହାକୁ? ମୋର ଡର ନିଜକୁ। ସମାଜକୁ ମୁଁ 'କେଅାର୍' କରେ ନାହିଁ। ସରକାରକୁ ବି ନୁହେଁ। କିଂତୁ ନିଜଠୁ ମୁଁ ମାଫି ଚାହିଁବି କିମିତି?

ମୋ ଜୀବନରେ ଅନେକ କିଛି ଘଟଣା ଘଟିଛି। ବହୁ ଘଟଣା ଖାଲି

ମୋର ନୁହେଁ– ସମସ୍ତ ଦେଶର, ପୀଡ଼ିତ ମାନବତାର। ଯଦିଚ୍ ଆପାତତଃ ତାହା ବ୍ୟକ୍ତି-କୈନ୍ଦ୍ରିକ ମନେହୋଇପାରେ। କିଂତୁ ମୋ ଭଳି ଜଣେ ଲୋକ ଏକ ବିଚ୍ଛିନ୍ନ ଏକକ ନୁହେଁ ଏକ ବିରାଟ ଜାତିର ଗୋଟିଏ ସଚେତନ ବିଂନ୍ଦୁ ବି ହୋଇପାରେ। ସେଇ ବିଂନ୍ଦୁ ମଧ୍ୟରେ ସିଂଧୁର ପରିଚୟ ମିଳିପାରେ।

ବହୁ ପୁରୁଷ ଓ ନାରୀଂକ ସଂପର୍କରେ ମୁଁ ଆସିଛି। ସେମାନଂକ ମଧ୍ୟରୁ ଅଳ୍ପ କେତେ ଜଣଂକୁ ଛାଡ଼ିଦେଲେ ବାକି ସମସ୍ତେ ଜୀବିତ; ଅତି ମାତ୍ରାରେ ଜୀବିତ। ତେଣୁ ସବୁ ତିକ୍ତମଧୁର ଉପାଖ୍ୟାନ ମୁକ୍ତକଂଠରେ କହିହେବ କି ନାହିଁ, ସଂଦେହ। ଯାହା କହିଲେ ଅନ୍ୟର କ୍ଷତି ହେବ, ତାହା ଭାବିଚିଂତି କହିବା ଏକ ନୀତିବୋଧ। ଅପ୍ରିୟ ସତ କହିବା ଦୋଷରୁହିଁ ମୋ ଜୀବନର ଜମା-ଖାତାରେ ଲାଭ ଘରେ ଶୂନ୍ ଏବଂ କ୍ଷତି ଘରେ ଅଂକ ପରେ ଅଂକ ବଢ଼ିଚାଲିଛି। ମୋ ଜୀବନଟା ସାଂସାରିକ ଦୃଷ୍ଟିରୁ ଏକ ବିରାଟ ବିଯୁକ୍ତ ଚିହ୍ନ କହିଲେ ବାହୁଲ୍ୟ ହେବନାହିଁ; ମାତ୍ର ମୁଁ ଜୋର୍‌କରି କହିପାରେ, ମୁଁ ଯେତିକି କହିବି ତା' ଆଉ କେହି କହିପାରିବେନାହିଁ।

ମୋ ଜୀବନରେ ଅନେକ ନାରୀ ଆସିଛଂତି, ସେମାନେ ସମସ୍ତେ ମହନୀୟା, ନିଜ ଗୁଣରେ ନିଜେ ଅନନ୍ୟା। ମୋର କାବ୍ୟ-ନାୟିକା ସେମାନେ ନ ଥିଲେ ମୋର ସୃଷ୍ଟି ଯେତିକି ରସୋଜ୍ଜ୍ୱଳ, ବର୍ଣ୍ଣିଳ ଓ ପ୍ରାଣବଂତ ହୋଇଛି, ତାହା ହୁଏତ ହୋଇପାରିନଥାଂତା। ବହୁ ନାରୀ ଆବେଗିକ ସଂପର୍କ ରଖିଛଂତି ଏବଂ ରଖିବାକୁ ଚାହାଂତି ମୋ ସଂଗେ। ସମଦର୍ଶିତା ଏହାର ପ୍ରଧାନ କାରଣ। ମୁଁ ମୁକ୍ତ ସଂପର୍କରେ ବିଶ୍ୱାସକରେ; ତଥାପି ମୁଁ ନିଶ୍ଚିତ ଯେ ମତର ଓ ମନର ମେଳ ନ ଥାଇ ଯେଉଁ ସଂପର୍କ ଗଢ଼ିଉଠେ, ତାହା ଦାସତ୍ୱ– 'Slavery, sex slavery'। ସର୍ବାଗ୍ରେ ଋଣୀ ମୁଁ ମୋର ସ୍ତ୍ରୀ ଭୂ-ଦେବୀଠାରେ– ଯିଏ ତା'ର ଅମୃତ ପ୍ରେମର ପ୍ରସ୍ରବଣରେ ମୋ ଜୀବନର ଜ୍ୱାଳା ଓ ଯଂତ୍ରଣା ନିଭାଇଦେଇଛି, ତାର ମଂଗଳ କରଛାୟା ତଳେ। ସେ ଆପଣା ଦୀପ୍ତିରେ ମହିମାମୟୀ।

ଜୀବନ ଗୋଲାପ ବଗିଚା ନୁହେଁ। ଆରବ ମରୁଭୂମିର ବୁଲ୍‌ବୁଲ୍ ଏଠି ଡାକେ ସତ; କିଂତୁ ତା' ପଛରେ ଘନେଇଆସେ କାଳବୈଶାଖୀ, ମରୁଝଡ଼ ଏବଂ ଧୂ-ଧୂ ଖରା, ପ୍ରଳୟ ବୃଷ୍ଟି ଏବଂ ହାଡ଼ଭଂଗା ଶୀତ। ଏ ସବୁ ତ ଋତୁକ୍ରମ। ଏମାନେ ଆସିବେ ନା ଆସିବେ; ତଥାପି ସ୍ଥିର ରହିଛି ମରୁତୀର୍ଥ ଏ ଜୀବନ କେଉଁ ଋତୁରାଜର ଅପେକ୍ଷାରେ। ଏଇ ଅପେକ୍ଷାହିଁ ତ ଜୀବନ।!

ଏ ପରିଚ୍ଛେଦରେ ବ୍ୟକ୍ତିଗତ ଜୀବନଶୈଳୀ ଓ ଅନୁଭୂତି ସହିତ ମାନବୀୟ ଆଚରଣର କେତେକ ଝଲକ ମିଳିପାରିବ। ମଣିଷର ସାମଗ୍ରିକ ଜୀବନର ପ୍ରତିଛବି ତା'ର ଦୈନଂଦିନ ଜୀବନର ଚାଲିଚଲଣ ଓ ଭାବଭଂଗୀରେ ଧରାପଡ଼ିଥାଏ। ଏହିସବୁ ଅତି ସାଧାରଣ ଛୋଟ ଛୋଟ ଘଟଣାରେ ମଣିଷର ପ୍ରକୃତ ଚେହେରା

ଯେପରି ଫୁଟିଉଠେ, ତାହା ତାର ପୋଷାକୀ ରୂପରେ ହୁଏନାହିଁ। ଏହିମାନେ ତ ତା'ର ଅସତର୍କ ମୁହୂର୍ତ୍ତର ଦର୍ପଣ, ମୂକସାକ୍ଷୀ— ତାର ମୂର୍ଧନ୍ୟ ସ୍ୱର, ଯାହାର ଉତ୍ସ ତାର ସ୍ୱଜ୍ଞା; କେବଳ ପ୍ରଜ୍ଞା ନୁହେଁ।

ମୋ ଆଖିରେ ଯାହା ବଂଚାଯାଏ, ତାହାହିଁ ଜୀବନ; ଯାହା ଅଭିନୀତ ହୁଏ, ତାହା ନୁହେଁ। "ଜୀବନର ସଂଗ୍ୟା କଣ ?

ଯାହା ବଂଚାଯାଏ ତାହା, ନା
ଯାହା ହୁଏ ଅଭିନୀତ
ବହୁଧା ମଂଚରେ ?" ('ନାଟ୍ୟକାର'— କବିତା-୧୯୮୫)

ମଣିଷ ପ୍ରଥମେ ମଣିଷ— ସେ ପଶୁ ନୁହେଁ କି ଦେବତା ବି ନୁହେଁ। ମଣିଷର ଏଇ ମଣିଷପଣିଆକୁ ଯିଏ ଦେଖେ ନାହିଁ, ସେ କିଛିହିଁ ଦେଖେ ନାହିଁ। ସେ ମଣିଷକୁ ହୁଏତ ପଶୁ ନୋହିଲେ ଦେବତାର ଛାଂଚରେ ଢାଳିବାକୁ ଚେଷ୍ଟା କରେ। ସେ ଭୁଲିଯାଏ ଯେ ମଣିଷ ପ୍ରତି ମୁହୂର୍ତ୍ତରେ ବଦଳିଚାଲିଛି। ପୁଣି ସତ୍ୱ, ରଜ, ତମ ଏହି ତିନି ଗୁଣର ସମଷ୍ଟିହିଁ ମଣିଷ। ଏଥିରୁ କୌଣସିଟିକୁ ବାଦ୍‌ଦେଲେ ମଣିଷର ସମଗ୍ର ସତ୍ତା ବିଖଂଡିତ ହୁଏ; ଫଳରେ ଚେତନାର ବିଭାଜନ ଘଟେ। ବରଂ ଏହି ତିନି ଗୁଣର ସୁସ୍ଥ ସମନ୍ୱୟ ଦ୍ୱାରାହିଁ ମନୁଷ୍ୟ 'ନିର୍ଗୁଣ' ଅବସ୍ଥାକୁ ଉତ୍ତୀର୍ଣ୍ଣ ହୋଇପାରେ। ଏହାର ଅନ୍ୟ ନାମ ପୂର୍ଣ୍ଣତା। ଏହି ପୂର୍ଣ୍ଣତା ମଧ୍ୟ କିଛି ସନାତନ ବା ଅପରିବର୍ତ୍ତନୀୟ ନୁହେଁ। ଏହା ମଧ୍ୟ ଆପେକ୍ଷିକ। ସତ୍ୟ ମାତ୍ରେହିଁ ଆପେକ୍ଷିକ; କିଛି ନିର୍ବିଶେଷ ନୁହେଁ, ସନାତନ ନୁହେଁ। ଭାରତୀୟ ତଂତ୍ର ମଣିଷର ସାର୍ବିକ ସତ୍ତାରେ ବିଶ୍ୱାସକରେ; ତାଂକୁ ପୂର୍ଣ୍ଣତା ଆଡ଼କୁ ନେଇଯିବାକୁ ଚେଷ୍ଟାକରେ— ଯେଉଁ ସ୍ତରରେ କି ତା'ର ସାଂସାରିକ ବଂଧନରୁ, ଅର୍ଥାତ୍ ପ୍ରବୃତ୍ତିଂକ ହାତରୁ ମୁକ୍ତି ମିଳେ। ସେ ଜୀବନ୍ମୁକ୍ତ ହୁଏ। ଅନ୍ୟ ଦିଗରେ ପ୍ରବୃତ୍ତିକୁ ଦମନ କରିବାଦ୍ୱାରା ତାହା ତ ପ୍ରଶମିତ ହୁଏନାହିଁ; ବରଂ ସୁଯୋଗ ପାଇଲେହିଁ ପ୍ରତିଶୋଧ ନିଏ। ନାନା ବିକୃତି ମଧ୍ୟଦେଇ ସେ ବଂଚିଉଠେ। ଆନାତୋଲା ଫ୍ରାନ୍‌ସଂକ 'Thais' ଉପନ୍ୟାସର ନାୟକ ତା'ର ଏକ ଦୃଷ୍ଟାଂତ। ସମରସେଟ୍ ମମଂକ ଉପନ୍ୟାସ 'ଅଫ୍ ହ୍ୟୁମାନ୍ ବନ୍‌ଡେଜ୍'ରେ ମଧ୍ୟ ଏହିଭଳି ଏକ ଚରିତ୍ରର ନଜିର ମିଳେ।

ସ୍ଥିତିବାଦ ଗତ ଚାରି ଦଶଂଧି ଧରି ନେତିବାଦ ଭିତରେହିଁ ଧଂଦି ହେଉଛି। ସ୍ଥିତିବାଦର ଅସତ୍ତା ନେତିବାଦ ଓ ଦେହବାଦରେହିଁ ପରିଣତ ହୋଇଛି। ଏହା କୌଣସି ଆସ୍ଥାବାଚକ ମାର୍ଗଦର୍ଶନ ଦେଇପାରିନାହିଁ।

ପୁଣି ଥରେ କହେଁ, ମଣିଷ ମଣିଷହିଁ। ମଣିଷଠାରୁ ମହିମାମୟ, ମଣିଷଠାରୁ ସତ୍ୟ ସୃଷ୍ଟିରେ କିଛି ନାହିଁ। ତା'ର ଅଜସ୍ର ଭୁଲ୍, ଭ୍ରାଂତି ଓ ଦୁର୍ବଳତାହିଁ ତାକୁ ପୂର୍ଣ୍ଣତା ଆଡ଼କୁ ଘେନିଯାଏ— ଆହୁରି ବଡ଼ ସିଦ୍ଧିର ନିକଟବର୍ତ୍ତୀ କରେ। ତା'ର ସଂଭାବନାର ପରିସର ସେ ନିଜେ ମଧ୍ୟ କଳନା କରିପାରେନାହିଁ। ସେ ସୀମା

ଭିତରେ ଅସୀମ, କ୍ଷୁଦ୍ରାଦପି କ୍ଷୁଦ୍ର ହୋଇ ବି ମହାନ୍ ଓ ବିରାଟ। ସେଥିପାଇଁ ଗର୍କିଙ୍କ କଂଠରେ କଂଠ ମିଳାଇ ବାରଂବାର କହିବାକୁ ଇଚ୍ଛା ହୁଏ– "How wonderful is Man!" ('ସତେ କି ଆଶ୍ଚର୍ଯ ଏ ମଣିଷ')

ଭୁଲ୍ କରିବା ତା'ର ଜନ୍ମଗତ ଅଧିକାର, ସ୍ୱଭାବ ମଧ। ଯାହା ସ୍ଥାଣୁ, ଯାହା ଜଡ଼, ତାହା ଭୁଲ୍‌କରେନାହିଁ। ସେ ପ୍ରକୃତିର ଅଂଧ ନିୟମର ବଶବର୍ତ୍ତୀ। ପଶୁ ଭୁଲ୍ କରେନାହିଁ; କାରଣ ସେ ପ୍ରକୃତିଗତ ପ୍ରବୃତ୍ତିରେ ଚାଳିତ। ଦେବତା ତ ସହଜେ ଛାଂଚରେ ଢଳା, ସବୁ ଭଲ ଗୁଣର ପ୍ରତୀକ। ଟିକିଏ ଏପାଖ ସେପାଖ ହେବାର ଜୁ ନାହିଁ। ମଣିଷ କିଂତୁ ଚିରସ୍ୱାଧୀନ, ଚିରନୂତନ, ଚିରଚଂଚଳ।

**ଆତ୍ମଜୀବନୀ କ'ଣ –**

ଏ ପରିଚ୍ଛେଦ ଶେଷ କରିବା ଆଗରୁ ଆତ୍ମଜୀବନୀ ସଂବଂଧରେ ପଦେଅଧେ କହିବା ଦରକାର। ଅଟୋବାୟୋଗ୍ରାଫୀ ବା ଆତ୍ମଜୀବନୀ ଭିନ୍ନ ଭିନ୍ନ ପ୍ରକାରର। ମୂଳତଃ ଏହାର ଅର୍ଥ ନିଜ ଜୀବନ-ବୃତ୍ତାଂତ ନିଜେ କହିବା ବା ଲେଖିବା। ଗ୍ରୀକ୍ Autos (ଅଟୋ) ଶବ୍ଦରୁ ଏହାର ଉତ୍ପତ୍ତି; ଯାହାର ଅର୍ଥ ସ୍ୱୟଂ (Self)। ଆତ୍ମଜୀବନୀ ସ୍ୱୀକାରୋକ୍ତିମୂଳକ ହୋଇପାରେ, ଯେଉଁଥିରେ କି ଲେଖକ ଅକପଟ ଚିତ୍ତରେ ଯାହା ଯାହା ପାପ କାର୍ଯ ସେ କରିଛି, ତାହା ସ୍ୱୀକାର କରିଥାଏ। ଯେପରି 'The Confessions of St. Augustine' କିଂବା 'The Apologia Provita Sua of Cardinal Newman'। ମହାତ୍ମା ଗାଂଧିଂକ 'My Experiments with Truth' କିଛିଟା ଏହି ଧରଣର ହେଲେ ମଧ ଏହା ମୁଖ୍ୟତଃ ସେ ଜଡ଼ିତ ଥିବା ବାହାରର ଘଟଣାବଳୀ ସହିତ ସଂପୃକ୍ତ। ବହୁ ଆତ୍ମଜୀବନୀ ଲେଖକ ନିଜ ଜୀବନର ସ୍ମୃତିଚାରଣ କରି ଗରିଷ୍ଠ ଘଟଣାବଳୀର ସଂପୂର୍ଣ୍ଣ ବା ଆଂଶିକ ବର୍ଣ୍ଣନା କରି ଜୀବନସ୍ମୃତି ରଚନା କରିଯାଇଛଂତି। ରବୀଂଦ୍ରନାଥ ଏମାନଂକ ମଧରେ ଅନ୍ୟତମ।

ଚିଠିପତ୍ର, ଡାଏରୀ, ବିଭିନ୍ନ ପତ୍ରପତ୍ରିକାରୁ ସଂଗୃହୀତ ତଥ୍ୟାବଳୀ ଆତ୍ମଜୀବନୀର ଉପାଦାନ ହୋଇପାରେ। ପୃଥିବୀର ବିଖ୍ୟାତ ଆତ୍ମଜୀବନୀ ମଧରେ ସିଲ୍‌ଭିନ୍ ପେଲିକୋଂକ କାରା-କାହାଣୀ ଅନ୍ୟତମ। ଶ୍ରେଷ୍ଠ ଆତ୍ମଜୀବନୀ ଲେଖକଂକ ମଧ୍ୟରେ ପୃଥିବୀର ବହୁ ସାହିତ୍ୟିକ, କଳାକାର, ରାଜନୀତିଜ୍ଞ ଓ ସମାଜ ସୁଧାରକ ଅଛଂତି; ଯଥା– ଲି ହଂଟ, ଏଚ୍. ଜି. ଓ୍ୱେଲସ୍, ଜି. କେ. ଚେଷ୍ଟରଟନ୍, ରୁଡ଼ିୟାର୍ଡ କିପ୍‌ଲିଂଗ୍, ନୃତ୍ୟଶିଳ୍ପୀ ଇସାଡ଼ୋରା ଡନ୍‌କାନ୍, ରାଜନୀତିଜ୍ଞମାନଂକ ମଧରେ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍, ପଂଡିତ ନେହେରୁ ଅନ୍ୟତମ।

କେତେକ ଔପନ୍ୟାସିକ ନିଜ ନିଜ ଉପନ୍ୟାସ ମାଧମରେ ନିଜ ଜୀବନର କାହାଣୀକୁ କଥାବସ୍ତୁ ରୂପେ ଗ୍ରହଣ କରିଥିବାର ଦେଖାଯାଏ। ଉଦାହରଣ ସ୍ୱରୂପ

ଡିକେନ୍‌ସଂକ 'ଡେଭିଡ୍ କପରଫିଲ୍ଡ୍' ଏବଂ ବରୋଂକ 'ଲ୍ୟାଭେଂଗୋ ଏଂଡ ଦି ରୋମାନୀ ରାଇ' ଉପନ୍ୟାସ ଦୁଇଟି ଉଲ୍ଲେଖ କରାଯାଇପାରେ। ରୋମା ରୋଲାଂକ ବିଖ୍ୟାତ ଉପନ୍ୟାସ 'ଜ୍ୟାଁ ଖ୍ରୀଷ୍ଟଫର୍'ର ନାୟକ ତାଂକ ନିଜ ଜୀବନର ରୂପକଳ୍ପ ବୋଲି ଅନେକେ କହିଥାଂତି। ସେହିପରି ଶରତ୍‌ଚଂଦ୍ରଂକ ଉପନ୍ୟାସ 'ଶ୍ରୀକାଂତ' ଚରିତ୍ରରେ ତାଂକ ଜୀବନର କିଛିଟା ପ୍ରତିଫଳନ ଦେଖିବାକୁ ମିଳେ ବୋଲି କେତେକ ସମାଲୋଚକଂକ ମତ।

ଆମ ଓଡ଼ିଶାରେ ଫକୀରମୋହନ ସେନାପତିଂକ ଆତ୍ମକଥା ଏକ ସଫଳ କୃତି। ମହାରାଣୀପୁତ୍ର ଧରଣୀଧରଂକ କବଳରୁ ଫିଟିବାକୁ ସେ କିପରି କୌଶଳରେ କଟକକୁ ଚିଠି ଲେଖି ପାନଗୁଆ (ସିପାହି ବରକଂଦାଜ) ମଗାଇଥିଲେ, ତାହା ବଡ଼ ଚମତ୍କପ୍ରଦ। ଏହାଛଡ଼ା ପଂଡିତ ଗୋଦାବରୀଶ ମିଶ୍ର ଏବଂ ପଂଡିତ ନୀଳକଂଠ ଦାସ ଓ ମହତାବଂକ ଆତ୍ମକଥା ମଧ୍ୟ ରହିଛି। ଶ୍ରୀ କାଳିଂଦୀ ଚରଣ ପାଣିଗ୍ରାହୀଂକ ଆତ୍ମଜୀବନୀ 'ଅଂଗେ ଯାହା ଲିଭାଇଛି' ତାଂକ ଜୀବନର କେତେକ ସୁଂଦର ଆଲେଖ୍ୟ ବହନକରେ। ସମସାମୟିକ ଓ ସତୀର୍ଥ ବଂଧୁଂକ ମଧ୍ୟରେ ଗୋପୀନାଥ ମହାଂତି ଓ ନୀଳମଣି ରାଉତରାୟଂକ ଆତ୍ମଜୀବନୀ ଉଲ୍ଲେଖନୀୟ।

ମାତ୍ର କଥା ହେଉଛି, ବହୁ ଆତ୍ମଜୀବନୀ ବିବରଣୀର ସ୍ତର ଅତିକ୍ରମ କରି ପାରଂତି ନାହିଁ। ବୃତ୍ତାଂତ ବା ବିବରଣୀ ସାହିତ୍ୟ ନୁହେଁ ତାହା ସାଂବାଦିକତା ହୋଇପାରେ। ସାହିତ୍ୟର ମର୍ଯାଦା ପାଇବାକୁ ହେଲେ ଘଟଣାକୁ ସମୟ ସଂଗେ ସମୟାତୀତର ସ୍ପର୍ଶ ଲାଭ କରିବାକୁ ପଡ଼ିବ, ଅନ୍ୟ କଥାରେ ଏହାକୁ କାଳୋତ୍ତୀର୍ଣ ହେବାକୁ ହେବ।

ଅନେକ ବଂଧୁ ଗତ ପ୍ରାୟ ୩୦ ବର୍ଷ ହେଲା ମୋତେ ଲଗାଇଛଂତି ଆତ୍ମଜୀବନୀ ଲେଖିବାକୁ। ଦେଖାହେଲେ ସେମାନଂକର ପ୍ରଥମ ପ୍ରଶ୍ନ, "କେବେ ଆତ୍ମଜୀବନୀ ଲେଖୁଛଂତି?" ସେମାନଂକ କଥାବାର୍ତାରୁ ଜଣାପଡ଼େ, ସତେ କି ଯେପରି ମୋ ଆତ୍ମକାହାଣୀ ଲେଖା ଉପରେ ସମଗ୍ର ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଜାତିର ଭବିଷ୍ୟତ ନିର୍ଭର କରୁଛି! ସତେ ଯେମିତି ମାଳ ମାଳ ବ୍ରହ୍ମାଂଡ ଓ ଗ୍ରହ ଉପଗ୍ରହ ମଧ୍ୟରେ ଆମର ଏଇ ଗୋଷ୍ପଦ ପ୍ରମାଣ ପୃଥିବୀର ଗୋଟିଏ କଣରେ କୋଟି କୋଟି ମଣିଷଂକ ଭିତରେ, ମୋ ଭଳି ଜଣେ ସାମାନ୍ୟ ଲୋକର ଆତ୍ମଜୀବନୀ ଲେଖାହେଲେ କ'ଣ ଗୋଟାଏ ଯୁଗାଂତର ଘଟିଯିବ। ମୁଁ ମନେମନେ ହସେ, ବାହାରେ ମଧ୍ୟ ନ ହସିବାର ଉପାୟ ନାହିଁ। ମୋ ଆତ୍ମକଥା ଲେଖାହେଲେ ଯେ ଆକାଶ ଛିଂଡି ପଡ଼ିବ ନାହିଁ, ଏକଥା ମୁଁ ଯେମିତି ଭଲଭାବରେ ଜାଣେ; ମୋର ବିଶ୍ୱାସ, ସେମାନେ ମଧ୍ୟ ସେମିତି ଜାଣଂତି।

ସେ ଯାହାହେଉ, ବର୍ତମାନ ମଧ୍ୟ କେତେକ ବଂଧୁଂକ ପାଲରେ ପଡ଼ି ଏ ଦୁରୂହ କାର୍ଯରେ ହାତଦେବାକୁ ହେଲା। ଦେଖାଯାଉ, ଶେଷ ପର୍ଯଂତ କ'ଣ ହେଉଛି!

# ଦ୍ୱିତୀୟ ଉଲ୍ଲାସ

## ମୁଁ ଜନ୍ମ ହେଲି

ପ୍ରଚଂଡ ଗ୍ରୀଷ୍ମର ଖଇଫୁଟା ତାତି ପରେ ଏକ କ୍ଳାଂତ ଅବସନ୍ନ ସଂଧ୍ୟାରେ ମୁଁ ଜନ୍ମ ହେଲି ବୈଶାଖ ମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ, ଖୋରଧା ସହରଠୁ ଅଧମାଇଲିଏ ଦୂର ଗୁରୁଜଂଗ ଗ୍ରାମରେ। ମୁଁ ପୃଥିବୀକୁ ଆସି ପ୍ରଥମ କେତେ ମୁହୂର୍ତରେ ଜଡ଼ତା କଟାଇ, ମୋ' ପହିଲି କାଂଦଣା 'କୁଆଁ କୁଆଁ' ରଡ଼ିରେ ବୋଧହୁଏ ଘୋଷଣା କରିଥିବି ମୋ ଅସ୍ତିତ୍ୱକୁ ଯେ 'ମୁଁ ଆସିଲି'। ମୋର ଧରାବତରଣ କିଂତୁ ଆକସ୍ମିକ ନଥିଲା। ସମସ୍ତେ ଅପେକ୍ଷା କରି ରହିଥିଲେ ମୋତେ– ବାପା, ମାଆ, ଜେଜେମା', ବଡ଼ବାପା, ବଡ଼ମାଆ, ଦାଦା, ଖୁଡ଼ୀ ସମସ୍ତେ।

ମୋ' ଦ୍ୱିତୀୟ ଘୋଷଣାଟି ଥିବ 'ମୋର ଖାଦ୍ୟ ଲୋଡ଼ା, ମୁଁ କ୍ଷୁଧାର୍ତ'। ମୋ ମାଆ ମୋତେ ଛାତିକି ଟାଣିନେଇ ହୁଏତ ଦୁଧକଲେ ଖୁଆଇଦେଇଥିବେ। ମୋ ପ୍ରଥମ ଦାବିଟି ପୂରଣହେଲାପରେ ମୁଁ ହୁଏତ ଟିକିଏ ଚୁପ୍‌ମାରି ରହିଯାଇଥିବି। ତା'ପରେ ମୋର ତୃତୀୟ ଘୋଷଣାଟି ଥିବ– 'ମୁଁ ବଂଚିବି'। ମୋର ବଂଚିବାର ଜନ୍ମଗତ ଅଧିକାର କେହି କାଢ଼ିନେଇ ପାରିବେ ନାହିଁ। କେହି ମୋ ଜୀବନରେ ହସ୍ତକ୍ଷେପ କଲେ ମୁଁ ପ୍ରତିବାଦ କରିବି, ପ୍ରତିରୋଧ କରିବି ଏବଂ ହାତଗୋଡ଼ ଛାଟି ତା' ସଂଗେ ଲଢ଼େଇ କରିବି।

ମୋର ଚତୁର୍ଥ ଏବଂ ସେତେବେଳର ଶେଷ ଘୋଷଣାଟି ଥିବ 'ମୁଁ ହେବି'। ମୁଁ ଯାହା ଅଛି, ସେଥିରେ ମୁଁ ସଂତୁଷ୍ଟ ନୁହେଁ। ମୁଁ କ୍ରମାଗତ ହୋଇ ଚାଲିବି। ମୋର ହେବାର ପ୍ରକ୍ରିୟାରେ କେହି ବାଧା ଦେଇପାରିବେ ନାହିଁ। ଯେ ବାଧା ଦେବ, ସେ ମୋର ଶତ୍ରୁ।

ଅଖଂଡ ମୁକ୍ତି ଭିତରୁହିଁ ମଣିଷର ଜନ୍ମ ଏବଂ ଅଖଂଡ ମୁକ୍ତି ଭିତରେହିଁ ତା'ର ଶେଷ। ଏହି ମୁକ୍ତିହିଁ ଜୀବନ। ଏହା ବହିରାଗତ ଜିନିଷ ନୁହେଁ। ଶ୍ୱାସ-ପ୍ରଶ୍ୱାସ ପରି ଏହା ସହଜ ଓ ସହଜାତ। ଯିଏ ମଣିଷଠୁ ଏହା କାଢ଼ିନିଏ, ସେ ତା'ର ସବୁକିଛିହିଁ କାଢ଼ିନିଏ। ଏଇ ମୁକ୍ତିହିଁ ପୁଣି ତା'ର ଦୁର୍ଦୈବ, ସବୁ ଯଂତ୍ରଣାର କେଂଦ୍ରବିଂଦୁ। ଏଥିରେ ସାମାନ୍ୟତମ ଆଂଚ ଆସିଲେ ସେ ଯଂତ୍ରଣାରେ ଛଟପଟ କରେ। ସେଥିପାଇଁ ଜ୍ୟାଁ ପଲ୍ ସାର୍ତ୍ରେଂକ ଭାଷାରେ– "Man is condemned to be born free!"

ମୁଁ ଜନ୍ମହେବା ପରେ ଜେଜେମା' ମୋତେ ଏକ କଦଳୀପତ୍ରରେ ନାହିନାଡ଼ ଥାଇ ବଡ଼ବାପାଂକ ହାତକୁ ଟେକିଦେଇଥିଲେ। କାରଣ, ତାଂକର କୌଣସି ପୁତ୍ରସଂତାନ ନଥିଲା। ସେ ହୁଏତ ମୋତେ କିଛିକ୍ଷଣ ନିରେଖି ଦେଖି ବଡ଼ମାଆଂକ ହାତକୁ ବଢ଼ାଇଦେଇଥିବେ, ଇଂଗିତରେ କହିଥିବେ 'ନିଅ, ପାଳ'। (କଥାରେ ନୁହେଁ; କାରଣ, ବଡ଼ମାଆଂକ ସଂଗେ ତାଂକର ଗତ ୯-୧୦ ବର୍ଷ ହେଲା, ଏକ କନ୍ୟା ଜନ୍ମହେବା ପରେ; ପତି-ପତ୍ନୀ ସଂପର୍କ କି ସିଧାସଳଖ କଥାବାର୍ତ୍ତା ନଥିଲା।)

ମୁଁ ବଡ଼ମାଆଂକ କୋଳରେହିଁ ବଢ଼ିବାକୁ ଲାଗିଲି। ତାଂକୁ ମୁଁ 'ମାମା' ଏବଂ ନିଜ ମାଆକୁ 'ବୋଉ' ବୋଲି ପରେ ଡାକିବାକୁ ଶିଖିଲି। ମାମାର ୮-୯ ବର୍ଷ ହେଲା କୌଣସି ସଂତାନ-ସଂତତି ନଥିଲା। କେବଳ ଝିଅଟିଏ ଯାହା ଜନ୍ମ ହୋଇଥିଲା। ସେ ମୋର 'ମହନି ଅପା'; ଭଲ ନାଆଁ ସୌଦାମିନୀ। ସେ ମୋ'ଠୁ ପ୍ରାୟ ଆଠ-ନଅବର୍ଷ ବଡ଼।

ମାମା ସ୍ତନରେ କ୍ଷୀର ନଥିଲା; ମାତ୍ର ମୋତେ ପୁଅ କରିନେବା ପରେ ସେ ମୋତେ ତା'ର ଶୁଷ୍କ ସ୍ତନ ଖୁଆଇବାକୁ ଲାଗିଲା। କିଛିଦିନ ପରେ ତା' ସ୍ତନ ଫୁଲିଉଠିଲା– ଦୀର୍ଘ ନଅବର୍ଷ ପରେ ସେଥିରେ ପୁଣି କ୍ଷୀର ଆସିଲା। ମୁଁ ମାମା କ୍ଷୀର ଖାଇବାକୁ ଲାଗିଲି; ପ୍ରାୟ ଚାରିବର୍ଷ ହେବାଯାଏଁ ମାମା ଦୁଧ ଖାଉଥିଲି। ସେଥିପାଇଁ ଘରେ ସମସ୍ତେ ବିରକ୍ତ ହୁଅଂତି, ମାମାକୁ ଗାଳିମନ୍ଦ ଦିଅଂତି, ମୋତେ ମଧ୍ୟ– 'ଏଡ଼େ ବଡ଼ ପିଲାଟାଏ ହେଲାଣି, ଦୁଧ ଖାଉଛି।' ମୁଁ ବାହାରୁ ଖେଳାବୁଲା, ଧାଆଁ-ଧପଡ଼ କରି ଆସି ମାମା କୋଳରେ ପଶି ଦୁଧ ଖାଇବାରେ ଲାଗିଯାଏ। ମୁଁ ଆମ ବଂଶର ପ୍ରଥମ ପୁତ୍ରସଂତାନ ଥିବାରୁ ବାପାଂକର ଛଅଭାଇ ଓ ଖୁଡ଼ୀ, ପିଉସୀ ସମସ୍ତଂକର ସ୍ନେହ-ମମତାର ଏକଚାଟିଆ ଅଧିକାରୀ ଥିଲି ଏବଂ ଖୁବ୍ 'ଗେହ୍ଲା ପୁଅ' ବନିଯାଇଥିଲି। ମୋତେ ସମସ୍ତେ 'ବୁଢ଼ା' ବୋଲି ଡାକୁଥିଲେ। ସମସ୍ତଂକ ନଜର ମୋ ଉପରେ। ''ବୁଢ଼ା ଖାଇଲାଣି? ବୁଢ଼ା ଚାହାଳିକି ଗଲାଣି?'' ଇତ୍ୟାଦି ପ୍ରଶ୍ନମାନ ପ୍ରାୟ ସମସ୍ତଂକ ମୁହଁରେ ଲାଗିରହିଥାଏ। ମୁଁ ଥିଲି ବାପମାଆଂକର ଜ୍ୟେଷ୍ଠ ପୁତ୍ର। ଖାଲି ବାପମାଆ କାହିଁକି, ସମଗ୍ର 'ଦିଆନ'ବଂଶର ମୁଁ ଥିଲି ଜ୍ୟେଷ୍ଠପୁତ୍ର ଏବଂ ଅନ୍ୟ ଭାଇଭଉଣୀ ଜନ୍ମ ହେବା ପର୍ଯ୍ୟଂତ ଏକମାତ୍ର ପୁତ୍ରସଂତାନ। ତେଣୁ ମୁଁ ବଡ଼ ଗେହ୍ଲା ହୋଇଯାଇଥିଲି; ଟିକିଏ ଦୁର୍ଦ୍ଦାଂତ ମଧ୍ୟ। ମୁଁ ମହନି ଅପାକୁ କୁଆଡ଼େ ଖୁବ୍ ପିଟୁଥିଲି। ସେ ପଳାଇଗଲେ ମାମା ତାକୁ ଗାଳିଦେଇ କହୁଥିଲା– ''ଇମିତି ପଳାଉଛୁ କାହିଁକି? ପିଲାଟା ଟିକିଏ ମାରିବ ତ, ତୋ ଦିହ କ'ଣ ଛିଂଡିଯାଉଛି?'' (ଅବଶ୍ୟ ଏହା ମୁଁ ହେତୁ ପାଇବାପରେ ଖୁଡ଼ୀମାନଂକଠାରୁ ଜାଣିଲି।) ମାମା ତା' ନିଜ ଝିଅ ଅପେକ୍ଷା ମୋତେ ବେଶୀ ଭଲପାଉଥିଲା। ମୋତେ ପୁଅ କରି ନେବାଦିନୁ ମାମାକୁ ସମସ୍ତେ 'ବୁଢ଼ା ମାମା' ବୋଲି ଡାକିବାକୁ ଲାଗିଲେ।

ଜେଜେବାପା ମଧୁସୂଦନ ରାଉତରାୟ ବୌଦ ରାଜ୍ୟର ଦେୱାନ ଥିଲେ। ତେଣୁ ଆମ ଘରକୁ ସମସ୍ତେ 'ଦିଆନଘର' ଏବଂ ଆମ ସାହିକୁ 'ଦିଆନ ସାହି' ବୋଲି କହୁଥିଲେ। ଏବେ ମଧ୍ୟ ଆମ ସାହିର ସେ ନାଆଁଟା ଲୋକମୁଖରେ ଅଛି। ଆମ ରାଉତରାୟବଂଶ ଥିଲେ ପୁରୀ ଗଜପତି ମହାରାଜାଂକର ଅସ୍ତ୍ରଗୁରୁ। ପ୍ରତିବର୍ଷ ଗହ୍ମାପୂନେଇ ଦିନ ଆମ ବଂଶର ଜ୍ୟେଷ୍ଠ ଅଂଶର କେହି ଜଣେ ଦଂଡ ଓ ପଇତା ନେଇ ପୁରୀ ଯାଇ ଗଜପତି ରାଜାଂକୁ ଭେଟି ଦିଅଂତି ଏବଂ ଦକ୍ଷିଣା ସ୍ୱରୂପ ଗଜପତି ମହାରାଜାଂକଠାରୁ ପାଟ ଦୋସଡ଼ା ନେଇ ଫେରଂତି। 'ଗୁରୁଜଂଗ'ର ନାଆଁଟା ଏଇ 'ଗୁରୁ'ରୁ ହୋଇଛି ବୋଲି ଅନେକେ କହଂତି। ପାଇକ-ବିଦ୍ରୋହ ବେଳେ ଆମ ଗାଆଁ ଉପରେ ଫିରିଂଗୀ ସୈନ୍ୟ ଚଢ଼ାଉ କରିଥିଲେ। ଆମ ପୂର୍ବପୁରୁଷଂକ ଭିତରୁ କେତେଜଣ ଇଂରେଜ ଫୌଜ ହାତରେ ପ୍ରାଣ ହରାଇଥିଲେ। କେତେଜଣ ଇଂରେଜ ସୈନ୍ୟ ଓ ସେନାପତି ମଧ୍ୟ ଗଜପତି ବାହିନୀଦ୍ୱାରା ଯୁଦ୍ଧକ୍ଷେତ୍ରରେ ନିହତ ହୋଇଥିଲେ। ଆମ ଗାଆଁ ଧବଳେଶ୍ୱର ମଂଦିର ପଛରେ ଏବେ ସୁଦ୍ଧା ସେମାନଂକର ଧଳା କବର ମୁଂଡଟେକି ଛିଡ଼ାହୋଇଛି। ଶୁଣିଛି, ଏଠାରେ ଯାହାକୁ କବର ଦିଆଯାଇଛି, ସେ ଜଣେ ଉଚ୍ଚ ପାହ୍ୟାର ଇଂରେଜ ସେନାନାୟକ, ମେଜର ବା କର୍ଣ୍ଣେଲ୍ କିଏ ହେବେ। ତାଂକ ନାମ ଥିଲା ଉଇଲ୍‌କିସନ୍। ସେ କବରର ଆଖପାଖ ଅଂଚଳର ନାମ ଉଇଲ୍‌କିସନ୍ ପାଟଣା ଦିଆଯାଇଥିଲା ଗୋରା ଶାସକଂକଦ୍ୱାରା। ସେ କବରଟା ମନେପକାଇଦିଏ ଇଂରେଜ ବିରୁଦ୍ଧରେ ଓଡ଼ିଆ ପାଇକର ପ୍ରଥମ ସଶସ୍ତ୍ର ବିଦ୍ରୋହର କାହାଣୀ; ଯାହା ୧୮୧୭ ମସିହାରେ ଖୁରଧା ମାଟିକୁ ସମଗ୍ର ଭାରତର ପ୍ରଥମ ମୁକ୍ତି-ସଂଗ୍ରାମ କ୍ଷେତ୍ରରୂପେ ରକ୍ତରଂଜିତ କରିଥିଲା। ଏହା ୧୮୫୭ ମସିହାରେ ଘଟିଥିବା ସିପାହି-ବିଦ୍ରୋହର ପ୍ରାୟ ଚାଳିଶ ବର୍ଷ ତଳର କଥା; ମାତ୍ର ଗଭୀର ଦୁଃଖର ବିଷୟ ଯେ, ଏ ପ୍ରଥମ ବିଦ୍ରୋହକୁ ଭାରତବର୍ଷର ଇତିହାସରେ ଆଦୌ ଅଗ୍ର ସ୍ଥାନ ଦିଆଯାଇନାହିଁ। ସେ ଯାହାହେଉ, ରକ୍ତ-ତୀର୍ଥ ଖୋରଧା ମାଟିକୁ ପ୍ରତ୍ୟେକ ଓଡ଼ିଆ ମନେରଖିଛି ଓ ରଖିବ।

ଏହିପରି ଆଉ ଏକ 'ଗୋରା କବର' ଖୋରଧା ହାଇସ୍କୁଲ କଡ଼ରେ ଲାସ୍‌କଟା (ପୋଷ୍ଟମର୍ଟମ୍) ଘରକୁ ଲାଗିରହିଛି। ତାହା ମଧ୍ୟ ସେହିପରି ଜଣେ ଇଂରେଜ ସେନ୍ୟାଧ୍ୟକ୍ଷର କବର। ଆମ ଗାଆଁ ଗୁରୁଜଂଗରେ ଥିବା ଗୋରା କବର ବେଢ଼ା ଭିତରେ ଆଉ ଦୁଇ-ତିନୋଟି ଛୋଟ ଛୋଟ କବର ଦେଖାଯାଏ। କେହି କେହି କହଂତି, ଏହା ମେଜର୍ ଉଇଲ୍‌କିସନଂକ ଘୋଡ଼ା ଓ କୁକୁର ପ୍ରଭୃତିଂକ କବର। ଏହା କେତେଦୂର ବିଶ୍ୱାସଯୋଗ୍ୟ, ମୁଁ ଜାଣେନାହିଁ।

ଏକ କିଂବଦଂତୀ ଅନୁଯାୟୀ ଆମ ବଂଶକୁ 'କଟା ରାଉତରାୟବଂଶ' ବୋଲି କିଏ କିଏ କହଂତି। କଥିତ ଅଛି ଯେ, ଆମର ଜଣେ ପୂର୍ବପୁରୁଷଂକ କନ୍ୟାକୁ

ଗଜପତି ମହାରାଜା ବିବାହକରିଥିଲେ। ବିବାହ ପରେ ସେ ଶ୍ୱଶୁରଂକୁ ନିଜ ନଅରକୁ ନିମଂତ୍ରଣ କରିଥିଲେ; ମାତ୍ର କନ୍ୟାଦାନ ପରେ ଜ୍ୱାଇଁଘରକୁ ଶ୍ୱଶୁର ଯିବା ତାଂକ ପକ୍ଷରେ ମର୍ଯାଦାହାନିକର ଭାବି ସେ ନିଜ ମୁଂଡ ନିଜେ ଖଂଡାରେ କାଟି ତାହାକୁ ପାଟକନା ଘୋଡ଼ାଇ ଏକ ରୂପା ଥାଳିରେ ଗଜପତି ମହାରାଜଂକୁ ପଠାଇଦେବାପାଇଁ ନିର୍ଦ୍ଦେଶ ଦେଇଯାଇଥିଲେ। ସେହିଦିନୁ ଆମ ବଂଶ 'କଟା ରାଉତରାୟବଂଶ' ରୂପେ ପରିଚିତ ହେଲା। ଖୋରଧାର ଜଣେ ଦଳବେହେରାଂକ ସଂବଂଧରେ ମଧ ଏହିପରି ଏକ ଶ୍ରୁତି-କଥା ପ୍ରଚଳିତ ଅଛି। ତାଂକୁ ମଧ 'କଟା ଦଳବେହେରାବଂଶ' କୁହାଯାଇଥାଏ। ତେଣୁ ଏଭଳି ଜନଶ୍ରୁତି କେତେଦୂର ସତ୍ୟ, ତାହା କହିବା କଠିନ।

ମୋ ପିତାମହ ମଧୁସୂଦନ ରାଉତରାୟଂକ ପିତା ଅର୍ଥାତ୍ ମୋ' ପ୍ରପିତାମହଂକ ନାମ ହରିବଂଧୁ ଏବଂ ତାଂକ ପିତାଂକ ନାମ ବ୍ରଜବଂଧୁ ଥିଲା। ହରିବଂଧୁଂକ ପତ୍ନୀଂକ ନାମ ଥିଲା ଗୌରୀ। ହରିବଂଧୁଂକର ତିନି ପୁଅଂକ ନାମ ଯଥାକ୍ରମେ ମଧୁସୂଦନ, ମାଧବ ଏବଂ ମଦନ। ମଦନ ରାଉତରାୟ ତରୁଣ ବୟସରେ ଖ୍ରୀଷ୍ଟାନ ହୋଇଯାଇଥିଲେ। ସେ ଆମ ଘରେ ରହୁନଥିଲେ; ଜଣେ ଖ୍ରୀଷ୍ଟାନ ମହିଳାଂକୁ ବିବାହକରି କଟକରେ କି ଅନ୍ୟ କେଉଁଠି ରହୁଥିଲେ। ସେ କେବେ କେବେ ଆମ ଘରକୁ ବୁଲିଆସୁଥିଲେ। ମୁଁ ବାଲ୍ୟାବସ୍ଥାରେ ତାଂକୁ ଦେଖିଛି। ଖୁବ୍ ଲଂବା ଚୌଡ଼ା ଗୌରବପୁ ଲୋକଟିଏ; ଧଳା ନିଶ ଥିଲା। ସେ ଆସିଲେ ଦାଂଡପିଂଡାରେ କିଂବା ଦାଂଡ ଘରେ ମସିଣା ଉପରେ ବସଂତି। ତାଂକୁ ସେଇଠି ଜଳଖିଆ ଦିଆଯାଏ। ସେ ଆମକୁ ସବୁ ଦେଖି କାଂଦଂତି। ତାଂକୁ ଏଭଳି ଅଜାତିଆ ଭଳି ବାହାରେ ବସାଇବା ମୁଁ ମନେ ମନେ ଆଦୌ ପସଂଦ କରୁନଥିଲି।

ମୁଁ ମୋ' ଜେଜେବାପା ମଧୁସୂଦନ କିଂବା ତାଂକ ମଝିଆଁ ଭାଇ ମାଧବଂକୁ ଦେଖିନାହିଁ। ସେମାନେ ମୁଁ ଜନ୍ମହେବା ପୂର୍ବରୁ ଇହଧାମ ଛାଡ଼ି ଚାଲିଯାଇଥିଲେ। ଏଇ ମଦନ ଜେଜେଂକୁ ଥରେ ଦି'ଥର ଦେଖିହିଁ ସେମାନଂକର ଚେହେରା କିପରି ହୋଇଥିବ, ମୁଁ କଳ୍ପନା କରୁଥିଲି।

କହିଛି, ମୋ ଜେଜେବାପା ମଧୁସୂଦନ ରାଉତରାୟ ଓଡ଼ିଶାର ଏକ କରଦ ରାଜ୍ୟ ବୌଦ ଗଡ଼ଜାତର ଦେବାନ ଥିଲେ। ସେ ୨୫ ବର୍ଷକାଳ ସେଠାରେ ଥିଲେ। ମୋ' ବାପା, ଦଦା, ପିଉସୀମାନଂକ ମଧ୍ୟରୁ ଅଧିକାଂଶ ବୌଦରେହିଁ ଜନ୍ମହୋଇଥିଲେ। ସେମାନଂକର ବାଲ୍ୟାବସ୍ଥା ଓ ପ୍ରାଥମିକ ଶିକ୍ଷାଦୀକ୍ଷା ସେହିଠାରେହିଁ ସମାପନ ହୋଇଥିଲା।

ମଧୁସୂଦନଂକ ପତ୍ନୀଂକ ନାମ (ମୋ' ଜେଜେମା') କେଳି। ସେ ଖୁବ୍ ଗୋରୀ ଓ ସୁଂଦରୀ ଥିଲେ। ମୁଁ ୧୫-୧୬ ବର୍ଷର ହେବାଯାଏଁ ସେ ବଂଚିଥିଲେ। ସେମାନଂକର ଛଅ ପୁଅଂକ ନାମ ଯଥାକ୍ରମେ ସଦାନଂଦ, ପ୍ରସନ୍ନକୁମାର,

ନଂଦକିଶୋର, ବିନୋଦବିହାରୀ, ବ୍ରଜମୋହନ ଓ ଲଳିତମୋହନ। ଏହାଛଡ଼ା ତିନି ଝିଅ ମଧ୍ୟ ଥିଲେ। ଦୁଇ ପୁଅ ବାଲ୍ୟାବସ୍ଥାରେ ମରିଯାଇଥିଲେ। ତିନି ପିଉସୀଂକର ବିବାହ ହୋଇଯାଇଥିଲା। ମାଧବ ରାଉତରାୟଂକର ବିବାହ ହୋଇ ଯାଇଥିଲା। ମାଧବ ରାଉତରାୟଂକର ପୁଅ ଚିଂତାମଣି ରାଉତରାୟ ମଧ୍ୟ ଏହି ଏକାନ୍ନବର୍ତୀ ପରିବାରରେ ରହୁଥିଲେ। ତେଣୁ ଆମ ଘର କହିଲେ ଏହି ସାତ ଭାଇଂକ ପରିବାର ବୁଝାଉଥିଲା। ମାଧବଂକ ପତ୍ନୀ ମଧ୍ୟ ଥିଲେ। ମୁଁ ମୋ ଜେଜେମାଂକୁ ବଡ଼ ମାଉଁ ଏବଂ ଚିଂତାମଣି ଦଦାଂକ ମାଆଂକୁ (ମାଧବଂକ ପତ୍ନୀ) ଭାଇ ଜେଜେ ବୋଲି ଡାକୁଥିଲି। ବଡ଼ ଜେଜେମାଆ କେଳି ଦେବୀ ଖୋରଧାଠୁ ଛ'ସାତ ମାଇଲ ଦୂର ଏକ ଗାଆଁର କରଣକୁଳର ଝିଅ। ପିଲାଦିନେ ଶୁଣିଥିଲି, 'ଦାର୍ଢ୍ୟତାଭକ୍ତି'ରେ ବର୍ଣିତ ବଂଧୁ ମହାଂତିକ ବଂଶରେ ତାଂକର ଜନ୍ମ।

ମୋ ଜନ୍ମିତ ବାପା ପ୍ରସନ୍ନ କୁମାର ରାଉତରାୟ ଖୋରଧାର ପ୍ରସିଦ୍ଧ ମୁକ୍ତାର ଥିଲେ। ତାଂକ ତଳେ ତାଂକ ଯାଆଁଳା ଭାଇ ନଂଦକିଶୋର ତାଂକଠୁ ମାତ୍ର ପାଂଚ ମିନିଟ ସାନ ଥିଲେ। ସେ ଥିଲେ ପୋଲିସ ସବ୍‌ଇନସ୍‌ପେକ୍ଟର୍, କ୍ରମେ ଇନସ୍‌ପେକ୍ଟର୍। ମୋ ବାପା ଓ ନଂଦଦଦା ଯାଆଁଳା ଭାଇ ହୋଇଥିବା ହେତୁ କେହି କାହାକୁ ନମସ୍କାର କରଂତି ନାହିଁ କି ନଂଦଦଦା ତାଂକୁ ନନା ଡାକଂତି ନାହିଁ; ଉଭୟେ ପରସ୍ପରକୁ ନଂଦ ଓ ପ୍ରସନ୍ନ ବୋଲି ଡକାଡକି ହୁଅଂତି। ଏ ଦୁହେଁ ମାଟ୍ରିକ୍ୟୁଲେସନ୍ ପାସ୍ କରିଥିଲେ। ତାଂକ ତଳ ଭାଇ ବିନୋଦବିହାରୀ ବି.ଏ. ପାସ୍ କରିଥିଲେ। ମାମା କହେ, "ବିନ ତିନି ପାସ୍ କରିଛଂତି। ଏ ଗାଆଁରେ ଆଉ କେହି ଏତେ ପାସ୍ କରିନାହିଁ।" ବିନଦଦା ସ୍କୁଲ-ଶିକ୍ଷକ ଥିଲେ। ତାଂକ ତଳ ଦି'ଭାଇ ବ୍ରଜ ଓ ଲଳିତଦଦା ମାଟ୍ରିକ୍ୟୁଲେସନ୍ ପାସ୍ କରିନଥିଲେ। ଲଳିତଦଦା ବା ମିଟିଦଦା ମାଟ୍ରିକ୍ୟୁଲେଶନ୍ ଶେଷ କ୍ଲାସ୍‌ରେ ପଢୁଥିବାବେଳେ ଖୋରଧାର ପୁରୁଣା ହାଇସ୍କୁଲ ଘର ପୋଡ଼ିବା ଅଭିଯୋଗରେ ନବନିଯୁକ୍ତ ହେଡ୍‌ମାଷ୍ଟର୍ ବାଂକନିଧି ପଟ୍ଟନାୟକଂକ ଦ୍ୱାରା ବହିଷ୍କୃତ ବା ରସ୍‌ଟିକେଟେଡ୍ ହୋଇଥିଲେ। ଚିଂତାମଣିଦଦା ମାଟ୍ରିକ୍ୟୁଲେଶନ୍ ପାସ୍‌କରି ଖୋରଧା ବ୍ୟାଂକର ମ୍ୟାନେଜର ଥିଲେ। ଏ ସମସ୍ତଂକଠୁ ଜ୍ୟେଷ୍ଠ ଥିଲେ ସଦାନଂଦ ରାଉତରାୟ। ସେ ମାଟ୍ରିକ୍ୟୁଲେସନ୍ ଯାଏ ପଢ଼ିଥିଲେ। ସେ ଥିଲେ ସରବରାକାର। ବ୍ରଜଦଦାଂକୁ ସମସ୍ତେ 'ପାତ୍ରୁ' ବୋଲି ଡାକୁଥିଲେ।

ସଦାନଂଦ ନିରାକାରପୁର ନିକଟ ଯାଜପୁର ମୌଜାର ସରବରାକାର ଥିଲେ। ସେ ମୋତେ ପୋଷ୍ୟପୁତ୍ର କରିନେଇଥିଲେ। ତାଂକ ସ୍ତ୍ରୀ ହେମମାଳୀ ଦେବୀଂକ କୋଳରେହିଁ ମୁଁ ଜନ୍ମହେବାଦିନୁ ବଢ଼ିଥିଲି। ମୁଁ ତାଂକୁ ମାମା ବୋଲି ଡାକୁଥିଲି। ମାମା ଥିଲା ବାଂକୀ ନରଣପୁର ସାମଂତବଂଶର ଝିଅ। ମୋ ନିଜ ମାଆ ମୁକ୍ତା ଦେବୀ, ଯାହାକୁ ମୁଁ ବୋଉ ବୋଲି ଡାକିଲି, ସେ ରଣପୁର ରାଜାଂକ

ବିରାଦରଙ୍କ କନ୍ୟା ଥିଲେ। ମୁଁ ସଦାନନ୍ଦଙ୍କୁ ବଡ଼ଦଦେଇ ଏବଂ ମୋ ଜନ୍ମିତ ବାପା ପ୍ରସନ୍ନକୁମାର ରାଉତରାୟଙ୍କୁ ସାନଦଦେଇ ବୋଲି ଡାକୁଥିଲି।

**ଜେଜେବାପା ଓ ତାଙ୍କ କୁକୁର –**

ପୂର୍ବରୁ କହିଛି, ମୁଁ ଜେଜେବାପାଙ୍କୁ ଦେଖିନାହିଁ। ମୁଁ ଜନ୍ମହେଲାବେଳକୁ ସେ ଚାଲିଯାଇଥିଲେ। ତଥାପି ମୁଁ ତାଙ୍କ ସଂବନ୍ଧରେ ଅନେକ କଥା ଜେଜେମା' ଓ ମାମା ମୁହଁରୁ ଶୁଣିଛି। ମୁଁ ଯେତେବେଳେ ତାଙ୍କ କଥା ଶୁଣେ, ମୋର ମନେହୁଏ, ସେ ଯେପରି ଥିଲେ ଏକ ଉଚ୍ଚକାଟର ମଣିଷ। ଦେଖିବାକୁ ସେ ଥିଲେ ଖୁବ୍ ସୁନ୍ଦର; ଯେମିତି ଲମ୍ବା ଚୌଡ଼ା, ସେମିତି ଗୋରା ତକତକ ଚେହେରା। ତାଙ୍କ ବାଘୁଆ ନିଶ ଦି'ପଟ ଦେଖିଲେ ଶତ୍ରୁ ବି କୁଆଡ଼େ ଛାନିଆ ହୋଇଯାଏ। ତାଙ୍କ ଚେହେରାରୁ କିଛିଟା ପାଇଥିଲେ ନନ୍ଦଦଦା। ମୋ ବାପା ପ୍ରସନ୍ନକୁମାର ଓ ତାଙ୍କର ଅନ୍ୟ ଭାଇମାନେ ଫରସା ଥିଲେ ମଧ୍ୟ ଜେଜେବାପାଙ୍କପରି ଦୀର୍ଘକାୟ ନଥିଲେ। ସେ ବୌଦ ରାଜ୍ୟର ଦେବାନ୍ ଥିଲାବେଳେ ଲୋକମାନେ ରାଜାଙ୍କଠୁ ବଳି ତାଙ୍କୁ ଭୟକରୁଥିଲେ।

ମାତ୍ର କିଛି ବର୍ଷ ପରେ ରାଜାଙ୍କ ସଂଗେ ତାଙ୍କର ମନାନ୍ତର ଘଟିଲା। ସେ ଚାକିରିରୁ ଇସ୍ତଫା ଦେଇ ଘରକୁ ଚାଲିଆସିଲେ। ସେ ଆସିଲାବେଳେ ତାଙ୍କର ସବୁ ଘରକରଣା ଜିନିଷପତ୍ର, ପିତଳ ହଣ୍ଡାଠାରୁ ଆରମ୍ଭ କରି ଖଟ ପଲଙ୍କ ପର୍ଯ୍ୟନ୍ତ କୋଡ଼ିଏ ଖଣ୍ଡ ଶଗଡ଼ରେ ବୋଝେଇ ହୋଇ ଆସିଥିଲା। ସେ ଗୋଟାଏ ଦନ୍ତା ହାତୀ ମଧ୍ୟ ଆଣିଥିଲେ। ଆଉ ଆଣିଥିଲେ ସଂଗରେ ତାଙ୍କର ପ୍ରିୟ କୁକୁର ନେପାକୁ।

ସେ ମୃତ୍ୟୁ ପର୍ଯ୍ୟନ୍ତ ଗାଆଁରେହିଁ ଥିଲେ। ସେ ବୁଲିବାହାରିଲେ ନେପା ତାଙ୍କ ସଂଗେ ସଂଗେ ଯାଉଥିଲା। ପୋଖରୀକୁ ଗାଧୋଇଗଲେ ନେପା ପଛେ ପଛେ ଯାଉଥିଲା। ଅନେକେ କହନ୍ତି, ତାଙ୍କ ହାତବାଡ଼ିଟାକୁ ଦାନ୍ତରେ କାମୁଡ଼ି କେବେ କେବେ ନେପା ତାଙ୍କ ସଂଗରେ ଯାଉଥିଲା। ସେ ବଂଚିଥିବାଯାଏଁ ନେପା ଥିଲା। ସେ ଯେଉଁ ଦିନ ମରିଗଲେ, ନେପା ତାଙ୍କ ଶବଯାତ୍ରା ପଛେ ପଛେ ଶ୍ମଶାନକୁ ଯାଇଥିଲା। ସେଠୁ ଫେରିଆସି ତାଙ୍କ ଶୋଇବା ଘର ଅଗଣାରେ ଶୋଇରହିଲା; ଜମା ଖିଆପିଆ କଲାନାହିଁ। ଯେତେ ଯାହା ଦେଲେ ମୁହଁ ବୁଲାଇ ଚାହିଁଲା ବି ନାହିଁ। ଏମିତି ଦଶ-ପନ୍ଦର ଦିନ ପଡ଼ିରହି ନେପା ବି ମରିଗଲା।

ଜେଜେବାପାଙ୍କ ଏକ ହାତୀବି ଥିଲା। ହାତୀଟା କେତେ ବର୍ଷ ବଂଚିଥିଲା, ଜାଣେନାହିଁ। ମୁଁ ଜନ୍ମହେଲାବେଳକୁ ସେ ହାତୀଟା ମରିଯାଇଥିଲା। କେବଳ ଗୋଟାଏ ମୋଟା ଶାଳଖୁଣ୍ଟ ଆମ ବାହାର ଖଂଜା ପାଚେରି ଆରପଟେ ପୋତା ହୋଇ ରହିଥିଲା। ସେଟାକୁ ସମସ୍ତେ ହାତୀଖୁଣ୍ଟ କହୁଥିଲେ। ସେ ଦନ୍ତାହାତୀଟା ଏଇ ଖୁଣ୍ଟରେ ବନ୍ଧା ହେଉଥିଲା।

ପିତାମହଙ୍କ ହସ୍ତାକ୍ଷର ମୁଁ ବହୁ ବହିପତ୍ରରେ ଦେଖିଛି। ହରିଦ୍ରା କଷ କାଳିରେ ସେ ସମୟରେ ସ୍ୟାହି ତିଆରି ହେଉଥିଲା। ସେହି ସ୍ୟାହିରେ ପରକଲମରେ ସମସ୍ତେ ଲେଖୁଥିଲେ। ତାଂକର ଥାକ ଥାକ ବହି ମୁଁ ଟିକିଏ ବଡ଼ହେଲାପରେ ପଢ଼ିଛି। ବଂକିମଚନ୍ଦ୍ର ଗ୍ରଂଥାବଳୀ, ବଂଗ ଭାଷାରେ ଅନୂଦିତ 'ଲଂଡନ ରହସ୍ୟ' (The Mysteries of the Court of London) ଯେଉଁଥିରେ କି ରାଜା, ରାଣୀ, ଲର୍ଡ ଏବଂ ବଡ଼ବଡ଼ିଆଂକ ପ୍ରେମକାହାଣୀ ଲିପିବଦ୍ଧ ହୋଇଥିଲା, ମୁଁ ପଢ଼ି ରୋମାଂଚିତ ହୋଇଛି। ସାର୍ ୱାଲଟେୟାର୍ ସ୍କଟ୍ଂକ ଉପନ୍ୟାସ 'ରେବେକା' ଏବଂ 'Westward Ho' ପ୍ରଭୃତି ମଧ୍ୟ ତାଂକ ସଂଗ୍ରହରେ ଥିଲା। ବହୁ ସଂହିତା ଯଥା– ମନୁ, ପରାଶର ପ୍ରଭୃତି ଥିଲା। ଏଥିରେ ମୂଳ ସଂସ୍କୃତ ଶ୍ଲୋକ ସହିତ ବଂଗଳା ଅନୁବାଦ ଦିଆଯାଇଥିଲା। ସମସ୍ତ ଉପନିଷଦ୍ ଯଥା– କଠ, କେନ, ଈଶ, ବୃହଦାରନ୍ୟକ ପ୍ରଭୃତି ମୂଳ ସଂସ୍କୃତ ଶ୍ଲୋକ ବଂଗଳା ଅନୁବାଦ ସହ ଥିଲା। ମୂଳ ସଂସ୍କୃତ ଭାଗବତ ବଂଗଳାରେ ଅନୁବାଦ ଥିଲା। ମୁଁ ସେସବୁ ପରେ ପଢ଼ିଲି। ତାଂକ ହସ୍ତାକ୍ଷରର ରଂଗ, ଯାହା ହରିଦ୍ରା ରଂଗର ଥିଲା, ଏବେ ବି ମୋ ଆଖିରେ ନାଚିଯାଏ। ଜେଜେବାପା କାଳୀପୂଜା କରୁଥିଲେ। ମଦ ବା କାରଣବାରି ସେ ପୂଜାରେ ରୋଜ ଲୋଡ଼ାହେଉଥିଲା। ଭାଗବତିଆ ବାଉରି ରୋଜ୍ ଗାମୁଛା ଘୋଡ଼ାଇ ବୋତଲରେ ମଦ ଖୋରଧା ଟାଉନରୁ ଆଣି ଦେଉଥିଲା। ଜେଜେମା' ପାଟିକରି ତାଂକୁ ଗାଳିଦେଉଥିଲେ ମଦ ଖାଉଥିବା ଯୋଗୁଁ।

ଶେଷରେ ମଦ୍ୟପାନ ହେତୁ କଲିଜା ବଢ଼ିଯାଇ ସେ ମୃତ୍ୟୁବରଣକଲେ। ବୈଦ୍ୟ ଚିଂତାମଣି ଖାଡ଼ଂଗାଂକୁ ଡକାଯାଇଥିଲା। ସେ ବହୁତ ଔଷଧପତ୍ର କଲେ; ମାତ୍ର କିଛି ଫଳ ହେଲାନାହିଁ। ଏସବୁ ମୁଁ ପରେ ମାମା ଓ ଅନ୍ୟମାନଂକଠୁ ଶୁଣିଥିଲି।

**ଜେଜେମା' ଓ ମୁଁ–**

ମୋ ଜେଜେମାଂକର ମୁଁ ଥିଲି ପ୍ରଥମ ନାତି; ତେଣୁ ସେ ମୋତେ ଖୁବ୍ ଭଲପାଉଥିଲେ। ସେ ଯୁଆଡ଼େ ଗଲେ ମୋତେ ସଂଗରେ ନେଇ ଯାଉଥିଲେ। ଥରେ ନଂଦଦଦାଂକ ପାଖକୁ କଟକ ଯାଇଥିଲେ, ମୁଁ ମଧ ତାଂକ ସଂଗରେ ଯାଇଥିଲି। ନଂଦଦଦା କଟକରେ (ବୋଧହୁଏ ଲାଲବାଗ ଥାନାରେ) ପୋଲିସ ସବ୍-ଇନିସ୍‌ପେକ୍ଟର୍ ଥାଆଂତି। ମୁଁ କଟକରେ ପ୍ରଥମେ ଟେଲିଫୋନ୍ ଦେଖିଲି ଏବଂ ଟେଲିଫୋନ୍‌ରେ କଥାବାର୍ତା କଲି। ସେ ଟେଲିଫୋନ୍ ଭିନ୍ନ ପ୍ରକାରର। କାନରେ ଶୁଣିବାପାଇଁ ଏବଂ କହିବାପାଇଁ ତାର ଦୁଇଟା ଅଲଗା ଅଲଗା ନଳ ଥାଏ। ମୋତେ ସେପଟୁ କିଏ ଡାକିଲା 'କିରେ ବୁଢ଼ା ?' (ବୋଧହୁଏ ନଂଦଦଦା) ମୁଁ ଘାବରାଇଗଲି; କିଛି ଜବାବ ଦେଇପାରିଲିନାହିଁ। ମୋ ବୟସ ସେତେବେଳକୁ ଛଅ-ସାତ ବର୍ଷ ହୋଇଥାଏ। ମୁଁ ଗୋଟାଏ ଜରିଲଗା ଭେଲ୍‌ଭେଟ୍ କୋଟ୍ ଏବଂ ପଗଡ଼ି ପିଂଧିଥାଏ। ଏଭଳି ବହୁ କୋଟ୍ ଜେଜେବାପା (ବିଭିନ୍ନ ସାଇଜ୍‌ର)

ବୈଦରୁ ଆଣିଥାଂତି । ଏମିତିକା ପୋଷାକ ସବୁ ରଜାପିଲାମାନେ ପିଂଧତି । କଟକରେ ମୁଁ ପ୍ରଥମ ବାୟସ୍କୋପ୍ ଦେଖିଲି – ତୋପ ଓ ବଂଧୁକରୁ ଧୂଆଁ ବାହାରୁଥାଏ; ଲୋକମାନେ ଦୌଡ଼ାଦୌଡ଼ି କରୁଥାଂତି । ସେତେବେଳେ Silent Films ବା ନିର୍ବାକ୍ ଚଳଚ୍ଚିତ୍ରର ଯୁଗ ସେଇମାତ୍ର ଆରଂଭ ହୋଇଛି ଓଡ଼ିଶାରେ । ଚାର୍ଲିଚାପଲିନ୍ ସେତେବେଳେ ସିନେମା ଜଗତ୍‌ର ସମ୍ରାଟ୍ । କହିଛି ତ, ଜେଜେମା' ଖୁବ୍ ଗୋରୀ ଓ ସୁଂଦରୀ ଥିଲେ । ସେ ସବୁବେଳେ ଗୋଟାଏ ସୁନା ମୋହରର ହାର ପିଂଧୁଥିଲେ ବେକରେ, ଶୋଇଲାବେଳେ ମଧ । ସେ ହାରରେ ପ୍ରାୟ ୨୦ଟା ସୁନାମୋହର ଗୁଂଥା ହୋଇଥାଏ । ତାହା ତାଂକ ବେକର ଆଗପଛ ଦୁଇ ପାଖରେ ଝୁଲୁଥାଏ । କଟକରେ ମୁଁ ମୋର ଅପୂର୍ବ ପୋଷାକରେ ସଜ୍ଜିତ ହୋଇ ତାଂକପାଖେ ଛିଡ଼ା ହୋଇଥିବା ଫଟୋ ଏବେ ମଧ ମୋ ଶୋଇଲାଘରେ କାଂଥରେ ଝୁଲୁଛି ।

ଦୁଃଖର ବିଷୟ ବଡ଼ଦଦେଇ ବା ମୋ ପୋଷ୍ୟପିତା ସଦାନଂଦ, ମାମା ଓ ବୋଉର ଫଟୋ ମୋ ପାଖରେ ନାହିଁ ।

ମୋ' ବୟସ ୧୪-୧୫ ବର୍ଷ ହେବାବେଳକୁ ଜେଜେମା' ଚାଲିଗଲେ । ମରିବାର କିଛି ସମୟ ପୂର୍ବରୁ ମୁଁ ତାଂକ ପାଖରେ ବସିଥିଲେ ମଧ ସେ ଖାଲି କହୁଥାଂତି 'ବୁଦ୍ଧାକୁ ଡାକ', 'ବୁଦ୍ଧାକୁ ଡାକ' । ପ୍ରାଣବାୟୁ ଉଡ଼ିଯିବା ପର୍ଯଂତ ସେ ଖାଲି ଏଇ ଶବ୍ଦ ଉଚ୍ଚାରଣ କରିଥିଲେ । ତାଂକ ଚେତନା ଆଚ୍ଛନ୍ନ ହୋଇଆସୁଥିଲା । ତାଂକ ମୁହଁରେ ବୋହୂମାନେ ଗଂଗାଜଳ ଓ ତୁଳସୀ ଦେଲେ । ମୁଁ ନୀରବ ନିସ୍ପଂଦ ହୋଇ ଦେଖୁଥିଲି ସେ କିମିତି ଆମ ସମସ୍ତଂକୁ ଛାଡ଼ି ଧୀରେ ଧୀରେ ଅଲଗା ହୋଇଯାଉଥିଲେ । ମଲାବେଳେ ମଧ ସେ ସୁନା ମୋହରର ହାରଟା ତାଂକ ବେକରେ ଥିଲା ।

ହଁ, ମୁଁ ମୋ' ଜନ୍ମମୁହୂର୍ତ କଥା କହୁ କହୁ ଆସି ଘରଯାକର ସମସ୍ତଂକ କଥା କହିସାରିଲିଣି; ଏପରିକି ହାତୀ ଓ କୁକୁରକୁ ମଧ ବାଦ୍ ଦେଇନାହିଁ । କିଂତୁ ଏ ବସ୍ତୁ ପରିବେଶକୁ ଛାଡ଼ି ମୁଁ ତ ଇଂଚେ ହେଲେ ଆଗକୁ ବଢ଼ିପାରି ନଥାଂତି ।

### ମୋ' ଜନ୍ମ-ଜାତକର କେତୋଟି ମୁହୂର୍ତ –

ମୋର ଜନ୍ମ ତାରିଖ ୧୯୧୩ ମସିହା ମଇ ମାସ ୧୩ ତାରିଖ ବୋଲି ଜଣାଯାଏ । ସ୍କୁଲ ସାର୍ଟିଫିକେଟ ଅନୁଯାୟୀ ମୋର ଜନ୍ମ ତାରିଖ ମଇ ମାସ ୧୩ ତାରିଖ ୧୯୧୬ ମସିହା । ମୋର ପାସ୍‌ପୋର୍ଟ ଓ ଅନ୍ୟାନ୍ୟ ରେକର୍ଡପତ୍ର ଇତ୍ୟାଦିରେ ଜନ୍ମ ତାରିଖ ତା୧୩.୫.୧୯୧୬ ବୋଲି ଗତ ୫୫ ବର୍ଷ ଧରି ଚାଲି- ଆସୁଛି । ଜାତକ ଅନୁସାରେ ଜନ୍ମଦିନ ତା୧୩.୫.୧୯୧୩ ବୋଲି ଆମ ଘରେ କହଂତି; ଜାତକଟି ହଜିଯାଇଛି ପିଲାବେଳୁ । ମୋ ସ୍ୱନକ୍ଷତ୍ର ମୁଁ ଖୋରଧାରେ ଥିବାଯାଏ ପ୍ରତିବର୍ଷ ବୈଶାଖ ଶୁକ୍ଳ-ଅଷ୍ଟମୀ ତିଥିରେ ପାଳିତ ହେଉଥିଲା । ୧୮ ବର୍ଷ ବୟସଯାଏଁ

ମୁଁ ପ୍ରାୟ ଖୋରଧାରେ ରହୁଥିଲି। ମୋର ରାଶିନକ୍ଷତ୍ର ସଂବଂଧରେ ମୁଁ ମାମାଠାରୁ ଶୁଣିଛି, ମୋର ସିଂହ ରାଶି ଏବଂ ମଘା ନକ୍ଷତ୍ର। ଏହା ଅନେକାଂଶରେ ଠିକ୍ ବୋଲି ମୋର ମନେହୁଏ। ସିଂହର ସମସ୍ତ ଚାରିତ୍ରିକ ଲକ୍ଷଣ ମୋ'ଠାରେ ଅଛି। ମୁଁ ବଡ଼ ସ୍ୱାଭିମାନୀ, ଆତ୍ମସଚେତନ ଏବଂ କ୍ଷଣକ୍ରୋଧୀ, ଏଥିରେ ସଂଦେହ ନାହିଁ। କାହାକୁ ଖୋସାମତ କରିବା ବା କାହାପାଖରେ ମୁଂଡ ନୋଇଁବା ମୋ' ଛାତକରେ ନାହିଁ। ସେତିକି କରିଜାଣିଥିଲେ ମୋ' ଆର୍ଥିକ ସ୍ଥିତି ଆଜି ଅନ୍ୟ ପ୍ରକାର ହୋଇଥାଂତା; ତଥାପି ମୁଁ ଜୀବନରେ ଲକ୍ଷ ଲକ୍ଷ ଟଂକା ରୋଜଗାର କରିଛି ଏବଂ ଅକାତରରେ ଉଡ଼ାଇଦେଇଛି। ମୋର ସେଥିପାଇଁ କୌଣସି କ୍ଷୋଭ ନାହିଁ।

ମଣିଷ କେତେ ଦିନ ବା ବଂଚିବ? କ'ଣ ହେବ ଏ ଟଂକା-ପଇସା, ଜମି-ବାଡ଼ି, ଘରଦ୍ୱାର? ଏସବୁ କ'ଣ ତା' ସଂଗରେ ଯିବ? —ଏକ ସହଜାତ ବୈରାଗ୍ୟ ମୋତେ ଯେମିତି ସବୁବେଳେ ଆଚ୍ଛନ୍ନ କରି ରହିଛି; ମୋତେ ଜମା ଆଗକୁ ବଢ଼ିବାକୁ ଦେଉନାହିଁ। ଏହା ହାତରୁ ମୋର ରକ୍ଷାନାହିଁ; ଅବଶ୍ୟ ଯେତିକି ନିହାତି ଦରକାର, ଯାହା ନ ହେଲେ ଚଳିବ ନାହିଁ, ସେଇ ନିମ୍ନତମ ଆବଶ୍ୟକତାଟିକକ, ହୁଏତ ମୁଁ କୌଣସିମତେ ନିଜକୁ ଠେଲିପେଲି, ପୂରଣ କରିପାରିଛି। କିଂତୁ କୌଣସିଥିରେ ମୋର ସ୍ପୃହା ବେଶୀ ଦିନ ସ୍ଥାୟୀ ହୋଇପାରିନାହିଁ। ମୁଁ ତାକୁ ଛାଡ଼ି ଆଗେଇଯାଇଛି କେଉଁ ଏକ ନିରୁଦ୍ଦିଷ୍ଟର ସଂଧାନରେ, ଯାହାର କିଛି ଠିକ୍-ଠିକଣା ନାହିଁ, ଯାହା ମୋ ପକ୍ଷରେ ଅପରିଜ୍ଞାତ ଏବଂ ଏପରିକି ଅନନୁମେୟ ମଧ୍ୟ। ମୋର ଅନେକ ସମୟରେ ମନେପଡ଼େ ଟଲ୍‌ଷ୍ଟୟଂକର ସେହି ଗଳ୍ପଟା– 'ଆଠଫୁଟ ଭୂଇଁ', ଯାହା ମଣିଷର ସର୍ବଶେଷ ଆବଶ୍ୟକତା। ୧୯୭୯ ମସିହାରେ ରୁଷିଆର ପୁଷ୍କିନ୍ ସେମିନାର୍‌ରେ ଯୋଗଦେବା ଅବସରରେ ଟଲ୍‌ଷ୍ଟୟଂକ ଜନ୍ମସ୍ଥାନ ଦେଖିବାକୁ ଯାଇଥିଲି। ମସ୍କୋଠୁ ପ୍ରାୟ ୩୦୦ ମାଇଲ୍ ଦୂର। ଏକର ଏକର ବ୍ୟାପୀ ତାଂକର ବିରାଟ estate ହତା ବୁଲିସାରିବା ପରେ ଶେଷରେ ଏକ କୋଣରେ ଗୋଟାଏ କୁନ୍ଦ ଉପରେ ତାଂକର ଆଠଫୁଟ ପରିମିତ ଘାସଘେରା ଛୋଟ ସମାଧିଟି ଦେଖି ମୁଁ କିଛିକ୍ଷଣ ସ୍ତବ୍ଧ ହୋଇଯାଇଥିଲି। ମୋ ପାଟିରୁ କୌଣସି କଥା ବାହାରିନଥିଲା କେତେବେଳଯାଏ।

ମୋ' ଜନ୍ମର ଛଅଦିନରେ ମୋର ଷଠୀଘର ଗଢ଼ାଯାଇଥିଲା ପଛ ଖଂଜାରେ ଏକ ଘର କାଂଥରେ। ସେ ଷଠୀଘର ବହୁ ବର୍ଷ ପର୍ଯ୍ୟଂତ ସେଠାରେ ସ୍ଥାନିତ ଥିବାର ମୁଁ ଲକ୍ଷ୍ୟକରିଛି। ଚାରିକଣିଆ ଚାରିଟା ଗାର ଉପରେ କଉଡ଼ି ସବୁ ଖଂଜାଯାଇଥିଲା। ସେଇ ଷଠୀଦୋସେଣ କଥା ମୋ' କବିତାରେ ମଧ୍ୟ ଫୁଟିଉଠିଛି।

''ମାଟିର ସେଇ ସରଗ ମୋର
ସେଇଠି ଅଛି ମୋ' ଷଠୀଘର
ସେଇଠି ପୁଣି ଜଳିବ ଶେଷେ

ମୋହରି ଚିତା ନିଆଁଟି।
ଛୋଟ ମୋର ଗାଆଁଟି।'' ('ପଲ୍ଲିଶ୍ରୀ')

ମୋର ଏକୋଇଶିଆ ହୋଇଥିବ ଜନ୍ମହେବାର ଏକୋଇଶ ଦିନରେ, ଖୁବ୍ ଜାକଜମକରେ। ବଡ଼ଦଦେଇ ନାଆଁ ଦେଇଥିବେ 'ସଚ୍ଚିଦାନନ୍ଦ', ଯାହା ଏବେ କଟିକାଟି ଯାଇ 'ସଚ୍ଚି'ରେ ପରିଣତ ହେଲାଣି ଖବରକାଗଜମାନଙ୍କ ହାତରେ ପଡ଼ି। ଏଇ ହେଲା ମୋ ଜନ୍ମଜାତକର ଆଦ୍ୟ କେତୋଟି ଘଟନା, ଯାହା ମୁଁ ସବୁଟା ନିଜେ ନ ଦେଖିଥିଲେ ମଧ୍ୟ ପରେ କଳ୍ପନା-ଚକ୍ଷୁରେ ଦେଖିଛି ଏବଂ ଜାଣିଛି ଯେ ଏହା ଅକ୍ଷରେ ଅକ୍ଷରେ ସତ୍ୟ।

**ଜୀବନର କ୍ଷୁଧା –**

ଆଦ୍ୟ ଶୈଶବରେ ମୁଁ ନିଶ୍ଚୟ ସବୁ ଜିନିଷ ପାଟିରେ ପୂରାଉଥିବି। ନିଜ ଆଂଗୁଠି ଚୋଷି ନିଜର ସ୍ପର୍ଶ ସ୍ୱାଦ ଓ ଗଂଧ ଅନୁଭବ କରୁଥିବି। ତଳେ ଛାଡ଼ିଦେଲେ ମାଟି ଖାଉଥିବି। ମାତା ବସୁଂଧରାରୁ ଶିଶୁ ଜାଣେ ପୁଳା ପୁଳା ମାଟି ଖାଇ। କେବଳ ଯେ ଜନ୍ମହେବା ପରେ ସେ ମାଟି ଖାଏ, ତା ନୁହେଁ; ଜନ୍ମହେବା ପୂର୍ବରୁ ମାଆ ପେଟରେ ଥାଇ ମଧ୍ୟ ସେ ମାଟି ଖାଇବାକୁ ଚାହୁଁଥାଏ। ତା' ନହେଲେ ଗର୍ଭିଣୀ ସ୍ତ୍ରୀମାନେ ମାଟି ଖାଇବାକୁ ଇଚ୍ଛା କରଂତେ କାହିଁକି ?

ଶିଶୁ ତା'ର ବାସ୍ତବତାକୁ ଚିହ୍ନେ ଜିଭଦ୍ୱାରା। ସେ ସବୁକିଛି ପାଟିରେ ପୂରାଇଦିଏ ନିଜ ଆଂଗୁଠିରୁ ଆରଂଭ କରି ସୁଂଦର ସୁଂଦର ଖେଳନା ପର୍ଯ୍ୟଂତ। ଯାହା ଭଲ, ଯାହା ସୁନ୍ଦର, ତାହା ସେ ଖାଇବାକୁ ଚାହେଁ; ପୂରାମାତ୍ରାରେ ଆତ୍ମସାତ୍ କରିବାକୁ ଚାହେଁ। ତାହା ନ କରିବାଯାଏଁ ତା'ର ତୃପ୍ତି ନାହିଁ। ପ୍ରେମ ସଂବଂଧରେ ମଧ୍ୟ ଠିକ୍ ଏହି କଥାଟା ଖାଟେ।

ଏ ଯୁଗର ପ୍ରଖ୍ୟାତ ଅତିବାସ୍ତବବାଦୀ (ସୁରରିୟଲିଷ୍ଟ) ଚିତ୍ରଶିଳ୍ପୀ ଡ୍ୟାଲୀ କହଂତି– ''Beauty should be edible, or not at all'.

''ଶିଶୁ ବଡ଼ହେଲେ ଏଇ ଖାଇବା ପ୍ରବୃତ୍ତିହିଁ ସର୍ବଗ୍ରାସୀ ପ୍ରେମରେ ପରିଣତହୁଏ। ସେ ଯାହାକୁ ଭଲପାଏ, ତାକୁ ପୂରାପୂରି ଖାଇଦେବାକୁ ବା ଆତ୍ମସାତ୍ କରିବାକୁ ଚାହେଁ ଏବଂ ତା'ର ପ୍ରେମିକାଦ୍ୱାରା ମଧ୍ୟ ପୂରାପୂରି ଭକ୍ଷିତ ହେବାକୁ ଚାହେଁ। 'To eat and to be eaten up' ପ୍ରେମର ମୌଳିକ ପ୍ରବଣତା। ଏହା ନ ହେବା ପର୍ଯ୍ୟଂତ ପ୍ରେମରେ ପୂର୍ଣତା ଆସେନାହିଁ, ତୃପ୍ତି ଆସେନାହିଁ; ସବୁ ଅପୂର୍ଣ ମନେହୁଏ। ମଣିଷର ଏହି ଆଦିମ ଯୌନତା ଭିତରେ ରହିଛି ମୃତ୍ୟୁର ବୀଜ– 'Death principle'। ମୋର ବନ୍ଧୁ କବିତାରେ ମୁଁ କହିଛି ''ପ୍ରେମହିଁ ତ ମୃତ୍ୟୁ ତା'ର ଚରମ ପର୍ଯ୍ୟାୟେ।''

ସୁର୍‌ରିୟଲିଷ୍ଟ ଚିତ୍ରୀ ସାଲଭାଡ଼ର୍ ଡ୍ୟାଲୀଂକ କଥା କହୁଥିଲି। ଭକ୍ଷଣ ଓ

ଭକ୍ଷିତ ହେବା ପ୍ରକ୍ରିୟାହିଁ ପ୍ରେମ। ଏହାକୁ ସେ "Cosmic Orality– To eat everything" କହଂତି। ପୁଣି ମଣିଷର ଏହି ମୌଳ ପ୍ରବୃତ୍ତିକୁ ସେ 'A Paranoiac Orality' କହିଛଂତି। କେତେବେଳେ ପୁଣି କହିଛଂତି, ଏହା ଏକ 'Cosmic Cannibalism' ବା ଐହିକ ନରମାଂସଭକ୍ଷଣ।

'Dali...Dali...Dali' ପୁସ୍ତକରେ Max Gerard 'ଡ୍ୟାଲୀବାଦ'ର ମୂଳତତ୍ତ୍ୱଗୁଡ଼ିକ ଉପରେ ଆଲୋକପାତ କରିଛଂତି– "From the Paranoiac Cannibalism of Gastro Aesthetic Towards a Biological Aesthetic Orality imperial way of access to the Daliacian Universe (of softening and disintegration)।"

ଏହାର ନାଂଦନିକ ବା ଶୈଳ୍ପିକ ବ୍ୟାଖ୍ୟା ହେବ– "Megalomaniacal cannibalism– "to eat everything" Meaning cosmic cannibalism through the frenzied mechanisms of the Paranoiac-Critical Method in a biological aesthetic of hard and soft, or softening structures, such seems to us the imperial way of success to the most prodigious personality of our times (Dali)।"

ତାଂକର କେତେକ ଚିତ୍ରରେ ମିଳେ neuropsychitriac concept of the Image of the Body from which proceeds Dali's platonic nostalgia for the recovery of his lost half, his feminine double incarnated in Gala (ଡ୍ୟାଲୀଂକ ପ୍ରେମିକା ପତ୍ନୀ) since 1929.

ମଣିଷର ଅର୍ଦ୍ଧନାରୀଶ୍ୱର ଉଭ-ସତ୍ତାର ନାରୀ-ଅର୍ଦ୍ଧାଂଶର ଆବିଷ୍କାର କରିବାହିଁ ଯେପରି ଶିଳ୍ପୀ ଡ୍ୟାଲୀଂକର ସାଧନାମାର୍ଗ। ଭାରତୀୟ ତଂତ୍ରର ଲକ୍ଷ୍ୟ ମଧ ଅନୁରୂପ ଥିଲା– ମଣିଷର ବିପରୀତ-ସତ୍ତା (ନାରୀସତ୍ତା) ସଂଗେ ପୂର୍ଣ୍ଣ ସମନ୍ୱୟ।

ଶିଶୁ ବାସ୍ତବତା ସଂବଂଧରେ ସଚ୍ଚାଗତା ଲାଭକରେ ତା'ର ମୁହଁ ଦ୍ୱାରା (Awarness of reality by means of his jaws)। ଶିଶୁ ତା'ର ଦୁଇ ଗାଲ-ହାଡ଼ଦ୍ୱାରା ବାସ୍ତବତାର ସ୍ୱରୂପ ବାରେ।

ଡ୍ୟାଲୀଂକର ଏ ନଂଦନତତ୍ତ୍ୱ ଗମ୍ୟ କଳାକ୍ଷେତ୍ରରେହିଁ ପ୍ରଯୋଜ୍ୟ, ଧରିନେବାକୁ ହେବ। ଡ୍ୟାଲୀଂକ ଭାଷାରେ– "There is nothing that cannot be eaten." ତାଂକ ସର୍ବଭକ୍ଷ ଶିଳ୍ପୀମାନସ ସେହିପରି ଆଂତ୍ରିକ-ନାଂଦନିକ ପ୍ରକ୍ରିୟାରେ ସଂଗୃହୀତ ଖାଦ୍ୟସାରରେ ସମୃଦ୍ଧ– "My worldly fixation was accordingly formed by the triumphal path of my mouth." ସେ ନିଜ ମୁଖର ଜୟଯାତ୍ରାରେ ସମସ୍ତ କିଛି ଆତ୍ମସାତ୍ କରିଦେବାର ପକ୍ଷପାତୀ। ସେ ଶିଳ୍ପୀଭାବେ ନେପୋଲିଅନଂକୁ ଖାଇବାକୁ ଚାହାଂତି, ବିଶେଷ କରି ତାଂକ

ଟ୍ରାଉଜର ସବୁ। କାରଣ ତାହା ବେଶ୍ ଲୋଭନୀୟ ଖାଦ୍ୟ। ବ୍ୟକ୍ତିଗତଭାବେ ସେ ଜଣେ ପୋପ୍‌କୁ ଖାଇବାରେ ଆଗ୍ରହୀ, ବିଶେଷକରି ଜନ୍ XXIII କୁ–
"He looks terribly edible."

ସେ ଏପରି ଏକ ଧର୍ମକୁ ଗ୍ରାସ କରିବାର ପକ୍ଷପାତୀ, ଯାହା ଜିଅଂତା ଭଗବାନଂକୁ ଗିଳିଦେଇପାରିବ ଏବଂ ସେ ଏପରି ଏକ ରାଜ୍ୟକୁ ଖାଇବାକୁ ପସଂଦ କରିବ, ଯିଏ ଛେନାପରି ଅତି ନରମ ଓ ତାଜା ହୋଇଥିବ। ତାଂକୁ ମିଳିଥିବା ଚେକ୍‌କୁ ସେ ଖାଇଦେବେ କି ନାହିଁ, ତାହା ଅବଶ୍ୟ ସେ କହିନାହାଂତି।

ପିଲାଦିନେ ମାଟି ଖାଇବାକୁ ଯାଇ ମୁଁ ଆସି ପିକାଶୋ ଓ ସଲଭାଡ଼ର୍ ଡ୍ୟାଲୀଂକ ପାଖରେ ପହଂଚିଗଲିଣି। ଆତ୍ମକାହାଣୀ ତ ଏକ ବାବନାଭୂତ; ବହୁ ଧୂଳି ମାଟି, ଶୁଖିଲା ପତ୍ର ସଂଗେ ବହୁ ତାଜା କଅଁଳ ଫୁଲ ଫଳ ଓ ଘାସକୁ ଆଣି ତାହା ଗୋଟାଏ ଠାଏଁ ଜମାକରିଦିଏ, ପୁଣି ସେଠାରୁ ଉଡ଼ାଇନେଇ ଆଉ କେଉଁଠି ରଖିଦିଏ। ଇଥା ଭିତରକୁ ସବୁକିଛି ଆସିପାରେ; ପୁଣି କିଛି ବି ଆସେନାହିଁ କେବଳ ନିଜର ଛୋଟିଆ ତେଲ-ଲୁଣର ସଂସାରଟି ଛଡ଼ା। ମୋ ଆତ୍ମଜୀବନୀର ଲେଖକ ଏକ ଛୋଟିଆ କୂଅର ବେଂଗ ନୁହେଁ; ସେ ମୁକ୍ତ ଆକାଶର ହଂସ, ଇଗଲ ନ ହେଉ ପଛକେ।

× × × ×

ହଁ, ମାସକ ପରେ ମୁଁ ପେଟେଇଥିବି, କଡ଼ ଲେଉଟାଇଥିବି ପଲଂକ ଉପରେ ଏବଂ କେବେ ତଳେ। ଆମର ଗୋଟାଏ ବଡ଼ ପଲଂକ ଥିଲା। ସେଥିରେ କାଠର ଖୁବ୍ ସରୁ ସରୁ କାମ ହୋଇଥିଲା। ବଡ଼ହେଲାପରେ ମୁଁ ତାହା ଦେଖିଛି। ମାମା କହେ, ମୁଁ କୁଆଡ଼େ କେତେଥର ସେ ପଲଂକ ଉପରୁ ତଳେ ଖସିପଡ଼ିଛି। ଭାଗ୍ୟକୁ ମୁଂଡ ଫାଟିନାହିଁ କି ହାତଗୋଡ଼ ଭାଂଗିନାହିଁ। ମୁଁ ଯେପରି ପେଟେଇ ପେଟେଇ ତଳେ ନପଡ଼ିଯିବି, ସେଥିପାଇଁ ସତର୍କମୂଳକ ବ୍ୟବସ୍ଥା ରୂପେ ଦୁଇ କଡ଼ରେ ତକିଆ ରଖାଯାଉଥିଲା; ମାତ୍ର ତଥାପି ବି ମୁଁ କେତେ ଥର ଭୂଇଁକୁ ଗଡ଼ିପଡ଼ିଛି; ତଳେ ପଡ଼ି କାନଫଟା ଚିତ୍କାର କରିଛି।-ମତେ କାଖେଇକରି ମାମା ଚାଂଦମାମୁ ଦେଖାଉଥିବ। ଜହ୍ନ ଦେଖି ମୁଁ କୁଆଡ଼େ ଖୁବ୍ ଖୁସିହେଉଥିଲି। ଦୁଇଟି ଛୋଟ ଛୋଟ ହାତ ହଲାଇ ଜହ୍ନକୁ ଡାକୁଥିଲି। ଅନ୍ୟମାନେ ମଧ୍ୟ ଜହ୍ନ ଦେଖାଉଥିଲେ।

"ଆ ଜହ୍ନମାମୁ ସରଗ ଶଶି
ମୋ' କାହ୍ନୁ ହାତରେ ପଡ଼ିବୁ ଖସି।"

କେହି କେହି ହୁଏତ 'ମୋ' ବୁଢ଼ା ହାତରେ ପଡ଼ିବୁ ଖସି' ବୋଲି ଗୀତ ଗାଉଥିବେ। ମୁଁ ଜହ୍ନକୁ ଦେଖି ହାତ ହଲେଇ କୁଆଡ଼େ କିର୍‌କିର୍ କରି ହସୁଥିଲି। ମୋ' ପିଲାଦିନର ସବୁ କଥା ମାମା ଓ ଖୁଡ଼ୀମାନଂକଠାରୁ ଶୁଣିଛି।

× × × ×

ମାତ୍ର ମୋର ସ୍ମୃତି କୁଆଡ଼େ ଗଲା ? ମୁଁ କ'ଣ ସମୟର ଛୁଆଁ ଲାଗି ସବୁ ଭୁଲିଗଲି ? ଥିଲି ନିଃସମୟରେ; ଆସିଲି ସମୟ ଭିତରକୁ, ଆସିଲି ସ୍ଥାନକୁ, ଦେଶକୁ। କିନ୍ତୁ ମୁଁ ଥିଲି କେଉଁଠି, ପୁଣି ଯିବି ବି କେଉଁଠିକି ? କିଛିହିଁ ତ ଜଣାନାହିଁ, କେବଳ ଆଗରୁ କହିବା ପ୍ରକାରେ ମଧ୍ୟଗ୍ରାମେ ଘର, ଯାହା ସେତିକି ତ ଜଣା।'* ବାକି ସବୁ ଅଜଣା। ମୁଁ କ'ଣ ଜାତିସ୍ମର ପରି ସ୍ମରଣ କରିପାରିବି ମୁଁ ଏହା ଆଗରୁ କେଉଁଠି ଥିଲି, କ'ଣ ଥିଲି, କିପରି ଥିଲି ?

ମୋର କ'ଣ ପୂର୍ବଜନ୍ମ ଥିଲା ? ମୋ' ମନର ଅତଳ ତଳେ କିମିତି ମନେହୁଏ ଯେ ମୋର ପୂର୍ବଜନ୍ମ ଥିଲା। ମୁଁ ଆକାଶରୁ ପଡ଼ିନାହିଁ କି ଭ୍ରୂଣରୁ ମୋର ଆରମ୍ଭ ନୁହେଁ; ମାତ୍ର ଯାହା ପ୍ରମାଣ କରିପାରିବି ନାହିଁ, ତାହା ବିଶ୍ୱାସ କରିବି କିମିତି ? ଭଗବାନଙ୍କ ସମ୍ବନ୍ଧରେ ମଧ୍ୟ ସେଇ ଏକଇ କଥା। ଭାବେଁ 'ଅଛି', 'ନାହିଁ'; 'ନାହିଁ', 'ଅଛି'। ଜୀବନଟାଯାକ ଏଇ ହଁ-ନାହିଁର ଦ୍ୱନ୍ଦ୍ୱ। କେବଳ ଦ୍ୱନ୍ଦ୍ୱ ଏବଂ ପ୍ରଶ୍ନ – ଯେଉଁ ପ୍ରଶ୍ନର ପ୍ରତିଟି ଉତ୍ତର ପାଲଟିଯାଏ ପୁଣି ପ୍ରଶ୍ନ।

ମୋର ବହୁ କବିତାରେ ମୁଁ ପୁନର୍ଜନ୍ମକୁ ସ୍ମରଣ କରିଛି। ''ଗଙ୍ଗୋତ୍ରି କୂଳରେ ଶାଳଗ୍ରାମ ସଂଗ୍ରହ କରିବା ସମୟରୁ ଦଳପତିକୁ ବାଉସନ ଛାଲ ଉପଢ୍ୌକନ ଦେଇ ମୋ ପ୍ରେମିକାକୁ ଲାଭକରିବାଯାଏଁ'' – ('ବିଚିତ୍ରବର୍ଣା') ଏବଂ 'ପୂର୍ବଜନ୍ମ'ରେ ମୋ'ର 'ସ୍ୱର୍ଣ ଉପବୀତ, ତରବାରି ଏବଂ ମୁକୁଟ' ସଂଗେ ବହୁ ଉପପତ୍ନୀ ଓ ଝଲମଲ କଳାର ମହଲ'କୁ ସ୍ମରଣ କରିବା ପର୍ଯ୍ୟନ୍ତ। ମୁଁ ସବୁବେଳେ ମୋର ଜନ୍ମ-ଜନ୍ମାନ୍ତର ପଛରେ ଛୁଟିଛି। ଆଦିମ ଟ୍ରାଇବ୍‌ଠୁ ଆରମ୍ଭ କରି ବର୍ତ୍ତମାନର କ୍ଷଣଚକିତା ମାନସୀ ପ୍ରତିମା ପର୍ଯ୍ୟନ୍ତ। ''ଯା'ର ମୁହଁଟି ମନେହୁଏ ଯେପରି ୟୁନିଭରସିଟି।'' – ଯିଏ ବାବୁଲ ଗଛର ଡାଳକୁ ଅର୍ଦ୍ଧ-ଉତ୍ତୋଳିତ ହାତରେ ନୁଆଇଁ ମୋ' ପାଇଁ ଅପେକ୍ଷା କରିଥାଏ।

ସତୁରି ଦଶକରେ ମୁଁ ଯାକୁ ନେଇ ବହୁତ ଧନ୍ଦିହୋଇଛି। ଯାରି ପିଛାରେ ପଡ଼ି ମୁଁ ରାଜପୁତାନା ଜୟପୁର ବିଶ୍ୱବିଦ୍ୟାଳୟର ପାରା-ସାଇକୋଲଜି ବିଭାଗର ପ୍ରଫେସର ଡଃ ବ୍ୟାନିର୍ଜିଙ୍କ ପିଛା ଧରିଥିଲି। ଏକ ଭାରତୀୟ ଶିଶୁକନ୍ୟା ଗତଜନ୍ମରେ ଫରାସୀ-ବିପ୍ଳବର ଆଦ୍ୟ ବଳି ସାମ୍ରାଜ୍ଞୀ ମେରୀ ଆଂଟେନିଓ ** ଥିବା କଥା ପ୍ରକାଶକରୁଛି ବୋଲି ସେ ପ୍ରାମାଣିକ ତଥ୍ୟମାନ ସଂଗ୍ରହ କରିଥିଲେ। ମାତ୍ର ପାରା-ସାଇକୋଲଜି ମୋତେ ଖୁବ୍ ବେଶୀ ସାହାଯ୍ୟ କରିନାହିଁ। ମୁଁ ସେଇ ଯେଉଁ ଅନ୍ଧାରେ ଥିଲି, ସେଇ ଅନ୍ଧାରେ ପଡ଼ିରହିଛି। ପାରା-ସାଇକୋଲଜି ଓ ଥିଓସଫି ଚକ୍କରରୁ ମୁଁ କ୍ରମେ ଉଧୁରି ଆସିଛି।

---

* 'କବିତା – ୧୯୮୪'।

** ଚତୁର୍ଦ୍ଦଶ ଲୁଇଙ୍କ ରାଣୀ, ଯାହାଙ୍କର ଗିଲୋଟିନ୍‌ରେ ଶିରଚ୍ଛେଦ ହୋଇଥିଲା।

ତଥାପି ତା କବଳରୁ ମୋର ନିସ୍ତାର ନାହିଁ। ତା'ପରେ ପୁଣି 'ମହାସ୍ମୃତି' କବିତାରେ ମୁଁ 'ଶତଦ୍ରୁ' କୂଳରେ କେଉଁ ଏକ ମେଷପାଳକର ଘରେ ଜନ୍ମ ହୋଇଥିବା କଥା ସ୍ମରଣକୁ ଆଣିଥିଲି। କବି ଇଏଟସ୍ ମଧ୍ୟ ଏଇପରି ଏକ ମହାସ୍ମୃତି ('Anima Mundi')ର କବଳରେ ପଡ଼ିଥିଲେ ବୋଲି ପଢ଼ିଛି। ସେ ତ ଅନେକ କିଛି କରୁଥିଲେ – ସମ୍ମୋହନ ବିଦ୍ୟାରେ ଭୂତ-ପ୍ରେତଙ୍କୁ ଡାକିବାଯାଏଁ।

ସେମିତି ବେଳେବେଳେ ପଡ଼ିଯାଏ ମୁଁ ଭଗବାନଙ୍କ ଚକ୍କରରେ। ଅଥଚ ମୁଁ କାୟମନୋବାକ୍ୟରେ ଅନୁଭବ କରେ ଏକ ଆଦ୍ୟ ଶକ୍ତିରେ; ତାକୁ ଯେଉଁ ନାମ ଦିଆଯାଉ ନା କାହିଁକି। ନିର୍ଗୁଣ ଓ ସଗୁଣ ସବୁ କିଛି ସେଇ ଗୋଟିଏ ମହାପ୍ରକାଶର ଅଭିବ୍ୟକ୍ତି। ମୁଁ କିନ୍ତୁ ସର୍ବଦା ସଂଗଠିତ ଧର୍ମ ଓ ଛାଂଚଢଳା ଈଶ୍ୱରର ବିରୋଧୀ; କାରଣ ଈଶ୍ୱର ବି କିଛି ରେଡ଼ି-ମେଡ୍ ପଦାର୍ଥ ନୁହେଁ। ସେ କ୍ରମଶଃ ହୋଇଚାଲିଛନ୍ତି ଏବଂ କ୍ରମଶଃ ହୋଇଚାଲିଥିବେ ନାନା ଦ୍ୱନ୍ଦ୍ୱ ଓ ଅନ୍ତର୍ଦ୍ୱନ୍ଦ୍ୱ ମଧ୍ୟଦେଇ। ସେ ମଧ୍ୟ ସତ୍ୟ ପରି ଆପେକ୍ଷିକ – ନିତ୍ୟ, ସନାତନ ବା ଅପରିବର୍ତ୍ତନୀୟ ନୁହନ୍ତି। ଏହି unceasing becoming ବା କ୍ରମାଗତ ସୃଜନ ପ୍ରକ୍ରିୟାହିଁ ଈଶ୍ୱର।

ବେଶ୍, ଏହାହିଁ ମୋର ଆଦ୍ୟଶୈଶବର ସ୍ମୃତିକଥା ଓ ସ୍ମୃତି-ପ୍ରସଂଗ। ଘଟଣା କେବଳ ଘଟଣା ନୁହେଁ। ତାର ସମଗ୍ର ପ୍ରସଂଗହିଁ ତାର ସ୍ୱରୂପ ଉଦ୍‌ଘାଟନ କରିପାରେ। ମଣିଷର ପୂର୍ଣ୍ଣ ପରିଚୟ ତାର ସମଗ୍ର ଜୀବନ ଭିତରେ ବିଧୃତ ଓ ବିସ୍ତୃତ ହୋଇ ରହିଛି। ତାକୁ ସମୟକ୍ରମରେ ଟିକିଟିକି କରି ବିଭାଜନ କରି ବିଚାରକଲେ ସେ ବିଚାର-ବିମର୍ଶ ଠିକ୍ ହେବ ନାହିଁ। ତାହା ହେବ ଅନ୍ଧର ହାତୀଦେଖା, ହାତୀର ଅନ୍ଧଦେଖା ନୁହେଁ।

## ତୃତୀୟ ଉଲ୍ଲାସ

## 'ନେଳି ଚଢ଼େଇ'

ଶୈଶବଟା ଅଧେ ବାସ୍ତବ ଅଧେ କଳ୍ପନାର ଏକ ରଂଗିନ ଋତୁ। ଶିଶୁ କଳ୍ପନା ପଛରେ ଧାଇଁବାକୁ ଭଲପାଏ। ବାସ୍ତବତା ତାକୁ ରୁକ୍ଷ ନିରସ ବୋଧହୁଏ। ଏ ପୃଥିବୀର ସବୁ ଭଲଜିନିଷକୁ ସେ ନିଜର କରିନେବାକୁ ଚାହେଁ। ଯାହା ସୁଂଦର, ଯାହା ଖାଇବାକୁ ବା ଦେଖିବାକୁ ଭଲଲାଗେ, ସବୁ ତାର। ତାର ଆତ୍ମ-ପର ଭାବ ସେତେବେଳେ ନ ଥାଏ – ଅବଶ୍ୟ ଏକତରଫା ଭାବରେ।

ପିଲା ସ୍ୱପ୍ନ ପଛରେ ଧାଏଁ ଠିକ୍ ଯେମିତି ମେଟେରଲିଂକଂକ 'ବ୍ଲୁ-ବାର୍ଡ' ନାଟକର ପୁଅଟି ଓ ଝିଅଟି ଧାଇଁଥିଲେ ନେଳି'ଚଢ଼େଇ ସଂଧାନରେ। (୧)

ଶିଶୁହିଁ ତାର ନିଜର ସକାଳ। ସେ ଜାଣିନଥାଏ କେଡ଼େ ବଡ଼ଦିନ ତାକୁ ଅପେକ୍ଷା କରି ରହିଛି।

ମୁଁ ତ ଜନ୍ମ ହେଲି ସାରଳା ଦାସଂକ ଭାଷାରେ 'ଭୂଥଖଂଡେ ଓଡ଼ ରାଷ୍ଟ୍ରେ' – ଦିନେ ଯାହା ଗଂଗାଠାରୁ ଗୋଦାବରୀଯାଏଁ ଏବଂ କାବେରୀ ନଦୀ ପର୍ଯଂତ ବିସ୍ତୃତ ଥିଲା। ତାର ସୈନ୍ୟସାମଂତ ଗୌଡ଼ରୁ କରମଂଡଳ ଉପକୂଳ ଦେଇ ସୁଦୂର ଦକ୍ଷିଣାବର୍ତ୍ତର କାଂଚି ନଗ୍ର ପର୍ଯଂତ ମାର୍ଚ୍ଚିଂଗ କରି ଯାଉଥିଲେ। ଏହାର ସମ୍ରାଟ୍ ଥିଲେ ନବକୋଟି ଦୁର୍ଗର ଅଧୀଶ୍ୱର, କର୍ଣାଟ-କଳବର୍ଗେଶ୍ୱର କଳିଂଗର ଗଜପତି ମହାରାଜା। ମୁଁ ଜନ୍ମହେଲାବେଳକୁ ସେ ଓଡ଼ିଶା ଖଂଡିତ ହୋଇ ବିହାର-ଓଡ଼ିଶା ପ୍ରଦେଶର ଏକ ତଳିଆ ଅଂଶୀଦାରରୂପେ ରହିଥିଲା। ହାଇକୋର୍ଟ, ବିଶ୍ୱବିଦ୍ୟାଳୟ ସବୁ ଥିଲା ପାଟନାରେ। ଓଡ଼ିଆଭାଷାଭାଷୀ ଅଂଚଳକୁ ନେଇ ଏକ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଗଠନକରିବାର ଦାବିକୁ ବ୍ରିଟିଶ୍ ସରକାର ବାରଂବାର ଜୋତାରେ ଦଳିଦେଉଥିଲା। ପ୍ରଥମ ବିଶ୍ୱଯୁଦ୍ଧ ଆରଂଭ ହୋଇ ପ୍ରାୟ ଦୁଇବର୍ଷ

---

(୧) ମରିସସ୍ ମେଟେରଲିଂକଂକ ବିଖ୍ୟାତ ନାଟକ 'ବ୍ଲୁ-ବାର୍ଡ' ୧୯୦୯ ଖ୍ରୀଷ୍ଟାବ୍ଦରେ ଇଂରାଜୀ ଭାଷାରେ ଅନୂଦିତ ହୁଏ ଏବଂ ଲଂଡନରେ ମଂଚସ୍ଥ ହୁଏ। ମେଟେରଲିଂକ୍ ନୋବେଲ୍ ପୁରସ୍କାର ପାଇଥିଲେ। ନାଟକଟି ପ୍ରତୀକଧର୍ମୀ। ଏ ନାଟକର ନୀଳପକ୍ଷୀ ଅଖଂଡ ଆନଂଦର ପ୍ରତୀକ। ଜଣେ ପୁଅ ଏବଂ ଜଣେ ଝିଅ ତା'ର ସଂଧାନରେ ବାହାରିଥାଂତି।

ହେଲା ଖୁବ୍ ଜୋରସୋରରେ ଚାଲିଥାଏ ସେତେବେଳକୁ।

ଓଡ଼ିଶାର ପ୍ରତ୍ୟେକ ପିଲା ଜନ୍ମରୁ ତାର ରକ୍ତରେ ଧରି ଏକ କାଳଜୟୀ ଐତିହ୍ୟର ଧାରା। ଏକ ମହାନ୍ ପରମ୍ପରା ଓ କଳାଚେତନା ଯେପରି ତାର ରକ୍ତ-ମଜ୍ଜାଗତ। ମୋର ଏକ କବିତାରେ ତାର ଉଲ୍ଲେଖ ଅଛି—

''ଏବଂ ମା' ପେଟରେ ଥିଲାବେଳେ
ଶୁଣିଥିଲି ପିତାଂକ ମୁହଁରେ—
ଏଠି କାହିଁ ହେଉଥିଲା ତୋଳା ସମୁଦ୍ର ପିଠିରେ
ସୂର୍ଯ୍ୟଂକ ଦେଉଳ।
ପୁଣି ଜନ୍ମ ହେବା ଚାରିବର୍ଷପରେ ଶୁଣିଥିଲି
ମାମୁ କହୁଥିଲେ—
କେବେଠୁ ତା' ଭାଂଗିଗଲାଣି।'' ('ଓଡ଼ିଶା', କବିତା—୧୯୭୧)

ମା'ପେଟରେ ଥିଲାବେଳେ ଠିକ୍ ଏଇପରି ଶୁଣିଥିଲା ଅଭିମନ୍ୟୁ ପିତାଂକ ମୁହଁରୁ ଚକ୍ରବ୍ୟୂହଭେଦ କଥା। ଅର୍ଜୁନ ସୁଭଦ୍ରାଂକୁ କହୁଥିଲେ ତାହା। କିଂତୁ ଚକ୍ରବ୍ୟୂହରୁ କିମିତି ବାହାରି ଆସିବାକୁ ହୁଏ, ତା' ସେ କହି ନ ଥିଲେ।

ବହୁ କୀର୍ତ୍ତିମାଳିନୀ ଏ ଓଡ଼ିଶା। ଓଡ଼ିଶାର ମଣିଷର ପ୍ରତ୍ୟେକ ନିଶ୍ୱାସ-ପ୍ରଶ୍ୱାସରେ ରହିଛି ହଜାର ହଜାର କଳାର କାଳୋତୀର୍ଣ୍ଣ କାହାଣୀ; ହଜାର କୀର୍ତ୍ତିର ଅଲିଭା ଇତିହାସ। ସେଥିପାଇଁ ଏହାର ଅନ୍ୟ ନାମ 'ଉତ୍କଳ'। ବାସ୍ତବରେ ଉତ୍କୃଷ୍ଟ କଳାର ଦେଶ ଏହି ଉତ୍କଳ।

ଓଡ଼ିଶାର ଲିଖିତ ଇତିହାସ ଆରଂଭ ହୋଇଛି ତା'ର କଳାରୁ। ମହାମେଘବାହନ, କ୍ଷେମରାଜ, ଐରରାଜ (ଦାନୀ), ଚୈତ୍ରବଂଶୀ ଖାରବେଳ ଖାଲି ଯେ ଜଣେ ଶ୍ରେଷ୍ଠ ବୀରପୁରୁଷ ଥିଲେ ତାହା ନୁହେଁ; ସେ ଥିଲେ ଗାଂଧର୍ବବିଦ୍ୟାରେ ନିପୁଣ ଜଣେ ଶ୍ରେଷ୍ଠ କଳାକାର। ତାଂକ ରାଜତ୍ୱର ତୃତୀୟ ବର୍ଷରେ ସେ ଦର୍ପନୃତ୍ୟ ଓ ଗୀତ ବାଦିତ୍ର ଆଦି ପ୍ରଦର୍ଶନ କରି ପ୍ରଜାମାନଂକର ମନୋରଂଜନ କରିଥିଲେ। ସେ ବାତ୍ୟାବିଧ୍ୱସ୍ତ କଳିଂଗର ପ୍ରାସାଦମାନଂକର ସଂସ୍କାର କରାଇଥିଲେ। ସେ କଳିଂଗର ସୀମା ଉତ୍ତରାପଥର ମଥୁରା ପର୍ଯ୍ୟଂତ ଏବଂ ପଶ୍ଚିମ ଦିଗରେ ପେଶୱାର ପର୍ଯଂତ ବିସ୍ତୃତ କରାଇପାରିଥିଲେ। ସେ ବହୁ ପ୍ରଣାଳୀ ଖୋଳାଇ ଥିଲେ। ରାଜକର ଛାଡ଼କରାଇଥିଲେ ପ୍ରଜାଂକ ମଂଗଳ ପାଇଁ। ସେ ମୌର୍ଯବଂଶର ଅଶୋକଂକ କଳିଂଗ ଆକ୍ରମଣର ପ୍ରତିଶୋଧ ନେଇ ପାଟଳିପୁତ୍ର ଆକ୍ରମଣ କରିଥିଲେ ଏବଂ 'କଳିଂଗ ଜୀନଂ'କୁ ନଂଦରାଜା ହାତରୁ ଉଦ୍ଧାରକରି, ନିଜ ଦେଶକୁ ଫେରାଇ ଆଣିଥିଲେ। କଳିଂଗ ଚକ୍ରବର୍ତ୍ତୀ ଐର ଖାରବେଳହିଁ ହେଉଛଂତି ଓଡ଼ିଶାର ଶ୍ରେଷ୍ଠ ଇତିହାସପୁରୁଷ। ଖଂଡଗିରିର ରାଣୀଗୁଂଫା ଏହି ଇତିହାସର ଆଦ୍ୟ ଅଭିଲେଖ।

ଓଡ଼ିଶାର ଏକଦା ରାଜଧାନୀ ଖୋରଧା ବା ଖୁରୁଧାଠାରୁ ମାତ୍ର ଅଧମାଇଲିଏ ଦୂରରେ ଆମ ଗାଆଁ ଗୁରୁଜଂଗ। ଉତ୍ତର ଦିଗରେ ଘୋର ଅରଣ୍ୟ ଥିଲା। ଆମ ଗାଆଁ ଜଂଗଲର ନାମ 'ବେରଣା'। ଖୋରଧା ସହରକୁ ଅନେକେ 'ଜଝାରସି' କହୁଥିଲେ। 'ଜଝାରସି' ଯାଇଥିଲ କି' ବୋଲି ପଚାରିଲେ 'ଖୋରଧା ଟାଉନ ଯାଇଥିଲ କି ନାହିଁ' ବୁଝାଏ। ଆମ ଗାଆଁ ଖୋରଧାର ଏକ ସହରତଳି କହିଲେ ଚଳେ। ସଡ଼କ ରାସ୍ତାରେ ଗଲେ ସିନା ବାଟ ଦୁଇ ଫରଲଂଗ୍; ଆମ ବାଡ଼ିପଛ ବିଲରାସ୍ତା ଦେଇ ଗଲେ ଅଧେ ବାଟ କମିଯାଏ, ମାତ୍ର ପାଂଚ ମିନିଟ୍‌ରେ ଖୋରଧା ହାଇସ୍କୁଲ ଓ ବୋର୍ଡିଂ ପଛକୁ ଲାଗି ପଲଟଣ ପଡ଼ିଆରେ ପହଂଚିଯାଇହେବ। ବେରଣା ନଟା ପଶ୍ଚିମ ପଟେ ଖୋରଧା ସହର ଉପକଂଠ ଦେଇ ବରୁଣେଇ ପାହାଡ଼ନାସିକୁ ଲାଗିଛି। ସିଆଡ଼େ ଉତ୍ତରପଟେ ଟାଂଗିଆପଡ଼ା, ନିଆଳ, ମୁକ୍ତାପୁର ପ୍ରଭୃତିର ଛୋଟ ଛୋଟ ଜଂଗଲକୁ ଛୁଇଁ ହଳଦିଆ ଗଡ଼ର ଚାଡ଼କାମୁଂଡିଆ ଓ ଜଂଗଲ ସବୁ ମିଶିଯାଇଛି। ମଝିରେ ମଝିରେ ଅରଣ୍ୟ ଅବଶ୍ୟ ଧାନ ବିଲ ରହିଛି; ମାତ୍ର ତାହା ସେପରି କିଛି ବ୍ୟବଧାନ ସୃଷ୍ଟି କରେନାହିଁ। ଆମ ଘର ପଛପଟେ ଟିକିଏ ଦୂରରେ 'ଜୋର' – ଖୁବ୍ ଅଳ୍ପ ଚୌଡ଼ାର ଜୋରଟିଏ। ଜୋର୍‌କୁ ଆମେ ଏପଟୁ ଗାଧୋଇବାକୁ ଯାଉଁ, ସେପଟୁ ଗାଧୋଇବାକୁ ଆସଂତି ଖୋରଧା ହାଇସ୍କୁଲର ଶିକ୍ଷକ ଓ ଛାତ୍ରମାନେ। ଆମେ ଏକୂଳେ ଗାଧୋଉଁ; ସେପଟେ ଗାଧୁଅଂତି ସେମାନେ। ସେଠି ଦେଖା-ସାକ୍ଷାତ୍, କଥାବାର୍ତ୍ତା ହୁଏ।

ପିଲାଦିନେ ମିଂଜିମିଂଜି ଲଂଠଣ ଆଲୁଅରେ ମୁଁ ମାମା କୋଳରେ ଶୋଇପଡ଼େ। ମାମା ରଂଗବତୀ କନ୍ୟା କଥା, ରଢାପୁଅ କଥା, କଲରେଇ ବେଂଟ କଥା, ଜ୍ଞାନଦା ମାଲୁଣୀ କଥା – କେତେ କାହାଣୀ କହେ।

ଅଧରାତିରେ ମହାବଳ ବାଘ ଗର୍ଜନ ଶୁଣାଯାଏ ବେରେଣା ନଟାରୁ। କେବେ କେବେ ଶୁଣାଯାଏ ଖୋରଧା ସହର ଉତ୍ତରପଟୁ, ବରୁଣେଇ ପାହାଡ଼ଆଡୁ। ମାମା କହେ, ବାଘ ସେପଟ ଜଂଗଲରୁ ଏପଟ ଜଂଗଲକୁ ଆସୁଛି। ବାଘ ହେଂଟାଳ ଶୁଣାଯିବା ପରେ ମାଂକଡ଼ମାନେ ଗଛ ଉପରେ ଖେଁ-ଖେଁ କରି ଖେଂକାରିଉଠଂତି; ବିଲୁଆମାନେ ବି ବିକଟାଳ ରଡ଼ି ଛାଡ଼ଂତି। ଭୟରେ ମୋ ଦିହ ହେମାଳ ହୋଇଯାଏ। ମାମା ମୋତେ ଜୁଂଡାଇ ଶୁଆଇପକାଏ। ଆଜିକାଲି ଆଉ ଆମ ଗାଆଁ ଜଂଗଲରେ କି ଆଖପାଖ ଜଂଗଲରେ ବାଘରଡ଼ି ଶୁଣାଯାଏନାହିଁ। ବାଘ-ଫାଗ କୁଆଡ଼େ ଗଲେଣି। ମୋ ପିଲାଦିନେ ଜଂଗଲ ଭରି ଜଂତୁ ଥିଲେ। ବାଘ, ହେଟା, ବାର୍‌ହା, ମିରିଗ, ଠେକୁଆ, ରଧିଆ ଜଂଗଲରେ ରହିଥିଲେ। ମହାବଳ ବାଘ କେବେ କେବେ ଅନ୍ୟ କେଉଁ ଘଂଚ ଜଂଗଲରୁ ଆସି ଗର୍ଜନ ଛାଡୁଥିଲା; ଗୋଟାଏ ଦି'ଟା ଗୋରୁ ଛେଳି ମଧ୍ୟ ଖାଇଛି; ମଣିଷ ଖାଇଥିବାର ଶୁଣିନାହିଁ। ବାଘ ଏପଟ ଜଂଗଲରୁ ସେପଟକୁ ଗଲାବେଳେ କିଂବା ସେପଟୁ

ଏପଟ ଜଂଗଲ ପାରହେଲାବେଳେ ଯେତେବେଳେ ଗର୍ଜନ କରେ, ମନେହୁଏ, ଯେମିତି ଆମ ବାଡ଼ିପଟ ତୋଟା ଭିତରେ ଗର୍ଜୁଛି। ସେ ଗର୍ଜନ ଶୁଣିଲେ ଗର୍ଭିଣୀ ନାରୀ ପେଟରୁ ପିଲା ଖସି ପଡ଼ିବ। ବିଲ ପଦା, ନିଶୂନ ଟାଂଗଣା ଭୂଇଁସବୁ ଯିମିତି ଭୟରେ ଛଡ଼ପଡ଼ ହୋଇଉଠେ। ମୁଁ ମାମା କୋଳରେ ଶୋଇ ଶୀତେଇଉଠେ। କେବେ କେବେ ମାମା କହେ, ମହାବଳ ବାଘ ଜୋରଗର ମାଂକଡ଼ଖିଆ ବଂଧରୁ ପାଣି ପିଇବାକୁ ଆସିଛି। ମାକଂଡ଼ଖିଆ ବଂଧଟା ଖୋରଧା ଟାଉନ ପଶ୍ଚିମପଟ ଓ ଆମ ଗାଆଁ ମଝିରେ। କେବେ କେବେ ଝଡ଼ବର୍ଷା ରାତିରେ ମହାବଳ ବାଘ ରାତିସାରା ଗର୍ଜୁଥିବ। ବଡ଼ି ପାହାଂତାରେ ଯାଇ ବଂଦ ହୁଏ ତା'ର ହେଂଟାଳ ଶବ୍ଦ।

ରାତିରେ ପେଚା, ବଣକୁକୁଡ଼ା, ଆଉ ବିଲୁଆ ବୋବାଂତି। ମାମା କହେ, କ'ଣ ଅମଂଗଳ ଘଟିବ। ଆମ କୁଟୁଂବରେ କିଏ ବୁଢ଼ା ବୁଢ଼ୀ ବାଧକା ପଡ଼ିଥିଲେ ତା' ସଂବଂଧରେ ମନକୁ ପାପଛୁଏଁ। ପେଚା ଓ ହୁଁ-ହାଁ ବୋବାଳି ଅଂଧାର ରାତିରେ ବଡ଼ ବିକଟାଳ ଶୁଣାଯାଏ। କେଉଁ ଗିଲଗଛ ନଟିରେ କି କେଉଁ କଂଟେଇ-କୋଳି ଗଛ ବୁଦା ଉପରୁ ସେମାନେ ବୋବେଇଉଠଂତି। ଶୀତଦିନେ ଅଂଡିରା ବିଲୁଆ ଖୁବ୍ ଜୋର୍‌ରେ ଡାକଛାଡ଼େ। ସେ ରଡ଼ି କୁଆଡ଼େ ଭାରି ଅମଂଗୁଳିଆ।

ଗାଆଁରେ ହଇଜା ପଡ଼ିଲେ ସଂଜ ହେଉ ହେଉ ତାଟିକବାଟ ପଡ଼ିଯାଏ। ଘରକୁ ଘର ସାଫ୍ ହୋଇଯାଏ। ରାତିରେ କେହି ମଶାଣିକୁ ମୁର୍ଦାର ନେଇଯିବାକୁ ଡରଂତି। କେଉଁ କେଉଁ ବର୍ଷ ବସଂତରେ ଲୋକ ମରଂତି। ଗାଆଁରେ କୀର୍ତନ ବାହାରେ। ମଶାଲରେ ଝୁଣା ଧୂପ ଦେଇ ଗାଆଁ ଦାଂଡରେ କାଳିଶି ବୁଲାଂତି। ଠାକୁରାଣୀଂକ ପାଖରେ ପୂଜାଧୂଜା ହୁଏ। ଆମ ସାହିରେ ଜେନା ଭୂୟାଁ ଠାକୁରାଣୀଂକ ପାଖରେ କୁକୁଡ଼ା ବଳି ଦିଆଯାଏ। ମାଟିଘୋଡ଼ାମାନ ରଖାଯାଏ।

ଗାଆଁରେ ଦଂଡଯାତ୍ରା ହୁଏ, ଖୋରଧାର ଚଇତି ଘୋଡ଼ା ନାଚ୍ ଆସେ। ଖୋରଧା ପାଖରେ କେତେ ଗାଆଁରେ ଝାମୁଯାତ୍ରା ହୁଏ। ପଣା ସଂକ୍ରାଂତିରେ ଡହଡହ ନିଆଁ ରଡ଼ ଉପରେ କାଳିଶି ବେତ ହଲାଇ ଚାଲେ, ନାଚେ, କୁଦେ। ତାର ଗୋଡ଼ କିଛି ହୁଏ ନାହିଁ। ବାଂକି ଝାମୁଯାତ ଖୁବ୍ ପ୍ରସିଦ୍ଧ। ଚର୍ଚ୍ଚିକା ଠାକୁରାଣୀଂକ ଝାମୁଯାତ ଦେଖିବାକୁ ବହୁଦୂରରୁ ଲୋକମାନେ ଶଗଡ଼ ଗାଡ଼ିରେ ଆସଂତି। ସବୁଠି କାଳିଶିମାନେ ସ୍ତ୍ରୀଲୋକ ପରି (ମାତ୍ର କଛାମାରି) ବେଶ ପିଂଧି ଜଳଂତା ଅଂଗାର ଉପରେ ଚାଲଂତି। ଟ୍ରେଂଚ ଭଳି ଲଂବା ଲଂବା ଗୋହି ଖୋଳାଯାଇଥାଏ। ସେଥିରେ ବଡ଼ ବଡ଼ କାଠ ଖଂଜି ନିଆଁ ଲଗାଇଦିଅଂତି। କାଠ ଜଳିଯାଇ ରଡ଼ ହୋଇଗଲେ କାଳିଶି ତା' ଉପରେ ଚାଲେ। କାଳିଶି କାଛେଣି ଓ କାଂଚଲା ପିଂଧିଥାଏ। ମୁଂଡରେ ଜୁଡ଼ା ପାରି ଏକ ରୁମାଲ ଭଳି କପଡ଼ା ବାଂଧିଥାଏ। ବାଂକି ପାଖ ନରଣପୁର ଗ୍ରାମରେ ମୋ' ମାମୁଘର। ମାମାର ଦୁଇଭାଇ ପୀତାମ୍ବର ସିଂହ ସାମଂତ ଓ ଦାମୋଦର ସାମଂତ ଏବଂ

ତାଂକର ଦୁଇ ଦାଦିପୁଅ-ଭାଇ ଶଶିଭୂଷଣ ସାମଂତ ଓ ଆର୍ତବଂଧୁ ସିଂହ ସାମଂତ ଥାଆଂତି । ବଡ଼ମାମୁ ପୀତାମ୍ବର ବ୍ରହ୍ମପୁର ମୌଜାର ସରବରାକାର ଥିଲେ ଏବଂ ଆର୍ତମାମୁ ସବ୍-ରେଜିଷ୍ଟ୍ରାର୍ ଥିଲେ । ସେ ତାଳଚେର ରାଜାଂକ ଭଉଣୀଂକୁ ବିବାହକରିଥିଲେ । ତାଂକର ଭଉଣୀ କୁଂଦିନା ମାଉସୀ ଖଂଡପଡ଼ାର ଚନ୍ଦ୍ରଶେଖର ସାମଂତଂକ (ପଠାଣି ସାମଁତ) ପୁଅ ଚକ୍ରଧର ସାମଂତଂକୁ ବିବାହକରିଥିଲେ । ମୁଁ ଦୁଇ-ତିନି ଥର ନରଣପୁର ଯାଇଛି । ଶଗଡ଼ଗାଡ଼ିରେହିଁ ଯିବାକୁ ହୁଏ ।

ଆମ ଘର ହତାରେ ଗାତ କରି ବଡ଼ ବଡ଼ ନାଗସାପ ରହୁଥାଂତି । ବେଳେବେଳେ ଘର ଭିତରେ ଖେଳୁଥିବାର ଦେଖାଯାଏ । ଦାଦାମାନେ ଠେଂଗାବାଡ଼ି ଧରି ଆସଂତି; ମାତ୍ର କେହି ସାପକୁ ମାରଂତିନାହିଁ । ତାର କାରଣ ଆମର ନାଗଶ ଗୋତ୍ର । ଆମ ଘରେ ସମସ୍ତଙ୍କର ଧାରଣା ଯେ, ଆମ ଗୋତ୍ର ନାଗସାପ; ମାତ୍ର ପରେ ଜାଣିଲି ଯେ ନାଗଶ ଏକ ମୁନିଂକ ନାମ । କୌଣସି ଓଡ଼ିଆ ଅଭିଧାନରେ ଏ ଶବ୍ଦଟା ଖୋଜି ପାଇ ନାହିଁ ।

ଆମ ଘର ଆଗରେ ବାଉରି ସାହି । ସେଇମାନେହିଁ ଆମ ହଳିଆ କାମ କରଂତି । କେହି କେହି ଭାଗଚାଷୀରୂପେ ବିଲ ଚଷଂତି । ବାଉରାଣୀମାନେ ବାହାର କାମ କରଂତି । ଧାନ ପାଛୁଡ଼ାଠୁ ଆରଂଭକରି ଅଗଣା, କୋଠି ଆଦି ଲିପିବା ପର୍ଯଂତ । ବାଉରି ପିଲା ମଧ ଆମ ଗାଈ ଜଗଂତି । ବାଉରିମାନେ ଦଂଡ ଯାତରା କରଂତି । କାନସା ଘରୁ ଦଂଡ ଓ ଧଂଡା ନେଇ ଏ ଯାତରା ଆରଂଭ ହୁଏ । ଖୋରଧା ଟାଉନ ମାରୁଆଡ଼ି ଓ ଅନ୍ୟମାନଂକ ଘରେ ମଧ ଦଂଡନାଟ କରି ଏମାନେ ପଇସା ଆଣଂତି । ଏମାନେ ବଡ଼ ନିମକସଚ୍ଚା ଓ ସରଳ ଲୋକ; ଦରକାର ପଡ଼ିଲେ ଜୀବନ ଦେଇଦେବେ । ଆଜିକାଲି ନୂଆ ବାଉରି ଟୋକାମାନଂକ ସ୍ୱଭାବ ଚରିତ୍ର ବିଲ୍‌କୁଲ୍ ବଦଳିଗଲାଣି । ସେମାନେ ପେଂଟ୍ ସାର୍ଟ ପିଂଧି ରିକ୍ସା ଚଲଉଛଂତି କିଂବା ଅନ୍ୟ କିଛି କାମ କରୁଛଂତି । ଚାଷବାସ ଛାଡ଼ିଦେଲେଣି । ଆମ ପିଲାବେଳେ ଏମାନେ ବଡ଼ ନମ୍ର ଓ ବିଶ୍ୱାସୀ ଥିଲେ । ଆମ ବାପା ବଡ଼ାପା ପିଂଡାରେ ବସିଥିଲେ, ଏମାନେ ତଳେ ଛିଡ଼ାହୋଇ କଥା କହୁଥିଲେ । କିଛି ବର୍ଷ ପରେ ବାଉରିସାହିର ଭେଂଡିଆମାନେ ଭାରତଲୀଳା ଶିଖି ଗୀତାଭିନୟ ବା ସୁଆଂଗ ଦେଖାଇଲେ । ରାତିକୁ ପ୍ରାୟ ଚାଳିଶ-ପଚାଶ ଟଂକା ମିଳିଯାଉଥିଲା (ଏ ସବୁ ଅବଶ୍ୟ ଆଧୁନିକତାର ପ୍ରଭାବ । ଏଥିରେ ନାକଟେକିବାର କିଛି ନାହିଁ) ।

ପିଲାଦିନେ ଚତୁର୍ମାସ୍ୟା ଦିନେ ମେଘ ଦେଖିଲେ ମୁଁ ଅବାକ୍ ହୋଇ ଯାଉଥିଲି । ସାରା ଦେହରେ ରୋମାଂଚ ଅନୁଭବ କରୁଥିଲି । ତାଳ ତମାଳ ଗଛ ମଥାନ ଉପରେ କଳା ବଉଦ ଭେଳା ଭେଳା ହୋଇ ଭାସିଆସେ, ବରୁଣେଇ ପାହାଡ଼ ବଣ ଉପରେ ହାତୀ ପରି ଗର୍ଜନ ଛାଡ଼ି ଧାଡ଼ିମାଳ ଧାନକ୍ଷେତ ଉପରେ କଳାହାଂଡିଆ ମେଘ ଘୋଟିଆସିଲେ ତା ତଳେ ଦୁଇ-ତିନୋଟି ଧଳା ଧଳା ହଂସ-ଧାଡ଼ି ପ୍ରାୟ

ଚେତାବୁଡ଼ାଇଦିଏ। ପରେ ପଢ଼ିଲି, ରାମକୃଷ୍ଣ ପରମହଂସ ତାଂକ ବାଲ୍ୟାବସ୍ଥାରେ କୁଆଡ଼େ ଧାନବିଲ ଭିତରେ ଯାଉ ଯାଉ ଥରେ କଳା ବଉଦ ତଳେ ହଂସ-ଧାଡ଼ି ଦେଖି ବେହୋସ ହୋଇଯାଇଥିଲେ। ତାଂକର ସମାଧିଯୋଗ ହୋଇଥିଲା। କାଳି-ଦାସଂକର 'ଆଷାଢ଼ସ୍ୟ ପ୍ରଥମ ଦିବସେ' କିଂବା ଜୟଦେବ କବିଂକର ମେଘ-ମେଦୁର ଆକାଶ ତଳେ ଶ୍ୟାମଳ ବନଭୂମି କଥା କେଉଁ ଭାରତୀୟ ଭୁଲିପାରେ ?

ଏଇ ମେଘ ମୋତେ ବାରଂବାର ବିହ୍ୱଳ ରୋମାଂଚିତ କରିଛି, ଶ୍ୟାମଳ ଶୈଶବରୁ ଆଚ୍ଛିଯାଏଁ। ମୁଁ ବିଭୋର ହୋଇଯାଇଛି, ତନ୍ମୟ ହୋଇଯାଇଛି। ଭାରତୀୟ ମୌସୁମୀର ସ୍ନିଗ୍ଧ ସଜଳ ସ୍ପର୍ଶ ମୁଁ ଅନ୍ୟ କେଉଁଠି ପାଇନାହିଁ। ଆମେରିକାରେ ହାର୍ଭାଡ଼ ବିଶ୍ୱବିଦ୍ୟାଳୟ କ୍ୟାଂପସ୍ ଭିତରେ ମୁଁ ଲୁଶୀ ସହ ଘଂଟା ଘଂଟା ହାତ ଧରାଧରି ହୋଇ ବର୍ଷାରେ ତିଂତି ବୁଲିଛି। ଲଂଡନରେ, ଚେକୋସ୍ଲୋଭାକିଆରେ କେତେ ଥର ବର୍ଷାମାଡ଼ ଖାଇଛି, ଲେନିନ୍‌ଗ୍ରାଡ଼ରେ 'ମଧ୍ୟରାତ୍ରିର ସୂର୍ଯ୍ୟ' ଆଲୁଅରେ ବୁଲୁବୁଲୁ ହଠାତ୍ ବର୍ଷା ହାବୁଡ଼ରେ ପଡ଼ିଯାଇଛି; ମାତ୍ର ଭାରତରେ ମୌସୁମୀ-ବର୍ଷାର ମଂଗଳ-ସ୍ପର୍ଶ ମୁଁ କେଉଁଠି ପାଇନାହିଁ। ତାହା କେବଳ ଓଡ଼ିଶା ଓ ବଂଗଳା ଛଡ଼ା। ଆଂଧ୍ରର ବର୍ଷା ମୋତେ ବିହ୍ୱଳ କରିଛି; କିଂତୁ ଅଭିଭୂତ କରିପାରିନାହିଁ। ସେଠାର ତାଳ ତମାଳ ନାରିକେଳ ତୋଟା ଉପରେ ବର୍ଷାର ନୂପୁର-ଝମକ ସତରେ ବଡ଼ ଉଲ୍ଲାସକର, କିଂତୁ ଓଡ଼ିଶାପରି ପ୍ରାଣମତାଣିଆ ନୁହେଁ। ନୂଆଣିଆ ଚାଳ ଉପରୁ ପ୍ରଥମ ଟୋପା ଟୋପା ବର୍ଷାପାଣି ସତରେ ଖୁବ୍ ଭଲଲାଗେ। ମାଟିର ବାସ୍ନାରେ ପ୍ରାଣ ମନ ପୁଲକିଉଠେ।

ଆମ ଗାଁରେ ଛୋଟ ଜଂଗଲଟି ଉପରେ ଯେତେବେଳେ କଳାଘୁମ୍ ମେଘ ଘୋଟିଆସେ, ବଡ଼ ବଡ଼ ଗଛ ବୃକ୍ଷ ପବନରେ ଦୋହଲିଉଠଂତି, ମୁଁ ତ୍ରସ୍ତ ଚଂଚଳ ହୋଇଉଠେ। ବଡ଼ ବର୍ଷାରେ ଦାଂଡରେ ଆଂଠୁଏ ପାଣି ଚାଲେ। ଆମେ କାଗଜରେ ଡଂଗା ତିଆରିକରି ଭସାଇଦେଉ। କଦଳୀପଟୁକା ମଧ୍ୟ ଛାଡ଼ିଦେଉଁ ପାଣିରେ। ବହୁ କୀଟ ପତଂଗ, ଜନ୍ଦା ପିଂପୁଡ଼ିଂକୁ ଗାମୁଛାରେ କାନିଖିଆ ଦେଇ ପାଣିରୁ ଉଦ୍ଧାର କରି ଶୁଖିଲାରେ ଛାଡୁଁ। ବହୁ ଝିଂଟିକାଂକୁ ମୁଁ ଛତା ପତେଇ ଛାଣି ଉପରେ ଛାଡ଼ିଛି। ଇଏ ଥିଲା ଗୋଟାଏ ଆନଂଦ; ଖେଳ ନୁହେଁ। ବର୍ଷାପରି ପ୍ରାଣଉଚ୍ଚାଟିଆ ଜିନିଷ ଏ ପୃଥିବୀରେ କିଛି ନାହିଁ।

ଏବେ ତ ଗତ କେତେ ବର୍ଷ ହେଲା ଓଡ଼ିଶାରେ ବେଶୀଭାଗ ସମୟ ରହୁଛି; ତେବେ ପ୍ରତି ବର୍ଷ ବା ପ୍ରତି ଦୁଇ ବର୍ଷରେ ଲଂଡନ ବା ଅନ୍ୟ କେଉଁ ବିଦେଶ ଯିବାକୁ ହୁଏ, କୌଣସି ନା କୌଣସି କାମରେ। ଯୁଆଡ଼େ ଗଲେ ବି ଫେରିଲାବେଳେ ପ୍ରାୟ ଲଂଡନ ଦେଇ ଫେରେ। ଲଂଡନରେ ତ ପ୍ରାୟ ସବୁବେଳେ ବର୍ଷା ଲାଗିରହିଛି। ମାତ୍ର ଜଣେ କିପରି ଅବସନ୍ନ ଓ ଉଦାସିଆ ବୋଧକରେ। ଗୋଟାଏ କିମିତି ଏକଘରକିଆ ଭାବ ମନକୁ ଆଚ୍ଛନ୍ନ କରେ।

ସ୍ଫୂର୍ତି ନାହିଁ। ମନପ୍ରାଣ ନିସ୍ତେଜ। ସବୁ କିଛି ବିଷର୍ଣ ମନେହୁଏ।

କିଂତୁ ଓଡ଼ିଶାର ବର୍ଷା ସୃଷ୍ଟିକରେ ଅପୂର୍ବ ମାଦକତା। ତାର ମୃଦୁ ଦୁଷ୍ଟାମି ଖୁବ୍ ଭଲଲାଗେ। କେତେବେଳେ ସେ ଚିନିଚଂପାର ଗାଲ ଚିପିଦିଏ, କେତେବେଳେ ରାଧାତମାଳର ଓଠ ଚୁମ୍ବିଦିଏ ଏବଂ ମଧୁମାଳତୀକୁ କରେ ଅସ୍ତବ୍ୟସ୍ତ। ଏଠାରେ ବର୍ଷା ମନରେ ଆଣେ ଏକ ଘରବାହୁଡ଼ା ଭାବ (nostalgia); କହିଯାଏ 'ହେଇ ଶୁଣ, ସିଏ ଡାକୁଛି' – କିଂତୁ କିଏ ଡାକୁଛି, କିଛି ଜଣାପଡ଼େନାହିଁ।

ବୁଦୁବୁଦିକିଆ ଟାଂଗିଟାଂଗଣ ଉପରେ ବର୍ଷାର ଘୁଂଗୁର ବାଜିଉଠେ ରୁମୁଝୁମୁ ହୋଇ। ବଣ ଜଂଗଲ ଓ ପାହାଡ଼ ଥରାଇ ସୃଷ୍ଟିହୁଏ ଏକ ନୂତନ ଶଂକରାଭରଣ। ଓଡ଼ିଶାର ବୃଷ୍ଟି ମୋ' ମନରେ ଗଭୀର ରେଖା କାଟିଛି।

''ଅକାଳ ମେଘର ଶ୍ୟାମଳ ଅତ୍ୟାଚାର
ମନ ଉପରେ ରଖିଗଲା ମୋର ନରମ ଚିହ୍ନ ତାର।
ଚାରିଆଡ଼େ ମେଘର ଘନଘଟା
ଖେତେ ଖେତେ ଧାନର ବିଜୁଳିଛଟା . . .
× × × ×
ଆଜି ସକାଳେ ଦେଖାହୋଇଗଲା ଗ୍ରାମର ପଥପ୍ରାଂତେ
ଉ: ପ୍ରା: ସ୍କୁଲର ଛାତ୍ରୀ ବିନୋଦିନୀ ଷଡ଼ଂଗୀର ସାଥେ,
ଗତ ସାଲେ ଦେଖିଥିଲି ଥିଲା ନିହାତି ସାନ,
ହସି କହିଲା ପଢୁଛି ସିଏ 'ସାହିତ୍ୟ ସୋପାନ'।
ତାର ଲଘୁ ହାତରେ ସରଳ ହସ୍ତାକ୍ଷର
ଆଣିଲା ଡାକି ବର୍ଷା ଅବା ଅଦିନ ମେଘର।''

('ଅଦିନ ମେଘ'– ପାଂଡୁଲିପି)

ଆମ ଗାଆଁ ଟାଂଗି ଶେଷରେ ମଶାଣି ପଦାକୁ ଲାଗି ସାତଭାୟା ଆଂବଗଛ। ସେଠି ରାତିରେ ଚିରଗୁଣୀ ତା' ପିଲାକୁ ଶେକେ। ଗୋଟାଏ ଗଛର ଡାଳରେ ପିତାଶୁଣୀ ଘର କରିଛି। ଦି'ପହରେ କିଏ ଏକୁଟିଆ ଗଲେ ତାକୁ ବାରଡ଼ାଂଗୁଆ ଭୂତ ମାଡ଼ିବସେ। ଏପରି ଅନେକ କଥା ମୁଁ ଶୁଣିଛି। ସେଇ ସାତଭାୟା ଆଂବଗଛ ପାଖେ ଆମେ କେତେଥର ଶଗଡ଼ରେ ରାତିଅଧରେ ଯାଇଛୁଁ। ହଳଦିଆ କିଂବା ସେପଟେ ବାଂକି, ନରଣପୁର ଆଦି ଗାଁକୁ ଯିବାକୁ ହେଲେ ସେଇ ବାଟେ ଯାଇ ବଡ଼ ରାସ୍ତା ଧରିଲେ ପାଖ ପଡ଼େ; ମାତ୍ର ଆମେ କିଛି ଭୂତଫୁତ, ପିତାଶୁଣୀ କି ଚିରଗୁଣୀ ପ୍ରଭୃତି ଦେଖିନାହୁଁ; କିଂତୁ ମୋ' ଦିହଟା କିମିତି ଝିମିଝିମି କରିଉଠିଛି। ମୁଁ ଝାଳେଇଯାଇଛି ଡରରେ। ସଂଗରେ ବଡ଼ମାନେ ଥିଲେ କିଛି କଥାବାର୍ତା ଆରମ୍ଭ କରିଦିଅଂତି– ଯେପରିକି ଭୂତ ଥିଲେ ପଳାଇବ କିଂବା ଅଂତତଃ ମୁଁ ନିଦକ ହେବି।

ଏହିପରି ଗାଁର ବହୁ ବିଚିତ୍ର ଅନୁଭୂତି ମୋ'ର ସ୍ମୃତିର ଥାକେ ଥାକେ ସଂଚିତ ହୋଇ ରହିଛି। ଗାଁରେ ମେଳଣ ହୁଏ। ନିଛାଟିଆ ମେଳଣ ପଡ଼ିଆ ଦୁଇଦିନ ପାଇଁ ଠାକୁର ବିମାନ ଓ ଦୋକାନ-ବଜାରରେ ଫାଟିପଡ଼େ। ଝିଅମାନେ ପାନିଆ, ଟିକିଲି ଓ ରିବନ କିଣିବାକୁ ଆସଂତି। ପୁଅମାନେ ଆସଂତି ଅବିର ଉଡ଼ାଇ ଖେଳିବାକୁ। ବଡ଼ଓଷା ଯାତ୍ରା ହୁଏ ତିନି-ଚାରି ଦିନ ଧରି ଗାଆଁ ଶେଷ ଧବଳେଶ୍ୱର ମନ୍ଦିର ସାମନାରେ। ବହୁ ଦୋକାନ-ବଜାର ଖୋଲେ। କଂସାବାସନ, ପନିକି ପିଢ଼ାଠୁ ଆରଂଭକରି ବହିଦୋକାନ ଓ ଜଳଖିଆ ଦୋକାନମାନ ବସେ। ପାନଦୋକାନ ତ ସହଜେ।

ଖରାଦିନେ ପ୍ରାୟ ମାସେ କାଳ ଧବଳେଶ୍ୱରଂକଠାରେ ରାମଲୀଳା ହୁଏ। ଗାଆଁର ସ୍ତ୍ରୀ ପୁରୁଷ, ପିଲା ବଡ଼ ସମସ୍ତେ ଦେଖଂତି। ଥରେ ଲଂକାପୋଡ଼ି ଦିନ ଦୁଇଟା ପଂପୁ ଲାଇଟ୍ କିମିତି ଫାଟିଗଲା। ଗରମ ତେଲ ଛିଟିକି ପଡ଼ିଲା ବହୁ ଅଭିନେତା ଓ ଦର୍ଶକଂକ ଉପରେ। କେତେ ଜଣଂକ ମୁହଁ, ଛାତି, ହାତଗୋଡ଼, ଜଂଘ ଗରମ ତେଲ ପଡ଼ି ସିଝିଗଲା। ପିଂଧିଥିବା ଲୁଗାପଟା, କୁର୍ତା ଓ ସୁଆଂଗିଆମାନଂକ ପୋଷାକପତ୍ର ଆଦି ଜଳିଉଠିଲା। ବହୁଲୋକଂକୁ ଖୋରଧା ହାସପାତାଳକୁ ନିଆଗଲା। ପ୍ରାୟ ଆଠ-ଦଶଜଣ ଲୋକ ମରିଗଲେ। କୁଂଭକର୍ଣ୍ଣ ସାଜୁଥିବା ଲଂବା-ଚୌଡ଼ା ମଣିଷଟାଏ, ସଇତା ସାହୁ (ତେଲୀ) ଡାକ୍ତରଖାନାରେ ମରିଗଲା। ତା' ସ୍ତ୍ରୀ ଓ ପିଲାଂକର କାଂଦଣା ମୁଁ ଏବେ ମଧ୍ୟ ଭୁଲିପାରିନାହିଁ। ଯେଉଁମାନେ ଦିହରେ ନିଆଁ ଲାଗିଯିବା ପରେ ପ୍ରାଣ ବିକଳରେ ପାଖ ପୋଖରୀକୁ ଡେଇଁପଡ଼ିଥିଲେ, ସେମାନଂକୁ କୌଣସିମତେ ବଂଚାଇ ହେଲା ନାହିଁ। ମୁଁ ସେତେବେଳେ ଖୁବ୍ ଛୋଟ ପିଲା ଥିଲି। ମୋତେ ବଡ଼ମାନେ କେବେ କିମିତି ରାମଲୀଳା ଦେଖିବାକୁ ନେଇ ଯାଉଥିଲେ। ସେଦିନ କିଂତୁ ଆମେ କେହି ଯାଇନଥିଲୁଁ।

ମାମା ରାତିରେ କୋଳରେ ଶୁଆଇ ରଂଗବତୀ କଥା କହେ– ସେ ଭାରି ସୁଂଦରୀ ତ; ଗୋରା ତକତକ, ତନୁପାତେଳୀ ଝିଅ। ବଡ଼ହେଲେ ମୋ' ବୋହୂ ରଂଗବତୀ କନ୍ୟା ପରି ହେବ। ମୁଁ କିରିକିରି ହସିଉଠେ। ଏ ସବୁ କଥା ମୁଁ ବଡ଼ହେଲାପରେ ମାମା ଓ ଖୁଡ଼ୀମାନଂକ ମୁହଁରୁ ଶୁଣିଛି। ଛୁଆବେଳେ ମୁଁ କଣ କରୁଥିଲି, ସେ ସବୁ କଥା ସେମାନେ ବେଳେବେଳେ କହିବସଂତି। ମୁଁ କଳ୍ପନା କରେ ରଂଗବତୀକୁ; ସେ କିପରି ହୋଇଥିବ?

ଗାଆଁରେ ମେଂଢା ଲଢ଼େଇ ଖୁବ୍ ଜମୁଥିଲା। ମାଳୀ ସାହିର ଦି'ଜଣ କିଏ ଦି'ଟା ଲକୁଆ ମେଂଢା ରଖିଥିଲେ। ଧବଳେଶ୍ୱରଂକ ପାଖରେ ତାଂକର ଲଢ଼େଇହୁଏ। ବହୁତ ଲୋକ ମେଂଢା ଲଢ଼େଇ ଦେଖିବାକୁ ଜମାହୁଅଂତି। ଯାହାର ମେଂଢା ହାରିଯାଏ, ସେ 'ଭଗୁ' ହୋଇଯାଏ। ଲୋକେ ତାଳିମାରି ଦିଅଂତି। କିଛିଦିନ ପରେ ଦେଖାଯାଏ ସେ ଯେ ମେଂଢାକୁ ବିକିଦେଇ ଆହୁରି ଗୋଟାଏ

ବଳୁଆ ମେଂଢା ଆଣିଛି। ପୁଣି ଲଢ଼େଇ ଚାଲେ। ଫେର୍ ହାର-ଜିତ ପାଲା ଲାଗେ। ଏମିତି ଚାଲିଥାଏ...। କେବେ କେବେ ଆମ ଗାଆଁର ମେଂଢା ଲଢ଼ିବାକୁ ଅନ୍ୟ ଗାଆଁକୁ ଯାଏ। ଅନ୍ୟ ଗାଆଁର ମେଂଢା ବି ଆମ ଗାଆଁକୁ ଆସେ। ସେଦିନ ଖେଳ ବେଶି ଜମେ।

ସାପୁଆକେଳା ସାପ ଖେଳାଇବାକୁ ଗାଆଁକୁ ଆସେ। ବଡ଼ ବଡ଼ ନାଗ ଗୋଖର ସାପ ପେଡ଼ିରୁ ବାହାରକରେ। ପଦ୍ମତୋଳା ଗାଏ, ନାଗେଶ୍ୱର ବଜାଏ।

''କଂସର ଘରଣୀ ପଦ୍ମାବତୀ ରାଣୀ କରିଛି ଧନତ୍ରୀ ଓଷା,
ଲକ୍ଷ ଭାର ପଦ୍ମ ଦେବୁ ରେ କହ୍ନାଇ ପାଖୁଡ଼ା ନ ଥିବ ମିଶା।''

ସେ ଜାରମହୁରା, ସାପମଣି ଆଣିଥାଏ। ବଡ଼ଦଦେଇ (ମୋର ପୋଷ୍ୟ ପିତା) ସେ ସବୁ ପରଖି କରି କିଣଂତି।

ଟମ୍ ଟମ୍ ଟମ୍... କେଳା କେଳୁଣୀ ଆସିଛଂତି। ସେମାନେ ତାମସା ଦେଖାଇବେ। ବଡ଼ ବଡ଼ ବାଉଁଶ ପୋତି ସେଥିରେ ଦୌଡ଼ି ବାଂଧି, ତା' ଉପରେ 'ବାଉଁଶରାଣୀ' ଚାଲିବ; ରଶି ଉପରେ ଶୁନ୍‌ଚିଡି ଭାଂଗିବ। ତଳେ କେଳା ଧୂଡୁକା ବଜାଇ ଗୀତ ଗାଉଥିବ।

ପୁଣି ଥାଏ ବାକ୍‌ସଭରା ବାୟୋସକୋପ– 'ବଂବେଇ କା ସହର ଦେଖ, କଲିକତା କା ସହର ଦେଖ'। ମାସୁଲ ପଇସାଟିଏ। କେଉଁ ଦିନ କୁହୁକବାଲା ଆସେ। କାଂଧରେ ଭାନୁମତୀପେଡ଼ି। କାଉଁରି ହାଡ଼ ବୁଲାଇ ବାଜି ଦେଖାଏ। ତା ସ୍ତ୍ରୀ ବି କୁହୁକକରେ। ସମସ୍ତଂକ ଆଗରେ ହାତେ ଉଚ୍ଚର ଖଂଡେ ଆଂବ ଡାଳ ପୋତିଦେଇ ବେତର ଗୋଟାଏ ଟୋକେଇ ଘୋଡ଼ାଇଦିଏ। ପାଂଚମିନିଟ୍ ପରେ ଦେଖିଲାବେଳକୁ ସେଥିରେ ଆଂବଫଳିଲାଣି। ତା' ସ୍ତ୍ରୀକୁ ଗୋଟାଏ ପେଡ଼ିରେ ବଂଦ କରି ରଖିଦିଏ। କିଛି ସମୟ ଉତ୍ତାରୁ ପେଡ଼ି ଖୋଲିଲାବେଳକୁ କେହି କେଉଁଠି ନାହିଁ; ସବୁ ଫାଂକା। ତା' ସ୍ତ୍ରୀକୁ ପାଟିକରି ନାଁ ଧରି ଡାକ ପକାଏ। ସମସ୍ତେ ଦେଖଂତି ତା' ସ୍ତ୍ରୀ ସଡ଼କଆଡୁ ହସି ହସି ଆସୁଛି। କି କିମିଆ କରେ ସେ! ସବୁ ସେଇ କାଉଁରି ହାଡ଼ର କରାମତି– 'କାହାର ଆଜ୍ଞା ନା ପତରଶଉରୁଣୀ ଆଜ୍ଞା'। ସମସ୍ତେ କହଂତି, ସେ ଯାଦୁବଳରେ ଚକ୍ଷୁବଂଧନ କରିଦିଏ। ଏମିତି କେତେ କଥା ଘଟେ ସେଇ ଛୋଟ ଗାଆଁଟିର ରଂଗମଂଚ ଉପରେ। ସେଇ ଗାଆଁହିଁ ଯେପରି ନାଟ୍ୟକାର– ଅନ୍ୟମାନେ ସବୁ ପାତ୍ରପାତ୍ରୀ, କୁଶୀଲବ ମାତ୍ର।

ସିଆଡ଼େ ଠଂ-ଠଂ ଘଂଟି ବଜାଇ ସାହି ଉପରମୁଂଡୁ ଜାନୁଘଂଟିଆ ଆସେ। ତା' ଦୁଇ ଜାନୁରେ ଘଂଟି ବଂଧାଯାଇଥାଏ। ସେ ଚାଲିଲେହିଁ ଘଂଟି ବାଜିଉଠେ।

ପୁଣି ଆସେ ତାଳପତ୍ର ଛତା ଧରି ଚକୁଳିଆପଂଡା 'ଦେବ ଦିଆଇବ ଦ୍ୱିପଦ ଲଭିବ' ଗୀତ ବୋଲି। ତାକୁ ଭିକ ଦେବା ନିଶ୍ଚିତ କଥା। ଯୋଗୀ ଆସେ ଗୀତ ବୋଲି କେଂଦରା ବଜାଇ– 'ତୋହ ଲାଗି ରଂଗବତୀ ଯୋଗୀ ହେଲି

ମୁହିଁ କିଂବା 'କାହା ଲାଗି ବଂଧ ବାଂଧୁରେ କୁମର କାହା ଲାଗି ବଂଧ ବାଂଧୁ।'

ତା' ମୁହଁରୁ 'ମନବୋଧ ଚଉତିଶା' ଶୁଣିଲେ ସଂସାର ପ୍ରତି ମନ ଛି' ହୋଇଯିବ। ଶଂକରାଚାର୍ଯଂକ 'ମୋହମୁଦ୍‌ଗର'କୁ ମଧ ତାହା ବଳିଯିବ।

ଏହିପରି ନାନା ଲୋକ, ନାନା କଥା। ସେଇ ଛୋଟ ଗାଆଁଟିରେ କେତେ କଣ ଘଟିଯାଏ ପ୍ରତିଦିନ। ଚାଳ ଉପରେ ଜହ୍ନିଫୁଲ ଫୁଟେ। ପିଲାଏ ଗୀତବୋଲଂତି –

'ଜହ୍ନିଫୁଲ ଠୋ ଠା,
ଗୁଂଡିଚିମୂଷା କହିଯାଇଛି ଚାଉଳ ଦି'ମୁଠା ରଖିଥା।'

ବର୍ଷା ପଡ଼ିଲେ ଗୀତ ବୋଲଂତି –

'ମେଘ ବରଷିଲା ଟପର ଟପର / କେଣ୍ଟୁର ମାଇଲା ଗଜା,
କେଉଁ ରାଇଜରେ ରହିଲେ ମୋ' ରଜା ତେଲିଂଗୀ ବାଇଦ ବଜା।'

ସେମିତି ଜହ୍ନରାତିରେ 'ଫୁଲ ବଉଲବେଣୀ', 'ପୁଚି' ଖେଳ ଗୀତ, ଦୋଳିଗୀତ ଏବଂ ଶଗଡ଼ିଆଗୀତ ଯାହା ନାନା ଦାର୍ଶନିକ ଭାବ ଓ ତତ୍ତ୍ୱରେ ଭରା, କାନରେ ବାଜେ। ଶଗଡ଼ିଆ ଗୀତର କେତୋଟି ପଦ ଏବେ ବି ମନେଅଛି –

''ପୋଖରୀ ଖୋଳାଇଲି ଯେ ଚାରି ଚଉରସ
ଡିଂବ ପାରିଗଲା ହୋ ଅଂଡିରା ରାଜହଂସ।''

କ'ଣ ସେ ଗୀତର ଅର୍ଥ ? ମାତ୍ର କେଡ଼େ ଭଲଲାଗେ ଶୁଣିବାକୁ।

'ରାମ ହୋ ଲଇକ୍ଷଣ ଗଲେ ମୃଗ ମାରି . . .'

ବେଳେବେଳେ ଭାବେ, ଏ ଗାଆଁ ଯେପରି ଏକ ବିଚିତ୍ର ପଶାପାଲି। ସେଥିରେ ବହୁ ସାର ଓ ଗୋଟି ନିଜ ନିଜ ଘରେ ବସିଛଂତି। ଗାଆଁର ସମଗ୍ର ଜୀବନପ୍ରବାହରେ ସମସ୍ତେ ଚାଲବୁଲ କରୁଛଂତି, ଚଳପ୍ରଚଳ ହେଉଛଂତି। ସମସ୍ତଂକୁ ଚଳାଉଛି ଜୀବନର ମହାସ୍ରୋତ କେହି ଜଣେ ଲୋକ ନୁହେଁ। ଗାଆଁ ହେଉଛି ଏକ ବୁଣାକାର ଯିଏ ନାନା ପ୍ରକାର ଫୁଲ ଓ ପକ୍ଷୀର ନକ୍‌ସା ବୁଣୁଛି। ଗାଆଁହିଁ ପ୍ରୋଟାଗନିଷ୍ଟ – ସୂତ୍ରଧର।

## ହାତରେ ଖଡ଼ି –

ମୋ' ବୟସ ଚାରିବର୍ଷ ହୋଇଯିବା ପରେ ବାପମା' ଜେଜେମା' ବିଚାରକଲେ, ବୁଢ଼ା ପାଠପଢ଼ିବ। ଅବଧାନେ ବଛାହେଲେ କୋଚିଲାକଣର ବାଲୁକେଶ୍ୱର ମହାପାତ୍ରେ। କୋଚିଲାକଣ ଆମ ଗାଁକୁ ଲାଗିଛି; ମଝିରେ ଖାଲି ମଶାଣିପଦାଟା।

ଭଲ ଦିନବାର ଦେଖି ସିଦ୍ଧିରସ୍ତୁ ଠବୁଲା ଆରଂଭହେଲା। ଅବଧାନଂକୁ ସଂଚା ଦିଆଗଲା। କିଛି ପୂଜାଧୂଜା ମଧ ହୋଇଥିଲା, ମନେପଡୁଛି।

ମୁଁ ଅ ଆ . . . କ ଖ ଗ ଘ ଶିଖିଲି। ପଣିକିଆ ମଧ ଦି'-ତିନି ଖଂଡା ଶିଖିଗଲି। ମଧୁସୂଦନ ରାଓଂକ 'ବର୍ଣବୋଧ' ବହିରୁ କିଛି ଆଉଡ଼ାଇଲି।

"ଅରଣା ମହିଷୀ ରହିଛି ଅନାଇ/ମହିଷୀର ପାଶ ନ ଯାଅ ଦନାଇ।"

କିଂବା

"ତୁ ତୁ କରି ଡାକିଲି ମୁହିଁ/ଦଉଡ଼ି ଅଇଲୁ କୁକ୍‌କୁର ତୁହି।"

ସେତିକିବେଳେ ମୋହନ ସୁନ୍ଦର ଦେବ ଗୋସ୍ୱାମୀ (ଯାହାଂକୁ ସମସ୍ତେ ମୋହନ ଗୋସେଇଁ ଡାକଂତି) ତାଂକ ରାସଦଳ ନେଇ ଖୋରଧା ଆସିଥାଂତି। ଭଲ ରାସଲୀଳା ଦେଖାଉଥାଂତି। ବଡ଼ମାନଂକ ସାଂଗରେ ମୁଁ ବି ରାସ ଦେଖିବାକୁ ଯାଇଛି। ଲୀଳା ଆରଂଭ ହେବା ପୂର୍ବରୁ ମୋହନ ଗୋସେଇଁ ଧଳା ଚାଦର ପକାଇ ଚଂଦନଟିପା ଲଗାଇ କଠାଉ ହଳେ ପିଂଧି ଷ୍ଟେଜ୍ ଉପରକୁ ଆସି ଅଳ୍ପ କିଛି ଭାଷଣ ଦିଅଂତି। ତା'ପରେ ଲୀଳା ଆରଂଭ ହୁଏ। ତାଂକ ଭାଷଣ ବଡ଼ ରସରସିଆ; ସମସ୍ତେ ଶୁଣି ଖୁସିହୁଅଂତି, ହାତ ତାଳି ମାରଂତି। ଲଂଡିତ ମୁଂଡ, ଗୌରବପୁ, କାଂଧରେ ପଇତା, ବଡ଼ ଭଲ ଦିଶଂତି ସେ। ସେ ଆରଂଭ କରଂତି, "ଆଗେ ପିଲାମାନେ ଚାହାଳିରେ 'ମଥୁରା ମଂଗଳ' ବୋଲିଶିଖୁଥିଲେ। କେଡ଼େ ସୁଂଦର ଭାଷା ଓ ବର୍ଣନା ସେଥିରେ ଅଛି। ରାମକୃଷ୍ଣ ଦୁଇ ଭାଇଂକୁ ଦେଖି ଲୋକେ ଆନଂଦରେ ଗାଉଥିଲେ–

'କଳା କଳେବର କହ୍ନାଇ ସଂଗେ ରୋହିଣୀସୁତ,
ମଥୁରା ବିଜୟେ କରଂତି ଦାଂଡେ ଦେଖ ସଂଗାତ।
ଖସି ପଡୁଛି କି ଆକାଶୁ ଗଂଗା ସଂଗେ ଯମୁନା
କ୍ଷୀର ସଂଗେ ପ୍ରାଣ ଶୋଷିଲେ ନାଶ ଗଲା ପୁତନା।'

ଆଉ ଏବେ ପିଲାଏ ଚାହାଳିରେ ପଢୁଛଂତି କ'ଣ ନା–

"ତୁ ତୁ କରି ଡାକିଲି ମୁହିଁ
ଦଉଡ଼ି ଅଇଲୁ କୁକୁର ତୁହି!"

ଏ ପାଠ ପଢ଼ି ପିଲାଏ କଣ ଶିଖିବେ?" ତାଂକ ବକ୍ତୃତା ଶୁଣି ସମସ୍ତେ ଖୁସି ହୋଇ ହାତତାଳି ବାଡ଼ାଂତି। ମୋ' ମନ ଖୁବ୍ ଖରାପହୋଇଯାଏ ମୁଁ ସେ ପାଠ ପଢୁଛିବୋଲି।

ଦ୍ୱିତୀୟ ଜନ୍ମ–

ଯାହାହେଉ, ଚାରି-ଛ' ମାସ ପାଠପଢ଼ିବାପରେ ମୁଁ ଶକ୍ତ ବେମାର ପଡ଼ିଲି। ଘରେ ସମସ୍ତେ ଆଶା ଛାଡ଼ିଦେଇଥିଲେ। ପ୍ରଥମେ ଜର ଆରଂଭ ହେଲା। ଦିହରେ ଖଇଫୁଟା ଡାଡି। ପହିଲେ ଖୋରଧାର ବାଳମୁକୁଳି ଡାକ୍ତରଂକୁ ଶଗଡ଼ ପଠାଇ ଅଣାଗଲା। ସେ ଜଣେ ବଂଗାଳୀ ହୋମିଓପ୍ୟାଥିକ୍ ଡାକ୍ତର। ଲଂବା ଲଂବା ବାଳ କାଂଧ ଉପରକୁ ଝୁଲିଥାଏ। ନାମ ବୋଧହୁଏ ବରଦା ଚକ୍ରବର୍ତ୍ତୀ ନା କ'ଣ। ତାଂକ ଔଷଧ ଖୁବ୍ ମିଠାଲାଗେ। ସେ ଛୋଟ ଛୋଟ କାଗଜରେ ପୁଡ଼ିଆ ବାଂଧି ଏବଂ କେବେ ଛୋଟ ଶିଶିରେ ଔଷଧ ଦିଅଂତି; ମାତ୍ର ତାଂକ

ଔଷଧ କିଛି କାଟୁ ହେଲାନାହିଁ। ତାପ ମାତ୍ରା ପ୍ରାୟ ୧୦୪/୧୦୫ ଡିଗ୍ରୀ ରହୁଥାଏ। ମୁଁ ତରଳ ଖାଦ୍ୟ ଯଥା ସାଗୁ, ବାର୍ଲି ପ୍ରଭୃତି ଖାଉଥାଏ। ଝାଡ଼ା ମଧ୍ୟ ହେଉଥିଲା; ମୁଁ ଖୁବ୍ ଦୁର୍ବଳ ହୋଇଯାଇଥିଲି। ଏପରିକି ନିଜେ କଡ଼ ଲେଉଟାଇ ମଧ୍ୟ ପାରୁ ନ ଥିଲି। ମାମା କି ଜେଜେମା' କି ବୋଉ ମଝିରେ ମଝିରେ ଆସି କଡ଼ ଲେଉଟାଇଦେଇ ଯାଉଥାଂତି। ମୋର ମନେଅଛି, ମୁଁ ଆମ ବଡ଼ ଘରେ ଗୋଟାଏ ପଲଂକ ଉପରେ ପଡ଼ିଥାଏଁ। ଖାଲି ସେଁ-ସେଁ କରୁଥାଏ। କଥାବାର୍ତ୍ତା କରିପାରୁନଥାଏ।

ସେତେବେଳେ ଖୋରଧା ଡାକ୍ତରଖାନାରେ ବଡ଼ ଡାକ୍ତର ଥାଆଂତି ଜଣେ ପ୍ରୌଢ଼, ଧଳା ଧଳା ନିଶ ରଖିଥିବା, ଚଂଦାମୁଂଡିଆ, ଖ୍ରୀଷ୍ଟାନ୍ ଭଦ୍ରଲୋକ। ତାଂକୁ ପତିତବାବୁ ଡାକ୍ତର ବୋଲି ସମସ୍ତେ କହଂତି। ତାଂକର ଖୁବ୍ ଚୌଡ଼ା କପାଳ, ବଡ଼ ମୁଂଡ, ଅଳ୍ପ ଅଳ୍ପ ଧଳା ବାଳ ଥାଏ। ତାଂକ ମୁହଁ ମୁଁ ବହିରେ ଦେଖିଥିବା ସପ୍ତମ ଏଡ଼ୱାର୍ଡଂକ ମୁହଁ ଭଳି ଜଣାଯାଏ। ସେ ଦେଖି ଔଷଧପତ୍ର ଦେଲେ। ଛୋଟ ଛୋଟ ୧୦-୧୫ ଦିନ ତଳେ ଜନ୍ମହୋଇଥିବା କୁକୁଡ଼ା ଛୁଆଂକ ସୋରୁଆ (Soup) ବନାଇ ଖାଇବାକୁ ଦେବାକୁ କହିଗଲେ। ମୋର ସ୍ପଷ୍ଟ ମନେପଡ଼େ, ବଡ଼ଘରେ ସ୍ତିମିତ ଲଂଠଣ ଆଲୁଅରେ ମାମା ଓ ଜେଜେମାଂକ ଫୁସ୍‌ଫାସ୍ କଥାବାର୍ତ୍ତା– ଏଡ଼େ ଛୋଟ ଛୋଟ କୁକୁଡ଼ା ଛୁଆଂକୁ ମାରିବାକୁ କିମିତି କାହା ହାତ ଯିବ ?

ପତିତବାବୁ ଡାକ୍ତରଂକ ବ୍ୟବସ୍ଥାପତ୍ର ଅନୁଯାୟୀ ଔଷଧ ଦିଆଗଲା; ମାତ୍ର କିଛି ଫଳ ହେଲାନାହିଁ। ଜର ଓହ୍ଲାଇଲା ନାହିଁ। ସେତେବେଳକୁ ମୁଁ ପ୍ରାୟ ମାସେ ହେଲା ବେମାର ପଡ଼ିଲିଣି। ବୋଧହୁଏ ଟାଇଫଏଡ୍ ହୋଇଥିବ। ମାତ୍ର ସେ ସମୟରେ ଏତେ ରକ୍ତ ପରୀକ୍ଷା, ମଳ ପରୀକ୍ଷା ପ୍ରଭୃତି କିଛି ନଥିଲା। ସମସ୍ତେ ମୋ' ବଂଚିବା ଆଶା ଛାଡ଼ିଦେଇ ମୁଂଡରେ ହାତ ଦେଇ ବସିଥାଂତି। ମୋ ଜନ୍ମିତ ବାପା ପ୍ରସନ୍ନ କୁମାର ରାଉତରାୟ (ସାନ ଦଦେଇ), ଯେ କି ମୁକ୍ତାର ଥିଲେ, ରୋଜ୍ କଚେରିରୁ ଫେରି ମୋତେ ଦେଖିଯାଂତି। ଘରେ ଥିଲାବେଳେ ମଧ୍ୟ ଦି'-ତିନି ଥର ଉଂକିମାରି ଦେଖିଯାଂତି। ସମସ୍ତଂକ ଉପରେ ଆଗରୁ କାହିଁକି ମୋ' ସ୍ୱାସ୍ଥ୍ୟ ବିଷୟରେ ସାବଧାନ ନହେଲେ ସେ ଯୋଗୁ ଗୁଡ଼ାଏ ଚିଡ଼ିଚିଡ଼ି ହୁଅଂତି। ମୋ' ପୋଷ୍ୟପିତା ସଦାନଂଦ ରାଉତରାୟ, ଯାହାଂକୁ ମୁଁ ବଡ଼ଦଦେଇ ଡାକେ, ନିଜେ ଜଣେ ଭଲ କବିରାଜ ଥିଲେ। ସେ ଅଂଚଳରେ ତାଂକର ଖୁବ୍ ନାମଡାକ ଥିଲା। ସେ ପତିତବାବୁ ଡାକ୍ତର ଉପରେ ରାଗିମାଗି ଖୁବ୍ ପାଟିକରି କହଂତି– ''ମୁଁ କହୁଛି ତା' ଚିକିତ୍ସା କର ନାହିଁ। ମୋ କଥା କେହି ଶୁଣିଲ ନାହିଁ। ଏବେ ପାଆ।'' ଇତ୍ୟାଦି ଇତ୍ୟାଦି।

ଶେଷରେ ସେ ତାଂକ ବଡ଼ ବଡ଼ କବିରାଜୀ ବହିମାନ ଖୋଜି ଏକ

ଚୂର୍ଣ ପ୍ରସ୍ତୁତକଲେ। ତା' ନା 'ସୁଦର୍ଶନ ଚୂର୍ଣ'। ତାହା ଖାଇବାକୁ ଏଭଳି ପିତା ଯେ ବଡ଼ ମଣିଷ ବି ପାଟିରେ ଦେଇପାରିବନାହିଁ। ମାମା ପାଚିଲା କଦଳୀ ଖୋଳକରି ତା' ଭିତରେ ପାନେ ଚୂର୍ଣ ରଖି ମୋତେ ଆଖି ବୁଜି ଗିଳିଦେବାକୁ ଦିଏ। ମୋ ପାଟିକୁ ଆଁକରାଇ ଟିକିଏ ପାଣି ମୁହଁରେ ପୂରାଇ ଦେଇ ସେ କଦଳୀ ଗୁଳାଟାକୁ ମୋ ତଂଟି ପାଖରେ ଛାଡ଼ିଦିଏ ଏବଂ ମୁଁ ତକ୍‌କରି ଗିଳିଦିଏ। କେତେ ଥର ଗିଳିନପାରିବାରୁ ସେ ପିତା ଚୂର୍ଣ ପାଟିରେ ଖେଳିଯିବାରୁ ମୁଁ ଆଁକରି ବାଂତି କରି ପକାଇଛି। ପ୍ରାୟ ୧୦-୧୫ ଦିନ ସେ ଚୂର୍ଣ ଖାଇବା ପରେ ମୋ' ଜର ଧୀରେ ଧୀରେ କମିବାକୁ ଲାଗିଲା। ପ୍ରାୟ ମାସକ ପରେ ମୁଁ ସଂପୂର୍ଣ ଭଲହୋଇଗଲି। ଭଲହେବାପରେ ବି କିଛିଦିନ ସୁଦର୍ଶନ ଚୂର୍ଣ ବ୍ୟବହାର କରିବାକୁ ପଡ଼ିଛି। ବଡ଼ଦଦେଇଂକ ଘରେ ବହୁତ ମୋଟା ମୋଟା ବଂଗଳା କବିରାଜୀ ବହି ଗୋଟାଏ ବେତ ଆରାମ ଚୌକି ଉପରେ ଗଦାହୋଇଥାଏ। ସେ ସେସବୁ ବହି କଲିକତାରୁ ମଗାଇ ରଖିଥାଂତି। କବିରାଜ ଭାବରେ ତାଂକର ଆମ ଗାଆଁ ଏବଂ ଆଖପାଖ ଅଂଚଳ ଏବଂ ଖୋରଧାରେ ବି ବେଶ୍ ସୁଖ୍ୟାତି ଥିଲା। ତାଂକୁ ଯିଏ ଡାକିଲେ ବା ତାଂକ ପାଖକୁ ଯିଏ ଚିକିତ୍ସା ପାଇଁ ଆସିଲେ ସେ ଆଗ ପତିତବାବୁ ଡାକ୍ତରକୁ ଖୁବ୍ ବଡ଼ପାଟିରେ ଗୁଡ଼ାଏ ଶୋଧିବେ– "ହେଁ, ସେ କ'ଣ ଜାଣେ ବେମାରି କଥା? ଡାକ୍ତରୀ ବିଦ୍ୟାରେ କ'ଣ ଅଛି? ସେସବୁ ଖାଲି ଉପରଦେଖାଣିଆ କାମ। କବିରାଜୀ ଶାସ୍ତ୍ରରେ ଯାହା ଅଛି, ତା'ର ଓର ଏମାନେ କେଉଁଠୁ ପାଇବେ? ଜର୍ମାନୀ ତ ଆମ ଦେଶରୁ ସବୁ ଭଲ ଭଲ ପୋଥି, ଆୟୁର୍ବେଦଶାସ୍ତ୍ର ପ୍ରଭୃତି ନେଇଯାଇ ସେଥିରୁ ଭଲ ଭଲ ଔଷଧପତ୍ର ବାହାର କରୁଛି। ଜର୍ମାନୀ ଧନୁର୍ବେଦ ପ୍ରଭୃତି ନେଇଗଲା। ସେମାନେ ସଂସ୍କୃତ ଜାଣଂତି। ଆମ ଶାସ୍ତ୍ର ପଢ଼ି ସେଥିରୁ ନୂଆ ନୂଆ ଅସ୍ତ୍ରଶସ୍ତ୍ର ବାହାରକରି ଯୁଦ୍ଧରେ ସମସ୍ତଂକୁ କାବୁ କରିଦେଲାଣି। ଆମ ଦେଶରେ କ'ଣ ନ ଥିଲା? ଉଡ଼ାଜାହାଜ, ବୁଡ଼ାଜାହାଜ ସବୁ ଥିଲା। ସେସବୁ ବିଦ୍ୟା ବିଦେଶୀମାନେ ନେଇଗଲେ" ... ଇତ୍ୟାଦି ଇତ୍ୟାଦି। ବିଶେଷକରି ଜର୍ମାନୀ ଉପରେ ସବୁ ରାଗ ଓ ସଂଦେହ। ତାଂକର ବଡ଼ପାଟି ସେ ଦାଂଡଘରେ କଥା କହୁଥିଲେ ତାହା ତିନି ଅଗଣା ଓ ତିନି ଖଂଜା ଘର ଡେଇଁ ବାଡ଼ିପଟକୁ ଶୁଭିବ। ଘରଯାକ ମଣିଷ ଶୁନ୍‌ଶାନ୍ ହୋଇଯାଂତି।

ସେତେବେଳକୁ ପ୍ରଥମ ମହାଯୁଦ୍ଧ ମାତ୍ର ବର୍ଷେ ଦି'ବର୍ଷ ଆଗରୁ ସରିଥାଏ। ଜର୍ମାନୀ ହାରିଯାଇଥାଏ। ସେତେବେଳେ ଆମ ଦେଶର ଅଧିକାଂଶ ଶିକ୍ଷିତ ଲୋକଂକର ଧାରଣା ଥିଲା ଯେ, ଜର୍ମାନୀ ଓ ଅନ୍ୟାନ୍ୟ ପାଶ୍ଚାତ୍ୟ ଜାତିର ଲୋକେ ଭାରତରୁ ସବୁ ପ୍ରାଚୀନ ଶାସ୍ତ୍ର-ପୁରାଣ, ବେଦ ପ୍ରଭୃତି ଲୋକଂକୁ ଟଂକା ପଇସା ଦେଇ କିଣି ନେଇ ଯାଇଛଂତି। ସେସବୁ ସଂସ୍କୃତ ପୋଥିପତ୍ର ପଢ଼ି ସେଥିରୁ ନାନା ପ୍ରକାର ଅସ୍ତ୍ରଶସ୍ତ୍ର, କଳକବ୍‌ଜା ବାହାରକରୁଛଂତି। ଫଳରେ

ଆମର ଅଧୋଗତି ହେବାରେ ଲାଗିଛି; ଆଉ ସେମାନେ ଉପରକୁ ଉପରକୁ ଉଠି-ଯାଉଛନ୍ତି। ଆମର ବିଶଲ୍ୟକରଣୀ, ଆମର ପୁଷ୍ପକବିମାନ (ଉଡ଼ାଜାହାଜ) ସବୁ ଆଜି ଜର୍ମାନୀ ହାତରେ। ସେମାନେ ଇଂରେଜମାନଙ୍କୁ ମଧ୍ୟ ବୋକା ବନାଇଦେଇଛନ୍ତି।

ନୂଆ ଜୀବନ ଲାଭ –

ମୁଁ ନୂଆ ଜୀବନ ଲାଭକରି ପୁଣି କାନ୍ଥ-ବାଡ଼ ଧରି ନୂଆକରି ଚାଲିଲି। ପ୍ରଥମେ କୁଆଡ଼େ କିଛିଦିନ ଗୁରୁଣ୍ଡୁଥିଲି। ଆମ ଦାଣ୍ଡପିଣ୍ଡାରେ କାନ୍ଥ ଧରି ଚାଲିବା କଥା ମୋର ଆଜି ମଧ୍ୟ ଟିକିଏ ଟିକିଏ ମନେପଡ଼େ। ଯାହା ସବୁ ପାଠ ପଢ଼ିଥିଲି, ସବୁ ଭୁଲିଯାଇଥିଲି; କିଛିହେଲେ ମନେ ନ ଥିଲା। ପୁଣି ନୂଆକରି ଖଡ଼ି ଧରିଲି। ଅ ଆ କ ଖ ସବୁ ପୁଣି ନୂଆକରି ଶିଖିଲି।

ମୁଁ ଭଲକରି ଚାଲବୁଲ କରିବା ପରେ ବଡ଼ମାନଙ୍କ ସାଂଗରେ ଖୋରଧା ଟାଉନକୁ ଗଲି। ଥରେ ଦାସଆପଣେଙ୍କୁ ଦୂରରୁ ବଡ଼ଦଦେଇଙ୍କ କାନ୍ଧରେ ବସି ଦେଖିବାର ସୁଯୋଗ ମିଳିଥିଲା। ଦାସଆପଣେଙ୍କୁ (ପଂଡିତ ଗୋପବଂଧୁ ଦାସ) ଖୋରଧା ଜେଲ୍‌ରୁ ଡେପୁଟୀ ମ୍ୟାଜିଷ୍ଟ୍ରେଟଂକ ଇଜଲାସକୁ ଚଲାଇ ଚଲାଇ ଅଣାଯାଇଥାଏ। ସେଇଠି ତାଂକର ବିଚାର ହେବ। ଜେଲ୍‌ରୁ କଚେରି ପର୍ଯ୍ୟଂତ ପ୍ରତି ତାରିଖରେ ରାସ୍ତା ଲୋକାରଣ୍ୟ ହୋଇଯାଉଥାଏ। ବଡ଼ଦଦେଇ ମୋତେ କାଂଧରେ ବସାଇ ଦେଖାଇଦେଲେ। ତାଂକୁ ଚିହ୍ନିବାରେ କିଛି କଷ୍ଟ ହେଲାନାହିଁ। ତାଂକ ବେକରେ କୁଢ଼ କୁଢ଼ ଗେଂଡୁଫୁଲମାଳ ପଡ଼ିଥାଏ। କଳା ମଚ୍‌ମଚ୍ ଦାଢ଼ି ନିଶ ଥିବା ସୌମ୍ୟ ଶାଂତ ଚେହେରାର ଲୋକଟିଏ ହାତଯୋଡ଼ି ଡେପୁଟୀ ମାଜିଷ୍ଟ୍ରେଟଂକ କଚେରି ପିଂଡାରେ ଛିଡ଼ାହୋଇଥାଂତି। ତାଂକ କଡ଼ରେ ପୋଲିସମାନେ ଛିଡ଼ାହୋଇଥାଂତି। ସେ ଦିନ ଥାଏ ରାୟ ଦେବା ଦିନ। ଚାରିଆଡ଼େ ଜନସମାଜ। ଜନସମୁଦ୍ର ଧ୍ୱନି ହେଉଥାଏ– 'ମହାତ୍ମା ଗାଂଧି ଜୀ ଜୟ... ଗୋପବଂଧୁ ଦାସ ଜୀ ଜୟ... ବଂଦେ ମାତରମ୍... ଭାରତ ମାତା ଜୀ ଜୟ...' ସେ ଦୃଶ୍ୟ ଭୁଲିବାର ନୁହେଁ। ମୋ' ବାଲୁତ ମନରେ ତାହା ଗଭୀର ରେଖାପାତ କରିଥିଲା। ମୁଁ କ'ଣ ସେତେବେଳେ ଜାଣିଥିଲି, ମୋ ଜୀବନର ଗତିପଥ ସେଇ ଆଡ଼କୁ ଯିବ!

ଡେପୁଟୀ ମାଜିଷ୍ଟ୍ରେଟ୍ ଥାଆଂତି ନେତାଜୀ ସୁଭାଷଚଂଦ୍ର ବୋଷଂକ ସାନଭାଇ ସତୀଶ୍ ବୋଷ। ତାଂକରି ଇଜଲାସ୍‌ରେ ବିଚାର ଚାଲିଥାଏ। ମୋକଦ୍ଦମାଟି ଥାଏ ବେଗୁନିଆ ଥାନାର ଜଣେ ପୁଲିସ କର୍ମଚାରୀଂକ ପ୍ରତି ନିଜ ସଂବାଦପତ୍ର 'ସମାଜ'ରେ (ସାପ୍ତାହିକ) ପ୍ରକାଶିତ ଦାସଆପଣେଂକ ଆକ୍ଷେପ 'ସତ୍ୟ ହୋଇଥିଲେ ସାଂଘାତିକ।' ସଂବାଦଟି ପୋଲିସ କର୍ମଚାରୀଜଣକ ଜଣେ ମହିଳାଂକ ଉପରେ ଅତ୍ୟାଚାର କରିଥିବାର ଅଭିଯୋଗକୁ କେନ୍ଦ୍ର କରି ଦାସଆପଣେ ଛାପିଥିଲେ। ସେ ସଂବାଦ-ଦାତାଂକ ନାମ ସରକାରକୁ ଦେଇନଥିଲେ। ସବୁ ଦାୟିତ୍ୱ ନିଜ ମୁଂଡରେନେଇଥିଲେ।

ଡେପୁଟୀ ମାଜିଷ୍ଟ୍ରେଟ୍ ଶ୍ରୀ ବସୁ ରାଏ ଶୁଣାଇଲେ— ପଂଡିତ ଗୋପବଂଧୁ ଦାସ ନିର୍ଦ୍ଦୋଷରେ ଖଲାସ। ଜନତା ମୁହଁରେ କି ଆନଂଦ, କି ଉଦ୍ଦୀପନା! ଏହା ପରେ ପରେ ଶ୍ରୀ ବସୁ ନିଜ ଚାକିରିରୁ ଇସ୍ତଫା ଦେଇଦେଲେ। ଯେଉଁଭଳି ଆସାମୀକୁ ସେଇଭଳି ବିଚାରକ। ସମଗ୍ର ଘଟନାଟି ମୋ' ମନରେ ଆଜିଯାଏ ଗୁଂଥା ହୋଇ ରହିଛି। ଏହିପରି ଗୋଟିଏ ଦିଓଟି ଘଟନାରେ ତ ସାରା ଜୀବନର ଗତିପଥ ବଦଳିଯାଏ!

ଏହାର ଅଳ୍ପ କେତେ ବର୍ଷ ପରେ ଦିନକର ଖୋରଧା କ୍ଲବ୍‌ରେ ଅଶ୍ୱିନୀ କୁମାର ଘୋଷଂକ 'ଆର୍ଟ ଥିଏଟର' କ'ଣ ନାଟକ ଦେଖାଉଥାଂତି। ମୁଁ ବଡ଼ମାନଂକ ସଂଗେ ନାଟକ ଦେଖିବାକୁ ଯାଇଥାଏ। ହଠାତ୍ ମଂଚ ଉପରେ ଜଣେ କିଏ ଆସି ଘୋଷଣାକଲେ, 'ଆଜି ନାଟକ ହେବନାହିଁ। ପଂଡିତ ଗୋପବଂଧୁ ଦାସ ଆଜି ଚାଲିଗଲେ। ତାଂକ ଅକାଳ ମୃତ୍ୟୁରେ ଆମେ ସମସ୍ତେ ଶୋକ ପ୍ରକାଶ କରୁଛୁଁ। ଭଗବାନ୍ ସ୍ୱର୍ଗତ ଆତ୍ମାର ସଦ୍‌ଗତି ବିଧାନ କରଂତୁ।' ମୁଁ ସେତେବେଳକୁ ଖୋର୍ଧା ସ୍କୁଲରେ ତଳ କ୍ଲାସ୍‌ରେ ପଢୁଥାଏ। ସେ ଦିନ ଥିଲା ସାତ ତାରିଖ, ଜୁଲାଇ ମାସ, ୧୯୨୮ ସାଲ। ଦାସଆପଣେଂକ ଦେହାଂତ ସଂବାଦ ସମସ୍ତଂକ ମୁଂଡରେ ବଜ୍ରପାତ ପରି ପଡ଼ିଗଲା। କିଛି ସମୟ ପାଇଁ ସମସ୍ତେ ନିର୍ବାକ୍ ନିସ୍ପଂଦ ହୋଇଯାଇଥିଲେ।

ଗାଆଁରେ ଖୁଦୁରୁକୁଣୀ ଓଷା, ଭାଲୁକୁଣୀ ଓଷା, ମାଣବସା ଆଦି ନାନା ପର୍ବପର୍ବାଣି ହୁଏ। ବହୁତ ପ୍ରକାର ପିଠାପଣା ହୁଏ— ଚକୁଳି, କାକରା, ସୁଆଁଳୀ, ଆରିସା, କାଂତି, ସରପୁଳି, ଏଂଡୁରି, ନାଡ଼ି, ପାଣିମଂଡା, ପୂରମଂଡା, ଛେନାମଂଡା, ମାଲପୁଆ, ଗଇଁଠା, ମୋଡ଼ା, ଚିତଉ, ପୋଡ଼ପିଠା ଇତ୍ୟାଦି। ଆମ ଘରେ କେବେ କେବେ ଚୂଡ଼ାଘଷା ହୁଏ, ବ୍ରାହ୍ମଣ-ଭୋଜନ ପାଇଁ; ଗୁଆଘିଅ ଓ ନଡ଼ିଆ କୋରା ବାସ୍ନା ଦି'ଦିନଯାଏ ହାତରୁ ଛାଡ଼େ ନାହିଁ।

ଖୁଦୁରୁକୁଣୀ ଓଷାରେ ବକ୍ସି ପୋଖରୀରୁ କାଳେ ଅନ୍ୟ ସାହି ପିଲାଏ କଇଁଫୁଲ ତୋଳିନେବେ, ସେଥିପାଇଁ ଆମେ ବଡ଼ିପାହଂତାରୁ ଯାଇ ପୋଖରୀରୁ କୁଂଢେ କୁଂଢେ ଫୁଲ ତୋଳିଆଣୁ। ହାତରେ ବାଉଁଶ ନଗି ନେଇଥାଉଁ; କୂଳରେ ଠିଆହୋଇ ଆଂକୁଡ଼ିରେ ଫୁଲ ଝିଂକି ଆଣୁ। କେବେ କେବେ ଅଂଟାଏ ପାଣିରେ ବା ବେକେ ପାଣିରେ ପଶି ଫୁଲ ଛିଂଡାଇ ଆଣୁ। ଘରେ ଭଉଣୀମାନେ ଖୁଦୁରୁକୁଣୀ ଓଷା କରିଥାଂତି। ସଂଧ୍ୟାରେ ପୁରୋହିତେ ଆସି ଓଷା ବ୍ରତକଥା ଶୁଣାଂତି। ସାଧବଝିଅ ଅଲିଅଳୀ ତଅପୋଇକୁ ତା'ର ସାତ ଭାଉଜ କିମିତି ଦହ-ଗଂଜଣା ଦେଲେ, କିମିତି ତା' ହାତରେ ଘୋଡ଼ାଶାଳ ଆଉ ଗୁହାଳ ସଫାକରାଇଲେ —ଏସବୁ କରୁଣ କାହାଣୀ ନିହାତି କଠିନ ପ୍ରାଣକୁ ମଧ୍ୟ ତରଳାଇଦେବ।

ପୁଣି ଭାଲୁକୁଣୀ ଗଢ଼ାହୁଏ। ତାକୁ ପୁଣି ପାଣିରେ ଉଜୁଆଁଯାଏ। ଏ ଭାଲୁକୁଣୀ

ଉଜୁଆଁବେଳେ ସାହି ସାହି ଭିତରେ କିମିତି ପ୍ରତିଯୋଗିତା ହୁଏ, ଏ ସବୁ କଥା ପଂକରେ ଗାର କାଟିଲାପରି ମନରେ ରହିଛି।

ଭଉଣୀମାନଂକର କଂଢେଇ ବାହାଘର ପ୍ରାୟ ଲାଗିରହିଥାଏ। ଆମ ଘର ବଗ ପଡ଼ିଶା ଘର ମାଗୁଣି ଦଦା ବା ଗୋଲି ଦଦାଂକ ଝିଅମାନଂକ କନ୍ୟାକୁ ବାହାହୁଏ। ସେ ଏକ ରୀତିମତ ବରଯାତ୍ରା। ଆଲୁଅ ଜଳେ, ବାଣ ଫୁଟେ, ଘରେ ପଖଓଜ, ଝାଂଜ ଥାଏ, ତା ବି ବାଜେ। ଖିଆପିଆ ମଧ୍ୟହୁଏ, ଯଦିବ୍ର ଜଳଖିଆ – ଖଇ ଉଖୁଡ଼ା, ମୁଢ଼ି ମୁଆଁ, କାକରା, ପୁରୀ ତରକାରୀ, ବୁନ୍ଦିଆ ପର୍ଯଂତ।

ମୋଟ ଉପରେ ଗାଆଁରେ ଆନଂଦ ଉସବର ଅଭାବ ନଥାଏ। ଦୋଳ ପୂନେଇଁରେ ଖୋରଧାରୁ ଗୋପୀନାଥ ଓ ଅନ୍ୟ ଠାକୁରମାନେ ବିମାନରେ ଆସି ଘରେ ଘରେ ଭୋଗ ଖାଇ ଯାଆଂତି। ସେମାନଂକୁ ଛତୁଆ, ଖଇ ଉଖୁଡ଼ା, କୋରା, ବାଲୁସାଇ, ବତାସି, ଖଜା ପ୍ରଭୃତି ଭୋଗଦିଆଯାଏ। ଆମ ଗାଁ ଧବଳେଶ୍ୱରଂକ ବିଜେ ପ୍ରତିମା ଭୋଗଖାଇ ଆସଂତି। ତାଂକ ମେଢ଼ ସଂଗେ ମୁଖା ପିଂଧି ହନୁମାନ୍, ଅଂଗଦ ପ୍ରଭୃତି ମଧ ଆସିଥାଂତି। ସେମାନେ ଗଦା ଧରି ହୁଁ-ହୁଁ କରି ଟିକିଏ ଡିଆଁଡେଇଁ କରି ଯାଂତି। କାର୍ତିକ ମାସରେ ଆକାଶ-ଦୀପ ଜଳେ। ମାମା ପ୍ରଭୃତି ଚଉରାମୂଳେ ଦିଆ ଦିଅଂତି। ବୃନ୍ଦାବତୀଂକୁ ପୂଜା କରଂତି। ବଡ଼ ମାଉଁ, ଭାଇଜେଜେମାମା, ମାଆ ହେରିକା ହବିଷ କରଂତି। ମଗୁଶିର ମାସରେ ମାଣବସା, ପୁଷ ମାସରେ ଧାନକଟା, କଳେଇ ଶଗଡ଼ ନେଇ ଘରକୁ ଫେରା, ମାଘ ମାସରେ ଅଗିଜଳା, ଫାଲ୍‌ଗୁନ-ଚୈତ୍ରରେ ଦୋଳପୂନେଇଁ, ହୋଲି, ନୂଆ ପାଂଜି ଏବଂ ବୈଶାଖ ମାସରେ ପଣାସଂକ୍ରାତି – ଏହିପରି କିଛି ନା କିଛି ଲାଗିରହିଥାଏ।

ଏହାଛଡ଼ା ଅଛି ସ୍ୱନକ୍ଷତ୍ର। ଜ୍ୟେଷ ମାସରେ ପଡ଼େ। ପୋରୁହାଁ ଅଷ୍ଟମୀରେ ମାମୁଘରୁ, ନରଣପୁରରୁ ତାଂକ ବାରିକ ନୂଆ ଲୁଗା ନେଇ ଆସେ। ସେଦିନ ମୋତେ ମାମା, ବୋଉ, ଖୁଡ଼ୀ ଦୂବ, ଅରୁଆଚାଉଳ, ବରକୋଳିପତ୍ରରେ ବଂଦାପନା କରଂତି। ଚଂଦନପାଟୀ ଦେଇ, ଦୀପ ଟେକି ଖୁବ୍ ଖାତିର କରି ବଂଦାଂତି। ସମସ୍ତେ ହୁଳହୁଳି ପକାଂତି। ସେଦିନ ମୁଁ ଘରେ ସର୍ବଜ୍ୟେଷ ପୁତ୍ର ହୋଇଥିବାରୁ ବହୁ ମର୍ଯାଦାର ଅଧିକାରୀ ହୁଏ। ମୁଁ ଯେ ଜଣେ କେହି, ଏହା ସ୍ୱତଃ ଅନୁଭବକରେ। ସେଦିନ ସତରେ ଭାବେ 'ମୁଁ କି ଏମିତି ସେମିତି ଜଣେ'।

**ଆମ ଗାଁ –**

ଆମ ଗାଁରେ ନଦୀ ନାହିଁ। ଛୋଟ ଯୋରଟି ସେ ଅଭାବ ପୂରଣ କରେ। ଏହି ଯୋରର ତଳପଟକୁ ଲାଗି ସରକାରୀ ଫାର୍ମର ବହୁ ଏକର ଆଖୁ କିଆରି। 'ପଲ୍ଲିଶ୍ରୀ'ରେ ଥିବା 'ବାପା ବାପା ପକାଇଲା ହୁରି' କବିତାଟିର ପୃଷ୍ଠଭୂମି ଏହି ଯୋରକୂଳ।

"ଯୋର ନାସି ବଂକା ହୋଇ ଯହିଁ
ମିଶିଅଛି ଆଖୁ ବିଲେ, ସରକାରୀ ଫାରମରେ,— ତହିଁ
ମାଇପିଂକ ଗାଧୋଇବା ତୁଠ ;
ଖରାରେ ଶୁଖିଛି ପାଣି, ଥିଲେ ଥିବ ଅବା ତିନି ଫୁଟ।"

ଆମ ଗାଆଁର ଧବଳେଶ୍ୱର ମହାଦେବ ଖୁବ୍ ପ୍ରତାପୀ ଠାକୁର। ଲୋକମୁଖରେ ସେ କଳା ବଳଦକୁ ଧଳା କରିଦେଇଥିଲେ; ତେଣୁ ଧବଳେଶ୍ୱର ନାମରେ ନାମିତହେଲେ। ସେ ହଜିଲା ଗାଈକୁ ପଘା ସମେତ ଆଣି ଗଉଡ଼ଘରେ ବାଂଧି-ଦେଇଯାଇଥିଲେ। ତାଂକ ମଂଦିର ଆମ ପିଲାଦିନେ ଏତେ ବ୍ୟାପକ ନଥିଲା। ଖୋରଧା ତହସିଲଦାର ଅଫିସ୍‌ର ଜଣେ କର୍ମଚାରୀ ସ୍ୱର୍ଗତ କେଳୁଚରଣ ପଟ୍ଟନାୟକ ଚାଂଦାଭେଦା କରି ତାଂକ ମଂଦିରକୁ ଲାଗି ଏକ ବଡ଼ ମଂଡପ ଓ ଧର୍ମଶାଳା ଆଦି ବନାଇଛଂତି। ବଡ଼ଓଷା ଯାତ୍ରାରେ ଧବଳେଶ୍ୱରଂକ ମଂଦିର ପାଇଁ ଚାଂଦା ଅସୁଲ କରାଯାଏ। ଯାହାର ଯାହା ଇଛା, ଏକ ତାଲାଦିଆ କାଠ ବାକ୍ସରେ ଗଳାଇଦିଏ। କେଳୁବାବୁ ଧବଳେଶ୍ୱରଂକ ଜଣାଣ ଆଦି କେତେକ ଅଣକିଆ ଛୋଟ ଛୋଟ ବହି ମଧ ଲେଖିଯାଇଛଂତି। ସେସବୁ ବହିର ଆକାର ଖଂଡିଏ ତାସ୍ ପରି। ସେ ବହି-ବିକ୍ରି ପଇସା ବି ସେ ଧବଳେଶ୍ୱରଂକ କାମରେହିଁ ଲଗାଉଥିଲେ।

ଅନ୍ୟାନ୍ୟ ଯାନିଯାତ୍ରା ମଧରେ ଧବଳେଶ୍ୱରଂକ ପାଖରେ ଜାଗର ଅମାବାସ୍ୟା ରାତିରେ ବହୁ ଗାଁ ମାଇପୀ ଯାଇ ଜାଗର ଜାଳଂତି। ଖୋରଧା ଓ ଅନ୍ୟାନ୍ୟ ଜାଗାରୁ ମଧ ବହୁ ସ୍ତ୍ରୀ ପୁରୁଷ ଆସି ସାରା ରାତି ଉଜାଗର ରହି ଦୀପ ଜାଳଂତି। 'ପଲ୍ଲିଶ୍ରୀ'ରେ ଜାଗର ବା 'ଶିବରାତ୍ରି' ଉପରେ ଲେଖା ଗୋଟିଏ କବିତା ଅଛି।

"ଫଗୁଣ ଅମା ନିଶା ପବନେ ଶୀତ ମିଶା ଆଜି ଜାଗର,
ଗୋଟିକି ଗୋଟି ବାଳୀ ପ୍ରଦୀପେ ଭରି ଥାଳି ହେଲେ ହାଜର।"

ଆମ ଗାଁ'ଠୁ ତିନିକୋଶ ଦୂରରେ ଜାଗୁଳି ପାଟଣାଠାରେ ଏକ ତପୋବନ ଆଶ୍ରମ ଥାଏ। ସେଠି ଜଣେ ବୃଦ୍ଧ ସନ୍ନ୍ୟାସୀ ଓ ତାଂକ ଶିଷ୍ୟମାନେ ରହୁଥାଂତି। ସେ ବାବାଜି ପ୍ରତିବର୍ଷ ସେଠାରେ ରଥଯାତ୍ରା କରାଂତି। ରଥରେ ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରା ବିଜେ ହୁଅଂତି। ବହୁ ଲୋକ ଜମାହୁଅଂତି ଓ ରଥ ଟାଣଂତି। ଆମେ କେତେ ଥର ଶଗଡ଼ରେ ଯାଇ ସେ ରଥଯାତ୍ରା ଦେଖିଛୁଁ। ଆସିଲାବେଳେ ରାସ୍ତାକଡରେ ଥିବା ଜାମୁକୋଳି ଗଛରୁ ଜାମୁକୋଳି ନେଇ ଫେରୁଁ। ସେ ବାବାଜିଂକୁ ଅନେକେ କହଂତି, ସେ ପୁରୀରାଜା ଦିବ୍ୟସିଂହ ଦେବ; ଯାହାଂକୁ ଇଂରେଜ ସରକାର କଳାପାଣି ସଜା ଦେଇଥିଲା। ସେ ଦ୍ୱୀପାଂତର ଭୋଗ କରିସାରି ଏଠି ଆସି ଗୁପ୍ତ ଭାବରେ ଅଛଂତି। ତାଂକ ଚେଲାଂକ ଭିତରେ ଜଣେ ହିଂଦୁସ୍ତାନୀ ଯୁବକ ଥିଲେ। ତାଂକୁ ଲଂଗୁଳିବାବା କୁହାଯାଏ। ସେ ଗୋଟାଏ ଗେରୁଆ ରଂଗର ଆଲଖାଲା ସବୁବେଳେ ଦିହରେ ଗଳାଇଥାଂତି। ସେ ଖଡ଼ମ ପିଂଧି ଚାଲବୁଲ

କରଂତି । ସେ ଆମ ଘରକୁ କେତେ ଥର ଆସି ଭିକ୍ଷା ନେଇ ଯାଇଂଛତି ।

ଆମ ଗାଁଠୁ ଚାରିକୋଶ ଦୂରରେ ବାଘମାରି ଗ୍ରାମ । ସେଠାରେ ଅତ୍ରି ନାମରେ ଏକ ଉଷ୍ଣପ୍ରସ୍ରବଣ ଅଛି । ଏଠି ହଟକେଶ୍ୱର ମହାଦେବଂକ ମଂଦିର ରହିଛି । ଏଠି ମକର ସଂକ୍ରାତି ଦିନ ଏକ ମେଳା ବସେ । ବହୁ ବଂଧ୍ୟା ନାରୀ ଏହି ତପ୍ତ ପାଣିରେ ଗାଧୋଇଲେ ସଂତାନ ହେବା ବିଶ୍ୱାସରେ ସେଠାରେ ସେଦିନ ସ୍ନାନ କରଂତି । ଆମେ ଅନେକ ଥର ଶଗଡ଼ରେ ଅତ୍ରି ମେଳାକୁ ଯାଇଛୁଁ । ଶୀତରାତିରେ ସେଠି ଶଗଡ଼ରେ ପହଂଚି ଭୋରବେଳେ ତପ୍ତକୁଂଡରେ ସ୍ନାନ କରି ମହାଦେବ ଦର୍ଶନ କରୁଁ । ମେଳାରେ ବହୁ ଦୂରରୁ ବହୁ ଦୋକାନପତ୍ର ଆସିଥାଏ ।

ବରୁଣେଇ ପାହାଡ଼ ତଳେ ରଜ ସଂକ୍ରାଂତି ଦିନ ଏକ ମେଳା ହୁଏ । ସେଠିକି ମଧ ଶଗଡ଼ରେ ବହୁବାର ଯାଇଛୁଁ । ସେଠିକି ଯାଇ ଆଗ ପାହାଡ଼ର ଝରଣାରୁ ପାଣି ପିଇ ବରୁଣେଇ ଠାକୁରାଣୀଂକ ଦର୍ଶନକରୁଁ । ସେ ଝରଣାପାଣି ବରଫ ପରି ଥଂଡା । ସେ ସ୍ଥାନଟି ମଧ ବେଶ୍ ଥଂଡାଲାଗେ । ବହୁତ ଗୁଆଗଛ ଓ ଅନ୍ୟାନ୍ୟ ଗଛ; ବୃକ୍ଷଛାଇରେ ସ୍ଥାନଟି ସବୁବେଳେ ଶୀତଳ । ବେଶ୍ ପବନ ହୁଏ ସେଠି ।

ପାଇକ ବିଦ୍ରୋହ ବେଳେ ଇଂରେଜ ସୈନ୍ୟବାହିନୀ ଖୋରଧାଗଡ଼ ଆକ୍ରମଣ କଲାବେଳେ ବରୁଣେଇ ଠାକୁରାଣୀ ଇଂରେଜର ସବୁ ତୋପଗୁଳାକୁ ଆଁକରି ଗିଳିଦେଉଥିଲେ ବୋଲି ଏବେ ବି ଲୋକେ କହଂତି । ସେମାନେ ଗଡ଼ ଉପରେ ଯେତେ ତୋପ କମାଣ ଦାଗିଲେ ବି ଗଡ଼ ପାଚିରିରେ ବାଜିଲା ନାହିଁ । ତା'ପରେ ଜଣେ କିଏ ସ୍ଥାନୀୟ ଲୋକ ସେମାଂନକୁ ଭେଦ ବତାଇଦେଲା । ସେମାନେ ଗୋଟାଏ ଷଂଢ ମାରି, ତା' ରକ୍ତକୁ ଗୁଳାରେ ମାଖି ଗଡ଼ ଉପରକୁ ମାରିଲେ । ସେ ଗୁଳା ଠିକଣା ଜାଗାରେ ଯାଇ ମାଡ଼ହେଲା । ଶେଷରେ ଗଡ଼ ପାଚିରି ଓ ଗଡ଼ ସବୁ ତୋପଗୁଳାରେ ଭାଂଗିପଡ଼ିଲା । ଗଜପତି ମହାରାଜା ଫିରିଂଗି ପାଖରେ ଆତ୍ମସମର୍ପଣକଲେ । ବିଦ୍ରୋହ ଭୂଷୁଡ଼ି ପଡ଼ିଲା ।

ଏହିପରି ନାନା ଉପକଥା ଓ କିଂବଦଂତୀ ମଧରେ ବଂଚିରହିଛି ଖୋରଧାର ଇତିହାସ । ଆମ ଗାଁ ସେଥିରୁ ବାଦ୍ ପଡ଼ିନାହିଁ । ଆମ ଗାଁର ଗୋରାକବର, ଉଇଲ୍‌କିସନ୍‌ନଗର ସବୁ ସେଇ ଦେଶପ୍ରାଣ ଓଡ଼ିଆ ଜାତିର ଏକ ଏକ କ୍ଷତଚିହ୍ନର ସ୍ମାରକ । ମୋର ଏକ ପିଲାଦିନର କବିତାର ଧାଡ଼ି ମନେପଡ଼େ– "ଖୁର-ଧାର ପରି ଖୁରଧାର ବୀର, କାଟିଲା ଶତ୍ରୁ ଶିର ।"

ବାସ୍ତବିକ ଖୋରଧା ବା ଖୁରଧାର ପାଇକ ଥିଲା ଖୁର-ଧାର ପରି ତୀକ୍ଷ୍ଣ, ଶାଣିତ ଏବଂ ଚକ୍‌ଚକ୍ ଉଜ୍ଜ୍ୱଳ ।

## ଚତୁର୍ଥ ଉଲ୍ଲାସ

### ପିଲାଦିନ

ମୋ ବୟସ ଆସି ପ୍ରାୟ ଚାରି-ପାଂଚ ବର୍ଷ ହୋଇଗଲାଣି। ମୁଁ ତଥାପି ମାମାଠୁ ଦୁଧଖାଉଥାଏ ଏବଂ ମାମା କୋଳରେ ଶୋଉଥାଏ। ମାମା ଦୁଧ ଛଡ଼େଇବ ଛଡ଼େଇବ କହୁଥାଏ; କିଂତୁ ଛଡ଼େଇପାରୁନଥାଏ। ପ୍ରଥମେ ଟିକିଏ କଠୋର ହୋଇଥିଲେ ବୋଧହୁଏ ମୁଁ ଦୁଧଖିଆ ଛାଡ଼ିଦେଇଥାଂତି। ମୁଁ ତ ଜଳଖିଆ ସବୁ ଖାଉଥିଲି। ଦୁଇଓଳି ଗାଈକ୍ଷୀର ମଧ୍ୟ ଖାଉଥିଲି। ତଥାପି ଥରେ-ଦି'ଥର ମାମା କୋଳରେ ବସି ଦୁଧ ଖାଇବା ଗୋଟାଏ ଅଭ୍ୟାସରେ ପଡ଼ିଯାଇଥିଲା। ଘରେ ସମସ୍ତେ ମୋ ଉପରେ ଓ ମାମା ଉପରେ ଏଥିପାଇଁ ଚିଡ଼ଂତି। ମାମା ବି ମୋ ଉପରେ ରାଗେ, କହେ– 'ଏଡ଼େବଡ଼ ଟୋକାଟା ହେଲୁଣି, ଦୁଧ ଖାଉଛୁ କ'ଣ ମ। ତୁ କ'ଣ ଛୁଆ ହୋଇଛୁ?' ମାମାର ଦୁଧ ମଧ୍ୟ ଶୁଖିଯାଇଥାଏ।

ମୁଁ ସେତେବେଳେ ବୁଝିନଥିଲି, ପରେ ଜାଣିଲି, ମାଆମାନେ ପିଲାଂକୁ ଏତେ ଦିନଧରି ଦୁଧ ଖୁଆଇବା କିଂବା କୋଳରେ ଜାକି ଶୁଆଇବା ଭଲ ନୁହେଁ। ସେତେବେଳେ ତ ପିଲା ଅବସ୍ଥା– ନିର୍ମଳ ନିଷ୍ପାପ ଶିଶୁ। କିଂତୁ କିଏ ଜାଣେ ତାର ଅବଚେତନାରେ ଏସବୁ ଦେହତାପ କିପରି କ'ଣ ପ୍ରଭାବ ପକାଇଥାଏ, ଯାହାର ପ୍ରକାଶ ସେ ବଡ଼ହେବାପରେ ଭୋଗେ ଏବଂ ଏପରିକି ପ୍ରୌଢ଼ ବୟସରେ ମଧ୍ୟ ସ୍ୱପ୍ନରେ ନାନା ସ୍ମୃତି ଓ ସଂସ୍କାର ମଧ୍ୟଦେଇ ବିକୃତ ରୂପ ନେଇପାରେ। ପରେ ଫ୍ରୟଡଂକର ବହୁ ବହି ପଢ଼ିଛି। ୟୁଂଗଂକର ମଧ୍ୟ। ଫ୍ରୟଡଂକ ମତରେ ପ୍ରତ୍ୟେକ ପୁରୁଷ ପିଲାର ତା'ର ମାଆ ପ୍ରତି ଏକ ଗୋପନ ଯୌନଲାଳସା ଥାଏ– ଏହାକୁ ସେ 'ଏଡିପସ୍ କଂପ୍ଲେକ୍ସ' କହିଛଂତି। ଝିଅର ବାପ ପ୍ରତି ମଧ୍ୟ ସେହିପରି ଏକ ସ୍ୱାଭାବିକ ଆକର୍ଷଣ ଥାଏ। ସେ ଏହାକୁ 'ଇଲେକ୍ଟ୍ରା କଂପ୍ଲେକ୍ସ' ନାମ ଦେଇଛଂତି। ପୃଥିବୀର ବହୁ ରୂପକଥା ବା ମିଥ୍ ଏଭଳି ଆଖ୍ୟାନକୁ ଧରିରଖିଛି; ଯେପରିକି ଗ୍ରୀକ୍ ଟ୍ରାଜେଡିରେ ଏଡିପସ୍ କିଂବା ସେକ୍ସପିଅରୀୟ ଟ୍ରାଜେଡିରେ ହ୍ୟାମ୍ଲେଟ୍। ଫ୍ରୟଡୀୟମାନଂକ ମତରେ, ବିଶେଷକରି Earnst Jones ମନେକରଂତି ଯେ, ହ୍ୟାମ୍ଲେଟ୍ କଦାପି ତାର ପିତୃବ୍ୟକୁ ହତ୍ୟାକରିବାର ପୂରା ଅଭିଳାଷ ପୋଷଣ କରିନଥିଲା; କାରଣ ତାର ପିତୃବ୍ୟର ଚରିତ୍ରରେହିଁ ନିହିତ ଅଛି ତା'ର ନିଜର ଚରିତ୍ରର, ନିଜର ବ୍ୟକ୍ତିତ୍ୱର

ଏକ ନିବିଡ଼ ଗୋପନ ଦିଗ। ଶୈଶବରୁ ତାର ଅବଚେତନ ଯୌନଲାଳସା ଥିଲା ନିଜ ମାତା ସଂବଂଧରେ; ଆଉ ପିତାଂକୁ ହତ୍ୟାକରି ଏଇ ଲାଳସା ଚରିତାର୍ଥ କରିବାର ଇଚ୍ଛା। ତେଣୁ ତାର ପିତୃବ୍ୟ କ୍ଲଡିୟସ୍‌କୁ ସେ ହତ୍ୟା କରିପାରିଛି ଏକବାରେ ଯାଇ ଶେଷ ମୁହୂର୍ତ୍ତରେ – ତା' ଆଗରୁ ସେ ନିଜକୁଇ ହତ୍ୟାକରିଛି। ହ୍ୟାମ୍‌ଲେଟ୍ ଓ ଏଡିପସ୍‌ର ଗଳ୍ପ ତୁଳନା କରି ଜୋନସ୍ କହଂତି, ଦୁଇଟିଯାକ ଏକ; ତଫାତ୍ ମଧ୍ୟରେ ଗ୍ରୀକ୍ ଆଖ୍ୟାନରେ ପିତାର ବିଗ୍ରହ ଗୋଟାଏ, ଆଉ ଇଂରାଜୀ ନାଟକରେ ଏଇ ଏକକ ବିଗ୍ରହକୁ ଭାଂଗି ଦୁଇଟା କରାଯାଇଛି; ଜଣକୁ ନାୟକ ଶ୍ରଦ୍ଧା କରେ ଓ ଭଲପାଏ, ଅନ୍ୟ ଜଣଂକୁ ସେ ଘୃଣାକରେ। ଦ୍ୱିତୀୟ ଜଣକ ହେଉଛି ପିତୃହଂତା ଓ ସିଂହାସନଲୁଂଠକ ଏବଂ କ୍ଷମତାର ଅଧିକାରୀ। ସ୍ୱପ୍ନାବସ୍ଥାରେ ସଚେତନ ମନର ପ୍ରହରୀ ଯେତେବେଳେ ହଟିଯାଏ, ସାମାଜିକ ବିଧି-ନିଷେଧ ଶିଥିଳ ହୋଇପଡ଼େ, ସେତେବେଳେ ବହୁ ମଗ୍ନସ୍ମୃତିର ଆବିର୍ଭାବ ହୁଏ, ଯାହା ପୂର୍ବେ କେବେ ସେ କଳ୍ପନା ବି କରିନଥିଲା। ଚେତନ ମନ ସବୁବେଳେ ଏମାନଂକୁ ଦବାଇରଖିଥାଏ। ତେଣୁ ଏମାନଂକର ସାମୟିକ ପ୍ରଶମନ ହୁଏ ସ୍ୱପ୍ନାବସ୍ଥାରେ କିଂବା ଉପରୋକ୍ତ କାବ୍ୟିକ ପ୍ରକାଶରେ। ଏଇସବୁ ପ୍ରାଚୀନ ମିଥୀୟ ଗଳ୍ପ ବାରଂବାର କାବ୍ୟରେ ରୂପାୟିତ ହେବାର କାରଣ ହେଉଛି, ଏଗୁଡ଼ିକ ମଧ୍ୟରେ, ଅସ୍ପଷ୍ଟଭାବେ ହେଉ ପଛକେ, ବକ୍ରପଥରେ କେତେଗୁଡ଼ିଏ ସାଧାରଣ ଅଥଚ ଅବଚେତନ ଆବେଗ ଓ ଆକାଙ୍କ୍ଷା ପ୍ରକାଶପାଏ। ଅବଚେତନ ଯୌନଲାଳସାଠାରୁ ଆହୁରି ଆଦିମତର କୌଣସି ଅଭିଜ୍ଞତା ଟ୍ରାଜେଡିରେ ଥାଇପାରେ କି? ଏଠି Racial Memoryର ପ୍ରଶ୍ନ ଉଠେ। ଅତୀତର ଜାତିଗତ ଅଭିଜ୍ଞତା ଆମର ମାନସିକ ଗଠନକୁ ତିଆରିକରିଛି। କେଉଁ ଜୈବିକ ପ୍ରକ୍ରିୟାରେ ଏହା ସଂଭବ ହୋଇଛି, ତା'ର ଆଲୋଚନାର କ୍ଷେତ୍ର ଅନ୍ୟତ୍ର। ମାତ୍ର କେଉଁ ବାଚ୍ୟାର୍ଥ ସାହାଯ୍ୟରେ କବି ଏଇ ଅଭିଜ୍ଞତାକୁ ଆମ ପାଖରେ ଜୀବଂତ କରିଗଲେ ସେଇ ଭାଷାର ଓ ତାର ଅର୍ଥ ଆମେ ପୂର୍ବପୁରୁଷଂକଠାରୁ ଲାଭକରିଛୁଁ। ତେଣୁ ଛଂଦୋବଦ୍ଧ ଭାଷାର କ୍ଷମତା ଅଛି ସେଇ ସୁଦୂର ଅତୀତର ସୁପ୍ତ ଅଭିଜ୍ଞତାକୁ ଆମ ଭିତରେ ଛିଆଇ ଦେବାର – ଯଦିଚ ସେ ଅଭିଜ୍ଞତା ବ୍ୟକ୍ତିର ନୁହେଁ; ସମଷ୍ଟିର (ଏ ବିଷୟରେ 'ଦିଗଂତ' ପତ୍ରିକାର ୧୯୬୬ ସାଲ ଜାନୁଆରୀ-ଫେବ୍ରୁଆରୀ ସଂଖ୍ୟାରେ ଆଲୋଚନାଟି ଦ୍ରଷ୍ଟବ୍ୟ)।

ପିଲାଦିନେ ମାମା ମୋ' ଦେହରେ ସୋରିଷ ତେଲ ମାଲିସକରି ଗାଧୋଇ ଦେଉଥିଲା; କେତେଦିନ ସଂଜବେଳେ ହଳଦି ବାଟି ଲଗାଉଥିଲା। ତା' ମତରେ ଦିହରେ ହଳଦି ଲଗାଇଲେ ଚମ ସୁଂଦର ଓ କୋମଳ ହେବ; ମାତ୍ର ହଳଦିର ଉତ୍କଟ ଗଂଧ ନାକରେ ଲାଗିରହୁଥିଲା। ତେଣୁ ମୁଁ ଅମଂଗ ହେଉଥିଲି। ସେତେବେଳକୁ ସାବୁନର ପ୍ରଚଳନ ସେତେ ନଥିଲା। ସାବୁନ ତ ବଜାରକୁ ଆସେ ମାତ୍ର ଶହେ

ବର୍ଷ ତଳେ। ତା' ଆଗରୁ ଲୋକେ ନିଜ ନିଜ ଘରେ ସାବୁନ ତିଆରି କରି ରଖୁଥିଲେ। ସାବୁନ କିଂତୁ ଦୁଇ ହଜାର ବର୍ଷ ତଳେ ଆବିଷ୍କୃତ ଓ ବ୍ୟବହୃତ ହେଉଥିଲା ବୋଲି ରୋମାନ୍ ଲେଖକ ପ୍ଲିନୀଂକ (ଖ୍ରୀ: ପ୍ରଥମ ଶତକ) ବିବରଣୀରୁ ଖବର ମିଳେ। ମୁଁ ନିୟମିତ ସାବୁନ ବ୍ୟବହାର କଲି ହାଇସ୍କୁଲ୍‌ରେ ମାଟ୍ରିକ୍ୟୁଲେଶନ୍ ତୃତୀୟ ଶ୍ରେଣୀରେ ପଢ଼ିଲା ପରେ। ସେତେବେଳକୁ ମୁଁ ନିଜେ ନିଜେ ଗାଧୋଉଥିଲି; କେହି ଗାଧୋଇ ଦେଉ ନଥିଲେ। ପିଲାଦିନେ ମାମା ଗାଧୋଇଦେଲାବେଳେ ଦିହରେ ବୁଟଡାଲି ପାଉଡ଼ର ଗୁଆଘିଅ ସଂଗେ ଭଲକରି ଘଷୁଥିଲା; କେବେ କେବେ ସୋରିଷ ତେଲରେ ପରସ୍ତେ ମାଲିସ୍ କରିଦେଉଥିଲା।

ପିଲାଦିନେ ଆମେ ଟେନିସ୍ ବଲ୍‌କୁ ଗୋଡ଼ରେ ନେଇ ଖେଳୁଥିଲୁ; ବୟସ ବଢ଼ିବା ସଂଗେ ସଂଗେ ଫୁଟ୍‌ବଲ୍ ଖେଳିଲୁଁ। କେଉଁ କେଉଁ ଦିନ ବଲ୍ ଖେଳିବାକୁ ବେଶୀ ପିଲା ଜୁଟଂତି ନାହିଁ। ସେଦିନ ମାର୍ବୋଲ୍ ଗୋଲି ନେଇ ଖେଳୁଁ। ଏହାର ଅନ୍ୟ ନାମ ଥିଲା 'ବାଟି'। ଏହାଛଡ଼ା ହା-ଡୁଡୁ, ବୋହୂଚୋରି ଏବଂ ଡାହୁପୁଆ, ଲୁଚୁକାଳି ଆଦି ଖେଳ ପ୍ରଭୃତି ବହୁତ ପ୍ରକାର ଖେଳକୁଦ ଆମର ଅବସରବିନୋଦନ କରୁଥିଲା। ଗହ୍ମାପୂନେଇଁରେ ରାଖିବଂଧନ ଏବଂ ଅଂଟାଏ ଉଚ୍ଚର ମାଟିକୁଦ କରି ଡେଇଁବା ଏବଂ ମାଘ ପୂନେଇଁରେ ଅଗିଜଳା ମଧ ବେଶ୍ ଆମୋଦପୂର୍ଣ ଥିଲା। ଶୀତଦିନେ ରାତିରେ ନିଆଁ ପୋଇଁବା ଏବଂ ନିଆଁରେ ଆଳୁ ପିଆଜ ପୋଡ଼ି ଖାଇବା ମଧ ମଜାଲାଗୁ ଥିଲା। ଫଗୁଣ ମାସରେ ତ ହୋଲି, ଫଗୁଖେଳ, ରଂଗ ପିଚ୍‌କାରି ନେଇ ହୋ-ହୋ କରି ଧାଁ-ଦଉଡ଼ କାହାକୁ ଭଲ ନ ଲାଗେ!

ରାତିରେ କିଂତୁ ଭାରି ଡରଲାଗେ। ମାମା ତ ଗପଛଳରେ ବହୁ ଭୂତ, ପ୍ରେତ, ହାଡ଼ବାଇ, ପିଚାଶୁଣୀ, ଚିରଗୁଣୀ, ବାରଡଂଗୁଆ କଥା ମୁଂଡରେ ଭରିଦେଇଥାଏ। ସେ ସବୁଂକ ହାତରୁ ନିସ୍ତାର କାହିଁ? ହାଡ଼ବାଇ ମଲ ପାହୁଡ଼ ବଜାଇ ବା ପାଉଜ ରୁଣୁଝୁଣୁ କରି କାହା ଅଗଣାରେ ବୁଲୁଥିବ। ଦେଖିବାକୁ କୁଆଡ଼େ ଭାରି ସୁଂଦରୀ ସେ! ଯେଉଁ ମରଦ ପୁଅର ପିଛା ପଡ଼ିଥିବ, ତା ସ୍ତ୍ରୀକୁ କୁଆଡ଼େ ଧୀରେ ଧୀରେ ଶୋଷି ଶୋଷି କଂଟାକରିଦେବ; ବର୍ଷେ ଦି'ବର୍ଷ ପରେ ସେ ମରିଯିବ। ମିଂଜିମିଂଜି ଡିବିରି ବା ଲଣଟଣ ଆଲୁଅରେ ଅଗଣାରେ ଥିବା ପିଜୁଳି ଗଛ ଏବଂ ବାଡ଼ିପଟ ଓସ୍ତ ଗଛରୁ କେତେ ଭୂତ ତଡ଼ିବ! ସମସ୍ତେ ତ ସେଠି ବସିଥିବେ ଚକାପକାଇ ଆରାମରେ। ଅମେଇସିଆ ରାତିରେ ମାମା ମୋତେ ବାଡ଼ି ଓସ୍ତଗଛ ମୂଳକୁ ନେଇଯାଏ ହାତରେ ଗୋଟାଏ ଖପରାରେ ନିଆଁରଡ଼ ଧରି। ସେଥିରେ ଅଡୁଆ ବାଳ ଏବଂ ଝୁଣା ପ୍ରଭୃତି ପକାଇ କ'ଣ ଧୂପ ଦିଏ। ସେ ଧୂଆଁ ନିଃଶ୍ୱାସରେ ନେବା ବଡ଼ କଷ୍ଟ। ମୁଁ ଶକ୍ତ ବେମାରିରୁ ଉଠିବାଦିନୁ ସେ ନିୟମିତ ଏପରି କରୁଥିଲା। ଏଥିରେ କୁଆଡ଼େ ଆଉ ବେମାରି-ଫେମାରି ହେବ ନାହିଁ। ବାଡ଼ିରେ ବହୁତ ଗଛ ଥାଏ– ବରକୋଳି

ଗଛ, ଆମ୍ବଗଛ, ନଡ଼ିଆଗଛ। ପିଲାଦିନେ ବହୁତ ଖଟା ଖଟା ନଡ଼ିଆ ଖାଇଛୁଁ। ଏହାକୁ ଆଚାର ମଧ୍ୟ କରଂତି। ଓସ୍ତଗଛଟା ଥାଏ ଶେଷମୁଂଡେ, ବାଡ଼ି ପାଚିରିକୁ ଲାଗି। ଗଛ ତ ନୁହେଁ, ଭୂତଂକ ଆଡ୍ଡା।

**ଆମ ଘର –**

ଆମ ଘର ସାତ ଭାଇଂକ କୋଠାଘର। ବାପା, ଛଅଭାଇ, ଅଭିଆଡ଼ୀ ସର୍ବଶେଷ ଭଉଣୀ ବତୀ ଅପା ଏବଂ ସେମାନଂକ ଦାଦିପୁଅଭାଇ ଚିଂତାମଣିଦଦା ଏବଂ ସମସ୍ତଂକର ସ୍ତ୍ରୀ ପରିବାର ଏକାଠି ରହୁଥାଂତି; ମିଟିଦଦା ଓ ପାଡୁଦଦା (ଲଳିତ ଓ ବ୍ରଜ) ବାହା ହୋଇନଥାଂତି। ନଂଦଦଦା ତ ପୁଲିସ ଅଫିସର। ସେ ସିଆଡ଼େ ବାହାରେ ସ୍ତ୍ରୀ-ପିଲା ନେଇ ରହୁଥାଂତି। ବିନଦଦା ମଧ୍ୟ ବାହାରେ କେଉଁଠି ସ୍କୁଲମାଷ୍ଟର ଚାକିରି କରୁଥାଂତି। ଏମାନେ ସମସ୍ତେ ଛୁଟିରେ ଘରକୁ ଆସଂତି। ଆମ ଘରେ ତିନିଟା ଖଂଜା ଥାଏ। ପ୍ରଥମେ ଦାଂଡଘର। ସେଥିରେ ଖୁବ୍ ବଡ଼ ଯାଉଁଳି କବାଟ ଲାଗିଥାଏ। ସେ କବାଟରେ ବହୁତ କାଠକାମ– ଏବେ ବି ମନେପଡ଼େ– ନବଗୁଂଜର, ହାତୀ, କଇଁଚ ଇତ୍ୟାଦି। ସେ କବାଟ ବାପା ଦଦା ଭିନେହେବା ପରେ କାହା ଭାଗରେ ପଡ଼ିଲା କେଜାଣି, ଏବେ ଆଉ ଦେଖୁନାହିଁ।

ଦାଂଡଘରକୁ ଲାଗି ଆଟୁଘର। ସେଠି ବଡ଼ଦଦେଇ (ମୋ ପୋଷ୍ୟ ପିତା) ରହଂତି। ତାଂକ ପାଖରେ ଦଇବାବୁ ବୋଲି ତାଂକର ଜଣେ ସାଂଗ, ଦେହରକ୍ଷୀ ଏବଂ ସେବକ ରହୁଥାଂତି। ସେ ତାଂକର ସବୁ ବୋଲହାକ କରଂତି, ହିସ୍ପାଜତ ନିଅଂତି। ମାମା ସଂଗେ ବଡ଼ଦଦେଇଂକର କୌଣସି ସମ୍ପର୍କ ବା କଥାବାର୍ତ୍ତା ନଥାଏ। ମାମା ଓ ମୁଁ ରହୁଥାଉଁ ପଛ ସାହାଲାରେ ଏକ ବଖରାରେ। ତାହା ହାଂଡିଶାଳ ଘରକୁ ଲାଗି। ଅନ୍ୟ ଭାଇମାନେ ଏକ ଏକ ବଖରାରେ ରହୁଥାଂତି। ମଝି ଖଂଜାରେ ଏକ ବଖରାରେ ପାଡୁଦଦା ରହୁଥାଂତି; ଆଉ ଥାଏ ସେଇ ବଡ଼ ପିଜୁଳିଗଛଟା, ଯାହାର ବଡ଼ ବଡ଼ ପିଜୁଳି ଏବେ ବି ମନରେପଡ଼େ। କିଛି ଦିନ ପରେ ପାଡୁଦଦା ଅନ୍ୟ କେଉଁ ବଖରାକୁ ଉଠିଯିବାରୁ ଏଠାରେ ବଡ଼ମାଉଁ ରହିବାକୁଲାଗିଲେ। ଏହି ଘରେହିଁ ତାଂକର ମୃତ୍ୟୁ ହୋଇଥିଲା। ପ୍ରତି ଖଂଜା ମଝିରେ ବଡ଼ ବଡ଼ ଅଗଣା ଓ ପାଚିରି ଥାଏ। ଦାଂଡଘର ଓ ଆଟୁଘର ସାମନାରେ ଏକ ଅଗଣା। ତା' କଡ଼ରେ ବଡ଼ଘର ଓ ଆଳୁଘର (ଆଳୁଘରେ ଆଳୁ ଅମଳ ପରେ ରଖାଯାଉଥିଲା)। ସାମନାରେ ଏକ ବଡ଼ ପଥର ଅଗଣା ଓ ମାଟି ପାଚିରି। ତା'ପରେ ମଝିଘର, ପିଜୁଳିଗଛ ଏବଂ ଫେର୍ ଏକ ପାଚିରି। ତା ପଛକୁ ହାଂଡିଶାଳ ଏବଂ ସାହାଲାଏ ବଖରା, ଯେଉଁଠି ମୁଁ ଓ ମାମା ଓ ଆମ ବଖରାକୁ ଲାଗି ସାନଦଦେଇ ଓ ବୋଉ ଏବଂ ପର ବଖରାରେ ଚିଂତା ଦଦା ଓ ସବାଶେଷ କଣଘରେ ଅନ୍ୟ କେଉଁ ଦଦା ରହୁଥାଂତି।

ଢେଙ୍କେବାପା ବଂଚିଥିବା ବେଳେ ସାହାଲାଏ କୋଠା କରିବେ ବୋଲି ପାଂଚିଥିଲେ। ଦାଂଡଘର ସାମନାରେ ଶୁଭ ମଧ୍ୟ ଦିଆଯାଇଥିଲା। ସେ ପଥର ଏବେ ବି ସେଠି ପଡ଼ିଛି ଏବଂ ଆମେ ସବୁ ଧାଁ-ଧପଡ଼ କରି ଖେଳକୁଦ କଲାବେଳେ କେତେ ଥର ସେଟାକୁ ଝୁଂଟି ଖଂଡିଆଖାବଡ଼ା ହୋଇଛୁଁ। କିଂତୁ ସେ କୋଠା କରିବା ପୂର୍ବରୁ ମୃତ୍ୟୁ ଲଭିଲେ। ମାତ୍ର ଗୋଟାଏ ଦି'ତାଲା ପଥର କୋଠି କରିଯାଇଥିଲେ। ଏବେ ସେଠି ମିଟିଦଦା ଓ ତାଂକ ପରିବାର ରହୁଛଂତି। ଏହାର ତଳ ମହଲାରେ ଧାନ ଓଳିଆ, ବଉଦରୁ ଆଣିଥିବା ବଡ଼ ବଡ଼ କାଠ ବାକ୍‌ସ, ଯେଉଁଥିରେ କି ଭରିରହିଥିଲା ବହୁପ୍ରକାର କାରୁକାର୍ଯ୍ୟ– ଖଚିତ ପିତଳ ପିଲିସଜ, ଝରିଗଡୁ, ପାଟ, ମଖମଲିଆ କୁର୍ତା ଇତ୍ୟାଦି। ଆହୁରି ଥିଲା ବଡ଼ ବଡ଼ ପିତଳ ହଂଡା, କଡ଼େଇ, ଗରା ଇତ୍ୟାଦି। ଖୋରଧା ସହରରେ ଯାହା ଘରେ ଯେଉଁଠି ବାହା ବ୍ରତ କିଂବା ଭୋଜିଭାତ ହେଲେ ଆମ ଘରୁ ଶଗଡ଼ରେ ହଂଡା, କଡ଼େଇ, ଛାଲିଚଟୁ ଇତ୍ୟାଦି ନେଇଯାଉଥିଲେ ଏବଂ ଫେରାଇଦେଉଥିଲେ। ମୁଁ ଖୋରଧା ସ୍କୁଲରେ ପଢ଼ିଲାବେଳେ ସ୍କୁଲରେ ସରସ୍ୱତୀ ପୂଜା ଓ ଗଣେଶ ପୂଜାବେଳେ ଭୋଜିଭାତ ପାଇଁ ଆମ ଘରୁ ପିତଳ ହଂଡା, କଡ଼େଇ, ଡେକ୍‌ଚି ରଂଧାବଢ଼ା ପାଇଁ ମାଗିନେଉଥିଲେ; ମାତ୍ର ଆମ ରୋଷେଇ ହେଉଥିଲା ମାଟି ହାଂଡି, ପଲମରେ। ଖାଇବା ପାଣି ମଧ୍ୟ ହାଂଡିଶାଳ ଘରେ ବଡ଼ ବଡ଼ ମାଟି କୁଂଡରେ ଚାକରାଣୀମାନେ ଭରିରଖୁଥିଲେ। ହାଂଡିଶାଳ ଘରେ ଡିବିରି ଜଳୁଥିଲା; ଅନ୍ୟ ଘରମାନଂକରେ ଲଣ୍ଠଣ।

ଆମେ ଖାଉଥିଲୁ କଂସା ବାସନରେ; କଂସା ଥାଳି, କଂସା ଡାଟିଆ, ଗିଲାସ, ଗିନାରେ। ପଖାଳ ଖାଉଥିଲେ ଗୋଟାଏ ବଡ଼ କଂସାରେ।

ଦଦାମାନଂକ ଭିତରେ କଳିକଜିଆ ହେଲେ ଝଗଡ଼ାର ପ୍ରଥମ ପର୍ବରେ ହାଂଡିଶାଳ ଘରେ ପଶି ଗୋଟାଏ ଠେଂଗାରେ ହାଂଡିକୁଂଡେଇ ସବୁ ଭାଂଗିଦେବା ଥିଲା ଏକ ବୀରତ୍ୱର କାର୍ଯ୍ୟ। ସେଦିନ ପୁଣି ନୂଆ ହାଂଡି, ଆଟିକା, ମାଠିଆ, ପଲମ କିଣି ରଂଧାବଢ଼ା ଓ ଖିଆପିଆ କଲାବେଳକୁ ବହୁତ ଡେରି ହୋଇଯାଏ। ଆମେ ସବୁ ଭୋକରେ ଆଉଟୁପାଉଟୁ ହେଉଁ। ବେଶୀ ଥର ହାଂଡି ବାଡ଼େଇଥିବେ ପାଡୁଦଦା ଓ ବିନଦଦା। ସେ ଦୁହେଁ ଥିଲେ ରାଗୀ ଓ କଡ଼ା ମିଜାସୀ।

ରଂଧାବଢ଼ାରେ ସେମିତି ଯାଆମାନଂକ ଭିତରେ କଳିକଜିଆ ଲାଗିରହିଥିଲା। ମୋ' ମାମାହିଁ ବେଶୀ ଭାଗ ରୋଷେଇ କରୁଥିଲା। ବୋଉ ଫାଂକି ଦେଇ ଶୋଇବ। ଅନ୍ୟ ଖୁଡ଼ୀମାନେ କିଛି ନା କିଛି କାମଦାମ କରଂତି। ମାମା ବେଶୀ କାମ କରୁଥିବାରୁ ବେଳେବେଳେ ଦେଖେଇ-ଶୁଣାଇ ଅନ୍ୟମାନଂକୁ କିଛି ନା କିଛି କହୁଥିବ। କାହା ଦିହରେ ବାଜିଗଲେ ସେ ମଧ୍ୟ ଝୁଂକି ପଡ଼ିବାକୁ ଛାଡଂତି ନାହିଁ; କ୍ରମେ ବାକ୍-ଯୁଦ୍ଧ ତେଜିଉଠେ। ହାତ ଛିଂଚଡ଼ା, ଗୋଡ଼ ବାଡ଼ିଆ, ମୁହଁମୋଡ଼ାଠୁ

ଆରଂଭ କରି ଢଗଢମାଳି ପର୍ଯ୍ୟଂତ। ବହୁତ ଢଗ ଅନର୍ଗଳ ଛୁଟିଆସି ବାକ୍ ଲଢ଼େଇର ତୀବ୍ରତା ବଢ଼ାଂତି। କିଏ ରୋଷେଇ ଘରକୁ ନ ଆସି ଶୋଇଥିଲେ କିଂବା ଖଟରେ ଗଡ଼ିପଡ଼ି ଗୋଟାଏ ତାଳପତ୍ର ବିଂଚଣା ନେଇ ବିଂଚିହେଉଥିଲେ, ମାମା କି ଅନ୍ୟ କେଉଁ ଖୁଡ଼ୀ ଢଗ ମେଲିଦେବେ– "ରାଣୀ ନା ଚନ୍ଦ୍ରକାଣୀ।" ଯୁଦ୍ଧ ଜମିଗଲେ ଆହୁରି ବହୁତ ଢଗ-ବାଣ ଛୁଟିଆସିବେ– "ତୁଣ୍ଡାକୁ ଏତେ, ମୁଦି ନାହିଁ ଗୋଡ଼ କଡ଼ାକୁ କେତେ!" "ଏଇ କଥାକୁ, ନାଆ ମେଲିଦେଲି କଲିକତାକୁ।" ଖୁଡ଼ୀମାନଂକ ଭିତରୁ କିଏ କାହା ପଟିଆ ହେଲେ, ଅନ୍ୟ କିଏ କହିବ– "ଆ'ଲୋ ମୁତୁରୀ ଶୋଇବା, ତୁ ତ ମୁତୁରୀ ମୁଁ ତ ମୁତୁରୀ ହେଂସ କାହିଁ ପାଇଁ ଧୋଇବା।" ଦିହେଁ ତ ଏକା କାଟର– କିଏ ଭଲ କି? ସବୁଠୁ ବହୁ ବ୍ୟବହୃତ ବାକ୍‌ବାଣ ଥିଲା– "ମୋତେ ଯେତେ ମାଠିବୁ ମାଠ, ମୁଁ ତ ସେଇ ଦରପୋଡ଼ା କାଠ। ଯେଉଁ ଅଂଗାରକୁ ସେଇ ଅଂଗାର!"

ସାନଖୁଡ଼ୀ ମଝିଆଁ ଖୁଡ଼ୀଂକି କହିବେ– "ଆଲୋ, ଘୋଡ଼ାର ଶିଂଗ ନାହିଁ, ଶିଂଗ ଥିଲେ ଘୋଡ଼ା ରଖଂତା ନାହିଁ।" ଏହା କହିବାର ଅର୍ଥ, ତାଂକ ସ୍ୱାମୀ କିଛି ରୋଜଗାର କରଂତି ନାହିଁ, ଖାଲିଟାରେ ବେକାର ହୋଇ ଘରେ ବସିଛଂତି। ସେ ରୋଜଗାରିଆ ହୋଇଥିଲେ ୟାଂକର ବହପ ଆହୁରି କେତେ ବଢ଼ଂତାଣି। ବର୍ତ୍ତମାନ କିଛି ନ ଥାଇ ତ ଏତେ ଚାତର!

ମୁଁ ବହୁତ ଢଗ ମନେରଖିଥିଲି। ଏବେ କିଂତୁ କଳିକଜିଆ ଭାଷାରେ ବହୁ ଆଧୁନିକୀକରଣ ଘଟିଲାଣି ବୋଲି ଏକ ଓଡ଼ିଆ ଗଳ୍ପରେ ପଢ଼ିଥିଲି। ଏବେ କୁଆଡ଼େ ଆଉ ପୁରୁଣା ଗାଳି ଚଳୁ ନାହିଁ। ମାଇପିମାନେ ପରସ୍ପରକୁ ଗାଳିକରୁଛଂତି– "ଆଲୋ, ତୋତେ କୋଡ଼ିଏ ଦଫା ହେଉ (ଇନ୍ଦିରା ଗାଂଧୀଂକ ବିଂଶସୂତ୍ରୀ କାର୍ଯ୍ୟକ୍ରମ) କିଂବା "ତୋତେ ଇ.ଆର୍.ଆର୍.ପି. ପଡୁ..." ଇତ୍ୟାଦି। ଇ.ଆର୍.ଆର୍.ପି. ଅର୍ଥ– ଗ୍ରାମ୍ୟ ଦରିଦ୍ର ଅର୍ଥନୈତିକ ଥଇଥାନ ଯୋଜନା। ଏଥିରେ ସବୁ ବହୁତ ହଇରାଣ ହେବାକୁ ପଡ଼େ।

ହଁ, ଆମ ପଶ୍ଚିମପଟ ଖଳାବାଡ଼ିରେ ଯେଉଁ ଦି'ବଖରା କୋଠାଘର ଥିଲା ଏବଂ ସେତେବେଳେ କୋଠିରୂପେ ବ୍ୟବହୃତ ହେଉଥିଲା, ତାର ଛାତ ପଡ଼ିସାରିବା ପରେ ଥରେ କୁଆଡ଼େ ବଡ଼ଦଦେଇ ସେ କୋଠାକୁ ଲାଗି ଜାମୁଗଛରେ ଚଢ଼ି ଛାତ ଉପରେ ବୁଲି ଦେଖୁଥିଲେ। ଛାତ ଉପରକୁ ଯିବାପାଇଁ ଶିଡ଼ି ନଥିଲା। ଛାତ ମଧ୍ୟ କାଠର, କଡ଼ି ବରଗା ଉପରେ ଚୂନ, ସୁର୍କି, ଗୋଡ଼ି ଇତ୍ୟାଦି ବାଡ଼େଇ ତିଆରିହୋଇଥିଲା। ବଡ଼ଦଦେଇ କୋଠା ଉପରେ ବୁଲୁଥିବାବେଳେ ଭୂମିକଂପ ହେଲା। ସମସ୍ତେ ସେ କିମିତି ତଳକୁ ଓହ୍ଲାଇବେ ବୋଲି ବଡ଼ ଛାନିଆ ହୋଇଯାଇଥିଲେ; ମାତ୍ର ଭୂମିକଂପ କେତେ ସେକେଂଡ ହୋଇ ଛାଡ଼ିଯିବାପରେ ସେ ଜାମୁଗଛ ଡାଳ ଧରି ଓହ୍ଲାଇ ଆସିଲେ।

ମୋ' ପାଠପଢ଼ା ଇଆ ଭିତରେ ଘରୁ ଚାହାଳି ପର୍ଯ୍ୟନ୍ତ ଗଲାଣି। ମୋ ଅବଧାନେ ବାଲୁକେଶ୍ୱର ମହାପାତ୍ର କୁଆଡ଼େ ଚାଲିଯିବାରୁ ମୁଁ ଘରେ ନ ପଢ଼ି ପାଖ ଚାହାଳିରେ ପଢୁଥାଏ। ବହି ସିଲଟ୍ ନେଇ ଚାହାଳିକୁ ଯାଏ। 'ବର୍ଣ୍ଣବୋଧ' ଛାଡ଼ି ମଧୁ ରାଓଂକ 'କଥାବଳୀ' ଧରିଛି। ପଣିକିଆ, ମିଶାଣ, ଫେଡ଼ାଣ, ଗୁଣନ, ହରଣ ଶିଖିଗଲିଣି। ଗାଆଁ ରାମଲୀଳାରୁ କେତେକ ଗୀତ ମନେରଖିଥାଏ –

''ରାବଣ ବୋଲଇ ଶୁଣ ଆଗୋ ବଇଦେହୀ
ଜାଣିଲି ତୋ' ପତି ନିଶ୍ଚେ ଅଧର୍ମୀ ଅଟଇ, ରାମାବର ଲୋ।''

ରାମଲୀଳା ଆରଂଭରେ ପାଳିଆ ଗାଏ –

''ମା' ମାଉସୀମାନଂକୁ କରୁଅଛି ଅଳି
ଝିଆ ଜ୍ୱାଇଁ ରାଣ ସର୍ବେ ଦିଅ ହୁଳହୁଳି।''

ହୁଳହୁଳି ନାଦରେ ସ୍ଥାନଟି ଉଚ୍ଛୁଳିପଡ଼େ।

ଏହାଛଡ଼ା କେଳା-କେଳୁଣୀ ଗୀତ, ସଖୀପିଲା ଗୀତ ଆସି ମନରେ ପଶିଥାଂତି। ପଂଚୁଦୋଳ ଆଗରୁ ଠାକୁରମାନେ ଭୋଗ ଖାଇ ଆସିବାବେଳେ ତାଂକ ସଂଗେ ଗୋଟିପୁଅମାନେ ଆସି ନାଚ କରଂତି, ଗୀତ ଗାଆଂତି। ସେମାନେ ଭଂଜ, କବିସୂର୍ଯ୍ୟ, ବନମାଳୀ, ଗୋପାଳକୃଷ୍ଣଂକ ଗୀତରେ ପୋଖତ।

ଏ ସବୁ ଗୀତ ମୋ ମନଗହୀରରେ କେମିତି କେଜାଣି ଲୁଚିଛପି ରହିଯାଂତି। ଏ ସବୁ ମୋ କଳ୍ପନାର ପ୍ରସାରଣରେ ଆଉ ଭାଷାଶିକ୍ଷାରେ ଖୁବ୍ ସାହାଯ୍ୟ କରଂତି। ରୋକ୍ ବଡ଼ିଭୋରରୁ ଦଇବାବୁ 'କପଟପାଶା' ଓ ଅନ୍ୟାନ୍ୟ ଗୀତମାନ ଖୁବ୍ ବଢ଼ପାଟିରେ ସୁନ୍ଦରଭାବେ ଗାଆଂତି। ତାଂକ କଂଠସ୍ୱର ଖୁବ୍ ମିଠା। ତାଂକ ଗୀତ ଶୁଣିଲେ ମନେରହିଯାଏ। ଦ୍ରୌପଦୀ ରଜୋବତୀ ଥିବାବେଳେ ଦୁଃଶାସନ ତାଂକ କେଶ ଟାଣି କୁରୁସଭାକୁ ନେଇ ସମସ୍ତଂକ ଆଗରେ ବିବସ୍ତ୍ର କରିବା ଚିତ୍ର ମନରୁ ଭୁଲିହେବ ନାହିଁ।

ଏସବୁ ପଦ ମନରେ ବହୁ ଆଦିମ ଚିତ୍ରକଳ୍ପ (ୟୁଂଗ୍ ଯାହାକୁ Primitive Images କହଂତି) ଜାଗରୂକ କରାଏ, ଚିତ୍ତବୃତ୍ତିକୁ ଆଦି-ପୁରୁଷମାନଂକ ସଂଗେ ନେଇ ଯୋଡ଼ିଦିଏ। ଏହାହିଁ ତ ଜାତିଗତ ସ୍ମୃତି, ଯାହାକୁ ମଗ୍ନଚୈତନ୍ୟରୁ ଚେତନଶୀଳ ମନକୁ ଟାଣିଆଣେ କାବ୍ୟ-କବିତା ଶିଳ୍ପ। ହଜାର ବର୍ଷ ତଳର ସମଷ୍ଟିଗତ ଅଭିଜ୍ଞତାକୁ ଆଣି ପ୍ରତିଷ୍ଠା କରାଏ ବର୍ତ୍ତମାନର ଚେତନା ଭୂମି ଉପରେ, ସବୁ ଆଢୁଆଳ ଓ ପର୍ଦ୍ଦା ଠେଲି। ସମୟ ପରାଭବମାନେ। ଇତିହାସ ଲିଭିଯାଏ ରୂପକଥାରେ। ଉପକଥା ହୁଏ ଇତିହାସ। ଶିଳ୍ପର ମୂଳରୂପ (Archetypical Pattern) ଖୋଜିବାକୁ ହୁଏ ସତ୍ତାରେ, ସମଗ୍ର ସତ୍ତାରେ ଯାହାକୁ ରୂପାୟିତ କରେ ଶିଳ୍ପ; କିଂତୁ ସୃଷ୍ଟିକରେନାହିଁ। ଆମର ଆଦିମ, 'ବର୍ବର' ଆଦିପୁରୁଷମାନେ ରହିଛଂତି ଆମର ସମଗ୍ର ସତ୍ତାରେ, ବିଲୁଳିତ ହୋଇ।

ଆମର ଜମିବାଡ଼ି ସବୁ ମିଶି ବୋଧହୁଏ ଆଠ-ଦଶ ବାଟି ଥିଲା— ମୁଁ ସଠିକ୍ ହିସାବ ରଖିନାହିଁ। ଯାହା ଧାନ ହେଉଥିଲା, ସେଥିରେ ବର୍ଷକ ସୁରୁଖୁରୁରେ ଚଳିଯାଉଥିଲା। ବିରି ଓ ମୁଗ ବୋଧହୁଏ କେତେ ମାଣ ଚାଷ ହେଉଥିଲା। ଏହାଛଡ଼ା ବଡ଼ଦଦେଇ ଯେ କି ସରବରାକାର ଥିଲେ, ବହୁତ ବାଟି ଜାଗିରି ଜମି ପାଇଥିଲେ। ସେଥିରୁ ଅମଳ ହେଉଥିବା ଧାନ ଘରକୁ ଆସୁଥିଲା। ସେଥିରୁ ସେ କିଛି କୋଠକୁ ଦେଉଥିଲେ। ସେ ଅଫିମଭକ୍ତ ଥିଲେ। କବିରାଜିରୁ ସେ ବିଶେଷ କିଛି ପାଉନଥିଲେ; କାରଣ ସେ ରୋଗୀଠାରୁ ପଇସାପତ୍ର ନେଉନଥିଲେ। ଅନ୍ୟ ଭାଇମାନେ କୋଠ ଖରଚକୁ ମାସକୁ ମାସ ଟଂକା ପଇସା ଦେଉଥିଲେ। କିଏ କେତେ ଲେଖାଏଁ ଦେଉଥିଲେ ମୋର ଠିକ୍ ମନେନାହିଁ। ମିଟିଦଦା ଓ ପାତୁଦଦା ତ କିଛି କରୁନଥିଲେ। ପରେ ମିଟିଦଦା ଘଂଟା ମରାମତି ଓ ସାଇକେଲ୍ ମରାମତି ଦୋକାନ ଖୋଲିଲେ।

ଚିଂତାଦଦା ଖୋରଧା ବ୍ୟାଂକର ମ୍ୟାନେଜର ଥିଲେ। ବାଲୁଗାଁରୁ କାଳୁପଡ଼ାଘାଟରୁ ବହୁତ ଚିଲିକା ମାଛ, କଂକଡ଼ା ଆଦି ଆସୁଥିଲା। ଥରେ ଗୋଟାଏ ମସ୍ତବଡ଼ ଭାକୁର ମାଛ କିଏ ଆଣି ଦେଇଥିଲା। ସେଟା ସେ ଲୋକର ଜଂଘ ପର୍ଯ୍ୟଂତ ଲଂବ ଏବଂ ପ୍ରାୟ କୁଂଢେ ମୋଟ ହେବ। ଆମେ ପିଲାମାନେ ମାଛଟାକୁ ଘେରି ଦେଖୁଥାଉଁ। ହଠାତ୍ କୁଟୁଂବ ଶଂଭୁଦଦାଂକ ଘରୁ କାନ୍ଦ ବୋବାଳି ଶୁଣାଗଲା। ଜଣେ କିଏ ଦଉଡ଼ିଆସି କହିଲା, ଚାଖି ଅପା ଚାଲିଗଲା। ଚାଖି ଅପା ବେମାରପଡ଼ିଥିଲା। ସେ ବାହା ହୋଇ ନଥିଲା। ବୟସ ପ୍ରାୟ ୧୭-୧୮ ବର୍ଷ ହେବ। ସମସ୍ତଂକ ମୁହଁ କଳାକାଠ ପଡ଼ିଗଲା। ମାଛଟାକୁ କ'ଣ କରାଯିବ? ଶେଷରେ ସମସ୍ତେ ଠିକ୍‌କଲେ ସେଟାକୁ ପୋତିଦିଆଯିବ। ଶଂଭୁଦଦା ଜେଲର୍ ଥିଲେ। ତାଂକ ସାନଭାଇ କ୍ଷେତିଦଦା ମଧ୍ୟ ଜେଲ୍ ଅଫିସର ଥିଲେ; ପରେ ଜେଲର୍ ହେଲେ। ତାଂକ ତଳ ଭାଇ ନାଥଦଦା ପୋଷ୍ଟମାଷ୍ଟର୍ ଏବଂ ସବା ତଳଭାଇ ଟିକିଦଦା ଆମର ଖେଳସାଥୀ ଥିଲେ।

କୋଠାରେ ଲଗାଇବା ପାଇଁ ଜେଜେବାପା ବଉଦରୁ ଅନେକ ଶାଗୁଆନ ଓ ପିଆଶାଳ କାଠ ଆଣି ଖଳାବାଡ଼ିରେ ଥାକ ମରାଇ ରଖିଥାଂତି। ଆମେ ତା' ଉପରେ ଖେଳୁଁ। କାଠ ଭାଡ଼ି ଉପରେ ନଡ଼ାଗଦା ମଧ୍ୟ ରଖାଯାଇଥାଏ ଗାଈଗୋରୁଂକ ପାଇଁ ଓ ଘର ଛୁଆଣି କରିବାପାଇଁ। ଆମେ ତା' ଉପରେ ବସି ତଳକୁ ଅନାଉ। ଅନେକ ସମୟରେ ବର୍ଷା ପଡ଼ିଲେ ସେଥିରେ ପାଳ ଛତୁ ଫୁଟେ, ଆମେ ତୋଳି ଆଣୁ।

**ଗାଈଗୋରୁ, ଜଂତୁଜଂତା –**

ଘରେ ବହୁତ ଗୋରୁଗାଈ ଏବଂ ଦୁଇ-ତିନି ହଳ ବଳଦ ଏବଂ ଷଂଢ

ଥିଲେ । ଦି'ଟା ଶଗଡ଼ ମଧ୍ୟ ଥିଲା । ଗୋଟାଏ ଓଦର, ଗୋଟାଏ ଡାଟ । ଓଦର ଗାଡ଼ିରେ ଖତ ଇତ୍ୟାଦି ବୋହି ବିଲକୁ ନିଆଯାଏ ।

ଗୋଟାଏ ହରିଣ ବହୁତ ବର୍ଷଯାଏ ଥିଲା । ଆଉ ଥିଲା ଚାନ୍ଦ ମାଂକଡ଼ । ସେ ବଡ଼ଘର ଓ ଆଳୁଘର ପିଂଡାର ଶେଷ କୋଣରେ ବଂଧା ହୋଇ ରହିଥାଏ । ଦଇବାବୁ ତା ଖାଇବା ପିଇବା କଥା ବୁଝଂତି । ବଡ଼ଦଦେଇ ଖାଇସାରିଲେ ବଳକା ଭାତ ନେଇ ତାକୁ ଏକ ଆଲୁମିନିଅମ୍ ଥାଳିରେ ବାଢ଼ିଦେଇ ଆସଂତି । ପାଣି ମଧ୍ୟ ଗୋଟାଏ ଆଲୁମିନିୟମ୍ ଜାଗାରେ ରଖି ଦିଅଂତି । ଚାନ୍ଦ ଥରେଅଧେ ଫିଟିଯାଇ କେତେଜଣ ମୂଲିଆଣୀଂକୁ କାମୁଡ଼ି ଦେଇଛି । ସେ ମାଈ ମାଂକଡ଼ ଥିଲା । ହରିଣଟା ଉପରେ ତା'ର ଖୁବ୍ ରାଗ । ତାକୁ ଦେଖିଲେହିଁ ସେ ଖେଁ-ଖେଁ କରିବ । ଗୋଟାଏ କସରା ଘୋଡ଼ା ଥିଲା; ତାହା ଉପରେ ମୋତେ ଚଢ଼ାଇ ଜଗା ନାମକ ଚାକର ସଞ୍ଜବେଳେ ବୁଲାଏ । ଘରେ ୨-୩ ଜଣ ଚାକର ଚାକରାଣୀ ମଧ୍ୟ ଥିଲେ ।

ଟିପୁ କୁକୁରଟା ବେଶ୍ ମନେପଡ଼େ । ବେଶ୍ ଧଳା ଲୋମଶ କୁକୁରଟାଏ; ମାତ୍ର ବୁଢ଼ାହୋଇଯିବାରୁ ଲୋମସବୁ ଖସିପଡ଼ିଲା । ଚମଡ଼ାରେ ଘା' ହେଲା । ଶେଷରେ ବେମାର ହୋଇ ଆଉ ଚାଲବୁଲ କରିପାରିଲା ନାହିଁ । ସଡ଼କ ଆରପଟେ ପଡ଼ିରହି ଦିନରାତି ଖାଲି କିପରି ବିକଟାଳ ରଡ଼ି ଛାଡୁଥିବ । ଦିନେ ନଂଦଦଦା ତାଂକ ବଂଧୁକରେ ତାକୁ ଗୁଳିକରି ମାରିଦେଲେ । ତା' ରଡ଼ି ସତରେ ବଡ଼ ଖରାପ ଶୁଭୁଥିଲା । ମନେହେଉଥିଲା, ସତରେ ଯିମିତି କୁଆଡୁ ଅମଂଗଳ ଘୋଟିଆସୁଛି ।

ଏମାନଂକ ଛଡ଼ା ପୁଷି ଆଉ ବୁଲି ନାଆଁରେ ଗୋଟିଏ କଳା ଓ ଗୋଟିଏ ଧଳା ବିଲେଇ ମଧ୍ୟ ଥିଲେ । ଶୁଆ ଶାରୀ ମଧ୍ୟ ପିଂଜରାରେ ଥିଲେ । କେବେ କେବେ ଗୋବରଚଟିଆ ଚଢ଼େଇ ମଧ୍ୟ ଆଉ ଏକ ପଂଜୁରିରେ ରହୁଥିଲା ।

ପରିବେଶ —

ମଣିଷ ତା' ପରିବେଶ ଓ ପରଂପରା ଭିତରେ ବଢ଼େ; କିଂତୁ ସେ ପୁଣି ସେସବୁକୁ ଉତୁରିଯାଏ । ମଣିଷ ପରଂପରାର କିଂକର ନୁହେଁ; ସେ ନିଜ ପୌରୁଷ ବଳରେ ନୂଆ କିଛି ମଧ୍ୟ ସୃଷ୍ଟିକରିପାରେ । ପରଂପରା ତା'ର କୁଳ ହୋଇପାରେ; କିଂତୁ ତାର ନିଜସ୍ୱ କୃତି, ତା'ର ପୌରୁଷ ହେଉଛି ତାର ଶୀଳ । ଏହି କୁଳ ଓ ଶୀଳ ଉଭୟ ମଣିଷର ପ୍ରକୃତ ପରିଚୟ ବହନ କରଂତି । କର୍ଣ୍ଣ ଠିକ୍ ଏଇ କଥା କହିଥିଲେ ମହାଭାରତରେ । ସେ କହିଥିଲେ — ''ମୁଁ ସୂତପୁତ୍ର ହୋଇପାରେ ବା ଯାହା କିଛି ହୋଇପାରେ । ମୋ ଅଦୃଷ୍ଟ ମୋ ହାତରେ ନାହିଁ; ମାତ୍ର ମୋ ପୁରୁଷକାର ସଂପୂର୍ଣ୍ଣରୂପେ ମୋର । ତାହାହିଁ ଦେବ ମୋର ପ୍ରକୃତ ପରିଚୟ ।''

ଏହି କୁଳ ଆଉ ଶୀଳ ଅନ୍ୟ ପକ୍ଷରେ ପରଂପରା ସଂଗେ ଆଧୁନିକତାର ସଂପର୍କହିଁ ବୁଝାଂତି। ଆଧୁନିକତା ପରଂପରାଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ଏକ ବେଖାପ ବିକ୍ଷିପ୍ତ ଜିନିଷ ହୋଇ ନ ପାରେ। ଏହା ଇତିହାସର ଏକ କ୍ରମିକ ଅନିବାର୍ଯ୍ୟ ପରିଣାମ। ଯାହା 'ଅଛି' ଏବଂ ଯାହା 'ହେବ' – ଏ ଦୁଇଟି ପରସ୍ପର ସଂବଂଧିତ ଏବଂ ଆପେକ୍ଷିକ; କିଛି ଆକସ୍ମିକ ନୁହେଁ ବା ଆକାଶରୁ ପଡ଼େନାହିଁ।

× × × ×

ମାମା ମୋତେ ରଂଗବତୀ କନ୍ୟା କଥା କହି ବାସ୍ତବତାଠାରୁ ଦୂରକୁ ନେଇଯିବାକୁ ଚେଷ୍ଟାକରୁଥିଲା। ମୁଁ ସ୍ୱପ୍ନ ଦେଖୁଥିଲି ଏକ ଗୋରୀ ସୁଂଦରୀ ଝିଅର, ଯିଏ ତାର ସାପପରି ଲଂବ ବେଣୀକୁ ହଲାଇ କେବଳ ମୋତେହିଁ ଡାକୁଥିବ ଏବଂ ମୋ ପାଇଁ ଅପେକ୍ଷା କରି ବସିଥିବ। ବେଳେବେଳେ ପୁଣି ବିରୋଧାଭାସ ସୃଷ୍ଟି କରି ମାମା କହିବ, ରଂଗବତୀ ଏଇ ହାଂଡିଶାଳ ଘର ରୁଅପରି, ଯାହାର ଅର୍ଥ ତ୍ରିପଂଡ କାଳୀ। ପ୍ରତିବାଦ କରି ମୁଁ କହେ– 'ନା, ନା।' ନୂଆଖୁଡ଼ୀ ଆସି ମୋ ପଟ ନେଇ କହିବେ– 'ନାଇଁମ ବୁଢ଼ା ବୋହୂ ଶଂଖ ମଳମଳ ପ୍ରତିମା ପରି ତକତକ ଗୋରା।' ମୁଁ କିରିକିରି କରି ହସିଉଠେ।

ଏଇ ଦ୍ୱଂଦ୍ୱ ଭିତରେ– ଏଇ କ'ଣ ହେବ, କ'ଣ ନାହିଁ ଭିତରେ କଟିଯାଏ ପିଲାଦିନ। ପିଲାଟା କ'ଣ ହୋଇପାରେ ଅପେକ୍ଷା ପିଲାଟା କ'ଣ ନ ହୋଇପାରେ, ଏଇ ପ୍ରଶ୍ନହିଁ ରହିବା ଉଚିତ ସମସ୍ତଂକ ତୁଂଡରେ। ତା'ର ଅଦୃଷ୍ଟର ତାଲିକା କିଏ ଅଟକଳ କରିପାରିବ ? କାଲି ସେ ଚଂଦ୍ରଲୋକକୁ ଯାଇପାରେ ଏବଂ ସେଠାରେ ପୃଥିବୀ ଉଦୟ ଦେଖିପାରେ, କିଂବା ରସାତଳରେ ପଡ଼ିପାରେ। ତା'ର ଅଦୃଷ୍ଟର ରେଖାଗୁଡ଼ାକ ବଂକାଡଂକା ରେଳଲାଇନପରି କୁଆଡ଼କୁ ଲଂବିଯାଇଛି। ସେ କେଉଁଆଡ଼େ ଯିବ, କେଉଁଠି ପହଞ୍ଚିବ, କିଏ କହିବ ? ତା'ର ସଂଭାବନା ଯେପରି ବ୍ୟାପକ, ତାର ବିଡ଼ଂବନା ଓ ବଂଚନା ମଧ୍ୟ ସେତିକି ପ୍ରଖର।

× × × ×

ମଣିଷ ଜୀବନ ଯେପରି ଏକ ଅସତର୍କ, ଅନିଶ୍ଚିତ ମୁହୂର୍ତ୍ତ। ସବୁ ଅଛି, ପୁଣି କିଛିହିଁ ନାହିଁ। ଏପରି ଏକ ଜୀବନକୁ ନେଇ ମଣିଷ କ'ଣ କରିବ ? – ଏ ପ୍ରଶ୍ନ ଚିରଦିନ ପ୍ରଶ୍ନହିଁ ହୋଇ ରହିଯାଏ। ଏହାର ପ୍ରତିଟି ଉତ୍ତର ପାଲଟୁଥାଏ ଆଉ ଏକ ପ୍ରଶ୍ନ।

# ପଂଚ଼ମ ଉଲ୍ଲାସ

## କଂଚା ମାଟି

ହେତୁ ପାଇବାପରେ ମୁଁ ବାହାରର ଅନେକ କଥା ଜାଣିଲି। ବାସ୍ତବତାର ସଂସ୍ପର୍ଶରେ ଆସିଲି। ନେଳି ଚଢ଼େଇର ସଂଧାନରେ ନ ବୁଲି ବାସ୍ତବ ଜଗତକୁ ଠାବକରିବାପାଇଁ ପ୍ରସ୍ତୁତହେଲି। ଘରେ ଟ୍ୟୁସନ ମାଷ୍ଟର ରହି ମୋତେ ପାଠ ପଢ଼ାଉଥାଂତି। ଇଂରାଜୀ ମଧ୍ୟ ଶିଖିଲି। ପ୍ରଥମ ଟ୍ୟୁସନ ମାଷ୍ଟର ଦିଗଂବର ମାଷ୍ଟ୍ରେ। ତାଂକ ସାଂଗ୍ୟା କ'ଣ, ମନେପଡୁନାହିଁ। ସେ ଖୋରଧା ହାଇସ୍କୁଲରେ ଉପର ଶ୍ରେଣୀରେ ପାଠ ପଢୁଥାଂତି ଏବଂ ଆମ ଘରେ ରହି ମୋତେ ଟିଉସନ କରୁଥାଂତି।

ଘରେ ମଧ୍ୟ ମୋର ଏକାଧିପତ୍ୟ ଅଧିକାର କ୍ରମେ କ୍ଷୁଣ୍ଣ ହୋଇଆସୁଥିଲା। ମୁଁ ଆଉ 'ଏକୋଇରବଲା ବିଷିକେଶନ' ନୁହେଁ। ମୋର ଜନ୍ମିତ ପିତା ମାତାଂକର ସଂତାନ-ସଂତତି ଜନ୍ମହେଲେଣି। ସାନଭାଇ ମୁନିଆ ଓ ଦୁଇ ଭଉଣୀ ଟିକିରା ଓ ନିଖିରା ଜନ୍ମହେଲେ। ଏମାନଂକର ଭଲନାମ ଯଥାକ୍ରମେ ଶ୍ୟାମାନଂଦ, ସ୍ୱର୍ଣ୍ଣଲତା ଓ ସ୍ନେହଲତା। ନଂଦଦଦାଂକର ବଡ଼ପୁଅ ରାମଚଂଦ୍ର, ଝିଅ ସାବିତ୍ରୀ ଏବଂ ଚିଂତାଦଦାଂକର ପୁଅ ଭିକାରି ବା ଗୋକୁଳାନଂଦ, ନିତ୍ୟାନଂଦ (କଂଡୁରି) ଏବଂ ଗୌରଚନ୍ଦ୍ର (ହାଡୁ) ମଧ୍ୟ ଜନ୍ମହେଲେଣି। ଏହାପରେ ଦଦାମାନଂକର ବହୁ ସଂତାନ-ସଂତତି ହେଲେ।

ମୋ ପୋଷ୍ୟ ପିତାମାତାଂକର ଏକମାତ୍ର କନ୍ୟା ସଂତାନ ମହନୀଅପା ବା ସୌଦାମିନୀ ତ ଥାଆଂତି। ମାମା ନିଜ ଝିଅ ମହନୀଅପାର ଯେତେ ଯତ୍ନ ନ ନିଏ, ମୋ'ର ସେତେ ଯତ୍ନ ନିଏ। ମାମାକୁ ପ୍ରଥମେ ସମସ୍ତେ ମହନୀମାମା ଡାକୁଥିଲେ; ଏବେ ବୁଢ଼ାମାମା ଡାକୁଛଂତି। ମହନୀଅପା ଘରେ ଓଡ଼ିଆ, ବଂଗଳା ଓ ଇଂରେଜୀ ଭାଷା ପଢ଼ି ବହୁତ ଓଡ଼ିଆ ଓ ବଂଗଳା ବହି, ବଂଗଳା ମ୍ୟାଗାଜିନ୍ ଇତ୍ୟାଦି ପଢୁଥାଏ। ଓଡ଼ିଆରେ ତ ସେତେବେଳେ କିଛି ପତ୍ରପତ୍ରିକା ବା ଗଳ୍ପ-ଉପନ୍ୟାସ ନ ଥାଏ। ମହନୀଅପା ମୋତେ ଖୁବ୍ ଭଲପାଏ। ମହନୀଅପା ପାଇଁ ବର ଖୋଜାଚାଲିଥାଏ। ସେ ଦେଖିବାକୁ ଖୁବ୍ ସୁଂଦର, ଗୋରୀ ଓ ନିଟୋଳ ସ୍ୱାସ୍ଥ୍ୟର ଝିଅଟିଏ ଥିଲା। ସେ ବି ବେଳେବେଳେ ହାଂଡିଶାଳରେ ପଶି କିଛି ରଂଧାବଢ଼ା କରୁଥିଲା।

ସେତେବେଳେ ଟ୍ୟୁସନ୍ ମାଷ୍ଟରମାନେ ଆମ ଘରେ ଘରମଣିଷଂକ ଭଳି ରହି ଆମକୁ ପାଠ ପଢ଼ାଉଥିଲେ। ତାଂକୁ କେହି ବାହାରର ଲୋକ ବୋଲି

ମନେକରୁନଥିଲେ। ମୁଁ ପ୍ରଥମେ First Bookରୁ A, B, C, D... ଇତ୍ୟାଦି ପଢ଼ିବା କଥା ଟିକିଏ ଟିକିଏ ମନେପଡ଼େ। ସାନଦଦେଇ କଟିରିରୁ ଫେରିବାବେଳେ ବଜାରରୁ ଖଂଡେ ଫାଷ୍ଟ୍ ବୁକ୍ କିଣିଆଣି ଦେଇଥାଂତି। ମାଷ୍ଟ୍ରେ ତା' ଉପରେ ଖଂଡେ ଖବରକାଗଜ ମଲାଟ ଚଢ଼ାଇଦେଇଥାଂତି।

ମୁଁ ଓଡ଼ିଆ ଓ ଇଂରାଜୀ ଭଲ ପଢୁଥିଲି। ତାର ପ୍ରମାଣସ୍ୱରୂପ କାଂଥରେ ବାଡ଼ରେ ଇଂରାଜୀ ଓ ଓଡ଼ିଆ ପାଠ, ଖଂଡେ ଚକ୍‌ଖଡ଼ି ଧରି ଲେଖିଦଉଥିଲି, ଏପରିକି ଦାଂଡପିଂଡାରେ ମଧ୍ୟ। 'Twinkle twinkle little star' କିଂବା 'କଟକ ନଗର, ଧବଳ ଟଗର' ପ୍ରଭୃତି ଲାଇନ୍‌ମାନ ଚାରିଆଡ଼େ ଶୋଭା ପାଉଥିଲା। ସେଥିପାଇଁ ଦାଂଡକାଂଥ ବାରଂବାର ଲିପାପୋଛା କରାଇବାକୁ ପଡୁଥିଲା। ସାହିତ୍ୟ ଛଡ଼ା ଅଂକ, ପ୍ରାକୃତିକ ବିଜ୍ଞାନ ପ୍ରଭୃତି ମଧ୍ୟ କିଛି କିଛି ପଢୁଥିଲି।

ଆମ ଗାଆଁରେ ସେତେବେଳକୁ ହରିପ୍ରେମର ବନ୍ୟା ଛୁଟୁଥାଏ। ହଠାତ୍ 'ହରେ କୃଷ୍ଣ ହରେ ରାମ, ନିତାଇ ଗୌର ରାଧେଶ୍ୟାମ' କୀର୍ତନମାଡ଼ରେ ଗାଆଁ ଦାଂଡ ଉଚ୍ଛୁଳିପଡ଼େ। ଭାଗବତଘରେ ରୋଜ୍ କୀର୍ତନ ଆରଂଭ ହୋଇଗଲା। ଖୋଳ, କରତାଳ ଶବ୍ଦରେ ସାହି ଉଠିଲା, ପଡ଼ିଲା। ଏହାପରେ ଅଷ୍ଟପ୍ରହରୀ, ଚବିଶ-ପ୍ରହରୀ ପ୍ରଭୃତି ଆରଂଭହେଲା। ଆମ ଘରେ ଚିଂତାଦଦା ବଡ଼ କୀର୍ତନଭକ୍ତ ହୋଇପଡ଼ିଲେ।

ଆମେ ଟେନିସ୍ ବଲ୍‌କୁ ଫୁଟ୍‌ବଲ୍ ପରି ଖେଳୁଥିଲୁଁ, ପରେ ଦଶ-ଏଗାର ବର୍ଷର ହେଲାପରେ ଫୁଟ୍‌ବଲ୍ ଖେଳିଲୁଁ। ସାନଦଦେଇଂକଠୁ ଟଂକା ନେଇ କଲିକତାରୁ Whiteway Laidlaw & Co. Ltd. ଠାରୁ ଭି.ପି.ପି.ରେ ଫୁଟ୍‌ବଲ୍ ମଗାଇ ଆମେ ସାହି ଉତ୍ତରମୁଂଡେ ଟାଂଗି ପଡ଼ିଆରେ ଗଛବୁଦା ସଫାକରି ଫିଲ୍ଡ ବନାଇଲୁଁ। ସେଠି ବାଉଁଶ ପୋତି ଗୋଲପୋଷ୍ଟ ବନାଇଲୁଁ। ହ୍ୱାଇଟଓ୍ୱେ ଲେଡ୍‌ଲଅ କୋଂପାନୀର ଗୋଟିଏ ଲଂବାଚୌଡ଼ା ମୋଟା କ୍ୟାଟାଲଗ୍ ସାନଦଦେଇ ରଖିଥାଂତି। ସେଥିରେ ବହୁ ଜିନିଷପତ୍ରର ନାମ, ଦାମ୍ ଓ ଚିତ୍ରାବଳୀ ଛପାଯାଇଥାଏ। ସେ କ୍ୟାଟାଲଗ୍‌ର ଏମୁଂଡୁ ସେମୁଂଡ ଓଲଟାଇ ଚିତ୍ର ଦେଖିଲେ ଘଂଟାଏ ସମୟ ଲାଗିଯିବ। ସେଥିରେ ନାନା ପ୍ରକାର ଫାଉଂଟେନ୍ ପେନ୍, କଂଟା, ଚାମୁଚ, ଛୁରି, ଫର୍କ, ଚା' କପ୍ ସେଟ୍, ଖଟ, ପଲଂକ, ଟେବୁଲ, ଚେଆର୍ ପ୍ରଭୃତିର ଛବି ଥାଏ। ମୁଁ କେତେ ଥର ଭି.ପି.ପି.ରେ ବ୍ଲାକ୍‌ବାର୍ଡ ଫାଉଂଟେନ୍ ପେନ୍ (ତାହାହିଁ ଥାଏ ସବୁଠୁ ଶସ୍ତା ଓ ମଜବୁତ୍) ମଗାଇଛି। ସେତେବେଳେ ଭି.ପି.ପି. ଖରଚ ଖୁବ୍ କମ୍ ଥାଏ। ଲଫାଫାର ଦାମ୍ ବୋଧହୁଏ ଚାରି ପଇସା ଏବଂ ପୋଷ୍ଟକାର୍ଡର ଦାମ୍ ଏକ ପଇସା ଥାଏ।

ଆଉ ଟିକିଏ ବଡ଼ହେଲାପରେ ଆମେ ସନସାଇନ୍ ଟିମ୍ ଗଢ଼ିଲୁଁ। ଏକ ରବର ଷ୍ଟାଂପ ଏହି ନାଆଁରେ ଅଣାଇ ଖୋରଧା ସହର ଏବଂ ଅନ୍ୟ ଗାଆଁର ଟିମ୍‌ମାନଂକ ସଂଗେ ଚିଠିପତ୍ର ଦିଆନିଆ କଲୁଁ। ମୁଁ ଥାଏ ଟିମ୍‌ର କ୍ୟାପ୍‌ଟେନ୍ ଏବଂ ସର୍ବେସର୍ବା।

ଫୁଟ୍‌ବଲ୍ ଟିମ୍ ଛଡ଼ା ଗୋଟାଏ ବ୍ୟାଡ୍‌ମିଂଟନ୍ କୋର୍ଟ ମଧ୍ୟ ଘର ସାମନା ଛୋଟ ପଡ଼ିଆରେ କଲୁଁ। ଏଥିରେ ଚାରିଜଣ କିଂବା ଦୁଇଜଣ ଖେଳାଳୀ ହେଲେହିଁ ଖେଳ ଚାଲିବ; ଫୁଟବଲ୍ ପରି ୨୨ ଜଣ ଖେଳାଳୀ ଦରକାର ନାହିଁ। ଏହା ମଧ୍ୟ ଠିକ୍ ଘରକୁ ଲାଗି; ଟାଂଗି ପର୍ଯ୍ୟଂତ ଯିବାକୁ ପଡ଼େନାହିଁ।

ବ୍ୟାଡ୍‌ମିଂଟନ୍ ନେଟ୍, ର୍‌ୟାକେଟ୍, ବଲ୍ ଓ ସଟଲକକ୍ ସବୁ ସେଇ ହ୍ୱାଇଟଓ୍ୱେ ଲେଡଲ୍‌ଅ କୋଂପାନୀରୁ ମଗାଇଥିଲୁଁ। ଖୋରଧା ବଜାରରେ ସେ ସବୁ ମିଳୁନଥିଲା।

ମୁଁ ଗୋଟାଏ ରବର ଫିଡିରେ ଚଢ଼େଇ ଶିକାର କରିବାକୁ ଭଲପାଉଥିଲି। ଏ ଫିଡି (Catapult) ପ୍ରଥମେ ହ୍ୱାଇଟଓ୍ୱେ ଲେଡଲ୍‌ଅଠାରୁ ଅନ୍ୟ କେଉଁ ଜିନିଷ ସଂଗେ ମଗାଇଥିଲି ସାନଦଦେଇଂକୁ କହି। ଏହି ଫିଡିରେ ମୁଁ କାପ୍ତା, ବଣି ଆଦି ମାରିଛି। ପକ୍ଷୀ ଶିକାର କଲାବେଳେ ବାଲ୍ମୀକିଂକ ପରି ମୋ ଆଖି ଅଶ୍ରୁପ୍ଳୁତ ହୋଇଆସିନାହିଁ। ପ୍ରଥମେ ଯେଉଁ ଦିନ ମୁଁ ଗୋଟାଏ କାପ୍ତା ମାରିଲି, ବିଜୟ-ଗର୍ବରେ ଉତ୍‌ଫୁଲ୍ଲ ହୋଇଉଠିଥିଲି। ଛଟପଟ କରୁଥିବା କାପ୍ତାଟାକୁ ନେଇ ଘର ଭିତରକୁ ଦୌଡ଼ିଯାଇ ସମସ୍ତଂକୁ ସେଟାକୁ ଦେଖାଇ ବେଶ୍ ଗର୍ବ ଅନୁଭବ କରିଥିଲି। ସମସ୍ତେ ମଧ୍ୟ ମୋ ଲାଖକୁ ତାରିଫ୍ କରିଥିଲେ। ପଂକମାଟିରେ ବାଟୁଳି ତିଆରି କରି ସେଗୁଡ଼ାକୁ ଖରାରେ ଶୁଖାଇ ମୁଁ ଫିଡିରେ ମାରେ; କେବେ କେବେ ଗୋଡ଼ି ମଧ୍ୟ ମାରେ।

ଏହାଛଡ଼ା ଆମ କୁଂଟୁବର କେହି କେହି ଅଠାକାଂଡିଆ ତିଆରି କରି ଦିଅଂତି। ସରୁ ସରୁ ଖଡ଼ିକାରେ ଝୁଣା ପ୍ରଭୃତିରେ ଏକ ଅଠା ରାଂଧି ସେଥିରେ ଲଗାଇଦିଅଂତି। ସେଗୁଡ଼ାକୁ ମାଟିରେ ପୋତିଦେଇ ତା ଚାରିପାଖରେ ଚାଉଳ ପକାଇ ଦିଆଯାଏ। ଚଢ଼େଇ ଆସି ଚାଉଳ ଖାଇଲେ ତା' ପର କାଂଡିଆ ଦିହରେ ଲାଗିଯାଏ; ସେ ଆଉ ଉଡ଼ି ନପାରି ଫଡ୍‌ଫଡ୍ କରେ। ଆମେ ଦୌଡ଼ିଯାଇ ଧରିପକାଉଁ; ମାତ୍ର ଏପ୍ରକାର ଶିକାର ମୋର ଖୁବ୍ ପସଂଦ ନଥିଲା। ଏଥିରେ କିଛି ବାହାଦୁରି ନାହିଁ। ଏହା କେଳାମାନଂକୁ ସାଜେ। ଗୋବରା ଚଢ଼େଇ ଧରି ସେମାନେ ବିକଂତି।

ଆମ ସାହି ଡେଇଁଲେ ଆର ସାହି ମଝିରେ ଗୋଟିଏ ଘରେ ଛଟିଆମା' ବୁଢ଼ୀ ରହିଥାଏ। ତାର ସ୍ୱାମୀ ନଥାଏ। ପୁଅ କୁଆଡ଼େ କଲିକତା କି ରେଂଗୁନରେ କାମ କରୁଥାଏ, କିଛି ଖୋଜ-ଖବର ନାହିଁ। ସେ ସାହି ମାଇପିଂକ ସଂଗରେ ଟିକିଏ ଟିକିଏ କଥାରେ ଝଗଡ଼ା ଆରଂଭ କରିଦେବ। ଓଳିଏ ଓଳିଏ ଧରି ତା' ପାଟି ବଂଦହେବନାହିଁ। ଦି' ସାହି କଂପାଇ ସେ ସେମିତି ବକିଚାଲିଥିବ। ତାକୁ ହଠାତ୍ ରାଜଯକ୍ଷ୍ମା ଧରିଲା। ସେ କାଶି କାଶି ନୟାଂତ ହୋଇଯିବ। ତା' ମୁହଁରେ ପାଣି ଟୋପାଏ ଦେବାକୁ ମଧ୍ୟ କେହି ନାହିଁ। ତାକୁ ରୋଜ କଂସାରେ ଭାତ ତିଅଣ ନେଇ ଦେବା ମୋର ଗୋଟାଏ ନିତିଦିନିଆ କାମ ହୋଇଥାଏ। ଏଥିପାଇଁ ବଡ଼ମାଉଁ, ମାମା, ବୋଉ ବେଳେବେଳେ ମୋ' ଉପରେ

ଚିଡ଼ିଚିଡ଼ି ହୁଅଂତି, ଗାଳିଗୁଲଜ ବି ଦିଅଂତି। କିଂତୁ ଦଳବାବୁ ମୋତେ ସମର୍ଥନ କରଂତି, ଖୁବ୍ ଉତ୍ସାହ ଦିଅଂତି। ସେ ଟିକିଏ ମାଇଚିଆ ପ୍ରକୃତିର ଲୋକ। ସେ ମାଇକିନିଆ ଢଂଗରେ କଥାବାର୍ତ୍ତା କରଂତି। ସେ ହାତ ହଲାଇ କହିବେ– 'ହଁ ମ, ବୁଣିଥିଲେ ଦାଇ, ଦେଇଥିଲେ ପାଇ। କିଏ କ'ଣ ସାଂଗରେ ନେଇଯିବ କି! ପିଲାଟା ଉପରେ ରାଗୁଛ କାହିଁକି ମ? ସେ କ'ଣ କିଛି ଖରାପ କାମ କଲା? ଦିଆନେ ଥିଲାବେଳେ ତ କେତେ ମାଗିଖିଆ, ଅରଖିତିଆ ଏଠି ରୋଜ ପଂଗତ ପକାଉଥିଲେ। ତାଂକରି ନାତି ନା ଆଉ କେଉଁଠୁ ଆସିବ? ମଲାମୋର।'

ଗାଁର ହରି ନଂଦ ପହଲିମାନଂକ କଥା ମନେପଡ଼େ। ସାତହାତିଆ ମୋଟାସୋଟା ମଣିଷଟିଏ। ଚାଲିଲେ ଖଂଡେ ଭୂଇଁ ଲସିଯିବ। ବିରାଟ ବପୁ, ଗାଲ ମୁହଁ ସବୁ ଡଉଲ-ଡାଉଲ। ଜଣେ ପହଲିମାନ ଭାବରେ ସେ ଚାରିଆଡ଼େ ଜଣାଶୁଣା ଥିଲେ। ଗାଁରେ ନିଶାପ ହେଲେ ବଡ଼ଦଦେଇ, ସେ ଓ ମଧୁ ସୁଂଦରା ଏ ତିନି ମୁରବି ସ୍ଥାନୀୟ ବ୍ୟକ୍ତି ନିଶ୍ଚୟ ରହିବେ ନା ରହିବେ। ମଧୁ ସୁଂଦରା ଜଣେ ମଧ୍ୟବିତ୍ତ ଚାଷୀ। ମୁଂଡରେ ଚୁଟି ରଖିଥାଂତି। 'ପଲ୍ଲିଶ୍ରୀ'ରେ ନଂଦେ ଆପଣେ ଠାଏ ରହିଯାଇଛଂତି–

"ଗାଁରେ ଥିଲେ କପିଲ ନଂଦେ,
ଚାଲିଲେ ଭୂଇଁ ଲସେ ଯେ ଖଂଦେ,
ସବୁ କଥାରେ ମୁରବି ସାଜି
ହଲାଉଥିବେ ବାହାଟି,
ଛୋଟ ମୋର ଗାଆଁଟି।"

ପୁଣି କେଜାଣି କିମିତି ରହିଯାଇଛି ଜଟିଆମା' ବୁଢ଼ୀ–

"ଆବର ଥିଲା ଜଟିଆ ବୁଢ଼ୀ,
ପିଲାଠୁ ବଡ଼ ସବୁରି ଖୁଡ଼ୀ।
କା' ଘରେ କେତେ ମୂଷାର ଗାଡ଼
ସବୁ ତା ମୁହେଁ ଥୁଆଟି
ଛୋଟ ମୋର ଗାଆଁଟି।"

ମୁହଁଟା ତାର କାଟିରୁ ଦାଢ଼,
ପଣତକାନି ଛୁଆଇଁ ବାଡ଼
ଲଗାଇ କଳି, ଝୁଣିବ ହାଡ଼,
ଡାକିବ କେତେ କୁହାଟି।
ଛୋଟ ମୋର ଗାଆଁଟି।

ଏକ କ୍ୟାମେରାରେ ଗାଆଁର ଫଟୋ ଉଠାଇଲେ କେତେ ମୁହଁ, କେତେ ଦୃଶ୍ୟ, କେତେ ଘଟଣା ଓତଃପ୍ରୋତ ଭାବରେ ପରସ୍ପର ସଂଗେ ମିଶିଯାଇ,

ସେଥିରେ ଫୁଟିଉଠିବେ, ତାହା ଆଗରୁ କହିହେବନାହିଁ। କେହି କାହାଠୁ ଅଲଗା ନୁହଂତି; ସମସ୍ତେ ସମସ୍ତଂକ ସଂଗେ ରହିଛଂତି। ସବୁ ମିଶି ଏକ ଦୃଶ୍ୟପଟ – ଯାହା ଭିତରେ ଗଛବୃଛ, ନଈନାଳ, ଢଂଡୁକୁଂଡା, ମଣିଷ, ସଭିଏଁ ମିଶି ଏକାକାର – ଏକ ଅଭିନ୍ନ ଅବିଭକ୍ତ ନିବିଡ଼ ଚିତ୍ରପଟ।

ସକାଳୁଆ କଚିରି ସମୟରେ ସାନଦଦେଇ ବାରଟା ଗୋଟାକବେଳେ ଘରକୁ ଫେରିଆସଂତି। ଦି'ପହରେ ଖାଇ କିଛି ସମୟ ଶୁଅଂତି। ସଂଜବେଳେ ଆଇନ୍ ବହି, ନୋହିଲେ ଆଉ କିଛି ବହିପତ୍ର ପଢ଼ଂତି। ଅନେକ ମହକିଲ ଆମ ଘରକୁ ଆସୁଥିଲେ। ଥରେ ଦି'ଥର ପଂଡିତ ଗୋଦାବରୀଶ ମିଶ୍ର ଏବଂ ତାଂକ ସଂଗେ ଗୋଦାବରୀଶ ମହାପାତ୍ର କ'ଣ ଏକ ମୋକଦ୍ଦମା ସଂକ୍ରାଂତ ବ୍ୟାପାରରେ ଆସିଥିଲେ। ପଂଡିତ ନୀଳକଂଠ ଦାସ ମଧ୍ୟ ଥରେ ଦି'ଥର ଆସିଛଂତି।

ଖୋର୍ଧାରୋଡ୍ ବା ଜଟଣିରେ ଅନେକ ଗୋରା ରେଲବାଇ ଅଫିସର ଏବଂ ଆଂଗ୍ଲୋଇଂଡିଆନ୍ ସପରିବାର ରହୁଥିଲେ। ସେମାନେ କେତେ ଥର ଆମ ଘରକୁ କ'ଣ ସବୁ ମୋକଦ୍ଦମା ସଂପର୍କରେ ଆସିବାର ମନେପଡୁଛି। ସେମାନଂକୁ ଦେଖିଲେ ମଜା ଲାଗେ। ଆମେ 'ପାତିମାଂକଡ଼' 'ପାତିମାଂକଡ଼' ବୋଲି ଚିଡ଼ାଉଁ। ସେମାନେ ହସିକରି ଆମକୁ ହାତ ଠାରି ଡାକଂତି। ଥରେ ଗୋଟାଏ ଶଗଡ଼ଗାଡ଼ିରେ କେଉଁ ଗାଆଁର ଜଣେ ଖୁଣ୍‌କରା ସ୍ତ୍ରୀଲୋକର ମୁର୍ଦାର ନେଇ କେତେ ଲୋକ ଆସି ପହଂଚିଲେ। ତା' ମୁଂଡଟା ଓ ମୁହଁଟା ଦେଖି ଆମେ ପିଲାମାନେ ଡରିଗଲୁଁ। ସାନଦଦେଇ ସେମାନଂକୁ ଥାନାକୁ ପଠାଇଦେଲେ ଏବଂ ଡାକ୍ତର ମାଇନା କରାଇବାକୁ କହିଲେ। ତା ଲୁଗାପଟା ରକ୍ତ-ସାଲୁବାଲୁ ହୋଇଯାଇଥାଏ, ମାଛି ବେଢ଼ୁଥାଂତି।

ସାନଦଦେଇ କଚିରିରୁ ଫେରି କୋଟ୍, ପ୍ୟାଂଟ୍ ଛାଡୁଥିଲେ। ମୁଁ ତାଂକ ପକେଟରୁ କେତେ ଥର ଟଂକାଏ ଦି'ଟଂକା ମାରି ଫୁଟବଲ ବା ଟେନିସ୍ ବଲ୍ କିଣିଛି। ସେତେବେଳେ ଫୁଟ୍‌ବଲ୍ (ବ୍ଲାଡାର ସମେତ) ଦାମ ତିନି ଟଂକା ଥିଲା।

**କୁଣିଆ-ମଇତ୍ର –**

ଆମ ଘରକୁ ବହୁତ କୁଣିଆ ମଇତ୍ର ଆସୁଥିଲେ। ବାଂକୀ ନରଣପୁରରୁ ଦାମମାମୁ, ପିତାମ୍ବରମାମୁ, ଶଶିମାମୁ, ହଳଦିଆରୁ ନଟବର ଭଂଜ (ନଟବର ଅଜା) ପ୍ରଭୃତି ଆସଂତି। ନଟବର ଅଜା ଚିଂତାଦଦା ଓ ବିନନ୍ଦଦାଂକର ଦାଦିଶଶୁର। ଚିଂତାଦଦା ଓ ବିନନ୍ଦଦା ତାଂକ ବଡ଼ଭାଇ ବିଦ୍ୟାଧର ଭଂଜଂକ ଦୁଇ ଝିଅଂକୁ ବାହା ହୋଇଥିଲେ। ନଟବର ଭଂଜେ ଓ ବିଦ୍ୟାଧର ଭଂଜେ ଚୁଟି ରଖିଥିଲେ।

ଏହାଛଡ଼ା ଡମପଡ଼ାରୁ ବନମାଳୀ ପିଉସା କେବେ କେବେ ଆସଂତି। ସେ ଗୋରା ତକତକ ମଝିଆ କାଟର ଡଉଲ-ଡାଉଲ ମଣିଷଟିଏ; ବାବୁରି ବାଳ ରଖିଥାଂତି। ସେ ଚିଂତାଦଦାଙ୍କ ସାନ ଭଉଣୀ ଚିତ୍ରା ଅପାଂକୁ ବିବାହକରିଥିଲେ।

ରାତିରେ ଦାଂଡଘରେ ଗୋଟାଏ ବଡ଼ ହେଂସ ପରାହୁଏ। ତା' ଉପରେ

ବିଛଣାହୁଏ। ବଡ଼ଦଦେଇ, ଦଇବାବୁ, କୁଣିଆ ମଇଦ୍ର, ଆମ ପିଲାମାନଂକ ଭିତରୁ କେବେ କେହି ସେଠି ଶୁଅଂତି। ସେ ଭାରି ଯାଉଁଳି କବାଟଟା କିଳିଦିଅଂତି। ରାତିରେ ମଶାରି ବ୍ୟବହାର କରାଯାଉନଥିଲା। ମୁଁ ଭିତରେ ମାମା ପାଖରେ ଶୋଉଥିଲେ ମଧ୍ୟ କେବେ କେବେ ସେଠି ଶୁଏ। ଘରେ କେଉଁଠି ମଶାରି ଲାଗୁନଥିଲା। ସଂଜବେଳେ ପାଳଚୁଂଟା କରି ଦାଂଡଘରେ ପରସ୍ତେ ଧୂଆଁ ଦିଅଂତି। ଗାଈଗୋରୁ ରହିବା ପାଇଁ ପଶ୍ଚିମପଟେ ତିନି-ଚାରି ବଖରା ଗୁହାଳ ଥାଏ। ତା' ଆଗରେ ଖତଗଦା ଥିଲା। ତା' ଆଗରେ ଗୋଟାଏ କୂଅ। ବାଉରି ସାହିର ସ୍ତ୍ରୀଲୋକମାନେ ମାଠିଆ ଧରି ସେଠୁ ପାଣି ନେଇଯାଉଥିଲେ। ସେ କୂଅଟା ଦାଂଡପାଖ ସଡ଼କ ପାଖରେ ଥିଲା। ଆମ ଘର ସାମନାରେ ସଡ଼କକୁ ଲାଗି ଗୋଟାଏ ବଡ଼ ଆମ୍ବଗଛ ଥିଲା। ଗୋଟାଏ ଦି'ଟା ଝାଉଁଗଛ ଥିଲା ଏବଂ ମଝିରେ ତେଂତୁଳିଗଛ ଥିଲା। ଏସବୁ ଗଛ ସଡ଼କ କଡ଼ରେ ଥିଲା। ଦାଂଡଘର ଆଗରେ ଗୋଟାଏ ବଡ଼ ଚାନ୍ଦିନୀ ଥିଲା ଏବଂ ତାକୁ ଲାଗି ବଉଳଗଛଟିଏ ଥିଲା। କେତେ ବଉଳଫୁଲ ଝରି ଖସିପଡୁଥିଲା। ଦାଂଡପଟେ ମଧ୍ୟ ଗୋଟିଏ ଗଂଗଶିଉଳି ଗଛ ଥିଲା; ଫୁଲ ମହକରେ ନିଦ ଲାଗିଯିବ। ଆହୁରି ଥିଲା କନିଅରଗଛ, ବନବନିକିଆ ଲଟି, ସାହାଡ଼ାଗଛ, କୋରୁହାଁ ଗଛ ଇତ୍ୟାଦି। ସାମନା ପଟେ ବହୁତ ଜାଗା ଖାଲିପଡ଼ିଥିଲା। ରାତିରେ ବେଶୀ ଗରମ ହେଲେ ବଡ଼ଦଦେଇ ଓ କୁଣିଆ ମଇଦ୍ର ଦାଂଡ ଘରେ ନ ଶୋଇ ବାହାରପଟେ ଚାଂଦିନା ଉପରେ ଶୋଉଥିଲେ। ଆମେ ପିଲାମାନେ ବି କେବେ କେବେ ସେଠି ଶୋଉଥିଲୁଁ। ବଉଳଫୁଲ ଓ ଗଂଗଶିଉଳି ବାସ୍ନାରେ ଚାରିଦିଗ ମହକିଉଠୁଥାଏ।

**ଡମପଡ଼ା କେସ୍ –**

ଦିନେ ବଡ଼ଦଦେଇ, ସାନଦଦେଇ ଓ ଚିଂତାଦଦା ପ୍ରଭୃତି କଣ ବିଚାର କରୁଥାଂତି। ବନମାଳୀ ପିଉସାଂକ କଥା ବାରଂବାର ଉଠୁଥାଏ। ସେଇଦିନ ରାତିରେ ଲୋକ ପଠାଗଲା ବନମାଳୀ ପିଉସାଂକୁ ସଂଗେ ସଂଗେ ଡାକିଆଣିବା ପାଇଁ। ତା' ପରଦିନ ବନମାଳୀ ପିଉସା ଆସି ପହଂଚିଲେ।

ଡମପଡ଼ାର ତରୁଣ ରାଜା ମହାନଦୀରେ ଗାଧୋଉଥିଲେ। ତାଂକ ଉଆସ ପଛରେ ମହାନଦୀ। ସେ ପାଣିରେ ବୁଡ଼ି ମରିଗଲେ। ରାଜା ଅପୁତ୍ରକ ଥିଲେ। ତାଂକର ଉଆସରେ କେହି ନଥିଲେ। ବନମାଳୀ ପିଉସାହିଁ ତାଂକର ନ୍ୟାଯ୍ୟ ଉତ୍ତରାଧିକାରୀ, ସେ ହିଁ ରାଜା ହେବା କଥା; ମାତ୍ର ରାଣୀ ଢେଂକାନାଳ ରାଜାଂକ ୪ର୍ଥ ପୁତ୍ର ଅମରେଂଦ୍ର ମାନସିଂହକୁ ପୋଷ୍ୟପୁତ୍ର କରିନେଇ ରାଜଗାଦିରେ ବସାଇବାକୁ ଚାହିଁଲେ; ମାତ୍ର ଏଇଟା କୁଆଡ଼େ ବେଆଇନ୍। ବିଧବା ରାଣୀ ପୋଷ୍ୟପୁତ୍ର ଗ୍ରହଣକଲେ ସେ ଗାଦିନସୀନ ହୋଇପାରିବନାହିଁ। ବଡ଼ଦଦେଇ ପ୍ରଭୃତି ବନମାଳୀ ପିଉସାଂକୁ ଧରି ପୁରୀ ଓ କଟକ ଗଲେ। ସେଠାରେ କେସ୍ କଲେ।

ସେତେବେଳେ ବୀରକିଶୋର ରାୟ (ପରେ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି) ଓକିଲ ଆମ ପଟେ ଲଢ଼ିଲେ। ତଳ କୋର୍ଟ ଓ ପାଟଣା ହାଇକୋର୍ଟରେ ଆମର ଜୟହେଲା। ସେତେବେଳକୁ ବନମାଳୀ ପିଉସା ମରିଗଲେଣି। ତାଂକ ବଡ଼ପୁଅ ସନାତନ ସିଂହ ରାଜା ହେବେ ବୋଲି ଡିଗ୍ରୀ ମିଳିଲା। ସେ ମାସକୁ କେତେ ହଜାର ଟଂକା ଆଲାଉନ୍‌ସ ପାଇବେ ବୋଲି ମଧ କୋର୍ଟ ରାୟ ଦେଲେ। ପୁରୀର ଆଡ୍‌ଭୋକେଟ୍ ରାୟବାହାଦୁର ଲୋକନାଥ ମିଶ୍ର ଏ ମୋକଦ୍ଦମାର ସମସ୍ତ ଖରଚ ବହନ କରୁଥାଂତି ଏବଂ ସବୁ ତଦବିର କରୁଥାଂତି। ତାଂକ ସଂଗେ ସର୍ତ ହୋଇଥାଏ ଯେ ପିଉସା ଜିଣିଲେ ତାଂକୁ ମାସକୁ କେତେ ହଜାର ଟଂକା ଋଣ ଭରଣା ବାବଦକୁ ପରିଶୋଧ କରିବେ। ତେଣୁ ସନାତନନନା ପାଉଥିବା ମାସିକ ଆଲାଉନ୍‌ସରୁ ସେ କିଛି ଟଂକା ପ୍ରତି ମାସରେ ତାଂକ ଦେଏଣା ବାବଦକୁ କାଟିନେଇଥାଂତି। ଡମପଡ଼ା ରାଣୀ ଅପିଲ୍ କରିଥିବାରୁ ତାହା ଫଇସଲା ନ ହେବା ପର୍ଯଂତ ଡମପଡ଼ାରେ ନରହି ଆମ ଘରେ ରହିବା ନିରାପଦ ହେବ ବୋଲି ଚିତ୍ରା ପିଉସୀ, ସନାତନନନା, ତାଂକ ସାନଭାଇ ଚକ୍ରଧର ପ୍ରଭୃତି ଆମ ପାଖେ ରହୁଥାଂତି। ଆମ କୁଟୁଂବ ଓ ଆମ ଘରକୁ ଲାଗି ମାଗୁଣିଦଦାଂକ ଘରୁ ଦି'ବଖରା ଭଡ଼ାନେଇ ସେମାନେ ରହୁଥାଆଂତି। ସନାତନନନା ଜିଣିବା ପରେ ରାଣୀ ବିଲାତ ପ୍ରିଭୀ କାଉନ୍‌ସିଲ୍‌ରେ ଅପିଲ୍ କରିଥାଂତି। ବିଲାତରେ କେସ୍ ଶୁଣାଣି ବେଳକୁ କନିକା ରାଜା (ଶୈଳେଂଦ୍ରନାରାୟଣଂକ ବାପା) ଲଂଡନ ଗଲେ। ସେତେବେଳେ ଜାହାଜରେହିଁ ବଡ଼ବଡ଼ିଆ ଲୋକେ ବିଲାତ ଯାଉଥାଂତି। ସେଠି କଣ ସବୁ ଧରାଧରି କଲେ କେଜାଣି, ଦିନେ 'ସମାଜ' ଖବରକାଗଜରେ ପଢ଼ିଲୁ – "ଡମପଡ଼ା ମୋକଦ୍ଦମାର ଚକ ଘୂରିଗଲା। ରାଣୀ ଡିଗ୍ରୀ ପାଇଲେ।"

ସନାତନନନାଂକ ଆଲାଉନ୍‌ସ ବଂଦହୋଇଗଲା। ସେ ଭଲ ଛାତ୍ର ଥିଲେ। ପୁରୀ ଜିଲ୍ଲା ସ୍କୁଲରୁ ଭଲ ମାର୍କସ୍ ରଖି ଫାଷ୍ଟ ଡିଭିଜନ୍‌ରେ ମ୍ୟାଟ୍ରିକ୍ୟୁଲେଶନ୍ ପାସ୍ କରିଥିଲେ। ଆଇ.ଏ. କଟକରେ ପଢ଼ିଥାଂତେ; ମାତ୍ର କଟକରେ ପଢ଼ିବା ନିରାପଦ ନୁହେଁ ବୋଲି ପଢ଼ିଲେନାହିଁ। ସେତେବେଳେ ସମଗ୍ର ଓଡ଼ିଶାରେ କଟକ ରେଭେନ୍‌ସା କଲେଜହିଁ ଏକମାତ୍ର ଡିଗ୍ରୀକେଂଦ୍ର ଥିଲା। କିଛିଦିନ ପରେ ସନାତନନନାଂକୁ ରାଜଯକ୍ଷ୍ମା ଧରିଲା। ସେ ବଡ଼ଦଦେଇଂକ ଚିକିତ୍ସାରେ କିଛିଦିନ ରହିଲେ; ମାତ୍ର କିଛି ଫଳ ହେଲାନାହିଁ। ସେ ତରୁଣ ଅବିବାହିତ ଅବସ୍ଥାରେହିଁ ସଂସାରରୁ ବିଦାୟ ନେଇ ଚାଲିଗଲେ। ଚିତ୍ରା ଅପା, ଚକ୍ରଧର ଆମ ଗାଁରେହିଁ ଖଂଡେ ଘର କରି ରହିଲେ। କେତେକ ବର୍ଷ ପରେ ଚିତ୍ରା ଅପାଂକର ମଧ କାଳହୋଇଗଲା। ଏବେ ଚକ୍ରଧର ଓ ତା'ର ପିଲାପିଲି ଆମ ଗାଆଁରେ ଅଛଂତି। ମୁଁ ଏସବୁ ମାଲି-ମକଦମା କଥା ମାମାଠୁ ଟିକିଏ ଟିକିଏ ଶୁଣି ବୁଝିପାରୁଥାଏ। ସନାତନନନା ଡମପଡ଼ା ରାଜା ହେଲେ ବିନଦଦା (ଯେ କି ବି.ଏ. ପାସ୍ କରିଥାଂତି)

ଦିଆନ ହେବେ ବୋଲି ମାମା ଓ ଖୁଡ଼ୀମାନେ କଥାବାର୍ତ୍ତା କରୁଥିବା ମୁଁ ଶୁଣିଛି।

**ନାରୀଶିକ୍ଷା –**

ଆମ ଘରେ ନାରୀଶିକ୍ଷା କହିଲେ ମାମା, ବୋଉ ଓ ଖୁଡ଼ୀମାନେ ସମସ୍ତେ ତାଂକ ବାପଘରେହିଁ ପାଠ ପଢ଼ିଥିଲେ; କେହି ସ୍କୁଲକୁ ଯାଇନଥିଲେ। ସେମାନେ ସମସ୍ତେ ପୁରାଣ, ଭଂଜ, ଅଭିମନ୍ୟୁଂକ କାବ୍ୟ, ଭାଗବତ ପ୍ରଭୃତି ପଢୁଥିଲେ। ମାମା ଭଲ ବଂଗଳା ଜାଣିଥିଲା। ସେ 'ଅମିୟ ନିମାଇଚରିତ' ଏବଂ 'ଚୈତନ୍ୟ-ଚରିତାମୃତ' ପ୍ରଭୃତି ବଂଗଳା ବହିରୁ ରୋଜ୍ ଦୁଇ-ତିନି ପୃଷ୍ଠା ପଢୁଥିଲା। ସେ ପରେ, ମୁଁ କଲିକତାରେ ପଢୁଥିବାବେଳେ ବା ଅନ୍ୟ କେଉଁଠି ଥିଲାବେଳେ, ଯେଉଁ ଚିଠି ଲେଖୁଥିଲା ତାହା ସବୁ କରଣୀ ଅକ୍ଷରରେ ଲେଖା। ସେଥିରେ 'କ'ଟା ପ୍ରାୟ୍ ଲାଂଗୁଡ଼ହୀନ 'ଇ' ପରି ଏବଂ ବହୁ ଅକ୍ଷର ଭିନ୍ନ ପ୍ରକାରର। ଅଭ୍ୟାସ ନ ଥିଲେ ସେ ଚିଠି ପଢ଼ି ବୁଝିବା କଷ୍ଟ। ମହନୀ ଅପା ଘରେ ଭଲ ଓଡ଼ିଆ, ବଂଗଳା ଓ କିଛି କିଛି ଇଂରାଜୀ ପଢ଼ି ଶିଖିଥିଲା। ବଡ଼ମାଉଁ, ସାନମାଉଁ (ଜେଜେମାମାନେ) ପାଠ ପଢ଼ିନଥିଲେ। ସେମାନେ କେବେ କାହାକୁ ଚିଠିପତ୍ର ଦିଅଂତି ନାହିଁ।

ସାନମାଉଁ ବା ଭାଇ –ଜେଜେ ରୋଜ୍ ସଂଜବେଳେ ଝୁଣା ଧୂପଦାନି ଦାଂଡଦୁଆର ପର୍ଯଂତ ବୁଲାଇ ଯାଂତି। ମାମା ପଛଖଂଜା ଅଗଣାରେ ଥିବା ତୁଳସୀ ଚଉରାମୂଳେ ରୋଜ ଦୀପ ଜାଳି, ବେକରେ କାନି ଦେଇ ଓଳଗିକରେ। ବୃନ୍ଦାବତୀଂକୁ ଜଣାଣକରେ। ଏହାଛଡ଼ା କାର୍ତ୍ତିକ ମାସରେ ଚଉରାମୂଳେ ରୋଜ କେତେ ପ୍ରକାର ଚିତା ପଡ଼େ। ମଗୁଶିର ମାସରେ ମାଣବସା ଗୁରୁବାର ଦିନ ଘର କାଂଥମାନଂକରେ, ଆଉ ପୂଜାଘରେ ମାମା ଓ ଖୁଡ଼ୀମାନେ ପିଠଉ ବା ମୁରୁଜରେ ଚିତା ପକାଂତି। କାଂଥମାନଂକରେ ଧାନଗଛ, ଚଢ଼େଇ ପ୍ରଭୃତି ଆଂକଂତି। ନୂଆ ଖୁଡ଼ୀ (ବିନୋଦଦାଂକ ସ୍ତ୍ରୀ) ଭଲ ରୂପ (ଚିତ୍ର) କରିପାରଂତି। ସେ ତଅପୋଈ ପଟ ପ୍ରଭୃତି ଭଲ ଆଂକୁଥିଲେ। ତା'ଛଡ଼ା ବସ୍ତ୍ରହରଣ, ନବଗୁଂଜର ପ୍ରଭୃତି ରୂପ ମୋଟା କାଗଜରେ ବା ହାତତିଆରି ପଟରେ ଆଂକିପାରୁଥିଲେ।

ପିଲାଦିନେ ଚାହାଳିରେ ପଢ଼ିଲାବେଳେ ଆମେସବୁ ଶ୍ରୀପଞ୍ଚମୀଦିନ ଚିତ୍ରିତ ନଡ଼ିଆ ଧରି ଘରକୁ ଘର ଯାଇ ଗୀତବୋଲି କିଛି କିଛି ପଇସା ଆଣୁଥିଲୁଁ। ସେସବୁ ମାଷ୍ଟ୍ରେ ନେଇଯାଉଥିଲେ। ଆମ ଗାଆଁଛଡ଼ା ଖୋରଧା ସହରରେ ସବ୍‌ରେଜିଷ୍ଟ୍ରାର ଚାକିରି କରୁଥିବା ଆର୍ତମାମୁଂକ (ବାଂକିର ଆର୍ତବଲ୍ଲଭ ସିଂହ ସାମଂତ) ବସାକୁ ମଧ ଯାଉଁ। ସେ ଟଂକାଏ ଦେଉଥିଲେ। ସେତେବେଳେ ଗୋଟିଏ ଟଂକା ଖୁବ୍ ବଡ଼କଥା। ଯେଉଁ ଶ୍ରୀଫଳ ଧରି ଗୀତ ବୋଲୁଁ ତାହାକୁ ଚିତ୍ରକରମାନେ ବିଭିନ୍ନ ରୂପ ଓ ରଂଗରେ ଚିତ୍ର କରିଥାଂତି। ଶଂଖ-ଚକ୍ର-ଗଦା-ପଦ୍ମଧାରୀ ବିଷ୍ଣୁ, ପଦ୍ମଫୁଲ ଧରିଥିବା ଲକ୍ଷ୍ମୀ ଠାକୁରାଣୀ, ବୀଣା-ପୁସ୍ତକ-ଧାରିଣୀ ସରସ୍ୱତୀ ଓ ଗଣେଶଂକ ଚିତ୍ର ସେଥିରେ ସୁଂଦରଭାବେ ଅଂକାଯାଇଥାଏ। ଆମ

ନୂଆ ଖୁଡ଼ୀ ମଧ କେତେ ଥର ନଡ଼ିଆ ଚିତ୍ର କରିଦେଇଛନ୍ତି। ଆମେ ତାକୁ ଧରି ଘରକୁ ଘର ଯାଇ ଗୀତ ବୋଲୁଁ– 'ବଂଦଇ ହରି/ଦେବ ମୁରାରି/ଲକ୍ଷ୍ମୀ-ଦେବୀଂକର କାଂତ' ଇତ୍ୟାଦି। ଆମ ସାଂଗରେ ଅବଧାନେ ଯାଉଥିଲେ। ଯିଏ ଯାହା ଦେଲା, ତାହା ତାଂକର ପ୍ରାପ୍ୟ।

ପିଠୋଉ ଚିତା ଓ ମୁରୁଜ ଚିତା ପକାଇବାରେ ମାମା ଓ ସାନଖୁଡ଼ୀ ପାରଂଗମ ଥିଲେ। ଭାଇଢେଢେ ମଧ ଭଲ ଚିତା ପକାଂତି। ସେମାନେ ବଡ଼ିଭୋରୁ ଉଠି ହାଡ଼ଭଂଗା ଶୀତଦିନେ କିମିତି ଜୋରରେ ଗାଧୋଇ ଆସି ଚଉରାମୂଳେ ଏତେ ଚିତା ପକାଂତି ଏବଂ ମା' ବୃନ୍ଦାବତୀଂକ ପୂଜା କରଂତି ଏବଂ ବେଢ଼ା ବୁଲଂତି ତା ସତରେ ବଡ଼ ଆଚଂବିତ ଲାଗେ। ମଗୁଶିର ମାସ ମାଣବସା ଗୁରୁବାରେ ମଧ ସେଇ ଏକାକଥା।

ବଡ଼ମାଉଁ, ଭାଇଢେଢେ, ମାମା ହବିଷ କରଂତି। ହବିଷ ଅନ୍ନ, କଂଚା ମୁଗ ଡାଲି, ଗୁଆଁର ବା ସାରୁ ତରକାରି ଏବଂ ଓଉ ଖଟା ମୋତେ ଖୁବ୍ ଭଲଲାଗେ। ମାମା ସଧବା ହୋଇ ହବିଷ କରୁଥିବାରୁ ଅନେକେ ତାକୁ ସମାଲୋଚନା କରୁଥିବାର ଶୁଣିଛି। ଦଇବାବୁ କହିବେ, 'ମଲାମୋର, ଗେରସ୍ତ ତ ଅଛଂତି; ହବିଷ କ'ଣ ଲୋ ମା'?' କାର୍ତ୍ତିକ ମାସରେ କେବେ କେବେ ମାମା ମୋ ହାତରେ ଦଉଡ଼ି ଧରାଇଦେଇ ଆକାଶ-ଦୀପ ଆଟିକାଟାକୁ ବାଉଁଶ ଉପରକୁ ଉଠାଏ। ମୋ ହାତପାଇବନାହିଁ ବୋଲି ସେ ନିଜେ ଦୀପ ଉଠିବା ପରେ ବାଉଁଶରେ ଦଉଡ଼ି ବାଂଧିଦିଏ। ସେ ଆଟିକାରେ କଣା ହୋଇଥାଏ। ତା ଭିତରେ ଦୀପ ଜଳୁଥାଏ। ଉପରେ ଢଂକାହୋଇଥାଏ ଗୋଟାଏ ବଡ଼ ସରା। ମୋତେ ଖୁବ୍ ମଜାଲାଗେ ଦୀପ ଉଠାଇବାକୁ। ସେ ଆଟିକାରେ ଧଳା ଖଡ଼ି ଗୋଳି ବୋଳିଦେଇଥାଂତି। ତାହା ଧଳା ଦିଶେ– ତଳକୁ।

**ମହନୀ ଅପାର ବାହାଘର–**

ମହନୀ ଅପାର ବାହାଘର ଠିକ୍ ହୋଇଗଲା। ବଡ଼ଦଦେଇ, ଦଇବାବୁ ଯାଇ ଘର ବର ଦେଖିଆସିଲେ। ମନକୁ ପାଇଲା, ଯଦିଚ ବର ଟିକିଏ କଳା ଆଉ ଦେଖିବାକୁ ସୁଂଦର ନୁହଂତି। ବାହାଘର ପରେ ସମସ୍ତେ ଖୁଣିଲେ– ମହନୀକି ଚାହିଁ ବର ହେଲା ନାହିଁ। ଲକ୍ଷ୍ମୀପ୍ରତିମା ପରି ଝିଅକୁ ଇମିତିକା ବର! ଦଇବାବୁ ବୁଝାଂତି– 'ହଁ ମ, ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରି ତେଣିକି ଯାଇ। କପାଳ-ଲିଖନ କେ କରିବ ଆନ। ଯିଏ ଯାହା ହାଂଡିରେ ଚାଉଳ ପକାଇଛି ନା– ଏଥିକି ଏତେ ବିଚାର ପଡ଼ିଛି କିଆଁ ଲୋ ମା! ମଲା ମୋର'।

ମହନୀ ଅପାର ସ୍ୱାମୀ ଡାକ୍ତର ଜଗନ୍ନାଥ ଦାସ କେନ୍ଦ୍ରାପଡ଼ା ସବ୍‌ଡିଭିଜନ୍ କରିଲୋପାଟଣା ଗ୍ରାମର ରାୟସାହେବ ଜୟରାମ ଦାସଂକ ଜ୍ୟେଷ୍ଠପୁତ୍ର। ସେ ଡାକ୍ତରି ପାସ୍ କରି ସରକାରୀ ଚାକିରି କରିଥାଂତି। ପିପିଲି ଡାକ୍ତରଖାନାରେ

ସବ୍‌ଆସିଷ୍ଟାଂଟ୍ ସର୍ଜନ ଥାଆଂତି। ସେ କଟକ ମେଡିକାଲ୍ ସ୍କୁଲରୁ L.M.P. ପାସ୍‌କରି ସରକାରୀ ଚାକିରିରେ ମୁତୟନ ହୋଇଥାଂତି। ବିବାହ ପରେ ସେ କଲିକତାର School of Tropical Medicinesରୁ ଡି.ଟି.ଏମ୍. ପାସ୍ କରଂତି ଏବଂ ପରେ ଭିଏନାରୁ ସର୍ଜରିରେ ଡିପ୍ଲୋମା ପାଆଂତି। ତାଂକ ବାପା ରାୟସାହେବ ଜୟରାମ ଦାସ କନିକା ରାଜାଂକ ମ୍ୟାନେଜର ଥାଆଂତି ଏବଂ କଟକରେ କନିକା ରାଜବାଟୀ ହତାରେ ରହୁଥାଆଂତି। ସେ କୁଆଡ଼େ କନିକା ରାଜାଂକୁ ଧର୍ମପୁଅ କରିଥିଲେ ବୋଲି ଶୁଣିଥିଲୁଁ। ସେଥିପାଇଁ ସେ ଦରମା ନେଉନଥିଲେ; କେବଳ ହାତଖରଚ ପାଇଁ ସାମାନ୍ୟ ଆଲାଉନ୍‌ସ ଯାହା ନେଉଥିଲେ। ସେତେବେଳେ ଶୈଳେଂଦ୍ରନାରାୟଣ ଭଂଜ ଦେଓଂକ ବାପା କନିକାର ରାଜା ଥିଲେ।

ମୁଁ ସେଇବର୍ଷ ଖୋରଧା ହାଇସ୍କୁଲରେ ପଂଚମ ଶ୍ରେଣୀରେ ନାଁଲେଖାଇଥାଏ। ତାହା ୧୯୨୫ ସାଲ ହେବ ନା କ'ଣ! ଯେତେବେଳେ ବାଜା ବଜାଇ ଗ୍ୟାସ୍ ଲାଇଟ୍‌ର ଖିଲାଣ ଜଳାଇ ଗୋଟାଏ ଖୋଲା ମୋଟର ଗାଡ଼ିରେ ସଲଟଣ କରି ବର ଆସିଲେ, ଅନ୍ୟ ବରଯାତ୍ରୀମାନେ ଚାଲି ଚାଲି ପଟୁଆରରେ ଆସିଲେ, ମୁଁ ସେତେବେଳେ ଅସୁସ୍ଥ ଥିଲି। ମୋ ବାଆଁଗୋଡ଼ ବୁଢ଼ାଆଂଗୁଠିରେ ଗୋଟାଏ କାଠପଟା ପଡ଼ି ଭାରି ଦରଜ ହୋଇଥାଏ; ବଡ଼ ବିଂଧାଛିଟିକା କରୁଥାଏ। ତେଣୁ ମୁଁ ବିଛଣାରେ ଶୋଇରହିଥାଏ। ଏହି କାରଣରୁ ମୁଁ ବାଟବରଣ କରିବାକୁ ଯାଇପାରିଲିନାହିଁ। ଜାଇ ମଂଗୁଳିବାକୁ ଆସିଥିବା ଆମ କୁଟୁଂବର ଖୁଡ଼ୀ, ବଡ଼ମା' କ'ଣ ଗୋଟାଏ ବାଟି ଲଗାଇବାକୁ କହିଯାଇଥାଂତି; ମାତ୍ର ତଥାପି ଦରଜରେ ମୁଁ ପାଦ ଉଠାଇପାରୁନଥାଏ। ମୋ ସାନଭାଇ ମୁନିଆ (ସାମାନଂଦ) ପଗଡ଼ି ବାଂଧି, ପାଟଲୁଗା ପିଂଧି, ଚଂଦନ ଟିପା ଲଗାଇ ଯାଇ ବରକୁ ବାଟବରଣ କରିଆଣିଲା।

ଜଗନ୍ନାଥବାବୁଂକ ଚାରିଭାଇ ଲୋକନାଥ, ଗୋପୀନାଥ, ବିଶ୍ୱନାଥ, କାଶୀନାଥ ଆସିଥାଂତି। ଜୟରାମବାବୁ ମଧ୍ୟ ଆସିଥାଂତି। ଲୋକନାଥ ସବ୍-ଆସିଷ୍ଟାଂଟ୍ ସର୍ଜନ ଥିଲେ। ଗୋପୀନାଥ ଥିଲେ ପୋଷ୍ଟ ମାଷ୍ଟର। ବିଶ୍ୱନାଥ ଥିଲେ ପଶୁଡାକ୍ତର। କାଶୀନାଥ ଥିଲେ ଆଡ୍‌ଭୋକେଟ୍। କଟକ ଶ୍ରୀରାମଚଂଦ୍ର ଭବନ ସାମନାରେ ତାଂକ ଘର 'ଜୟରାମ ଧାମ' ରହିଛି। ସେ ପରେ ନିଖିଳ ଉତ୍କଳ କ୍ଷତ୍ରିୟ ଖଂଡାୟତ ମହାସଭାର ପ୍ରଧାନ ଉଦ୍ୟୋକ୍ତା ଓ ସାଧାରଣ ସଂପାଦକ ଥିଲେ (ଏ ଅନୁଷ୍ଠାନ ଓଡ଼ିଶାର ସଂଖ୍ୟାଗରିଷ୍ଠ ଜାତି କ୍ଷତ୍ରିୟ ଖଂଡାୟତମାନଂକ ଉନ୍ନତି ଓ ସଂଗଠନ ପାଇଁ କାର୍ଯ୍ୟ କରୁଥିଲା)। ବରକନ୍ୟା ଓ ବରଯାତ୍ରୀମାନେ ତା'ପର ଦିନ ବିଦା ହୋଇ ଗଲେ।

ମହନୀ ଅପା ଚାଲିଯିବା ପରେ ମୁଁ ନିଛାଟିଆ ବୋଧକଲି। ମାମା ଓ ମହନୀ ଅପାହିଁ ମୋର ଯତ୍ନ ନେଉଥିଲେ। ମୋର ଖିଆପିଆଠୁ ଆରଂଭକରି ସ୍କୁଲ ଯିବା ପର୍ଯଂତ ସବୁକଥା ବୁଝୁଥିଲେ। ମହନୀ ଅପା ମୋତେ ଖୁବ୍ ଭଲ

ପାଉଥିଲା । ସେ ବାହାହୋଇଯିବା ପରେ ଯେଉଁ ପ୍ରଥମ ଚିଠି ମାମା ପାଖକୁ ଲେଖିଥିଲା, ସେଥିରେ ମୋ ବିଷୟରେ ଅନେକ କିଛି ଲେଖିଥିଲା ଏବଂ ମୋତେ ପିପିଲି ପଠାଇଦେବାକୁ ମଧ ଅନୁରୋଧ କରିଥିଲା । ମୁଁ ମଧ କିଛିଦିନ ଅଂତେ ସେ ପିପିଲି ଯିବାପରେ ଯାଇ ତା' ପାଖରେ ରହିଆସିଥିଲି ।

ସେତେବେଳେ ଝିଅମାନେ ବିବାହ ପୂର୍ବରୁ ଘରେ ବାପା, ଭାଇ, ଦାଦା, ଖୁଡ଼ୀ ସମସ୍ତଂକ ଗୋଡ଼ଧରି ବଢ଼ପାଟିରେ ଗୀତ ବୋଲିବାପରି ବାହୁନି କାଂଦିବା ଗୋଟାଏ ପ୍ରଚଳିତ ପ୍ରଥା ଥିଲା । ଧର, ଜଣେ ଧୋଇଆ ବଢ଼ି ଅଂଚଳକୁ ବାହା-ହୋଇଯାଉଛି । ସେ ଗୀତବୋଲି ବାହୁନି କାଂଦିବ – "ବାପାହେ, ଯୁଆଡ଼େ ଚାହିଁଲେ ଚିଲିକାମୟ, (ମୋତେ) ଅଚଳ ଜଳରେ ଭସାଇ ଦେଲ, ବାପା ହେ ।" – ଇତ୍ୟାଦି ।

ଏ କାଂଦଣା ଶିଖିବାପାଇଁ ବଜାରରେ ଅନେକ ପ୍ରକାର ବହି ମିଳୁଥିଲା । ଯଥା – 'ତାରାଦେଇ କାଂଦ' ଇତ୍ୟାଦି । ସେ ବହି ଆଣି ଝିଅମାନଂକୁ କାଂଦଣା ମୁଖସ୍ଥ କରିବାକୁ ପଡ଼େ । ମହନୀ ଅପା କିଂତୁ ଗୀତବୋଲି ଭଲ କାଂଦିପାରୁ ନଥିଲା । ସେଥିପାଇଁ ଘରେ ଟୀକା-ଟିପ୍ପଣି ସହିବାକୁ ପଡୁଥିଲା ତାକୁ । ଖାଲି ନିଜ ଘରେ ନୁହଁ, ସାହିପଡ଼ିଶା କୁଟୁଂବଂକ ଘରକୁ ଯାଇ ମଧ ସମସ୍ତଂକ ଗୋଡ଼ ଧରି ବାହୁନିବା ରୀତି ପ୍ରଚଳିତ ଥିଲା । ମହନୀ ଅପା ପରେ ଅନ୍ୟ ଭଉଣୀମାନଂକ ବେଳକୁ ଏ ପ୍ରକାର ବାହୁନା-କାଂଦଣା ଧୀରେ ଧୀରେ ବଂଦହୋଇଯାଇଥିଲା ।

'ଗାଂଧୀଗୋଳ' –

ହଁ, ଆଉ ଗୋଟିଏ କଥା ଘଟିଥିଲା । ତାହାକୁ ଲୋକେ 'ଗାଂଧୀଗୋଳ' କହୁଥିଲେ । ୧୯୨୧ ମସିହାରୁ ମହାତ୍ମା ଗାଂଧୀଂକ ନେତୃତ୍ୱରେ ଦେଶର ଏମୁଂଡୁ ସେମୁଂଡଯାଏ ଅସହଯୋଗ ଆଂଦୋଳନ, ବିଦେଶୀ ଦ୍ରବ୍ୟ ବର୍ଜନ ଆଂଦୋଳନ ଜୋରସୋରରେ ଆରଂଭ ହୋଇଯାଇଥିଲା । ଚାରିଆଡ଼େ କଂଗ୍ରେସର ତ୍ରିରଂଗା ଝଂଡା ଉତ୍ତୋଳନ, ବିଲାତୀ ଲୁଗା ବର୍ଜନ, ଅରଟରେ ସୂତା କାଟିବା, ନିଶାନିବାରଣ ଏବଂ ମଦଦୋକାନ ଆଗରେ ପିକେଟିଂ ସହରମାନଂକରେ ବ୍ୟାପିଯାଇଥାଏ । ଗାଆଁଗଂଡାରେ ମଧ ତାର ପ୍ରଭାବ ବେଶ୍ ପଡ଼ିଥାଏ ଏବଂ ହଜାର ହଜାର ଲୋକ ସତ୍ୟାଗ୍ରହ-ସଂଗ୍ରାମରେ ଯୋଗଦେଉଥାଂତି । ନାରୀମାନେ ମଧ ପଛେଇ-ନଥିଲେ । ଅଳ୍ପବୟସ୍କ ପିଲାମାନେ ମଧ ବାନରସେନାରେ ଭର୍ତିହୋଇ ବେତମାଡ଼ ଖାଇବାକୁ ଆଗେଇଆସିଥିଲେ । ଆଂଦୋଳନ ଦିନକୁଦିନ ପ୍ରଖର ହୋଇଉଠୁଥାଏ । ଚାରିଆଡ଼େ ଧ୍ୱନି ଉଠୁଥାଏ 'ବଂଦେ ମାତରମ୍', 'ଭାରତ ମାତା କୀ ଜୟ', 'ମହାତ୍ମା ଗାଂଧୀ କୀ ଜୟ', 'ଇଂରାଜୀ ସରକାର ଧ୍ୱଂସହେଉ' ।

ଆମ ଘରେ ସାନଦଦେଇ କଂଗ୍ରେସପ୍ରେମୀ ଥିଲେ । ସେ ଦାସଆପଣେଂକ ଦେଖାଦେଖି ଦାଢ଼ି ନିଶ ଛାଡ଼ିଦେଲେ । ଖଦଡ଼ ମଧ ପିଂଧିବାକୁ ଲାଗିଲେ । ସେ ଧଳା ଖଦଡ଼ର କୋଟ ପ୍ୟାଂଟ ପିଂଧି କିଂବା କେଉଁ ଦିନ ଖଦଡ଼ ଧୋତି

ଉପରେ ଧଳା ଖଦଡ଼ର ଓପନ୍‌ବ୍ରେଷ୍ଟ କୋର୍ଟ ଚଢ଼ାଇ କଚିରିକୁ ଯାଉଥିଲେ।

ଆମ ବଡ଼ଘରେ ଟଂଗାଯାଇଥିବା ଗୋଟାଏ ବଡ଼ ଛବି ମୋର ବେଶ୍ ମନେଅଛି। ସେଥିରେ ମଝିରେ କାକୁସ୍ଥ ଭାରତମାତାଂକୁ ଦୁଃଶାସନ (ବ୍ରିଟିଶ ସରକାର) ବିବସ୍ତ୍ର କରୁଛି। ଡାହାଣପାଖ ଉପରପଟେ ଗାଂଧିଜୀ ଅରଟରେ ସୂତା କାଟି ତାଂକୁ ବସ୍ତ୍ର ଯୋଗାଇ ଦେଉଛଂତି। ସେ ମୁଂଡରେ ବଡ଼ ପଗଡ଼ି ଏବଂ ଦେହରେ ଖଦଡ଼ କୁର୍ତ୍ତା ପିଂଧିଛଂତି ଏବଂ କଳା ନିଶ ରଖିଛଂତି। ବାଆଁକଡ଼ ଉପର କଣରେ ପଂଚପାଂଡବ ବିଷର୍ଣ୍ଣ ମୁହଁରେ ଛିଡ଼ାହୋଇଛଂତି। ସେମାନେ ହେଲେ ଦେଶବଂଧୁ ଚିତ୍ତରଂଜନ ଦାସ, ମୋତିଲାଲ୍ ନେହେରୁ, ଲାଲା ଲଜପତ୍ ରାୟ, ଦୁଇ ଭାଇ ମହମ୍ମଦ୍ ଆଲ୍ଲୀ ଓ ଶୌକତ ଆଲ୍ଲୀ। ଦୁଃଶାସନ ପ୍ୟାଂଟ୍ କୋଟ ଓ ଲଂବା ଟୋପି (ଜନ୍‌ବୁଲ୍ ଟୋପି) ପିଂଧିଛି।

ଆମ ଘରକୁ ବହୁତ କଂଗ୍ରେସ ନେତା ଓ କର୍ମୀ ଧଳା ଖଦଡ଼ର ଧୋତି, କୁର୍ତ୍ତା ପିଂଧି ଏବଂ କେହି କେହି ଗାଂଧୀଟୋପି ନାଇ ମୁଷ୍ଟିଭିକ୍ଷା ପାଇଁ ଆସୁଥିଲେ। ସେମାନଂକର ସୌମ୍ୟ ଶାଂତ ଚେହେରା ଏବଂ ଶୁଭ୍ର ପରିଧାନ ଏକ ନୂତନ ଭାବମୂର୍ତ୍ତି ସୃଷ୍ଟିକରୁଥିଲା। ସେଥିମଧ୍ୟରେ ଜଣେ ଚ୍ୟାଉ ପଟ୍ଟନାୟକ ଥିଲେ; କୃପାସିଂଧୁ ହୋତା ମଧ୍ୟ ଅନ୍ୟତମ। ଏ ପ୍ରସଂଗ ପରେ ବାରଂବାର ଆସିବ। ତେବେ ଏଠାରେ ଏତିକି କୁହାଯାଇପାରେ ଯେ, ସମଗ୍ର ଦେଶରେ ଏକ ନୂତନ ଜାଗରଣ, ଏକ ନୂତନ ଆବହାଉଆର ସୂଚନା ମିଳୁଥାଏ। ଦେଶର ଗୋଡ଼ି, ମାଟି, ପବନରେ ମଧ୍ୟ ନୂଆ ପ୍ରାଣର ସଂଚାର ହୋଇଥାଏ।

**ହଂସ, ବତକ, ମୟୂର ଓ ମୃଷା –**

ହଁ, ଆଗରୁ ଜଂତୁଜୁଂତାଂକ କଥା କହିଲାବେଳେ କହିବାକୁ ଭୁଲିଯାଇଛି ଯେ, ଆମ ଘରେ ବହୁତ ହଂସ, ବତକ ଥିଲେ। ଗୋଟିଏ ମୟୂର ମଧ୍ୟ କିଛି ବର୍ଷ ଥିଲା। ଏହାଛଡ଼ା ତିନି-ଚାରିଟା ଧଳାଜାତିଆ ମୃଷା ଥିଲେ। କୁକୁଡ଼ା ବି ପଲେ ଥିଲେ। ହଂସ, ବତକ ଓ କୁକୁଡ଼ା ଡିଂବ ଦେଉଥିଲେ। ଖୋରଧା ସହରରେ ରହୁଥିବା ଆର୍ତ୍ତମାମୁଂକ ବଡ଼ପୁଅ ଦୁଃଖାନନା କେବେ କେବେ ଆସି ଖଂଡେ ବାଡ଼ି ନେଇ ହଂସ-ବତକଗୁଡ଼ାଂକୁ ପିଟିବ। ସେମାନେ କଅଁ କଅଁ ବୋବାଳି ଛାଡ଼ି ଅଗଣାରେ ଏଣେତେଣେ ପଳାଉଥିବେ। ଦୁଃଖାନନା ଗୋଟାଏ ଧଳା ଫୁଲ୍-ପ୍ୟାଂଟ୍ ଓ ଧଳା କାମିଜ ପିଂଧି ଆସି ପହଂଚିଯିବ। ସେ ପ୍ୟାଂଟ ପିଂଧି ଆସିଥିବା ଯୋଗୁଁ ଆମେ ତାକୁ ଟିକିଏ ଖାତିର କରୁ। ମୟୂରଟା ମେଘ ଘୋଟିଆସିଲେ ପୁଚ୍ଛ ମେଲାଇ ନାଚିବ। ତା'ଛଡ଼ା ଗୋଟାଏ ନେଉଳ ମଧ୍ୟ କିଛିଦିନ ପୋଷାଯାଇଥିଲା। ଏ ନେଉଳ ସାପକୁ ମାରିଆଣି ଅଗଣାରେ ପକାଇଦେଉଥିଲା। ପୁଣି ସେଗୁଡ଼ାଂକୁ ଉଠାଇ ଦୂରରେ ଫିଂଗିବା କାଠିକର ପାଠ ଥିଲା। କୁକୁଡ଼ାକୁ ରାମପକ୍ଷୀ ଭାବି ଘରେ ଅନେକେ କୁକୁଡ଼ା-ମାଂସ ଖାଉନଥିଲେ। ମୁଁ କିଂତୁ କୁକୁଡ଼ା-ମାଂସ ତରକାରି

ଖାଉଥିଲି। ଏସବୁ ପ୍ରାଣୀଂକ ଛଡ଼ା ଚାରି-ପାଂଚଟା ଛେଳି ଓ ମେଂଢ଼ା ମଧ୍ୟ କିଛିଦିନ ଥିଲେ। ଏସବୁ ଏକକାଳୀନ ଥିଲେ ଗୋଟାଏ ଚିଡ଼ିଆଖାନା ହୋଇପାରିଥାଂତା। ଏସବୁ ଜଂତୁଜୁତାଂକର ସ୍ୱତଂତ୍ର ମହତ୍ତ୍ୱ ଥିଲା। ମୂଷା ତ ଗଣେଶଂକ ବାହନ, ମୟୂର କାର୍ତ୍ତିକେୟଂକର, ଷଂଢ ଶିବଂକର ଏବଂ ହଂସ ସରସ୍ୱତୀଂକର ବାହନ; ତେଣୁ ଏମାନଂକୁ ପିଟାପିଟି କଲେ ବଡ଼ ଖରାପ ଲାଗୁଥିଲା। ଆମେ ଦୁଃଖାନନା ଉପରେ ମନେ ମନେ ଚିଡୁଥିଲୁଁ। ତାର ଇଂରାଜୀ ପାଠ ନହେବାରୁ ତାକୁ ଆର୍ତ୍ତମାମୁ ଗୋଟାଏ ସଂସ୍କୃତ ଟୋଲରେ ଭର୍ତ୍ତିକରିଥିଲେ। ସେ ବହୁତ ସଂସ୍କୃତ କାବ୍ୟପୁରାଣରୁ ଧାଡ଼ିମାନ ମୁଖସ୍ଥ କରିଥିଲା। ଇଆଡ଼େ କିଂତୁ ପୂରା ସାହେବ ବନି ପ୍ୟାଂଟ ସାର୍ଟ ପିଂଧି ଆସିବ।

**ଆମ ଘରେ ଅସ୍ତ୍ରଶସ୍ତ୍ର –**

ଦାଂଡଘର ପାଖକୁ ଲାଗି ଠାକୁରଘର। ଏହାକୁ ଭାଗବତଘର ମଧ୍ୟ କହୁଥିଲେ। ଦାଂଡଘରୁ ଭାଗବତଘରକୁ ଯିବାପାଇଁ ଏକ ଦୁଆର ଓ କବାଟ ଥିଲା। ପ୍ରତିଦିନ ପୁରୋହିତେ ଆସି ଭାଗବତଘରକୁ ଯାଇ ଠାକୁର ପୂଜା କରୁଥିଲେ। ଖଟୁଲି ଉପରେ ରଖାଯାଇଥିବା ପୋଥି, ଶାଳଗ୍ରାମ ଓ ଠାକୁରମାନଂକ ଉପରେ ପାଣି, ଚଂଦନ ଛିଂଚି, ଫୁଲ ତୁଳସୀପତ୍ର ପକାଉଥିଲେ; କି ମଂତ୍ରପାଠ କରୁଥିଲେ। ଭାଗବତ ଖେଦାରୁ କିଛି ଅଂଶ ମଧ୍ୟ ପାଠକରୁଥିଲେ। ଏଥିପାଇଁ ତାଂକୁ ପ୍ରତି ମାସରେ କିଛି ଦକ୍ଷିଣା ଦିଆଯାଉଥିଲା।

ଆମ ଘରେ ବହୁତ ଅସ୍ତ୍ରଶସ୍ତ୍ର ଥିଲା। ସେସବୁ ସିମିତି ଜଂକ୍ ଲାଗି ଠାକୁରଘରେ ପଡ଼ିଥାଏ। କେହି ପ୍ରାୟ ଖୋଲଂତି ନାହିଁ। ଦଶହରା ତିନିଦିନ ସଜ ବସେ। ସବୁ ଅସ୍ତ୍ରଶସ୍ତ୍ର ଠାକୁରଘରେ ଦୁର୍ଗାଂକ ପାଖରେ ରଖିଦିଆଯାଏ। ଦଶହରା ଦିନ ସଂଧ୍ୟାରେ ସଜ ଉଠେ। ସମସ୍ତେ ଖୋଳରୁ ଖଂଡା ତରଓ୍ୱାଲ୍ କାଢ଼ି କିଛି ସମୟ ବୁଲାଂତି; ବର୍ଛା ପ୍ରଭୃତି ମଧ୍ୟ ଖେଳାଂତି। ତା'ପରେ ପୁଣି କୋଷବଦ୍ଧ କରି ରଖିଦିଅଂତି ବର୍ଷକ ପାଇଁ।

ଆମ ଘରେ କେତେ ପଟ ବାଉଁଆ ଖଂଡା ଓ ଢାଲ ଦେଖାଯାଏ। ଆମ ପୂର୍ବପୁରୁଷଂକ ଭିତରେ ନିଶ୍ଚୟ କେତେ ଜଣ ବାଉଁଆ ଥିଲେ। ସେ ଖଂଡାର ମୁଠା ବାଆଁହାତ ମୁଠାରେ ଧରିବାଭଳି। ଏହିସବୁ ଅସ୍ତ୍ରଶସ୍ତ୍ର ଦେଖିଲେ ସୁଦୂର ଅତୀତର କାହାଣୀ ମନେପଡ଼ିଯାଏ। ଭାବିଲି କୁଆଡ଼େ ଗଲା ସେ ଦିନ? ଆମ ଦେଶ ଆଜି ବିଦେଶୀ ବଣିକର ଗୋଲାମ। ଆମ ପୂର୍ବଜମାନେ ଜଣ ଏହା ଦେଖିପାରିଥାଂତେ!

ଅସ୍ତ୍ରଶସ୍ତ୍ର ସଂଗରେ ବହିପତ୍ର, ଖାତା, କଲମ, ଦୁଆତ ମଧ୍ୟ ତିନିଦିନ ପାଇଁ ସଜ ବସେ। ତିନିଦିନ ପରେ ଦଶହରା ସଂଧ୍ୟାରେ ସଜ ଉଠିଲେ ଆମେ ସେସବୁ ଆଣି ବ୍ୟବହାରକରୁଁ।

ପୂର୍ବକାଳରେ ଓଡ଼ିଶାର ପାଇକ ବା ଖଂଡାୟତମାନେ ଯୁଦ୍ଧରେ ବହୁପ୍ରକାର

ନଳି ବା ବଂଧୁକ/ ବ୍ୟବହାର କରୁଥିଲେ। ଖଂଡା ତ ନାନାପ୍ରକାର ଥିଲା। ଏହାଛଡ଼ା ସେମାନେ ଆହୁରି କେତେକ ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ, ଯାହାର ନାମ ଏବେ ଲୋକେ ପ୍ରାୟ ଭୁଲିଗଲେଣି। ଆମ ଘରେ କେତୁଟା ନଳି ଥିଲା। ନଂଦଦଦା ଓ ବିନ୍ଦଦା ରାଇଫେଲ୍ କିଣି ଶିକାରକରୁଥିଲେ।

ପାଇକମାନେ ଯୁଦ୍ଧରେ ବ୍ୟବହାର କରୁଥିବା କେତେକ ଅସ୍ତ୍ରଶସ୍ତ୍ରର ନାମ ମୁଁ ବଡ଼ହେଲାପରେ ସଂଗ୍ରହ କରିଥିଲି। ସେଗୁଡ଼ିକ ହେଲା— ନଳି, ଠୁଁକା, ବାରୁଦକୁଂପା, ଝୁଲକନ୍ତା, ଶଗଡ଼ିଆ ନଳି, ଓଲଟ ଧାର ଖଂଡା, ଖଂଡା ହସ୍ତକ ଖଂଡା, ଖପର, ଢାଲ, କଟାରି, କାଂଡ, ବାଂକଛୁରି, କଟିଭାଲ, କାତିମାଳ ବା ଛୁରିବନାଟି, ଗୁଢ଼ି, ଧନ, ଚକ୍ର, ବାଳରେ ତିଆରି ପାଶ ବା ଦଉଡ଼ି, ରଂଢକପୁଟି, ଗଂଠିଆ, ବାହୁରେ କବଚ, ମୁଂଡରେ ବଜ୍ର, ବାଘନଖିଆ, ହାଂଡିଆ, ଅଂଟାରେ କଳିଂଗି, ହୋତା ଇତ୍ୟାଦି। କଳିଂଗି ଏରାପଖିରେ ତିଆରି ଏକ ଆବରଣ, ଯାହା ବାହୁମୂଳକୁ ରକ୍ଷାକରେ। ପାଇକମାନେ ଲୁଗାତଳେ କାଛଟା ଓ ତଳିପେଟ ଉପରକୁ ମଥାନ ପିଂଧିଥାଂତି। ଏହାଛଡ଼ା ବାହୁଟି, ଘଂଟିମାଳ, ହୋଦା, ବାଘପଟି, ବଳା, ରୂପଚଂଦ୍ର, ଘାଗୁଡ଼ି, ଝୋବା ପ୍ରଭୃତି ମଧ୍ୟ ଅଳଂକାର ରୂପରେ ପିଂଧୁଥିଲେ, ଯାହା ଦେହକୁ ମଧ୍ୟ ରକ୍ଷାକରୁଥିଲା।

ପାଇକମାନଂକ ମନରେ ଉଦ୍ଦୀପନା ଆଣିବାପାଇଁ ଯୁଦ୍ଧରେ ବହୁ ପ୍ରକାର ବାଦ୍ୟ ବାଜୁଥିଲା, ଯଥା— ଚାଂଗୁ, ଡିପା, ଖୁଟି, ଅଦଘର, କାଠିଆମାଳ, ଝାଂଜ, ଫୁକା, ଖୁଡୁଆ, ଭେରୀ, ଶିଂଘା, ତୁରୀ ପ୍ରଭୃତି। ଏହାଛଡ଼ା ପ୍ରାଚୀନକାଳରେ ମୃଦଂଗ, ଗୋମୁଖ, ପ୍ରାହୁର, ମୁରଜ, କୋଦୁମପାରାଇ, ପାଂଡିଲ, ନେଦୁହାଇର, ମେରକାମ ପ୍ରଭୃତି ବାଦ୍ୟଯଂତ୍ରମାନ ମଧ୍ୟ ଥିଲା। ଏସବୁ ମଧ୍ୟ ସୈନ୍ୟମାନଂକ ମନରେ ଶକ୍ତି ଓ ପ୍ରେରଣା ସୃଷ୍ଟି କରିବାପାଇଁ ବଜାଯାଉଥିଲା। ଘୁମୁରା, କଡ଼ା, ମାର୍ଦଳ, କଂସାଳ, ଦାଉଂଡି, ସରଗୁଣା, ଅଧାଟି ପ୍ରଭୃତିର ବ୍ୟବହାର କାଳକ୍ରମେ କମିଆସୁଥିଲା ବୋଲି ଜଣାଯାଏ। ବାଗୁଆ, ଖେରୁଆ, ତ୍ରିପଟା, ଢାଲପା, ସାତପଟା, ନଅପଟା ପ୍ରଭୃତିରେ ଖଡ୍‌ଗ ଚାଳନା କରି ବହୁ ବିଷମ ସେନାକୁ ଆଘାତ ପହଂଚାଉଥିଲେ। ଆହତମାନଂକ ଆରୋଗ୍ୟ ଓ ପରିଚର୍ଯ୍ୟା ପାଇଁ ବହୁ ଔଷଧ ପ୍ରୟୋଗ କରାଯାଉଥିଲା ବୋଲି 'ପାଇକଖେଦା' ଓ 'ଧନୁର୍ବେଦ ସଂହିତା' ପ୍ରଭୃତି ଗ୍ରଂଥରୁ ଜଣାଯାଏ। ସେସବୁ ହେଲା ବିଷ୍ଣୁକାଂତା ରସ, ନିଲିଜଟା ରସ ଇତ୍ୟାଦି। ଏସବୁକୁ ଗାରୁଡ଼ିଭିଆଣ କୁହାଯାଉଥିଲା। ଆଗ୍ନେୟାସ୍ତ୍ରରେ ବିଶେଷକରି ଗୁଳା-ବାରୁଦରେ ରାସାୟନିକ ଦ୍ରବ୍ୟ ମିଶାଇ ସେସବୁକୁ ବିଷାକ୍ତ କରିବାର ପ୍ରଣାଳୀ ଓଡ଼ିଆ ପାଇକଂକୁ ଜଣାଥିଲା। ଧନୁର୍ବାଣ ବା କାଂଡକୁ ମଧ୍ୟ ବିଷାକ୍ତ କରାଯାଉଥିଲା।

ବ୍ୟୂହରଚନା, ନୌ-ଯୁଦ୍ଧଚାଳନା କୌଶଳ ପ୍ରଭୃତି ଓଡ଼ିଆ ପାଇକ ଆୟତ୍ତ କରିଥିଲା। କବି ବଡ଼ଜେନା ତାଂକ 'ସମରତରଂଗ' ଗ୍ରଂଥରେ ଓଡ଼ିଆ ପାଇକର

ରଣକୌଶଳ ସଂବଂଧରେ ବହୁ ତଥ୍ୟ ଲିପିବଦ୍ଧ କରିଯାଇଛଂତି। ସଂସ୍କୃତରେ ଲିଖିତ ପ୍ରତାପରୁଦ୍ରଂକ ରାଜସଭାର ପଂଡିତ ଗୋଦାବର ରାଜଗୁରୁଂକ ପ୍ରଣୀତ 'ହରିହର ଚତୁରଂଗ ଗ୍ରଂଥରେ ଓଡ଼ିଶାର ଖଂଡାୟତ ବାହିନୀର ଯୁଦ୍ଧ ପ୍ରଣାଳୀ ଓ ଅସ୍ତ୍ରଶସ୍ତ୍ରର ବର୍ଣନା ଦେଖିବାକୁ ମିଳେ। କହ୍ନାଇ ଚଂପତିରାୟକୃତ 'ପାଇକ ଖେଦା' ବହିଟି ଏ ବିଷୟରେ ବହୁ ତଥ୍ୟ ପରିବେଷଣ କରେ। ହଳଦିଆଗଡ଼ର ଭଂଜମାନଂକ ଘରେ ବହୁ ପୁରୁଣା ଅସ୍ତ୍ରଶସ୍ତ୍ର ଦେଖିଛି। ପିଲାଦିନେ ଏସବୁର ନାମ ଓ ବ୍ୟବହାର ବିଧି ସଂବଂଧରେ ଜାଣିନଥିଲି, ବୟସ ବଢ଼ିବା ପରେ ଧୀରେ ଧୀରେ ବୁଝି ଜାଣିଲି। ଏସବୁ ଅସ୍ତ୍ରଶସ୍ତ୍ର ଆଜିକାଲି ଯୁଗରେ ଅଚଳ। ଏବେ ତ ପରମାଣୁଯୁଗ। ଗୋଟିଏ ବୋତାମ ଟିପିଦେଲେ ସାରା ପୃଥିବୀ ଧ୍ୱଂସହୋଇଯିବ। ମଣିଷସଭ୍ୟତାର ଆୟୁ କେତେ ଦିନ, ତାହା ଆଜି କେହି କହିପାରିବେ ନାହିଁ।

ଯୁଦ୍ଧ ଆଜି ଏକ ନୈର୍ବ୍ୟକ୍ତିକ ବ୍ୟାପାରରେ ପରିଣତ ହୋଇଛି। ଏପରି ଏକ ଦିନ ଆସିବ, ଯେତେବେଳେ ଯୁଦ୍ଧ ଲାଗିବ କଂପ୍ୟୁଟର ଓ କଂପ୍ୟୁଟର ଭିତରେ ଏବଂ ସମଗ୍ର ମଣିଷ-ସମାଜ ଆଖିପିଛୁଳାକେ ଧ୍ୱଂସହୋଇଯିବ। ଯୁଦ୍ଧର ଅଂଗନ ଆଜି ଆଉ ପୃଥିବୀ ମଧ୍ୟରେ ସୀମିତ ନୁହେଁ; ତାହା ସୁଦୂର ନକ୍ଷତ୍ରକୁ ମଧ୍ୟ ପ୍ରସାରିତ। ଏହି ଯୁଦ୍ଧ କରିବାକୁ ଆଉ ଶାଳପ୍ରାଂଶୁ ବାହୁ କିଂବା ବୃଷସ୍କଂଧ ବୀରପୁରୁଷମାନେ ଦରକାର ନୁହଂତି। ଦରକାର କେବଳ ଏକ ସରୁ ନଳି ହାତ, ଯାହା ଏକ ବୋତାମ ଟିପିଦେଇପାରିବ। ବେଶ୍, ସେତିକିରେହିଁ ସାରା ସୃଷ୍ଟି ଧ୍ୱଂସହୋଇଯିବ। ସଂସାରରେ ଏଭଳି ଭୟଂକର ଦୁର୍ଦ୍ଦିନରେ କେବଳ ମଣିଷହିଁ ମଣିଷଜାତିକୁ ଏ ସର୍ବାତ୍ମକ ଯୁଦ୍ଧରୁ ରକ୍ଷା କରିପାରିବ, ଯେଉଁ ଯୁଦ୍ଧରେ ଜୟ ବା ପରାଜୟ ବୋଲି କିଛି ନାହିଁ; ଅଛି କେବଳ ଧ୍ୱଂସ ଆଉ ଧ୍ୱଂସ, କେବଳ ଏକ ସର୍ବମୟ ଧ୍ୱଂସର ମୁଖବିବର। ମଣିଷ କ'ଣ ଶେଷରେ ଭସ୍ମାସୁର ପରି ତାର ନିଜକୃତ ଯୁଦ୍ଧର ଶିକାର ହେବ— ଯେଉଁ ଯୁଦ୍ଧ ଜିଣିହୁଏନାହିଁ, ଯାହାର ଅର୍ଥ କେବଳ ସବୁରିର ଆଉ ସବୁକିଛିର ଧ୍ୱଂସ।

ମଣିଷର ଅଦୃଷ୍ଟକୁ କିଏ ଆବିଷ୍କାର କରିପାରିବ ତା' ନିଜ ଛଡ଼ା ?

ଏଇ ମଣିଷ ପୁଣି ଚନ୍ଦ୍ରକୁ ଯାଉଛି, ଶୁକ୍ରକୁ ଯିବ ଏବଂ ଆହୁରି କେତେ କଣ କରିବ; ଅଥଚ ନିଜକୁ, ନିଜ ଦେଶ ଚାଖଂଡେକୁ ସେ ସଂଭାଳିପାରୁ ନାହିଁ। ଆଜି ମଣିଷର ସବୁଠାରୁ ବଡ଼ ଶତ୍ରୁ, ବଡ଼ ବିପଦ ଯଦି କିଛି ଥାଏ, ତେବେ ତାହା ହେଉଛି ମଣିଷ।

ହଁ, ସେ ଯାହାହେଉ ମୋ' କୈଶୋରର, କଂଚାମାଟି ଉପରେ ରକ୍ତ-ତୀର୍ଥ ଖୁରଧାର ପ୍ରଭାବ ଅମୁଂଛନୀୟ। କୈଶୋରରେହିଁ ଜୀବନ ଶାଖା ଧରେ; ନୂଆପତ୍ର କଅଁଳେ ଏବଂ ପିଲାଟି ନିଜକୁ ଆବିଷ୍କାର କରିବାକୁ ଶିଖେ। ଖୁରଧାହିଁ ଥିଲା ମୋର କୈଶୋର ଏବଂ ମୋ'ର କୈଶୋରହିଁ ଥିଲା ଖୁରଧା।

# ଷଷ୍ଠ ଉଲ୍ଲାସ

## ଖୋରଧା ହାଇସ୍କୁଲ୍‌ର ଛାତ୍ର

ମୁଁ ୧୯୨୫ ମସିହାରେ ଖୋରଧା ହାଇସ୍କୁଲ୍‌ରେ ନାମଲେଖାଇଲି। ମୋ ସଂଗରେ ଚିଂତାଦଦା ଯାଇଥାଂତି ନାମଲେଖାଇବାକୁ। ମୁଁ ଛରିପକା ଲାଲ୍ ପାଟଲୁଗା ଓ ଭେଲ୍‌ଭେଟି କୁର୍ତ୍ତା ପିଂଧି ସ୍କୁଲ୍‌କୁ ଯାଇଥିଲି। ଆମେ ସ୍କୁଲ୍ ବାରାଂଡାରେ ଗଲାବେଳେ ସବୁ କ୍ଲାସ୍‌ର ପିଲା ଓ ମାଷ୍ଟ୍ରମାନେ ଆମକୁ ଚାହୁଁଥାଂତି। ସ୍କୁଲ୍‌ର ହେଡ୍-ମାଷ୍ଟର ଥାଆଂତି ସେତେବେଳେ ଜଣେ ନାମଜାଦା ଲୋକ ବାଂଜନିଧି ପଟ୍ଟନାୟକ; ବଡ଼ ବଡ଼ କଳା ମୁଛ ଥିବା ବାଘୁଆମୁହାଁ, କୋଟ୍-ପ୍ୟାଂଟ୍‌ପିଂଧା ଲଂବା-ଚୌଡ଼ା ମଣିଷଟିଏ; ଦେଖିଲେ ଭୟଲାଗିବ। ସେ ପ୍ରତିଦିନ ଦୁଇ-ତିନି ଥର ଜୋତା ମଚ୍‌ମଚ୍ କରି ସ୍କୁଲ୍ ବାରାଂଡାରେ ଏମୁଂଡୁ ସେମୁଂଡଯାଏ ପଇଂତରା ମାରଂତି। ତାଂକ ଜୋତାଶବ୍ଦରୁ ସମସ୍ତେ ବୁଝିଯାଂତି ଯେ ହେଡ୍‌ମାଷ୍ଟ୍ରେ ଆସୁଛଂତି। ଟହଲି ଟହଲି ଜୋତା ଠକ ଠକ କରି ସେ ଆସଂତି। ସବୁ କ୍ଲାସ୍‌ରେ ପିଲାଏ ଓ ମାଷ୍ଟ୍ରମାନେ ଜାଗତିଆର ହୋଇଯାଂତି। କେବେ କେବେ ସେ କୌଣସି ଗୋଟିଏ କ୍ଲାସ୍‌ରେ ପଶିଯାଂତି; ପିଲାମାନଂକୁ ପାଠ ପଚରାଉଚରା କରଂତି। କିଛି ଗଲତି ଦେଖିଲେ ସଂପୃକ୍ତ ଶିକ୍ଷକଂକୁ ପରେ ଅଫିସକୁ ଡାକିନେଇ ତାଗିଦ୍ କରିଦିଅଂତି।

ସେ ଭାରି ରାଜଭକ୍ତ ଥିଲେ; ରାୟସାହେବ ଉପାଧି ବ୍ରିଟିଶ୍ ସରକାରଂକଠାରୁ ପାଇଥିଲେ। ସେତେବେଳର ରାୟସାହେବ ଓ ରାୟବାହାଦୁର ପ୍ରଭୃତିଂକର ପେଶା ଥିଲା ଉପରିସ୍ଥ ସାହେବ, ସାହେବା ଓ ବଡ଼ବଡ଼ିଆ ଅଫିସରମାନଂକୁ ଖୋସାମତ କରିବା ଓ ଖଡ଼ମିଛ କହି ସେମାନଂକର ବିଶ୍ୱାସଭାଜନ ହେବାକୁ ଚେଷ୍ଟାକରିବା। ଏହିସବୁ ଖେତାବ କେବଳ ବ୍ରିଟିଶ୍ ସରକାରର ଗୋଡ଼ାଣିଆ ଲୋକଂକୁହିଁ ଦିଆ-ଯାଉଥିଲା। ଲୋକଂକ ନିକଟରେ ସେମାନେ ବଡ଼ ଅପ୍ରିୟ ଥିଲେ।

ବାଂଜନିଧି ପଟ୍ଟନାୟକ ଜଣେ ଭଲ ଶିଶୁ-ସାହିତ୍ୟିକ ଥିଲେ। ତାଂକର କେତେ ଖଂଡି ବହି ଯଥା 'ମୁକ୍ତାଝରି', 'ସୁନାରାଇଜ', 'ସୁନାପାହାଡ଼', 'ଧର୍ମଶିକ୍ଷା' ଆଦି ମୁଁ ପଢ଼ି ଆନଂଦ ପାଇଥିଲି। ସେତେବେଳେ ସ୍କୁଲ୍‌ରେ ଧର୍ମଶିକ୍ଷା ପାଇଁ ସପ୍ତାହକେ ଗୋଟିଏ କ୍ଲାସ୍ ନିର୍ଦ୍ଦିଷ୍ଟ ଥିଲା। ପ୍ରତି ଦୁଇଟି କ୍ଲାସ୍ ଏକତ୍ର ଭାବେ ଧର୍ମଶିକ୍ଷା ପାଆଂତି। ଆମ କ୍ଲାସ୍ ଓ ଆମ ଉପର କ୍ଲାସ୍ ଏକାଠି ହୋଇ ଧର୍ମଶିକ୍ଷା ପାଉଁ। କୁଲିଆ ଦପ୍ତରୀକୁ ନ ଚିହ୍ନିଛି କିଏ ? ସେ ଥାଏ ସ୍କୁଲ୍‌ର ଦପ୍ତରୀ ଓ ପିଅନ ସବୁ। କୌଣସି ପିଲାକୁ ଦଂଡ ଦେବାକୁ ହେଲେ ହେଡ୍‌ମାଷ୍ଟ୍ରେ

ତାଂକ ଅଫିସ୍‌ରେ ତାକୁ ବେତରେ ପିଟଂତି, ଅପରାଧ ଗୁରୁତର ଥିଲେ କୁଳିଆକୁ କହଂତି, ଗଧଟୋପି ଦେଇ ବୁଲା। କୁଳିଆ ଦପ୍ତରୀର ଆଉ ଗୋଟାଏ କାମ ଥିଲା ଘଂଟାଦେବା। ଗୋଟାଏ ପିରିଅଡ୍ ଶେଷହେଲେ ସେ ଘଂଟା ପିଟି ଜଣାଇଦିଏ। ସେତେବେଳେ ସ୍କୁଲ୍‌ର ନାମ ଥାଏ ଖୋରଧା ହାଇସ୍କୁଲ୍; ବହୁତ ପରେ ୧୯୫୦ ବେଳକୁ ଯାଇ ବକ୍‌ସି ଜଗବଂଧୁ ହାଇସ୍କୁଲ୍ ନାମ ହେଲା। ସେ ସ୍କୁଲ୍‌ଟି ଥିଲା ପୁରୀ ଜିଲ୍ଲାର ଦୁଇ-ତିନୋଟି ହାଇସ୍କୁଲ୍ ମଧ୍ୟରୁ ଗୋଟିଏ। ବହୁ ଦୂର ଅଂଚଳରୁ ପିଲାମାନେ ପଢ଼ିବାକୁ ଆସୁଥିଲେ ସେଠିକି। ବାଣପୁର, ବାଲୁଗାଁ, ଟାଂଗି, ନାଚୁଣୀ, ନିରାକାରପୁର, ଜଂକିଆ, ତାପଂଗ, ନରଣଗଡ଼, ବଡ଼ପୋଖରୀ; ଇଆଡ଼େ ନିଆଳୀ, ମୁକ୍ତାପୁର, ହଳଦିଆଗଡ଼; ସେପଟେ ଶରଧାପୁର, ବାଘମାରୀ, ବୋଲଗଡ଼, ବେଗୁନିଆ, ନୂଆଗଡ଼ ଏବଂ ଏପଟେ ମୁକୁଂଦପ୍ରସାଦ, ଯାଅଁଳା, କୁଦିଆରୀ ବଡ଼ତୋଟା, ଛଟଣୀ ଓ ଭୁବନେଶ୍ୱର ପ୍ରଭୃତି ବହୁ ଗ୍ରାମର ବହୁ ଛାତ୍ର ଆସି ଖୋରଧା ହାଇସ୍କୁଲ୍‌ରେ ପଢୁଥିଲେ; ସ୍କୁଲ୍‌ର ଚାଳ ଛପର ବୋର୍ଡ଼ିଂରେ ରହୁଥିଲେ। ସେମାନଂକ ମଧ୍ୟରୁ ଅଧିକାଂଶ ଛାତ୍ର। ସ୍କୁଲ୍ ଘରଟା ଇଂରାଜୀ 'E' ପରି। ଲଂବା ସାହାଲା କ୍ଲାସ୍‌ରୁମ୍‌ଗୁଡ଼ାକ, ମଝିରେ ହେଡ୍‌ମାଷ୍ଟରଂକ ଅଫିସ୍, ସ୍କୁଲ୍ ଅଫିସ୍। ମଝିରୁ ବାହାରିପଡ଼ିଛି ବଡ଼ ହଲ୍‌ଟା। ଖୋରଧାର ପ୍ରସିଦ୍ଧ ନାଲି ମାଂକଡ଼ା ପଥରରେ ତିଆରି ବିରାଟ ସ୍କୁଲ୍‌ଘରଟା ବହୁ ଦୂରକୁ ଦେଖାଯାଏ।

ହେଡ୍‌ମାଷ୍ଟର ବାଂଛାନିଧିବାବୁ ବେଳେବେଳେ ଆମ କ୍ଲାସ୍‌କୁ ଆସି ଇଂରାଜୀ ପଢ଼ାଂତି। ଦାଂତ ଚିପି ଇଂରାଜୀ ଶବ୍ଦଗୁଡ଼ାକ ଉଚ୍ଚାରଣ କରଂତି, ଯେମିତି ସାଇବମାନେ କରଂତି। ପିଲାଏ ତାଂକ ପଛରେ ଥଟ୍ଟା କରଂତି। ଭଗବାନ ହୋତା ହେଡ୍‌ପଂଡିତ ଥିଲେ। ସେ ସଂସ୍କୃତ ପଢ଼ାଂତି। ଗୋଟାଏ-ଅଧେ ଓଡ଼ିଆ କ୍ଲାସ୍ ମଧ୍ୟ ନିଅଂତି। ଓଡ଼ିଆ କ୍ଲାସ୍‌ରେ ସେ ବିନା ଦ୍ୱିଧାରେ ଅଶ୍ଳୀଳ ଶବ୍ଦ ସବୁ କହଂତି। ପିଲାଂକୁ ଭାରି ମଜାଲାଗେ। ଓଡ଼ିଆ ପାଠ୍ୟ ବହିରେ ଥିଲା ଅଂଡିରା ବାଛୁରିର 'ମୁଷ୍କ' ଛେଦନ କରି ବଳଦ କରାଯାଏ। ସେ 'ମୁଷ୍କ' ଶବ୍ଦର ଅର୍ଥ କଂଚା ଗାଉଁଲୀ ଭାଷାରେ କହିଦେବେ। ଆମେ ହସି ହସି ଗଡୁ। ସେ ଟିକିଏ ମୁହଁଖୋର ଲୋକ; ମୁହେଁ ମୁହେଁ ହେଡ୍‌ମାଷ୍ଟ୍ରଂକୁ ମଧ୍ୟ ବାଡ଼େଇଦେବେ, ଅନ୍ୟ କାହା କଥା ପଚାରୁଛି କିଏ ? ମୁକୁଂଦ ପଂଡିତେ ଡ୍ରଇଂ ମାଷ୍ଟର। ବ୍ଲାକ୍‌ବୋର୍ଡରେ କେତେ ରକମର ଫୁଲ ଫଳ, ପଶୁ ପକ୍ଷୀ, ଗଛ ବୃକ୍ଷଲତା ପତ୍ର ଆଂକିଦେବେ। ଫଜିଲବାବୁ ଆସିଷ୍ଟାଂଟ୍ ହେଡ୍‌ମାଷ୍ଟର। ସେ ଜଣେ ବଡ଼ ରୋଗା, ପତଳା, ନିରୀହ, ମୁସଲ୍‌ମାନ୍ ଭଦ୍ରଲୋକ; ଭାରି ଶାଂତଶିଷ୍ଟ; ଇଂରାଜୀ ପଢ଼ାଂତି। ବିପ୍ରବାବୁ ମଧ୍ୟ ପଢ଼ାଂତି ଇଂରାଜୀ। କୁଂଜବାବୁ ଓଡ଼ିଆ ସାହିତ୍ୟ। ରାଧାଚରଣବାବୁ ଥିଲେ ଗଣିତ-ମାଷ୍ଟର। କିଛି ଦିନ ଡଂବରୁଧର ପରିଡ଼ା ମଧ୍ୟ ଆମକୁ ଓଡ଼ିଆ ପଢ଼ାଇଥିଲେ। ସୌରୀବାବୁ ଥିଲେ ଗେମ୍‌ସ ଟିଚର୍। ସେ ମୋତେ ଖେଳକୁଦରେ ବହୁତ ପ୍ରୋତ୍ସାହନ ଦେଇଛଂତି।

ପୁଣି ମନେପଡ଼େ, ବାଙ୍ଛିବାବୁଙ୍କ କଥା— ଡେଂଗା, ପତଳା, ବଂଗାଳୀ ଭଦ୍ରଲୋକ; ଛୋଟା ବୋଲି ଗୋଟାଏ ଗୋଡ଼ ବୁଲାଇ କରି ପକାଂତି, ବାଡ଼ି ଖଂଡେ ଧରି ଚାଲଂତି। ସେ ଇତିହାସ, ଭୂଗୋଳ ପ୍ରଭୃତି ପଢ଼ାଂତି। ସେ ଖୋରଧା ଡାକ୍ତରଖାନା ପାଖରେ ଖଂଡେ ଘର କରି ରହୁଥାଂତି ବରଦାବାବୁ ବା ବାଳମୁକୁଳି ହୋମିଓପାଥି ଡାକ୍ତରଂକ ଘରକୁ ଲାଗି। ତାଂକ ବଂଗଳାମିଶା ଓଡ଼ିଆ ଉଚ୍ଚାରଣ ମଜା ଲାଗେ ଶୁଣିବାକୁ। ସେ ପଢ଼ାଂତି– ''ଯେ ଦେଶେ ଆଣି କୋଟି ଗୋରୁଗାଈ ଆଛନ (ଅଛଂତି) ସେ ଦେଶ କଥା ପଚାରୁଚ ଖ'ନ? (କଣ)'' ଆମେ ହସି ହସି ଗଡୁ।

ସେ ଥିଲେ ଏ ସ୍କୁଲର ସବୁଠାରୁ ପୁରୁଣା ଶିକ୍ଷକ। ମୋ' ଜନ୍ମିତ ପିତା ପ୍ରସନ୍ନକୁମାର ଓ ନଂଦଦାଂକୁ ମଧ୍ୟ ସେ ପଢ଼ାଇଛଂତି। ସେତେବେଳେ ଖୋରଧା ହାଇସ୍କୁଲ୍ ଥିଲା ଡାକ୍ତରଖାନା ପାଖ ପଡ଼ିଆରେ, ଚାଳଘରେ; ଯାହା ପୋଡ଼ିଯିବା ପରେ ଏକ କୋଠାଘର ତିଆରିହେଲା। ମୋତେ ଦେଖିଲେ ସେ ବେଳେବେଳେ କହଂତି– ''ଏଇ ହାତେ ନଂଦ ପ୍ରସନ୍ନକୁ ବାଡ଼େଇଛି– ତୁ'ଟା ଖ'ନ?'' ହୁଏନା...''

ତାଂକର ଗୋଟାଏ ଖୋଇ ଥିଲା, ସବୁ ବାକ୍ୟ ଶେଷରେ ଗୋଟାଏ 'ହୁଏନା' ଲଗାଇବେ। ତାଂକୁ ସମସ୍ତେ 'ହୁଏନା' 'ହୁଏନା' ନାଁ ଦେଇଥିଲେ।

**ଛାତ୍ର-ଜୀବନର କେତୋଟି ସ୍ମରଣୀୟ ଘଟଣା–**

ମୁଁ ଖୋରଧା ହାଇସ୍କୁଲ୍‌ରେ ପଂଚମ ଶ୍ରେଣୀରେ ଭର୍ତି ହେଲାବେଳକୁ ମାଟ୍ରିକ୍ୟୁଲେଶନ୍ ଦଶମ ଶ୍ରେଣୀରୁ ଉତ୍ତୀର୍ଣ ହୋଇ ମାୟାଧର ମାନସିଂ ଏବଂ ଉଦୟନାଥ ରଥ (ପରେ ଏ.ଡି.ଏମ୍.) ସ୍କୁଲ୍ ବୋଡ଼ିଂରେ ଥାଆଂତି। ସେମାନେ ସେଂଟ୍‌ଅପ୍ ହୋଇ ମାଟ୍ରିକ୍ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାଂତି; ତେଣୁ ଆଉ ସ୍କୁଲ୍‌କୁ ଆସୁନଥାଂତି। ସେଥିଯୋଗୁଁ ସେମାନଂକୁ ଦେଖିବାକୁ ସୁଯୋଗ ମିଳିନାହିଁ; ମାତ୍ର କ୍ଲାସ୍ ପିଲାଂକଠାରୁ ସେମାନଂକର ସୁଖ୍ୟାତି ଶୁଣିଛି। ସମସ୍ତେ ସେମାନଂକୁ ତାରିଫ୍ କରଂତି। ଉଦୟନାଥ ରଥ ଫାଷ୍ଟ୍ ଓ ମାନସିଂ ଦ୍ୱିତୀୟ ସ୍ଥାନ ରଖି ସେଂଟ୍‌ଅପ୍ ହୋଇଥାଂତି। ସମସ୍ତେ କହୁଥାଂତି, ସେମାନେ ଫାଷ୍ଟ୍ ଡିଭିଜନ୍‌ରେ ମାଟ୍ରିକ୍ୟୁଲେଶନ୍ ପାସ୍ କରିବେ; ସ୍କୁଲ୍‌ର ଟେକ ବଢ଼ିବ। ସେମାନେ ପ୍ରଥମ ଡିଭିଜନ୍‌ରେ ମାଟ୍ରିକ୍ ପାସ୍ କରଂତି।

ମୁଁ ଭଲ ଫୁଟ୍‌ବଲ୍ ଖେଳୁଥିଲି। ଆମ କ୍ଲାସ୍‌ର ଏକାଦଶ ମଧ୍ୟରେ ତ ଥିଲି, ଦୁଇ-ତିନି ବର୍ଷରେ ସ୍କୁଲ୍ ଏକାଦଶର ଲେଫ୍‌ଟ ଆଉଟ୍ ବନି ଖେଳିଲି। ପ୍ରଥମ ମ୍ୟାଚ୍‌ଟି କଥା ମନେପଡୁଛି। ଆମ କ୍ଲାସ୍ ସଂଗେ ଶିଲ୍‌ଡ୍ ପ୍ରତିଯୋଗିତାରେ ଏକ ଉପର କ୍ଲାସ୍‌ର ମ୍ୟାଚ୍ ଥାଏ। ମୁଁ ପ୍ରଥମ ଗୋଲ୍‌ଟି ସ୍କୋର୍ କରେ ଏବଂ ଆମ କ୍ଲାସ୍ ବିଜୟୀହୁଏ। ମ୍ୟାଚ୍ ପରେ ମୋତେ କାଂଧେଇ ଆମ କ୍ଲାସ୍ ପିଲାମାନେ ପଡ଼ିଆ ସାରା ବୁଲିଥିଲେ। ଶିଲ୍‌ଡ୍ ନେଇ ଆମେ ପ୍ରଥମେ ହେଡ୍‌ମାଷ୍ଟର ଏବଂ

ତା'ପରେ ଖୋରଧା ଏସ୍.ଡି.ଓ.ଙ୍କ କ୍ୱାର୍ଟରକୁ ଯାଇ 'ଥ୍ରି ଚିୟାରସ୍ ଫର୍... ହିପ୍ ହିପ୍ ହୁର୍‌ରେ' ଧ୍ୱନି ଦେଇ ସଗର୍ବରେ ଫେରିଥିଲୁଁ। ସେଦିନ ରାତି ନଅଟାରେ ମୁଁ ଘରକୁ ଫେରିଲି। ଘରେ ସମସ୍ତେ ବ୍ୟସ୍ତ ଓ ଚିନ୍ତିତ ହୋଇପଡ଼ିଥିଲେ ମୁଁ ସଂଧ୍ୟାରେ ନଫେରିବାରୁ। ସେଟା ମୋର ଷଷ୍ଠ କି ସପ୍ତମ ଶ୍ରେଣୀର କଥା, ଠିକ୍ ମନେପଡୁନାହିଁ। ମୁଁ ସ୍କୁଲ୍ ଟିମ୍‌ର ଖେଳାଳିଭାବେ ଖଡ୍‌ଗପୁର ବି.ଏନ୍.ଆର୍. (ବେଂଗଲ୍ ନାଗପୁର ରେଲ୍‌ଓୟେ) ଟିମ୍ ଓ ଅନ୍ୟ କେତେକ ଟିମ୍ ସଂଗେ ଖେଳିବାର ସୁଯୋଗ ପାଇଥିଲି। ଫୁଟ୍‌ବଲ୍ ଛଡ଼ା ମୁଁ ସ୍କୁଲ୍‌ର ହକି ଟିମ୍‌ରେ ମଧ୍ୟ ଖେଳୁଥିଲି। ଏସବୁ ପାଇଁ ମୁଁ କେତେ ଥର ସ୍ପୋର୍ଟସ୍‌ରେ ପ୍ରାଇଜ୍ ପାଇଛି। ଥରେ ପୁରସ୍କାର ବିତରଣୀ ଉତ୍ସବରେ ପ୍ରାଇଜ୍ ଦେଇଥିଲେ ପୁରୀର କଲେକ୍ଟର ରାୟବାହାଦୁର ଦୟାନିଧି ମିଶ୍ର; ଯାହାଂକର ଫୁଲା ଫୁଲା କାଳିଆ ଭୁଷୁଂଡା ମୁହଁଟା ଏବେ ବି ମନେ ଅଛି। ସେ ପ୍ରାଇଜ୍ ଦେଇ କଟମଟ କରି ମୋତେ ଚାହିଁଥିଲେ।

ଥରେ ଆମ କ୍ଲାସ୍‌ର ପିଲାମାନେ ଜଣେ ଶିକ୍ଷକଂକ ସାଂଗରେ ବରୁଣେଇ ପାହାଡ଼ ଶିଖରକୁ ଯାଇଥିଲୁ। ପାହାଡ଼ ଉପରେ ପାଂଡବଘରା ଗୁଂଫା; ଆମେ ସେଠି ବସି ତଳକୁ ଚାହିଁ ଆନଂଦରେ ବିଭୋର ହୋଇ ଉଠିଥିଲୁଁ। ତଳେ ପଟା ପଟା ଧାନ କିଆରି, ବଂକା ନଈ, ଗାଆଁମାଳ, ଜନପଥ ଓ ତାଳତମାଳ, ଗୁଆଗଛ ଓ ରେଳ ଲାଇନ– ସେପଟେ ଖୋରଧା ଗଡ଼, ଭଂଗା ପାଚେରି, ଦେବମଂଦିର। ଚାରିଆଡ଼ର ଦୃଶ୍ୟ କି ସୁଂଦର, କି ଲୋଭନୀୟ ସତେ! ଜନଶ୍ରୁତି ଅଛି, ପାଂଡବମାନେ ସେ ଗୁଂଫାରେ କିଛି ଦିନ ରହିଥିଲେ। ଫେରିବାବେଳେ ଭାରି ଗଡ଼ାଣିଆ ବାଟ। ଗତି ସ୍ୱତଃ ଦ୍ରୁତ ହୋଇଯାଏ। ସଟାଂଗ୍ ଗଡ଼ାଣିଆରେ ନିଜକୁ ସଂଭାଳିବା ମୁସ୍କିଲ୍। ମାତ୍ର ଦୁଇ ଫୁଟ୍ ଚୌଡ଼ାର ପାହାଡ଼ ରାସ୍ତାଦେଇ ତଳକୁ ଓହ୍ଲାଇବାକୁ ହେବ। ଟିକିଏ ଗୋଡ଼ ଖସିଗଲେ ପାହାଡ଼ ତଳେ ପଡ଼ି ହାଡ଼ ଗୋଡ଼ ଚୂନାଚୂନା ହୋଇଯିବ। ଥରେ ଦି'ଥର ସରୁ ଗଡ଼ାଣିଆ ବାଟରେ ଗୋଡ଼ଖସିଯାଇ ମୁଁ ପ୍ରାୟ ଛିଟିକିପଡ଼ିଥିଲି; ମାତ୍ର ଗୋଟାଏ ଗଛକୁ ଧରିପକାଇ ବଂଚିଗଲି। ତଳକୁ ଓହ୍ଲାଇବାବେଳେ ନିଜ ବେଗ ସଂଭାଳିବା ପ୍ରାୟ ଅସଂଭବ। ତା'ଛଡ଼ା ଆଗରେ ପଛରେ ସମସ୍ତେ ଜୋର୍‌ରେ ଛୁଟିଛଂତି; ଟିକିଏ ଥତମତ ହେଲେ ପଛରୁ କିଏ ଆସି ଧକ୍କା ଦେଇଦେବ। ଯାହାହେଉ, ସେ ଯାତ୍ରାରେ ମୁଁ ରକ୍ଷାପାଇଗଲି। ମୋ' ଜୀବନରେ ତାହାହିଁ ପ୍ରଥମ ଓ ଶେଷ ପର୍ବତାରୋହଣ। ବରୁଣି ପାହାଡ଼ ତଳେ ଶୋଇଛି ଏକ ମୃତ ରାଷ୍ଟ୍ର, ଏକ ମୃତ ସଭ୍ୟତାର ହାଡ଼। ସେ କଂକାଳକୁ ଉଠାଇବ କିଏ? ବେଳେବେଳେ ସ୍କୁଲ୍ ବାରଂଡାରେ ଛିଡ଼ାହୋଇ ନିସ୍ତବ୍ଧ ଭାବରେ ବରୁଣି ପାହାଡ଼ ଆଡ଼କୁ ଅନାଇ ସେଇ କଥାହିଁ ଭାବେ। କିମିତି ଭାରି ଉଦାସ ଲାଗେ। କିଏ ଉଠାଇବ ସେହି କଂକାଳ, କେଜାଣି?

ମୁଁ ଓଡ଼ିଆ ଓ ଇଂରାଜୀରେ ଖୁବ୍ ଭଲକରୁଥିଲି। ପ୍ରାୟ ୬୦ ପର୍ଯ୍ୟଂତ

ନଂବର ରଖୁଥିଲି; ମାତ୍ର ଅଂକକୁ ମୋର ପ୍ରାଣରେ ଡର। ବେଳେବେଳେ ଛିରୋ ମଧ୍ୟ ରଖି ସମସ୍ତଂକୁ ହାର ମନାଇଦେଉଛି। ଗଣିତରେ ମୁଁ ମଂଦ ନୁହେଁ। ବୀଜଗଣିତ ଓ ଜ୍ୟାମିତି ମଧ୍ୟ ପ୍ରଥମେ ଭଲଲାଗୁଥିଲା; ମାତ୍ର କ୍ରମେ ସେ ସବୁ ଜଟିଳ ହେବା ସଂଗେ ସଂଗେ ମୋ ସମସ୍ୟା ମଧ୍ୟ ଜଟିଳ ହେବାକୁ ଲାଗିଲା; ହେଲେ କ୍ଲାସ୍ ପ୍ରମୋଶନ ଅଟକୁ ନାହିଁ। ଥରେ ମୋତେ କ୍ଲାସ୍ ଉଠାଇନଥିଲେ; ସାନଦଦେଇ ଯାଇ ହେଡ୍‌ମାଷ୍ଟରଂକୁ କହିବାରୁ ପ୍ରମୋଶନ୍ ଦେଲେ। ତ୍ରିଗୋନୋମେଟ୍ରି ଓ ଆଲ୍‌ଜେବ୍ରା ମୋର କାଳ ହେଲା।

ମୁଁ ଓଡ଼ିଆ ଇଂରାଜୀ ପ୍ରଭୃତି ପରୀକ୍ଷା ଖାତାରେ, ବେଳେବେଳେ ହାତରେ ସମୟ ଥିଲେ, ନଂବର ଦେଇ ବସେ। ଶେଷ ପୃଷ୍ଠାର ଗୋଟାଏ କଣରେ ନିଜେ ପରୀକ୍ଷକ ସାଜି ପ୍ରଶ୍ନର କ୍ରମିକ ସଂଖ୍ୟା ଲେଖି ଏକ ଅଂଦାଜିଆ ନଂବର ଚଢ଼ାଏ। ଥରେ ଓଡ଼ିଆରେ ମୁଁ ନିଜକୁ ୬୧ ନଂବର ଦେଇଥିଲି। ମନେ ମନେ ଭାବିଥିଲି ଯେ 'ଧର, ଗୋଟାଏ ନଂବର କଟିଯିବ। ଅଂତତଃ ଷାଠିଏ ତ ମିଳିବ।' କୁଂଜବାବୁ ମୋ' ଖାତା ଦେଖି ୫୯ ୧/୨ ନଂବର ଦେବା ପରେ ହଠାତ୍ ଖାତା ପଛରେ ମୁଁ ଦେଇଥିବା ନଂବର ଉପରେ ତାଂକ ଦୃଷ୍ଟି ପଡ଼ିଲା। ସେ ମୋତେ ଆଉ ଦେଢ଼ନଂବର ଦେଇ ମୋ ଦିଆ ନଂବର ସଂଗେ ତାଂକ ନଂବରକୁ ମିଳାଇଦେଲେ। ଏକଥା ସେ ପରୀକ୍ଷା ପରେ ଦିନେ ସାନଦଦେଇଂକି ଯୋରରେ ଗାଧୋଇବାବେଳେ କହିଥିଲେ। ସ୍କୁଲ୍‌ର ମାଷ୍ଟରମାନେ କେତେକ ବୋର୍ଡ଼ିଂ ଛାତ୍ରଂକୁ ଧରି ଆମ ଘର ପଛପଟେ ଖଂଡେ ଦୂରରେ ଥିବା ଯୋରକୁ ବିଲ ବାଟଦେଇ ଗାଧୋଇଆସଂତି। ସେ ଦେଢ଼ନଂବର ଦେବା କଥା ନକହିଥିଲେ ମୋର କଣ ମନେଥାଂତା ଯେ ମୁଁ ନିଜକୁ ଅଟକଳରେ ୬୧ ନଂବର ଦେଇଛି ବୋଲି !! ମୁଁ ସେତେବେଳେ ଖାତା ପଛରେ କଣ ଗାରେଇଥିଲି, ପରୀକ୍ଷା ହଲ୍‌ରୁ ବାହାରିହିଁ ଭୁଲିଯାଇଥିଲି।

ସ୍କୁଲ୍ ଆଗରେ ଗୋଟାଏ ବଡ଼ ଖେଳପଡ଼ିଆ। ସେଠି ବାହାରୁ ଆସିଥିବା ଟିମ୍‌ମାନଂକ ମଧ୍ୟରେ ଟୁର୍ଣାମେଂଟ୍ ଖେଳ ହୁଏ। ତା'ପରେ ସାଗୁଆନ୍ ବଗିଚା; ସେଠି ଫରେଷ୍ଟ୍ ଡିପାର୍ଟମେଂଟ୍ ସାଗୁଆନ ଚାରା ଲଗାଇଥାଂତି। ସେ ପାଖରେ ସେତେବେଳେ ଫରେଷ୍ଟ୍ ଅଫିସର୍ ଥିବା ଉଡସ୍‌ୱର୍ଥ ସାହେବଂକ କୋଠି। ସେ ଶେଷକୁ ଖୋରଧାରେହିଁ ଘରକରି ରହିଗଲେ। ତାଂକର ଗୋଟାଏ ପୁଅ ଥାଏ। ଭାରି ଚଗଲା। ଏୟାର୍ ଗନ୍ ନେଇ ଇଆଡ଼କୁ ସିଆଡ଼କୁ ମାରିବ।

ସ୍କୁଲ୍‌ରେ କେବେ କେବେ କଥକମାନେ ଆସି ଗପ କହଂତି। ଅନର୍ଗଳ କହିଚାଲିଥିବେ। କଥାସରିତସାଗର, ବେତାଳପଂଚବିଂଶତି, ପଂଚତଂତ୍ର ପ୍ରଭୃତି ତାଂକ ଜିଭ ଆଗରେ ଥୁଆ। କେବେ କେବେ ଧନୁର୍ବିଦ୍ୟା ଦେଖାଯାଏ। ଧନୁଆ ନିଜ ସ୍ତ୍ରୀ ନୋଥକୁ ଆଖିରେ ଅଂଧପୁଟୁଳି ବାଂଧି ତୀର ମାରି ହଲାଇଦିଏ। ଯେଉଁ

ଦିନ ଏସବୁ ହୁଏ ସେଦିନ ଦୁଇଟା ପିରିୟଡ୍ ଛୁଟିକରାଯାଏ । ସମସ୍ତେ ହଲ୍‌ରେ ଏକତ୍ର ବସି ଏସବୁ ଦେଖଂତି ।

ଏମାନେ ହେଲେ ସଡ଼କର କଳାକାର । କିଂତୁ ସମାଜ ଏମାନଂକୁ କି ସମ୍ମାନ ଦିଏ ? ବେଶ୍ ଖେଳ ଦେଖିସାରି ପଇସାଏ ଅଧଲାଏ ଫିଂଗିଦେଇ ଚାଲିଯିବେ; କିଂତୁ ସମ୍ମାନ କାହିଁ ?

ଥରେ ପୁରୀ ଏମାରମଠ ମହଂତ ରାମାନୁଜ ଦାସ ପ୍ରାଇଜ୍ ଦେବାକୁ ଆସିଥିଲେ । ମହଂତ ମହାରାଜ ଚିତା-ଚୈତନ୍ୟ ଲଗାଇ ଧଳା ଲୁଂଗି ଭଳି ବସ୍ତ୍ର ପିଂଧି, ଧଳା ପଂଜାବି ଉପରେ ଧଳା ଚାଦର ପକାଇ, କାନ୍‌ଭାସ୍ ଜୋତା ପିଂଧି ଆସିଥାଂତି । ମୁଁ ସ୍ପୋର୍ଟସ୍‌ରେ ପ୍ରାଇଜ୍ ପାଇଥିଲି । ସେ ସ୍କୁଲ୍ ପାଂଠିକୁ ୫୦୦ ଟଂକା ଦେଇଗଲେ; ଦିନେ ଛୁଟି ମଧ ଘୋଷଣାକଲେ । କିଏ କିଏ କୁହାକୁହି ହେଉଥିବାର ଶୁଣିଲି, ମହଂତ ମହାରାଜ କୁଆଡ଼େ ବିହାର-ଓଡ଼ିଶା ବିଧାନସଭାର ସଭ୍ୟ ନିର୍ବାଚିତ ହୋଇଥିଲେ; ମାତ୍ର କେବେ ମୁହଁ ଫାଳକ ଦି'ଫାଳ କରିନାହାଂତି । ଥରେ ତାଂକ ମତ କଣ ବୋଲି ବାଚସ୍ପତି ପଚାରିବାରୁ କହିଥିଲେ ଯେ, ତାଂକ ମତ ରାମାନୁଜୀ ମତ ।

ଆଗରୁ ଥରେ କହିଛି, ଆମର ଗୋଟାଏ କସରା ଘୋଡ଼ା ଥିଲା । ମୁଁ ଆମ ଜଂତୁଜୁଂତା କ୍ୟାଟଲଗ୍‌ରେ ଆମର ଘୋଡ଼ା 'ସୁନା'ର ନାଁ ଦେବାକୁ ଭୁଲିଯାଇଛି । ମୋତେ ଘୋଡ଼ାରେ ବସାଇ ଦୁଇପଟୁ ଦୁଇଜଣ ମୂଲିଆ ତାକୁ ଧରି ଘେରାଏ ବୁଲାଇଆଣୁଥିଲେ । ଘୋଡ଼ା ବାଳରେ ମାମା ଗୋଟାଏ ସୁନା ସୋରିଷିଆ ମାଳ ଗୁଂଥି ରଖିଥିଲା । ଏହାପରେ କହେ, ବୁଢ଼ା ବାହାହେଲେ ତା' ବୋହୂ ପିଂଧିବ ।

ମୁଁ ସପ୍ତମ-ଅଷ୍ଟମ ଶ୍ରେଣୀରେ ପଢ଼ିବାବେଳେ ସାଇକଲ ଚଳାଇ ଶିଖିଗଲି । ମାତ୍ର ଆମେ ବାଡ଼ିପଟ ବିଲ ରାସ୍ତାଦେଇ ସ୍କୁଲ୍‌କୁ ଯାଉଥିଲୁଁ ଏବଂ ଫେରୁଥିଲୁଁ ମଧ ସେଇବାଟେ । ଖେଳିବାକୁ ମଧ ସେଇବାଟେ ସ୍କୁଲ୍ ପଡ଼ିଆକୁ ଯାଉଥିଲି; ମାତ୍ର ଖେଳିସାରି ମୁହଁ ଅଂଧାରରେ ଫେରିବାବେଳେ ବୁଲା ସଡ଼କ ରାସ୍ତାରେ ଖୋରଧା ବଜାର ଦେଇ ଫେରୁଥିଲି । ସଂଧ୍ୟାରେ ଯୋର ଡେଇଁ ବିଲବାଟେ ଘରକୁ ଫେରିବା ସଂଭବ ନଥିଲା । ତେଣୁ ମୋର ସାଇକଲ୍ ନ ଥିଲା କି ଦରକାର ମଧ ନଥିଲା । ବେଳେବେଳେ ମୁଁ ମିଟିଦଦାଂକଠୁ ସାଇକେଲ୍ ମାଗିନେଇ ଆଖପାଖ ଗାଆଁରେ ବୁଲିଆସୁଥିଲି । ଥରେ ଦି'ଥର ହଳଦିଆ ଯାଇଛି । ଡାଡ଼ଙ୍କା ପର୍ବତ ଘାଟିର ରାସ୍ତାରେ ସାଇକେଲ୍ ଠେଲି ଚାଲି ଚାଲି ଯିବାକୁହିଁ ହୁଏ ।

## କାବ୍ୟଚର୍ଯା –

୧୯୨୭-୨୮ ସାଲ ବେଳକୁ ମୋର ଲୁଚାଛପାରେ କାବ୍ୟଚର୍ଯା ଆରଂଭ ହୋଇଯାଇଥିଲା । ୧୯୨୭ ମସିହାରେ କଟକ ଟ୍ରେଡ଼ିଂ କଂପାନୀ ପ୍ରକାଶକରୁଥିବା

'ପଂଚାମୃତ' ନାମକ ଏକ ମାସିକ ଶିଶୁ-ପତ୍ରିକାରେ ମୋର କବିତା ପ୍ରଥମେ ଛାପା ଅକ୍ଷରରେ ପ୍ରକାଶପାଇଥିଲା । ସେ ଆଜିକି ପ୍ରାୟ ଅଠଷଠି ବର୍ଷ ତଳର କଥା । ମୁଁ ବହୁତ ଏକ୍‌ସରସାଇଜ୍ ଖାତାରେ ଖୁବ୍ ଭଲ ଅକ୍ଷରରେ ମୋ କବିତା ସବୁ ଟିପିରଖୁଥିଲି । ସେଥିରୁ ଖଂଡେହେଲେ ମୋ ପାଖରେ ନାହିଁ । ମୁଁ ସେତେବେଳେ ଏକପ୍ରକାର ଗଦ୍ୟ-କବିତା ନିଜ ମନକୁ ଉଦ୍‌ଭାବନ କରିଥିଲି । ସେତେବେଳକୁ ମୁଁ ହୁଇଟ୍‌ମ୍ୟାନ୍ ବା ରବୀଂଦ୍ରନାଥ ପ୍ରଭୃତିଂକ ଲେଖା ପଢ଼ିନଥିଲି । ଥରେ ମିଟିଦଦା ମୋ ବହିପତ୍ର ଆଲମାରି ଭିତରୁ ଏହିସବୁ କବିତା ଖାତା ଆବିଷ୍କାର କରିଥିଲେ । ସେସବୁ ମାମାଙ୍କୁ ଓ ବୋଉକୁ ଦେଖାଇ କହିଲେ, "ଏଇଥିପାଇଁ ପାଠଶାଠରେ ମନ ନାହିଁ; ଖାଲି ବସି ଏଇଆ କରୁଛି ।" ପ୍ରଥମେ ସମସ୍ତେ ମୋ କାବ୍ୟଚର୍ଯ୍ୟାକୁ ବିଷଦୃଷ୍ଟିରେ ଦେଖୁଥିଲେ । ସମସ୍ତେ ଭାବୁଥିଲେ, ମୁଁ କବିତା ଲେଖି ଖରାପ ହୋଇଯିବି; ଭଲ ପାଠଶାଠ ପଢ଼ିବି ନାହିଁ । ତାହା ମଧ୍ୟ ଅନେକାଂଶରେ ସତ୍ୟ ପ୍ରମାଣିତ ହୋଇଥିଲା । ତା'ପରେ ବିଭିନ୍ନ ପତ୍ରପତ୍ରିକାରେ ମୋ' ଲେଖା ଘନଘନ ବାହାରିବା ପରେ ସମସ୍ତଂକର ବିହସ୍ତୁହା ହୋଇଗଲା; ତଥାପି ମୋ ପାଠଶାଠରେ ଗଫଲତି ଦେଖିଲେ ସମସ୍ତେ ମୋ' କବିତା ଲେଖାକୁହିଁ ଦାୟୀକରଂତି ।

ମୋର ବେଶ୍ ମନେଅଛି, ମୁଁ ମୋର ପ୍ରଥମ ଗଦ୍ୟ-କବିତା ବାଲିକାଗଜରେ (ଏକପ୍ରକାର ଗାଢ଼ ମାଟିଆ ରଂଗର କାଗଜ) ଲେଖିଥିଲି । ତାହା ପ୍ରାୟ ଫୁଲସ୍କେପ୍ ୨/୩ ପୃଷ୍ଠାର ହୋଇଥିଲା ।

ଥରେ ଲକ୍ଷ୍ମୀନାରାୟଣ ସାହୁ ମୋ କବିତା ପତ୍ରପତ୍ରିକାରେ ଦେଖି ଆମ ସ୍କୁଲକୁ ଆସି ମୋତେ ଖୋଜିଲେ । ହେଡ୍‌ମାଷ୍ଟ୍ରଂକ କ୍ୱାଟରକୁ ଯାଇ ତାଂକୁ ପଚାରିଲେ । ହେଡ୍‌ମାଷ୍ଟ୍ର ଫୁଟ୍‌ବଲ୍ ପଡ଼ିଆକୁ ଦେଖାଇଦେଇ, କହିଲେ – ସେଇଠି ଖେଳୁଥିବ । ସେ ଆସି ଗୋଲ୍ ପୋଷ୍ଟ୍ କଡ଼ରେ ଅପେକ୍ଷାକଲେ । ଖେଳ ସରିବା ପରେ ପିଲାମାନଂକୁ ପଚାରି-ଉଚାରି ମୋତେ ଭେଟିଲେ । ମୋ ଲେଖାଲେଖି କଥା ପଚାରିଲେ । ବାପାଂକ କଥା ପଚାରି ବୁଝିଲେ । ତା'ପରେ ସେ ଯେତେଥର ଖୋର୍ଦ୍ଧା ଆସଂତି, ଆମ ସ୍କୁଲକୁ ଆସି ମୋତେ ଭେଟଂତି । ସେ ଏକ ଅଦ୍‌ଭୁତ ଅମାୟିକ ଲୋକ ଥିଲେ । ପିଲା ବଡ଼ ଭେଦଭାବ ତାଂକଠାରେ ନଥିଲା । ସମସ୍ତଂକ ସଂଗେ ସମାନସ୍କଂଦ ଭାବେ ବ୍ୟବହାର କରୁଥିଲେ । ଆମ ହେଡ୍‌ମାଷ୍ଟ୍ରେ କିଂତୁ ତାଂକୁ ଭଲ ଚକ୍ଷୁରେ ଦେଖୁନଥିଲେ । ସେ ତାଂକୁ ଆଡ଼ବାଇଆ ବା ସେପରି କିଛି ଭାବୁଥିଲେ । ସେ ମଧ୍ୟ ଅଦ୍‌ଭୁତ ଅଦ୍‌ଭୁତ କବିତାମାନ ଲେଖୁଥିଲେ । ସେ ସାତସାତଟା ସବ୍‌ଜେକ୍ଟରେ ଏମ୍.ଏ. ପାସ୍ କରିଥିଲେ । ଏମ୍.ଏ. ପରୀକ୍ଷା ଦେବା ତାଂକର ଗୋଟାଏ ଝୁଂକ ଥିଲା । ବର୍ଷେ ଦି'ବର୍ଷ ପରେ କେବେ ଦେଖାହେଲେ କହିବେ, "ସଚ୍ଚି, ଏଥର ହିସ୍‌ଟ୍ରିରେ ଏମ୍.ଏ. ପାସ୍ କଲି ।" ତାଂକ ଏମ୍.ଏ. ପାସ୍‌କୁ କିଂତୁ କେହି କିଛି ଗୁରୁତ୍ୱ ଦେଉ ନ ଥାଂତି ବୋଲି ଜଣାଯାଉଥାଏ ।

ତଳ କ୍ଲାସ୍‌ରେ ଅର୍ଥାତ୍ ପଞ୍ଚମ-ଷଷ୍ଠ ଶ୍ରେଣୀରେ ମଧୁସୂଦନ ରାଓଂକ 'ସାହିତ୍ୟ ପ୍ରସଂଗ' ଆମର ପାଠ୍ୟ ଥାଏ। ସେଥିର କେତେକ କବିତା ମୋର ଏବେ ସୁଦ୍ଧା ମନେଅଛି :

> "ରେ ଆତ୍ମନ୍, ନିଦ୍ରା ପରିହରି,
> ଫେଡ଼ି ଚିଂତାର ଲୋଚନ କର କର ନିରୀକ୍ଷଣ
> ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି
> ଭେଟିବାକୁ ମୃତ୍ୟୁ-ସିଂଧୁ କରାଳ ଲହରୀ।" ... ଇତ୍ୟାଦି।

ମଧୁସୂଦନଂକର ଗଦ୍ୟଲେଖା ବଡ଼ କଠିନ। ଏଭଳି ସଂସ୍କୃତବହୁଳ ଗଦ୍ୟରଚନା ସେତେବେଳେ ଲେଖାଯାଉଥିଲା। ତାଂକର 'ଜଳରାଶି' ଓ 'ରାଣୀ ଦୁର୍ଗାବତୀ' ଗୁରୁ-ଗଂଭୀର ସ୍ୱରରେ ନ ପଢ଼ିଲେ ତାର ମହତ୍ତ୍ୱ ଫୁଟେନାହିଁ। ତାଂକର 'ସୀତା ବିସର୍ଜନ' କବିତାରେ ପଢ଼ୁ "ଅଗ୍ରଜ-ଆଜ୍ଞାବହ ସୌମିତ୍ରୀ ରଥୀ ... ବିସର୍ଜି ଭାଗୀରଥୀ ତୀର କାନନେ, ଲେଉଟାଇଲେ ରଥ ବିଷାଦ ମନେ।" ଇତ୍ୟାଦି।

ସେତେବେଳର ପଦ୍ୟ ଓ ଗଦ୍ୟ ଉଭୟ ସାଧୁ ସଂସ୍କୃତ ଶବ୍ଦରେହିଁ ଲେଖାଯାଉଥିଲା। ସେଥିରେ ବାକ୍‌ରୀତି ବା କଥିତ ଭାଷାର ସୁଯୋଗ ଖୁବ୍ କମ୍। ଉପର କ୍ଲାସରେ କ'ଣ ସବୁ ସାହିତ୍ୟ ବହି ପଢ଼ୁଥିଲୁଁ, ତା ଆଜି ଆଉ ମନେନାହିଁ। କିଂତୁ ମଧୁସୂଦନଂକ କବିତାର ପଂକ୍ତି ଆଜିଯାଏ ମନେ ଅଛି।

**ଯାତ୍ରା ଓ ଭ୍ରମଣ –**

ଖୋରଧା ହାଇସ୍କୁଲରେ ପଢ଼ିବା ସମୟରେ ଥରେ ଶଗଡ଼ରେ ଆମେ ଭୁବନେଶ୍ୱର ଯାଇଥିଲୁଁ ଦୀପାବଳୀ ଅମାବାସ୍ୟାରେ ଲିଂଗରାଜ ଦର୍ଶନ କରିବା ଉଦ୍ଦେଶ୍ୟରେ– ମୁଁ, ମାମା, ସାନଦଦେଇ, ବୋଉ ପ୍ରଭୃତି। ରାତିରେ ଗୋଟାଏ କ'ଣ ଚଡ଼ଚଡ଼ି ବାଣ ଫୁଟାଉଥିଲି। ଏକ ସୁକି ପରି ସେ ବାଣଟା; ନିଆଁ ଲାଗିଲେ ଚଡ଼ଚଡ଼ ଶବ୍ଦ କରି ଫୁଟି ଲିଭିଯାଏ। ମୋ ଆଖିଡୋଳାରେ ଗୋଟାଏ ନିଆଁଫୁଲ ପଡ଼ିଗଲା। ଭାରି ବିଂଧାଛିଟା କଲା। ମୁଁ ସେ ରାତିରେ ଜମା ଶୋଇପାରିନାହିଁ; ଖାଲି ଯଂତ୍ରଣାରେ ଛଟପଟ ହେଉଥାଏ। ସେତେବେଳେ ତ ଭୁବନେଶ୍ୱର ଏକ ମଫସଲ ଜାଗା ଥାଏ।

ଥରେ ବି'ଥର ଟ୍ରେନ୍‌ରେ ପୁରୀ ଯାଇଥିଲୁଁ– ମୁଁ, ବଡ଼ଦଦେଇ, ଦଇବାବୁ, ବଡ଼ମାଉଁ ପ୍ରଭୃତି। ଆଉଥରେ ଚିଂତାଦଦାଂକ ସଂଗେ ମୁଁ ମାମା, ଖୁଡ଼ୀ ପ୍ରଭୃତି ଯାଇଥିଲୁ। ବଡ଼ଦେଉଳରେ ଖୁବ୍ ଭିଡ଼। ମଂଦିର ସିପାହି ଫଟ୍‌ଫଟ୍ କରି ବେତଛେଲାରେ ଯାତ୍ରୀମାନଂକୁ ପିଟୁଥାଏ।

ସେତେବେଳେ ମୋର ସବୁଠୁ ବଡ଼ ଯାତ୍ରା ଥିଲା ଶଗଡ଼ରେ ଅନୁଗୁଳ ଯିବା। ଅନୁଗୁଳରେ ନଂଦଦଦା ଥାନା ଅଫିସର ଥାଆଂତି। ମୁଁ, ବଡ଼ଦଦେଇ,

ଦଉବାବୁ ଓ ବଡ଼ମାଉଁ ଯାଉଥାଉଁ। ହଳଦିଆବାଟେ ରଣା ନଈ ଡଂଗାରେ ପାରିହୋଇ ବାଂକୀ, ବାଂକୀରେ ମହାନଦୀ ପାରିହୋଇ ଡିଗିରିଆ, ଆଠଗଡ଼, ଢେଂକାନାଳ ପ୍ରଭୃତି ଦେଇ ଅନୁଗୁଳ ଯିବାକୁ ହୁଏ। ଶଗଡ଼ ସହ ଡଂଗାରେ ନଈ ପାରି ହେବାକୁ ହୁଏ। ଜଂଗଲ ରାସ୍ତାରେ, କେଉଁଠି ବା ପାହାଡ଼ ମଝିରେ ଗଲାବେଳେ କେତେ ସୁନ୍ଦର ଦୃଶ୍ୟ ଆଖିରେ ପଡ଼େ। ସକାଳୁଆ ସୂର୍ଯକିରଣରେ କେଉଁଠି ପଲପଲ ହୋଇ ହରିଣ ଖେଳୁଥିବେ, ଯେପରି କି କଅଁଳ ଖରାରେ ଉଷୁମ ଟାଣୁଛଂତି। ଗଛମାନଂକରେ ହରଡ଼ ଚଢ଼େଇ ନେଂଥି ନେଂଥି ହୋଇଯାଇଥିବେ। କେଉଁଠି ମହୁଲ ଗଛ ମୂଳରେ ଭାଲୁଟାଏ ପତର ଖସଖସ କରି ଉଇ ଖାଉଥିବ। କେଉଁଠି ସଂଢବୁଢ଼େ ଗଧିଆଟାଏ ଅଳସେଇ ହୋଇ ରାସ୍ତା ପାର ହେଉଥିବ। ଠେକୁଆ, ବଣଭୁଆ ତ ଅପର୍ଯାପ୍ତ ଦେଖାଯାଂତି। ବାଟଯାକ ସୁନାରୀ ଫୁଲରେ ଛାଇହୋଇଯାଇଥିବ; ଯେମିତି କିଏ ଗୋଟାଏ ହଳଦିଆ ଗାଲିଚା ବିଛାଇଦେଇଛି କିଏ ଜଣେ ଅଦିନିଆ ଅତିଥି ଆସିବ ବୋଲି। ସଂଧ୍ୟାରେ ନଡ଼ିଆଗଛ ଓ ତାଳଗଛ ବାହୁଂଗାରେ ଜହ୍ନଆଲୁଅ ଝିଲିମିଲି କରୁଥିବ। ରାତି ଦି'ପହର ହେଲେ ଆମେ କେଉଁଠି ଡାକବଂଗଳାରେ ଆଶ୍ରୟନେଉଁ। ସେଇଠି କିଛି ରାଂଧି ଖିଆପିଆ କରି ଶୋଇପଡୁ। ବଡ଼ି ପାହାଂତାରେ ଶଗଡ଼ ଛାଡୁଁ।

ବାଟର ଦୃଶ୍ୟ ଭୁଲିହେବନାହିଁ। କେଉଁଠି ଗାଁ ଶେଷରେ ନିଶୂନ ପଦାରେ କାଶଫୁଲ ଧଳା ଚଅଁର ହଲାଇ ଡାକୁଚି ତ, କେଉଁଠି ଧାଡ଼ି ଧାଡ଼ି କୋରୁହାଁ ଫୁଲ ମହକରେ ପବନ ମତୁଆଳ ହୋଇଉଠୁଛି। ମହୁଲ ଫୁଲ ବାସ୍ନାରେ ନିଦ ଲାଗିଆସିବ; ତେବେ ଭାଲୁକୁ ଡର। ରାତିରେ ଶଗଡ଼ ତଳେ ଲଣ୍ଠଣ ବଂଧାହୋଇଥାଏ। ସେଇ ଯାହା ଟିକିଏ ଆଲୁଅଦିଏ। ଅସ୍ତ୍ରଶସ୍ତ୍ର ବୋଇଲେ ଥାଏ ଖଂଡେ କୁରାଢ଼ି ଓ ଖଂଡେ କଟୁରି। ଖଂଡେ ତଡ଼ା ମଧ ଥାଏ।

ଏମିତି ଦୁଇ-ତିନି ଦିନରେ ଅନୁଗୁଳରେ ପହଂଚିଗଲୁ। ସେଠି ଏକ ମାସ ରହିଲୁଁ; ତା'ପରେ ପୁଣି ଶଗଡ଼ ବାହୁଡାଇଲୁଁ। ଫେରିବା ବାଟରେ ସେମିତି ବହୁ ମନୋରମ ଦୃଶ୍ୟ ଦେଖି ଦେଖି ଲେଉଟିଲୁ। ସେସବୁ ଭୁଲିବାର ନୁହେଁ। ରାସ୍ତା କଡ଼ରେ କେଉଁଠି ତେଂତୁଳି ଗଛ ପତର ଝାଲେରିରେ ସକାଳର ପାଣିଚିଆ ଖରା ଚିକିଚିକି କରୁଥାଏ। କେଉଁଠି ଗାଆଁ ଭିତରେ ବଉଳଫୁଲ ବାସ୍ନାରେ ଗାଁ-ଦାଂଡ ମହକିଉଠୁଥାଏ।

ଡିଗିରିଆ ଗଡ଼ରେ ପହଂଚିବାବେଳକୁ ସୂର୍ଯ ପାହାଡ଼ କଡ଼ରେ ବୁଡ଼ିଯାଉଥାଂତି। ଆମ ଶଗଡ଼ ଆଗରେ ଗୋଟାଏ ଖୋଲା ଶଗଡ଼ରେ ଦଳେ ଲୋକ ଗୋଟାଏ ମସ୍ତବଡ଼ ମଲା ମହାବଳ ବାଘ ନେଇ ଯାଉଥାଂତି; ଜଣେ ବାଣୁଆ ବଂଧୁକ ଧରି ଚାଲିଥାଏ। ପଚାରିବାରୁ କହିଲେ ଯେ ରାଜାସାହେବଂକୁ ବାଘଟାକୁ ଦେଖାଇବାକୁ ନଅରକୁ ନେଇ ଯାଉଛଂତି। ତା' ପରଦିନ ସକାଳେ ରଣାନଈ ପାରହେଲୁଁ।

ବେଣା ଘାସରେ ଛୋଟ ନଈଟା ଢାଂକିହୋଇପଡ଼ିଥାଏ। ଦୁଇକୂଳ ବିଲରେ ପଟା ପଟା ସୋରିଷ ଓ ବିରି କ୍ଷେତ। ବିଲମାଳରେ ହଳଦିଆ ସୋରିଷ ଫୁଲର ସୁନେଲି ଆସ୍ତରଣ ଧୀର ପବନରେ ଦୋହଲୁଥାଏ। ଆମେ ହଳଦିଆଗଡ଼ରେ ପହଂଚି ନଟବର ଅଜାଂକ ଘରେ ଖିଆପିଆ କଲୁ। ଟିକିଏ ବିଶ୍ରାମ ନେଇ ଶଗଡ଼ ଛାଡ଼ିଲୁ। ସଂଜବେଳେ ଗାଆଁରେ ପହଂଚିଯିବୁ, ଭାବିଥିଲୁଁ। ତାଂକ ଘର ଆଗରେ ଗୋଟାଏ ଝଂକା କଇଁଥ ଗଛ। ସେଠି ଗୋଟାଏ ଖାଇ ଥିଲା, ଶଗଡ଼ ଓଲଟିପଡ଼ିଲା। ଆମେସବୁ ଟାଟ ଭିତରେ ଗୋଟାଏ କଡ଼କୁ ଢଳିପଡ଼ିଲୁଁ। ବଡ଼ଦଦେଇ ଆଗରେ ବସିଥିଲେ। ସେ ତଳେ ପଡ଼ିଗଲେ। ତାଂକ ଛାତି ଉପରେ ଶଗଡ଼ ଚକ ମାଡ଼ିଗଲା। ସମସ୍ତେ ହାଁ-ହାଁ କରି ଦୌଡ଼ି ଆସିଲେ। ବଳଦ ଦି'ଟା ଓ ଶଗଡ଼କୁ ଟେକାଟେକି କରି ଉଠାଇଲେ। ବଡ଼ଦଦେଇଂକ ଛାତି ଖୁବ୍ ଦରଜ ହେଉଥାଏ। ସେ କୌଣସିମତେ ଶଗଡ଼ରେ ବସି ଘରେ ପହଂଚିଲେ। ସେ ତ ନିଜେ ଜଣେ ପୋଖତ କବିରାଜ। ଛାଗଳାଦ୍ୟ ଘୃତ ଓ ମହାମାଷ ତୈଳ ତିଆରି କରି ବ୍ୟବହାର କରିବାକୁ ଲାଗିଲେ। ଦୁଇମାସକାଳ ମହାମାଷ ତୈଳ ମାଲିସ କରିବାପରେ ଏବଂ ଛାଗଳାଦ୍ୟ ଘୃତ ବ୍ୟବହାର କରିବାପରେ ତାଂକ ଛାତିର ଦରଜ କମିଲା; ମାତ୍ର ସିଧା ହୋଇ ଚାଲିବାକୁ ତାଂକୁ ଆହୁରି ଅନେକ ଦିନ ଲାଗିଗଲା। ଆଜିକାଲି ହୋଇଥିଲେ ହୁଏତ X-ray କରାଇ ପ୍ଲାଷ୍ଟର ପଟି ବାଂଧି ଶୋଇରହିବାକୁ ହୋଇଥାଂତା କେତେମାସ ପର୍ଯ୍ୟଂତ। ଛାଗଳାଦ୍ୟ ଘୃତ ଓ ମହାମାଷ ତୈଳ ତିଆରିକରିବାପାଇଁ ପ୍ରାୟ ଏକ ମାସରୁ ଅଧିକ ସମୟ ଲାଗିଥିଲା। ସେଥିପାଇଁ ପ୍ରଥମେ ଲୋଡ଼ା ଗୋଟିଏ ନପୁଂସକ ଛେଳି ଏବଂ ପ୍ରାୟ ମହଣେ ଖଂଡେ କ୍ଷୀର, ଅଧମହଣେ ନିରୋଳା ଗୁଆ ଘିଅ। ଏହାଛଡ଼ା ପ୍ରାୟ ଶହେପ୍ରକାର ଚେରମୂଳି। ସେ ଘୃତ ବା ତୈଳ ତିଆରି ହେଉଥିବାବେଳେ ତା'ରି ବାଷ୍ପ ନେଲେ ମଧ୍ୟ ବହୁ ରୋଗ, ବିଶେଷତଃ ବାତରୋଗ ଆରୋଗ୍ୟ ହୋଇଯାଏ। ନପୁଂସକ ଛେଳି ମିଳିବା ବଡ଼ କଷ୍ଟକର ବ୍ୟାପାର; ତେବେ ବଡ଼ଦଦେଇଂକର ବହୁ ଆଖପାଖ ଗାଆଁରେ ଜଣାଶୁଣା ଲୋକ ଥିବାରୁ ଏବଂ ସେ ଜଣେ ବଡ଼ କବିରାଜ ବୋଲି ସମସ୍ତେ ଜାଣିଥିବାରୁ କେଉଁଠି ସେମିତି ନପୁଂସକ ଛେଳିଟିଏ ମିଳିଲେ, ତାଂକୁ ଖବର ପଠାଂତି। ସେଥର ସେ ନପୁଂସକ ଛେଳିଟିକୁ ଦଶକୋଶ ଦୂରର ଏକ ଗାଆଁରୁ ଆଣାଇଥିଲେ।

ସାନଦଦେଇ କେତେ ବର୍ଷ ଖୋରଧା କୋ-ଅପରେଟିଭ୍ ବ୍ୟାଂକର ଅବୈତନିକ ସେକ୍ରେଟାରୀ ଥିଲେ। ସେ ବିଭିନ୍ନ ସ୍ଥାନକୁ ସେଇ ଉପଲକ୍ଷ୍ୟରେ ଯାଉଥିଲେ। ମୁଁ ମଧ୍ୟ ତାଂକ ସଂଗରେ ଥରେଅଧେ ଯାଇଛି ବାଘମାରୀ ବୋଲଗଡ଼ ଆଦି ଅଂଚଳକୁ, ବ୍ୟାଂକର ଅଂଶୀଦାରମାନଂକ ସଭା ସମିତିକୁ। ପୁରୁଣା ମଡେଲ୍ ଫୋର୍ଡ ଗାଡ଼ିରେ ଯାଇ ରାତିରେ ଫେରୁଁ। ଥରେ ଆମ ସଂଗରେ ହେଡମାଷ୍ଟର ବାଂକନିଧିବାବୁ

ଯାଉଥିଲେ। ସଭା ପରେ ଦେଖିଲୁଁ ଗୋଟାଏ ଲୋକ ଗାଆଁ ମଝିରେ ତାଡ଼ି ବିକୁଛି; ବହୁତ ଲୋକ ତାଟିଆ ଗିଲାସ ଧରି ତା' ପାଖରେ ଛିଡ଼ାହୋଇଛନ୍ତି। ଗୋଟାଏ ଲୋକ ମାତାଲ ହୋଇ କ'ଣ ବକୁଛି ଏବଂ ହାତ ଗୋଡ଼ ହଲାଇ କ'ଣ ସବୁ ଅସଭ୍ୟ କଥା କହୁଛି; ଅନ୍ୟମାନେ ହି-ହି କରି ହସୁଛନ୍ତି। ରାସ୍ତାକଡ଼ ଗଛବୃକ୍ଷ ଉପରେ ଅସ୍ତସୂର୍ଯର ନାଲି କିରଣ ବିଂଚିଯାଇଥାଏ। ଚନ୍ଦନ ପୋଖରୀ ହୁଡ଼ାରେ ଦୋଳମଂଡପକୁ ଲାଗି ବାଉଁଶ ବୁଦାର ସରୁ ସରୁ ପତ୍ର-ଗହଳରେ ଛାୟା ଆଲୁଅର ଖେଳ ମୋତେ ଖୁବ୍ ଭଲ ଲାଗୁଥିଲା। ନାଲି ମାଟିର ଗ୍ରାମପଥ, ଗାଆଁ ପାରିହେଲେ ଦୁଇ କଡ଼ରେ କେଉଁଠି ଝୁଦୁବୁଦିଆ ଟାଂଗଣା ଭୂଇଁ ତ, କେଉଁଠି ଅସୁମାରି ଲକ୍ଷ୍ମୀପାଦ ପରି ଦାଂଡିମାଳ, ଧାନବିଲ ଦୂରକୁ ଦୂରକୁ ଲଂବିଯାଇଛି। ଆସିବାବେଳେ ଦେଖିଥିଲି ଜଟାଜୁଟଧାରୀ ବରଗଛର ମଥାନ ଉପରେ ଶଂଖଚିଲଟିଏ ଉଡ଼ିଯାଉଛି। ବରଓହଳ ଧରି ଗାଈଜଗା ପିଲାଟିଏ ଦୋଳି ଖେଳୁଛି ଗୋଠବାହୁଡ଼ା ଗୋଧୂଳି ବେଳାରେ। ଫେରିବାବେଳେ କିଂତୁ କିଟିକିଟି ଅଂଧାର। ଟ୍ୟାକ୍ସିରେ ନିଦ ଲାଗେ। ମୁଁ ଶୋଇପଡ଼େ କିଛିକ୍ଷଣ ପଛ ସିଟ୍‌ରେ ମୁଂଡ ରଖି। ଏମିତି କେତେ ସ୍ମୃତିର ସାରାଂଶ ଛପି ଛପି ରହିଛି ଚେତନ ମନର ଥାକେ ଥାକେ କିଂବା ହଜିଯାଇଛି ନିର୍ଜ୍ଞାନ ମନର ଅତଳ ଛକରେ, ଯାହାର ସଂଧାନ କେବଳ ମିଳିପାରେ ବେଳେବେଳେ ଶିଳ୍ପରେ, କାବ୍ୟରେ; କାରଣ ଶିଳ୍ପହିଁ ହେଉଛି ମଗ୍ନ-ଚୈତନ୍ୟର ଏକମାତ୍ର ସ୍ମୃତିରୂପ।

ଏହିସବୁ ବିଚ୍ଛିନ୍ନ ସ୍ମୃତିର ସମୀକରଣ ପାଇଁ ଲୋଡ଼ାହୁଏ ରୂପକଳ୍ପର ସାହାଯ୍ୟ, କାରଣ ପ୍ରଚଳିତ ଶବ୍ଦ ସେଠି ବେଶୀ କାମ ଦିଏନାହିଁ।

# ସପ୍ତମ ଉଲ୍ଲାସ

## ଖୋରଧା ହାଇସ୍କୁଲରୁ ବିତାଡ଼ିତ

ମୁଁ ଖୋରଧା ହାଇସ୍କୁଲରେ ମ୍ୟାଟ୍ରିକୁଲେସନ୍ ପଢୁଥିବାବେଳେ ସ୍ୱାଧୀନତା ଆଂଦୋଳନ ଯାହା ୧୯୨୨ ମସିହାପରେ ଧିମେଇଯାଇଥିଲା ତାହା କ୍ରମେ ତୀବ୍ର ରୂପ ଧାରଣ କରିବାକୁ ଲାଗିଲା– ହଠାତ୍ ଯେପରି ସାମୁଦ୍ରିକ ଲଘୁଚାପ ଭିତରୁ ପ୍ରଚଂଡ ଝଡ଼ର ଆର୍ବିଭାବ। ୧୯୨୮ ମସିହାରେ ଭାରତରେ 'ସାଇମନ୍ କମିଶନ୍' ପାଦଦେବା ମୁହୂର୍ତ୍ତରୁ ଏହି ଆଂଦୋଳନ ପ୍ରଖର ହେବାକୁ ଲାଗେ। ପଂଜାବ-କେଶରୀ ଲାଲା ଲଜପତ୍ ରାଏ ସାଇମନ୍ କମିଶନ୍ ବିରୁଦ୍ଧରେ ଶୋଭାଯାତ୍ରା ପରିଚାଳନା କରୁଥିବାବେଳେ ପୁଲିସ୍ ତାଂକ ଛାତିରେ ପ୍ରଚଂଡ ଲାଠି ପ୍ରହାରକରେ। ଲାଲାଜୀ ଗୁରୁତର ଭାବରେ ଆହତ ହୋଇ କିଛିଦିନ ପରେ ସହିଦତ୍ୱ ପ୍ରାପ୍ତ ହୁଅଂତି। ଏହାପରେ ସାରା ଦେଶରେ ଜନଗଣଂକ ମଧ୍ୟରେ ବ୍ରିଟିଶ୍-ବିରୋଧୀ ଆଂଦୋଳନ କ୍ରମେ ପ୍ରସାରଲାଭକରେ। ସବୁଆଡ଼େ ସାଇମନ୍ କମିଶନ୍ ବିରୁଦ୍ଧରେ ସଭା ଓ ଶୋଭାଯାତ୍ରାମାନ କରାଯାଉଥାଏ। ସମସ୍ତଂକ ମୁହଁରୁ ଧ୍ୱନି ଉଠୁଥାଏ ''ଗୋବ୍ୟାକ୍ ସାଇମନ୍ . . . ସାଇମନ୍ ଫେରିଯାଅ।''

ଖୋରଧାରେ ବହୁ କଂଗ୍ରେସ ସଭା ହେଉଥାଏ। ଜଣେ ହାଡ଼ି ଢେଂଗୁରା ବଜାଇ ଚାରିଆଡ଼େ କହିଯାଏ ଯେ, 'ଆଜି ଅମୁକ ସ୍ଥାନରେ ଅମୁକ ସମୟରେ କଂଗ୍ରେସ ସଭା ହେବ। ସମସ୍ତେ ଯୋଗଦେବେ।' ବାହାରୁ କୌଣସି ବଡ଼ ନେତା ଆସୁଥିଲେ ତାଂକ ନାମ ମଧ୍ୟ ସଂକ୍ଷେପରେ କହିଯାଏ। ଦେଖିଲାବେଳକୁ ସଭାସ୍ଥଳରେ ହଜାର ହଜାର ଲୋକ ବଡ଼ ଆଗ୍ରହରେ ଆସି ଜମାହୋଇ ଥାଆଂତି; ତାଂକ ଭିତରେ ବହୁ ନାରୀ ଓ ପିଲା ମଧ୍ୟ ଥାଆଂତି।

କେବେ କେବେ ପୋଲିସ୍ ଏହି ହାଡ଼ିଟିକୁ ବହୁତ ଧମକାଧମକି କରେ। ଗାଁ ଛାଡିଆ ମଧ୍ୟ ତାକୁ ଅଟକାଇବାକୁ ଚେଷ୍ଟାକରେ; ମାତ୍ର ସବୁ ବିଫଳ ହୋଇଯାଏ। ଖୋରଧା ନିକଟସ୍ଥ 'ପଲ୍ଲା' ଗ୍ରାମରେ ସପ୍ତାହକେ ଥରେ ଖୁବ୍ ବଡ଼ ହାଟବସେ। ସେ ହାଟରେ ଜଣେ ଦୁଇଜଣ ଖଦଡ଼ ଓ ଗାଂଧୀଟୋପିପିଂଧା କଂଗ୍ରେସ ପିଲା ସଭା ହେବ ବୋଲି କହିଯାଆଂତି। ତାହା ଖୋରଧାର ଚାରିପାଖ ଗାଁମାନଂକରେ ରାତିକ ଭିତରେ ବ୍ୟାପିଯାଏ।

ଥରେ ଖୋରଧା ହାଇସ୍କୁଲ ବୋର୍ଡିଂ ପଛପଟ ପଲଟନ୍ ପଡ଼ିଆରେ ଏକ ବଡ଼ କଂଗ୍ରେସ ସଭା ହେଉଥାଏ। ପଂଡିତ ନୀଳକଂଠ ଦାସ ଓ ଯଦୁମଣି ମଂଗରାଜ

ସଭାରେ ବକ୍ତୃତା ଦେବାକୁ ଆସିଥାଂତି । ସାନଦଦେଇ (ମୋର ଜନ୍ମିତ ପିତା ପ୍ରସନ୍ନ କୁମାର ରାଉତରାୟ, ଯେ କି ଖୋରଧାର ଜଣେ ବଡ଼ ମୁକ୍ତାର ଥିଲେ) ସଭାପତିତ୍ୱ କରୁଥାଂତି । ଆମେ କେତେକ ଖୋରଧା ହାଇସ୍କୁଲର ଛାତ୍ର, ହେଡ଼ମାଷ୍ଟ୍ରଂକ ନିଷେଧାଜ୍ଞା ନ ମାନି ସେ ସଭାରେ ଯୋଗଦେଇଥାଉଁ । ହେଡ଼ମାଷ୍ଟ୍ରେ କଡ଼ା ଫତିଆ ଜାରିକରିଥାଂତି– କୌଣସି ସ୍କୁଲ ପିଲା କଂଗ୍ରେସ ସଭାରେ ଯୋଗଦେଇ ପାରିବନାହିଁ । ଯଦୁମଣି ମଂଗରାଜ ମଝିରେ ମଝିରେ କହୁଣୀ ପର୍ଯ୍ୟଂତ ପଂଜାବିର ହାତକୁ ଟେକି ବିଧା ଉଠାଇ ଯେତେବେଳେ କହଂତି "ଏହି ବାଂଜନିଧି ପିଲାଂକୁ ସଭାକୁ ଆସିବାକୁ ମନାକରିଛି । ସେ କିଏ ମନାକରିବାକୁ..." ଆମେସବୁ ଖୁସିରେ ପାଟିକରି ହସିଉଠୁ; ଖୁବ୍ ଜୋର୍‌ରେ ତାଳିମାରୁଁ ।

ସଭାର ସବୁ ଖବର କିଂତୁ ହେଡ଼ମାଷ୍ଟ୍ରଂକ ପାଖରେ ପହଂଚିଯାଏ । ତାଂକର ଚରମାନେ ମଧ ସଭାକୁ ଆସିଥାଂତି ଗୋଇଂନ୍ଦାଗିରି କରିବାକୁ । ତା' ପରଦିନ ହେଡ଼ମାଷ୍ଟ୍ରେ ଆମଭିତରୁ କେତେକଂକୁ ତାଂକ ଅଫିସ୍‌କୁ ଡକାଇନେଇ ଧମକାଧମକି କରଂତି । ସେ ଜାଣଂତି ଯେ ମୋ ବାପା ସଭାରେ ସଭାପତିତ୍ୱ କରୁଥିଲେ । ତେଣୁ ମୋତେ ବେଶି କିଛି କହିଲେ ନାହିଁ; କିଂତୁ ମନେ ମନେ ରାଗ ରଖିଥାଂତି ।

ଭଗତ୍ ସିଂ –

ସେତେବେଳେ ଜାତୀୟ ଆଂଦୋଳନ ସଂଗେ ସଂଗେ ସଂତ୍ରାସବାଦର ଉଗ୍ରତା କ୍ରମେ ପ୍ରସାରଲାଭକରୁଥାଏ । ସହିଦ୍ ଭଗତ୍ ସିଂ ଥିଲେ ଆମର ପ୍ରେରଣାର ଉତ୍ସ । ୧୯୨୮ ମସିହା ଡିସେଂବର ୧୭ ତାରିଖ ଅପରାହ୍ଣ ୪.୨୦ ମିନିଟ୍‌ରେ ଲାହୋର୍‌ରେ ପୁଲିସ୍ ଉପଅଧୀକ୍ଷକ ସାଂଡାର୍ସ ନିଜ ମଟର ସାଇକେଲରେ ତାଂକ ଅଫିସକୁ ଯାଇ ଦୁଆର ଖୋଲିବାକୁ ଯାଉଥିବାବେଳେ ସେଠାରେ ଛକିରହିଥିବା ସର୍ବଶ୍ରୀ ଭଗତ୍ ସିଂ, ଶିବରାମ ରାଜଗୁରୁ, ଶୁକଦେବ୍ ଓ ଚଂଦ୍ରଶେଖର ଆଜାଦ୍ ତାଂକୁ ଗୁଳିକରି ମାରିଥିଲେ । ଲାହୋରର ପୁଲିସ୍ ଅଧୀକ୍ଷକ ଜେ.ଏ. ସ୍କଟ୍ ୩୦ ଅକ୍ଟୋବର ୧୯୨୮ ମସିହାରେ ଲାଲା ଲଜପତ୍ ରାଏଂକ ଛାତିରେ ଗୁରୁତରଭାବେ ଲାଠିମାଡ଼ କରଂତି; ଫଳରେ ଲାଲାଜୀ କଠିନ ଆଘାତ ପାଇ ୧୭ ନଭେଂବରରେ ହସ୍‌ପିଟାଲ୍‌ରେ ମୃତ୍ୟୁବରଣ କରଂତି । ଭଗତ୍ ସିଂ ସାଂଡାର୍ସକୁ ହତ୍ୟାକରି ତହିଁର ଚରମ ପ୍ରତିଶୋଧ ନେଇଥିଲେ । ଚଂଦ୍ରଶେଖର ଆଜାଦ୍ ପୁଲିସ୍ ସହିତ ସଂଘର୍ଷରେ ନିହତ ହୁଅଂତି । ଭଗତ୍ ସିଂ, ଶୁକଦେବ ଓ ରାଜଗୁରୁ ଫେରାର୍ ହୋଇଯାଆଂତି । ପରେ ୧୯୨୯ ମସିହା ଏପ୍ରିଲ୍ ୮ ତାରିଖ ଦିଲ୍ଲୀଠାରେ କେଂଦ୍ରୀୟ ଆସେମ୍ବ୍ଲି ଉପରେ ସେ ଓ ତାଂକ ସାଥୀମାନେ ବୋମା ପକାଇଥିଲେ ଏବଂ ଲାଲ୍ 'ପାରଚା' ବାଂଟିଥିଲେ । ତା'ପରେ ସେମାନେ ପୁଲିସ ହାତରେ ଧରା ଦିଅଂତି । ୧୯୩୧ ମସିହା ମାର୍ଚ୍ଚ ୨୩ ତାରିଖରେ ଭଗତ୍‌ସିଂ, ରାଜଗୁରୁ, ଶୁକଦେବଂକୁ ଲାହୋର କେଂଦ୍ରୀୟ ଜେଲ୍‌ରେ ଅପରାହ୍ଣ ୫ଟା ସମୟରେ ଫାଶି ଦିଆଯାଇଥିଲା ।

ଭାରତର ସବୁଆଡ଼େ ଭଗତ୍‌ସିଂ ପ୍ରଭୃତିଂକୁ ମୁକ୍ତି ଦେବାପାଇଁ ପ୍ରବଳ ଦାବି ହେଉଥାଏ । ଚାରିଆଡ଼େ ସଭା-ଶୋଭାଯାତ୍ରା ଓ ବିକ୍ଷୋଭ ପ୍ରଦର୍ଶନ କରା-ଯାଉଥାଏ । ଗାଂଧିଜୀଂକ ବିରୋଧରେ ମଧ ସେ କାହିଁକି ଭଗତ୍‌ସିଂ ପ୍ରଭୃତିଂକୁ ମୁକ୍ତିଦେବାପାଇଁ ବା ସେମାନଂକ ମୃତ୍ୟୁଦଂଡ କୋହଳ କରିବାପାଇଁ ଦାବି କରୁନାହାଂତି, ସେଥିଯୋଗୁଁ ଚାରିଆଡ଼େ ପ୍ରବଳ ବିକ୍ଷୋଭ ପ୍ରଦର୍ଶନ କରାଯାଉଥାଏ ।

୧୯୨୯ ମସିହା ଡିସେଂବର ମାସରେ ଲାହୋର ଅଧିବେଶନରେ କଂଗ୍ରେସ 'ପୂର୍ଣ ସ୍ୱାଧୀନତା ଭାରତର ଲକ୍ଷ୍ୟ' ବୋଲି ପ୍ରସ୍ତାବ ଗ୍ରହଣକଲା । ଏହା ପୂର୍ବରୁ ପଂଡିତ ମୋତିଲାଲ ନେହେରୁ କମିଟିଂକ ରିପୋର୍ଟ ଅନୁଯାୟୀ (ଏହାକୁ 'ନେହେରୁ ରିପୋର୍ଟ' କୁହାଯାଏ) ଭାରତର ଲକ୍ଷ୍ୟ ବ୍ରିଟିଶ୍ ରାଜତ୍ୱ ଅଧୀନରେ 'ସ୍ୱାୟତ୍ତଶାସନ' ଥିଲା । ଏଥିରେ ବ୍ରିଟିଶ୍ ଶାସନ ଅଧୀନରେ ଭାରତ ଏକ ସ୍ୱୟଂଶାସିତ ରାଷ୍ଟ୍ର ହୋଇ ରହିଥାଂତା । ୧୯୩୧ ମସିହା ଜାନୁୟାରୀ ୫ ତାରିଖ ଦିନ ଗାଂଧିଜୀ ଓ ଭାରତର ତତ୍କାଳୀନ ଭାଇସ୍‌ରାଏ ଲର୍ଡ ଇରୱଇନଂକ ମଧ୍ୟରେ ଏକ ଚୁକ୍ତି ସଂପାଦିତ ହୁଏ । ଏହି ଚୁକ୍ତିକୁ 'ଗାଂଧୀ-ଇର୍‌ଉଇନ୍ ଚୁକ୍ତି' କୁହାଯାଏ । ଏହି ଚୁକ୍ତିରେ ଗାଂଧିଜୀ କାହିଁକି ଭଗତ୍‌ସିଂ ପ୍ରଭୃତିଂକ ମୁକ୍ତି କଥା ସର୍ତ ରଖିଲେ ନାହିଁ, ସେଥିଯୋଗୁଁ ତାଂକ ବିରୋଧରେ ଦେଶର ଚରମପଂଥୀ ତରୁଣମାନେ ଅତ୍ୟଂତ କ୍ରୁଦ୍ଧ ହୋଇଉଠିଥିଲେ ।

ଅମର ସହିଦ୍ ଭଗତ୍‌ସିଂ ତରୁଣ ଭାରତର ଏକ ପ୍ରବାଦ-ପୁରୁଷରେ ପରିଣତ ହୋଇଥିଲେ । ସେ ଥିଲେ ଘୃଣିତ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୋଧର ଜାତୀୟ ପ୍ରତିରୋଧର ଏକ ଜ୍ୱଳଂତ ପ୍ରତୀକ । ମୋ ଜୀବନର ଆଦ୍ୟପର୍ବରେ ସେ ପ୍ରଚୁର ପ୍ରେରଣା ଦେଇଛଂତି । ଲାଲାଜୀଂକ ମୃତ୍ୟୁର ପ୍ରତିଶୋଧ ନେଇ ସମଗ୍ର ଜାତିର ସ୍ୱାଭିମାନ ରକ୍ଷାପାଇଁ ସେ ଚରମ ଆତ୍ମବଳୀ ଦେଇଛଂତି । ସେ ଥିଲେ ସତରେ ଏକ ଐତିହାସିକ ମୁହୂର୍ତ । ତାଂକୁ ଏ ଜାତି କଦାପି ଭୁଲିନପାରେ । ପରେ ଭଗତ୍ ସିଂକ ପରିବାରର କେବଳ ଜଣଂକ ସହିତ ମୋର ସାମାନ୍ୟ ପରିଚୟ ହୋଇଥିଲା । ସେ ହେଉଛଂତି ତାଂକ ସାନଭଉଣୀ ଅମୀତା ବିବି । ପ୍ରାୟ ଦଶବର୍ଷ ତଳେ ଦିଲ୍ଲୀରେ ଏସ୍.ୟୁ.ସି.ଆଇ. ଆନୁକୂଲ୍ୟରେ ଗାଲିବ୍ ହଲ୍‌ରେ ଆୟୋଜିତ ଏକ ଜାତୀୟ ଶିକ୍ଷା କନ୍‌ଭେନ୍‌ସନ୍‌ରେ ମୁଁ ସମ୍ମାନିତ ଅତିଥିଭାବେ ଯୋଗଦେବାର ସୁଯୋଗ ପାଇଥିଲି । ସେହି ଅବସରରେ ମୁଁ ତାଂକୁ ମଂଚ ଉପରେ ଭେଟିଥିଲି ଏବଂ ତାଂକ ସହିତ କିଛି ସମୟ କଥାବାର୍ତା ହୋଇଥିଲା । ମୋ ବାମପଟରେ ଜଷ୍ଟିସ୍ କ୍ରିଷ୍ଣା ଆୟାର୍ ବସିଥିଲେ । ଅମୀତା ଜ୍ୱରରେ ଥରୁଥାଂତି । ତଥାପି ଦୀର୍ଘ ତିନିଘଂଟା କାଳ ମୋ ପାଖ ଚଉକିରେ ବସିରହିଥିଲେ; ସମାବେଶରେ ସଂକ୍ଷିପ୍ତ ଭାଷଣ ମଧ ଦେଇଥିଲେ । ପ୍ରଚଳିତ ସମାଜବ୍ୟବସ୍ଥା ଓ ଶାସନକଳ ବିରୋଧରେ ତାଂକର ଶାଣିତ ମତାମତ ସେ ପ୍ରକାଶ କରିଥିଲେ । ସେ ଏହି ସମାବେଶରେ ଯୋଗଦେବାପାଇଁ ଲୁଧିଆନାଠାରୁ କାର୍‌ରେ ତାଂକର ଚାଳିଶ୍-ପଇଁଚାଳିଶ୍ ବର୍ଷ ବୟସ୍କ ପୁଅଂକ ସହିତ ଦିଲ୍ଲୀ ଆସିଥିଲେ ।

ତାଂକ ଚେହେରାଟି ମୋର ଏବେ ମଧ ମନେଅଛି। ଠିକ୍ ଭଗତ୍‌ସିଂ ପରି ତୀକ୍ଷ୍ଣ ନାସା ଓ ଉଜ୍ଜ୍ୱଳ ବୁଦ୍ଧିଦୀପ୍ତ ଦୁଇଟି ଆଖି। ଗୌର ତନୁ, ପାତଳା ଛିପ୍ ଛିପ୍ ଭଦ୍ରମହିଳା, ମନେହେଉଥିଲା, ଯେପରି ଏକ ନିଅାଁର ପୁତୁଳି। ସେ ଆଜି ଆଉ ନାହାଂତି। ଦୁଇ-ତିନିବର୍ଷ ତଳେ ତାଂକର ମୃତ୍ୟୁଖବର ସଂବାଦପତ୍ରରୁ ଜାଣି ଅତ୍ୟଂତ ମର୍ମାହତ ହୋଇଥିଲି। ସେ ଥିଲେ ଭଗତ୍‌ସିଂକ ସହିତ ଆମର ଶେଷ ଯୋଗସୂତ୍ର। ଭଗତ୍‌ସିଂ ମୋ ଉପରେ ପ୍ରବଳ ପ୍ରଭାବ ପକାଇଥିଲେ। ଆଜି ସେହି ଭଗତ୍ ସିଂକ ପଂଜାବରେ କ'ଣ ନ ହେଉଛି ?

ଆମ ସ୍କୁଲରେ ଜାତୀୟ ଚେତନାର ସ୍ପର୍ଶ ପ୍ରାୟ ସମସ୍ତଂକ ଚିତ୍ତକୁ ଆଲୋଡ଼ିତ କରୁଥାଏ। ଦିନେ ରାତିରେ ସ୍କୁଲ ଛାତ ଉପରେ ଜାତୀୟପତାକା ଉଡ଼ାଇଦିଆଗଲା। ସକାଳୁ ଉଠି ସମସ୍ତେ ଦେଖିଲାବେଳକୁ ସ୍କୁଲ ଉପରେ ତ୍ରିରଂଗା ପତାକା ଫର୍‌ଫର୍ ହୋଇ ଉଡୁଛି। ହେଡ୍‌ମାଷ୍ଟ୍ରେ ତାଂକର ସ୍କୁଲ ନିକଟବର୍ତ୍ତୀ କ୍ୱାଟର୍‌ରେ ରାଗରେ ଥରିବାକୁ ଲାଗିଲେ। ସେ ପତାକା ଓହ୍ଲାଇଦେବାକୁ କୁଳିଆ ଦପ୍ତରୀକୁ ଆଦେଶ ଦେଇ ସ୍କୁଲକୁ ବାହାରିଲେ। ମୋର ସତୀର୍ଥ ଶ୍ରୀ ନୃସିଂହ ଚରଣ ସାମଂତସିଂହାର ଓ ବ୍ରଜଂକୁ ଏ କାଂଡ କରିଛଂତି ବୋଲି ଦାୟୀ କରି ସ୍କୁଲରୁ ବହିଷ୍କାର କରିଦିଆଗଲା। ନୃସିଂହର ଘର ବାଣପୁରରେ। ସେ ପରେ ପାର୍ଲିଆମେଂଟ୍ ମେଂବର ହୋଇଥିଲେ। ମୋତେ ରଷ୍ଟିକେଟ୍ କରିନଥିଲେ। କିଂତୁ ପରେ ଅନ୍ୟ ଏକ ଉପାୟରେ ସ୍କୁଲରୁ ବିତାଡ଼ିତ କରିଦେଲେ। ତାହା ହେଉଛି ମୁଁ ଦୁଇମାସର ଦରମା ଦେଇନଥିବାରୁ ସ୍କୁଲ ନିୟମ ଅନୁସାରେ ମୋ ନାମ କଟିଯାଇଥିଲା। ମୁଁ ଘରୁ ଠିକ୍ ସମୟରେ ଦରମା ଆଣିଥିଲି; ମାତ୍ର ବହୁତ ଦିନ ସ୍କୁଲକୁ ଯାଇ ନଥିବାରୁ ଦିନକୁ ଏକଅଣା କରି ଜୋରିମାନା ପଡ଼ିଥିଲା। ମୁଁ ସ୍କୁଲ ନ ଯିବା କଥା ଏବଂ ସେଥିପାଇଁ ଜୋରିମାନା ପଡ଼ିଥିବା କଥା ଘରେ କେହି ଜାଣିନଥିଲେ। ମୋ ନାମ କଟିଯାଇଛି ବୋଲି ସାନ ଦଦେଇଂକୁ କଚେରିରେ ସ୍କୁଲ କିରାଣି ବ୍ରଜବାବୁ କହିଦେଲେ। ସାନଦଦେଇ ଆସି ଘରେ କହିଲେ। ଘରେ ହଇଚଇ ପଡ଼ିଗଲା। ବୋଉ (ମୋର କଳ୍ପିତ ମା') ମୋତେ ଖୁବ୍ ଗାଳିଦେଲା। ସେମାନେ ଭାବିଥିଲେ, ମୁଁ ଦରମା ଟଂକା କୁଆଡ଼େ ଖରଚ୍‌କରିଦେଇଛି। ମାତ୍ର ମୁଁ ସେ ଟଂକା ମୋର କାଠ ସିଂଦୁକରେ ରଖିଥିଲି। ମୁଁ ଅନେକ ଦିନ ପରେ ସ୍କୁଲ ଯାଉଛି ବୋଲି କହି ସ୍କୁଲ ବୋର୍ଡିଂ ପଛରେ ଥିବା ପଲ୍‌ଟନ୍ ପଡ଼ିଆରେ ସରସ୍ୱତୀ ମଂଦିରରେ ବସି କିଛି ଲେଖାଲେଖି କରୁଥାଏ କିଂବା କଂଗ୍ରେସ୍ କ୍ୟାଂପ୍‌କୁ ଯାଇ ସମୟ କଟାଇଥାଏ। ସେ ସରସ୍ୱତୀ ମଂଦିରଟି ଜଣେ ମାରୁଆଡ଼ି ଭଦ୍ରଲୋକ ତୋଳାଇଥାଂତି। ମୋର କାଠ ବାକ୍ସ ଖୋଲାଯାଇ ଦେଖାଗଲା ଯେ ସେଠାରେ ଦରମା ଟଂକା କେତୋଟି ଝକ୍‌ଝକ ହୋଇ ଶୋଭାପାଉଛଂତି; ସେଥିରୁ ଗୋଟିଏ ପଇସା ମଧ ମୁଁ ଉଡ଼ାଇ ନାହିଁ। ଯାହାହେଉ ମୋତେ ତା' ପରଦିନ ବୋଉ ଦରମା ଟଂକା ସଂଗେ ଜୋରୀମାନା

ପଇସା ମିଶାଇ ଦେବାରୁ ମୁଁ ତାହା ସ୍କୁଲରେ ଦାଖଲକରାଇ ନାମ ଲେଖାଇଲି । କ୍ଲାସକୁ ଗଲି; ମାତ୍ର ପୁଣି କେତେ ମାସ ପରେ ସେହି ଅବସ୍ଥା । ପୁଣି ଦରମା ନଦେବାରୁ ନାମ କଟିଗଲା । ମାତ୍ର ଏଥର ହେଡ୍‌ମାଷ୍ଟ୍ରେ ମୋର ନାମ ଲେଖାଇବା ଦରଖାସ୍ତରେ ଦସ୍ତଖତ କଲେ ନାହିଁ । ହେଡ୍‌ମାଷ୍ଟ୍ରେ ମଂଜୁର ନ କଲେ ନାମ ଲେଖାଯାଇପାରିବ ନାହିଁ; ଫଳରେ ମୋର ଖୋରଧା ହାଇସ୍କୁଲରେ ପଢ଼ିବା ସେଇଠି ଶେଷହେଲା । ଦରମା ନଦେଇ ନାମ କଟିଗଲେ ଝୋରିମାନା ସହ ଦରମା ଦେଇ ପୁଣି ନାମ ଲେଖାଇବା ଏକ ସାଧାରଣ କଥା; ମାତ୍ର ମୋ ବେଳକୁ ଏହାର ବ୍ୟତିକ୍ରମ କରାଗଲା । ମୋର ସେତେବେଳକୁ ମ୍ୟାଟ୍ରିକ୍ ଫାଷ୍ଟ୍‌କ୍ଲାସ୍ ବା ଏକାଦଶ ଶ୍ରେଣୀ ହୋଇଥିଲା । ହେଡ୍‌ମାଷ୍ଟ୍ରେ ମୋତେ ସ୍କୁଲରୁ ବିତାଡ଼ିତ କରିବା ପାଇଁ ବରାବର ସୁଯୋଗ ଖୋଜୁଥିଲେ; ମାତ୍ର ଖୋଲାଖୋଲି ନୃସିଂହ ଓ ବ୍ରଜଂଙ୍କ ପରି ମୋତେ ରଷ୍ଟିକେଟ୍ କରିବାପାଇଁ ସାହସ କରୁନଥିଲେ । ମୋତେ ସ୍କୁଲରୁ ତଡ଼ିବାପାଇଁ ତାଂକୁ ଏକ ଅପୂର୍ବ ସୁଯୋଗ ମିଳିଗଲା ।

**ମୋର ପ୍ରଥମ କବିତା ଓ ଗଦ୍ୟ-କବିତା –**

ଏହାପରେ ସ୍କୁଲରୁ ବିଦାହୋଇ ମୁଁ ମୁକ୍ତ ଚଢ଼େଇଟି ପରି ଏଣେତେଣେ ବୁଲିବାକୁ ଲାଗିଲି । କବିତା ଲେଖିବାକୁ ବହୁତ ସମୟ ମିଳିଲା । ମୁଁ ସେତେବେଳେ ନିଜ ମନକୁ ବଡ଼ ବଡ଼ ଗଦ୍ୟ-କବିତା ମଧ୍ୟ ଲେଖିଥିଲି । ଛଂଦ କବିତା ଏବଂ ଏପରିକି ରାଗରାଗିଣୀଯୁକ୍ତ କେତେକ ସଂଗୀତଧର୍ମୀ ଗୀତି-କବିତା ମଧ୍ୟ ଲେଖିଥିଲି । ସେତେବେଳେ ବାଲୁବଜାରରେ ଥିବା କଟକ ଟ୍ରେଡ଼ିଂ କଂପାନୀ 'ପଂଚାମୃତ' ନାମକ ଏକ ମାସିକ ଶିଶୁ-ପତ୍ରିକା ପ୍ରକାଶ କରୁଥାଂତି । ମୋର କବିତାଟିଏ ୧୯୨୮ ମସିହାରେ ସେଥିରେ ପ୍ରକାଶପାଇଥିଲା । ତା'ର ଶୀର୍ଷକ ବା ବିଷୟବସ୍ତୁ ମୋର ଆଜି ଆଉ ମନେନାହିଁ । ସେତେବେଳେ ବ୍ରହ୍ମପୁରରୁ ସ୍ୱର୍ଗୀୟ ଶଶିଭୂଷଣ ରଥଂକ ସଂପାଦନାରେ 'ଦୈନିକ ଆଶା' ପ୍ରକାଶପାଉଥାଏ । ତାହାହିଁ ଥିଲା ଓଡ଼ିଶାରେ ଏକମାତ୍ର ଦୈନିକ ପତ୍ରିକା । ଖବରକାଗଜ କହିଲେ ଲୋକେ 'ଦୈନିକ ଆଶା'କୁହିଁ ବୁଝୁଥିଲେ ଏବଂ ଖବରକାଗଜକୁ ଆଶା ବୋଲି କହୁଥିଲେ । 'ସମାଜ' ସେତେବେଳକୁ ସାପ୍ତାହିକ ପତ୍ରିକାଭାବେ ପ୍ରକାଶପାଉଥାଏ । ଏହାକୁ ଦୈନିକ ପତ୍ର ହେବାକୁ ବହୁବର୍ଷ ଲାଗିଥିଲା । ମୁଁ 'ଦୈନିକ ଆଶା'ରେ ଖୋରଧା ସଂପର୍କରେ କେତୋଟି ଖବର ଛାପିଥିଲି, ଅବଶ୍ୟ ତାହା ବେନାମୀ ଲେଖା ।

**ଲବଣ-ସତ୍ୟାଗ୍ରହ ଓ ମୁଁ –**

୧୯୩୦ ମସିହା ଜାନୁଆରୀ ୨୬ ତାରିଖରେ ଗାଂଧିଜୀ ଐତିହାସିକ ଲବଣ-ଆଇନ୍ ଅମାନ୍ୟ କରିବାପାଇଁ ଡାକରା ଦେଇଥିଲେ । ଶାଂତିପୂର୍ଣ୍ଣ ଭାବରେ ଲବଣ-ଆଇନ୍ ଭଂଗ କରିବା ଏହି ଆଂଦୋଳନର ଉଦ୍ଦେଶ୍ୟ ଥିଲା । ଇଂରେଜ ସରକାର ସଂପୂର୍ଣ୍ଣଭାବେ ଲୁଣ ବ୍ୟବସାୟ ନିୟଂତ୍ରଣ କରୁଥାଂତି । ଗାଂଧିଜୀ ଚାହିଁଲେ,

ଲୁଣମରା ଅଧିକାର ଲୋକଂକ ହାତକୁ ଆସୁ ଏବଂ ଲୋକମାନେ ସ୍ୱାଧୀନ ଭାବରେ ଲୁଣ ମାରି ତହିଁର କାରବାର କରଂତୁ । ଲୁଣ ବା ସମୁଦ୍ରର ପାଣି ଈଶ୍ୱରଂକର ଦାନ । ସେଥିରୁ ବିଦେଶୀ ସରକାର କୋଟି କୋଟି ଟଂକା ଫାଇଦା ଉଠାଇବ କାହିଁକି ? ୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖ ଦିନ ଗାଂଧିଜୀ ତାଂକର ଐତିହାସିକ 'ଦାଂଡିଯାତ୍ରା' ସାବରମତୀ ଆଶ୍ରମରୁ ଆରଂଭକଲେ । ପ୍ରାୟ ଦୁଇଶହ ମାଇଲ ଅତିକ୍ରମ କରି ମହାତ୍ମା ଗାଂଧି ଏପ୍ରିଲ ୫ ତାରିଖ ଦିନ ଦାଂଡିରେ ପହଂଚି ଲବଣ ଆଇନ୍ ଭଂଗକଲେ । ତାଂକ ସହିତ ହଜାର ହଜାର ସଂଖ୍ୟାରେ ନରନାରୀ ଲବଣ ଆଇନ୍ ଅମାନ୍ୟ କରିଥିଲେ । ଦେଶରେ ସର୍ବତ୍ର ଲବଣ-ସତ୍ୟାଗ୍ରହ ବ୍ୟାପିଯାଇଥିଲା । ଏହା ସାଂଗକୁ ଆରଂଭ ହୋଇଥିଲା ବିଦେଶୀ ଦ୍ରବ୍ୟ ବର୍ଜନ ଓ ହରତାଳ । ଦେଶର ଚାରିଆଡ଼େ ଅଦ୍‌ଭୁତ ଉତ୍ସାହ ଓ ଉନ୍ମାଦନା ଦେଖାଦେଇଥିଲା । ହଜାର ହଜାର ଦେଶପ୍ରେମୀ ନରନାରୀ ସମୁଦ୍ରକୂଳରେ ଲୁଣ ମାରି ଏବଂ ବିଦେଶୀ ଦ୍ରବ୍ୟ ପୋଡ଼ି କାରାବରଣ କରିଥିଲେ । ମାତ୍ର ବ୍ରିଟିଶ୍ ସରକାର ଏହି ଆଂଦୋଳନକୁ ଦୃଢ଼ ହସ୍ତରେ ଦମନ କରିଥିଲେ । ଲକ୍ଷ ଲକ୍ଷ ଲୋକଂକୁ ଜେଲ୍‌ରେ ଭର୍ତି କରି ଏବଂ ଲାଠିମାଡ଼ରେ ରକ୍ତାକ୍ତ କରି ବ୍ରିଟିଶ୍ ସରକାର ନିଜର ବ୍ୟାବସାୟିକ ସ୍ୱାର୍ଥ ରକ୍ଷା କରିବାକୁ ଆପ୍ରାଣ ଚେଷ୍ଟା କରିଥିଲା । ମୌଲାନା ଆଜାଦ୍, ପଂଡିତ ନେହେରୁ ପ୍ରଭୃତି ତୁଂଗ ନେତାମାନେ ମଧ୍ୟ ପୁଲିସର ନିର୍ମମ ଲାଠିମାଡ଼ରୁ ରକ୍ଷାପାଇନ ଥିଲେ । ଗାଂଧିଜୀ ଓ ନେହେରୁ ପ୍ରମୁଖ ସମସ୍ତ ନେତାମାନଂକୁ ଗିରଫ କରି ଜେଲ୍‌ରେ ଫିଂଗିଦିଆଯାଇଥିଲା ଏବଂ କଂଗ୍ରେସକୁ ବେଆଇନ ଘୋଷଣା କରାଯାଇଥିଲା ।

ଓଡ଼ିଶାରେ ଏହି ଆଂଦୋଳନ ଏମୁଂଡ଼ୁ ସେମୁଂଡ ବ୍ୟାପିଯାଇଥିଲା । ପିଲା ବଡ଼ ସମସ୍ତେ ଏଥିରେ ପ୍ରବଳ ଭାବରେ ଉଦ୍‌ବୁଦ୍ଧ ହୋଇଥିଲେ । ସମସ୍ତେ ଭାବିଥିଲେ, ଗାଂଧିଜୀଂକର ଏହି ଆଂଦୋଳନ ସଫଳ ହେଲେ ବର୍ଷକ ଭିତରେ ସ୍ୱରାଜ୍ୟ ମିଳିଯିବ; କାରଣ ଏହି ଆଂଦୋଳନ ଆରଂଭ ହେବା ପୂର୍ବରୁ ୧୯୨୯ ମସିହାରେ ଗାଂଧିଜୀ ଓଡ଼ିଶା ଭ୍ରମଣ କରିଥିଲେ । ଭଦ୍ରକ, କଟକ, ପୁରୀ ଓ ବ୍ରହ୍ମପୁରରେ ବିରାଟ ଜନସଭାମାନଂକରେ ସେ ଜୋର୍‌ର ସହିତ କହିଥିଲେ ଯେ ତାଂକର କାର୍ଯକ୍ରମ 'ପୂର୍ଣ ପ୍ରାଣରେ ପାଳିତ ହେଲେ ବର୍ଷକ ମଧରେ ସ୍ୱରାଜ୍ୟ ନିଶ୍ଚୟ ହୋଇଯିବ ।' ଲବଣ ସତ୍ୟାଗ୍ରହ ଓଡ଼ିଶାରେ ପ୍ରବଳ ପ୍ରଭାବ ପକାଇଥିଲା । ବାଲେଶ୍ୱର ଜିଲ୍ଲାର ଇଂଚୁଡ଼ିଠାରେ ସହସ୍ର ସହସ୍ର ନରନାରୀ ଲବଣ ଆଇନ ଭଂଗ କରି ଜେଲ୍ ବରଣ କରିଥିଲେ ଓ ଲାଠିମାଡ଼ ଖାଇଥିଲେ । ଓଡ଼ିଶାରେ ନାରୀମାନଂକ ଏହି-ଭଳି ଅଦ୍‌ଭୁତ ଜାଗରଣ ଓ ଆତ୍ମତ୍ୟାଗ ବହୁଦିନ ଧରି ପୂର୍ବରୁ ଦେଖାଯାଇନଥିଲା ।

ଇଂଚୁଡ଼ି ଲବଣ-ସତ୍ୟାଗ୍ରହରେ ଯୋଗଦେବାପାଇଁ ମୁଁ ମନେ ମନେ ସ୍ଥିର କରିଥିଲି, ଘରେ କେହି ଏକଥା ଜାଣିନଥିଲେ । ମୁଁ ସେତେବେଳେ କଂଗ୍ରେସର ଏହି ଆଂଦୋଳନର ଜଣେ ପରିଚାଳକ ବ୍ରହ୍ମପୁର୍‌ର ଶ୍ରୀ ନିରଂଜନ ପଟ୍ଟନାୟକଂକୁ

ଖଂଡିଏ ଚିଠି ଲେଖିଥିଲି (ସେ ହେଉଛଂତି ପୂର୍ବତନ ଏମ୍.ପି. ଶ୍ରୀମତୀ ଜୟଂତୀ ପଟ୍ଟନାୟକଂକ ପିତା)। ସେ ଉତ୍ତରରେ ଖଂଡେ ପୋଷ୍ଟକାର୍ଡ଼ ଲେଖି ମୋତେ ଜଣାଇଥିଲେ ଯେ ମୁଁ ଗଲାବେଳେ ସଂଗରେ ଧୋତି, ଗାମୁଛା, ଓ ଗୋଟିଏ ତାଟିଆ ନେଇଯିବା ଦରକାର। ମାତ୍ର ମୋର ଇଂଚୁଡ଼ି ଯିବା ସଫଳ ହେଲାନାହିଁ। ସେତେବେଳେ ବାଲେଶ୍ୱରରେ (ନଂଦଦଦା, ମୋ ବାପାଂକ ଛାଆଁଳା ଭାଇ) ପୋଲିସ ଇନିସ୍‌ପେକ୍ଟର୍ ଥାଆଂତି। ତାଂକର ପୁରୁଣା ମଡେଲ୍‌ର ହୁଡ୍ ଲଗା ଗୋଟାଏ ଫୋଡ୍ ଗାଡ଼ି ଥାଏ। ସେଥିରେ ସେ ଇଂଚୁଡ଼ି ଯିବା ଆସିବା କରୁଥାଂତି। ସେ କେଉଁଠୁ ମୁଁ ଇଂଚୁଡ଼ି ଯିବାକଥା ଶୁଣି ସାନଦଦେଇଂକି ଇଂରେଜୀରେ ଖଂଡେ ପୋଷ୍ଟକାର୍ଡ ଲେଖିଲେ– 'ବୁଦ୍ଧା ଇଂଚୁଡ଼ି ଆସିବ ବୋଲି ଖବରପାଇଲି। ସେ ଯଦି ଆସେ ମୁଁ ତାକୁ ଆରେଷ୍ଟ୍ କରିବି।' ଘରେ ସମସ୍ତେ ଜାଣିଗଲେ ମୁଁ ଇଂଚୁଡ଼ି ଯିବାକୁ ତିଆର୍‌ହେଉଛି। ସମସ୍ତେ ଏକ ବାକ୍ୟରେ ମୋତେ ବାଧା ଦେବାକୁ ଲାଗିଲେ। ସେତେବେଳେ ଡାକଘରମାନଂକରେ ଆମ ଚିଠିପତ୍ରର ବ୍ୟାପକ ଭାବରେ ଯାଂଚହେଉଥାଏ ପୁଲିସ୍ ସି.ଆଇ.ଡିଂକ ଦ୍ୱାରା। ବୋଧହୁଏ ମୋ ଚିଠିରୁ ସି.ଆଇ.ଡି. ଏ ସୂଚନା ପାଇଥିଲେ ଏବଂ ତାହା ଇଂଚୁଡ଼ିର ପୋଲିସ କର୍ତୃପକ୍ଷଂକୁ ଜଣାଇଥିଲେ। ୧୯୩୧ ମସିହା ଜାନୁୟାରୀ ମାସରେ ଗାଂଧି-ଇରଉଇନ୍ ଚୁକ୍ତି ହୋଇଯିବା ଫଳରେ ସମସ୍ତ ରାଜନୈତିକ ନେତା ଜେଲ୍‌ରୁ ଖଲାସହୋଇଗଲେ ଏବଂ ମହାତ୍ମା ଗାଂଧି ବିଲାତରେ ବସିବାକୁ ଯାଉଥିବା ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକ ଜଂତାରେ ପଡ଼ିଗଲେ। ଏଥିପୂର୍ବରୁ ପ୍ରଥମ ଗୋଲ୍‌ଟେବୁଲ୍ ବୈଠକକୁ କଂଗ୍ରେସ ବାସଂଦ କରିଥିଲା। ଗାଂଧିଜୀ ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକରେ ଯୋଗଦେବାକୁ ରାଜିହେବା ଫଳରେ ସମସ୍ତ ଆଂଦୋଳନ ପ୍ରତ୍ୟାହୃତ ହୋଇଗଲା। ସମସ୍ତ ନେତା ଓ କର୍ମୀ ଜେଲ୍‌ରୁ ଖଲାସହୋଇଗଲେ। ମୋର ଆଉ ଇଂଚୁଡ଼ି ଯିବା ହେଲାନାହିଁ। ଏହି ବୈଠକ ୧୯୩୧ ମସିହା ଡିସେଂବର ମାସରେ ବିଲାତରେ ବସିଥିଲା।

ମାତ୍ର ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକ ସଂପୂର୍ଣ ବ୍ୟର୍ଥ ହୋଇଯିବାରୁ ଗାଂଧିଜୀ ୧୯୩୨ ମସିହାରେ ପୁନର୍ବାର ଆଇନ୍ ଅମାନ୍ୟ ଆଂଦୋଳନ ଆରଂଭ କରଂତି। ସେହି ବର୍ଷ ଅଗଷ୍ଟ ମାସରେ ଇଂଲଂଡର ତତ୍‌କାଳୀନ ପ୍ରଧାନମଂତ୍ରୀ ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ ହରିଜନମାନଂକୁ ହିଂଦୁ ସମାଜରୁ ପୃଥକ୍ କରିବା ଉଦ୍ଦେଶ୍ୟରେ ହରିଜନମାନେ ସ୍ୱତଂତ୍ର ଭାବରେ ଭୋଟ ଦେବାର ଅଧିକାର ବ୍ୟବସ୍ଥା ଘୋଷଣା କରଂତି। ଗାଂଧିଜୀ ଏହାର ପ୍ରତିବାଦରେ ଜେଲ୍‌ରେ ୨୧ ଦିନ ପର୍ଯଂତ ପ୍ରାୟୋପବେଶନ କରିଥିଲେ। ପରେ ଗୋଟାଏ ମିଳାମିଶା ହୋଇ ହିଂଦୁ ଓ ହରିଜନ ସଂପ୍ରଦାୟ ମିଳିତ ଭୋଟଦ୍ୱାରା ନିର୍ବାଚନ ଲଢ଼ିବାପାଇଁ ଏଥିରେ କେତେକ ବ୍ୟବସ୍ଥା ରଖାଗଲା।

ଏହା ପରେ ଅବଶ୍ୟ ବିଲାତରେ ୧୯୩୨ ମସିହା ନଭେଂବର ମାସରେ ଏକ ତୃତୀୟ ଗୋଲଟେବୁଲ୍ ବୈଠକ ବସିଥିଲା। ଏହାପରେ ପାର୍ଲିଆମେଂଟରେ

ଏକ କମିଟି ଗଠନ କରାଯାଇଥିଲା। ସେହି କମିଟିର ସୁପାରିସ୍ ଅନୁଯାୟୀ ଭାରତ ଶାସନ ଆଇନ୍ (୧୯୩୫) ପ୍ରଣୟନ କରାଯାଇଥିଲା। ଏହି ଆଇନ ଅନୁସାରେ ଭାରତରେ ରାଷ୍ଟ୍ରସଂଘ ଗଠନକରାଯାଇଥିଲା। ଏହି ଆଇନ ଅନୁଯାୟୀ ଯେଉଁ ନିର୍ବାଚନ ହୋଇଥିଲା, ସେଥିରେ ଓଡ଼ିଶାରେ କଂଗ୍ରେସ ପୂର୍ଣ ସଂଖ୍ୟାଗରିଷ୍ଠତା ହାସଲକରିଥିଲା।

୧୯୩୪ ମସିହା ମାର୍ଚ୍ଚ ମାସରେ ଗାଂଧିଜୀ ଓଡ଼ିଶା ଆସଂତି। ସେ ପୁରୀରେ ପହଂଚି ସେଠାରୁ ସ୍ଥାନେ ସ୍ଥାନେ ବିଶ୍ରାମ ନେଇ ପଦଯାତ୍ରାରେ କଟକ ଆସଂତି। ତାଂକୁ କୌଣସି କାର୍ଯବଶତଃ ଓଡ଼ିଶା ଛାଡ଼ି ଅନ୍ୟତ୍ର ଯିବାକୁ ପଡ଼େ। କିଛିଦିନ ପରେ ସେ ପୁଣି ଓଡ଼ିଶା ଆସି କଟକ ଜିଲ୍ଲା ଚଂପାପୁରଠାରୁ ପଦବ୍ରଜରେ ବରି, ଯାଜପୁରବାଟେ ଭଦ୍ରଖ ପର୍ଯଂତ ଯାଇ ସେହିଠାରେ ତାଂକ ଯାତ୍ରା ଶେଷ କରଂତି। ('ଓଡ଼ିଶା ଇତିହାସ' – ଶ୍ରୀ ମହତାବ)

**ମୋ ଉପରେ ଗାଂଧିଜୀଂକ ପ୍ରଭାବ –**

ଗାଂଧିଜୀ ଥିଲେ ମୋର ପ୍ରଧାନ ପ୍ରେରଣାର ଉତ୍ସ। ମୋର ସମଗ୍ର ଛାତ୍ରଜୀବନ ତାଂକୁ କେଂଦ୍ର କରି ଗଢ଼ିଉଠିଥିଲା। ତାଂକର ଆପୋଷ-ଆଲୋଚନାମୂଳକ କାର୍ଯକ୍ରମ ଅନେକ ସମୟରେ ଅସଂତୋଷଜନକ ମନେହେଲେ ମଧ୍ୟ ସାମଗ୍ରିକ ଭାବରେ ତାଂକ ପ୍ରଦର୍ଶିତ ଅହିଂସା ମାର୍ଗହିଁ ତତ୍କାଳୀନ ପରିବେଶରେ ଏକମାତ୍ର ଉପଯୋଗୀ ପଂଥା ଥିଲା। ତାହା ପଛରେ ଥିଲା ଏକ ଗଭୀର ବାସ୍ତବବାଦ। ଆବେଦନ ନିବେଦନ ବା ମେମୋରାଂଡମ୍ ଯୁଗର ରାଜନୀତିଠାରୁ ତାହା ଥିଲା ଅଧିକ ସକ୍ରିୟ ଓ ଯୁଗୋପଯୋଗୀ। ଗାଂଧିଜୀ ଥିଲେ ଭାରତୀୟ ରାଜନୀତିରେ ଏକ ନୂତନ ମୋଡ଼ର ପଥିକୃତ୍ ଓ ପିତୃ-ପ୍ରତିମା; ଯାହା କି ସେ ଏପର୍ଯଂତ ରହିଛଂତି। କାଳ ତାଂକୁ ମଳିନ କରିପାରିନାହିଁ। ଦେଶ ତାଂକୁ ଖଂଡିତ କରିପାରିନାହିଁ।

ଗାଂଧିଜୀଂକର ବହୁ ପ୍ରଭାବ ମୋ ଉପରେ ସଂଚାରିତ ରହିଛି। ମୁଁ ବହୁଦିନ ଚରଖାରେ କିଂବା ତକଲିରେ ସୂତା କାଟିଛି। ସୂତା କାଟିବାରେ ଗୋଟାଏ ଆନଂଦ ମିଳେ। ମୁଁ ପିଲାଦିନୁ ଏପର୍ଯଂତ ବରାବର ଖଦଡ଼ ପିଂଧିଆସୁଛି। ଖଦଡ଼ ଛଡ଼ା ଆଉ କିଛି ପିଂଧିହୁଏନି; ପିଂଧିଲେ ଅଡୁଆଲାଗେ, କେବଳ ବିଦେଶରହଣି ଛଡ଼ା, ମୁଁ ବହୁବର୍ଷ କେବଳ ଭାତ ଓ ସିଝା ତରକାରି ଖାଉଥିଲି। ମାଛ, ମାଂସ ଓ ପିଆଜ, ରସୁଣ ଛାଡ଼ିଦେଇଥିଲି। ଗାଧିଜୀଂକୁ ଟିକିଏ ଟପିଯାଇ ମୁଁ ବହୁବର୍ଷ ଗୋଡ଼ରେ ଜୋତା କିଂବା ଚପଲ ପିଂଧୁ ନଥିଲି। ଦେହର ଏକମାତ୍ର ପରିଧାନ ଥିଲା ଖଦଡ଼ ଚାଦର; କାମିଜ ବା ପଂଜାବି ନୁହେଁ। ବାଳ ମଧ୍ୟ କୁଂଡାଉନଥିଲି। ତାହାଛଡ଼ା ମୁଁ ନିୟମିତ ପ୍ରାଣାୟାମ ସାଧନା କରୁଥିଲି। ରୋଜ ସଂଧ୍ୟାବେଳେ ଘଂଟାଏ ପଦ୍ମାସନରେ ବସି ଇଡ଼ା, ପିଂଗଳା ଓ ସୁଷୁମ୍ନା ନାଡ଼ୀ ମଧ୍ୟରେ ବାୟୁଚାଳନା କରିବା ମୋର ଏକ ନିୟମିତ ଅଭ୍ୟାସ ଥିଲା। ପୂରକ, ଧାରକ, ରେଚକ ଭଲ ଭାବରେ ଅଭ୍ୟାସ କରୁଥିଲି। ଗାଂଧିଜୀଂକ ପ୍ରାକୃତିକ ଚିକିତ୍ସା ମୁଁ କେବେ ପରୀକ୍ଷା କରି ଦେଖିନାହିଁ।

# ଅଷ୍ଟମ ଉଲ୍ଲାସ

## ଦେଶମିଶ୍ରଣ-ଆଂଦୋଳନ

ଏଣେ ଓଡ଼ିଶାରେ ଦେଶମିଶ୍ରଣ-ଆଂଦୋଳନର ହାଓ୍ୱା ପ୍ରବଳ ବେଗରେ ବୋହୁଥାଏ । ୧୯୧୨ ମସିହାରେ ଇଂରେଜି ସରକାର ଗଣଆଂଦୋଳନ ଚାପରେ ପଶ୍ଚିମବଂଗ ଓ ପୂର୍ବବଂଗକୁ ମିଶାଇ ଦିଅଂତି; ଓଡ଼ିଶାକୁ ବଂଗଳାରୁ ନେଇ ବିହାର ସହିତ ମିଶାଇ ଏକ 'ବିହାର-ଓଡ଼ିଶା ପ୍ରଦେଶ' ଗଠନ କରଂତି । ସମସ୍ତ ଓଡ଼ିଆ ଭାଷାଭାଷୀ ଅଂଚଳକୁ ନେଇ ଏକ ସ୍ୱତଂତ୍ର ଓଡ଼ିଆ ପ୍ରଦେଶ ଗଠନ କରିବାକୁ ବହୁଦିନରୁ 'ଉତ୍କଳ ସମ୍ମିଳନୀ' ଆଂଦୋଳନ କରିଆସୁଥିଲା । ଏହାର ନେତୃତ୍ୱ ନେଇଥିଲେ ମଧୁସୂଦନ ଦାସ, ଗୋପବଂଧୁ ଦାସ, ପଂଡିତ ନୀଳକଂଠ ଦାସ, ପଂଡିତ ଗୋଦାବରୀଶ ମିଶ୍ର, ବ୍ୟାସକବି ଫକିରମୋହନ, ବ୍ରଜସୁଂଦର ଦାସ ପ୍ରମୁଖ ନେତୃବୃନ୍ଦ । ଇଂରେଜ ସରକାର ଓଡ଼ିଶାକୁ ଏକ ସ୍ୱତଂତ୍ର ପ୍ରଦେଶ କରିବା ଦିଗରେ ଅନୁଧ୍ୟାନ କରିବା ପାଇଁ କେତୋଟି କମିଟି ମଧ୍ୟ ବସାଇଥିଲେ; ଯଥା– ଓଡେନାଲ୍ କମିଟି । ପାରଳା ମହାରାଜା ଶ୍ରୀ କୃଷ୍ଣଚଂଦ୍ର ଗଜପତି ଦେବ ବିଲାତରେ ଗୋଲ୍‌ଟେବୁଲ୍ ବୈଠକରେ ଓଡ଼ିଶାର ଦାବି ଦୃଢ଼ଭାବରେ ଉପସ୍ଥାପିତ କରିଥିଲେ । ୧୯୩୫ ମସିହାରେ ଓଡ଼ିଶା ସ୍ୱତଂତ୍ର ପ୍ରଦେଶ ହେବ ବୋଲି ଇଂରେଜ ସରକାର ନିଷ୍ପତ୍ତି ନେଲେ । ଗଂଜାମ, ପୁରୀ, କଟକ, ବାଲେଶ୍ୱର ଓ ସଂବଲପୁର ଜିଲ୍ଲାକୁ ନେଇ ଏକ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ୧୯୩୬ ସାଲ ଏପ୍ରିଲ ପହିଲାରୁ ଜନ୍ମଲାଭକଲା । ଏଥିରେ କିଂତୁ ମେଦିନାପୁର, ସିଂହଭୂମି ଏବଂ ମଧ୍ୟପ୍ରଦେଶ, ଗଂଜାମର କେତୋଟି ଓଡ଼ିଆଭାଷୀ ଅଂଚଳକୁ ଅଂତର୍ଭୁକ୍ତ କରାଗଲାନାହିଁ । ଏହା ଏକ ମସ୍ତ ବିଡ଼ଂବନା, ପୂର୍ବରୁ ମେଦିନାପୁର ଓ ସିଂହଭୂମି ଜିଲ୍ଲା ଦୁଇଟି ଦାସଆପଣେଂକ ଅମଳରୁ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ଅଧୀନରେ ରହିଥିଲା; ମାତ୍ର ସ୍ୱତଂତ୍ର ଓଡ଼ିଶା ପ୍ରଦେଶରୁ ଏହା ବାଦ୍ ପଡ଼ିଲା । ତେଣୁ ଆମେ ପାଇଲୁ କେବଳ ଏକ ଖଂଡିତ ପ୍ରଦେଶ ।

ଏହି ସ୍ୱତଂତ୍ର ପ୍ରଦେଶ ଆଂଦୋଳନରେ ମୁଁ କିଛି ଭାବରେ ଜଡ଼ିତ ଥିଲି । ପୁରୀଠାରେ ଏକ ନିଖିଳ ଉତ୍କଳ ଯୁବସମ୍ମିଳନୀ, ମୁଁ ଓ ଗୌରୀ କାନୁନ୍‌ଗୋ ଯୁଗ୍ମସଂପାଦକ ଥାଇ, ଆୟୋଜନ କରିଥିଲୁ । ଗୌରୀ ସରଳା ଦେବୀଂକ ସାନଭାଇ । ଏହା ୧୯୩୩ ସାଲର କଥା । ସେହି ସମ୍ମିଳନୀ ଓଡ଼ିଶାର ପ୍ରଥମ ଯୁବସମ୍ମିଳନୀ । ସେଥିରେ ଓଡ଼ିଶାର ବିଶିଷ୍ଟ ଆଡ୍‌ଭୋକେଟ୍ ଓ ପରେ ଓଡ଼ିଶା ହାଇକୋର୍ଟର ପ୍ରଥମ ପ୍ରଧାନ ବିଚାରପତି ଶ୍ରୀ ବୀରକିଶୋର ରାୟ ସଭାପତିତ୍ୱ କରିଥିଲେ ।

ଏଥିରେ ଆମେ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ପାଇଁ ଜୋରସୋରରେ ଦାବି କରିଥିଲୁ। ସମଗ୍ର ଓଡ଼ିଶା ଓ ବିଚ୍ଛିନ୍ନାଂଚଳମାନଂକରୁ ପ୍ରାୟ ଏକହଜାର ପ୍ରତିନିଧି ଏଥିରେ ଯୋଗଦେଇଥିଲେ। ଏହାଛଡ଼ା ବହୁ ସଭାସମିତି ମଧ୍ୟ କରିଥିଲୁ ଏବଂ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଦାବିକରିଥିଲୁ।

ପୂର୍ଣାଂଗ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଆମର ପିଲାଦିନରୁ ସ୍ୱପ୍ନ ଥିଲା। ମାତ୍ର ଆମେ ଯେଉଁ ଖଂଡିତ ପ୍ରଦେଶ ପାଇଲୁ, ତାହା ପ୍ରକୃତରେ ବଡ଼ ନୈରାଶଜନକ ଥିଲା। ୧୯୩୬ ମସିହା ଏପ୍ରିଲ୍ ମାସ ପହିଲାରୁ ସ୍ୱତଂତ୍ର ପ୍ରଦେଶ ଜନ୍ମ ହୋଇଥିବାରୁ ଅନେକେ ତାଂହାକୁ 'ଏପ୍ରିଲଫୁଲ୍' ବୋଲି କହି ଥଟ୍ଟାକରୁଥିଲେ। ସେ ଯାହାହେଉ, ସ୍ୱତଂତ୍ର ପ୍ରଦେଶ ହେବାପରେ ଓଡ଼ିଶା ହାଇକୋର୍ଟ ଏବଂ ଓଡ଼ିଶା ବିଶ୍ୱବିଦ୍ୟାଳୟ ପ୍ରଭୃତିର ଜନ୍ମହେଲା। ଏଥିପୂର୍ବରୁ ଓଡ଼ିଶା ପାଟନା ହାଇକୋର୍ଟ ଓ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା। ସେ ଯାହାହେଉ, 'ନାହିଁ ମାମୁଠାରୁ କଣାମାମୁ ଭଲ' ନୀତିରେ ଏହା ଅବଶ୍ୟ ସ୍ୱାଗତଯୋଗ୍ୟ।

**ଅଗ୍ନିଯୁଗର ଆହ୍ୱାନ –**

ଗାଂଧିଜୀଂକ ପ୍ରବର୍ତ୍ତିତ ଅହିଂସା ମାର୍ଗରେ ସ୍ୱାଧୀନତା ହାସଲ ହୋଇପାରିବ ନାହିଁ ବୋଲି ଜନତାର ଏକ ଅଂଶ ବିଶ୍ୱାସ କରୁଥିଲେ; ଫଳରେ ସେମାନେ ନେତାଜୀ ସୁଭାଷଚଂଦ୍ର ବୋଷଂକ ସଶସ୍ତ୍ର ସଂଗ୍ରାମ ପଂଥା ପ୍ରତି ଆକୃଷ୍ଟ ହୋଇଥିଲେ। ଗାଂଧିଜୀ ନେତାଜିଂକ ସଶସ୍ତ୍ର ସଂଗ୍ରାମଧ୍ୟେୟକୁ 'ପାର୍କ ସର୍କସ୍‌ର ସର୍କସ୍' ବୋଲି ପରିହାସକରୁଥିଲେ। ସେ ଯାହାହେଉ, ୧୯୦୩ ମସିହାରୁ ବଂଗଭଂଗ ବିରୋଧୀ ଆଂଦୋଳନ ଆରଂଭ ହେବା ପରେ ଏହାର ପ୍ରଥମ ପର୍ଯାୟରେ ଶ୍ରୀ ଅରବିଂଦଂକଠାରୁ ଆରଂଭକରି ବହୁ ବିପ୍ଳବୀ ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରିଥିଲେ। ଆଲ୍ଲିପୁର ବୋମା ମାମଲାରେ ଶ୍ରୀ ଅରବିଂଦ ଓ ତାଂକ ସାନଭାଇ ବାରୀଂଦ୍ର ଘୋଷ ଜଡ଼ିତଥିଲେ। ମାଡାମ୍ କାମା ଓ ସବର୍‌କାର ପ୍ରମୁଖ ବିପ୍ଳବୀମାନେ ଭାରତର ବ୍ରିଟିଶ୍ ସରକାରଂକ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମର ଆୟୋଜନ କରିଥିଲେ। ସହିଦ ଖୁଦିରାମ୍ ଏବଂ କହ୍ନାଇଲାଲ୍ ଫାଶୀଖୁଂଟରେ ଝୁଲିଥିଲେ। ଏହାପରେ ବହୁ ସହିଦ ଭାରତର ଇଂରେଜି ପ୍ରଶାସକମାନଂକୁ ହତ୍ୟା କରିବାକୁ ଚେଷ୍ଟା କରିଛଂତି ଏବଂ କେତେକ ସ୍ଥଳରେ ପୂର୍ଣମାତ୍ରାରେ ସଫଳ ହୋଇଛଂତି। ଶ୍ରୀ ଅରବିଂଦଂକ ଭାଇ ବାରୀନ୍ ଘୋଷ ଆଲ୍ଲିପୁର ବୋମା ମାମଲାରେ ଯାବଜ୍ଜୀବନ ଦ୍ୱୀପାଂତର ଦଂଡ ପାଇଥିଲେ। ସେ ଜେଲ୍‌ରୁ ଫେରିବା ପରେ କଲିକତାରେ ତାଂକ ସଂଗେ ମୋର ଘନିଷ୍ଠ ସଂପର୍କ ଗଢ଼ିଉଠିଥିଲା।

୧୯୦୮ ମସିହା ଏପ୍ରିଲ୍ ୧୧ ତାରିଖରେ ଖୁଦିରାମ ବିହାରର ମୁଜାଫରପୁରଠାରେ କିଂଫୋର୍ଡ ସାହେବ ଉପରେ ବୋମା ପକାଇବାକୁ ଯାଇ ଭୁଲ୍‌ରେ ଦୁଇଜଣ ଇଂରେଜି ମହିଳାଂକୁ ହତ୍ୟାକରିଥିଲେ। ସେତେବେଳକୁ ଖୁଦିରାମ

୧୪ ବର୍ଷର ନବୀନ କିଶୋର। ଖୁଦିରାମଂକ ବିଷୟରେ ରଚିତ ସେହି ହୃଦୟସ୍ପର୍ଶୀ ସଂଗୀତଟି ମୋ ମନରେ ବେଳେବେଳେ ଅନୁରଣିତ ହୁଏ।

''ଏକବାର ବିଦାଅ ଦାଓ ମା' ଘୁରେ ଆସି
ଆମି ହେସେ ହେସେ ପର୍‌ବୋ ଫାଶୀ,
ଦେଖ୍‌ବେ ଭାରତବାସୀ . . .
ଦଶମାସ୍ ଦଶ୍‌ଦିନ ପରେ ଜନ୍ମନବ ମାସିର ଘରେ
ତଖନ୍ ଯଦିବା ଚିନ୍‌ତେ ପାରିସ୍, ଦେଖ୍‌ବେ ଗଲାଏ ଫାଶୀ।''

ଏହାପରେ ଚିଟାଗଂଗ ଅସ୍ତ୍ରାଗାର ଲୁଂଠନ (ମାଷ୍ଟରଦା, ସୂର୍ଯସେନ୍ – ୧୯୩୦) ଏବଂ ତାଂକର ବହୁ ବିପ୍ଲବୀ ସହକର୍ମୀ ଯଥା କୁମାରୀ କଳ୍ପନା ଦତ୍ତ, ଚିରସ୍ମରଣୀୟା କୁମାରୀ ପ୍ରୀତିଲତା ଓ୍ୱାୟେଦଂଦାର ମେଦିନପୁର ଇୟୁରୋପିଆନ୍ କ୍ଲବ୍ ଉପରେ ଆକ୍ରମଣ କରି ଚରମ ଆତ୍ମବଳୀ ଦିଅଂତି। ବାଘା ଯତୀନ୍, ରଥୀନ୍, ଦିନେଶ୍, ବାଦଲ୍, ବିନୟ ପ୍ରଭୃତି ସହିଦଂକ କଥା କିଏ ଭୁଲିପାରିବ? ଯତୀନ୍ ଦାସ ଜେଲ୍‌ରେ ଆମରଣ ଅନଶନ କରି ମୃତ୍ୟୁବରଣ କରିଛଂତି। ରକ୍ତସ୍ନାତା ବିପ୍ଲବିନୀମାନଂକ ମଧ୍ୟରେ ଯେଉଁମାନେ ସର୍ବାଗ୍ରେ ସ୍ମରଣୀୟା, ସେମାନଂକର ଅଭୁଲା ସ୍ମୃତି ଜାତିର ମୁକ୍ତିପଥରେ ଅମୃତ ପାଥେୟ। ଏହାପରେ ମନେପଡ଼ଂତି ଉଜ୍ଜ୍ୱଳା ମଜୁମ୍‌ଦାର, ଶୋଭା ଦତ୍ତ (କୁମିଲ୍ଲାର ଗାର୍ଲସ୍ ହାଇସ୍କୁଲ ଅଷ୍ଟମ ଶ୍ରେଣୀର ଛାତ୍ରୀଦ୍ୱୟ), ଶାଂତି ଓ ସୁନୀତି ଏବଂ ବିପ୍ଲବିନୀ ବୀଣା ଦାସ ପ୍ରଭୃତି।

**ଅଗ୍ନିଯୁଗର ମହାନାୟିକା : ଶାଂତି ଓ ସୁନୀତି –**

ଅଗ୍ନିଯୁଗର ବିଭିନ୍ନ ସମୟରେ ଯେଉଁମାନେ ମହାନାୟିକାର ଭୂମିକାରେ ଅଂଶ ଗ୍ରହଣ କରିଛଂତି, ସେମାନଂକ ମଧ୍ୟରେ କୁମିଲ୍ଲାର ଫୈଜୁନ୍ନସା ସ୍କୁଲର ଅଷ୍ଟମ ଶ୍ରେଣୀର ଛାତ୍ରୀଦ୍ୱୟ – ଶାଂତି ଦାସ (୧୪ ବର୍ଷ), ସୁନୀତି ଘୋଷ (୧୫ ବର୍ଷ) ଏବଂ କଲିକତାର ବୀଣା ଦାସ ସର୍ବାଗ୍ରେ ଉଲ୍ଲେଖନୀୟ।

ଶାଂତି ପଂଚମ ଶ୍ରେଣୀରୁ ବୈପ୍ଲବିକ ଆଂଦୋଳନପ୍ରତି ଆକୃଷ୍ଟ ଥିଲେ। ସେ ଷଷ୍ଠ ଶ୍ରେଣୀରେ ପଢୁଥିବାବେଳେ କୁମିଲ୍ଲାରେ ସାଇମନ୍ କମିଶନ୍‌ବିରୋଧୀ ଶୋଭାଯାତ୍ରା ଉପରେ ପୁଲିସ୍ ନିର୍ମମ ଆକ୍ରମଣ କରି ଏବଂ ବହୁଲୋକଂକୁ କ୍ଷତବିକ୍ଷତ କରି ଯେଉଁ ବର୍ବରୋଚିତ କାଂଡ କରିଥିଲେ, ତାହା ସ୍ୱଚକ୍ଷୁରେ ଦେଖି ଇଂରେଜ ଶାସନପ୍ରତି ବିଦ୍ରୋହୀ ହୋଇଉଠିଥିଲେ। ସେ କ୍ରମେ ବିପ୍ଲବୀ ଅନୁଷ୍ଠାନ 'ଯୁଗାଂତର'ର କର୍ମୀମାନଂକ ସଂସ୍ପର୍ଶରେ ଆସିଲେ ପ୍ରଫୁଲ୍ଲ-ନଳିନୀ ବ୍ରହ୍ମଂକ ଜରିଆରେ। ତାଂକ ସହିତ ଥିଲେ ତାଂକର ଘନିଷ୍ଟ ବଂଧୁ ଓ ସହପାଠିନୀ କୁମାରୀ ସୁନୀତି ଘୋଷ।

ଦିନେ ତ୍ରିପୁରାର ଛାତ୍ର-ନେତା ଅନୀଲ ଦାସ କୁମିଲ୍ଲା ଆସିଥିଲେ। ତାଂକୁ ପ୍ରଶ୍ନକଲେ ସଭାନେତ୍ରୀ ପ୍ରଫୁଲ୍ଲ-ନଳିନୀ – ''ଆଉ କେତେଦିନ ଆମେ ଝିଅମାନେ ସବୁବେଳେ ଖାଲି ପଛଧାଡ଼ିରେ ଲୁଚି ଲୁଚି ଲଢ଼ିବୁଁ? ଗୋପନୀୟ ଚିଠିପତ୍ର ନେବା-

ଆଣିବା କରିବୁଁ? ଆଉ ଫେରାର୍ ଭାଇମାନଂକୁ ଆଶ୍ରୟ ଦେବୁ; ଆଉ ଅସ୍ତ୍ରଶସ୍ତ୍ର ଲୁଚାଇ ରଖିବୁ? ଆଉ କେତେ ଦିନ ଏମିତି ଚାଲିଥିବ? ଆଗଧାଡ଼ିରେ ଠିଆହୋଇ ଲଢ଼ିବୁନାହିଁ କାହିଁକି?'' ଶାଂତି, ସୁନୀତି ତାଂକୁ ସଂପୂର୍ଣ୍ଣ ସମର୍ଥନ କଲେ।

''ମାନେ... ଓଲଟି ପଚାରିଲେ ଅନୀଲ୍–'' ଆପଣମାନେ କ'ଣ କରିପାରିବେ ସେ ସମ୍ମୁଖ-ଯୁଦ୍ଧ?'' ଶାଂତି ଓ ସୁନୀତି ଉତ୍ତେଜିତ କଂଠରେ କହିଲେ– ''କାହିଁକି, ପୁଅମାନେ କ'ଣ ବେଳେବେଳେ ବ୍ୟର୍ଥ ହେଉନାହାଂତି? ଆମେ ଜବାବ ଦେଉଛୁ– ଆମେ ବ୍ୟର୍ଥ ହେବୁ ନାହିଁ। ଆମକୁ ଥରେ ଚାନ୍‌ସ ଦିଆଯାଉ।''

ଅନୀଲ୍ ଉତ୍ତର ଦେଲେ– ''ଠିକ୍ ଅଛି। କିଂତୁ ମୋତେ ଆଉ କିଛି ସମୟ ଦିଅଂତୁ।''

ତାହାର କିଛିଦିନ ପରେ ଆରଂଭ ହେଲା ପ୍ରସ୍ତୁତିପର୍ବ। ରିଭଲ୍‌ଭର ମିଳିଗଲା। କିଂତୁ ରିଭଲ୍‌ଭର୍ ପରିଚାଳନା ଶିକ୍ଷା ଓ ସେଦିଗରେ ତାଲିମ୍ ଦେବା ବଡ଼ କଠିନ ସମସ୍ୟା ଥିଲା; କାରଣ ସହରଠାରୁ ବହୁଦୂରରେ ସମସ୍ତଂକ ଅଗୋଚରରେ ତାହା କରିବାକୁ ହେବ। ରିଭଲ୍‌ଭର୍ ଶବ୍ଦ ଶୁଣାଗଲେ ମହାବିପଦ– ସବୁକିଛି ପରିଶ୍ରମ ବ୍ୟର୍ଥହୋଇଯିବ। ସେ ଯାହାହେଉ, ସମସ୍ତ ଆୟୋଜନ ସୁରୁଖୁରୁରେ ସଂପନ୍ନ ହୋଇଗଲା।

ଶେଷରେ ନିଷ୍ପତ୍ତି ନିଆଗଲା, କୁମିଲ୍ଲାରେ ଅତ୍ୟାଚାରୀ ଗୋରା କଲେକ୍ଟର୍ ଷ୍ଟିଭେନ୍‌ସଂକୁ ଗୁଳିକରାଯିବ। ଶାଂତି ଓ ସୁନୀତି ପ୍ରସ୍ତୁତ ହୋଇଗଲେ। ୧୯୩୧ ମସିହା ଡିସେଂବର ୧୪ ତାରିଖ ସକାଳ ୯ଟା ୪୫ ମିନିଟ୍‌ରେ ମେଘନାଦ ପାଚେରିଘେରା ସଶସ୍ତ୍ର ରକ୍ଷୀ ପରିବେଷ୍ଟିତ ଷ୍ଟିଭେନ୍‌ସଂକ ସରକାରୀ ବାସଭବନରେ ପହଂଚିଲେ। ସୁଇମିଂପୁଲ୍ ପାଇଁ ଏକ ଦରଖାସ୍ତ ଦେବା ବାହାନାରେ ସେମାନେ ଗୋରା ସାହେବଂକ ସଂଗେ ଦେଖାକଲେ; ତାକୁ ସାମ୍‌ନା-ସାମ୍‌ନି ଗୁଳିକରି ହତ୍ୟାକଲେ ସେମାନେ। ସେଦିନ ଏହି ଦୁଇଜଣ ୮ମ ଶ୍ରେଣୀର ଛାତ୍ରୀ, ବଂଗଳାର ରକ୍ତ-ବିପ୍ଳବ ଇତିହାସରେ ଏକ ନୂତନ ଅଧ୍ୟାୟ ଯୋଗକଲେ। ଏହି ଦୁଇଜଣ ବାଳିକାଂକର ଅପୂର୍ବ ସାହସ ଓ ଦେଶପ୍ରେମ ସମଗ୍ର ଭାରତର ଜନତାଂକୁ ଦେଶାତ୍ମବୋଧର ଏକ ଅଦ୍ଭୁତ ପ୍ରେରଣା ଦେଇଥିଲା।

ଘର ଛାଡ଼ି ଷ୍ଟିଭେନ୍‌ସ-ବଂଗଳା ଆଡ଼କୁ ଘୋଡ଼ାଗାଡ଼ିରେ ଯିବା ଆଗରୁ ସେ ଦୁଇଜଣ ନିଜ ନିଜ ମା'ମାନଂକ ଉଦ୍ଦେଶ୍ୟରେ ଖଂଡେ ଖଂଡେ ଚିଠି ଲେଖିଥିଲେ– ''ମା'ଗୋ, ମୋର ଏହି ଚିଠି ପାଇବାର ଅଳ୍ପକ୍ଷଣ ପରେ ଶୁଣିବାକୁ ପାଇବୁ ତୋର ଅଲିଅଳୀ ଝିଅ ଏକ ଭୟାବହ କାଂଡ ଘଟାଇ ବ୍ରିଟିଶ୍ ଆଇନ୍‌ର ସର୍ବୋଚ୍ଚ ଦଂଡକୁ ମୁଂଡ ପାତିଦେଇଛି। କାରଣ ପରାଧୀନ ଭାରତୀୟ ପ୍ରତିମୁହୂର୍ତ୍ତରେ ତରି ତରି ମରିବା ଅପେକ୍ଷା ସେହି ପରାଧୀନତାର ଶୃଙ୍ଖଳରୁ ଦେଶକୁ ମୁକ୍ତ କରୁ

କରୁ ମୃତ୍ୟୁବରଣ କରିବା ସହସ୍ରଗୁଣ ଶ୍ରେୟସ୍କର। ଦେଶ-ମାତୃକାର ବୃହତ୍ତର ସ୍ୱାର୍ଥକଥା ବିଚାରକରି ମୋତେ କ୍ଷମାଦେବୁ। ଇତି।''

ଷ୍ଟିଭେନ୍‌ସ-ବଂଗଳାରେ ଏବଂ ପରେ ଜେଲ୍‌ଖାନାରେ ସେମାନଂକ ଉପରେ ଅମାନୁଷିକ ନିର୍ଯାତନା କରାଯାଇଥିଲା; ମାତ୍ର ସେମାନେ କଦାପି ଦବିଯାଇ ନଥିଲେ। ଜେଲ୍‌ଖାନାରୁ ବିଚାରାଳୟକୁ ଘୋଡ଼ାଗାଡ଼ି ଗଲାବେଳେ ବାଟରେ ହଜାର ହଜାର ଲୋକ ସେମାନଂକୁ ଉଚ୍ଛ୍ୱସିତ ଅଭିନନ୍ଦନ ଜଣାଉଥାଂତି ଏବଂ ଜୟଧ୍ୱନି କରୁଥାଂତି। ଶାଂତି ଓ ସୁନୀତି ତା'ର ଜବାବ ଦେଉଥାଆଂତି ଜାତୀୟ ସଂଗୀତର ଉଚ୍ଚ ଲହରୀରେ ଆକାଶ ପବନ ଥରାଇ, କୋର୍ଟରେ ସେମାନେ ଜଜ୍‌ସାହେବଂକୁ କହିଥିଲେ – ''ଆମକୁ ଫାଶୀ ଦିଅ . . .।''

ବିଚାରବେଳେ କାଠଗଡ଼ାରେ ଛିଡ଼ାହୋଇ ସେମାନେ ଜଜଂକୁ କହିଥିଲେ – ''ଆମକୁ ଚେୟାର ଦିଆଯାଉ।'' ସେମାନଂକର ଦାବି ଶୁଣି ଜଜ୍‌ସାହେବ କିଂକର୍ତବ୍ୟବିମୂଢ଼ ହୋଇ ତଳକୁ ମୁଂଡପୋତି ବସିଥିଲେ। ସମଗ୍ର ବିଚାରାଳୟ ସ୍ତବ୍ଧ ହୋଇଯାଇଥିଲା। ଶେଷରେ କାଠଗଡ଼ା ଭିତରକୁ ଚେୟାର୍ ଆସିଲା। ସେମାନେ ଶୁଣାଣିର ଶେଷପର୍ଯଂତ ଚେୟାର୍‌ରେ ବସିଥିଲେ।

ବିଚାରରେ ସେମାନଂକୁ 'ଯାବଜ୍ଜୀବନ କାରାବାସ' ମିଳିଲା। ରାୟ ଶୁଣି ସେମାନେ କହିଲେ – ''ଫାଶୀଦଂଡକୁ ପ୍ରତୀକ୍ଷା କରିଥିଲୁ; ତେଣୁ ଯାବଜ୍ଜୀବନ କାରାବାସ ଆଦେଶ ଶୁଣି ହତାଶବୋଧକଲୁ।''

ସେମାନଂକୁ କଲିକତାର ପ୍ରେସିଡେନ୍‌ସି ଜେଲ୍‌ରୁ ମେଦିନାପୁର ଜେଲ୍, ସେଠାରୁ ରାଜସାହୀ, ଦୀନାଜପୁର, ଡାକା, ପୁଣି ମେଦିନାପୁର, ପୁଣି ପ୍ରେସିଡେନ୍‌ସି, ଅଲ୍ଲୀପୁର, ହିଜଲୀ କ୍ୟାଂପ୍ ଜେଲ୍ ଓ ପୁଣି ମେଦିନାପୁର ଜେଲ୍‌କୁ ବଦଳି କରିବାକୁ ପଡୁଥିଲା ବାରଂବାର। ତଥାପି ଆଗ୍ନେୟଗିରି ସଦୃଶ ସେହି ଦୁରଂତ ତରୁଣୀ ଦୁଇଟିଂକୁ ସେମାନଂକ କାରାଦଂଡର ମିଆଦ ପୂରିବା ପୂର୍ବରୁ ସରକାର ମାତ୍ର ସାତବର୍ଷ ଚାରିମାସ ପରେ ମୁକ୍ତ କରିବାକୁ ବାଧହୋଇଥିଲେ। ଏହି ଦୁଇଟି ଆଗ୍ନେୟ ଅକ୍ଷର ସମଗ୍ର ଦେଶରେ ଏକ ନୂତନ ବିପ୍ଳବ ସୃଷ୍ଟି କରିଛଂତି।

**ବିପ୍ଳବିନୀ ବୀଣା ଦାସ –**

ଅଗ୍ନିଯୁଗର ଏକ ମହାନ୍ ଶିଖା କୁମାରୀ ବୀଣା ଦାସ। ସେ କଲିକତାର ବେଥୁନ୍ କଲେଜରୁ କୃତିତ୍ୱସହକାରେ ବି.ଏ. ପାଶ୍ କରି ସେହି ବେଥୁନ୍ କଲେଜରେ ବି.ଟି. ପଢୁଥିଲେ। ତାଂକ ପିତା ଶ୍ରୀ ବେଣିମାଧବ ଦାସ କଟକ କଲିଜିଏଟ୍ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ। ବୀଣା ଆଜନ୍ମରୁ ସୁଖସ୍ୱାଚ୍ଛଂଦ୍ୟ ମଧ୍ୟରେ ଲାଳିତପାଳିତ ହୋଇଥିଲେ।

୧୯୨୮ ମସିହାରେ କଲିକତା କଂଗ୍ରେସ ଅଧିବେଶନ ଉପଲକ୍ଷେ ସୁଭାଷ ଚଂଦ୍ର ବୋଷଂକ ନେତୃତ୍ୱରେ ଏକ ନାରୀ ସ୍ୱେଚ୍ଛାସେବିକା ବାହିନୀ ଗଢ଼ାଯାଇଥିଲା।

ବୀଣା ସେଥିରେ ଯୋଗଦିଅଂତି। ଶ୍ରୀମତୀ ଲତିକା ବସୁ ଏଥିରେ ପରିଚାଳିକା ଥିଲେ। ବୀଣା ଭାବୁଥାଂତି – 'କଂଗ୍ରେସ ଅଧିବେଶନରେ ଶାଂତିଶୃଙ୍ଖଳା ରକ୍ଷାକରିବା ଭଳି ନିରୀହ କାର୍ଯ୍ୟ କରିବାରେ ସାର୍ଥକତା କ'ଣ ? ଅଷ୍ଟମ ଶ୍ରେଣୀର ଦୁଇଜଣ ଛାତ୍ରୀ କି ତୁମୂଳ ମହୋତ୍ସବ କରି ନ ଗଲେ! ଆଉ ମୁଁ ଚୁପ୍‌ହୋଇ ବସିଛି।' ନେତାଜୀ ସୁଭାଷଂକ ପରିକଳ୍ପିତ ସାମରିକ ବିଦ୍ରୋହର ପଥ ବାଛିନେବାକୁ ସେ ଆଗ୍ରହୀ ହୋଇପଡ଼ିଲେ– 'ବଂଧୁକର ଜବାବ୍ ବଂଧୁକରେହିଁ ଦେବାକୁ ହେବ'। ବ୍ରିଟିଶ୍ ସରକାର ଭଲରେ ଭଲରେ ଏଠୁ ଚାଲିଯିବନି। ତାହାର ସଶସ୍ତ୍ର ମୁକାବିଲା କରିବାକୁହେବ।

ସ୍ଥିର ହେଲା ବୀଣା ବଂଗର ଗଭର୍ଣ୍ଣର୍ ଜାକ୍‌ସନଂକୁ ଗୁଳିକରି ହତ୍ୟା କରିବେ। ଗଭର୍ଣ୍ଣର ବା ଲାଟ୍‌ସାହେବହିଁ ଶାସନର ସର୍ବୋଚ୍ଚ କର୍ତା ଓ ପ୍ରତିନିଧି; ତାଂକୁ ହତ୍ୟାକଲେ ସମଗ୍ର ବ୍ରିଟିଶଜାତି ଛାତି ଥରହର ହୋଇଯିବ। ଅନ୍ୟସବୁ ଅଧସ୍ତନ କର୍ମଚାରୀ ଏସ୍.ଡି.ଓ. ହେଉ, ଏସ୍.ପି. ହେଉ ବା କଲେକ୍ଟର ହେଉ, ଏହି ଶାସନ କଳର ଗୋଟିଏ ଗୋଟିଏ କ୍ଷୁଦ୍ର ଯଂତ୍ରାଂଶ। ବ୍ରିଟିଶ୍ ଶୋଷଣ ଓ ଅତ୍ୟାଚାରର ଏମାନେ ଏକ ଏକ ଅଂଶୀଦାର ହେଲେ ମଧ ଗଭର୍ଣ୍ଣରହିଁ ସର୍ବୋଚ୍ଚ ପ୍ରତୀକ ବା ସୁପ୍ରିମ୍ ସିଂବଲ୍; ତେଣୁ ଏହାଉପରେ ଆଘାତ କରିବାକୁ ହେବ।

୧୯୩୨ ମସିହା ଫେବୃୟାରୀ ୬ ତାରିଖ। କଲିକତା ବିଶ୍ୱବିଦ୍ୟାଳୟର ସମାବର୍ତନ ଉତ୍ସବ; 'ଭରପୁର୍ ହଲ୍'। କନ୍‌ଭୋକେସନ୍ ପୋଷାକ ପିଂଧି ଟୋପି ଲଗାଇ ଶତାଧିକ ଛାତ୍ର-ଛାତ୍ରୀଂକ ଗହଣରେ ବସିଛଂତି ବିପ୍ଳବିନୀ ବୀଣା ଦାସ, ଗଭର୍ଣ୍ଣର୍‌ର ନିକଟତମ ଚୌକିରେ। ଗଭର୍ଣ୍ଣର୍ ଛିଡ଼ାହୋଇ ଭାଷଣ ଆରଂଭ କରିବା ସଂଗେ ସଂଗେ ବୀଣା ମଧ ନିଜ ଆସନରୁ ଛିଡ଼ାହୋଇ ରିଭଲ୍‌ଭର୍‌ରୁ ଗୁଳିମାରିବା ଆରଂଭ କରିଦେଲେ। ପ୍ରଥମ ଗୁଳିଟା ଜାକ୍‌ସନ୍ କାନପାଖରେ ସାଏଁ କରି ଚାଲିଯାଇ ପଛ କାଂଥରେ ବାଜିଲା। ସେ ସଂଗେ ସଂଗେ ମୁଂଡଟାକୁ ଲୁଚାଇଦେଲା ଟେବୁଲ୍ ତଳେ। ପରବର୍ତୀ ଗୁଳି ତା' ବାମ ହାତରେ ବାଜି ତାକୁ କ୍ଷତବିକ୍ଷତ କରିଦେଲା। ଗଭର୍ଣ୍ଣର୍ ସଂପୂର୍ଣଭାବେ ଟେବୁଲ୍ ତଳେ ଲୁଚିଗଲା। ସେତେବେଳକୁ କର୍ଣ୍ଣେଲ୍ ସୁରାବର୍ଦ୍ଦି ପେଂଡାଲ୍ ଉପରୁ ଡିଆଁଟା ମାରି ବୀଣାଂକୁ ମାଡ଼ିବସିବାକୁ ଚେଷ୍ଟାକଲା; କିଂତୁ ବୀଣା ସମସ୍ତ ୬ଟିଯାକ ଗୁଳି ନଫୁଟାଇବା ପର୍ଯଂତ କେହି ତାଂକୁ କାବୁ କରିପାରି ନଥିଲେ। ତା' ଫଳରେ ଗଭର୍ଣ୍ଣରକୁ ରକ୍ଷାକରିବାକୁ ଚେଷ୍ଟା କରିଥିବା ଛଅଜଣ ଲୋକ ଆହତହେଲେ।

ରିଭଲ୍‌ଭର୍‌ର ସମସ୍ତ ଗୁଳି ନିଃଶେଷ ହୋଇଯିବା ପରେ ବୀଣା ଅଂଟାରେ ଖୋସିଥିବା ସାଇନାଇଡ୍ ବିଷ ଖାଇବାକୁ ଚେଷ୍ଟାକଲାବେଳେ ତାଂକ ହାତରୁ ଛଡ଼ାଇ ନିଆଯାଇ ତାଂକୁ କାବୁକରିନିଆଗଲା।

ଅଳ୍ପ କେଇ ସେକେଂଡ୍ ଭିତରେ ଏଇ କାଂଡ ଘଟିଗଲା। ଚାରିଆଡ଼େ

ବିସ୍ମୟ, ଆତଂକ ଚିତ୍କାର ଓ ହଇଚଇ। ସାମାନ୍ୟ ଗୋଟିଏ ତରୁଣୀର କେଇ ରାଉଂଡ୍ ଗୁଳିଚାଳନା ଫଳରେ ସମଗ୍ର ବ୍ରିଟିଶ୍ ସାମ୍ରାଜ୍ୟବାଦର ମୂଳଦୁଆ ଚହଲିଗଲା। 'ପ୍ରବଳ ପ୍ରତାପୀ ବ୍ରିଟିଶ୍ ଶାସନ' ଯେ ଅପରାଜେୟ ନୁହେଁ– ତାହା ବୀଣା ପୁନର୍ବାର ପ୍ରମାଣ କରିଦେଲେ।

ବୀଣାଂକୁ ନେଇଗଲେ ଇଲିସିଆନ୍ ରୋ, ତା'ପରେ ଲାଲ୍‌ବଜାର, ବେଂଗଲ ପୋଲିସ୍ ହେଡ୍‌କ୍ୱାଟର୍। ବୀଣା ଦାସ ଓ ତାଂକର ସାଥୀ କମଳା ଦାସଗୁପ୍ତାଂକୁ ଜେଲ୍‌ରେ ବହୁ ନିର୍ଯାତନା କରାଯାଇଥିଲା; ମାତ୍ର ସେମାନଂକଠାରୁ କୌଣସି କଥା ମିଳିଲାନାହିଁ।

ବୀଣାଂକୁ ରିଭଲଭର୍ ଯୋଗାଇଥିବା ସୁଧୀରଂକର ଆନନ୍ଦ କହିଲେ ନ ସରେ। ସେ କହୁଥିଲେ– "ଆମେ ଯାହା ଚାହିଁଥିଲୁ, ତାହା ହାସଲହୋଇଛି। ବଂଗଦେଶରେ ଇଂରେଜ ଶାସନର ଯିଏ ସୁପ୍ରିମ୍ ସିଂବଲ୍, ସେହି ଗଭର୍ଣରକୁ ଆଘାତ କରିପାରିଥିବାରୁ ସେମାନଂକର ହୋଇଛି ଥରହର କଂପନ। ଗଭର୍ଣର-ମୃତ୍ୟୁଟା ବଡ଼କଥା ନୁହେଁ; ବଡ଼କଥା ହେଉଛି ଆମର ଆଘାତ ଇଂରେଜ ଶାସନର ଦୃଢ଼ଭିତ୍ତିକୁ କେତେଦୂର ଦୁର୍ବଳ କରିପାରିଛି। ବିପ୍ଳବସ୍ରୋତରେ ଆଂଭେମାନେ କେତେ ଦୂର ଆବର୍ତ୍ତ ସୃଷ୍ଟିକରିପାରିଛୁ... ସେଇ ତ ଆମର ସାର୍ଥକତା। ଏହାଛଡ଼ା ଅଧିକ ଆଉ କ'ଣ ହୋଇପାରିଥାଂତା।

ବୀଣାଂକ ପିତାଂକୁ ମଧ ବ୍ରିଟିଶ୍ ସରକାର ଛାଡ଼ିନଥିଲେ। ସେ ଥିଲେ ଜଣେ ଋଷିପ୍ରତିମ ଲୋକ। ତାଂକୁ ରାଜଦ୍ରୋହ ଶିକ୍ଷାଦେଉଥିବା ଅଭିଯୋଗରେ କଟକ କଲେଜିଏଟ୍ ସ୍କୁଲରୁ କୃଷ୍ଣନଗରକୁ ବଦଳିକରାଯାଇଥିଲା। ବିଚାରରେ ବୀଣାଂକୁ ନଅବର୍ଷ ସଶ୍ରମ କାରାଦଂଡ ମିଳିଥିଲା। (ଶ୍ରୀ ପ୍ରଫୁଲ୍ଲ ଦାସଂକ 'ରକ୍ତସ୍ନାତା' ପୁସ୍ତକରୁ ଗୃହୀତ")

ମୁଁ କଲିକତାରେ କେଶୋରାମ କଟନ୍ ମିଲ୍‌ରେ ଚାକିରି କରୁଥିବାବେଳେ ବୀଣା ଓ କମଳା ଦାସଗୁପ୍ତାଂକ ନିକଟ ସାହଚର୍ଯ ଲାଭକରିଥିଲି। ସେତେବେଳକୁ ସେମାନେ ଜେଲ୍‌ରୁ ଖଲାସ ହୋଇ ଆସିଥାଂତି। କମଳା ଦାସଗୁପ୍ତାଂକ ସଂପାଦନାରେ ବଂଗୀୟ ପ୍ରାଦେଶିକ କଂଗ୍ରେସ ଆନୁକୂଲ୍ୟରେ 'ମଂଦିରା' ନାମକ ଏକ ମାସିକ ବଂଗଳା ସାହିତ୍ୟ ପତ୍ରିକା ପ୍ରକାଶପାଉଥିଲା। ମୁଁ ସେଥିରେ ନିୟମିତ କବିତା ଲେଖୁଥାଏ। ମୋର ବଂଗଳାରେ ଲିଖିତ କେତେକ କବିତା ଛଡ଼ା ଓଡ଼ିଆ କବିତାମାନଂକର ବଂଗଳା ଅନୁବାଦ ମଧ 'ମଂଦିରା'ରେ ବାହାରୁଥାଏ। ବୀଣା ଦାସ ମଧ ସେ ପତ୍ରିକାର ପରିଚାଳନା ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥାଆଂତି। ତେଣୁ ଆମେ ପ୍ରାୟ ପ୍ରତି ସପ୍ତାହରେ 'ମଂଦିରା' ଅଫିସ୍‌ରେ ପରସ୍ପରକୁ ଭେଟୁଥିଲୁ ଏବଂ ବହୁକଥା ଆଲୋଚନା କରୁଥିଲୁ। ସେ କେତେ ଥର ମୋର କେଶୋରାମ କଟନ୍ ମିଲ୍ କ୍ୱାଟର୍‌କୁ ଆସିଛଂତି ଏବଂ ମିଲ୍ ଓ ଶ୍ରମିକବସ୍ତି ବୁଲି ଦେଖିଛଂତି।

ସେ ବହୁବାର ମୋର ଆତିଥ୍ୟ ସ୍ୱୀକାର କରିଛଂତି। ପରେ ସେ ବିବାହକରଂତି। ତାଂକର ବଂଧୁତ୍ୱ ମୋର ଏକ ଶ୍ରେଷ୍ଠ ସଂପର୍କ।

**ଆଂଡର୍‌ସନ୍ ହତ୍ୟା ଉଦ୍ୟମ –**

୧୯୩୪ ସାଲରେ ବଂଗ ଗଭର୍ଣର୍ ଆଂଡର୍‌ସନ୍‌କୁ ଦାର୍ଜିଲିଂଠାରେ ହତ୍ୟାକରିବା ପାଇଁ ଉଜ୍ଜ୍ୱଳା ମଜୁମ୍‌ଦାର ଓ ରବିଭବାନୀ ଉଦ୍ୟମ କରି ବ୍ୟର୍ଥ ହୁଅଂତି। ଆଂଡରସନ୍ ଟେବୁଲ୍ ତଳେ ପଶିଯାଇ ରିଭଲଭର୍ ଗୁଳିରୁ ରକ୍ଷାପାଇଯାଆଂତି। ଭବାନୀକୁ ଫାଶୀ ହୁଏ ଏବଂ ଉଜ୍ଜ୍ୱଳା ମଜୁମ୍‌ଦାର ଦୀର୍ଘ କାରାବାସ ଦଂଡ ପାଆଂତି।

**ରାଣୀ ଗୁଇଦାଲ୍ –**

୧୯୩୦ ଦଶକର ଶେଷ ଆଡ଼କୁ ସଶସ୍ତ୍ର ବିପ୍ଳବ କ୍ରମେ ବ୍ୟକ୍ତି-ସଂତ୍ରାସବାଦରୁ ଗଣବିପ୍ଳବ ଆଡ଼କୁ କିପରି ମୁହାଁଇଲା, ରାଣୀ ଗୁଇଦାଲଂକ ରୋମାଂଚକର ଜୀବନ-ଗାଥାରୁ ତାହାର ଉଜ୍ଜ୍ୱଳ ଦୃଷ୍ଟାଂତ ମିଳେ। ୧୯୩୦ ଦଶକରେ ସାରା ଭାରତର ଗଡ଼ଜାତମାନଂକରେ ପ୍ରଜା ଅସଂତୋଷ ପ୍ରବଳ ବେଗରେ ବଢ଼ିଯାଇଥିଲା। ସେହିସବୁ ଦେଶୀୟ ରାଜ୍ୟମାନଂକରେ 'କଂଗ୍ରେସ' ନାମରେ କୌଣସି ସଂଗଠନ ଗଢ଼ି ଆଂଦୋଳନ କରିବାକୁ କଂଗ୍ରେସ ପକ୍ଷରୁ ନିଷେଧ କରାଯାଇଥିଲା। ତେଣୁ ସ୍ଥାନୀୟ ପ୍ରଜା ସଂଗଠନଗୁଡ଼ିକ ବ୍ରିଟିଶ୍ ଓ ଦେଶୀୟ ରାଜ୍ୟ ବିରୋଧୀ ସଂଗ୍ରାମର ପୁରୋଭାଗରେ ଥିଲେ। ମଣିପୁରର ରାଣୀ ଗୁଇଦାଲ୍ ପ୍ରଜାମଂଡଳର ସେହିଭଳି ଏକ ଦୁର୍ବାର ଆଂଦୋଳନ ଗଢ଼ିତୋଳିଥିଲେ। ମଣିପୁର-ନାଗାଲାଂଡ-ଆସାମ ସୀମାରେ ଏହି ଆଂଦୋଳନ ପ୍ରକୃତରେ ଏକ ଗଣବିପ୍ଳବରେ ପରିଣତ ହୋଇଥିଲା। ରାଣୀଂକ ସହ ତାଂକର ଭାଇ ଯଦୁଯଂଗା ମଧ୍ୟ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ। ହଜାର ହଜାର ମଣିପୁରବାସୀ ବ୍ରିଟିଶ୍ ଅଫିସରମାନଂକର ଜୁଲୁମ ଓ ଅତ୍ୟାଚାର ବିରୁଦ୍ଧରେ ସଶସ୍ତ୍ର ପ୍ରତିରୋଧ କରିଥିଲେ। ରାଣୀ ଗୁଇଦାଲ୍ ନିଜେ ଗ୍ରାମ ଗ୍ରାମ ବୁଲି ସଶସ୍ତ୍ର ବିଦ୍ରୋହ କରିବାକୁ ଲୋକମାନଂକୁ ସଂଗଠିତ କଲେ। ମଣିପୁର ସମାଜରେ ଚିରିଦିନ ନାରୀମାନଂକର ପ୍ରଭାବ ପୁରୁଷମାନଂକ ଅପେକ୍ଷା ଅଧିକ ଥିଲା। ସୁତରାଂ ରାଣୀ ଗୁଇଦାଲଂକ ଗସ୍ତ ପ୍ରଜାମାନଂକ ମଧ୍ୟରେ ଅପୂର୍ବ ଉତ୍ସାହ-ଉଦ୍ଦୀପନା ସୃଷ୍ଟିକଲା। କ୍ରମେ ଏହି ଆଂଦୋଳନରେ 'ଖଜଣା ବଂଦ' ମଧ୍ୟ ଯୋଡ଼ାହେବାରୁ ସରକାରୀ କଳ ଅତ୍ୟଧିକ ପ୍ରତିଶୋଧପରାୟଣ ହୋଇ ଯଦୁଯଂଗାକୁ ଧରି ନେଇ ଫାଶୀ ଦେଇଦେଲେ। କିଂତୁ ଏଥିରେ ମଣିପୁରବାସୀ ଭୟଭୀତ ନହୋଇ ଅଧିକ ଉଗ୍ରଭାବରେ ଆଂଦୋଳନ ଚଳାଇରଖିଲେ। ରାଣୀଂକୁ ଧରିବାପାଇଁ ସରକାରର ସକଳପ୍ରକାର ଉଦ୍ୟମ ବ୍ୟର୍ଥ ହୋଇଗଲା। ତାଂକୁ ଜୀବଂତ ବା ମୃତ ଅବସ୍ଥାରେ ଧରିଆଣିଲେ ହଜାର ହଜାର ଟଂକାର ପୁରସ୍କାର ଲୋଭ ମଧ୍ୟ ସ୍ୱାଧୀନତାପ୍ରିୟ ଆଦିବାସୀଂକୁ ପ୍ରଲୋଭିତ କରି ପାରିଲା ନାହିଁ। ନାଗାହିଲ୍‌ସ ମୁଖ୍ୟ ପ୍ରଶାସକଂକ ନେତୃତ୍ୱରେ ଆସାମ୍ ରାଇଫଲ୍‌ବାହିନୀ ମଣିପୁରର ଗାଁଗଂତାରେ

ଖେଦିଗଲେ; କିନ୍ତୁ 'ରାଣୀ' ଛଦ୍ମବେଶରେ ଗାଁ ଗାଁ ବୁଲି ଲୋକଂକୁ ଇଂରେଜମାନଂକୁ ଦେଶରୁ ସଂପୂର୍ଣ ବିତାଡ଼ିତ ନକରିବା ପର୍ଯଂତ ଯୁଦ୍ଧ ଚଳାଇବାକୁ ନିର୍ଦେଶ ଦେଉଥିଲେ। ତା'ପରେ ଚାଲିଲା ମଣିପୁରବାସୀଂକ ଉପରେ ଇଂରେଜ ସୈନ୍ୟମାନଂକର ପୈଶାଚିକ ଆକ୍ରମଣ। ଗାଁ ଗାଁ ପୋଡ଼ି ଛାରଖାର କରିଦିଆଗଲା। ଆଦିବାସୀ ନେତାଂକୁ ଧରି ବିର୍ ରାସ୍ତା ଉପରେ ଗୁଳିକରାଗଲା; ତଥାପି ରାଣୀ ବିଦ୍ରୋହର ନିଆଁ ଜଳାଇବାକୁ ଲାଗିଲେ। ଦୁର୍ଭାଗ୍ୟବଶତଃ ୧୯୩୨ ମସିହା ଅକ୍ଟୋବର ୧୭ ତାରିଖରେ ରାଣୀ ଧୃତାହେଲେ ଏବଂ କୋହିମା ଓ ଇଂଫାଲ୍ ଜେଲ୍‌ରେ ଦୀର୍ଘଦିନ ବନ୍ଦୀ ରହିଲେ। 'ରାଜଦ୍ରୋହ' ଓ ନରହତ୍ୟା ପ୍ରଭୃତି ଅଭିଯୋଗରେ ତାଂକର ବିଚାର ହୋଇ ତାଂକୁ ଆଜୀବନ କାରାବାସ ଦଂଡ ଦିଆଗଲା।

ଦେଶ ସ୍ୱାଧୀନ ହେବା ପରେ ତାଂକୁ ଜେଲ୍‌ରୁ ମୁକ୍ତି ମିଳିଲା। ରାଣୀ ଗୁଇଦାଲ୍ ଯେଉଁ ଅପରିସୀମ ସାହସ ଓ ସଂଗଠନ ଶକ୍ତିବଳରେ ଅଶିକ୍ଷିତ ଆଦିବାସୀମାନଂକୁ ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ସଂଗଠିତ କରିପାରିଲେ, ତାହା ତାଂକୁ ଇତିହାସରେ ଏକ ଗୌରବମୟ ସ୍ଥାନ ପ୍ରଦାନ କରିଛି। ('ରକ୍ତସ୍ନାତା')

ବଂଗଦେଶ ଓ ଭାରତବର୍ଷର ବିପ୍ଳବୀ-ବିପ୍ଳବିନୀମାନଂକ କାହାଣୀ କଲିକତାରୁ ପ୍ରକାଶିତ ଇଂରାଜୀ ଓ ବଂଗଳା ଦୈନିକ ସଂବାଦପତ୍ରମାନଂକରେ ପ୍ରକାଶ ପାଉଥାଏ। ସେସବୁ ପତ୍ରିକା ଯଥା– ଅମୃତବଜାର ପତ୍ରିକା, ଆନଂଦବଜାର ପତ୍ରିକା, ବସୁମତୀ ପ୍ରଭୃତି ବହୁସଂଖ୍ୟାରେ କଟକ, ଖୋରଧା, ପୁରୀ ଓ ଓଡ଼ିଶାର ବହୁସ୍ଥାନକୁ ଆସୁଥାଏ। ଆମେମାନେ ସେଥିରୁ ଅଗ୍ନିଯୁଗର ବୀରାଂଗନା ଓ ସଶସ୍ତ୍ର ବିପ୍ଳବୀମାନଂକର ଆଗ୍ନେୟ ଗାଥା ଏବଂ ବୀରତ୍ୱପୂର୍ଣ କାର୍ଯାବଳୀ ପଢ଼ି ଗଭୀର ଭାବରେ ଅନୁପ୍ରାଣିତ ହୋଇଥାଉଁ।

ମୁଁ ସେ ସମୟରେ ବହୁତ ବୈପ୍ଳବିକ କବିତା ରଚନା କରିବାର ପ୍ରେରଣା ପାଇଥିଲି। ୧୯୨୯ ମସିହାରୁ ୧୯୩୬ ମସିହା ପର୍ଯଂତ ରଚିତ ମୋର ବୈପ୍ଳବିକ କବିତାମାନ ବ୍ରହ୍ମପୁରରୁ ପ୍ରକାଶିତ 'ନବୀନ' ନାମକ ସାପ୍ତାହିକ ପତ୍ରିକା ଏବଂ 'ଶିଶିର' ନାମକ ମାସିକ ପତ୍ରିକାରେ ପ୍ରକାଶପାଉଥାଏ। ଏହି ଦୁଇ ପତ୍ରିକାର ସଂପାଦକ ଥିଲେ ମହୁରୀ ଯୁବରାଜ କୃପାସିଂଧୁ ପଟଦେବ। ଏହି ସମୟରେ ଲିଖିତ ମୋର କେତୋଟି କବିତାର ଶୀର୍ଷକ ମନେଅଛି। 'ଉତିଷ୍ଠତ ଜାଗ୍ରତ', 'ତସ୍ମାଦ୍ ଯୁଦ୍ଧସ୍ୱ ଭାରତି' ପ୍ରଭୃତି କବିତା 'ଶିଶିର' ମାସିକ ପତ୍ରିକାରେ ପ୍ରକାଶପାଇଥିଲା। ମୁଁ ବହୁତ ଚେଷ୍ଟାକରି ସେସବୁ କବିତା ବା ପତ୍ରିକାର ପୁରୁଣା କପି ପାଇଲି ନାହିଁ। ତାହା ମୋର ଦୁର୍ଭାଗ୍ୟ।

**ଗାଂଧିଜୀଂକ ସାର୍ବଭୌମ ବ୍ୟକ୍ତିତ୍ୱ–**

ନାନା ମତଭେଦ ଓ ସଂଶୟବାଦ ତଥା ଧର୍ମସଂକଟ ସତ୍ତ୍ୱେ ଗାଂଧିଜୀଂକର ସାର୍ବଭୌମ ନୈତିକ ପ୍ରଭାବ ତରୁଣ ଭାରତ ଉପରେ ଅବ୍ୟାହତ ରହିଥିଲା

ଏବଂ ରହିଛି। ସେ ଜାତୀୟ-ଚେତନାର ମୁଖ୍ୟ ସ୍ରୋତର ଅବିସଂବାଦୀ କର୍ଣ୍ଣଧାର।

ଗାଂଧିଜୀଂକ ସଂଗେ ମୋର ପ୍ରତ୍ୟକ୍ଷ ସାକ୍ଷାତ ହୋଇନଥିଲା। ମୁଁ ଅବଶ୍ୟ ତାଂକୁ ମୋ ବାଲ୍ୟାବସ୍ଥାରେ ଦୁଇ-ତିନି ଖଂଡ ଲଂବା ଚିଠି ଦେଇଥିଲି। ସେ ତାହାର ଉତ୍ତର ପୋଷ୍ଟକାର୍ଡ ଯୋଗେ ଦେଇଥିଲେ। ଦୁଇଖଂଡ ପୋଷ୍ଟକାର୍ଡ ତାଂକର ସେକ୍ରେଟାରୀ ପ୍ୟାରେଲାଲଂକ ମାଧ୍ୟମରେ ଆସିଥିଲା। ସେଥିରେ ଗାଂଧିଜୀ ମୋତେ ରାଜେଂଦ୍ରବାବୁଂକ (ରାଜେଂଦ୍ର ପ୍ରସାଦ) ସଂଗେ ଯୋଗାଯୋଗ ସ୍ଥାପନ କରିବାକୁ ପରାମର୍ଶ ଦେଇଥିଲେ। ("Cultivate contact with Babu Rajendra Prasad") ଧାଡ଼ିଟି ଏବେ ବି ମୋର ମନେଅଛି।

ପ୍ରଥମେ ମୁଁ ତାଂକୁ ଦେଖେ ମୋର କିଶୋର ବୟସରେ; ସେ ଖୋରଧା ଦେଇ ବୋଲଗଡ଼ ଯାଉଥିବା ବାଟରେ। ଆମେ ରାସ୍ତାକଡ଼ରେ ଛିଡ଼ାହୋଇ ତାଂକୁ ନମସ୍କାର କରିଥିଲୁ। ସେ ଏକ ହୁଡ୍‌ଦିଆ କାର୍‌ରେ ଯାଉଥିଲେ। ତାଂକ ସଂଗେ ଦୀନବଂଧୁ ସି.ଏଫ୍. ଏଣ୍ଡ୍ରୁଜ୍ ସେହି କାର୍‌ରେ ବସିଥିଲେ। ଏହାପରେ କେତେ ବର୍ଷ ବିତିଯାଏ; ତାଂକୁ ଦେଖିଥିଲି ଡେଲାଂଗଠାରେ। ସେବାଶ୍ରମ ସମ୍ମିଳନୀରେ ତାଂକ ଭାଷଣ ମଧ୍ୟ ଶୁଣିଥିଲି। ଏହାଛଡ଼ା ପୁରୀ ରେଳଷ୍ଟେସନ୍‌ରେ ବହୁଲୋକଂକ ଭିଡ଼ରେ ତାଂକୁ ସଂବର୍ଦ୍ଧନା ଜଣାଇବାର ସୁଯୋଗ ମିଳିଥିଲା। ଏହାଛଡ଼ା ବିଭିନ୍ନ କଂଗ୍ରେସ ଅଧିବେଶନରେ ତାଂକୁ ଦେଖିବାର ଓ ତାଂକ ଭାଷଣ ଶୁଣିବାର ଅବସର ମିଳିଥିଲା। ଯଥା – ତ୍ରିପୁରୀ କଂଗ୍ରେସ। ମୁଁ ସେହି ଅଧିବେଶନରେ ଜଣେ ଓଡ଼ିଶାର ପି.ସି.ସି. ସଦସ୍ୟ ହିସାବରେ ତାଂକ ବିରୋଧରେ ଏବଂ ସେହି ଅଧିବେଶନରେ ନିର୍ବାଚିତ ସଭାପତି ନେତାଜୀ ସୁଭାଷଚଂଦ୍ର ବୋଷଂକ ସପକ୍ଷରେ ଭୋଟ୍ ଦେଇଥିଲି।

ତାଂକ ସହ ସବୁଠାରୁ ମୋର ଉଲ୍ଲେଖଯୋଗ୍ୟ ସଂପର୍କ ସ୍ଥାପିତ ହୁଏ କଲିକତାରେ; ୧୯୪୬ ମସିହାରେ ଯେଉଁ ଭୀଷଣତମ ସାଂପ୍ରଦାୟିକ ଦଂଗା ଘଟିଥିଲା ଏବଂ ଗାଂଧିଜୀ କଲିକତା ଆସି ଶାଂତି ସ୍ଥାପନ ପାଇଁ ଆମରଣ ଅନଶନ କରିଥିଲେ, ସେହି ପରିପ୍ରେକ୍ଷୀରେ। ମୁଁ ସେତେବେଳେ ତାଂକ ସହିତ ଘନିଷ୍ଠ ବ୍ୟକ୍ତିଗତ ସଂପର୍କରେ ଆସିଥିଲି। ଅବିଭକ୍ତ ବଂଗଳାର ତତ୍କାଳୀନ ପ୍ରଧାନମଂତ୍ରୀ ସୁରାବର୍ଦ୍ଦିଂକ ଅନୁରୋଧକ୍ରମେ ଗାଂଧିଜୀଂକୁ ପ୍ରାୟ ସପ୍ତାହାଧିକ କାଳ ଆମ ମିଲ୍ କେଶୋରାମ୍ କଟନ୍ ମିଲ୍‌ର ଗୋଟାଏ ବଡ଼ କାର୍ 'କାଇଜର୍'ରେ ରୋକ୍ ସଭାସ୍ଥଳକୁ ନେଉଥିଲି ଏବଂ ପୁଣି ସଭା ଶେଷ ହେଲା ପରେ ତାଂକୁ ସେ ବେଲିଆଘାଟାରେ ରହୁଥିବା ଘରେ ଆଣି ଛାଡ଼ିଦେଉଥିଲି (ଏ ବିଷୟରେ କିଂଚିତ୍ ସୂଚନା ମୁଁ ପ୍ରଥମ ଅଧ୍ୟାୟରେ ଦେଇଛି)। ତାଂକ ସଂଗେ ମନୁ ଗାଂଧୀ ଓ ଆଭା ଗାଂଧୀ ଝିଅ ଦୁଇଟି ମଧ୍ୟ କାର୍‌ରେ ଆସୁଥିଲେ ଏବଂ ସଭାରେ ରାମଧୂନ୍ ଗାନକରୁଥିଲେ। ସେମାନେ ଗାଂଧିଜୀଂକ ନାତୁଣୀ। ସେମାନେ ଗାଂଧିଜୀଂକ ସହିତ ପଛ ସିଟ୍‌ରେ ବସୁଥିଲେ ଏବଂ ମୁଁ ଆଗ ସିଟ୍‌ରେ ଡ୍ରାଇଭର୍ ପାଖେ ବସୁଥିଲି।

ବାଟରେ ଗଲାବେଳେ ଗାଂଧିଜୀଂକ ସଂଗେ ଅଳ୍ପକିଛି ଆଲୋଚନା ମଧ ହେଉଥିଲା ଏବଂ ସାଂପ୍ରତିକ ଅବସ୍ଥା ବିଷୟରେ ସେ ଟିକିନିଖି କରି ପଚାରି ବୁଝୁଥିଲେ। ମୁଁ ଏ ବିଷୟ ମୋର ''ଗାଂଧିଜୀ ଗହଣେ'' ଶୀର୍ଷକ କବିତାରେ ବିବୃତ କରିଛି (ସ୍ୱଗତ, ୧୯୫୮)। ଗାଂଧିଜୀଂକୁ ମାଟିଆବୁରୁଜଠାରେ ଆମ କେଶୋରାମ କଟନ୍‌ମିଲ୍‌କୁ ଲାଗି କ୍ଲାଇଭ୍ ଜୁଟ୍‌ମିଲ୍ ପଡ଼ିଆରେ ଅନୁଷ୍ଠିତ ଏକ ବିରାଟ ସଭାକୁ ମଧ ଆଣିଥିଲୁ ଏବଂ ସେ ସେଠାରେ ଲକ୍ଷାଧିକ ହିଂଦୁ ମୁସଲମାନ ଶ୍ରୋତାଂକୁ ଶାଂତି, ସଦ୍‌ଭାବ ଓ ସଂପ୍ରୀତି ବଜାୟ ରଖିବା ଲାଗି ମର୍ମସ୍ପର୍ଶୀ ଉପଦେଶ ଦେଇଥିଲେ। ଏହି ମାଟିଆବୁରୁଜଠାରେହିଁ ଭାରତର ସବୁଠାରୁ ଭୟଂକର ଦଂଗା, ଯାହାକୁ 'The Great Calcutta Killing' କୁହାଯାଏ, ଅଳ୍ପଦିନ ତଳେ ଘଟିଯାଇଥାଏ। ହଜାର ହଜାର ହିଂଦୁ ମୁସଲମାନ ନର ନାରୀ, ଶିଶୁ, ବୃଦ୍ଧ ମୃତ୍ୟୁମୁଖରେ ପଡ଼ିଥିଲେ। ମାଟିଆ ବୁରୁଜ ଥିଲା କଲିକତାର ସବୁଠାରୁ ବଡ଼ ମୁସଲମାନ-ଅଧ୍ୟୁଷିତ ଅଂଚଳ। ବିଭିନ୍ନ ମିଲ୍‌ର ବହୁ ହିଂଦୁ ଶ୍ରମିକ ଏଠାରେ ଏକେଲା କିଂବା ପିଲାପିଲିଂକି ଧରି ବସବାସ କରୁଥାଂତି। ଆମ କେଶୋରାମ୍ କଟନ୍‌ମିଲ୍‌ର ପ୍ରାୟ ପାଂଚ ହଜାର ହିଂଦୁ ଶ୍ରମିକ ପାଂଚ-ଛଅଟି ବଡ଼ ବଡ଼ ଚାରି ତାଲା ବିଲ୍‌ଡିଂରେ ଏକ ପାଚେରି ଭିତରେ ରହୁଥାଂତି । ତାକୁ ଶ୍ରମିକ କଲୋନୀ କୁହାଯାଉଥାଏ; ତେଣୁ ସେମାନେ ଅପେକ୍ଷାକୃତ ନିରାପଦ ଥିଲେ। ମାତ୍ର ବାହାରେ ରହୁଥିବା ହିଂଦୁ ଶ୍ରମିକମାନେ ଶହ ଶହ ସଂଖ୍ୟାରେ ମୃତାହତ ହୋଇଥିଲେ ବୋଲି ଖବର ମିଳୁଥାଏ। ଦଂଗା ଲାଗିବାର ଚାରିଦିନ ପରେ ମଧ ବଂଗ ସରକାରଂକ ପକ୍ଷରୁ କୌଣସି ପୋଲିସ୍ ଫୋର୍ସ ବା ମିଲିଟାରୀ ଏଠାକୁ ପଠାଯାଇନଥିଲା। ଆମେ ଓଡ଼ିଶାର ପୂର୍ବତନ ମୁଖ୍ୟମଂତ୍ରୀ ବିଶ୍ୱନାଥ ଦାସଂକୁ ତାରଯୋଗେ ଡାକି ବଂଗୀୟ ପ୍ରଶାସନ ଉପରେ ପ୍ରବଳ ଚାପ ଦେବାରୁ ତାଂକ ନିଦ ଭାଂଗିଲା। ମୁଁ ଏହିଠାରେ କେଶୋରାମ୍ କଟନ୍‌ମିଲ୍ ଶ୍ରମିକ ବସ୍ତିରେ ଥିବା ମୋ କ୍ୱାଟରରେ ତିନିତାଲାରେ ରହୁଥାଏ; ତଳ ମହଲା ଦୁଇଟିରେ ହାଇସ୍କୁଲ ଚାଲିଥାଏ। ଏହି ଶ୍ରମିକ କଲୋନୀ ଏକ ସୁଦୃଢ଼ ଦୁର୍ଗଭଳି ଥାଏ। ଫାଟକରେ ସଶସ୍ତ୍ର ବଂଧୁକଧାରୀ ଦରୁଆନ୍‌ମାନେ ଜଗିରହିଥାଂତି। ମୁଁ ଏହି ମିଲ୍‌ର ମୁଖ୍ୟ ଶ୍ରମ-ମଂଗଳ ଅଫିସରରୂପେ କାର୍ଯ୍ୟ କରୁଥାଏ।

୧୯୩୨-୩୩ ମସିହା ବେଳକୁ ଭାରତର ଉଗ୍ରପଂଥୀମାନେ ଗାଂଧିଜୀଂକର ଆହ୍ୱାନକ୍ରମେ କଂଗ୍ରେସରେ ମିଶିଯାଇ ତାଂକ ହାତମୁଠା ଟାଣ କରିବାକୁ ଚାହୁଁଥିଲେ। ପ୍ରମୁଖ ଉଗ୍ରପଂଥୀ ଅନୁଷ୍ଠାନ 'ଅନୁଶୀଳନ' ଏ ଦିଗରେ ପ୍ରଥମ ପଦକ୍ଷେପ ନେଇଥିଲେ; ମାତ୍ର ଏ ସହଯୋଗ ବା ସାଂଗୀକରଣ ଏକବର୍ଷରୁ ଅଧିକ କାଳ ବଂଚିରହିପାରିନଥିଲା।

## ନବମ ଉଲ୍ଲାସ

### ଖୁରୁଧା-ଅନ୍ୱେଷଣ

ସ୍କୁଲରୁ ତଡ଼ା ଖାଇ ମୁଁ ମୁକ୍ତ ଚଢ଼େଇଟି ପରି ସାରାବେଳ ଘୂରିବୁଲୁଥିଲି। ସାହିତ୍ୟ-କର୍ମ ଥିଲା ପ୍ରଧାନ କାମ, ଲେଖାଲେଖି ଓ ପଢ଼ାଶୁଣା କରିବାରେ ଅଧିକାଂଶ ସମୟ କଟୁଥିଲା। ମଝିରେ ମଝିରେ ଖୁରଧା ଅଂଚଳର ବିଭିନ୍ନ ଗ୍ରାମକୁ ଯାଇ ସଭାସମିତି କରିବା ଓ ଲୋକଂକୁ କଂଗ୍ରେସ ବାର୍ତ୍ତା ଶୁଣାଇବା ଗୋଟାଏ ବଡ଼ କାମ ଥିଲା। ମୋ ସଂଗରେ ନୃସିଂହଚରଣ ସାମଂତସିଂହାର ମଧ କେତେକ ଗାଁ-ଗଂଡା ବୁଲିଛଂତି। କେତେକ ଗାଁକୁ ଯିବାକୁ ହେଲେ କେବଳ ବିଲ ଭିତର ଦେଇ ହିଡ଼ ଉପରେ ଯିବାକୁହିଁ ହେବ, ଯେପରି ଆମ ଗାଁର କୁଂଭାର ବସ୍ତି। କୌଣସି ରାସ୍ତା ନାହିଁ। ସଂଧ୍ୟାରେ ସଭାସମିତି କରି ଘରକୁ ଫେରିଆସୁଥିଲି।

**ଖୁରଧା-ସଂଧାନେ –**

ଖୁରଧାର ବିଭିନ୍ନ ଗ୍ରାମ ବୁଲିବାବେଳେ ମୁଁ ସେହି ରକ୍ତତୀର୍ଥ ବୀର-ମାଟିର ପ୍ରତ୍ୟେକଟି ଧୂଳିକଣାରେ ଯେଉଁ ଐତିହ୍ୟ ଜଡ଼ିତ ଅଛି, ତାହାର ସଂଧାନ କରିବାରେ ଲାଗିଯାଉଥିଲି। ଗ୍ରାମର ପୁରୁଣା ପୁରୁଣା ଲୋକଂକଠାରୁ ସେ ସ୍ଥାନର ମହତ୍ତ୍ୱ, ଗରିମା ଏବଂ ଇତିବୃତ୍ତ ଓ ଲୋକକଥା ସଂଗ୍ରହ କରୁଥିଲି। ସେ ସବୁ ଲୋକକଥା ଆଜି ଜାତୀୟ ସ୍ମୃତିରେ ପରିଣତହୋଇଛି। ଖୁରଧାର ଅଂଚଳ ବୁଲିବାବେଳେ ମନେହେଉଥିଲା ଯେପରି ଚାରିଆଡ଼େ ଇତିହାସର ଟୁକୁଡ଼ା ବିଛାଡ଼ି ହୋଇ ପଡ଼ିଛି। ପ୍ରତ୍ୟେକଟି ପୁରୁଣା ବରଗଛ ଗୋଟିଏ ଗୋଟିଏ ଫାଶୀ-ଖୁଂଟ। ସେଥିରେ ଯେ କେତେ ସହିଦ ଓ ବିଦ୍ରୋହୀଂକି ଫାଶୀରେ ଲଟକାଇ ଦିଆଯାଇଛି, ତାହାର କୌଣସି ଠିକଣା ନାହିଁ!

ଖୁରଧା ପାଇକ-ବିଦ୍ରୋହର ସଂଗ୍ରାମୀମାନଂକୁ ଖୁରଧାରେ ଦୁଇଜଣ ସାହେବ ଜଜ୍ ବସି ଫାଶୀ, ଦ୍ୱୀପାଂତର ଓ ଦୀର୍ଘ କାରାଦଂଡ ହୁକୁମ ଦେଇଚାଲିଥାଂତି (‘ଓଡ଼ିଶା ଇତିହାସ’ – ମହତାବ)। ମାତ୍ର ଜଣେ ନାଟ୍ୟକାର ତାଂକ ‘ବକ୍ସି ଜଗବଂଧୁ’ ନାଟକରେ ବଂଗାଳୀ ଜଜ୍‌ମାନେ କଲିକତାରୁ ଆସି ଖୁରଧା ମୁକ୍ତି ସୈନିକଂକୁ ଫାଶୀ, ଦ୍ୱୀପାଂତର ଆଦି ହୁକୁମ ଦେଉଥିଲେ ବୋଲି ବର୍ଣନା କରିଛଂତି। କେତେ ଯେ ବିଦ୍ରୋହୀଂକୁ ଫାଶୀଦିଆଯାଇଛି ଏବଂ କେତେ ଯେ ଓଡ଼ିଆ ସିପାହିଂକୁ ଦ୍ୱୀପାଂତର ଏବଂ ଦୀର୍ଘ କାରାବାସ ଦଂଡ ଦିଆଯାଇଛି, ତାହାର କୌଣସି ଇୟତ୍ତା ନାହିଁ।

**ପାଇକ-ବିଦ୍ରୋହ-ଭସ୍ମ-ମଂଚ –**

ବିଦ୍ରୋହର ମୂଳ କାରଣ ଥିଲା ବ୍ରିଟିଶ୍ ସରକାର ବିରୁଦ୍ଧରେ ପାଇକମାନଂକର ଅସଂତୋଷ। ପାଇକ ଓ ଖଂଡାୟତମାନେହିଁ ଥିଲେ ଓଡ଼ିଶାର ସୈନ୍ୟବାହିନୀ। ସେମାନେ ଯୁଦ୍ଧ ସମୟରେ ସଂଗ୍ରାମ କରୁଥିଲେ ଏବଂ ଶାଂତି ସମୟରେ ଚାଷବାସ କରି ଚଳୁଥିଲେ। ସେମାନଂକୁ ଓଡ଼ିଶାର ରାଜାମାନେ ନିଷର ଜମି ଦାନକରିଥିଲେ। ଇଂରେଜ ସରକାର ପାଇକମାନେ ପୁରୁଷାନୁକ୍ରମେ ଭୋଗ କରିଆସୁଥିବା ସମସ୍ତ ଜମିଜମା ଓ ଜାଗିରି ପ୍ରଭୃତି ସେମାନଂକଠାରୁ ଛଡ଼ାଇ ନିଅଂତି। ଏହାଛଡ଼ା ଇଂରେଜମାନଂକର ଭୂ-ରାଜସ୍ୱ ନୀତି, ମୁଦ୍ରା ପ୍ରଚଳନ ଏବଂ ବାରଂବାର ବଂଦୋବସ୍ତ କରି ଖଜଣା ବୃଦ୍ଧି ଏବଂ ଲୁଣମରା ବଂଦ କରିବା କାର୍ଯ୍ୟରେ ଜନସାଧାରଣ ହଂତସଂତ ହୋଇ ଉତ୍କ୍ଷିପ୍ତ ହୋଇଉଠିଥିଲେ। ଇଂରେଜ ଶାସକ ଏବଂ ବଂଗାଳୀ ରାଜକର୍ମଚାରୀମାନେ ଜନସାଧାରଣଂକୁ ନାନା ଭାବରେ ଶୋଷଣକରୁଥିଲେ। ପ୍ରଜାମାନଂକ ଉପରେ ଅତ୍ୟାଚାର ଓ ଉତ୍ପୀଡ଼ନ ସୀମା ଲଂଘନ କରିଥିଲା। ଓଡ଼ିଶାର ଜମିଦାର ଓ ଜାଗିର୍‌ଦାରମାନଂକ ଇଲାକା ଖଜଣା ଦାଖଲ କରିବାରେ ବିଳଂବ ହେଲେ ସୂର୍ଯ୍ୟ ଅସ୍ତ ହେବା ପୂର୍ବରୁ କଲିକତାରେ ନିଲାମ କରିଦିଆଯାଉଥିଲା ଏବଂ ବଂଗାଳୀମାନେ ତାହା ହସ୍ତଗତ କରୁଥିଲେ। ଏହା 'ସନ୍‌ସେଟ୍ ଆଇନ୍' ବୋଲି କଥିତ।

ଏହିପରି କି ରାଜା କି ପ୍ରଜା ସମସ୍ତେ ଉତ୍ପୀଡ଼ିତ ଓ ଅତିଶୟ କ୍ରୋଧାନ୍ୱିତ ଥିଲେ। ୧୮୧୩ ଘୁମୁସୁରର କଂଧମାନଂକ ବିଦ୍ରୋହ ଏହି ଜନ-ଅସଂତୋଷର ଶୃଙ୍ଖଳା ନଡ଼ାଗଦାରେ ଅଗ୍ନି ସଂଯୋଗକଲା– ଏହା ଇତିହାସରୁ ଜଣାଯାଏ। ଗଂଜାମରୁ ବିଦ୍ରୋହୀ କଂଧମାନେ ବାଣପୁର ଦେଇ ଖୁରଧା ଆଡ଼କୁ ଅଗ୍ରସର ହେଲେ। ପାଇକମାନେ କଂଧମାନଂକ ସଂଗେ ଯୋଗଦେଲେ। ଏହି ମିଳିତ ବିଦ୍ରୋହୀ ବାହିନୀ କ୍ରମେ ଶକ୍ତିଶାଳୀ ହେଲା। ସେମାନେ ବାଣପୁରରେ କେତେକ ସରକାରୀ ଅଫିସ୍ ପୋଡ଼ିଦେଲେ, ଖଜଣାଖାନା ଲୁଟ୍ କଲେ, ଶହେ ଖଂଡେ ଲୋକଂକୁ ମାରିଦେଲେ ଓ ଚିଲିକା ମଧ୍ୟରେ ଲୁଣ ହାକିମଂକ ନୌକା ମଧ୍ୟ ଲୁଂଠନକଲେ। ପିପିଲିଠାରେ ସେମାନେ ଇଂରେଜ ସୈନ୍ୟଂକୁ ପରାସ୍ତ କରିଥିଲେ ଏବଂ ଥାନା ଲୁଂଠନ କରିଥିଲେ। ୧୮୧୭ ଏପ୍ରିଲ ୧୩ ତାରିଖରେ ପୁରୀଠାରେ ପାଇକମାନଂକର ଇଂରେଜ ସୈନ୍ୟଂକ ସଂଗେ ସଂଘର୍ଷ ଘଟିଥିଲା। ସେଥିରେ ପାଇକମାନେ ସାମୟିକଭାବେ ପରାଜିତ ହୋଇଥିଲେ; ମାତ୍ର ଶୀଘ୍ର ଅଧିକ ସଂଖ୍ୟାରେ ପାଇକ ଆସି ପୁରୀଠାରେ ଇଂରେଜ ସୈନ୍ୟଂକୁ ହଟାଇଦେଲେ। ଗଜପତି ରାଜା ମୁକୁଂଦଦେବ (ଦ୍ୱିତୀୟ) ପାଇକମାନଂକ ସଂଗେ ଯୋଗଦେଲେ। ସମଗ୍ର ଗଂଜାମ ଜିଲ୍ଲା ପାଇକମାନଂକ ଅଧୀନରେ ଥିଲା।

ଏହାପରେ ବିପ୍ଳବୀମାନେ ଖୁରଧା ଆଡ଼କୁ ଅଭିଯାନ କରଂତି। ବାଟରେ

ପ୍ରତି ଗ୍ରାମରୁ ଲୋକମାନେ ବାହାରି ସେମାନଙ୍କ ସହିତ ଯୋଗଦିଅଂତି । ଖୋରଧାରେ ଯେତେ ସରକାରୀ କର୍ମଚାରୀ ଥିଲେ, ସମସ୍ତେ ଭୟଭୀତ ହୋଇ ସହର ଛାଡ଼ି ପଳାଇଯାଆଂତି । ଖଜଣାଖାନା ଲୁଟ୍ ହୋଇଗଲା ଓ ସମସ୍ତ ସହର ଲୁଂଠିତହେଲା । ଆଉ ଦଳେ ବିଦ୍ରୋହୀ ଲେଂବାଇ ପ୍ରଗନାକୁ ଗଲେ; ସେଠି ସେମାନେ ଚରଣ ପଟ୍ଟନାୟକ ବୋଲି ଜଣେ ଓଡ଼ିଆ କର୍ମଚାରୀଙ୍କୁ ହତ୍ୟାକଲେ ।

କଟକରେ ଏ ବିଦ୍ରୋହର ଖବର ପହଂଚିବା ପରେ କର୍ତ୍ତୃପକ୍ଷ ଖୁରଧାକୁ ଦଳେ ଏବଂ ପିପିଲିକୁ ଦଳେ ସୈନ୍ୟ ପଠାଇଲେ । କଟକ କଲେକ୍ଟର ୧.୪.୧୮୧୭ରେ ୬୦ ଜଣ ସିପାହି ଘେନି ଖୁରଧା ବାହାରିଗଲେ । ତା'ପର ଦିନ ସଂଧ୍ୟାବେଳେ ସେ ଖୁରଧାଠାରୁ ସାତମାଇଲ ଦୂରବର୍ତ୍ତୀ ଗଂଗପଡ଼ାଠାରେ ପହଂଚିଲେ । ବିଦ୍ରୋହୀମାନେ ସେଠାରେ ପ୍ରାଚୀର ନିର୍ମାଣ କରି ଗୋଳା-ଗୁଳି ସହ ପଥ ଅବରୋଧ କରି ରହିଥିଲେ । ସେମାନେ ଇଂରେଜ ସୈନ୍ୟଂକୁ ଦେଖି ଗୋଳାବର୍ଷଣ କଲେ । ସେଇଠି କଲେକ୍ଟର ଖବର ପାଇଲେ ଯେ, ଖୁରଧା ସଂପୂର୍ଣ୍ଣ ଧ୍ୱସ୍ତ, ସେଠି ସୈନ୍ୟ କେହି ନାହାଂତି । ଇତିମଧ୍ୟରେ ବିଦ୍ରୋହୀଙ୍କ ସଂଖ୍ୟା ବଢ଼ି ତିନି ହଜାର ହୋଇଯାଇଥିଲା । କଲେକ୍ଟର ଅଗତ୍ୟା ସେଠାରୁ ପଳାଇଆସି ବାଲକାଟିରେ ଆଶ୍ରୟନେଲେ । ସେଠି ମଧ୍ୟ ସେମାନଂକୁ ବହୁ ବିପଦର ସମ୍ମୁଖୀନ ହେବାକୁ ପଡ଼ିଲା । ସେଠାରୁ ରାତିରେ ପଳାଇବା ସମୟରେ ସେମାନେ ଦଳେ ପାଇକଂକଦ୍ୱାରା ଆକ୍ରମିତ ହେଲେ । ହାତୀ, ତଂବୁ ପ୍ରଭୃତି ଯୁଦ୍ଧୋପକରଣମାନ ହରାଇ ସୈନ୍ୟଂକ ସହ କଲେକ୍ଟର କଟକ ପଳାଇଆସିଲେ ।

ଖୁରଧାକୁ ଯେଉଁ ସୈନ୍ୟଦଳ ପଠାଯାଇଥିଲା, ସେମାନେ ବହୁସଂଖ୍ୟକ ପାଇକଂକ ଦ୍ୱାରା ପରାସ୍ତ ହେଲେ । ସେମାନଂକ ଇଂରେଜ ଅଧ୍ୟକ୍ଷ ଗଂଗପଡ଼ାଠାରେ ନିହତ ହେଲେ ଓ ସେମାନଂକ ଜିନିଷପତ୍ର ସବୁ ନଷ୍ଟହୋଇଗଲା । ସେମାନେ ବାଧ୍ୟହୋଇ କଟକ ଫେରିଆସିଲେ । ପିପିଲିକୁ ଯେଉଁ ସୈନ୍ୟବଳ ପଠାହୋଇଥିଲା, ସେମାନେ ମଧ୍ୟ ପରାସ୍ତ ହୋଇ ଫେରିଆସିଲେ ।

ପୁରୀକୁ ଯେଉଁ ଇଂରେଜ ସୈନ୍ୟବାହିନୀ ପଠାହୋଇଥିଲେ, ସେଥିରୁ ଅପ୍ରେଲ ୯ ତାରିଖ ଦିନ ୫୫୦ ଜଣ ସୈନ୍ୟଂକୁ କେତେକ ବଂଧୁକସହ ଖୁରଧା ପଠାଇ-ଦିଆଯାଇଥିଲା । ସେମାନେ ଖୋରଧାରେ ପହଂଚି ଅପ୍ରେଲ ୧୨ ତାରିଖ ଦିନ ସାମରିକ ଆଇନ୍ ଜାରି କଲେ । ଅପ୍ରେଲ ୧୨ ତାରିଖ ଦିନ ଦଳେ ପାଇକ ପୁରୀରେ ପହଂଚି କଚେରି ଘର ଓ ଅନ୍ୟାନ୍ୟ ସରକାରୀ ଘରସବୁ ପୋଡ଼ି ଦେଲେ ।

ଏହି ବିଦ୍ରୋହ ଖାଲି ପୁରୀ ଜିଲ୍ଲା ନୁହେଁ, କଟକ ଜିଲ୍ଲାରେ ମଧ୍ୟ ବହୁସ୍ଥାନରେ ବ୍ୟାପିଯାଇଥିଲା । କୁଜଂଗ ରାଜା ବିଦ୍ରୋହରେ ଯୋଗଦେଇ ବଂଦୀହୋଇଥିଲେ । ତାଂକୁ ବାରବାଟୀ ଦୁର୍ଗରେ ରଖାଯାଇଥିଲା । କନିକା ରାଜା ମଧ୍ୟ ଏ ବିଦ୍ରୋହରେ ଯୋଗଦେଇଥିଲେ; ମାତ୍ର ବିଦ୍ରୋହୀମାନେ ଫିରିଂଗୀଂକଦ୍ୱାରା ପରାଜୟ ବରଣ

କରଂତି । ଏ ସମସ୍ତ ବିଷୟ 'ଓଡ଼ିଶା ଇତିହାସ' ଓ ଅନ୍ୟ କେତେକ ଇତିହାସ ପୁସ୍ତକରେ ବର୍ଣ୍ଣନା କରାଯାଇଛି ।

**ପାଇକବିଦ୍ରୋହର ପୂର୍ବାଭାସ –**

ପ୍ରଥମେ ୧୮୦୪ ଖ୍ରୀଷ୍ଟାବ୍ଦରେ ଖୁରଧା ରାଜା ମୁକୁନ୍ଦ ଦେବ (୨ୟ) ଇଷ୍ଟଇଂଡିଆ କଂପାନୀ ବିରୁଦ୍ଧରେ ବିଦ୍ରୋହ କରଂତି । ତା'ର କାରଣ ବ୍ରିଟିଶ୍‌ମାନେ ରାଜାଂକର ୪ଟି ମାହାଲ ଯାହା ମରହଟ୍ଟାମାନେ ଦଖଲକରିନେଇଥିଲେ ତାକୁ ସେମାନେ ରାଜାଂକର ବାରଂବାର ଦାବି ସତ୍ତ୍ୱେ ଫେରସ୍ତ ଦେଉନଥିଲେ । ରାଜା ମୁକୁନ୍ଦଦେବ(୨ୟ) ଇଂରେଜମାନଂକ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ; ମାତ୍ର ଏ ବିଦ୍ରୋହ ସହଜରେ ଦମିତ ହୋଇଥିଲା । ଇଂରେଜମାନେ ରାଜାଂକୁ ବଂଦୀକରି ପ୍ରଥମେ ବାରବାଟୀ ଦୁର୍ଗରେ ରଖିଥିଲେ; ପରେ ତାଂକୁ ଅନ୍ୟାନ୍ୟ ବିଦ୍ରୋହୀ ନେତାମାନଂକ ସହ ମେଦିନାପୁର ଜେଲକୁ ସ୍ଥାନାଂତରିତ କରିଥିଲେ । ରାଜା, ତାଂକ ମଂତ୍ରୀ ଜୟୀରାଜଗୁରୁ ଏ ବିଦ୍ରୋହ କରାଇଥିଲେ ବୋଲି ସଫେଇ ଦେବାରୁ, ରାଜାଂକୁ ଛାଡ଼ିଦିଆଯାଇଥିଲା । ଶେଷରେ ବ୍ରିଟିଶ୍ ରାଜାଂକୁ କ୍ଷମାକରିଦେଇଥିଲେ ଓ ପୁରୀ ବାଲିସାହି ଉଆସରେ ରଖାଇଥିଲେ । ତାଂକ ମଂତ୍ରୀ ଜୟୀରାଜଗୁରୁଂକୁ ବ୍ରିଟିଶ୍‌ମାନେ ଖୁବ୍ ସଂଭବତଃ ମେଦିନାପୁର ଜେଲ୍‌ରେ ଫାଶୀ ଦେଇଥିଲେ ।

ବିଦ୍ରୋହର ଆଦିପର୍ବର ଅବିସଂବାଦୀ ନେତା ଥିଲେ ଜୟୀରାଜଗୁରୁ । ମୁକୁନ୍ଦଦେବ(୨ୟ) ତାଂକର ସମସ୍ତ ଆଧିପତ୍ୟ ହରାଇ ଏଣିକି କେବଳ ପୁରୀର ଠାକୁରରାଜାରେ ପରିଣତହେଲେ । ତାଂକୁ ପୁରୀ ମଂଦିରର ସୁପରିଟେଂଡେଂଟ୍ କରାଯାଇଥିଲା । ଇଂରେଜ ଶାସକମାନେ ୧୮୦୫-୦୭ ଖ୍ରୀଷ୍ଟାବ୍ଦରେ ସାନି ବଂଦୋବସ୍ତ କରାଇ ପାଇକ ଓ ଅନ୍ୟାନ୍ୟ ଜାଗିର୍‌ଦାରମାନଂକର ନିଷ୍କର ଜମି କାଢ଼ିନେଲେ । ନିଷ୍କର ଜମି କାଢ଼ିନେଇ ତା' ଉପରେ ଖଜଣା ବସାଇଲେ । ଏହାପରେ ଖୁରଧାର ପାଇକମାନେ ନିଃସ୍ୱ ଓ ଭୂମିହୀନ ହୋଇପଡ଼ିଲେ । ସେମାନଂକ ଦୁଃଖ-ଦୁର୍ଦ୍ଦଶାର ଅଂତ ରହିଲା ନାହିଁ । ୧୮୦୫-୦୬ ଖ୍ରୀଷ୍ଟାବ୍ଦରେ ଖୁରଧା ବ୍ରିଟିଶ ଶାସନର ଏକ ଖାସ୍ ମାହାଲରେ ପରିଣତ ହେଲା । ଐତିହାସିକ ଡକ୍ଟର ଏନ୍.କେ. ସାହୁଂକ ମତରେ ଜୟୀରାଜଗୁରୁ ବଂଦୀ ହେବାପରେ କଣ ହେଲା, ସେ ବିଷୟରେ କୌଣସି ପତ୍ତା ମିଳେ ନାହିଁ । (Vide – 'History of Orissa')

ଖୁରଧା ରାଜାଂକ ପତନ ପରେ ତାଂକ ସେନାଧ୍ୟକ୍ଷ ଓରଫ୍ ଜମିଦାର ବକ୍‌ସି ଜଗବଂଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ ମଧ୍ୟ ସର୍ବସ୍ୱାଂତ ହୋଇଯାଇଥିଲେ । ତାଂକ ସ୍ଥାନ ଓ ପ୍ରତିଷ୍ଠା କେବଳ ରାଜାଂକ ତଳେ ଥିଲା । ସେ ବର୍ତ୍ତମାନ ଦାଂଡର ଭିକାରି ହୋଇଗଲେ । ସେ ତାଂକର ସମସ୍ତ ନିଷ୍କର ଜମିଜମାର ସ୍ୱତ୍ତ୍ୱାଧିକାର ହରାଇଥିଲେ । ଏହାପରେ ସେ ପୁରୁଷାନୁକ୍ରମେ ଭୋଗକରିଆସୁଥିବା ତାଂକର

ସୋରଂଗ ଜମିଦାରି ମଧ୍ୟ ଖଜଣା ଦେଇନଥିବା ଅଭିଯୋଗରେ ନିଲାମ୍ କରିଦିଆଯାଇଥିଲା। ଇଂରାଜ ଓ ବଂଗାଳୀ କର୍ମଚାରୀମାନଂକ ଚକ୍ରାଂତ ଫଳରେ ସେ ନିୟମିତ ଖଜଣା ଦେଉଥିଲେ ମଧ୍ୟ ତାଂକୁ ଆତ୍ମସାତ୍ କରି ରାଜସ୍ୱ ବିଭାଗ କର୍ମଚାରୀମାନେ ଖଜଣା ଦେଇନାହାଂତି ବୋଲି ଅଭିଯୋଗ କରିଥିଲେ। ଜଣେ ବଂଗାଳୀ କର୍ମଚାରୀ କୃଷ୍ଣଚଂଦ୍ରସିଂ ଚକ୍ରାଂତ କରି ତାଂକ ଜମିଦାରି କିଣିନେଇଥିଲେ। ବକ୍ସି ଜଗବଂଧୁ ଇଂରେଜ ଶାସକମାନଂକୁ ୧୮୧୩ରେ ଯେଉଁ ସ୍ମାରକପତ୍ର ଦେଇ ତାଂକ ପ୍ରତିବାଦ ଜଣାଇଥିଲେ, ତାହା ଅତ୍ୟଂତ କଟୁ ଓ ଧମକପୂର୍ଣ୍ଣ ଥିଲା ବୋଲି Ewar ଙ୍କ ଲେଖାରୁ ଜଣାଯାଏ।

ଏହାପରେ ବକ୍ସି ଜଗବଂଧୁ ବଡ଼ ଦୁଃଖ-ଦୁର୍ଦ୍ଦଶାରେ କାଳାତିପାତ କରିଥିଲେ। ତେଣୁ ବକ୍ସି ଜଗବଂଧୁ ଚାରିଆଡ଼େ ବୁଲି ପାଇକ ଓ କଂଧମାନଂକୁ ଇଂରେଜ ବିରୁଦ୍ଧରେ ବିଦ୍ରୋହ କରିବାକୁ ସଂଗଠିତ କରାଇଥିଲେ। ତାଂକ ନେତୃତ୍ୱରେ ଖୁରଧାର ପାଇକ ବାହିନୀ ପୁଣି ଥରେ ବିଦ୍ରୋହର ଧ୍ୱଜା ତଳେ ଇଂରେଜ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିଥିଲେ। ଏହାହିଁ ଭାରତର ପ୍ରଥମ ସଶସ୍ତ୍ର ମୁକ୍ତି-ସଂଗ୍ରାମ। ଏହାର ଆରଂଭ ୧୮୦୪ ମସିହାରେ ଖୁରଧା ରଜା ମୁକୁଂଦଦେବ୨ୟଂକ ସମୟରେ। ୧୮୫୭ରେ ଆରଂଭ ହୋଇଥିବା ସିପାହି-ବିଦ୍ରୋହ ଏହାର ପ୍ରାୟ ୫୩ ବର୍ଷ ପରର ଘଟଣା। ମାତ୍ର ଖୁରଧା ପାଇକ-ବିଦ୍ରୋହ ଇତିହାସରେ କେବଳ ଏକ ଆଂଚଳିକ ବିଦ୍ରୋହରୂପେ ରହିଗଲା।

ପାଇକ-ବିଦ୍ରୋହର ତୁଂଗ ନେତୃତ୍ୱ ନେଇଥିଲେ ବକ୍ସି ଜଗବଂଧୁ ବିଦ୍ୟାଧର ଏବଂ ଜୟୀ ରାଜଗୁରୁ। ବିଦ୍ରୋହ ଦମିତ ହେବା ପରେ ଜୟୀରାଜଗୁରୁଂକୁ ମେଦିନାପୁର ଜେଲ୍‌ରେ ଫାଶୀ ଦିଆଯାଇଥିଲା। ରୋଡ଼ଂଗର ବକ୍ସି ଜଗବଂଧୁ, ଯେ କି ଏ ଯୁଦ୍ଧର ସେନାପତି ଥିଲେ, ଶେଷବେଳକୁ ଇଂରେଜମାନଂକ ସହିତ ଏକ ବୁଝାମଣାରେ ପହଂଚିଥିଲେ। ତାଂକୁ ପେନ୍‌ସନ୍ ଦିଆଯାଇଥିଲା। ରାଜା ମୁକୁଂଦଦେବ ବଂଦୀ ହୋଇଥିଲେ। ବିଦ୍ରୋହଦମିତ ହେବା ପରେ କେତେକ ବିଦ୍ରୋହୀ ପୁରୀ ଜିଲ୍ଲାରେ ଓ କଟକ ଜିଲ୍ଲାର କେତେକ ସ୍ଥାନରେ ବଣ-ଜଂଗଲରେ ଲୁଚିଛପି ରହି ଫିରିଂଗି ଶାସକମାନଂକ ଉପରେ ବହୁଦିନଯାଏ ଆକ୍ରମଣ ଚଳାଇଥିଲେ।

ସେ ଯାହାହେଉ, ଦେଶର ଆଜାଦୀ ପାଇଁ ଲଢ଼େଇରେ ଓଡ଼ିଆ ପାଇକର ଏକ ବଡ଼ ହିସାବ ରହିଛି। ସିପାହି-ବିଦ୍ରୋହର (୧୮୫୭) ପ୍ରାୟ ଚାଳିଶ ବର୍ଷ ପୂର୍ବେ ଘଟିଥିବା ପାଇକ-ବିଦ୍ରୋହ (୧୮୧୭) ଭାରତର ପ୍ରଥମ ସଶସ୍ତ୍ର ମୁକ୍ତି-ସଂଗ୍ରାମ କହିଲେ ଅତ୍ୟୁକ୍ତି ହେବନାହିଁ; ମାତ୍ର ଗଭୀର ଦୁଃଖର କଥା, ଆମ ଦେଶର ଇତିହାସକାରମାନେ ଏହାକୁ ଆଦୌ ସ୍ୱୀକୃତି ଦେଇନାହାଂତି, ଅଗ୍ରସ୍ଥାନ ଦେବା ତ ଦୂରର କଥା। ଏହା ଏକ ଦୁଃଖଦ ଜାତୀୟ ବିଡ଼ଂବନା।

**ଫିରିଂଗି କଳି – ଭାରତ : ତାପଂଗ-ବିଦ୍ରୋହ –**

ଖୁରଧା ପାଇକ-ବିଦ୍ରୋହ ଦମିତ ହେବାର ଦଶବର୍ଷ ପରେ, ଅର୍ଥାତ୍ ୧୮୨୭ ମସିହାରେ, ତାପଂଗ-ବିଦ୍ରୋହ ହୁଏ । ତାପଂଗ ଦଳବେହେରା ମାଧବଚଂଦ୍ର ରାଉତରାଏ ଏହି ବିଦ୍ରୋହର ନେତୃତ୍ୱ ନିଅଂତି। ପାଇକ-ବିଦ୍ରୋହ ପରଠାରୁ ପ୍ରଜାମାନେ ତାଂକ ନେତୃତ୍ୱରେ ବ୍ରିଟିଶ୍ ସରକାରକୁ କୌଣସି ଖଜଣା ଦେଉ ନଥିଲେ; ଫଳରେ ୧୮୨୭ ମସିହା ମଇ ୨୩ ତାରିଖରେ ଜଣେ ବ୍ରିଟିଶ୍‌ଅଫିସର କେତେକ ଗୋରା ସିପାହି ନେଇ ତାପଂଗ ଯାଇଥିଲେ। ସେଠାରେ ସଂଘର୍ଷ ହେବା ଫଳରେ ତାପଂଗ ଗଡ଼ର ଗୋବର୍ଧନ ବୈରିଗଂଜନଂକ ଗୁଳିଚୋଟରେ ଦୁଇଜଣ ଗୋରା ସିପାହି ପ୍ରାଣହରାଇଥିଲେ। ବ୍ରିଟିଶ୍ ସରକାର ଏଥିରେ କ୍ରୋଧାନ୍ୱିତ ହୋଇ ଦୃଢ଼ ପଦକ୍ଷେପ ଗ୍ରହଣକରଂତି। ସେମାନେ ତାପଂଗ ଦଳବେହେରାଂକୁ ଶୀଘ୍ର ସମସ୍ତ ବକେୟା ଖଜଣା ଦେଇଦେବା ପାଇଁ ଏବଂ ଖୋରଧା କୋର୍ଟରେ ଆତ୍ମସମର୍ପଣ କରିବାପାଇଁ ଏକ ଚରମପତ୍ର ପଠାଂତି; ମାତ୍ର ଦଳବେହେରା ସେଥିପ୍ରତି ଭ୍ରୂକ୍ଷେପ ନକରି ଯୁଦ୍ଧ ପାଇଁ ତିଆରି ହୁଅଂତି। ଖୋରଧାଠାରୁ ଏକ ସୈନ୍ୟବାହିନୀ ନେଇ ଲେଫଟ୍‌ନାଟ୍ କର୍ଣେଲ୍ ହାର୍କଟ୍ ତାପଂଗ ଯାତ୍ରା କରଂତି। ତାପଂଗ ଖୁରଧାଠାରୁ ଛ' ମାଇଲ ଦୂର। ତାପଂଗ ନିକଟବର୍ତୀ କାଂଡଗୋଦାଠାରେ ଦୁଇ ପକ୍ଷ ମଧ୍ୟରେ ପ୍ରବଳ ଯୁଦ୍ଧ ହୁଏ। ଯୁଦ୍ଧରେ ବିଦ୍ରୋହୀ ପାଇକମାନେ ପରାସ୍ତ ହୁଅଂତି। ଦଳବେହେରା ମାଧବ ଚଂଦ୍ର ରାଉତରାୟଂକୁ ଆତ୍ମସମର୍ପଣ ପରେ ତାଂକର ଉଦାରତା ଏବଂ ସାହସିକତା ପାଇଁ ବ୍ରିଟିଶ୍ ସରକାର ତାଂକୁ କ୍ଷମାକରିଦିଅଂତି।

ଏହି ତାପଂଗ ଯୁଦ୍ଧ କାହାଣୀ ତାପଂଗ ନିକଟବର୍ତୀ ସୁନାପୁଟ ଗ୍ରାମନିବାସୀ ମଧୁସୂଦନ ବିପ୍ର ତାଂକ ରଚିତ କାବ୍ୟ 'ଫିରିଂଗି କଳିଭାରତ' ନାମକ କାବ୍ୟରେ ବର୍ଣନା କରିଛଂତି। ଏହି କାବ୍ୟଟି ତାପଂଗ ଯୁଦ୍ଧର ଆଠବର୍ଷ ପରେ ରଚିତ ହୋଇଥିଲା ବୋଲି କବି ମଧୁସୂଦନ ଉଲ୍ଲେଖ କରିଛଂତି। ସେ ନିଜେ ଚାରିଦିନବ୍ୟାପୀ ଏହି ଯୁଦ୍ଧରେ ଜଣେ ପ୍ରତ୍ୟକ୍ଷଦର୍ଶୀରୂପେ ଉପସ୍ଥିତ ଥିଲେ ବୋଲି ମଧ୍ୟ ଲେଖିଛଂତି। ଏହି କାବ୍ୟର ପାଂଡୁଲିପିଟି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଅଛି। ଏହା ଏବେ ମଧ୍ୟ ଅପ୍ରକାଶିତ (ପୁରୀ ଡିଷ୍ଟ୍ରିକ୍ଟ ଗେଜେଟିୟର୍‌, ୧୦୩ ପୃଷ୍ଠା ଦ୍ରଷ୍ଟବ୍ୟ)।

ଏହି ପୁସ୍ତକରେ ଫିରିଂଗି ସହିତ ଯୁଦ୍ଧ କରିବାକୁ ଯିବାପୂର୍ବରୁ ତାପଂଗ ଦଳବେହେରା ମାଧବଚଂଦ୍ର ରାଉତରାୟଂକୁ ତାଂକ ସ୍ତ୍ରୀ ଇଂଦୁରେଖା ତାଂକୁ କିପରି ବୀରବେଶରେ ସଜାଇ ଦେଉଛଂତି, ତାହାର ଚିତ୍ତାକର୍ଷକ ବର୍ଣନା ରହିଛି :

''ଶ୍ରୀ ସାମଂତ ମାଧବଚଂଦ୍ର ରାଉତରା
ବୀରବେଶ ସାଜି ସେଇ ବସିଲେକ ତ୍ୱରା।
ମସ୍ତକେ ପଗଡ଼ି କର୍ଣରେ ବୀରବଲ୍ଲୀ
କରରେ କଂକଣ, ବକ୍ଷସ୍ଥଳେ ରତ୍ନମାଳି।

କାଂଧେ ସୁନା ପଇତା ଅଂଗୁଷ୍ଠେ ସୁନା ମୁଦି
ପୟରେ ଅନର୍ଗଳ ଗୋଡ଼ରେ ଦେଇ ବାଂଧି।
ଶ୍ରୀଅଂଗେ ଜରିଜାମା ଉପରାଣ ସାଲକୋଡ଼ି
ନାଗ ବଂଧକପ ମାଲକଛେ ଭିଡ଼ି।
ନୃସିଂହ-କବଚ ନେଇ ବାଂଧିଲେ ବାହୁରେ
ତାଂକ ଭାରିଯା ଇଂଦୁରେଖା ହରଷ ଅଂତରେ
ନାନା ପୁଷ୍ପମାଳା ନେଇ ଗଳାରେ ଖଂଜିଲେ
ଶୁଭ ଅନୁକୂଳେ ଦାସୀ ପରିବାରୀ ଘେନି,
ହର୍ଷେ ହୁଳହୁଳି ଦେଲେ ଆହୁରି କାମିନୀ।'' (ଫିରିଂଗି କଳିଭାରତ)

ଏହି କବିତାରୁ ଓଡ଼ିଆ ନାରୀର ବୀରପଣ, ସାହସିକତା, ଧୈର୍ଯ୍ୟ ଓ ପତିପ୍ରେମର ଉଜ୍ଜ୍ୱଳ ଦୃଷ୍ଟାଂତ ମିଳେ। ସଂଭ୍ରାଂତ ବଂଶର ଓଡ଼ିଆମାନଂକର ପାରଂପରିକ ବେଶଭୂଷା ଓ ଜୀବନ-ଶୈଳୀ ଏବଂ ଶୌର୍ଯ୍ୟ, ବୀର୍ଯ୍ୟ, ସ୍ୱାଭିମାନ ଓ ଦେଶପ୍ରୀତି ଏଥିରେ ଜୀବଂତଭାବେ ଫୁଟିଉଠିଛି।

**ଖୋରଧାର ଆପୋଷହୀନ ବ୍ୟକ୍ତିତ୍ୱ : ବାହୁବଳେଂଦ୍ର –**

ଖୁରଧାର ଆପୋଷହୀନ ବ୍ୟକ୍ତିତ୍ୱର ଜ୍ୱଳଂତ ନିଦର୍ଶନ ପିଂଡିକି ବାହୁବଳେଂଦ୍ର ହେଉଛଂତି ଏକ ଚଳଂତି ପ୍ରତିମା। ପାଇକ-ବିଦ୍ରୋହ ଦମିତ ହେବାପରେ ବ୍ରିଟିଶ୍ ଅଫିସରମାନେ ପାଇକ-ଖଂଡାୟତ ନେତୃବର୍ଗଂକ ସହିତ ଆପୋଷଆଲୋଚନା ଚଳାଇଥିଲେ। ମୁଲକରେ କିପରି ଶାଂତି ସ୍ଥାପିତ ହେବ ଏବଂ ପୂର୍ବାବସ୍ଥା ଫେରିଆସିବ, ସେ ବିଷୟରେ ଇଂରେଜ ଅଫିସର ଓ ପାଇକ ନେତାମାନଂକ ମଧ୍ୟରେ ଗୋଟାଏ ବୁଝାମଣା ହୋଇଥିଲା। ପୂର୍ବ ରାଜଦ୍ରୋହ ଓ ନରବଧ ଦୋଷ ମାଫ୍ କରାଯାଉବୋଲି ପାଇକମାନଂକ ତରଫରୁ ଅନୁରୋଧ କରାଯାଇଥିଲା। ଅଫିସରମାନେ ଆଶ୍ୱାସନାପୂର୍ଣ୍ଣ ପ୍ରତିଶ୍ରୁତି ଦେଇଥିଲେ; ମାତ୍ର ଜଣେ ବୀର ପିଂଡିକି ବାହୁବଳେଂଦ୍ର ସେଠାକୁ ଆସିନଥିଲେ। ସେ ନିଜ ଦଂଭରେ ଅଟଳରହିଲେ। ଅରଣ୍ୟ ମଧ୍ୟରେ ଫେରାର ଜୀବନ ଅତିବାହିତ କରିବାରେ ତାଂକୁ ବହୁ ଦୁଃଖକଷ୍ଟର ସମ୍ମୁଖୀନ ହେବାକୁପଡ଼ିଥିଲା।

ଖୁରଧାର ନରଗଦା ଗ୍ରାମର ଦିଗଂବର ଶ୍ରୀଚଂଦନ ତାଂକ ''ଖୁରୁଧା ଦର୍ପଣ'' ପୁସ୍ତକରେ ଲେଖିଛଂତି –

''ସେ ମେଳକୁ ଏକ ବୀର ଯେ ଦାରଠେଂଗ ଗ୍ରାମର
ପିଂଡିକି ବାହୁବଳେଂଦ୍ର ନାମ ତାଂକର,
ଭେଟିଲେ ନାହିଁ ଯେ ସେହି ଅରଣ୍ୟ ମଧ୍ୟରେ ରହି
ସିଂହ ପ୍ରାୟ ଗର୍ଜୁଥାଂତି ସେ ବାରଂବାର।
ମଳିପଡ଼ା ହରିଚଂଦନ
ଧରିଦେଇ ଖଂଡାୟତି ପାଇଲେ ଜାଣ।''

ବାହୁବଳେନ୍ଦ୍ର ଅରଣ୍ୟ ମଧ୍ୟରେ ରହି ସିଂହପରି ଗର୍ଜନ କରୁଥାଂତି। ବ୍ରିଟିଶ୍ ସରକାର ସଂଗେ ସାଲିସ୍ କରିବାକୁ ସେ ଆଦୌ ପ୍ରସ୍ତୁତ ନଥିଲେ। ମାତ୍ର ଶେଷରେ ମଳିପଡ଼ା ଗ୍ରାମର ହରିଚଂନ୍ଦନ ଇଂରେଜମାନଂକ ହାତରେ ତାଂକୁ ଧରାଇଦେଲେ। ଇଂରେଜ ସରକାର ତାଂକୁ ଯେ ଧରାଇଦେବ ତାକୁ ଉପଯୁକ୍ତ ପୁରସ୍କାର ଦେବେ ବୋଲି ପୂର୍ବରୁ ଘୋଷଣାକରିଥିଲେ। ମଳିପଡ଼ା ହରିଚଂନ୍ଦନଂକୁ ତାଂକ ବିଶ୍ୱାସଘାତୀ କାର୍ଯ ପାଇଁ 'ଖଂଡାୟତି' ମିଳିଥିଲା।

ଏହା ପରେ ବାହୁବଳେଂଦ୍ରଂକୁ କଟକ ଅଣାଯାଇଥିଲା। ସେଠାରେ ତାଂକୁ ବଂଦୀ କରି ରଖାଗଲା। ''ତାହାଂକ ଗୋଡ଼ରେ ବେଢ଼ିଥାଇ ତାଂକୁ ଦିନେ ଅସ୍ତ୍ରଶସ୍ତ୍ର ସଫାଇ କରିବାକୁ ଦିଆଯିବାରେ ସେ ତହିଁରୁ ପଟିଏ ତରବାରି ଆପଣା ହାତମୁଠାକୁ ଠିକିକରି ବଂଦୀଘରୁ ବାହାରି କାଠଯୋଡ଼ି ନଦୀ ନିଜ ବାହୁବଳରେ ପାରହୋଇ ବାରଂଗ ପର୍ଯଂତ ବାହାରି ଆସିଥିଲେ। ସୈନ୍ୟମାନେ ତାଂକୁ ଧରିନପାରି ବଂଧୁକ ପ୍ରୟୋଗ କରିବାରେ ସେ ଚାରିଗୁଳା ପର୍ଯଂତ ଆପଣା ହାତ ମୁଠାରେ ଧରିଥିଲେ। ପରିଶେଷରେ ଘେରାଉ କରି ଗୁଳି ବର୍ଷଣ ଦ୍ୱାରା ମାରିପକାଇବାରୁ କର୍ତ୍ତୃପକ୍ଷମାନେ ଦୁଃଖପ୍ରକାଶ କରିଥିବାର ଶୁଣାଯାଏ।'' –ଏହା ଫୁଟ୍‌ନୋଟ୍‌ରେ ଶ୍ରୀଚଂଦନ ମହାଶୟ ତାଂକ 'ଖୁରୁଧା-ଦର୍ପଣ' ବହିରେ ଉଲ୍ଲେଖ କରିଛଂତି।

**'ଖୁରୁଧା-ଦର୍ପଣ'ରେ ଜୟୀରାଜଗୁରୁ ଓ ବକ୍‌ସି ଜଗବଂଧୁଂକ କଥା –**

'ଖୁରୁଧା-ଦର୍ପଣ'ର ଲେଖକ ଦିଗଂବର ଶ୍ରୀଚଂଦନ ଖୁରୁଧା ଅଂତର୍ଗତ ନରଗଦା ଗ୍ରାମର ଅଧିବାସୀ ଥିଲେ। ସେ ଜଣେ ସରକାରୀ ଚାକିରିଆ ଥିଲେ। ସେ ଏହି ବହିରେ ଜୟୀରାଜଗୁରୁ ଓ ବକ୍‌ସି ଜଗବଂଧୁ ବିଦ୍ୟାଧରଂକୁ ଭଲ ଚକ୍ଷୁରେ ଦେଖିନାହାଂତି। ବକ୍‌ସି ଜଗବଂଧୁ ଗଂଜାମର ଘୁମୁସର ଜଂଗଲରେ ରହି ଏକ 'ଷଡ଼ଯଂତ୍ର' କରୁଥିଲେ ବୋଲି ସେ ଲେଖିଛଂତି। ଜୟୀ ରାଜଗୁରୁଂକୁ ମଧ୍ୟ ସେ ବିଷଦୃଷ୍ଟିରେ ଦେଖିଛଂତି। ଜୟୀ ରାଜଗୁରୁଂକ ସଂପର୍କରେ ସେ ଲେଖିଛଂତି।

(ରାଜାଂକର) ''ଏହାଂକର ଦୁର୍ଭାଗ୍ୟରୁ ପାତ୍ର ଜୟୀରାଜଗୁରୁ
ଦୁଃସାହସେ ବିଦ୍ରୋହରେ ମାତି ସେ ଦ୍ୱିଜ
ପେଶିଥିବା ଦୂତକୁ ବଧ
କରିବାର ଇଚ୍ଛା, ମାତ୍ର ଅନ୍ୟ ନିଷେଧ।
ଦୂତ ଯାଇ ଅନାଦରେ ସମସ୍ତ ଭାଷିବା ପରେ
ରାଜା ପଠାଇଲେ ଜୟୀ ରାଜଗୁରୁଂକୁ
ଦେଖାକରିବା ମାନସେ ସେ ସେନାପତିଂକ ପାଶେ
ରାଜ ନଯିବାର ରୋଷେ ନୋହିଲେ ତାକୁ
ତହୁଁ ଫେରି ସୈନ୍ୟ ସହରେ
ମାତିଲେ ଯାଇ ମୁଗଲବଂଦି-ଲୁଟିରେ।

ଶୁଣି ତା ଇଂରେଜ ସେନା ହେବାପାଇଁକି ବିମନା
କଟକରୁ ଖୁରୁଧାରେ ପ୍ରବେଶ ହେଲେ
ପୁଣି ଗଂଜାମରୁ ଦଳେ ଆସି ଯୁଦ୍ଧ ଆରଂଭିଲେ
ପ୍ରଥମେ ଘୁଂଚି ଦ୍ୱିତୀୟେ ଗୁପ୍ତେ ଆସିଲେ
ସୈନ୍ୟଖେଦି ନଅର ଭେଦି
ଜୟୀ ରାଜଗୁରୁଂକୁ ଯେ ଫାଶୀରେ ବନ୍ଧି।''
('ଖୁରୁଧା-ଦର୍ପଣ'– ୧୯୨୭)

ଏହାଛଡ଼ା ପାଦଟୀକାରେ ମଧ୍ୟ ଲେଖିଛଂତି– ''ଜୟୀରାଜଗୁରୁ ମହାଶୟ ଖୁରୁଧା ସ୍ୱାଧୀନତା ଉପଲକ୍ଷେ ନିଜର ଜୀବନକୁ ବଳୀଦେଇଥିଲେ ସତ୍ୟ, କିଂତୁ ସେ ଲୋକପ୍ରିୟ ହେବାର ପ୍ରତ୍ୟୟ ହୁଏନାହିଁ।'' ଜୟୀ ରାଜଗୁରୁ ଲୋକମୁଖରେ ବଡ଼ ଅପ୍ରିୟ ଥିଲେ ବୋଲି ସେ ମଧ୍ୟ ଉଲ୍ଲେଖ କରିଛଂତି। ସେ ଲୋକମୁଖରେ ପ୍ରଚଳିତ ପ୍ରବାଦ ଉଦ୍ଧାର କରିଛଂତି– ''କାଉ ବୋଲେ ରାଉରାଉ/ଜୟୀରାଜଗୁରୁ ମାଇପ ମଲା ବୋଲି ନ ବୋଇଲେ ଥାଉ'' ଇତ୍ୟାଦି।

ବକ୍ସି ଜଗବଂଧୁ ସଂପର୍କରେ ସେ ଲେଖିଛଂତି, ''ବକ୍ସି ଚରଣ ପଟ୍ଟନାୟକଂକୁ ପାଦରେ ପ୍ରହାରକଲେ। ପଟ୍ଟନାୟକ ଇଂରେଜ ହାକିମଂକ ଆଗରେ ନାଲିସ୍ କଲେ। ତେଣୁ ବକ୍ସି ଡରରେ ଘୁମୁସର ମାଳକୁ ପଳାଇଯାଇ ସେଠାରେ ଷଡ଼ଯଂତ୍ର କଲେ।'' ସେ ଏହି ସଂପର୍କରେ ଲେଖିଛଂତି –

''ଲୁଚି ଘୁମୁସର ମାଳେ ଏକ ଷଡ଼ଯଂତ୍ର କଲେ
ଯେପରି ତାଂକ ବଇରୀ ହୋଇବ ନାଶ
ପ୍ରଥମରେ ତ ଚରଣ ଦ୍ୱିତୀୟେ ଗୁମାସ୍ତା ପୁଣ
ବଇରୀ ପ୍ରତିସାଧନେ କଲେ ମାନସ।
କେତେକ ପାଇକ ଦଳାଇ,
ହୁକୁମ ଦେଲେ ସେଠାକୁ ଡକାଇ ନେଇ।
ସେମାନେ ହୁକୁମ ପାଇ ଏ କାର୍ଯେ ସାହସୀ ହୋଇ
ସେ ଦୁଇଜଣଙ୍କ ବଂଶ କରି ବିନାଶ
ତା'ପରେ ଆପଣା ଶତ୍ରୁ ନାଶ କରିବାର ହେତୁ
ଅରଣ୍ୟ ମଧ୍ୟରେ ରହି କାଟି ଦିବସ
ପୁନଶ୍ଚ କରଂତି ଲୁଂଠନ।''
('ଖୁରୁଧା-ଦର୍ପଣ' ୧୯୨୭)

ବକ୍ସି ଘୁମୁସର ଜଂଗଲରେ ରହି ଦଳେ ପାଇକ ଓ ଦଳାଇଂକୁ ପଠାଇ ଚରଣ ପଟ୍ଟନାୟକ ଓ ତାଂକ ଗୁମାସ୍ତା ବଂଶନାଶ କରିଥିଲେ ବୋଲି ଶ୍ରୀଚଂଦନ ଲେଖିଛଂତି। ତା'ପରେ ସେ ଲୁଂଠନ ବା ବିଦ୍ରୋହ ଆରଂଭକଲେ।

ଶ୍ରୀଚନ୍ଦନଙ୍କ ଲେଖାରୁ ତାଙ୍କର ଇଂରେଜ-ବିରୋଧୀ ଜୟୀରାଜଗୁରୁ ଓ ବକ୍‌ସି ଜଗବନ୍ଧୁଙ୍କ ବିରୁଦ୍ଧରେ ତିକ୍ତ ମନୋଭାବ ପରିସ୍ଫୁଟ ହୋଇଛି। ସେ ନିଜେ ଖୁରୁଧା କଚିରୀର ଜଣେ ଅମଲା ଥିବାରୁ ଏପରି ମନୋଭାବ ପୋଷଣ କରିବା ତାଂକ ପକ୍ଷରେ ସ୍ୱାଭାବିକ ଥିଲା।

'ଖୁରୁଧା-ଦର୍ପଣ' ପ୍ରଣେତା ଦିଗଂବର ଶ୍ରୀଚନ୍ଦନ ୧୯୨୭ ମସିହାରେ ଏ ପୁସ୍ତକଟି କଟକ ମୁକୁର ପ୍ରେସ୍‌ରେ ମୁଦ୍ରିତ କରାଇଥିଲେ। ଏହାର ପ୍ରଥମ ଖଂଡ ମାତ୍ର ପ୍ରକାଶପାଇଥିଲା।

ଏହିପରି ବହୁ ବୀରତ୍ୱର ଚେହେରା ଓ ହସ୍ତାକ୍ଷର ଖୁରଧାର ଚିତ୍ରପଟରେ ଝଲସିଉଠେ।

**ପାଇକ ପରଂପରା –**

''ଓଡ଼ିଶାର ସାମରିକ ସଂସ୍କୃତି ଓ ଐତିହ୍ୟର ଏକ ଜ୍ୱଳଂତ ଅଗ୍ନିଶିଖା ପାଇକ। ସମୟର ସୁଅରେ ଏଇ ପାଇକ ପରଂପରା କିଂତୁ ଫିଂପି ମାରିଯାଇଛି। ଆଉ ସେବେଠୁ ବି ହଜିଯାଇଛି ଓଡ଼ିଆ ଜାତିର ମାନ ଅଭିମାନ ସବୁ କିଛି। କଡ଼ଲେଉଟେଇଛି ସମୟ; ତା' ସାଥିରେ କଡ଼ଲେଉଟେଇଛି ଆମର ଏ ଜାତି। ଅବଶ୍ୟ ଅତୀତର ସୁବର୍ଣ୍ଣ ସ୍ମୃତିକୁ ମନେପକେଇ କୁରୁଳିଉଠୁଛୁ ଆମେସବୁ; ବାଉଳିହେଉଛୁ ବେଳେବେଳେ। ଅତୀତର ନଥିପତ୍ର ଆଢ଼େଇ ଆଢ଼େଇ ପୂର୍ବ ଗୌରବକୁ ଗୁଣିହେଉଛୁ ମନେମନେ; ହେଲେ ଆମ ସେଇ ବିରାଟ ପରଂପରାକୁ ଧରି ରଖିପାରିନୁ ଆଉ। ପଡ଼ୋଶୀ ଘରର ପାଟଲୁଗା ପିଂଧି ଉଲ୍ଲସିତ ହେଉଛୁ; ଗୋଟାଏ ଅବକ୍ଷୟର ଏରୁଂଡିବଂଧ ଉପରେ ଛିଡ଼ାହୋଇ ନିଜକୁହିଁ ଅଟହାସ୍ୟ କରିଚାଲିଛୁ ଆମେ ନିଜେ। ଗୋଟାଏ ଜାତିପାଇଁ ୟାଠୁ ବଳି ଦୁଃଖର ଘଟଣା ଆଉ କ'ଣ ହୋଇପାରେ?'' (ଗୋପାଳ ସାମଂତ)

ଲେଖକଂକ ମତରେ ପୋଥି-ପୁରାଣରୁ ଆରଂଭକରି ମହାଭାରତ ପର୍ଯ୍ୟଂତ ସବୁଠି ଏଇ ପାଇକର ବର୍ଣ୍ଣନା ଦେଖିବାକୁ ମିଳିଥାଏ। 'ପଦାତିକ' ଶବ୍ଦରୁ ଏଇ ପାଇକ ଶବ୍ଦଟି ଆସିଛି।

ଭାଷାତତ୍ତ୍ୱବିଦ୍‌ମାନଂକ ମତରେ ପାଇକ ହେଉଛି ପାଏ+ଇକ=ପାଇକ କିଂବା ପାୟି+ଇକ=ପାଇକ। ଏହିଭଳି ସେମାନେ ପାଇକକୁ ଉପସ୍ଥାପନା କରଂତି। ଐତିହାସିକମାନଂକ ମତରେ କପିଳେନ୍ଦ୍ର ଦେବଂକ ସମୟରୁହିଁ ଓଡ଼ିଶାରେ ଏଇ ପାଇକ ପରଂପରାର ପ୍ରାଧାନ୍ୟ ରହିଆସିଛି। ତାଂକ ସମୟରୁ ଏଇ ପାଇକବାହିନୀ ଶକ୍ତିଶାଳୀ ହୋଇଉଠିଥିଲେ। ଏଇ ବୀର ପାଇକମାନେ କପିଳେନ୍ଦ୍ର ଦେବଂକ ସମୟରେ ଗଂଗାଠାରୁ ଗୋଦାବରୀ ପର୍ଯ୍ୟଂତ ବହୁ ଭୂ-ଭାଗ ଜୟଲାଭକରିଥିଲେ। ପାଇକମାନଂକପାଇଁ ମହାରାଜା ନିଷ୍କର ଜମି ଖଂଞ୍ଜିଦେଇଥିଲେ। ବର୍ଷସାରା ସେମାନେ

ଚାଷବାସ କରୁଥିଲେ ଏବଂ ସମରାଭ୍ୟାସ କରି ରହୁଥିଲେ। ଯୁଦ୍ଧ ସମୟରେ ସେମାନଂକୁ ଡକାଯାଉଥିଲା। ଏଇ ପାଇକ-ପୁଅମାନଂକର ରଣକୌଶଳ କେତେକାଂଶରେ ଥିଲା ସ୍ୱତଂତ୍ର। ଚାଇନାର ଗରିଲା ଯୁଦ୍ଧଭଳି ଓଡ଼ିଶାର ଏଇ ପାଇକମାନେ ମଧ୍ୟ ସ୍ୱତଂତ୍ର ଶୈଳୀରେ ଯୁଦ୍ଧ-କୌଶଳ ଶିଖିଥିଲେ।

ଶେଷ ସ୍ୱାଧୀନ ସମ୍ରାଟ୍ ଦ୍ୱିତୀୟ ମୁକୁଂଦ ଦେବଂକ ସମୟରେ ଯେଉଁ ପାଇକ ସୈନ୍ୟବାହିନୀର ସୂଚନା ମିଳେ— ସେଥିରୁ ଜଣାଯାଏ, ଖୁରଧାରେ ୧୧୦ଟି ଗଡ଼ାଥିଲା। ଅଧିପତି ଥିଲେ ଜଣେ ଜଣେ ଦଳବେହେରା। ତାଂକର ୨୪ ଜଣ ସହଯୋଗୀ ରହୁଥିଲେ। ସେମାନେ ହେଉଛଂତି ଦଳେଇ, ନାୟକ, କଉଡ଼ିଭାଗିଆ, କୋଠକରଣ, ଭୂଇଁମୂଳ, ପ୍ରଧାନ, ଭୋଇ, ପାଇକ ଇତ୍ୟାଦି। ଆଉ ଏ ପାଇକମାନଂକ ମଧ୍ୟରେ ଯଦିବା ଅଧିକାଂଶ ଥିଲେ ଖଂଡାୟତ ଓ କ୍ଷତ୍ରିୟ, ତଥାପି ଅନ୍ୟାନ୍ୟ ସଂପ୍ରଦାୟ ପାଇଁ ପାଇକବାହିନୀରେ ଯୋଗଦେବା ଲାଗି କୌଣସି ପ୍ରକାର ବାଧାବିଘ୍ନ ନଥିଲା; ଯେକୌଣସି ସଂପ୍ରଦାୟର ମଜଭୁତ ଯୁବକମାନେ ଯୁଦ୍ଧବାହିନୀରେ ପ୍ରବେଶ କରି ପାରୁଥିଲେ। ଏଭଳି କି ଅନେକ ମୁସଲମାନ ଦଳବେହେରାଂକ ନମୁନା ମଧ୍ୟ ଖୁରଧା ଇତିହାସରେ ବିରଳ ନୁହେଁ। ଗଡ଼କେରଂଗର ମୁସଲମାନ ଦଳବେହେରା ତା'ର ଗୋଟିଏ ଜ୍ୱଳଂତ ଉଦାହରଣ।

ଏଇ ପାଇକବାହିନୀରେ ଶୌରୀ ଖଂଡାୟତମାନଂକର ପ୍ରବେଶ ଥିଲା। ଖୁରଧା ଜିଲ୍ଲାରେ ୧୩ଟି ଶୌରୀ ଖଂଡାୟତ ଗଡ଼ ଥିଲା। ଏମାନେ ସବୁ ନିପୁଣ ଯୋଦ୍ଧା ଥିଲେ। ଗଡ଼ ଅରିଶିଳ ଥିଲା ଏଇ ଶୌରୀ ଖଂଡାୟତଂକ ଗଡ଼। ଏଇ ଗଡ଼ର ଶେଷ ସଂତକ ହେଉଛଂତି ବାଳକୃଷ୍ଣ ସମର ସିଂହ।

ଏହି ଲେଖକ ଶ୍ରୀ ଗୋପାଳ ସାମଂତରାୟ ଦର୍ଶାଇଛଂତି ଯେ ସେ ସମୟରେ ଖୋରଧା ରାଜବଂଶର ଧନୁର୍ବିଦ୍ୟା-ଗୁରୁ ଥିଲେ ଗୁରୁଜଂଗର ରାଉତରାୟବଂଶ।

# ଦଶମ ଉଲ୍ଲାସ

## ପାଇକଖେଦା ଓ ଓଡ଼ିଆ ସମରଶାସ୍ତ୍ର

ପୁରୀ ଜିଲ୍ଲା ଅଂତର୍ଗତ ବ୍ରହ୍ମଗିରି ଥାନାରେ ଗଡ଼କୋଂକଲ ଗ୍ରାମରେ ସମରଶାସ୍ତ୍ରବିତ୍ କହ୍ନାଇ ଚଂପତିରାୟକଂର ଜନ୍ମ। ଏହି ଗ୍ରଂଥଟିର ନାମ 'ପାଇକଖେଦା'। ଏହା ପୁରୁଷୋତ୍ତମ ଦେବଂକ ଅଂତେ ତାଂକ ପୁତ୍ର ନରସିଂହ ଦେବଂକ ରାଜତ୍ୱର ଚାରି ଅଂକରେ ଲେଖାଯାଇଅଛି ବୋଲି ଚଂପତିରାୟ ତାଂକ ଗ୍ରଂଥ 'ପାଇକଖେଦା'ରେ ଲେଖିଛଂତି। ଅଂକ ଗଣନା ଅନୁସାରେ ଏହା ୧୫୪୭ ଶକାବ୍ଦ ବା ୧୬୨୫ ଖ୍ରୀଷ୍ଟାବ୍ଦ ଅଟେ। ଏହି ଗ୍ରଂଥଟି ଏକ ପ୍ରାମାଣିକ ସମରଶାସ୍ତ୍ରର ମର୍ଯାଦା ଦାବି କରେ। ଓଡ଼ିଶାରେ ଯେଉଁ ଅନ୍ୟ ଦୁଇ ଖଂଡ ସମରକାବ୍ୟ ମିଳେ, ତାହା ପାଇକମାନଂକର ରଣକଳା ଓ ରଣକୌଶଳ ସଂବଂଧରେ ଅଧିକ କିଛି ସାକ୍ଷ୍ୟ ଦିଏନାହିଁ। ସେଥିମଧ୍ୟରୁ ଖ୍ରୀଷ୍ଟୀୟ ୧୬ଶ ଶତକରେ ରଚିତ ପ୍ରତାପରୁଦ୍ର ଦେବଂକ ରାଜସଭା-ପଂଡିତ ଗୋଦାବରୀ ରାଜଗୁରୁଂକ ପ୍ରଣୀତ 'ହରିହର ଚତୁରଂଗ' ଗ୍ରଂଥଟି ସଂସ୍କୃତ ଭାଷାରେ ରଚିତ। ସେଥିରେ ଅନେକ ବିଷୟ ନାହିଁ ଯାହା 'ପାଇକଖେଦା'ରେ ଅଛି; ଯଥା– ପୋତବର୍ଣନା, ଧ୍ୱଜବର୍ଣନା, ଗାରୁଡ଼ୀଭିଆଣ, ଶରଫଳା ତଥା ନାଳିକାସ୍ତ୍ର ପ୍ରୟୋଗ ପ୍ରଭୃତି ବିଷୟବସ୍ତୁ ଅଧିକ ଅଟେ। 'ହରିହର ଚତୁରଂଗ' ଗ୍ରଂଥରେ ଲିଖିତ ଧନୁର୍ବେଦାଧିକାର, ସୈନ୍ୟସଂଗ୍ରହ, ବିଧି, ଚାପ ପ୍ରମାଣ, ନିଷେଧ, ଧନୁର୍ବାଣ ପ୍ରୟୋଗ, ଗୁଣମୁଷ୍ଟି, ବ୍ୟୟ, ଶ୍ରମକ୍ରିୟା (ଶାସନ), ନାରାଚ ପ୍ରମାଣ, ଯୁଦ୍ଧଗତି, ଧ୍ୱଜଲକ୍ଷଣ, ଅସ୍ତ୍ରବିଧି, ସଂଗ୍ରାମବିଧି, ପଦାତିକ, ଅଶ୍ୱାରୋହୀ, ଗଜାରୋହୀକ୍ରମ ପ୍ରଭୃତି ଯେଉଁସବୁ ଲକ୍ଷଣରେ ସାମରିକ ଗ୍ରଂଥମାନ ପ୍ରାମାଣିକ, ସେହି ସମସ୍ତ ଲକ୍ଷଣରୁ 'ପାଇକଖେଦା' ବଂଚିତନୁହେଁ; ମାତ୍ର 'ପାଇକଖେଦା'ରେ ଥିବା ସ୍ୱତଂତ୍ର ବିଷୟମାନ 'ହରିହର ଚତୁରଂଗ'ରେ ନାହିଁ।

ଦ୍ୱିତୀୟ ଗ୍ରଂଥଟି ଢେଂକାନାଳର ବ୍ରଜନାଥ ବଡ଼ଜେନାଂକ ପ୍ରଣୀତ 'ସମରତରଂଗ'। ତାହା ତତ୍‌କାଳିକ ମରହଟ୍ଟାମାନଂକର ସମରସଜ୍ଜା-ବିଷୟକ ଏକ ବର୍ଣନାତ୍ମକ କାବ୍ୟମାତ୍ର। ତେଣୁ ସାମରିକ ବିଷୟବସ୍ତୁପୂର୍ଣ 'ପାଇକଖେଦା' ତୁଳନାରେ ଅନ୍ୟ ଦୁଇଟି ଗ୍ରଂଥ ସେତେ ବହୁମୁଖୀ ଓ ପୂର୍ଣାଂଗ ନୁହଂତି।'' ('ପାଇକଖେଦା' ଅବତରଣିକା– ପଦ୍ମଶ୍ରୀ ପଂଡିତ ସଦାଶିବ ରଥ ଶର୍ମା)।

'ପାଇକଖେଦା'ରୁ ଜଣାଯାଏ ଯେ, ସୈନ୍ୟ ସଂଗ୍ରହ, ସେନାମାନଂକୁ ତାଲିମ ଦେବା, ଯୁଦ୍ଧଯାତ୍ରା, ତିଥି, ବାର, ନକ୍ଷତ୍ର ତଥା ଗ୍ରାମଦେବତୀ ପ୍ରଭୃତିଂକ ଆଂଗ୍ୟା

ନେବା, ସେନାଗଠନ ସମୟରେ ପ୍ରତି ୫୨୭ ଜଣଂକ ପ୍ରତି ଜଣେ ବୈଦ୍ୟ, ଛଅଜଣ ପାଚ଼କ, ୧୨ ଜଣ ଯୋଗାଣିଆ, ପ୍ରତି ଦଳକୁ ତିନିଗୋଟି ଶଗଡ଼, ବାହାବଳେଂଦ୍ର ବା ଧ୍ୱଜାଧାରୀ, ୩ ବୋଝିଆ, ୨୭ ପ୍ରଭୃତି ରଖିବା ବିଧି ଥିଲା ।

| | | | |
|---|---|---|---|
| ଶିଂଗାବାଦକ – | ୧ | କୂଟନୈତିକସଦସ୍ୟ– | ୩ |
| ଗଜ – | ୧ | ପଦାତିକ – | ୧୫ |
| ଗଜାରୂଢ଼ପତାକାଧାରୀ – | ୧ | ସେନାପତି – | ୧ |
| ବାଦ୍ୟକାର – | ୧ | ସାରଥି – | ୧ |
| ଅଶ୍ୱ – | ୩ | ରାଜକର୍ମଚାରୀ – | ୧ |
| ଅଶ୍ୱଯୂଥ ପତାକାଧାରୀ – | ୧ | | |

ସେନାପତି ସମସ୍ତ ଜ୍ଞାନରେ ପ୍ରବୀଣ ଓ କୁଳୀନ ବଂଶଜାତ ହେବା ଆବଶ୍ୟକ । ସୈନ୍ୟମାନଂକ ମନକୁ ଆନଂଦିତ ଓ ସତେଜ କରିବାପାଇଁ ନାନା ପ୍ରକାର ନୃତ୍ୟଗୀତ ଓ ବାଦ୍ୟର ଆୟୋଜନ କରାଯାଉଥିଲା । ବାଦ୍ୟମାନଂକ ମଧ୍ୟରେ ଭୋପା, ଗାୟା, ବାହାଲିଆ, କିଂଭିରିଆ, କାଠିଆ, ଢୋଲ, ଚାଂଗୁ, ଡ଼ପା, ଖୁଟି, ଅଜଘର, କାଠିଆମାଳ, ଝାଂଜ, ଫୁଂକା, ଖଡୁଆ, ଭେରୀ, ଶିଂଗା, ତୁରି, ମର୍ଦଳ, କଂସାଳ, କଡ଼ା, ଘୁମୁରା, ଦାଉଂଡି, ସରଗଣା ପ୍ରଭୃତି ବ୍ୟବହୃତ ହେଉଥିଲା; ଫଳରେ ପାଇକମାନଂକ ମନରେ ଅଦ୍ଭୁତ ପ୍ରେରଣା ସଂଚାରିତ ହେଉଥିଲା ।

ଯୁଦ୍ଧରେ ଯେଉଁସବୁ ଅସ୍ତ୍ରଶସ୍ତ୍ର ବ୍ୟବହୃତ ହେଉଥିଲା, ତାହା ହେଉଛି ପ୍ରଧାନତଃ ଧନୁର୍ବାଣ, ଖଡ୍‌ଗ, ଶକ୍ତି, ବଜ୍ର, ପରିଘ, ଖେଟକ, ତୋପର, ପାଶୁପତ, ବର୍ଛା, ପାଶ, ଅଂକୁଶ, ପରଶୁ, ବର୍ମ, କଟାରି, ବାଂକଛୁରି, ଚକ୍ର, ବଂନାଟି ଇତ୍ୟାଦି ।

ପାଇକମାନେ ବିଭିନ୍ନ ବ୍ୟୂହରଚନା କରିବାର ବ୍ୟୁତ୍ପତ୍ତି ହାସଲକରିଥିଲେ ବୋଲି ଅଗ୍ନିପୁରାଣ, ବଶିଷ୍ଠକୃତ ଧନୁର୍ବେଦ ସଂହିତା, ବୃହଦ୍ ଶାର୍ଙ୍ଗଧର, କୌଟିଲ୍ୟ ଅର୍ଥଶାସ୍ତ୍ର ପ୍ରଭୃତିରେ ଉଲ୍ଲିଖିତ ମକର, ଶ୍ୱେନ, ସ୍ୱଚୀ, ଶକଟ, ବଜ୍ର, ସର୍ବୋଦ୍-ଭଦ୍ର ପ୍ରଭୃତି ବ୍ୟୂହର ଯେଉଁସବୁ ବର୍ଣନା ଦେଖିବାକୁ ମିଳେ, ତାହା ମଧ୍ୟ ପାଇକମାନେ ଉତ୍ତମରୂପେ ଆୟତ୍ତ ଓ ପ୍ରୟୋଗ କରିଜାଣିଥିଲେ ବୋଲି 'ପାଇକଖେଦା'ରୁ ଜଣାଯାଏ ।

'ପାଇକଖେଦା'ରେ ଯେଉଁସବୁ ପୋତମାନଂକର ବର୍ଣନା ଦେଖାଯାଏ ତାହା ଅନ୍ୟାନ୍ୟ ଗ୍ରଂଥ ତୁଳନାରେ ଟିକିଏ ସହଜ; ଠାଏ ଠାଏ ସାମାନ୍ୟ ପାର୍ଥକ୍ୟ ମଧ୍ୟ ଦେଖାଯାଏ ।

'ପାଇକଖେଦା'ରେ ପୋତର ଶ୍ରେଣୀବିଭାଗରେ ଉଲ୍ଲେଖଥିବା ଭୀମା, ଚପଳା, ପଟଳ, ଭୟ, ଦୀର୍ଘା, ପତ୍ରପୁଟ, ଗର୍ଭରା, ମଂଥରା, ଦୀର୍ଘିକା, ତରଣୀ, ଲୋଳା, ତାତ୍ୱରା, ଗାମିନୀ, ଜଂଗଲା ପ୍ଲାବିନୀ, ଧରଣୀ, ବେଗିନୀ ପ୍ରଭୃତି ପୋତମାନଂକର ପରିଚୟ ମିଳେ । ଓଡ଼ିଶାର ନୌ-ବାହିନୀ ଉଚ୍ଚକୋଟୀର ଥିଲା ବୋଲି 'ପାଇକଖେଦା'ରୁ ଯଥେଷ୍ଟ ପ୍ରମାଣ ମିଳେ ।

ଶୃଙ୍ଖଳା ଯୁଦ୍ଧବିଭାଗର ପ୍ରଧାନ ବିଷୟ। ସମସ୍ତ ବିଭାଗ, ଉପବିଭାଗ କର୍ମଚାରୀଭେଦରେ କ୍ଷମତାର ହ୍ରାସ ବୃଦ୍ଧି ହୋଇଥାଏ।

ପ୍ରାଚୀନ ଉତ୍କଳରେ ସୈନ୍ୟମାନଂକର ବହୁ ବିଭାଗର ସୃଷ୍ଟି ହୋଇଥିଲା ଓ ସଂଧିବିଗ୍ରହିକ, ବୈଦେଶିକ ସଚିବ (ସୋମଲ୍ଲଚେନନ) ଚମୂପତି, ଏଡ଼ରା ଚମୂପତି, ବନପତି, ସେନାପତି ପ୍ରଭୃତି ବହୁ ବିଶିଷ୍ଟ କର୍ମଚାରୀମାନେ ବିଭାଗର ପରିଚାଳନା ପ୍ରତି ତୀକ୍ଷଣ ଦୃଷ୍ଟି ଦେଉଥିଲେ। ଶୋଭାଯାତ୍ରା, ସୈନ୍ୟସଂଗ୍ରହ, ଆଦେଶ ପ୍ରଦାନ, ପରାମର୍ଶ ପ୍ରଭୃତି ଉପବିଭାଗରେ ମହାପାତ୍ର, ପଟ୍ଟଆରି ଭୋଇମୂଳ, ବୁଦ୍ଧାଲେଂକା ପ୍ରଭୃତି ବହୁ ବିଭାଗୀୟ କର୍ମକର୍ତା ଶୃଙ୍ଖଳାବିଧାନ କରୁଥିଲେ।

'ପାଇକକଖେଦା'ରେ ବର୍ଣ୍ଣିତ ପୋତ-ଯୁଦ୍ଧରୁ କିଛି ଉଦ୍ଧାର କରୁଛୁ–

× × ×

''ଅଛି ପୋତ ସଶ୍ରଜାତି ପ୍ରକାର
ମାତ୍ର ଆଂଭର ଅଟେ ନଅ ଘର।
ବହିତର ଗାଂଡ଼ିଆ ଚୋଟ, ମୁଖି,
ବଣିଜରେ ଏହା ସାର ପରଖି।
ସମରେ ନୁହଇ।
ସମରେ ଅଟଇ ସୁର ଚାତୁରୀ
ପୁଣ ଶୁଣ ରାଜପୁର ଲାଂଜୁଆ,
ଖାଇ ଜପା ଗଂଗପ୍ରସାଦ ଠିଆ।
ନଂଦିଆ ଖୁଡ୍ରୁମ ଗୁରୁ ଏ ମାନ
ଗୁଣ କହିବା ଶୁଣ ସାବଧାନ।
ଲାଂଜୁଆ ଯେ ଚାରୁ;
ଦୂରୁ ଦିଶଇ ଯେହ୍ନେ ମହାମେରୁ
ବ୍ରହ୍ମଜାତି ଯେ ଅଟଇ ଚାତୁରି,
ବାଗି କହିବା ଗୁଣ ଯେ ତାହାରି
ଶୁଣ ଖାଇ ଜଗା ଗଂଗପ୍ରସାଦ,
ସେ ଯେ ଦୁଇ ଘର ପ୍ରାୟ ବିଷଦ।
ଆଡ଼ପଟୁ ଘର।
ଗଡ଼ ଖାଇରେ ରହିବ ସତ୍ୱର
ତାହା ସଂଗେ ଖୁଡୁପ ରହିଥିବ।
ଘରେ ପେଟରେ ବୁଡ଼ିରହିଥିବ।
ନଂଇ କରି ଖୁଡୁପରେ ପଶଂତି।
ଜନ ବାହାରୁ ତାହା ନ ଦେଖଂତି।

ରାଜପୁର ତରୀ
ପାଇକଗଣେ ରଖିବେ ଆବରି।
ଯେ କାଳେ ନୃପ ସମରେ ଗମିବ।
ସଂଗେ ତିନି ଖୁଦ୍ର ସଇ ନଥିବ।
ଲାଂକୁଆ ଗଂଗପ୍ରସାଦରେ ଥିବେ।
ଗହଣ ବହନ ଏହୁ କରିବେ।... ଇତ୍ୟାଦି ଇତ୍ୟାଦି।

ମୁଁ ଖୁରଧାକୁ ଖୋଜିଛି। ଏହାର ପ୍ରତି ବାଲିଗରଡ଼ାର ଏକ ନିଜସ୍ୱ ବକ୍ତବ୍ୟ ଅଛି। ମୋର ଖୁରଧା ଆବିଷ୍କାର ଏପର୍ଯ୍ୟଂତ ସଂପୂର୍ଣ ହୋଇନାହିଁ।

**ସାହିତ୍ୟ କର୍ମ –**

ଗାଁରେ ରହି ମୁଁ ନିୟମିତ ଲେଖାଲେଖି ଓ ପଢ଼ାଶୁଣା କରୁଥାଏ। ମୋ ଲିଖିତ କେତୋଟି କବିତା 'ସହକାର' ପତ୍ରିକାରେ ପ୍ରକାଶପାଇଥିଲା। ତା' ମଧ୍ୟରେ 'ଫାଲ୍‌ଗୁନ ଲକ୍ଷ୍ମୀ' ଓ 'ପତିତାର ଅର୍ଘ୍ୟ' ଅନ୍ୟତମ। ସେ କବିତା ଦୁଇଟି ଦୀର୍ଘ କବିତା ଥିଲା। ମୋର କୌଣସି କବିତା-ସଂକଳନରେ ତାହା ପ୍ରକାଶ ପାଇ ନାହିଁ; କାରଣ ପତ୍ରିକା ଦୁଇଟିର କପି କୁଆଡ଼େ ହଜିଯାଇଥିଲା। ଏ ପତ୍ରିକାଟି କଟକରୁ ଶ୍ରୀ ବାଳକୃଷ୍ଣ କରଂକ ସଂପାଦକତ୍ୱରେ ପ୍ରକାଶପାଉଥାଏ।

ମୁଁ ଲାଲା 'ଲଜପତ୍ ରାଏଂକ ଲିଖିତ ପୁସ୍ତକ 'India in Bondage'. ବହିଟି, ଯାହା ସେତେବେଳେ ଇଂରେଜ ସରକାର ଦ୍ୱାରା ବାଜ୍ୟାପ୍ତ ହୋଇଥିଲା, ପଢ଼ିଥିଲି। ବାଜ୍ୟାପ୍ତ ବହି ଘରେ ରଖିବା ବା ପଢ଼ିବା ବିପଦ୍‌ଜନକ ଥିଲା। ଏହାଛଡ଼ା ଆୟାର୍‌ଲ୍ୟାଂଡ଼ର ବିପ୍ଳବୀ ନେତା ଡି. ଭେଲେରାଂକ ଜୀବନୀ ଓ ତାଂକ ପ୍ରଣୀତ କେତେକ ବହି ଏବଂ 'ଆଇରିଶ୍ ବିପ୍ଳବ' ସଂବଂଧରେ କେତେକ ବହି ମଧ ପଢ଼ିବାକୁ ପାଇଥିଲି। ଏଥିରୁ କେତେକ ବହି ମଧ ଭାରତରେ ବାଜ୍ୟାପ୍ତ ବା ନିଷିଦ୍ଧ ହୋଇଥିଲା। ଚାଇନିଜ୍ ନେତା ସାନ୍‌ୟାତ୍ ସେନଂକ ଜୀବନୀ ଓ ତାଂକ ବିପ୍ଳବାତ୍ମକ ଲେଖାମାନ ମଧ ପଢ଼ିଥିଲି। ଏହାଛଡ଼ା ଆମ ଘରେ ଥିବା ବଂଗଳା 'ନିହିଲିଷ୍ଟ୍ ଷଡ଼ଯଂତ୍ର' ବହି ମଧ ପଢ଼ିଥିଲି। ଏ ବହିରେ ରୁଷ୍ ସମ୍ରାଟ୍ ଜାରଂକ ବିରୁଦ୍ଧରେ ରୁଷୀୟ ବିପ୍ଳବୀ ନିହିଲିଷ୍ଟମାନଂକର ସଂତ୍ରାସବାଦୀ କାର୍ଯକଳାପ ସଂବଂଧରେ ଜାଣିବାକୁ ପାଇଥିଲି। ସେମାନେ କିପରି 'ଜାର୍' ଯାଉଥିବା ଟ୍ରେନ୍‌କୁ ରେଳପଥରେ ଡିନାମାଇଟ୍ ଖଂଜି ଉଡ଼ାଇଦେଇଥିଲେ ଏବଂ ଅନ୍ୟାନ୍ୟ ବିପ୍ଳବାତ୍ମକ କାର୍ଯରେ ଲିପ୍ତ ଥିଲେ, ସେସବୁର ବିବରଣୀ ପାଠ କରିଥିଲି।

ଏହାଛଡ଼ା ରୁଷୀୟ ବଲ୍‌ଶେଭିକ୍‌ମାନଂକର ସଂଗଠନ ସଂପର୍କରେ ଏବଂ ଲେନିନଂକ କଥା କେତେକ ବହିରୁ ମଧ ପଢ଼ିଥିଲି। କାର୍ଲ ମାର୍କସ୍ ଏବଂ ଟ୍ରଟ୍‌ସ୍କି ଲିଖିତ କେତେକ ବହି ମଧ ପଢ଼ିଥିଲି। ସାହିତ୍ୟ ବହି ମଧରେ ବଂକିମ ଚଂଦ୍ରଂକ 'ଆନଂଦମଠ' ଓ ଆଉ କେତୋଟି ଉପନ୍ୟାସ, ନବୀନଚଂଦ୍ର ସେନଂକ 'ଅମିତାଭ', ସାର୍ ୱାଲ୍‌ଟାୟାର୍ ସ୍କଟଂକ 'ରେବେକା' ଓ ଚାର୍ଲସ୍ ଲ୍ୟାଂବଂକ 'Tales from

Shakespear' ଆଦି ପଢ଼ିଥିଲି । ଓଡ଼ିଆ କବିଂକ ମଧ୍ୟରେ ଭଂଜ, ଅଭିମନ୍ୟୁ, ଦୀନକୃଷ୍ଣ, ସାରଳା ଦାସ, ଭାଗବତ ଓ କୁଂତଳାକୁମାରୀ, ନଂଦକିଶୋର ଓ ରାଧାନାଥ, ମଧୁସୂଦନ, ଗଂଗାଧର, ଫକୀରମୋହନ ଆଦିଂକ ବହି ମଧ୍ୟ ପଢ଼ିଥିଲି ।

**ଯାଜପୁର ଓ ବାଂକୀ ହାଇସ୍କୁଲ୍‌ରେ କିଛିଦିନ –**

ଏହାପରେ ମୁଁ ଯାଜପୁର ହାଇସ୍କୁଲରେ କେତେ ମାସ ପଢ଼ିଥିଲି । ମୋର ଭିଣୋଇ ଡାକ୍ତର ଜଗନ୍ନାଥ ଦାସ ସେଠିକାର ହସ୍‌ପିଟାଲ୍‌ର ମୁଖ୍ୟଭାବେ କାର୍ଯ୍ୟ କରୁ-ଥାଂତି । ସେ ଓ ମହନୀ ଅପା ମୋତେ ଧରାଧରି କରି ନେଇ ସେଠି ଭର୍ତ୍ତିକରିଦିଅଂତି । ଯାଜପୁର ହାଇସ୍କୁଲରେ ପଢୁଥିବାବେଳେ ମୁଁ ବନ୍ୟାପ୍ଲୁତ ବୈତରଣୀ ନଦୀ ବଂଧ ଉପରେ ବୁଲିବାକୁ ଖୁବ୍ ଭଲପାଉଥିଲି । ଯାଜପୁର ହାଇସ୍କୁଲରେ ପଢ଼ିବାବେଳେ ମୋର କେତେକ କବିତା ବ୍ରହ୍ମପୁରରୁ ପ୍ରକାଶିତ ସାପ୍ତାହିକ ପତ୍ରିକା 'ନବୀନ'ରେ ପ୍ରକାଶପାଇଥିଲା । ମୋର ଭିଣୋଇ ଡାକ୍ତର ଜଗନ୍ନାଥ ଦାସ ଉଚ୍ଚ ଶିକ୍ଷା ପାଇଁ ଲଂଡନ ଓ ଭିଏନା ଯାଆଂତି । ତେଣୁ ଆମେ ସମସ୍ତେ ଯାଜପୁର ଛାଡ଼ି ଚାଲିଆସୁ ।

ଏହାପରେ ଆମ ଘରେ ସମସ୍ତେ ଓ ଦଦା, ମାମୁ (ବାଂକୀ ନିକଟସ୍ଥ ନରଣ-ପୁରର ଦାମୋଦର ସାଂମତ) ପ୍ରଭୃତି ପରାମର୍ଶ କରି ମୋତେ ବାଂକୀ ହାଇସ୍କୁଲରେ ଭର୍ତ୍ତି କରାଇ ଦିଅଂତି । ମୁଁ ହାଇସ୍କୁଲ ବୋର୍ଡ଼ିଂରେ ରହୁଥାଏ । ମୁଁ ସେଠାରେ ଜଣେ ଭଦ୍ରଲୋକଂକର (କରୁଣାକରବାବୁ) ସଂସ୍ପର୍ଶରେ ଆସେ । ସେ ସ୍ଥାନୀୟ ଅଫିସ୍‌ରେ ଜଣେ କର୍ମଚାରୀ ଥାଆଂତି । ମୁଁ ତାଂକ ନିକଟରୁ ମେହେର ବାବାଂକ ଉପରେ ଲିଖିତ ବହୁତ ବହି ଓ ପତ୍ରିକା ନେଇ ପଢ଼ିଥିଲି । ମେହେର ବାବାଂକ ରଚିତ ବହିମାନ ମଧ୍ୟ ପଢ଼ିଥିଲି । ସେ ମଉନବ୍ରତ ଅବଲଂବନ କରିଥାଂତି । ବାଂକୀ ହାଇସ୍କୁଲ ବୋର୍ଡ଼ିଂକୁ ଲାଗି ମହାନଦୀ ବଂଧ; ଖରାଦିନେ ପାଣିଧାର ଟିକେ ଦୂରକୁ ଚାଲିଯାଏ । ମୁଁ ମହାନଦୀର ଅପୂର୍ବ ଦୃଶ୍ୟ ଓ ନଈ ଆରପଟେ ଡିଗିରିଆର ଗ୍ରାମମାନ ବହୁ ସମୟ ଧରି ଦେଖେ । ଉପରବେଳା ମହାନଦୀରେ ପଶି ଘଂଟା ଘଂଟା ଧରି ଗାଧାଏ ଏବଂ ପହଁରେ; ସଂଧ୍ୟା ପଡ଼ିଗଲେ ହଷ୍ଟେଲକୁ ଫେରେ । ମୁଁ ଯେଉଁ ଘାଟରେ ଗାଧାଏ, ତାହାର ଅଳ୍ପ ଦୂରରେ ମୋର ଜଣେ ସହପାଠୀକୁ କିଂଭୀର କାମୁଡ଼ି ତା' ଗୋଡ଼କୁ ଖଂଡିଆ କରିପକାଇଥିଲା । ରୋଜ୍ ବେଳବୁଡ଼େ ମହାନଦୀରେ ଘଂଟା ଘଂଟା ଧରି ଗାଧୋଇବା ଯୋଗୁଁ ମୁଁ ଜ୍ୱରରେପଡ଼େ । ମୁଁ ଦୁଇ ମାଇଲ ବାଟ ନରଣପୁର ମାମୁଘରକୁ ଚାଲିଆସେ । ସେଠାରେ ସେତେବେଳକୁ ମାମା ଓ ମହନୀ ଅପା ଥାଆଂତି । ମୋର ଜ୍ୱରର ଉତ୍ତାପ ୧୦୬ ଡିଗ୍ରୀ ପର୍ଯ୍ୟଂତ ଉଠିଥିଲା । ମୁଂଡରେ ପାଣିପଟି ଦିଆଯାଉଥିଲା । ସମସ୍ତେ ଭୟପାଇଯାଇଥିଲେ ।

ଏହାପରେ ମୁଁ ବାଂକୀ ସ୍କୁଲ ଛାଡ଼ି ଗାଁକୁ ଫେରିଆସେ । ସେଠାରେ ପୂର୍ବଭଳି ସାହିତ୍ୟ-କର୍ମରେ ନିଜକୁ ନିୟୋଜିତ କରେ, ମଝିରେ ମଝିରେ ବିଭିନ୍ନ ଗ୍ରାମକୁ ଯାଇ ସଭାସମିତି କରୁଥାଏ ।

## 'ପାଥେୟ' ଓ 'ପୂର୍ଣ୍ଣିମା' ପ୍ରକାଶନ –

ମୁଁ ଲେଖିଥିବା କବିତାଗୁଡ଼ିକରୁ କେତୋଟି ବାଛି 'ପାଥେୟ' ନାମ ଦେଇ ପ୍ରକାଶ କରିବାକୁ ମନସ୍ଥକରେ। ମୁଁ ପାଂଡୁଲିପିଟି ନେଇ କଟକ ଯାଏ ଏବଂ ବାଲୁବଜାରରେ ସେତେବେଳେ ମସ୍‌ଜିଦ୍ ସାମ୍ନାରେ ଯେଉଁ ଦଶ ପ୍ରେସ୍ ଥାଏ, ସେଠାରେ ପହଂଚେ। ପାଂଡୁଲିପିଟି ମ୍ୟାନେଜରଂକୁ ଦେଖାଏ। ମ୍ୟାନେଜର ଥାଆଂତି ଶ୍ରୀ ଉଦୟନାଥ ଷଡ଼ଂଗୀ (ପରେ ସୁନାମଧନ୍ୟ ଶିଶୁ-ସାହିତ୍ୟିକ) ସେ ମୋତେ ଥରେ ଆପାଦମସ୍ତକ ଦେଖିନିଅଂତି। ମୁଁ ଖଦଡ଼ ଧୋତି ପିଂଧି ଖଦଡ଼ ଚାଦର ପକାଇ ଖାଲି ପାଦରେ ଯାଇଥିଲି। ମୁଁ ସେତେବେଳେ କାମିଜ୍, ପଂଜାବି କିଂବା ଚପଲ ଆଦି ପିଂଧୁନଥିଲି, ମୁଂଡ ମଧ କୁଂଡାଉ ନଥିଲି। ସେ ମୋତେ ଭଲକରି ଗୋଡ଼ଠାରୁ ମୁଣ୍ଡ ପର୍ଯଂତ ଦେଖିନେଇ ପାଂଡୁଲିପିଟି ଦେଖି କହିଲେ – "କାଗଜସହ ଏକଶହ ଟଂକା ପଡ଼ିବ।" ମୁଁ ରାଜି ହୋଇଗଲି। ମହନୀ ଅପା ଗାଁରେ ଥାଆଂତି। ସେ ଟଂକା ଦେବାକୁ ରାଜିହେଲେ। ବହି ଛପାଗଲା (ଏହା ୧୯୩୧ ସାଲର ଶେଷଭାଗ ହେବ; ମୋର ବୟସ ସେତେବେଳକୁ ଷୋହଳ କି ସତର ହେବ)। ରିଭ୍ୟୁପାଇଁ ଖଂଡେ ଦି'ଖଂଡ ପତ୍ରିକାକୁ ଦେଇଥିଲି। ସେମାନେ ଭଲ ଲେଖିଥିଲେ। ସେତେବେଳେ ସାହିତ୍ୟ ପତ୍ରିକା କହିଲେ 'ଉତ୍କଳସାହିତ୍ୟ' ଓ 'ସହକାର'କୁହିଁ ବୁଝାଉଥିଲା।

## ମଧୁବାବୁଂକ ମଂତବ୍ୟ –

'ପାଥେୟ' ପ୍ରକାଶ ପାଇବାର କିଛିଦିନ ପରେ ମୁଁ ଖଂଡିଏ ବହି ନେଇ ଦିନେ ମୁହଁସଂଜବେଳେ ମଧୁବାବୁ ବା ବାରିଷ୍ଟର ମଧୁସୂଦନ ଦାସଂକୁ ଭେଟିବାକୁ ଯାଇଥିଲି। ତାଂକ ଘର କଟକ ମିଶନ୍ ରୋଡ଼ରେ; ବର୍ତମାନ ଶୈଳବାଳା ମହିଳା କଲେଜ; ମୋର ବର୍ତମାନର ଘର ପାଖରେ। ମୁଁ ଧୋତି ଚାଦର ପିଂଧି ପହଂଚିଲି। ମଧୁବାବୁ ସାମନା ବାରଂଡାରେ ପାଦଚାଳନା କରୁଥାଂତି। ମୁଁ ବାରଂଡା ତଳେ ଯାଇ ଛିଡ଼ାହେଲି। ନମସ୍କାର କଲି।

ସେ ମୋତେ ଦେଖି ବଂଗଳାରେ ପଚାରିଲେ, "କି ?"

ମୁଁ କହିଲି – "ଉପହାର।"

ସେ ବଂଗଳାରେ ପଚାରିଲେ– "କିସେର ଉପହାର।"

ମୁଁ କହିଲି, "ଏ ମୋର ପ୍ରଥମ କବିତା ବହି।"

ସେ ବହିଟି ମୋ ହାତରୁ ନେଇ ମୂଳରୁ ଶେଷଯାଏ ଦେଖିନେଲେ। ମୁଁ ସେମିତି ବାରଂଡା ତଳେ ଛିଡ଼ାହୋଇଥାଏ। ସେ ଟିକିଏ ମୁରୁକି ହସି ଓଡ଼ିଆରେ କହିଲେ, "କବିତା'– କବି ଗୋଟିଏ ନଡ଼ିଆଗଛକୁ ଦେଖିଲେ ଗୀତ ବୋଲିବ 'ତେଂଗୀ ନଡ଼ିଆ ଲୋ କେତେ ସୁଂଦରୀ'। କିଂତୁ ଜଣେ ଇଂଜିନିୟର ଦେଖିଲେ

ଭାବିବ, ସେଥିରୁ କିପରି କଟା ବାହାରିବ। ସେ କଟାରେ କିପରି କି କି ଜିନିଷମାନ ତିଆରି ହେବ।'' ଏହାପରେ ଆଉ ଦି'-ତିନି ପଦ କ'ଣ କହିଲେ, ମୋର ଠିକ୍ ମନେନାହିଁ। ଏହାର କେତେ ବର୍ଷ ପରେ ଥରେ ଶ୍ରୀରାମଚଂଦ୍ର ଭବନରେ ଏକ ସଭାରେ ଦେଖାହୋଇଥିଲା। ମୁଁ ପଛ ଧାଡ଼ିରେ ବସିଥିଲି। ସେ ଆସି ମୋ ପାଖରେ ବସିଲେ; ଟିକିଏ ସମୟ ବସି ଉଠି ଚାଲିଗଲେ।

ମୁଁ ଗାଁରେ ରହି ସ୍ୱଚ୍ଛଂଦରେ ଲେଖାଲେଖି କରୁଥାଏ। 'ପାଥେୟ' ପ୍ରକାଶନର ବର୍ଷେ ଦୁଇବର୍ଷ ପରେ ମୋର 'ପୂର୍ଣିମା' ନାମକ ଗୀତିନାଟ୍ୟଟି 'ସବୁଜ ସାହିତ୍ୟ ସମିତି'ଦ୍ୱାରା ପ୍ରକାଶ ପାଏ। ଶରତ୍ ମୁଖାର୍ଜୀ ଥାଆଂତି ସବୁଜ ସାହିତ୍ୟ ସମିତିର ମୁଖ୍ୟ ପରିଚାଳକ। ସେ ବହିଟି ପ୍ରକାଶ କରିବାରେ ବହୁତ ଉତ୍ସାହ ଦେଖାଂତି। କାଳିଂଦୀବାବୁ (କାଳିଂଦୀ ପାଣିଗ୍ରାହୀ) ବୈକୁଂଠ ପଟ୍ଟନାୟକ, ହରିହର ମହାପାତ୍ର, ଅନ୍ନଦାଶଂକର ଓ ହରିଶଂକର ଏ ସମିତିର ପ୍ରଧାନ ଅଂଗ ଥିଲେ।

**ସାପର ଚାଂଦୁଆ ତଳେ –**

ଆମ ଘରେ ବହୁତ ଗହଳି ଥିବାରୁ ମୁଁ ନିରୋଳାରେ ଲେଖାଲେଖି ଓ ପଢ଼ାପଢ଼ି କରିବା ପାଇଁ ଆମ ବାଡ଼ିରେ ଏକ ମଂଚ ବା ଭାଡ଼ି ବନାଇଥିଲି। ଆମ ବାଡ଼ି ବହୁତ ଲଂବା ଓ ଚଉଡ଼ା। ଶେଷ ଅଧକ ବଡ଼ ବଡ଼ ଗଛବୃକ୍ଷରେ ପୂର୍ଣ ଥିଲା। ବାଉଁଶ ଗଛ, କୋଚିଲା ଗଛ, ଆଂବଗଛ, ସାହାଡ଼ା ଗଛ, ତାଳଗଛ ପ୍ରଭୃତିରେ ଘଂଚ ଥିଲା। ଗୋଟାଏ ଦୁଇଟା ଉଇହୁଂକା ମଧ ଥାଏ। ମୁଁ ଦୁଇଟା ସାହାଡ଼ା ଗଛର ଦୋକେନିଆ ଡାଳ ଉପରେ ଗୋଟାଏ ପଟା ପକାଇ ତା' ଉପରେ ଶୋଇ ବା ବସିଥାଏ। ପ୍ରତିଦିନ ସେଠାରେ କିଛି ସମୟ ଲେଖାଲେଖି ଓ ପଢ଼ାପଢ଼ି କରୁଥାଏ। ତାହା ତଳୁ ପ୍ରାୟ ତିନି-ଚାରି ଫୁଟ ଉଚ୍ଚ ହେବ। ଭାଡ଼ି ଉପରୁ ତିନି-ଚାରି ଫୁଟ ଉପରକୁ ସାହାଡ଼ା ଗଛର ଘଂଚ ଡାଳପତ୍ର ଛାତ ପରି ଆବୋରି ରହିଥାଏ। ଦିନେ ମୁଁ ଚିତ୍ ହୋଇ ଶୋଇ କ'ଣ ଭାବୁଛି, ଦେଖିଲି, ଉପରେ ଡାଳପତ୍ର ଭିତରେ ଗୋଟାଏ କ'ଣ ଚିକ୍‌ଚିକ୍ ଦିଶୁଛି। ମୁଁ ଟିକେ କଡ଼ ଲେଉଟାଇ ହଲଚଲ ହେବାରେ ସେଇଟା ଚାଲିବାକୁ ଲାଗିଲା। ମୁଁ ଦେଖିଲି, ମୋର ମାତ୍ର କେତେ ଫୁଟ୍ ଉପରେ ଡାଳପତ୍ର ସଂଧିରେ ଗୋଟାଏ ବଡ଼ ସାପ ଧୀରେ ଧୀରେ ଯାଉଛି। ଭୟରେ ମୋର ତାଳୁକା ଶୁଖିଗଲା। ମୁଁ ଉପରକୁ ଅନାଇରହିଥାଏ। ସେ ସାପଟା ଖୁବ୍ ଲଂବା ଓ ମୋଟା। ସେ ପୂରା ଚାଲିଯିବାକୁ ବେଶ୍ କିଛି ସମୟ ଲାଗିଲା। ସେ କେଇ ମିନିଟ୍ ଭୟତ୍ରସ୍ତ ହୋଇ ଖାଲି ଉପରକୁ, ସାପର ତଳଭାଗକୁ ଚାହିଁରହିଥାଏ । ସେ ପୂରା ଚାଲିଯିବା ପରେ ମୁଁ ଭୁସ୍‌କିନା ତଳକୁ ଡେଇଁ ମୋର ଖାତାପତ୍ର ଧରି ଘରକୁ ଦଉଡ଼ିଲି। ଘରେ ସବୁ କଥା କହିଲି। ମାମା ଶୁଣି କହିଲା – ଡାମଣାଟାଏ।

# ଏକାଦଶ ଉଲ୍ଲାସ

## କୃତି ପରିଚୟ : ସାହିତ୍ୟକର୍ମ

**'ପାଥେୟ' : ଏକ ବିହଂଗ ଦୃଷ୍ଟି –**

'ପାଥେୟ' କବିତା ସଂକଳନଟି ପ୍ରାୟ ୯୬ ପୃଷ୍ଠାବିଶିଷ୍ଟ ଥିଲା। ଏଥିରେ ୧୯୨୭-୩୧ ମସିହା ମଧ୍ୟରେ କେତେକ ମାନବବାଦୀ ତଥା ଅତିଂଦ୍ରୀୟବାଦୀ (transcendental) କବିତା ବିଧୃତ ହୋଇଥିଲା। କବିତାଗୁଡ଼ିକ ଏକ ସରଳ ଓ ସଂବେଦନଶୀଳ କବିକଂଠର ଉଚ୍ଚାରଣମାତ୍ର। କେତେକ କବିତାରେ ସମାଜବାଦୀ ଦୃଷ୍ଟିକୋଣ ପ୍ରତିଫଳିତ ହୋଇଛି। ମାତ୍ର ସେ ସମାଜବାଦ ବୈଜ୍ଞାନିକ ବା ମାନବିକ ସମାଜବାଦ କହିବା ସଂଗତ ହେବ ନାହିଁ– ଶାଂତି, ସାମ୍ୟ ଓ ମାନବବାଦ ଏହାର ଲକ୍ଷ୍ୟବସ୍ତୁ।

ଏହା ଶ୍ରେଣୀ ସଂଗ୍ରାମରେ ଶାଣିତ ମାର୍କ୍ସଂକ ବୈଜ୍ଞାନିକ ସାମ୍ୟବାଦଠାରୁ ଅନେକ ଶାଂତ, ଶିଷ୍ଟ ଓ ନିରୀହ। ସମାଜବାଦ ୧୮୦୦-୧୯୦୦ ଶତାବ୍ଦୀର ଔଦ୍ୟୋଗିକ ବିପ୍ଲବର ଏକ ଅପରିହାର୍ଯ୍ୟ ପରିଣାମ। ବ୍ରିଟେନ୍‌ରେ ଟମ୍‌ପେନି (Tompaine), ଉଇଲିୟମ୍ ଗଡ୍‌ଉଇନ୍ (William Godwin), ରବର୍ଟ ଓୟେନ୍ (Robert Owen) ଏବଂ ଫ୍ରାନ୍‌ସରେ ଫୋରିୟର୍ (Fourire) ପ୍ରମୁଖ ମନୀଷୀଗଣ ଶୋଷଣହୀନ ଆଦର୍ଶ ସମାଜର କଥା ନିଜ ନିଜ ଲେଖାରେ ବୟାନ କରିଛଂତି। ପୁଂଜିବାଦୀ ବ୍ୟବସ୍ଥା ବିରୁଦ୍ଧରେ ଏମାନେ ସ୍ୱର ଉଠାଇଛଂତି।

'ପାଥେୟ'ରେ ଦୁର୍ବଳ ଉପରେ ସବଳର ଅତ୍ୟାଚାର ଏବଂ ଧନିକର ଗରିବଶୋଷଣ ବିରୋଧରେ ଭାଷକଂକର ମୃଦୁ ପ୍ରତିକ୍ରିୟା ଓ ସଂବେଦନଶୀଳ ପ୍ରତିବାଦ ପ୍ରକାଶପାଇଛି। ମାତ୍ର ମୋର 'ଅଭିଯାନ' କବିତାଗୁଡ଼ିକରେ ଶ୍ରେଣୀସଂଗ୍ରାମର ଯେଉଁ ତୀବ୍ର ପ୍ରତିବାଦ ଓ ପ୍ରତିରୋଧର ସ୍ୱର ଫୁଟିଉଠିଛି ଏବଂ ଭଗବାନ୍ ତଥା ଆଧ୍ୟାତ୍ମିକ ଶୋଷଣ ଉପରେ ଯେପରି ତୀବ୍ର କଶାଘାତ କରାଯାଇଛି, ତାହାର ଅଂକୁର 'ପାଥେୟ' କବିତାଗୁଡ଼ିକରେ ପ୍ରଚ୍ଛନ୍ନ ଥିବା ଜଣାଯାଏ। 'ଅଭିଯାନ' ଓଡ଼ିଶାରେ ଏବଂ ଭାରତରେ ସାମ୍ରାଜ୍ୟବାଦ ଓ ଫାଶିଷ୍ଟ୍‌ବାଦ ବିରୋଧରେ ଯେଉଁ ସଂଗ୍ରାମୀ ସ୍ୱର ତୋଳିଥିଲା ଏବଂ ପ୍ରଗତି-ସାହିତ୍ୟର ମୂଳଦୂଆ ପକାଇଥିଲା ତାହା କୃତୀ ସମାଲୋଚକମାନଂକ ମତରେ ଓଡ଼ିଆ ସାହିତ୍ୟରେ ପ୍ରଥମ। ୧୯୩୩ ମସିହାରେ ସବୁଜ ସାହିତ୍ୟ ସମିତି ମୋର 'ପୂର୍ଣ୍ଣିମା' ନାମକ ଏକ ଗୀତିନାଟ୍ୟ ପ୍ରକାଶ କରିଥିଲେ। ଏହା ଶିବ-ପାର୍ବତୀଂକ ମିଳନ ଓ କୁମାରଜନ୍ମ ବିଷୟବସ୍ତୁ ଉପରେ ଆଧାରିତ। ଏହା ସୁଧୀ ମହଲରେ ଆଦୃତ ହୋଇଥିଲା।

**ସାହିତ୍ୟସାଧନା –**

ଏହି ସମୟରେ ମୋର ଶ୍ରୀ ଶରତ୍ ମୁଖାର୍ଜୀଂକଦ୍ୱାରା ସଂପାଦିତ 'ପଲ୍ଲୀମଂଗଳ' ପତ୍ରିକାରେ ବହୁ କବିତା ଯଥା – ପଲ୍ଲୀସଂଙ୍ଗ, ପଲ୍ଲୀ ସକାଳ, ଶିବପୂଜା ପ୍ରଭୃତି କବିତାମାନ ପ୍ରକାଶ ପାଇ ଓଡ଼ିଶାର ସବୁଆଡ଼େ ଆଦୃତ ଓ ପ୍ରଶଂସିତ ହୋଇଥିଲା । ସେଥିରୁ କେତେକ କବିତା ଓଡ଼ିଶାର ବିଭିନ୍ନ ଅଂଚଳର ଲୋକମାନେ ଆଜି ପର୍ଯ୍ୟଂତ ମନେରଖିଛଂତି । ସ୍ୱାଧୀନତା ସଂଗ୍ରାମରେ ପ୍ରାଣବଳି ଦେଇଥିବା ବହୁ ସହିଦଂକ ବିଷୟରେ ମୁଁ ବ୍ରହ୍ମପୁରରୁ ପ୍ରକାଶିତ ମହୁରୀ ଯୁବରାଜ କୃପାସିଂଧୁ ପଟ୍ଟଦେବଂକଦ୍ୱାରା ସଂପାଦିତ 'ପ୍ରଭାତ' ନାମକ ଦୈନିକ ପତ୍ରିକାରେ ସାତ-ଆଠଟି ପ୍ରବଂଧ ଲେଖିଥିଲି । ସେ ତାଂକ ସଂପାଦନାରେ ବ୍ରହ୍ମପୁର ରୟାଲ୍ ପ୍ରେସ୍‌ରୁ 'ନବୀନ' ନାମକ ସାପ୍ତାହିକ ପତ୍ରିକା ଏବଂ 'ଶିଶିର' ନାମକ ମାସିକ ପତ୍ରିକା ମଧ୍ୟ ପ୍ରକାଶ କରୁଥିଲେ । 'ନବୀନ' ଏ ଦୁଇ ପତ୍ରିକାଠାରୁ ପୁରୁଣା । ତାହା ୧୯୨୭ ମସିହାରୁ ପ୍ରକାଶ ପାଇଆସୁଥିଲା; ଏବେ ମଧ୍ୟ ପ୍ରକାଶ ପାଉଛି । ମୁଁ ଏଥିରେ ନିୟମିତ ଭାବେ ବହୁ କବିତା, ପ୍ରବଂଧ ଓ ଗଳ୍ପ, ଏକାଂକିକା ପ୍ରଭୃତି ଲେଖିଥିଲି । 'ପ୍ରଭାତ'ରେ ପ୍ରକାଶିତ ମୋର ସହିଦମାନଂକର ଜୀବନୀ ଏବଂ 'ଶିଶିର' ଓ 'ନବୀନ'ରେ ପ୍ରକାଶିତ ପ୍ରାୟ ଅଧିକାଂଶ ରଚନା ମୁଁ ଗାଁ ଛାଡ଼ିଲା ପରେ କୁଆଡ଼େ ହଜିଯାଏ । ମୁଁ ସେସବୁ ପତ୍ରିକା ଯେଉଁ ବାକ୍ସରେ ରଖିଥିଲି, ତାହା ମୁଁ କଲିକତାରେ ପଢୁଥିବାବେଳେ ଏବଂ ପରେ ସେଠାରେ ଚାକିରି କରୁଥିବା ସମୟରେ ଆମ ଘରୁ କିଏ ସେ ବାକ୍ସ ଖୋଲି ସେହି ପୁରୁଣା ପତ୍ର-ପତ୍ରିକାମାନ ନେଇଯାଇଥିଲେ । ତେଣୁ ମୋର କୌଣସି ସଂକଳନରେ ମୁଁ ସେଗୁଡ଼ିକୁ ସ୍ଥାନିତ କରିପାରିନାହିଁ । ଓଡ଼ିଶାର କୌଣସି ସହୃଦୟ ପାଠକ-ପାଠିକାଂକ ନିକଟରେ ସେସବୁ ପୁରୁଣା ପତ୍ର-ପତ୍ରିକା ଥିଲେ, ସେମାନେ ତାହା ମୋତେ ଦେଲେ ମୁଁ ବଡ଼ ଖୁସିହୁଅଂତି ଏବଂ ମୁଁ ସେଗୁଡ଼ିକରେ ଥିବା ମୋ ଲେଖାମାନ ପ୍ରକାଶକରଂତି ।

ଏହି ସମୟରେ ମୁଁ 'ନବୀନ' ସାପ୍ତାହିକ ପତ୍ରିକାରେ 'ମରୁଚାରିଣୀ' ନାମକ ଏକ ବଡ଼ ଗଳ୍ପ ବା ଛୋଟ ଉପନ୍ୟାସ ଧାରାବାହିକ ଭାବେ ଲେଖିଥିଲି । ତାହାକୁ ପ୍ରକାଶ କରିବାପାଇଁ ମୁଁ ସବୁଜ ସାହିତ୍ୟ ସମିତିକୁ ଦେଇଥିଲି । ମାତ୍ର ତାହା ପ୍ରକାଶ କରିବା ପୂର୍ବରୁ ସମିତି ଲୋପପାଇଯାଏ । 'ନବୀନ'ରେ ପ୍ରକାଶିତ 'ମରୁଚାରିଣୀ'ର ପାଂଡୁଲିପି କିଂବା 'ନବୀନ'ର ସେ ସଂଖ୍ୟାଗୁଡ଼ିକ ମଧ୍ୟ କୁଆଡ଼େ ହଜିଯାଇଛି ।

'ନବୀନ'ରେ ପ୍ରକାଶିତ ମୋର କବିତାଗୁଡ଼ିକ ପଢ଼ି ଦିଲ୍ଲୀରୁ ଉତ୍କଳଭାରତୀ କୁଂତଳାକୁମାରୀ ଦେବୀ ଖଂଡିଏ ଚିଠି 'ନବୀନ' ସଂପାଦକଂକୁ ଲେଖିଥିଲେ । ସେ ଚିଠିଟି 'ନବୀନ'ରେ ପ୍ରକାଶ ପାଇଥିଲା । ସେଥିରେ କୁଂତଳାକୁମାରୀ ଲେଖି-ଥିଲେ – "ରକ୍ତତୀର୍ଥ ଖୋରଧାର ଯୋଗ୍ୟ ଦାୟାଦ ବିପ୍ଳବୀ କବି ସଚ୍ଚିଦାନଂଦ ରାଉତରାୟଂକର କବିତାଗୁଡ଼ିକ ଓଡ଼ିଆ ସାହିତ୍ୟରେ ଏକ ନୂତନ ସ୍ଫୁରଣଆଣିଦେଇଛି । ସେ ବୀରମାଟି ଓଡ଼ିଶାର ପ୍ରାଣସ୍ପଂଦନ ମନେହୁଅଂତି ।"

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ଭଦ୍ରକରୁ ଖଣ୍ଡିଏ ଚିଠି ଲେଖି ମୋର ଲେଖାର ଭୂୟସୀ ପ୍ରଶଂସା କରିଥିଲେ। ଏ ଚିଠିଟି ମଧ୍ୟ 'ନବୀନ' ପତ୍ରିକାରେ ପ୍ରକାଶ ପାଇଥିଲା। ଏ ଚିଠି ଦୁଇଟି ମୋତେ ସେତେବେଳେ ବହୁତ ପ୍ରେରଣା ଓ ଉତ୍ସାହ ଦେଇଥିଲା।

ଫୁଟ୍‌ବଲ୍ ଖେଳ କଥା ଆଗରୁ କହିଛି। ଆମ ଗ୍ରାମରେ ମୁଁ 'ସନ୍‌ସାଇନ୍ ଟିମ୍' ସ୍ଥାପନ କରିଥିଲି। ଆମ ଗାଁ ଟାଂଗୀରେ ଖେଳପଡ଼ିଆ ହୋଇଥିଲା। ଅନ୍ୟାନ୍ୟ ଗ୍ରାମର ଟିମ୍‌କୁ ମଧ୍ୟ ଆମେ ଆମନ୍ତ୍ରଣ କରି ମ୍ୟାଚ୍ ଖେଳୁଥିଲୁ।

**କ୍ଳାନ୍ତ ଅପରାହ୍ଣ –**

ଆମ ଘର ଆଗରେ ଗୋଟିଏ କୂଅ ଥିଲା। ଆମେ ବାଡ଼ିପଟ କୂଅରୁ ପାଣି ନେଇ ପିଉଥିଲୁ ଏବଂ ରୋଷେଇବାସ କରୁଥିଲୁ। ସେ ପାଣି ବେଶ୍ ମିଠା। ଦାଂଡପଟ କୂଅରୁ ଆମ ଘରର ସାମ୍ନା ପଟେ ଟିକିଏ ଦୂରରେ ଥିବା ବାଉରି ସାହିର ଝିଅ-ବୋହୂମାନେ ମାଠିଆ ଧରି ଆସି ପାଣି ନେଇଯାଉଥିଲେ। ବାଉରିମାନଙ୍କୁ ଗାଁଲୋକେ ଅଛବ ବା ଅଛୁଆଁ ମଣଂତି। ଯଶୋଦା ବୋଲି ବାଉରି ଝିଅ ମଧ୍ୟ କାଖରେ ମାଠିଆ ଧରି ପାଣି ନେବାକୁ ଆସୁଥିଲା। ଦେଖିବାକୁ ସୁନ୍ଦର ଝିଅଟିଏ। ନୂଆ ତୁଳସୀପତ୍ର ପରି ତା' ମୁହଁର ରଂଗ। ସେ କୂଅରୁ ପାଣି କାଢ଼ି ଭରା କଳସୀଟି କାଖରେ ଜାକି ଚାଲିଯାଏ; ପୁଣି କିଛି ସମୟ ପରେ ପାଣି ନେବାକୁ ଆସେ। ମୁଁ ତାହାର ସରଳ ଲାବଣ୍ୟ ଦୂରରୁ ଦେଖି ମୁଗ୍ଧହୁଏ। ସୂର୍ଯ୍ୟ ବୁଡ଼ିଯାଉଥାଂତି। ଅସ୍ତ-ସୂର୍ଯର ଲାଲ୍ ଆଭା ତା' ମୁହଁରେ ପଡ଼ି ସୁନ୍ଦର ଦେଖାଯାଉଥାଏ। ମୁଁ ତାହା ସହିତ କଥାବାର୍ତ୍ତା ଓ ଏଣୁତେଣୁ ଗପିବାକୁ ଭଲପାଉଥିଲି। ଦିନେ ସେ ଭରା କଳସୀଟି ଦଉଡ଼ିରେ ଉଠାଇ କୂଅମୂଳରେ ରଖି କାଖକୁ ଟେକିବାକୁ ଚେଷ୍ଟାକରୁଥାଏ; ମାତ୍ର ପାରୁନଥାଏ। ମୁଁ ଯାଇ ସେ କଳସୀଟି ଟେକି ତା' କାଖକୁ ବଢ଼ାଇଦେଲି। ସେ କୃତଜ୍ଞତାରେ ତରଳିଯାଇଥିଲା। ତାହାର ସଲଜ୍ଜ ହସହସ ମୁହଁ ଲାଲ୍ ସୂର୍ଯ ଆଲୁଅରେ ଝଟକିଉଠୁଥିଲା। ଏବେ ସୁଦ୍ଧା ସେ ଦୃଶ୍ୟ ମୋର ମନେ ଅଛି। ସେ ଟିକିଏ ଲାଜେଇଯାଇ କହିଲା– ''ବାବୁ, ମୋତେ ଛୁଇଁଲ।'' ମୁଁ କହିଲି, ମଣିଷକୁ ଛୁଇଁଲେ କ'ଣ ମଣିଷକୁ ଛୁଆଁ ଲାଗେ ? ଯାନି-ଯାତରାରେ ମୁଁ ତାକୁ ଚାରଣା-ଆଠଣା ପଇସା ଯାତ୍ରା-ଖର୍ଚ୍ଚ ମଧ୍ୟ ଦେଇଛି। କେବେ କେବେ ଆମ ଗାଁ ବେରେଣାନଟାରେ ତା' ସଂଗେ ଭେଟହୋଇଯାଏ। ମୁଁ ଯାଏ ଫିଟି ବା ବାଟୁଳିଖଡ଼ା ଧରି ହରଡ଼ ଚଢ଼େଇ ଶିକାରକରିବାକୁ। ସେ ଫେରୁଥାଏ କଂଟେଇକୋଳି କିଂବା ଭଇଁଚ୍‌କୋଳି ପତର ଠୁଂଗାରେ ଧରି। ପଛରେ କିଛି ଦୂରରେ ଥାଆଂତି ତାହାର ଜଣେ ଦି'ଜଣ ସାଂଗସାଥୀ। ଗଛମୂଳେ କିଛି ସମୟ କଥାବାର୍ତ୍ତା ହୁଏ। ସେ କହେ– ''କାଲି ଆମ ଚାଳରେ ହୁଁ-ହାଁ ବୋବାଉଥିଲା ବାବୁ! ମୋତେ ଭାରି ଡରମାଡ଼ିଲା।''

ଏମିତି କେତେ କଥା। ସାହିରେ ତା' ମୋ ସଂପର୍କରେ କିଛି କିଛି କଥା ଉଠିଛି। ବାରମାସୀ ବୁଢ଼ା ପତ୍ରରେ ମୋ ନାଁ ସହିତ ତା' ନାଁକୁ ଯୋଡ଼ି କିଏ ଥରେ ଦି'ଥର ମଧ୍ୟ ଲେଖିଛି– 'ବୃନ୍ଦାବାବୁ + ଯଶୋଦା'। ବାରମାସୀ ବୁଢ଼ା ହେଉଛି ଗାଁର ବ୍ଲାକ୍ ବୋର୍ଡ ଓ ବ୍ଲାକ୍‌ମେଲ୍ ବୋର୍ଡ। ଏଥିରେ କେବେ କେବେ 'ହରେ କୃଷ୍ଣ ହରେ ରାମ' ମଧ୍ୟ ଲେଖାଯାଇଥାଏ।

**ବ୍ରତୋପନୟନ –**

ମୋର ବୟସ ୧୦-୧୧ ବର୍ଷ ଥିଲାବେଳେ ମୋର ବ୍ରତୋପନୟନ ହୁଏ। ଆମ ଘରେ ବ୍ରତଘର ପ୍ରଥା ଅଛି। ମୋ ସହିତ ମୋ ସାନଭାଇ ଶ୍ୟାମାନଂଦ ବା ମୁନିଆର ମଧ୍ୟ ଏକାଠି ବ୍ରତଘର ହୋଇଥିଲା। ଆମକୁ ନଂଡା ହେବାକୁ ପଡ଼େ। ପଇତା ଧାରଣ ପରେ 'ଭବଦ୍ ଭିକ୍ଷାଂ ଦେହି' ବୋଲି ଥାଳି ଧରି ଭିକ୍ଷା ମାଗିବାକୁ ପଡ଼ିଥିଲା। ବ୍ରତଘରକୁ ଆସିଥିବା ସମସ୍ତ ପରିବାରର ଲୋକ ଓ ନରଣପୁରର ଦାମ ମାମୁ ପ୍ରଭୃତି ଏବଂ କୁଣିଆମୈତ୍ର ଥାଳିରେ ଟଂକା, ନୋଟ୍ ଭିକ୍ଷା ଦେଇଥିଲେ। ସଂଧ୍ୟାବେଳେ ପାଲିଂକିରେ ବସି ବାଜା ବଜାଇ ରୋଶଣି ଓ ସଲଟଣରେ ଗାଁମୁଂଡକୁ ଯିବାକୁ ପଡ଼ିଥିଲା। ମୁଁ କିଛିଦିନ ନିୟମର ସହିତ ପଇତା ଧାରଣ କରିଥିଲି; ମାତ୍ର କେତେବର୍ଷ ପରେ ପଇତା ଛାଡ଼ିଦେଲି; ଆଉ ପକାଇଲି ନାହିଁ।

**ଅଂତ୍ୟେଷ୍ଟିକ୍ରିୟା ପାଳନ –**

ମୋର ପିଲା ବୟସରେ ମିଟିଦଦା (ଲଳିତଦଦା)ଙ୍କ ସ୍ତ୍ରୀ ଟିକୀ ଖୁଡ଼ୀ ଗୋଟିଏ ପୁଅ ଜନ୍ମକରି ଅଳ୍ପଦିନ ପରେ ମରିଯାଆଂତି। ମୁଁ ଶବଯାତ୍ରାରେ ଶ୍ମଶାନକୁ ଯାଇ ମୁଖାଗ୍ନି ଦିଏ। ୧୦ ଦିନ ପ୍ରେତକ୍ରିୟା କରେ। ଦଶାହ ଦିନ ମୋତେ ଲଂଡା ହେବାକୁ ହୁଏ। ସେତେବେଳକୁ ମୋ ବୟସ ପ୍ରାୟ ୧୦ ବର୍ଷ ହୋଇଥିବ।

**ଜଂତୁଜୁଂତା ଶିକାର –**

ଆମ ଗାଁ ଜଂଗଲରେ ଜଂତୁଜୁଂତା ଶିକାର କରିବାପାଇଁ ବିନଦଦା ଓ ନଂଦଦଦା ଗାଁକୁ ଆସିଲେ ପ୍ରାୟ ଯାଆଂତି। ତାଂକର ବଂଧୁକ ଥାଏ। ମୁଁ ମଧ୍ୟ କେବେକେବେ ଦିନବେଳେ ତାଂକ ସଂଗେ ଯାଇଛି। ଆମ ଗାଁ ଜଂଗଲରେ ମିରିଗ, ବାର୍ହା, ଠେକୁଆ, ଗଧିଆ ପ୍ରଭୃତି ଥାଆଂତି। ରାତିରେ କେବେକେବେ ଅନ୍ୟ ଜଂଗଲରୁ ମହାବଳ ବାଘ ଆସି ହେଂଟାଳ ଛାଡ଼େ। ସଂଜବେଳେ ଶିକାରୀମାନେ ଜଂଗଲରେ ପ୍ରଥମେ ଭୂଇଁଆ ପୂଜା କରଂତି। ତା'ହେଲେ ଭୂୟାଁ ଜଂତୁମାନଂକୁ ସେମାନଂକ ଆଡ଼କୁ ଅଡ଼େଇ ଆଣିବ।

ଥରେ ନଂଦଦଦା ଅନୁଗୁଳରେ ଥାନା ଅଫିସର ଥିଲାବେଳେ ଖବରକାଗଜରେ ବାହାରିଲା ଯେ, ସେ ଶିକାର କରିବାକୁ ଜଂଗଲକୁ ଯାଇଥିଲେ। ତାଂକୁ ଭାଲୁ

ଖାଇଦେଲା । ତାଂକ ମୃତ୍ୟୁ ଖବର ଶୁଣି ଆମ ଘରେ କାଂଦ-ବୋବାଳି ପଡ଼ିଗଲା । ବଡ଼ମାଉଁ ତଳେ ମୁଂଡ ପିଟି କାଂଦିବାକୁ ଲାଗିଲେ । ବଡ଼ଦଦେଇ କହିଲେ, ‘‘ବାଂଛାନିଧିକୁ ଟେଲିଗ୍ରାମ୍ କରିବା, ପ୍ରକୃତ କଥା ଜଣାପଡ଼ିବ ।’’ ବାଂଛାଦଦା ଆମ କୁଟୁଂବରେ ଜଣେ ଦଦା; ସେ ଅନୁଗୁଳରେ କୃଷି ଅଫିସର ଥାଆଂତି । ତାଂକୁ ଟେଲିଗ୍ରାମ୍ କରାଗଲା । ସେ ତୁରଂତ ଜବାବ ଦେଲେ – ‘Totally false’ ଟେଲିଗ୍ରାମ୍ ପାଇ ସମସ୍ତେ ଆଶ୍ୱସ୍ତହେଲେ । ସମସ୍ତିଂକ ମୁହଁରେ ହସ ଫୁଟିଉଠିଲା ।

**ଏକାନ୍ନବର୍ତୀ ପରିବାର ଭାଂଗିଲା –**

ଆମ ଏକାନ୍ନବର୍ତୀ ପରିବାର କେବେଠୁଁ ଭାଂଗିଗଲାଣି; ତଥାପି ଭାଇମାନେ ଏକାଠି ରହୁଥାଂତି । ଯଦିଚ୍ ବିଲବାଡ଼ି କାରଣରୁ କ୍ରମେ ଆମ ପରିବାରରେ ଭାଇ-ଭାଇଂକ ମଧ୍ୟରେ ମନୋମାଳିନ୍ୟ ଓ ତିକ୍ତତା ବଢ଼ୁଥିଲା; ବଡ଼ଦଦେଇ ଘର ବୁଝୁଥିଲେ । ପ୍ରାୟ ଆଠବାଟି ଜମିର ଧାନ ସେ ଅଧେ ଭାଗଚାଷୀଂକୁ ଦେଇ ବାକୀ ଅଧକ ଖଳାବାଡ଼ିରେ ବେଂଗଳା ପକାଇ କୋଠିରେ ରଖୁଥିଲେ । ସେଥିରୁ ଘରଖର୍ଚ, ପୂଜାପାର୍ବଣ ଓ କୁଣିଆମୈତ୍ର ବାବଦ ଖରଚପତ୍ର ଚଳୁଥିଲା । ନଂଦଦଦା, ଚିଂତାଦଦା ଓ ବିନଦଦା ଅନ୍ୟ ଜାଗାରେ ଚାକିରି କରୁଥିଲେ । ପିଲାପିଲି ନେଇ ସେମାନେ ଦୂରରେ ରହୁଥିଲେ; କେବେ କେବେ ଗାଁକୁ ଆସୁଥିଲେ ।

ପିଲାପିଲିଂକ ସଂଖ୍ୟା ମଧ କ୍ରମେ ବଢ଼ିଲା । ପ୍ରସନ୍ନକୁମାରଂକର ମୁଁ, ଶ୍ୟାମାନଂଦ ଓ ପ୍ରେମାନଂଦ ତିନିପୁଅ ମଧ୍ୟରୁ ମୁଁ ବଡ଼ବାପା ସଦାନଂଦ ଓ ତାଂକ ପତ୍ନୀ ହେମମାଳୀଂକର ପୋଷ୍ୟପୁତ୍ର ହୋଇଯାଇଥିଲି । ଦୁଇ ଭଉଣୀ ସ୍ୱର୍ଣଲତା ଓ ସ୍ନେହଲତାଂକର ବିବାହ ହୋଇଯାଇଥିଲା । ବଡ଼ବାପାଂକ ଝିଅ ଅର୍ଥାତ୍ ମୋର ପୋଷ୍ୟ ବାପାଂକ ଏକମାତ୍ର ସଂତାନ ସୌଦାମିନୀ ବା ମହନୀ ଅପାଂକର ମଧ ବିବାହ ହୋଇଯାଇଥିଲା । ନଂଦଦଦାଂକର ତିନିପୁଅ ଓ ତିନିଝିଅ । ପୁଅମାନଂକ ନାମ ଯଥାକ୍ରମେ – ରାମଚଂଦ୍ର, କୃଷ୍ଣଚଂଦ୍ର ଓ ବାସୁଦେବ । ଝିଅମାନଂକ ନାମ – ସାବିତ୍ରୀ, ଦୁର୍ଗାବତୀ ଓ ସତ୍ୟବତୀ । ବାସୁ ଏମ୍.ବି.ବି.ଏସ୍. ପାସ୍ କରି ମିଲିଟେରୀ ଡାକ୍ତର ହୋଇଥିଲା । ସେ ବ୍ରିଗେଡିଅର୍ ହୋଇପାରିଥିଲା । ଏବେ ଚାକିରିରୁ ଅବସର ନେବାପରେ ଦିଲ୍ଲୀରେ ପ୍ରାକ୍ଟିସ୍ କରୁଛି । ରାମ ସିଭିଲ୍ ସପ୍ଲାଇ ଅଫିସର ଥିଲା । କୃଷ୍ଣ ସରକାରୀ ଚାକିରି କରି ଅବସର ନେଇଛି । ଝିଅମାନଂକ ଭିତରୁ ସମସ୍ତେ ବିବାହକରି ବାହାରେ ଅଛଂତି । ସତ୍ୟବତୀର ବଡ଼ଝିଅ ମହାଶ୍ୱେତା ଡକ୍ଟର ହରେକୃଷ୍ଣ ମହତାବଂକ ପୋଷ୍ୟପୁତ୍ର ଭର୍ତୃହରିଂକୁ ବିବାହକରିଛି ।

ବିନଦଦାଂକର ଦୁଇ ଝିଅ ଶାଂତି ଓ ମମତା ବିବାହିତା । ଚିଂତାମଣି ଦଦାଂକର ତିନିପୁଅ ଗୋକୁଳାନଂଦ, ନିତ୍ୟାନଂଦ ଏବଂ ଗୌରଚଂଦ୍ର ଏବଂ ଝିଅ ଟିକନ । ଗୋକୁଳାନଂଦ ଓ ଗୌରଚଂଦ୍ର ଗାଁରେ ରହଂତି । ସେମାନେ ସ୍ନେହୀ ଓ ମେଳାପୀ । ଟିକନ ବିବାହିତା । ନିତ୍ୟାନଂଦ ପୁରୀରେ ରହେ । ଚିଂତା ଦଦାଂକର ଗୋଟିଏ

ପୋଷ୍ୟା ଝିଅ ଥିଲା; ନାମ ପ୍ରମିଳା। ତା'ର ବିବାହ ହୋଇଯାଇଛି। ତା' ବଡ଼ପୁଅ ମନମୋହନ ମହାପାତ୍ର ସୁପରିଚିତ ଫିଲ୍ମ ନିର୍ଦ୍ଦେଶକ। ଲଳିତଦଦା ବା ମିଟିଦଦାଂକର ପୁଅମାନଂକ ମଧ୍ୟରୁ ବଡ଼ପୁଅ ପୂର୍ଣ୍ଣଚନ୍ଦ୍ର ଜିପ୍‌ରେ ଯାଉଥିବାବେଳେ ଟ୍ରେନ୍ ଧକ୍କାରେ ମୃତ୍ୟୁବରଣକରେ। ଅନ୍ୟ ଦୁଇପୁଅ ଗାଁରେ ଅଛଂତି। ବ୍ରଜଦଦାଂକର ଗୋଟିଏ ପୁଅ ଅଛି। ଏହାଛଡ଼ା ଦୁଇଦଦାଂକର ରକ୍ଷିତା ସ୍ତ୍ରୀ ମଧ୍ୟ ଥିଲେ ଏବଂ ତାଂକଆଡ଼ୁ ପିଲାପିଲି ହୋଇଥିଲେ।

ଏତେ ବଡ଼ ପରିବାର ଏକାଠି ରହିବା ଅସଂଭବ ହେଲା। ବଡ଼ଦଦେଇ ସବୁ ଧାନ ଖରଚ କରିଦେଉଛଂତି ବୋଲି ଅଭିଯୋଗ ହେଲା। ସେ ଅରୁଆ ଖାଆଂତି; ସେ ଲାଗି ତାଂକ ପାଇଁ କେତେ ମାଣ ଜମିରେ ଲଘୁଧାନ ଅଲଗା ବୁଣାଯାଉଥାଏ। ସେ ପାଂଜି ଦେଖି ତରକାରି ଖାଉଥିଲେ। ପ୍ରତିଦିନ 'ଦୟି' ବାବୁ ତିନି ଅଗଣା ପାର୍ ହୋଇ ଆସି ମାମାକୁ କହିବେ, ''ବୁଢ଼ାମାମା। ବଡ଼ବାବୁ ଆଜି ବାଇଗଣ ଖାଇବେନି।'' ସେଥିପାଇଁ ତାଂକ ଲାଗି ଅଲଗା ତରକାରି ହୁଏ। ବଡ଼ଦଦେଇ ଅଫିମ ଖାଉଥିଲେ। ସେଥିପାଇଁ ଭାଇମାନେ ଭାବୁଥିଲେ, ସେ ସବୁ ପଇସା ଅଫିମ ଖାଇ ଉଡ଼ାଇଦେଉଛଂତି। ସେ ଯାହାହେଉ, ବଡ଼ଦଦେଇଂକୁ ସବୁ ଭାଇ ବାପପରି ମାନୁଥିଲେ। ତାଂକ ସାମ୍ନାରେ ଛିଡ଼ାହୋଇ କେହି କଥା କହିବାକୁ ଭରସୁନଥିଲେ। ସେ କଠଉ ମାଡ଼ି ଚାଲିଗଲାବେଳେ ସମସ୍ତେ ଆଡ଼େଇ ହୋଇଯାଉଥିଲେ। ଯାହାହେଉ, ଏ ଏକାନ୍ନବର୍ତ୍ତୀ ପରିବାର ଆଉ ବେଶୀ ଦିନ ରହିଲା ନାହିଁ; ଭାଇ ଭାଇ ଭିତରେ ଭାଗହୋଇଗଲା। ଯିଏ ଯାହାର ଜାଗାରେ ଅଲଗା ଘରଦ୍ୱାର ତୋଳିଲେ। କିଏ କିଏ କୋଠା କଲେ।

ମହନୀ ଅପାଂକ କଥା ଆଗରୁ କହିଛି। ତାଂକ ସ୍ୱାମୀ ଡାକ୍ତର ଜଗନ୍ନାଥ ଦାସ କଟକ ମେଡିକାଲ୍ ସ୍କୁଲ୍‌ର ଶିକ୍ଷକ ଓ ପରେ ବିଦେଶରୁ ଶିକ୍ଷା ପାଇ ଆସି ସିଭିଲ୍ ସର୍ଜନ୍ ଥିଲେ। ତାଂକର ଦୁଇ ଝିଅ। ବଡ଼ ଝିଅ ସରୋଜିନୀର ସ୍ୱାମୀ ଡକ୍ଟର ମଦନମୋହନ ପ୍ରଧାନ୍, ଏମ୍.ବି.ବି.ଏସ୍. କଟକ ମେଡିକାଲ୍ କଲେଜର ମେଡିସିନ୍ ପ୍ରଫେସର୍ ଏବଂ ପରେ ଓଡ଼ିଶାର ଡାଇରେକ୍ଟର୍ ଅଫ୍ ହେଲ୍‌ଥ ଥିଲେ। ସରୋଜିନୀ ଏମ୍.ବି.ବି.ଏସ୍ ପାସ୍ କରିଥିଲେ। ସାନଝିଅ ଶର୍ମିଷ୍ଠା ମଧ୍ୟ ଏମ୍.ବି.ବି.ଏସ୍. ପାସ୍‌କରିଥିଲା ଏବଂ ଓଡ଼ିଶାର ଡାଇରେକ୍ଟର୍ ଅଫ୍ ହେଲ୍‌ଥ ହୋଇଥିଲା, ଏବେ ଅବସର ନେଇଛି। ସରୋଜିନୀର ଚାରିପାଂଚ୍‌ବର୍ଷ ତଳେ ପରଲୋକ ହୋଇଯାଇଛି।

ବଡ଼ଦଦେଇ (ମୋର ପୋଷ୍ୟପିତା ସଦାନଂଦ) ତାଂକର ଗାଁରେ ଥିବା ପୈତୃକ ଚାଷ ଜମି ଅଧେ ମୋ ନାମରେ ଓ ବାକୀ ଅଧକ ମହନୀ ଅପାଂକ ନାମରେ ଲେଖିଦେଇ ଯାଇଥିଲେ। ଘର ଓ ଜାଗା ମୋ ଭାଗରେ ପଡ଼ିଲା। ଯେଉଁସବୁ ଜାଗିରୀ ଜମି ସର୍ବରାକାରୀ ଉଠିଯିବା ପରେ ତାଂକ ନାମରେ ସରକାର

ଦାଖଲ ଖାରଜ କରିଦେଇଥିଲେ, ସେ ସବୁ ସେ ବିକ୍ରି କରି ଦେଇଛନ୍ତି। ମୋର ଜନ୍ମିତ ପିତା ପ୍ରସନ୍ନକୁମାରଂକର ଜମି ଓ ଘର ଶ୍ୟାମାନନ୍ଦ ଓ ପ୍ରେମାନନ୍ଦ ପାଇଲେ। ସେଥିରେ ମୋର ଅଂଶ ନଥିଲା; କାରଣ ମୁଁ ବଡ଼ବାପାଂକର ପୋଷ୍ୟପୁତ୍ର ହୋଇଯାଇଥିଲି।

**ପୁରୀ ଜିଲ୍ଲା ସ୍କୁଲ୍‌ରେ କିଛି ଦିନ –**

ଏହାପରେ ମୋତେ ପୁରୀଜିଲ୍ଲା ସ୍କୁଲ୍‌ରେ ପଢ଼ିବାକୁ ଘରେ ସମସ୍ତେ ଧରାଧରି କରି ପଠାଇଦିଅଂତି। ସେତେବେଳେ ମୋର ଭିଣୋଇ ଡକ୍ଟର ଜଗନ୍ନାଥ ଦାସ ଭିଏନାରୁ ଉଚ୍ଚ ଡିଗ୍ରୀ ପାଇ ପୁରୀ ଜେନେରାଲ୍ ହସ୍‌ପିଟାଲ୍‌ରେ ସିଭିଲ୍ ସର୍ଜନ୍ ଥାଆଂତି। ପୁରୀ ବଡ଼ ପୋଷ୍ଟ୍ ଅଫିସ୍ କଡ଼କୁ ଥିବା ଗୋଟାଏ ବଡ଼ ଦୁଇତାଲା ଘରେ ଆମେ ସବୁ ରହୁଥାଉଁ। ମୁଁ ପୁରୀ ଜିଲ୍ଲା ସ୍କୁଲ୍‌ରେ ନାମ ଲେଖାଇଲି। ପୁରୀ ଜିଲ୍ଲା ସ୍କୁଲ୍‌ରେ ଭର୍ତି ହେବାପରେ ମୁଁ ଚାଦର ଛାଡ଼ି କାମିଜ୍ ପିଂଧିଲି। ବାଳ ମଧ୍ୟ କୁଂଡାଇଲି। ତା' ସାଂଗକୁ ସୁନାପାଣିଦିଆ ଚଷମା ମଧ୍ୟ ବ୍ୟବହାର କଲି। ପୁରୀ ଜିଲ୍ଲା ସ୍କୁଲ୍‌ରେ ପଢ଼ିବାବେଳେ ମୋତେ ସବୁ ସାଂଗସାଥି ଓ ଶିକ୍ଷକମାନେ ଜଣେ ନାମଜାଦା ଲେଖକ ଓ କବି ବୋଲି ଜାଣିଥାଂତି। ଏହାଛଡ଼ା ମୁଁ ଫୁଟ୍‌ବଲ୍ ଖେଳରେ ମଧ୍ୟ ଖୁବ୍ ନାମ କରିଥିଲି; 'ଜିଲ୍ଲା ଏକାଦଶ' ମଧ୍ୟରେ ମୋର ସ୍ଥାନ ଥିଲା। ଖଡ଼ଗପୁର ପ୍ରଭୃତିରେ ଆମ ଜିଲ୍ଲା ଟିମ୍ ସହ ଯାଇ ମୁଁ ଟୁର୍ଣାମେଂଟ୍‌ମାନଂକରେ ଖେଳୁଥିଲି।

ପୁରୀରେ ପଢୁଥିବାବେଳେ ମୁଁ କେତେକ କବିତା ମଧ୍ୟ ଲେଖିଥିଲି। 'ହନୁମାନ୍‌ର ଗୋତ୍ର' ତା' ମଧ୍ୟରେ ଅନ୍ୟତମ। ତାହା 'ରସଚକ୍ର' ନାମକ ପତ୍ରିକାରେ ପ୍ରକାଶ ପାଇଥିଲା। ହନୁମାନଂକୁ କିପରି ଓଡ଼ିଆ ବୋଲି ପ୍ରମାଣ କରିବାକୁ ଏକ ସଭାରେ ବକ୍ତାମାନେ ଝାଳନାଳ ହୋଇ ଭାଷଣ ଦେଉଛନ୍ତି, ତାହା ଏହି କବିତାରେ ବିଦ୍ରୂପ ଛଳରେ ବର୍ଣନାକରାଯାଇଛି। ଏହା ମୋ 'ହସଂତ' ବହିରେ ସନ୍ନିବିଷ୍ଟ ହୋଇଛି। ଜଣେ ବକ୍ତା କହୁଛନ୍ତି – 'ହନୁମାନ୍ ଯଦି ଓଡ଼ିଆ, ତେବେ ତା'ର ବଂଶଧର ଓଡ଼ିଆଂକର ଲାଂଗୁଡ଼ ଗଲା କୁଆଡ଼େ?' ଏ ପ୍ରଶ୍ନର ଉତ୍ତର ସେ ପୁଣି ନିଜେ ଦେଉଛଂତି – 'ବେଂଗଫୁଲାମାନେ ଜନ୍ମ ହେଲାବେଳେ ତାଂକର ଲାଂଗୁଡ଼ ଥାଏ; ମାତ୍ର ବଡ଼ ହେବା ପରେ ସେ ଲାଂଗୁଡ଼ ଛିଂଡିଯାଏ। ଓଡ଼ିଆଂକର ପ୍ରଥମେ ଲାଂଜ ଥିଲା, ପରେ ବିବର୍ତନ ନିୟମାନୁସାରେ ସେମାନେ ଲାଂଗୁଡ଼ ହରାଇଲେ।' ଏହି କବିତାରୁ ଜଣାପଡ଼ିବ, କିଶୋର ବୟସରୁହିଁ, ଯେଉଁମାନେ ସବୁ ବଡ଼ବଡ଼ିଆଂକୁ ଯଥା – ବ୍ୟାସ, ରାବଣ, ବୁଦ୍ଧ, ଜୟଦେବ ପ୍ରଭୃତି ଓଡ଼ିଆ ବୋଲି ପ୍ରମାଣ କରିବାରେ ଲାଗିପଡ଼ିଛଂତି, ମୁଁ ସେମାନଂକୁ ହାଡ଼େ ହାଡ଼େ ଚିଡ଼େ। ଅବଶ୍ୟ ଜୟଦେବଂକୁ ଓଡ଼ିଆ ବନେଇବା ଆଂଦୋଳନ ସେତେବେଳେ ପର୍ଯଂତ ଆରଂଭ ହୋଇନଥିଲା। ପୁରୀ ଜିଲ୍ଲାରେ କେଂଦୁଲୀ ଗ୍ରାମ ସଂପୂର୍ଣ

ଅଜ୍ଞାତ ଓ ଅବହେଳିତ ହୋଇ ପଡ଼ିଥିଲା। ସେ ଗାଁଲୋକେ ମଧ୍ୟ ଜାଣିନଥିଲେ ଯେ ଜୟଦେବ ସେଠାରେ ଆଠଶହ ବର୍ଷତଳେ ଜନ୍ମଗ୍ରହଣ କରିଥିଲେ।

ବର୍ତ୍ତମାନ ଦେଖାଯାଉଛି ଦଳେ ଲୋକ ବଡ଼ବଡ଼ିଆଂକୁ ଓଡ଼ିଆ ବନେଇବା ଚେଷ୍ଟା ଧରିଛଂତି। ଖ୍ରୀଷ୍ଟିଆନ୍ ପାଦ୍ରିମାନେ ଯେପରି ସରଳ ଆଦିବାସୀଂକୁ ଖ୍ରୀଷ୍ଟିଆନ୍ ବନାଂତି, ଏମାନେ ସେହିପରି ମୃତ ମନୀଷୀମାନଂକୁ ଧରିଆଣି ଓଡ଼ିଆ ବନେଇବାରେ ଲାଗିଛଂତି ଏବଂ ତାହା ପ୍ରାୟ ହାସ୍ୟକର ବାକ୍ୟରେ।

ଏହାଛଡ଼ା 'ଦେବଲୋକରେ ଘୋଡ଼ାଦଉଡ଼', 'ବିରହ କଲିକ୍', 'ଗୋପବଂଧୁଂକ ଶ୍ରାଦ୍ଧ' ପ୍ରଭୃତି ବ୍ୟଂଗ କବିତାମାନ ମୁଁ ସେହି ସମୟରେ ରଚନା କରିଥିଲି। ମୋର 'ପହିଲି ରଜ' କବିତାଟି ମଧ୍ୟ ସେହି ସମୟରେ ରଚିତ। ଏସବୁ କବିତା 'ରସଚକ୍ର' ପତ୍ରିକାରେ ପ୍ରକାଶପାଇଥିଲା ଏବଂ ପରେ ମୋ 'ହସଂତ' ବହିରେ ସଂକଳିତ ହୋଇଛି। ଅବଶ୍ୟ 'ପହଲି ରଜ' 'ପଲ୍ଲିଶ୍ରୀ' ବହିରେ ଗ୍ରଥିତ ହୋଇଛି।

ଏହି 'ରସଚକ୍ର' ପତ୍ରିକା ମୋତେ ତୀବ୍ର ସମାଲୋଚନା କରୁଥାଏ। ମୋର ବହୁ ଲେଖାକୁ ଏହା କଟୁ-କଟାକ୍ଷ କରି ଜନପ୍ରିୟ ହେବାକୁ ଚେଷ୍ଟାକରୁଥାଏ। ଏହାର ସଂପାଦକ ଥିଲେ ପ୍ରତାପ ସେନ୍। ମୁଁ ଏହି ପତ୍ରିକାର ପ୍ରାୟ ପ୍ରତି ସଂଖ୍ୟାରେ ଶରବ୍ୟ ହେଉଥିଲି।

ଉପେଂଦ୍ର ଭଂଜଂକ ଉପରେ ମୁଁ ଏକ ପ୍ରବଂଧ ଲେଖିଥିଲି। ତାହା ବ୍ରହ୍ମପୁରରୁ ପ୍ରକାଶିତ 'ଶିଶିର' ପତ୍ରିକାରେ ପ୍ରକାଶପାଇଥିଲା। ପ୍ରବଂଧର ଶୀର୍ଷକ ଥିଲା 'ଉପେଂଦ୍ର ଭଂଜଂକର ଦୁଇଧାଡ଼ି କବିତା'। ମୁଁ ସେଥିରେ ଭଂଜଂକର କେତେକ ତଥାକଥିତ ଅଶ୍ଳୀଳ ପଙ୍‌କ୍ତିକୁ ପ୍ରଶଂସା କରିଥିଲି ଏବଂ ତହିଁର କଳାତ୍ମକ ଉତ୍କର୍ଷ ଦେଖାଇଥିଲି। 'ରସଚକ୍ର' ମୋର ସେହି ପ୍ରବଂଧକୁ କଟୁ ସମାଲୋଚନା କରିଥିଲା। ଏ ପ୍ରବଂଧ କୁଆଡ଼େ ହଜିଯାଇଥିବାରୁ ମୋର କୌଣସି ସଂକଳନରେ ସ୍ଥାନ ପାଇ ନାହିଁ। ମୋତେ କଟୁ ସମାଲୋଚନା କରୁଥିଲେ ମଧ୍ୟ ଏଣେ କିଂତୁ ସେହି ପତ୍ରିକା ମୋର ବହୁ କବିତାକୁ ମର୍ଯାଦାର ସହିତ ପ୍ରକାଶ କରିବାକୁ କୁଂଠା ବୋଧ କରିନାହିଁ।

'ଶିଶିର'ରେ ପ୍ରକାଶିତ ମୋର ଆହୁରି ଅନେକ ପ୍ରବଂଧ ଓ କବିତାମାନ ଏବଂ ଅନ୍ୟାନ୍ୟ ବହୁ ପତ୍ରପତ୍ରିକାରେ ପ୍ରକାଶିତ ଲେଖାମାନ ମିଳୁନାହିଁ। ସେମାନେ ଚିରଦିନ ଅଂଧାରରେ ରହିଗଲେ; ଏ ଜୀବନରେ ଆଉ ଭେଟହେବନାହିଁ।

**ବ୍ରହ୍ମପୁର ଯାତ୍ରା—**

ଥରେ 'ନବୀନ' ପତ୍ରିକାର ସଂପାଦକ ମହୁରୀ ଯୁବରାଜ କୃପାସିଂଧୁ ପଟ୍ଟଦେବ ମୋତେ ତାଂକ କାର୍‌ରେ ପୁରୀଠାରୁ ବ୍ରହ୍ମପୁର ନେଇଯାଇଥିଲେ। ମୁଁ ବ୍ରହ୍ମପୁରରେ ତାଂକ ମହୁରୀ ରାଜବାଟୀର ବାହାର ବଂଗଳାରେ ତିନି-ଚାରି ଦିନ ରହିଥିଲି। ସେତେବେଳେ ବ୍ରହ୍ମପୁର ଥିଲା ଓଡ଼ିଶାର ଏକ ବଡ଼ ସଂସ୍କୃତି କେଂଦ୍ର। ଓଡ଼ିଶାର

ଏକମାତ୍ର ଦୈନିକ ପତ୍ରିକା 'ଦୈନିକ ଆଶା' ଶ୍ରୀ ଶଶିଭୂଷଣ ରଥଂକ ସଂପାଦନାରେ ବ୍ରହ୍ମପୁରରୁହିଁ ବାହାରୁଥିଲା। ଷ୍ଟୁଡେଂଟ୍ ଷ୍ଟୋର୍ ବ୍ରହ୍ମପୁରରେ ସ୍ଥାପିତ ହୋଇ ବହୁତ ସୁଂଦର ସୁଂଦର ଓଡ଼ିଆ ବହି ପ୍ରକାଶ କରୁଥାଏ।

ମହୁରୀଯୁବରାଜ ଶ୍ରୀ ପଟ୍ଟଦେବ ମୋର ଖିଆପିଆ ଭଲଭାବେ ବୁଝୁଥିଲେ। ତାଂକ ଚର୍ଚ୍ଚା ମୋର ଏବେ ସୁଦ୍ଧା ମନେରହିଛି। ମୁଁ ଯେଉଁ ଘରେ ଶୋଉଥିଲି, ତା'ର କଡ଼ପଟେ ଝରକା ପଛରେ ଫୁଲ ବଗିଚା ଥିଲା। ଫୁଲ ବାସ୍ନା ଆସୁଥିଲା। ସେଠାରେ ଗୋଟିଏ ମୁନିସିପାଲ୍ଟି ପାଣିକଳ ଲାଗିଥିଲା। ରାତି ସାରା ସେଠାରୁ ପାଣି ପଡ଼ିବାର ଶବ୍ଦ ଶୁଣାଯାଉଥିଲା। ନିର୍ଜ୍ଜନ ରାତିରେ ପାଇପ୍ରୁ ପାଣି ପଡ଼ିବାର ଶବ୍ଦ ଭାରି ଭଲଲାଗୁଥିଲା।

## ଦ୍ୱାଦଶ ଉଲ୍ଲାସ

## ମୋ' ଇଂରାଜୀ କବିତା

ମୁଁ ଏହି ସମୟରେ ଇଂରାଜୀରେ କେତେକ କବିତା ଲେଖିଥିଲି। ମଝିରେ ମଝିରେ ମୁଁ ଇଂରାଜୀରେ କବିତାମାନ ଲେଖେ; ଏବେ ମଧ୍ୟ ଲେଖୁଚି। ସେସବୁ ଦେଶବିଦେଶର ପତ୍ରପତ୍ରିକାରେ ବାହାରେ। ମୋର ଏହି ସମୟର ସମସ୍ତ ଇଂରାଜୀ କବିତା ଭାରତ ସେବକ ସମିତିର ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ସଂପାଦିତ 'THE VAITARANI' ନାମକ ଇଂରାଜୀ ମାସିକ ପତ୍ରିକାରେ ପ୍ରକାଶ ପାଇଥିଲା। ଦୁଃଖର କଥା ଏ ପତ୍ରିକାଗୁଡ଼ିକ ଏବଂ ସେଥିରେ ଥିବା ମୋ ଇଂରାଜୀ କବିତାମାନ କୁଆଡ଼େ କିଏ ନେଇଗଲେ ବା ହଜିଗଲା। ଆଗରୁ କହିଛି, ମୋର ସବୁ ଓଡ଼ିଆ ଓ ଇଂରାଜୀ କବିତା ଯେଉଁସବୁ ପତ୍ରପତ୍ରିକାରେ ପ୍ରକାଶପାଇଥିଲା, ମୁଁ ତାକୁ ଆମ ଘରେ ଏକ କାଠବାକ୍ସରେ ସଜାଇ ରଖିଥିଲି; ମାତ୍ର ମୁଁ ଗାଁ ଛାଡ଼ିବା ପରେ ସେ ସବୁ ଆଉ ଖୋଜି ପାଇଲି ନାହିଁ। 'THE VAITARANI' ପତ୍ରିକାରେ ସମୀକ୍ଷା ପାଇଁ ପୃଥିବୀର ଚାରିଆଡୁ ବଡ଼ ବଡ଼ ଲେଖକ ଓ ପ୍ରକାଶକମାନେ ବହି ଓ ପତ୍ରପତ୍ରିକା ପଠାଉଥିଲେ। ସେସବୁ ମଧ୍ୟ ସମୀକ୍ଷା ହେଉଥିଲା। ଜଣେ କିଏ ବିଦେଶୀ ଗବେଷକ ଖଂଡିଏ ବହି ପଠାଇଥିଲେ; ଯେଉଁଥିରେ ରାବଣ ଓଡ଼ିଶାର ରାଜପୁତ୍ର ଥିଲା ବୋଲି ସେ ଯୁକ୍ତି ବାଢ଼ିଥିଲେ। ରାବଣ ଯିଶୁ ଖ୍ରୀଷ୍ଟଙ୍କୁ ଓଡ଼ିଶାକୁ ଆମଂତ୍ରଣ କରି ଆଣିଥିଲା ବୋଲି ଲେଖିଥିଲେ। ଲଂକା ଥିଲା ସୋନ୍‌ପୁର ବା ସୁବର୍ଣପୁର। ସମୁଦ୍ରଟା ପୋତିହୋଇପଡ଼ିଛି ବୋଲି ସେ ଦର୍ଶାଇଥିଲେ। ଶ୍ରୀ ସାହୁ ତାଂକ ସମୀକ୍ଷାରେ ଉକ୍ତ ବିଷୟକୁ ଖୁବ୍ ଗୁରୁତ୍ୱ ଦେଇ ଓଡ଼ିଶାରେ ଲଂକା ଥିଲା ବୋଲି ଲେଖିଥିଲେ।

**ଅମାୟିକ ଲକ୍ଷ୍ମୀନାରାୟଣ –**

ଲକ୍ଷ୍ମୀନାରାୟଣ ସାହୁ ଜଣେ ମେଳାପୀ ଓ ନିରାଡ଼ଂବର ବ୍ୟକ୍ତି ଥିଲେ। ସେ କାହାରି ଅନିଷ୍ଟ ପାଂଚୁନଥିଲେ। ଶ୍ରୀ ସାହୁ ଅନେକ ଉଦ୍‌ଭଟ କଥା ବେଳେବେଳେ ଲେଖୁଥିଲେ; ମାତ୍ର ଆମେ ତାଂକୁ ଖୁବ୍ ଶ୍ରଦ୍ଧାକରୁଥିଲୁ। ତାଂକ ଓଡ଼ିଆ କବିତା ପଢ଼ିବାକୁ ଭାରି ମଜାଲାଗୁଥିଲା। ସେ ବେଳେବେଳେ ପୁରୀ ଆସି ରାତିରେ ଆମ ଦାଂଡ ବାରଂଡାରେ ଶୋଉଥିଲେ। ତାଂକ ସଂଗେ ହୋମିଓପାଥିକ୍ ଡାକ୍ତର ଜେ. ଚଉଧୁରୀ ମଧ୍ୟ ଆସି ଆମ ସଂଗେ ରହୁଥିଲେ। ପ୍ରଚୁର ସମୁଦ୍ର ହାଓ୍ୱା ମିଳୁଥିଲା; ତା' ସଂଗରେ କିଛି ବାଲି। ପରେ ଡାକ୍ତର ଚଉଧୁରୀ ପୁରୀରେ ହୋମିଓ ଦୋକାନ ଖୋଲିଲେ।

**ଶ୍ରୀମଂଦିର ହାଲ୍ –**

ପୁରୀରେ ପଢୁଥିବାବେଳେ ମୋର ଶ୍ରୀମଂଦିରର ଟିକିନିଖି ହାଲ୍ ବୁଝିବାପାଇଁ ପ୍ରବଳ ଆଗ୍ରହ ଥିଲା। ମୁଁ ବହୁ ପଂଡା, ପଢ଼ିଆରୀ ଓ ଦୈତାପତିଂକଠାରୁ ଶ୍ରୀଜଗନ୍ନାଥଂକ ଭୋଗରାଗ ସଂବଧରେ ଜାଣିବାକୁ ଆଗ୍ରହାନ୍ୱୀତ ହୁଏ ଏବଂ କେତେକ ତଥ୍ୟ ସଂଗ୍ରହକରେ। ବଡ଼ଆଖିଆ ଜଗନ୍ନାଥେ ସକାଳୁ ସଂଜ ଯାଏ କ'ଣ ଖିଆପିଆ କରଂତି ଏବଂ ସୁଆରମାନେ ପାଟିରେ କପଡ଼ା ବାଂଧି କ'ଣ ସବୁ ଭାରରେ ବୋହିନେଇ ଯାଆଂତି, ତାହା ଜାଣିବାକୁ ଚେଷ୍ଟାକରିଥିଲି। ପରେ କେତେକ ପୁସ୍ତକରୁ ସେ ବିଷୟରେ ବହୁ ଉପାଦାନ ମିଳିଛି। ଯୁଗଯୁଗ ଧରି ପ୍ରଚଳିତ ବିଭିନ୍ନ ଧର୍ମର ପ୍ରଭାବ ଓ ସଂକେତ ଶ୍ରୀଜଗନ୍ନାଥଂକ ପୂଜା ପଦ୍ଧତି, ନୀତି ନିୟମ ଓ ଭୋଗଦ୍ରବ୍ୟରେ ପ୍ରତିଫଳିତ ହୋଇଛି।

**ଶ୍ରୀଜିଉଂକ ଛପନ ଭୋଗ –**

ଗୋପାଳବଲ୍ଲଭ ଭୋଗ : ବଡ଼କାଂତି, ମୋଟାପୁଳି, ସାନକାଂତି, ଚାଂଦ ମୋଟା ପୁଳି, ହଂସ କେଳି, ବଡ଼କାଂଚି, କାନିକା, ତଟା ଖେଚିଡ଼ି, ଲୁଣୁରା ଖେଚିଡ଼ି, କାକତୁଆ ଟିଲି, ଅଦା ପାଚେଡ଼ି, ଶାଗ, ଏଂତୁରି, ଥାଳି ଖେଚିଡ଼ି, ଓଳି ଖେଚିଡ଼ି, ସାନଓଳି ଖେଚିଡ଼ି, ପୁଳି, ବୁଂଦିଆ ଓ କ୍ଷୀରି, ମେଂଡାମୁଂଡିଆ, ମୋଟା ପୁଳି, ଝିଲି, ହଂସ ପୁଳି, ପିଠା ପୁଳି।

ମଧ୍ୟାହ୍ନ ଭୋଗ ବା ବଡ଼ଧୂପର ଦ୍ରବ୍ୟାବଳୀ : ସୁଆର ଆରିସା, ଧଉଳା, ପଶୁପାଳକ ଧଉଳା, ସାନ ଆରିସା, ବଡ଼ ଆରିସା, ସାନ ଧଉଳା, ଟିପୁରି, ତଟାନାଦି, ତଟା ମଂଚରା, ବଡ଼ କାକରା, ମାରିଚ ଲଡୁ, ବଡ଼ନାଦି, ଘିଅନାଦି, ବଡ଼ପିଠା, ସାନପିଠା, ସରପଣା, ମୁଗମାରିଚା, ବଡ଼ିଖିରିମା, ଅମୃତଦୁଗ୍ଧ, କଂଦବ, ଅଂଶବାସ, ସୁବାସ ପଖାଳ, ସାକରା, ସାନଗଜା, ବଡ଼ଗଜା, ସାନପିତା, ବଡ଼ା, ନିଯୋଗପିଠା, ଭଜା, ସୁଜି ଖିରି, ମୁଗ ସିଝା, ଥାଳି ପକା, ପଣା।

ସଂଧ୍ୟାଧୂପର ଦ୍ରବ୍ୟାବଳୀ : ଖାଡ଼େଇ ନେଦା, ସୁଆର ମଂଚାର, ପାରିଜାତକ, ମଂଡୁଆ, କଦଳୀମିଠା, ଚେନାମଣି ପିଠା, ହଂସ ବଲ୍ଲଭପିଠା, ମହାବୀର ପିଠା, ଝାଲିପକା, କାଂତିପୁଂଦି, ସୁଆଳି, କମଳାପୁଳି, ଗୋଟାକୁଳି, ବଡ଼କାକରା, ସାନ କାକରା, ଲୁଣା ଖରୁମା, ଅମାଲୁ, ସୁଆରପିଠା, ଝାଡ଼େଇ ନେତା।

ସାଧାରଣରେ ଶ୍ରୀଜଗନ୍ନାଥଂକ ଭୋଗସଂଖ୍ୟାକୁ 'ଛପନ ଭୋଗ' କୁହାଯାଏ। କିଂତୁ ପ୍ରକୃତରେ ଭୋଗ ସାମଗ୍ରୀଗୁଡ଼ିକର ସଂଖ୍ୟା ତା'ଠାରୁ ଅନେକ ବେଶି। (ପଂଡିତ ସୂର୍ଯନାରାୟଣ ଦାଶଂକ 'ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ' ଦ୍ର : ବ୍ୟ :)

ଗୋପୀନାଥ ମହାପାତ୍ରଂକ 'The Land of Vishnu' ପୁସ୍ତକରୁ ପଂଡିତ ସୂର୍ଯନାରାୟଣ ଦାଶ ଏସବୁ ଭୋଗ ତାଲିକା ସଂଗ୍ରହ କରିଛଂତି। ଏହାଛଡ଼ା 'ରାଜଭୋଗ' ପୁସ୍ତକରେ ଶ୍ରୀଜଗନ୍ନାଥଂକ ଭୋଗର ବିବରଣୀ ରହିଛି। ଏହି ଭୋଗ

ମଧ୍ୟ କାଳକ୍ରମେ କିଛି କିଛି ବଦଳୁଛି। ୧୯୯୦ ମସିହାରେ ଯେଉଁ ଦ୍ରବ୍ୟାବଳୀ ଶ୍ରୀଜିଉମାନଂକଠାରେ ଲାଗିହେଉଥିଲା, ବର୍ତ୍ତମାନ ସେଥିରୁ କେତେକ ବଦଳିଗଲାଣି।

ଶ୍ରୀଜଗନ୍ନାଥ ମଂଦିରରେ ୩୬ଟି ନିଯୋଗ ଥିବାର ଜଣାଯାଏ। ଏହି ନିଯୋଗର ସଦସ୍ୟମାନେ ମଂଦିରର ସୁପରିଚାଳନା ପ୍ରତି ଦୃଷ୍ଟି ଦିଅଂତି। ଏହାଛଡ଼ା ଧର୍ମୀୟ ବିଚାର ଓ ନୀତିନିର୍ଣ୍ଣୟ ନିମଂତେ ସର୍ବୋଚ୍ଚ ଅଧିଷ୍ଠାନ ମୁକ୍ତିମଂଡପ ପଂଡିତସଭା ରହିଛି।

ଏହାଛଡ଼ା ଭୋଗରାଗ ପରେ ଜଗନ୍ନାଥଂକ ରତ୍ନଭଂଡାରରେ କେତେ ଅଳଂକାର ଓ ରତ୍ନ, ସୁନା, ରୁପା, ହୀରା, ନୀଳା ଓ ମୋତି ମାଣିକ୍ୟ ରହିଛି, ତାହା ଜାଣିବା ପାଇଁ ମୋର ଭୀଷଣ କୌତୂହଳ ହୋଇଥିଲା; ମାତ୍ର ଏହାର ସବିଶେଷ ବିବରଣୀ ପାଇପାରିଲି ନାହିଁ।

**ଶ୍ରୀଜିଉଂକ ଯାନିଯାତ୍ରା : ଚଂଦନଯାତ୍ରା –**

ମୁଁ ପୁରୀରେ ଥିଲାବେଳେ ଶ୍ରୀଜଗନ୍ନାଥଂକ ଯାନିଯାତ୍ରା ଦେଖିବାକୁ ଭଲ ପାଉଥିଲି। ଚଂଦନଯାତ୍ରା ମୋତେ ଖୁବ୍ ଆନଂଦ ଦେଉଥିଲା। ଖରାଦିନେ ଏହି ଯାତ୍ରା ହୁଏ। ଶ୍ରୀଜଗନ୍ନାଥଂକ ଆଜ୍ଞାମାଳ ନେଇ ତାଂକ ବିଜେପ୍ରତିମା ମଦନମୋହନ ସହିତ ପାଲିଂକୀରେ ବସି ଏକ ପଟୁଆରରେ ନରେଂଦ୍ର ପୋଖରୀକି ଯାଆଂତି। ସେଠାରେ ନୌକାରେ ବସି କିଛି ସମୟ ଚାପ ଖେଳଂତି। ପଟୁଆରରେ ଜଣେ ମାହାରୀ ବା ଦେବଦାସୀ ନୃତ୍ୟ କରି ଓ ଗୀତ ବୋଲି ବୋଲି ଚାଲିଥାଏ। ବାଦକମାନେ ମଧ୍ୟ ତା' ସହିତ ଚାଲିଥାଂତି। ସେ ଦୃଶ୍ୟ ବଡ଼ ଆକର୍ଷଣୀୟ।

''ପ୍ରଭୁ ମଦନମୋହନ / କରୀନ୍ଦ୍ର ଦଂତ ପଲଂକ ତେଜି ପ୍ରଭୁ ନରେଂଦ୍ର ଚାପେ ଗମନ।''

ଆଜିକାଲି ଆଉ ମାହାରୀମାନେ ଚଂଦନଯାତ୍ରା ବା ପଟୁଆରରେ ଯାଉ ନାହାଂତି। ଏଇ ମାହାରୀମାନେ ଓଡ଼ିଶାର ଗର୍ବ ଓ ଗୌରବ ନଂଦନ କଳାକୁ ବହୁମତେ ରୁଦ୍ଧିମଂତ କରିଛଂତି। ଏମାନେ ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଂଗୀତର ଧାତ୍ରୀ ଓ ଧରିତ୍ରୀ। ଯୁଗଯୁଗଧରି ସେମାନେ ଏହାର ଶ୍ରୀବୃଦ୍ଧି ସାଧନ କରିଆସିଛଂତି। ଏବେ ମାହାରୀମାନେ ପ୍ରାୟ ନୃତ୍ୟ ଗୀତ ଛାଡ଼ିଦେଲେଣି।

**ରଥଯାତ୍ରା :** ପୁରୀର ବିଶ୍ୱପ୍ରସିଦ୍ଧ ରଥଯାତ୍ରାରେ ମୁଁ ବର୍ଷେ ମୁରାରି ଭାଇନାଂକ (୰ମୁରାରି ତ୍ରିପାଠୀ) କଥାରେ ରଥଯାତ୍ରାରେ ଭାରତ ସେବାଶ୍ରମ ପକ୍ଷରୁ ଜଣେ ସ୍ୱେଛାସେବକ ହୋଇଥିଲି। ଖରା ଓ କ୍ଳାଂତିରେ ବେହୋସ ହୋଇଯାଉଥିବା ଯାତ୍ରୀମାନଂକୁ ଷ୍ଟ୍ରେଚରରେ ଉଠାଇ ପାଖରେ ଥିବା ସ୍ୱାସ୍ଥ୍ୟ କେଂଦ୍ରକୁ ନେଇଯିବା ଆମର କାମ ଥିଲା। ତାହାଛଡ଼ା ଯାତ୍ରୀମାନଂକୁ ଥଂଡା ପାଣି ଯୋଗାଇବା ଅନ୍ୟ ଏକ କାମ ଥିଲା। ମୁଁ କାଂଧରେ ଭାରତ ସେବାଶ୍ରମ ନାମ ଲେଖାଥିବା ହୁଦା ପକାଇ ଏବଂ ଆର କାଂଧରେ ପିଇବାପାଣିଭରା କାନ୍‌ଭାସ୍ ବ୍ୟାଗ୍ ଓ ଗୋଟିଏ

ଆଲୁମିନିୟମ୍ ଗ୍ଲାସ୍ ଧରି ଭଲେଂଟିୟର୍ କାମ କରିଥିଲି।

ଶ୍ରୀଗୁଂଡ଼ିଚ୍ଚା– ପୁରୁଷୋତ୍ତମ ଧାମରେ ଶ୍ରୀଜଗନ୍ନାଥଂକର ରଥଯାତ୍ରା ଏକ ଅତି ଜନପ୍ରିୟ ଓ ବିଶ୍ୱବିଖ୍ୟାତ ଯାତ୍ରା। ଏଥିରେ ଭାରତର ସବୁଆଡୁ ଏବଂ ଭାରତ ବାହାରୁ ପ୍ରାୟ ଆଠ-ଦଶ ଲକ୍ଷ ଲୋକଂକର ସମାଗମ ହୋଇଥାଏ। ଜାତି-ଧର୍ମ-ନିର୍ବିଶେଷରେ ସମସ୍ତେ ସେତେବେଳେ ଶ୍ରୀଜିଉଂକୁ ସ୍ପର୍ଶ କରିପାରଂତି ଏବଂ ରଥଦଉଡ଼ି ଟାଣିପାରଂତି। ବ୍ରାହ୍ମଣ, ଚଂଡାଳ, ଖ୍ରୀଷ୍ଟିୟାନ, ପାର୍ଶି ଆଦି ସବୁ ଜାତି ଓ ଧର୍ମର ଲୋକେ ତାଂକୁ ଛୁଇଁପାରଂତି। ପ୍ରଥମେ ସୁଦର୍ଶନ ଆସଂତି, ତା'ପରେ ସୁଭଦ୍ରା, ବଳଭଦ୍ର ଓ ଜଗନ୍ନାଥ ରଥକୁ ଯଥାକ୍ରମେ ବିଜେକରଂତି। ପୁରୀର ଠାକୁରରାଜା ସୁନା ପହଁରାରେ ଛେରାପହଁରା କଲାପରେ ରଥ ଟଣାହୁଏ।

ତିନି ଜିଉ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଆଷାଢ଼-ଶୁକ୍ଳ-ଦଶମୀ ଦିନ ମାଉସୀ ଘର ଶ୍ରୀଗୁଂଡ଼ିଚ୍ଚାକୁ ଯାତ୍ରା କରଂତି। ସେଠାରେ ଦଶଦିନ ରହି ବାହୁଡ଼ି ଆସଂତି। ବାଟରେ ରାତିରେ ଶ୍ରୀଜିଉମାନଂକର ସୁନାବେଶ ହୁଏ। ବାହୁଡ଼ା ଯାତ୍ରାବେଳେ ଜଗନ୍ନାଥଂକ ରଥ ଆସି ରାଜାଂକ ନଅର ପାଖରେ ରହେ। ଏହି ସମୟରେ ଲକ୍ଷ୍ମୀ ସାତ ପାହାଚ ଦ୍ୱାରରେ ଥିବା ଚାହାଣିମଂଡପକୁ ବିମାନବଡୁମାନଂକ ଦ୍ୱାରା ପାଲିଂକିରେ ଆସି ଉଭାହୁଅଂତି। ସେଠାରେ ଲକ୍ଷ୍ମୀ ଜଗନ୍ନାଥଂକ ରଥକୁ ଚାହାଂତି। ପ୍ରତି ବାରବର୍ଷରେ ଯୋଡ଼ା ଆଷାଢ଼ ପଡ଼ିଲେ ଜିଉମାନଂକର ନବକଳେବର ହୁଏ।

ସାଧାରଣ୍ୟ ଧର୍ମର ନିଦର୍ଶନ ଶ୍ରୀଜଗନ୍ନାଥଂକୁ ରାମାନୁଜ ବ୍ରାହ୍ମଣ୍ୟ ଧର୍ମର ଦେବତାରେ ପରିଣତ କରିବାକୁ ଚେଷ୍ଟା କରିଥିଲେ; ମାତ୍ର ସଫଳ ହୋଇପାରି ନଥିଲେ। ତାଂକ ଅନୁଷ୍ଠାନରେ ସାଧାରଣ୍ୟ ଧର୍ମର ବହୁ ଲକ୍ଷଣ ଓ ବିଧିବିଧାନ ଦେଖାଯାଏ। ବୌଦ୍ଧ ଓ ଜୈନ ଧର୍ମର ପ୍ରଭାବ ମଧ୍ୟ ଯଥେଷ୍ଟ ପଡ଼ିଛି। ସେ ସବୁ ଧର୍ମର ସମନ୍ୱୟ। ସୌର, ଗାଣପତ୍ୟ ଓ ଅଷ୍ଟ୍ରିକ ଜାତିର ବୃକ୍ଷୋପାସନା ପ୍ରଭୃତି ବହୁ ପରଂପରାର ସମନ୍ୱୟ ହେଉଛଂତି ଶ୍ରୀକ୍ଷେତ୍ରର ଶ୍ରୀଜଗନ୍ନାଥ। ଏଭଳି ଏକ ଦେବତା ପୃଥିବୀରେ ବିରଳ।

ରଥଯାତ୍ରା ଉପଲକ୍ଷେ ମୁଁ ଏକ କବିତା 'ରଥଯାତ୍ରା ୧୯୭୩' ନାମରେ ଲେଖିଥିଲି। ତାହା ମୋର 'କବିତା ୧୯୭୪' ପୁସ୍ତକରେ ସନ୍ନିବିଷ୍ଟ ହୋଇଛି। ଏଠାରେ ସେ କବିତାର କେତୋଟି ପଂକ୍ତି ଉଦ୍ଧାର କଲେ ଅପ୍ରାସଂଗିକ ହେବନାହିଁ।

**ରଥଯାତ୍ରା-୧୯୭୩–**

''ଅନେକ କପୋତ ପକ୍ଷୀ ରଂଗ ପରି
ଆଜି ପାଣି-କୁହଡ଼ିଆ ଖରା।
ହଠାତ ଯେ ଦେଖାଗଲା ପଶ୍ଚିମ ମୁହାଣୁ
ଦୁଇ ଚକା ଡୋଳା
ମୃଦଂଗର ଆଖିପରି।

ସବୁ ଶବ୍ଦ ହୋଇଗଲା କ୍ଷଣେ ଶୂନ୍‌ଶାନ।
ଲକ୍ଷ ଲକ୍ଷ ଲୋକଂକର ଜୟଧ୍ୱନି, ହୁଳହୁଳି
ଶଂଖ ବାଦ୍ୟ ସ୍ୱନ
କ୍ରମେ ସବୁ ଲିଭିଗଲା ଶବ୍ଦ ଆଉ ଦୃଶ୍ୟ...

× × ×

ଦେଖେଁ, ସ୍ୱୟଂ ମଘବାନ
ଆସି ଆରଂଭତି ସ୍ତୁତି
ମହେଶ୍ୱର କର ଯୋଡ଼ି ଠିଆ
ବ୍ରହ୍ମାଏ ପଢ଼ଉଡି ବେଦ
କିନ୍ନର କିନରୀ ଢାଳଂତି ଚାମର।

× × ×

ସେ ଆଖି ଓ ମୁଁ ମୁହାଁମୋହିଁ
ଯେଉଁପରି ବ୍ୟାଘ୍ର ଓ ବାଟୋଇ
ପରସ୍ପରେ ରହିଛଂତି ଚାହିଁ
ଅପଲକ, ଅନିମେଷ ଦୃଷ୍ଟି।
ସେ ଦୃଷ୍ଟିହିଁ ବଂଚିବାର ଅର୍ଥ ତାହା ସ୍ଥିତି।
ତଥାପି ଉଭୟେ
ପରସ୍ପରେ ରହିଛୁଁ ଆଚ୍ଛନ୍ନ।
କାଳକୁ ଆବୃତ କରି
ଯଥା କାଳହୀନ।'' (କବିତା – ୧୯୭୪)

**ଝୁଲଣ ଯାତ୍ରା –**

ଶ୍ରାବଣ ମାସରେ ଝୁଲଣଯାତ୍ରା ହୁଏ। ରାଧାକୃଷ୍ଣ ଦୋଳରେ ବସି ଝୁଲଂତି। ଗୋଟିପୁଅ ନାଚ୍ ହୁଏ। ଏହି ଗୋଟିପୁଅମାନେ ଓଡ଼ିଶାର ପ୍ରାଚୀନ ସଂଗୀତର ପ୍ରସାରଣରେ ବିଶେଷ ଭୂମିକା ନେଇଛଂତି। ଶ୍ରୀମଂଦିରରେ ଝୁଲଣଯାତ୍ରା ହୁଏ କି ନାହିଁ, ଜାଣେ ନାହିଁ। ମଠବାଡ଼ିମାନଂକରେ ଏ ଯାତ୍ରା ମୁଁ କେତେଥର ଦେଖିଛି।

**ଶ୍ରୀଜଗନ୍ନାଥଂକ ଦ୍ୱାଦଶ ଯାତ୍ରା –**

ଶ୍ରୀଜଗନ୍ନାଥଂକ ଦ୍ୱାଦଶଯାତ୍ରା ମଧ୍ୟରେ ସ୍ନାନଯାତ୍ରା, ରଥଯାତ୍ରା, ଶୟନଯାତ୍ରା, ଦକ୍ଷିଣାୟନଯାତ୍ରା, ପାର୍ଶ୍ୱପରିବର୍ତ୍ତନ ଯାତ୍ରା, ଉତ୍‌ଥାପନ ଯାତ୍ରା, ପ୍ରାବରଣ ଷଷ୍ଠୀ ଯାତ୍ରା (ମାର୍ଗଶିର ଶୁକ୍ଳ-ଷଷ୍ଠୀଠାରୁ ଠାକୁରଂକର ଘୋଡ଼ ଲାଗିହୁଏ।), ପୁଷ୍ୟ ପୂଜା (ପୁଷ୍ୟାଭିଷେକ), ଉତ୍ତରାୟଣ ଯାତ୍ରା ବା (ମକର ସଂକ୍ରାଂତି ଯାତ୍ରା), ଦୋଳପୂଜା ଯାତ୍ରା, ଦମନକ ଚତୁର୍ଦ୍ଦଶୀ ଯାତ୍ରା ବା (ଦଅଣା-ଚୋରି ଯାତ୍ରା, ଯାହା ଚୈତ୍ର ଶୁକ୍ଳ– ଚତୁର୍ଦ୍ଦଶୀରେ ପାଳିତ ହୁଏ), ଅକ୍ଷୟତୃତୀୟା ଯାତ୍ରା।

ମୁଁ ଏ ଦ୍ୱାଦଶଯାତ୍ରା ଦେଖିନାହିଁ କେବଳ ରଥଯାତ୍ରା ଛଡ଼ା। ଶ୍ରୀଜଗନ୍ନାଥଙ୍କର ସବୁ ପୂଜାପଦ୍ଧତି, ଯାତ୍ରା, ପର୍ବ ଜଣେ ଦେଖିବା ବା ବର୍ଣ୍ଣନା କରିବା ଅସଂଭବ। ପ୍ରତି ମାସ ମାସ ସମୟ ଲାଗିଯିବ।

**ପୁରୀ ସମୁଦ୍ରକୂଳ –**

ଏହାଛଡ଼ା ପୁରୀର ଶ୍ରେଷ୍ଠ ଆକର୍ଷଣ ତାର ସମୁଦ୍ରକୂଳ ମୋତେ ସବୁବେଳେ ଅଭୀଭୂତ କରିଛି। ମୁଁ ସପ୍ତାହରେ ପ୍ରାୟ ଦୁଇ-ତିନିଦିନ ସଂଧ୍ୟାବେଳେ ଏବଂ କେବେ କେମିତି ସକାଳେ ସମୁଦ୍ରକୂଳରେ ବୁଲି ନୂତନ ପ୍ରେରଣା ଓ ଶକ୍ତି ସଂଗ୍ରହ କରିଛି। ନୋଳିଆଂକ ସାହାଯ୍ୟରେ କେତେ ଥର ସମୁଦ୍ରସ୍ନାନ କରିଛି। ସମୁଦ୍ରକୂଳରେ ପିଲାମାନେ ଶାମୁକା ଗୋଟାଇବାକୁ ଏବଂ ବାଲିଘର ତିଆରି କରିବାକୁ ଭଲପାଆଂତି। ମୁଁ ବହୁ ସମୟ ଛିଡ଼ାହୋଇ ସେମାନଂକର ବାଲିଘର ତିଆରି କରିବା ଏବଂ କିଛି ସମୟପରେ ପୁଣି ନିର୍ଲିପ୍ତ ଭାବରେ ତାକୁ ଭାଂଗିଦେବାର ଦୃଶ୍ୟ ଦେଖେ। ମନେହୁଏ, ସେହିମାନେହିଁ ପ୍ରକୃତ ସ୍ରଷ୍ଟା, ଯେଉଁମାନେ କି ନିଜର ସୃଷ୍ଟିକି ଅକାତର ଭାଂଗିଦେଇପାରଂତି – ଯେପରି ଈଶ୍ୱର।

**ତିନି ମହାବୃକ୍ଷ : ସତ୍ୟେନ୍‌ଦା –**

ପୁରୀରେ ଥିବା ସମୟରେ ମୁଁ ସତ୍ୟେନ୍‌ଦାଂକ ଘନିଷ୍ଠ ସଂପର୍କରେ ଆସିଥିଲି। ସତ୍ୟେନ୍‌ଦା ଜଣେ ରାଜବଂଦୀ ଥିଲେ। ଜେଲରେ ଥିଲାବେଳେ ସେ ରାଜଯକ୍ଷ୍ମା ରୋଗରେ ଆକ୍ରାଂତ ହୁଅଂତି। ସେ ସ୍ୱାସ୍ଥ୍ୟର ଉନ୍ନତିଲାଗି ପୁରୀ ସମୁଦ୍ରକୂଳରେ ଗୋଟିଏ ଛୋଟଘର ଭଡ଼ା ନେଇ ରହୁଥାଂତି। ତାଂକ ନିକଟକୁ ବହୁ ଛାତ୍ର ଓ ରାଜନୀତିକ କର୍ମୀ ଆସୁଥାଂତି। ସେ ବହୁ ଛାତ୍ରଂକୁ ପଢ଼ାପଢ଼ିରେ ସାହାଯ୍ୟ କରୁଥାଂତି; ପାଠ ବତାଇ ଦେଉଥାଂତି। ସତ୍ୟେନ୍‌ଦା ଥିଲେ ଜଣେ ବିପ୍ଳବୀ, ଆତଂକବାଦୀ। ତାଂକ ବ୍ୟକ୍ତିତ୍ୱର ପ୍ରଭାବ ବହୁ ଲୋକଂକୁ ତାଂକ ନିକଟକୁ ଟାଣିଆଣୁଥିଲା।

ସତ୍ୟେନ୍‌ଦା କେବେ କେବେ ମୁଢ଼ିବାଲାକୁ ଡକାଇ ଆମକୁ ମୁଢ଼ି ଖୁଆଉଥିଲେ। ଦିନେ ଦିନେ ପକୋଡ଼ି ମଧ କିଣିଆଣି ସମସ୍ତିଂକି ଦେଉଥିଲେ। ଆଉ ତାହା ସଂଗରେ ଦେଉଥିଲେ ଅନେକ ପୁଷ୍ଟିକର ମାନସିକ ଖାଦ୍ୟ। ଦେଶବିଦେଶର ବହୁ ବିପ୍ଳବୀ ଓ ମୁକ୍ତିସଂଗ୍ରାମୀଂକ ଜୀବନୀ ପୁସ୍ତକ ଓ ସେମାନଂକ ଲିଖିତ ବହି ମଧ ଆଂଭମାନଂକୁ ପଢ଼ିବାକୁ ଦେଉଥିଲେ। ବହିପତ୍ର ଦେଲେ, ତାକୁ ଠିକ୍ ସମୟରେ ଫେରେଇବା ପାଇଁ ସେ ତାଗିଦ୍ କରି ଦେଉଥିଲେ। ଅନେକ ବାଜ୍ୟାପ୍ତ ବହି ମଧ ସେ ରଖିଥିଲେ, କିଂତୁ ନିଜ ଘରେ ନୁହେଁ; ବିଶ୍ୱସ୍ତ ପିଲାମାନଂକ ଘରେ। ସେ ଜାଣିଥିଲେ ତାଂକ ବାସସ୍ଥାନ କଡ଼ା ପୁଲିସ୍ ନଜରରେ ଥିଲା; ଯେକୌଣସି ସମୟରେ ଖାନ୍‌ତଲାସ ହୋଇପାରେ।

ସେ ଦେଶବିଦେଶର ବିପ୍ଳବୀମାନଂକ ବିଷୟରେ ଆମକୁ କହୁଥିଲେ । ସେ ଆର୍ୟଲାଂଡ୍‌ର ବିପ୍ଳବୀ ନେତା ଡି. ଭ୍ୟାଲେରା ଏବଂ ତାଂକ ସିନ୍ ଫେନ୍ (Sinn Fein) ଆଂଦୋଳନ ଓ ସଂସ୍ଥା ବିଷୟରେ ବହୁତ କଥା କହୁଥିଲେ ।

୧୯୧୫ ସାଲରେ ଡି. ଭ୍ୟାଲେରା ଇଷ୍ଟର୍ ବିଦ୍ରୋହରେ ମୁଖ୍ୟ ଭୂମିକା ନେଇଥିଲେ । ବିଦ୍ରୋହ ଦମିତ ହେବା ପରେ ସେ ଡବ୍ଲିନ୍‌ଠାରେ ଆତ୍ମସମର୍ପଣ କରଂତି । ବ୍ରିଟିଶ୍ ସାମରିକ ଅଦାଲତ ତାଂକୁ ମୃତ୍ୟୁଦଂଡ ଆଦେଶ ଦେଇଥିଲେ । ୧୯୧୫ ମସିହାରେ ତାହା ଯାବଜ୍ଜୀବନ କାରାଦଂଡକୁ ହ୍ରାସପାଇଥିଲା । ସେ ଖ୍ରୀ: ୧୯୧୭ରେ ସିନ୍‌ଫିନ୍ ଅନୁଷ୍ଠାନର ପ୍ରାର୍ଥୀ ହିସାବରେ ନିର୍ବାଚନ ଲଢ଼ିବାକୁ ମନୋନୀତ ହେବାରୁ ତାଂକୁ ଖଲାସ୍ କରିଦିଆଯାଏ । ସେ ବିଭକ୍ତ ଆର୍ୟଲ୍ୟାଂଡ୍ (Eire)ର ପ୍ରଧାନମଂତ୍ରୀ ହୋଇଥିଲେ ।

ଏହାଛଡ଼ା ଚୈନିକ ବିପ୍ଳବୀ ଆଂଦୋଳନ ଏବଂ ସାନ୍-ୟାଦ୍-ସେନଂକ ବୈପ୍ଳବିକ ତତ୍ତ୍ୱ ଓ କୌଶଳ ସଂବଂଧରେ ବହୁ ତଥ୍ୟ କହୁଥିଲେ । ରୁଷ୍‌ର ବିପ୍ଳବୀମାନଂକ କଥା ଆମକୁ ବଖାଣୁଥିଲେ । ରୁଷ୍‌ର ଏକଛତ୍ର ସମ୍ରାଟ୍ ଜାରଂକ ବିରୁଦ୍ଧରେ ସେ ଦେଶର ବିପ୍ଳବୀମାନେ କିପରି ଆପୋଷହୀନ ସଂଗ୍ରାମ ଚଳାଇଥିଲେ ଏବଂ ଡିସେଂବ୍ରିଷ୍ଟ(Decembrist)ମାନେ କିପରି ସଂତ୍ରାସବାଦୀ ଆଂଦୋଳନ କରି ଧରାପଡ଼ିଯିବାରୁ ପ୍ରାଣଦଂଡ ପାଇଥିଲେ, ତାହା ମଧ୍ୟ ସେ କହୁଥିଲେ । ଏସବୁ ବିପ୍ଳବୀତତ୍ତ୍ୱ ବିଷୟରେ ସେ ଅନେକ ବହି ଆଂଭମାନଂକୁ ପଢ଼ିବାକୁ ଦେଉଥିଲେ । ସତ୍ୟେନ୍‌ଦା ଏବେ ଆଉ ଇହଧାମରେ ନାହାଂତି ।

ମା’ ଲାବଣ୍ୟପ୍ରଭା – ମା’ ଲାବଣ୍ୟପ୍ରଭା ଦତ୍ତ ମଝିରେ ମଝିରେ କଲିକତାରୁ ପୁରୀ ଆସୁଥାଂତି । ସେ ସତ୍ୟେନ୍‌ଦାଂକ ଘରକୁ ପ୍ରାୟ ଆସୁଥିଲେ ଏବଂ ତାଂକୁ କିଛି କିଛି ଆର୍ଥିକ ସାହାଯ୍ୟ ପ୍ରଦାନ କରୁଥିଲେ । ତାହା ଅବଶ୍ୟ ଗୋପନରେ । ଏହାଛଡ଼ା ସେ କିଛି କିଛି ବହିପତ୍ର ଓ ପତ୍ରପତ୍ରିକା କଲିକତାରୁ ଆଣି ସତ୍ୟେନ୍‌ଦାଂକୁ ଦେଉଥିଲେ । ସେ ଥିଲେ ବଡ଼ ସ୍ନେହଶୀଳା । ସେ ଆଂଭମାନଂକୁ ବଡ଼ ଭଲ ପାଉଥିଲେ । ଆମେ ତାଂକୁ ମା’ ବୋଲି ଡାକୁଥିଲୁ । ଶ୍ରୀମତୀ ଲାବଣ୍ୟପ୍ରଭା ଦତ୍ତ ଥିଲେ ବଂଗ ପ୍ରାଦେଶିକ କଂଗ୍ରେସ କମିଟିର ସଭାନେତ୍ରୀ । ସେ ବିଧବା ଥିଲେ । ସେ ବିଧବାଂକ ପରି ବାଳ କାଟିଦେଇଥିଲେ । ସେ ପ୍ରୌଢ଼ତ୍ୱର ମଧ୍ୟଭାଗରେ ପହଁଚିଥିଲେ । ଉଜ୍ଜଳ ଗୌରବର୍ଣା, ତେଜସ୍ୱିନୀ ଧୀମୟୀ ନାରୀ ।

ତାଂକ କନ୍ୟା ଶୋଭା ଦତ୍ତ ଫେରାର୍ ସଂତ୍ରାସବାଦୀମାନଂକୁ ଗୋପନରେ ଆଶ୍ରୟ ଦେଇଥିବାରୁ ଦୀର୍ଘଦିନ କାରାଦଂଡ ଭୋଗିଥିଲେ । ତାଂକ ଉପରେ ଜେଲ୍‌ରେ ଅମାନୁଷିକ ଅତ୍ୟାଚାର କରାଯାଉଥିଲା । ତାଂକଠାରୁ କଥା ନେବାପାଇଁ ତାଂକୁ ବହୁ ନିର୍ଯାତନା ଦିଆଯାଇଥିଲା; ମାତ୍ର ସେ କୌଣସି କଥା ପୁଲିସ୍ ନିକଟରେ ପ୍ରକାଶ କରିନଥିଲେ । ସେ ଜେଲ୍‌ରେ ଅସହ୍ୟ ନିର୍ଯାତନା ଯୋଗୁ ପାଗଳ

ହୋଇଯାଇଥିଲେ । ସାତ-ଆଠବର୍ଷ ପରେ ଜେଲ୍‌ରୁ ଖଲାସ ହେବା ପରେ ସେ ବାହାରେ ଚିକିତ୍ସିତ ହୋଇ ସୁସ୍ଥ ହୁଅଂତି । ଶୋଭାଂକ କଥା ପଡ଼ିଲେ ମାଆଂକ ଆଖି ଛଳଛଳ ହୋଇଉଠେ । ଶୋଭାଂକ ସହିତ ମୋର ପରିଚୟ ପରେ ହୋଇଥିଲା । ସେ ଥିଲେ ଏକ ନୀ ନାରୀ ।

ରଘୁ ମହାଂତି – ରଣପୁରର ପ୍ରଜାମଂଡଳ ନେତା ରଘୁନାଥ ମହାଂତି ସତ୍ୟେନ୍ଦାଂକ ନିକଟକୁ ଆସୁଥିଲେ । ସେଠାରେ ତାଂକ ସହିତ ମୋର ଘନିଷ୍ଠ ପରିଚୟ ହୁଏ । ସେ ପ୍ରାୟ ପ୍ରତି ମାସରେ ଦୁଇ-ତିନି ଦିନ ପାଇଁ ପୁରୀ ଆସୁଥିଲେ ଏବଂ ମୋ ସହିତ ଦେଖାକରି ନାନା ବିଷୟରେ ଆଲୋଚନା କରୁଥିଲେ । ରଘୁ କିଛି କିଛି କବିତା ଓ ସଂଗୀତ ପୁରୁଣାକାଳିଆ ରୀତିରେ ଲେଖୁଥିଲେ । ତାହା ସେ ମୋତେ ପଢ଼ି ଶୁଣାଉଥିଲେ । ମୁଁ ଠାଏଁ ଠାଏଁ ଶୁଧାରି ଦେଉଥିଲି, ରଘୁ ଥରେ କଲିକତା ଯାଇ ମାଆଂକ ଘରେ ଦୁଇ-ତିନି ଦିନ ରହି ଆସିଥିଲେ । ସେ ମାଆଂକର ଓ ତାଂକ ଝିଅମାନଂକର ଭୂୟସୀ ପ୍ରଶଂସା କରୁଥିଲେ ।

୧୯୩୯ ମସିହାରେ ରଣପୁର ପ୍ରଜା ଆଂଦୋଳନରେ ରଘୁ ଓ ଦିବାକର ନେତୃତ୍ୱ ନିଅଂତି । ୧.୯.୩୯ ତାରିଖରେ ରଣପୁରଗଡ଼ରେ ବେଜେଲ୍‌ଗେଟ୍ ହତ୍ୟା ମାମଲାରେ ସେମାନଂକୁ ଗିରଫ୍ କରାଯାଏ । ରଣପୁର ଜେଲ୍ ଭିତରେ ସେମାନଂକର ବିଚାର ଚାଲେ । ଗୟାର ଜିଲ୍ଲା ଜଜ୍ ଜଷ୍ଟିସ୍ ଶିଅରରଂକୁ ସେମାନଂକ ବିଚାର କରିବାପାଇଁ ଅଣାଯାଇଥିଲା । ବିଚାରରେ ସେମାନଂକୁ ଫାଶୀଦଂଡ ମିଳେ । ସେମାନଂକୁ ଫାଶୀଦଂଡ ମିଳିବ ବୋଲି ଆଗରୁ ଜଳଜଳ ଦିଶୁଥିଲା । ହଜାରିବାଗ୍ ଜେଲ୍‌ରେ ୪.୪.୪୦ ତାରିଖରେ ସେମାନଂକର ଫାଶୀ ହୁଏ । ବିଚାରପତି ଶିଅରରଂକର ପଦୋନ୍ନତି ହୋଇ ତାଂକୁ ହାଇକୋର୍ଟ୍ ଜଜ୍ କରାଯାଏ ।

**ମୋର ରଣପୁରଯାତ୍ରା – ସେଠାରେ ଗିରଫ ଓ ବହିଷ୍କାର –**

୧୯୪୦ ମସିହାରେ ରଘୁ ଓ ଦିବାକରଂକର ରଣପୁର ଜେଲ୍ ଭିତରେ ବିଚାର ଚାଲିଥିଲାବେଳେ ମୁଁ ସେମାନଂକୁ ଦେଖିବାକୁ ଯାଇଥିଲି । ମୁଁ ଖୋରଧାର ମୁକ୍ତାର ରଘୁନାଥ ମିଶ୍ରଂକ ସଂଗେ ଟ୍ୟାକ୍ସିରେ ରଣପୁର ଯାଇଥିଲି । ଟ୍ୟାକ୍ସି ରଣପୁର ଜେଲ୍ ଫାଟକ ନିକଟରେ ପହଁଚିବା ପରେ ରଣପୁର ପୁଲିସ୍ ଟ୍ୟାକ୍ସିକୁ ହାତ ଦେଖାଇ ଅଟକାଏ । ମୁକ୍ତାର ମିଶ୍ର ରଘୁ ଓ ଦିବାକରଂକ ପକ୍ଷରୁ ଅନ୍ୟତମ ଓକିଲ ନିଯୁକ୍ତ ହୋଇଥାଂତି । ମୁଖ୍ୟ ଓକିଲ ଥାଆଂତି କଟକର ଆଡ୍‌ଭୋକେଟ୍ ଦୀନବଂଧୁ ସାହୁ । ପୁଲିସ୍ ମୁକ୍ତାର ମିଶ୍ରଂକୁ ଜେଲ୍ ଭିତରକୁ ଛାଡ଼ିଦେଲେ; ମୋତେ ଛାଡ଼ିଲେନି । କିଛି ସମୟ ପରେ ମୋତେ ଗିରଫକରି ଟ୍ୟାକ୍ସିରୁ ଓହ୍ଲାଇବାକୁ ନିର୍ଦ୍ଦେଶଦେଲେ । ମୁଁ ଟ୍ୟାକ୍ସିରୁ ଓହ୍ଲାଇବା ପରେ ମୋତେ ରଜାଘରର ଏକ ପୁରୁଣା ଷ୍ଟେସନ୍ ୱାଗନ୍‌ରେ ଚଢ଼ିବାକୁ ହୁକୁମ୍ ଦେଲେ । ମୁଁ ଷ୍ଟେସନ୍ ୱାଗନ୍‌ରେ ଉଠିଲି । ଆଗରେ ଜଣେ ପୁଲିସ୍ ଅଫିସର ଏବଂ କନେଷ୍ଟବଳ ଡ୍ରାଇଭର ପାଖରେ

ବସି ଟ୍ୟାକ୍ସି ଚଳାଇବାକୁ କହିଲେ। ମୋତେ କୁଆଡ଼େ ନେଉଛଂତି, ମୁଁ କିଛି ଜାଣିପାରିଲି ନାହିଁ। କିଛି ସମୟ ପରେ ରାସ୍ତାଘାଟ ଦେଖି ବୁଝିପାରିଲି ଷ୍ଟେସନ୍ ୱାଗନ୍ ଖୋରଧା ଆଡ଼କୁ ଯାଉଛି। ମୋତେ ସେମାନେ ଖୋରଧା ନେଇ ଖୋରଧାରୁ ଆମ ଗାଁ ଗୁରୁଜଂଗରେ ଠିକ୍ ଆମ ଘର ଦୁଆରମୁହଁରେ ଛାଡ଼ିଦେଲେ; ତା'ପରେ ଷ୍ଟେସନ୍ ୱାଗନ୍ ଫେରାଇ ରଣପୁର ଚାଲିଗଲେ। ମୁଁ ପରେ ଶୁଣିଲି, ମୋତେ ସେମାନେ ପ୍ରଥମେ ବାଘ-ଭାଲୁପୂର୍ଣ୍ଣ ଏକ ଜଂଗଲରେ ଛାଡ଼ିଦେବାକୁ ମସୁଧା କରିଥିଲେ; ମାତ୍ର ସେ ସାହସ କଲେନାହିଁ। ମୋତେ ଟ୍ୟାକ୍ସିରୁ ଉତାରି ଷ୍ଟେସନ୍ ୱାଗନ୍‌ରେ ବସାଇ ରଣପୁର ପୁଲିସ୍ ନେଲାବେଳେ ମୁକ୍ତାର ମିଶ୍ର ପଦେହେଲେ ପାଟି ଫିଟାଇ ନାହାଂତି କି ପଛକୁ ମୁହଁ ଫେରାଇ ଚାହିଁନାହାଂତି । ସେ ଟ୍ୟାକ୍ସିରୁ ଓହ୍ଲାଇ ସିଧା ଉଗଡଗ ହୋଇ ଜେଲ୍ ଫାଟକ ଭିତରେ ପଶିଯାଇ କୁଆଡ଼େ ଅଦୃଶ୍ୟ ହୋଇଗଲେ।

**ପୁରୀ ଜିଲ୍ଲା ସ୍କୁଲରେ ହଟହଟା –**

୧୯୩୩ ସାଲରେ ଗାଂଧିଜୀ ପୁରୀ ଆସଂତି। ଗାଂଧିଜୀଂକୁ ରେଳ ଷ୍ଟେସନ୍‌ରେ ଅଭ୍ୟର୍ଥନା ଜଣାଇବାକୁ କୌଣସି ଛାତ୍ର ଯେପରି ନ ଯାଂତି, ସେଥିପାଇଁ ସରକାରୀ ପ୍ରଶାସନ ଓ ସ୍କୁଲ୍ କର୍ତ୍ତୃପକ୍ଷଂକ ତରଫରୁ କଡ଼ା ନିର୍ଦ୍ଦେଶ ଦିଆଯାଇଥାଏ। ମାତ୍ର ମୁଁ ଏବଂ ଆଉ ଜଣେ ଦୁଇଜଣ ଛାତ୍ର ଷ୍ଟେସନ୍‌କୁ ଯାଇ ବିରାଟ ଜନତା ସହିତ ସାମିଲ୍ ହେଉଁ ଏବଂ ଗାଂଧିଜୀଂକୁ ସଂବର୍ଦ୍ଧନା ଜଣାଉ। ଫଳରେ ସି.ଆଇ.ଡି. ରିପୋର୍ଟ ଯୋଗୁଁ ମୋତେ ମ୍ୟାଟ୍ରିକୁଲେସନ୍ ପରୀକ୍ଷା ଦେବାକୁ ହେଡ୍‌ମାଷ୍ଟ୍ରେ ସେଂଟ୍‌ଅପ୍ କରିନଥିଲେ। ହେଡ୍‌ମାଷ୍ଟର୍ ଜଣେ ବଂଗାଳୀ ପ୍ରୌଢ଼ ବ୍ୟକ୍ତି ଥିଲେ। ପରେ ବହୁ କଷ୍ଟରେ ଶେଷ ବେଳକୁ ସେଂଟ୍‌ଅପ୍ କରାଯାଇଥିଲା। ମୁଁ ଏହିସବୁ ଝଂଜଟ୍ ଭିତରେ ମ୍ୟାଟ୍ରିକୁଲେସନ୍ ପରୀକ୍ଷା ଦିଏ; କିଂତୁ ଗଣିତରେ ଫେଲ୍ ହୋଇଯାଏ। ମାଟ୍ରିକୁଲେସନ୍ ପରୀକ୍ଷାରେ ଅକୃତକାର୍ଯ୍ୟ ହେବାରୁ ମୋତେ କଲିକତାରେ ପଢ଼ିବାପାଇଁ ମୋର ଅଭିଭାବକମାନେ ପୁରୀ କୁଂଡେଇବେଂଟ୍ ସାହିର ଶ୍ରୀ ଗୋପୀନାଥ ମିଶ୍ରଂକ ପରାମର୍ଶକ୍ରମେ ତାଂକ ସହିତ କଲିକତା ପଠାଇଦିଅଂତି। ଗୋପୀନାଥ ମିଶ୍ର ହେଉଛଂତି ପୂର୍ବତନ କେଂଦ୍ର ରାଷ୍ଟ୍ରମଂତ୍ରୀ ଓ ଆଡ୍‌ଭୋକେଟ୍ ବିବୁଧେଂଦୁ ମିଶ୍ରଂକ ପିତା।

ମୋ ମୁରବିମାନେ ଭାବିଥିଲେ, ମୁଁ ଓଡ଼ିଶାରେ ରାଜନୀତିରେ ପଶି ପଢ଼ାଶୁଣାରେ ମନ ଦେଉନାହିଁ; କଲିକତାରେ ନୂଆ ପରିବେଶରେ ପାଠପଢ଼ାପ୍ରତି ଧ୍ୟାନ ଦେବି। ମାତ୍ର ଫଳ ହେଲା ଓଲଟା। କଲିକତାରେ ସି. ଟି. କଲେଜରେ ଆଇ.ଏ. ପଢ଼ୁଥିବାବେଳେ ଠିକ୍ ପରୀକ୍ଷାର ଦୁଇ ମାସ ପୂର୍ବରୁ ଏକ କମ୍ୟୁନିଷ୍ଟ ଷଡ଼ଯଂତ୍ର ମାମଲାରେ ମୁଁ ଜେଲ୍‌ରେ ପ୍ରାୟ ଦୁଇ ମାସ ରହିଲି। ସେ କଥା ପରେ କହିବି।

# ତ୍ରୟୋଦଶ ଉଲ୍ଲାସ

## କଲିକତାରେ ଛାତ୍ରଜୀବନ

**ବ୍ରାହ୍ମ-ବୟେଜ୍ ସ୍କୁଲ୍‌ରୁ ମ୍ୟାଟ୍ରିକ୍ ପାସ୍ –**

୧୯୩୪ ମସିହା ଜୁଲାଇ ମାସରେ ମୁଁ ଗୋପୀନାଥ ମିଶ୍ରଂକ ସହିତ କଲିକତାରେ ପହଁଚିଲି। ଆମ ସାଂଗରେ ପୁରୀର କିଶୋରୀ ଚରଣ ଦାସ ନାମକ ଜଣେ ଛାତ୍ର ମଧ୍ୟ ଯାଇଥିଲେ। ଆମେ ବାଲିଗଂଜରେ ଜଣେ ବାରିଷ୍ଟରଂକ ଘରେ ଅତିଥିହେଲୁ। ତା' ପରଦିନ ସକାଳେ ଆମେ କଲିକତା ଝାମାପୁକୁର ଲେନ୍‌ରେ ଥିବା ବ୍ରାହ୍ମ ବୟେଜ୍ ସ୍କୁଲରେ ଯାଇ ପହଞ୍ଚିଲୁ। ସେଠି ହେଡ୍‌ମାଷ୍ଟର ଥାଆଂତି ବିପିନ୍ ଚକ୍ରବର୍ତୀ। ଗୋପୀନାଥବାବୁ ଆମ ଦୁହିଁକି ସେ ସ୍କୁଲରେ ମାଟ୍ରିକୁଲେସନ୍ ଶେଷ ଶ୍ରେଣୀରେ ଭର୍ତି କରିଦିଅଂତି। ସେହି ସ୍କୁଲର ଦି' ତାଲାରେ ହଷ୍ଟେଲ୍ ଥାଏ। ଆମେ ହଷ୍ଟେଲ୍‌ରେ ରହିଲୁ। ରୋଜ୍ ଭୋରରୁ ଉଠି ହଷ୍ଟେଲ୍‌ର ଅଂତେବାସୀମାନେ ପ୍ରାର୍ଥନା କରଂତି; ଆମେ ମଧ୍ୟ ପ୍ରାର୍ଥନା କରୁଥିଲୁଁ। ହେଡ୍‌ମାଷ୍ଟର ଚକ୍ରବର୍ତୀ ସେହି ହଷ୍ଟେଲ୍‌ରେ ଏକଣ ରୁମ୍‌ରେ ରହୁଥାଂତି। ସେ ନିଜେ ବଡ଼ପାଟିରେ ପ୍ରାର୍ଥନା ବୋଲଂତି; ଆମେ ତାଂକ ସହିତ ଯୋଗ ଦେଉ। ''ତମସୋ ମାଂ ଜ୍ୟୋତିର୍ଗମୟ'' ଏବଂ ଅନ୍ୟ କେତୋଟି ବୈଦିକ ଶ୍ଳୋକ ବୋଲାଯାଏ।

ହଷ୍ଟେଲ୍‌ରେ ଖିଆପିଆ ଭଲ ଥିଲା। ଦୁଇଟା ମାଛ ତରକାରି 'ଝାଳ' 'ଝୋଲ୍' ଥାଏ। ସପ୍ତାହକେ ଦୁଇଦିନ ମାଂସ ତରକାରି ହୁଏ। ପୂଝାରୀ ରଘୁ ଓଡ଼ିଆ ବ୍ରାହ୍ମଣ ଥିଲା। ସେ ଆମ ଭିତରେ ସବୁଠୁଁ ମୋଟା; ସମରେଣ୍ଟକୁ ଦୁଇ-ତିନି ଖଂଡ ମାଛ ଅଧିକା ଦିଏ। ତା'ର କାରଣ, ବୋଧହୁଏ ସେ ଥିଲା ଆମ ସମସ୍ତଂକଠୁ ମୋଟା; ସେଥିପାଇଁ ପୂଝାରୀର ପକ୍ଷପାତ।

ଆମ ସଂଗରେ ଥିଲା 'ଛକୁ'; ଭଲ ନାମ ଯୁଦ୍ଧାଜିତ୍ ଚକ୍ରବର୍ତୀ। ପରେ ତା' ଝିଅ ମୌସୁମୀ ଚାଟାର୍ଜୀ ସ୍ୱନାମଧନ୍ୟା ଫିଲ୍ମ ତାରକା। ମୁଁ କଲିକତାରେ ଚାକିରି କରୁଥିବା ସମୟରେ ଏବଂ ତା'ପରେ ମଧ୍ୟ 'ଛକୁ' ଘରକୁ ଯାଇଛି, ମୌସୁମୀ ସଂଗେ ମଧ୍ୟ ଆଳାପ ହୋଇଛି। ଯୁଦ୍ଧାଜିତ୍ ନାମଟା ଦେଇଥିଲେ ସ୍ୱୟଂ ରବୀଂଦ୍ରନାଥ। 'ଛକୁ'ର ପିତା ଶାଂତିନିକେତନରେ ଶିକ୍ଷକ ଚାକିରି କରୁଥିଲେ। ବାଲେଶ୍ୱରରୁ 'ରେମୁଣା'ର ଅମିୟ ଚକ୍ରବର୍ତୀ ମଧ୍ୟ ଆମ ସଂଗେ ପଢୁଥିଲା ଏବଂ ହଷ୍ଟେଲ୍‌ରେ ରହୁଥିଲା। ମୁଁ, ଛକୁ ଓ ଅମିୟ ବେଶ୍ ଘନିଷ୍ଠ ହୋଇପଡ଼ିଥିଲୁ।

ଛକୁ ଟିକିଏ ପଇସାବାଲା। ତା' ମା' ତାକୁ ପ୍ରତିମାସରେ ବେଶୀ କିଛି ଟଂକା

ପଠାଂତି; ତେଣୁ ସେ ବେଶୀ ସିନେମା ଯାଏ । ମେଟ୍ରୋ ସିନେମା ସେହି ବର୍ଷ ଖୋଲାଯାଇଥାଏ । ସେଠାରେ ଟିକେଟ୍ ଦାମ୍ ଅଧିକା । ଆମେ ଖୁବ୍ କମ୍ ମେଟ୍ରୋ ଯାଉଁ; ଛକୁ କିଂତୁ ପ୍ରତି ସପ୍ତାହରେ ଖୁବ୍ କମ୍‌ରେ ଥରେ ମେଟ୍ରୋ ଯାଏ । ସେଠାରେ ଇଂରାଜୀ ଫିଲ୍ମ ଦେଖାଯାଏ । ମୋର ପ୍ରିୟ ଚିତ୍ରତାରକା ଥାଆଂତି ଗ୍ରେଟା ଗାର୍ବୋ ଓ ମାର୍ଲିନ୍ ଡିଟ୍ରିଚ୍ ଏବଂ କେତେକାଂଶରେ ଚାର୍ଲିଚାପ୍ଲିନ୍, ଯିଏ ନିର୍ବାକ୍ ଯୁଗରୁ ଆସି ସବାକ୍ ଯୁଗରେ ବି ବେଶ୍ ପ୍ରତିଷ୍ଠା ଅର୍ଜନ କରିଥାଂତି । ବଂଗଳାରେ ସେତେବେଳେ ନ୍ୟୁ ଥିଏଟର୍ସ ଖୁବ୍ ଜନପ୍ରିୟ ଚିତ୍ର ପ୍ରସ୍ତୁତ କରୁଥାଏ । ଦେବ୍‌ଦାସ୍, ଗୃହଦାହ, ଚଂଡୀଦାସ ପ୍ରଭୃତି ବହି ଖୁବ୍ ଚାଲିଥାଏ । ପ୍ରମଥେଶ୍ ବରୁଆ, ସାଇଗଲ୍, ପାହାଡ଼ୀ ସାନିୟାଲ୍, ଉମା ଶଶୀ, କାନନ୍‌ବାଲା ସବୁଠୁଁ ବେଶୀ ଚର୍ଚ୍ଚିତ ନାମ ।

ସ୍କୁଲରେ ଡିବେଟିଂରେ କେବେ ମୁଁ କିଂବା କେବେ ଅମର ପାଲ୍ ପ୍ରଥମ ହୋଇଥାଉଁ । ଡିବେଟିଂ ଇଂରେଜୀରେହିଁ ହେଉଥାଏ । ଅମର ଥିଲା ମୋର ସହପାଠୀ; ମାତ୍ର ଦିବାଧାୟୀ । ସେ ହଷ୍ଟେଲ୍‌ରେ ରହୁନଥିଲା । ଅମର ଥିଲା ପ୍ରଖ୍ୟାତ ବାଗ୍ମୀ-ନେତା ବିପିନ୍ ପାଲଂକ ନାତି । ଭାରତରେ ଲାଲ୍-ବାଲ୍-ପାଲଂକ କଥା କିଏ ନଜାଣେ ? ପଂଜାବି-କେଶରୀ ଲାଲା ଲଜପତ୍ ରାଏ, ମହାରାଷ୍ଟ୍ରର ବାଳଗଂଗାଧର ତିଳକ ଏବଂ ବଂଗଦେଶର ବିପିନ୍ ପାଲ୍ ଥିଲେ ସେ ସମୟର ଭାରତର ଅଗ୍ରଗାମୀ ନେତା ।

ଚାରି-ଛ'ମାସ ପରେ ମାଟ୍ରିକୁଲେସନ୍ ପରୀକ୍ଷା ହୁଏ । ମୁଁ ଚାରିଟା ବିଷୟରେ 'V' ରଖି ପ୍ରଥମ ଡିଭିଜନ୍‌ରେ କଲିକତା ବିଶ୍ୱବିଦ୍ୟାଳୟରୁ ମାଟ୍ରିକୁଲେସନ୍ ପାସ୍ କରେ । ୮୦% ନଂବର ଥିଲେ 'V' ମିଳେ ।

ଝାମାପୁକୁର୍ ଲେନ୍‌ରୁ କର୍ଣ୍ଣୱାଲିସ୍ ଷ୍ଟ୍ରିଟ୍ ଯିବା ରାସ୍ତାମୋଡ଼ରେ ଗୋଟିଏ ଓଡ଼ିଆ ପାନଦୋକାନ ଥାଏ । ଆମେ ଅନେକ ସମୟରେ ସେଠାକୁ ଯାଇ ପାନ ଖାଉ । ବ୍ରାହ୍ମ ବୟେଜ୍ ସ୍କୁଲର ଇଂରାଜୀ ଶିକ୍ଷକ ମୋତେ ଖୁବ୍ ଉତ୍ସାହ ଦେଉଥିଲେ; କାରଣ ମୁଁ ଇଂରାଜୀରେ ଖୁବ୍ ଟାଣ ଥିଲି ।

ସେକ୍ସପିଅରଂକ କେତେକ ନାଟକ ଯଥା– 'ହେମ୍‌ଲେଟ୍', 'ମ୍ୟାକ୍‌ବେଥ୍', 'ଅଥେଲୋ' ଓ 'ଟେଂପେଷ୍ଟ' ଡିକେନ୍ସଂକ 'ଡାଭିଡ୍ କପର୍ ଫିଲ୍‌ଡ୍ ଥୋମାସ୍ ହାର୍ଡ଼ିଂକ ଉପନ୍ୟାସ 'ଫାର୍ ଫ୍ରମ୍ ଦି ମ୍ୟାଡିଂ କ୍ରାଉଡ୍', ଭିକ୍ଟର ହ୍ୟୁଗୋଂକ 'ଲାମିଜ୍‌ରେବଲ୍' ଏବଂ 'ହଂଚ୍ ବ୍ୟାକ୍ ଅଫ୍ ନୋଟର୍ ଡ୍ୟାମ୍', ଟଲ୍‌ଷ୍ଟୟଂକ 'ୱାର୍ ଏଂଡ ପିସ୍' ଓ 'ଆନାକାରନିନା' ଏବଂ 'ରେସ୍‌ରେକ୍ସନ୍' ବିଶେଷ ଆଗ୍ରହର ସହିତ ପଢ଼ିଥିଲି । ଏହାଛଡ଼ା ଜୋଲା, ଟୁର୍‌ଗେନିଭ୍, ମୋପାସାଁ ଏବଂ କବିଂକ ମଧ୍ୟରେ ୱାର୍ଡସ୍ ୱାର୍ଥ, ଟେନିସନ୍, ମଟ୍, ଶେଲୀ, ବାଇରନ୍ ଆଦି ପାଠକରିଥିଲି । ବଂଗୀୟ କବିମାନଂକ ମଧ୍ୟରେ ରବୀଂଦ୍ରନାଥଂକ 'ଗୀତାଂଜଳି', 'ବଳାକା', 'ସୋନାର ତରୀ' ପ୍ରଭୃତି କବିତାବଳୀ ଏବଂ 'ଗୋରା', 'ନୌକାଡୁବି', 'ଚୋଖେର ବାଲୀ' ପ୍ରଭୃତି ଉପନ୍ୟାସ ଏବଂ ବହୁ ଗଳ୍ପ ମଧ୍ୟ ପଢ଼ିଥିଲି । ଶରତ୍ ଚାଟାର୍ଜୀଂକର ବହୁ ଉପନ୍ୟାସ ମଧ୍ୟ

ପାଠକରିଥିଲି । ବ୍ରାହ୍ମ ବଏଜ୍ ସ୍କୁଲ ଲାଇବ୍ରେରୀରେ ଥିବା ବହୁ ବହି ଏବଂ ରାଜା ରାମମୋହନ ରାଏ ଲାଇବ୍ରେରୀରେ ବହୁ ପୁସ୍ତକ ପଢ଼ିବାର ସୁଯୋଗ ପାଇଥିଲି ।

**ସମାଲୋଚନାର ଝଡ଼ –**

ଏହି ସମୟରେ ମୁଁ 'ଉତ୍କଳ ସାହିତ୍ୟ' ପତ୍ରିକାରେ ବହୁ ଗଦ୍ୟ-କବିତା ଯଥା ସହରତଳିର ଉଷା, ବାର୍ତ୍ତା, ମହୁମାଛି ପ୍ରଭୃତି ନିୟମିତ ଲେଖୁଥିଲି । 'ଉତ୍କଳ ସାହିତ୍ୟ' ପତ୍ରିକାର ସଂପାଦକ ଥିଲେ ମହାନଂଦ କର; ମୋ କବିତାକୁ ବରାବର ଅଗ୍ରସ୍ଥାନ ଦେଇ ସାଗ୍ରହରେ ପ୍ରକାଶ କରୁଥିଲେ । ତାଂକ ସହିତ ଭାଷାକୋଷକାର ଗୋପାଳଚଂଦ୍ର ପ୍ରହରାଜ ଏହି ଉତ୍କଳ ସାହିତ୍ୟ ପତ୍ରିକାର ସଂପାଦନା ଦାୟିତ୍ୱ ବହୁଳାଂଶରେ ଗ୍ରହଣକରିଥିଲେ । ମାତ୍ର ଏହି ପତ୍ରିକାର ଏକ ସଂଖ୍ୟାରେ ସଂପାଦକୀୟ ପୃଷ୍ଠାରେ ମୋତେ ଓ ମୋ କବିତାକୁ ଆକ୍ଷେପ କରି ଏକ ଟିପ୍ପଣୀ ୧୯୩୪ ମସିହାରେ ପ୍ରକାଶପାଇଥିଲା । ତାହା ତଳେ ଦିଆଗଲା –

''ଏତଦ୍‌ଜାତୀୟ ବିକୃତ ଗଦ୍ୟ-କବିତାକୁ ବରଂ ସ୍ୱଚ୍ଛଂଦ ବୋଲି କହିବା ସମୀଚୀନ; କିଂତୁ ସେଥିରେ 'କବିତା' ଶବ୍ଦଟିକୁ ସଂଯୋଗ କରିବା ସମୀଚୀନ ନୁହେଁ । ଗଦ୍ୟ-କବିତାରେ ଲେଖକଂକର ବିରାଟ ସ୍ୱଚ୍ଛଂଦତା ଓ ବିଶୃଙ୍ଖଳତା ଛଡ଼ା ଆଉ କିଛି ଲିଖନ-ରୀତି ଅଛି କି ନାହିଁ, ଆଂଭକୁ ସଂପୂର୍ଣ୍ଣ ଅଜ୍ଞାତ ଥିଲେ ମଧ ତାହା ଆଂଭମାନଂକୁ କେହି ବୁଝାଇଦେବେ କି? ଯହିଁରେ ପ୍ରାଣ ନାହିଁ, ତନ୍ମୟତା ନାହିଁ, ତରଳ ଓ ସ୍ୱଚ୍ଛଂଦମୟୀ ଭାଷା ନାହିଁ, ତାହା କିପରି କବିତା ଆଖ୍ୟା ପାଇବ?'' ('ଉତ୍କଳ ସାହିତ୍ୟ' ୪୧ ଭାଗ, ଷଷ୍ଠ ସଂଖ୍ୟା, ସେପ୍ଟେଂବର ୧୯୩୪, ଆଶ୍ୱିନ ୧୩୪୩ ଶକାବ୍ଦ) ।

ଏଥିରୁ ମେଳ ଓ ଯତିହୀନ ଆଧୁନିକ ଓଡ଼ିଆ କବିତା ବିରୋଧରେ ପ୍ରଥମେ ପ୍ରଥମେ କିଭଳି ପ୍ରତିକ୍ରିୟା ଦେଖାଦେଇଥିଲା, ତହିଁର କିଛିଟା ସୂଚନା ମିଳିପାରିବ ।

ଏହାର ଏକବର୍ଷ ପୂର୍ବରୁ ନିଖିଳ ଉତ୍କଳ କବି-ସମ୍ମିଳନୀରେ ଅଭ୍ୟର୍ଥନା ସମିତିର ସଭାପତି ପୂର୍ଣ୍ଣଚଂଦ୍ର ଜଗଦ୍ଦେବଂକ ଅଭିଭାଷଣରେ ମଧ ମତ୍ ପ୍ରବର୍ତ୍ତିତ ଗଦ୍ୟ-କବିତା, ଯାହା ବାକ୍‌ରୀତି ଓ କଥିତ ଭାଷା ଉପରେ ଆଧାରିତ ଥିଲା ଏବଂ ରାଗରାଗିଣୀବର୍ଜିତ ଥିଲା, କବିତା ପ୍ରତି କେତେକ କଟାକ୍ଷ ଓ କଟୁ ମଂତବ୍ୟ ଦେଖାଯାଏ । ତାହା ତଳେ ଉଦ୍ଧାରକଲି ।

''ମାତ୍ର ଆଧୁନିକ କେହି କେହି କବି ପୁରାତନ ଓ ନୂତନ ପ୍ରଦର୍ଶିତ ପଂଥା ପରିତ୍ୟାଗପୂର୍ବକ ଛଂଦ, ରାଗିଣୀ, ଭାଷା, ଭାବ ପ୍ରଭୃତିରେ ଏକ ବିଚିତ୍ର ମାର୍ଗ ଆବିଷ୍କାର କରିଛଂତି । କବିତା, ଗଳ୍ପ, ଉପନ୍ୟାସ ପ୍ରଭୃତି ନିତାଂତ ସରଳ ଭାଷାରେ ଲେଖି ସାହିତ୍ୟର ସୌଷ୍ଠବ ନଷ୍ଟକରି ବର୍ଷାଜଳରେ ନଦୀଜଳ ଆବିଳ ହେଲାପରି ଅନାବିଳ ସାହିତ୍ୟଧାରାକୁ ଆବିଳତାପୂର୍ଣ୍ଣ କରି ଦେଇଅଛଂତି । ବର୍ତ୍ତମାନ ରଚକମାନଂକର ରଚନା ପଦ୍ଧତି ଦେଖି ମନେହୁଏ କବିମାନେ ଏହି ଭାବରେ

ଲେଖିଲେ ଅଦୂରଭବିଷ୍ୟତରେ ଦେଶରୁ ଶବ୍ଦଶାସ୍ତ୍ର କଳାସଂପଦମାନ ବିଲୁପ୍ତ ହେବ।'' (ଶ୍ରୀ ଜଗଦ୍ଦେବଂକ ଭାଷଣ – 'ସହକାର', ୧୩-୧୮ ସଂଖ୍ୟା, ଫାଲ୍‌ଗୁନ ୧୩୪୦, ଫେବୃୟାରୀ ୧୯୩୩)

'ନବଭାରତ' ପତ୍ରିକାରେ ମୋର ଏକ ଗଦ୍ୟ-କବିତା 'ବନ୍ୟା' ପ୍ରକାଶ ପାଇଥିଲା। ତାହା ବୋଧହୁଏ ୧୯୩୫ କି ୧୯୩୬ ସାଲ ହେବ। ତା'ର ସମାଲୋଚନା କରି ଶ୍ରୀ ଗୋପୀନାଥ ମହାଂତି 'ନବଭାରତ'ର ପରସଂଖ୍ୟାରେ 'ଗଦ୍ୟ-ପଂକ୍ତିତା' ନାମ ଦେଇ ଏକ ସାଟାୟାର୍ ବା ବ୍ୟଂଗ କବିତା ପ୍ରକାଶ କରିଥିଲେ। ତା'ର ପ୍ରଥମ ପଙ୍‌କ୍ତିଟି ଏହିପରି ଥିଲା –

''ସଂପାଦକ ମହାଶୟ,
ଦେଖିବେ ମୋର ଏ ଚିଠିଟି
ଗଦ୍ୟକବିତା ହୋଇଗଲା କି ନାହିଁ ...'' ଇତ୍ୟାଦି

(ମୋର ଏ 'ବନ୍ୟା' କବିତାଟି ମିଳୁନାହିଁ, ତେଣୁ କୌଣସି କବିତା-ସଂକଳନରେ ସ୍ଥାନିତ ହୋଇପାରିନାହିଁ। କୌଣସି ପାଠକଂକ ପାଖରେ ଥିଲେ, ସେ ତାହା ପଠାଇଲେ ଖୁସି ହେବି।)

ବ୍ରାହ୍ମ ବଏଜ୍ ସ୍କୁଲ ଓ ବୋର୍ଡ଼ିଂକୁ ଲାଗି ଏକ ବଂଗାଳୀ ଭଦ୍ରଲୋକଂକର ଦି'ତାଲା କୋଠା। ତାଂକ ପୁଅ ଫିଡିଂଗ୍ ଆମ ସ୍କୁଲରେ ମୋ ତଳ କ୍ଲାସ୍‌ରେ ପଢୁଥାଏ। ତାଂକ ଘରେ ତା'ର ବାପ, ମା', ଭାଇ, ଭଉଣୀ ଓ ଜଣେ ବିଧବା ପିଉସୀ ଥାଆଂତି। ଆମେ ବୋର୍ଡ଼ିଂର ବାରଂଡାରେ ଛିଡ଼ାହେଲେ ତାଂକ ଘର ତଳ ପର୍ଯ୍ୟଂତ ଦେଖାଯାଏ। ତାଂକ ଘରଲୋକେ ମଧ୍ୟ ଆମକୁ ଦେଖିପାରଂତି। ବିଧବା ପିଉସୀ ବେଶ୍ ମୋଟୀ ଓ ଗୋରୀ, ବୟସ ବୋଧେ ୩୫-୩୬ ହେବ। ଆମେ ଆମ ବୋର୍ଡିଂ ବାରଂଡାରେ ଛିଡ଼ାହୋଇ କଥାବାର୍ତ୍ତା କଲାବେଳେ ତଳ ଅଗଣାରେ ତାଂକର ଚଳାବୁଲା କାମଦାମ ସବୁ ଦେଖିପାରୁ। କେବେ କେବେ ଆମ ଭିତରେ ହସାହସି ହେଲେ, ଆମେ ତାଂକୁ ଦେଖି ହସୁଛୁ ବୋଲି ଭାବିନେଇ ସେ ଆମକୁ ଗାଳିଗୁଲଜ କରଂତି। ଆମକୁ ମଜାଲାଗେ। ସେ ପାଟିକରି ଆମ ଆଡ଼କୁ ଚାହିଁ ଭର୍ତ୍ସନା କରଂତି – ''ବାପେ ଖେଦାନୋ ମାୟେତାଡ଼ାନୋ, ଲକ୍ଷ୍ମୀଛାଡ଼ା ଛେଲେ ଗୁଲୋର ଜ୍ଵାଲାଏ ଆର୍ ଥାକାଯାଏନା।''

**ଫରାସୀ ଉପନିବେଶ –**

କଲିକତାଠୁ କିଛି ଦୂରରେ ଚଂଦନନଗର। ତାହା ସେତେବେଳେ ଫରାସୀ ଉପନିବେଶ ଥିଲା। ଚଂଦନନଗରର ଗୋପି ନାମକ ଗୋଟିଏ ପିଲା ବ୍ରାହ୍ମ ବଏଜ୍ ସ୍କୁଲରେ ପଢୁଥାଏ, ଆମ ତଳ କ୍ଲାସରେ। ସେ ସ୍କୁଲ୍ ବୋର୍ଡିଂରେ ଆମ ସଂଗେ ରହୁଥାଏ। ଦିନେ ସେ ଆମ ଭିତରୁ କେତେ ଜଣ ଛାତ୍ରଂକୁ ଚଂଦନନଗରରେ ତା' ଘରକୁ ନିମଂତ୍ରଣ କଲା। ଆମେ ସମସ୍ତେ ଟ୍ରେନ୍‌ରେ

ଯାଇ ସେଠାରେ ପହଂଚିଲୁ। ଟ୍ରେନ୍ ଗଂଗା ନଦୀ କୂଳେ କୂଳେ ଯାଉଥାଏ। ଭଗ ଗଂଗା। ଚଂଦନନଗରରେ ଫରାସୀ ପରିବେଶ ଆମକୁ ଭଲଲାଗିଲା। ସେଠାରେ ଫରାସୀ ଶାସନକର୍ତ୍ତାମାନଂକର ଷ୍ଟାଚ୍ୟୁ ଦେଖିଲୁ। ଡ୍ୟୁପ୍ଲେ ତା ଭିତରେ ଅନ୍ୟତମ। ଚନ୍ଦନନଗରରେ ପହଂଚି ଗୋପି ଘରେ କିଛି ଜଳଖିଆପତ୍ର କଲୁ। କିଛି ସମୟ ପରେ ଗୋପି କହିଲା ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଆମ ସମସ୍ତିକୁ ନିମଂତ୍ରଣ କରିଛଂତି ଚା'ଖାଇବାକୁ। ଆମେ ସମସ୍ତେ ଯାଇ ଶାସ୍ତ୍ରୀମହାଶୟଂକ ଘରେ ପହଂଚିଲୁ। ସେ ଆମକୁ ଚା' ଜଳଖିଆରେ ଆପ୍ୟାୟିତ କଲେ। ମହାମହୋ-ପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଭାରତର ଜଣେ ପ୍ରଖ୍ୟାତ ଗବେଷକ ଓ ପ୍ରତ୍ନତତ୍ତ୍ୱବିତ୍। 'ବୌଦ୍ଧଚର୍ଯ୍ୟାପଦ ଓ ଦୋହାଁ' ତାଂକରି ଆବିଷ୍କାର। ଏ ବହିଟି ସେ ତିବ୍ବତୀୟ ଗ୍ରଂଥାମାଳା ମଧ୍ୟରୁ ପାଇଥିଲେ। ବୌଦ୍ଧ ଚର୍ଯ୍ୟାଗୀତିଗୁଡ଼ିକ ଓଡ଼ିଆ, ବଂଗଳା ଓ ଅସମିଆ ଭାଷାର ମୂଳ ରୂପ ବହନକରେ।

**ଓଡ଼ିଆଂକ ପ୍ରତି ବଂଗାଳୀଂକର ହେୟ ମନୋଭାବ –**

କଲିକତାରେ କେତେକ ବଂଗାଳୀ ଓଡ଼ିଆମାନଂକୁ ହୀନ ମନେକରଂତି। ଆମ ସ୍କୁଲରେ ମଧ୍ୟ କେତେକ ବଂଗାଳୀ ଛାତ୍ର ଆମକୁ 'ଉଡ଼େ ଉଡ଼େ' ବୋଲି କହଂତି। ମାରୁଆଡ଼ିମାନଂକୁ ମଧ୍ୟ ସେମାନେ ସେହିପରି ହେୟ ଜ୍ଞାନ କରି 'ମେଢ଼ୋ' କହଂତି। ଆମେ ମଧ୍ୟ ସେମାନେ 'ଉଡ଼େ' କହିଲେ ତାଂକୁ 'ବଂଗାଲୀ ଟଂଗ୍‌ଟଂଗାଲୀ' ବୋଲି କହୁଁ। ସେମାନେ ଜବତ ହୋଇଯାଆଂତି। ନିଜ ଭିତରେ କୁହାକୁହି ହୁଅଂତି 'ଉଡ଼େରା କ୍ଷେପେଛେ'; କିଂତୁ ଯେଉଁମାନେ ବିଦ୍ୱାନ ଏବଂ ସଂସ୍କୃତିବାନ୍, ସେମାନେ ଓଡ଼ିଶା ଓ ଓଡ଼ିଆମାନଂକୁ ଯଥେଷ୍ଟ ମର୍ଯ୍ୟାଦା ଦେଇଥାଂତି। ସେମାନେ କହଂତି, ଓଡ଼ିଶା କଳା-ସଂସ୍କୃତିର ଦେଶ।

ଯେଉଁମାନେ ଓଡ଼ିଶା ଓ ଓଡ଼ିଆଂକୁ ହେୟଜ୍ଞାନ କରଂତି, ଆମେ ସେମାନଂକୁ ଯୁକ୍ତି-ତର୍କଛଳରେ କହୁଁ–, "କଳା ଓ ସଂସ୍କୃତି କ୍ଷେତ୍ରରେ ଓଡ଼ିଶା ତମ ବଂଗ ଦେଶଠାରୁ ଢେର୍ ଉନ୍ନତ। ତମ ବଂଗରେ ପୁରୀ, କୋଣାର୍କ ଓ ଭୁବନେଶ୍ୱର ପରି ମଂଦିର ନାହିଁ। ଓଡ଼ିଶାର ସାହିତ୍ୟ ଅତି ଉଚ୍ଚକୋଟିର ଓ ଋଦ୍ଧିମଂତ। ଭଂଜ, ସାମଂତସିଂହାର, ଦୀନକୃଷ୍ଣ ଯେପରି ଅଳଂକାରପୂର୍ଣ୍ଣ କାବ୍ୟମାନ ଲେଖି-ଯାଇଛଂତି, ତାହାର ତୁଳନା ତମ ବଂଗ-ସାହିତ୍ୟରେ ନାହିଁ। ତମ ଭରତଚଂଦ୍ର ଯେଉଁ ଗୀତି-କବିତା ଲେଖିଛଂତି, ତାହା ଓଡ଼ିଆ କବିଂକ ରଚନାର ପାସଂଗରେ ପଡ଼ିବନି। ତେଣୁ ତମେ କେଉଁ ଗୁଣରେ ବଡ଼ ବୋଲି ନିଜକୁ ଭାବ?" ଏହାର ଜବାବ ସେମାନେ ଦେଇପାରଂତିନାହିଁ। କେବଳ ଭୂରୁଡୁ ମାରଂତି, କହଂତି– "ଆମାଦେର ରବୀଂଦ୍ରନାଥ।"

ଓଡ଼ିଆଂକ ପ୍ରତି ବଂଗାଳୀଂକ ହେୟ ମନୋଭାବ ରବୀଂଦ୍ରନାଥଂକର କବିତାରେ ମଧ୍ୟ ବାଦ୍‌ପଡ଼ିନାହିଁ। ସେ ଗୋଟିଏ କବିତାରେ ଲେଖିଛଂତି–

"ଏମନ୍ ସମୟେ କୋଥା ହତେ ଏଲୋ ମାଲୀ
ଝୁଟିପଡ଼ା ଉଡ଼େ ସପ୍ତମ ସ୍ୱରେ
ପାଡ଼ାତେ ଲାଗ୍‌ଲୋ ଗାଲି ।"

କଲିକତାରେ କେହି କେହି ଓଡ଼ିଆ ଚୁଟି ରଖିଥିବାରୁ ରବୀଂଦ୍ରନାଥ ଏପରି ତାଚ୍ଛଲ୍ୟ କରି ଲେଖିଛଂତି, କିଂତୁ କେତେ ପୁରୁଷ ତଳେ ସବୁ ବଂଗାଳୀ ଚୁଟିରଖୁଥିଲେ । ରବୀଂଦ୍ରନାଥ ନିଜେ ମଧ ଶେଷବୟସରେ ଲଂବା ବାଳ ଛାଡ଼ିଦେଇଥିଲେ । ଅରବିଂଦ ମଧ ଲଂବା ବାଳ ରଖିଥିଲେ । ଏବେ ମଧ ଆଂଧ୍ର, କେରଳ ଓ ମାଂଦ୍ରାଜ ପ୍ରଭୃତି ରାଜ୍ୟରେ ବହୁ ଶିକ୍ଷିତ ଲୋକ ଚୁଟି ରଖିଥିବାର ଦେଖାଯାଏ । ଶିଖ୍‌ମାନେ ସମସ୍ତେ ଚୁଟି ରଖିଥାଂତି । ସେମାନଂକୁ ସେହି ରବୀଂଦ୍ରନାଥ ପୁଣି ଟେକାଟେକି କରି ଲେଖିଛଂତି – "ପଂଚନଦେର ତୀରେ
ବେଣୀ ଦୁଲାୟା ଶିରେ
ଜାଗିଆ ଉଠିଲ ଶିଖ ନିର୍ମମ ନିର୍ଭୀକ ।"

ସେ ଯାହାହେଉ, ରବୀଂଦ୍ରନାଥ ତାଂକ 'ଜନଗଣ-ମନ-ଅଧିନାୟକ' ସଂଗୀ-ତରେ 'ଦ୍ରାବିଡ଼-ଉତ୍କଳ-ବଂଗ' ଲେଖି ଓଡ଼ିଆଂକୁ ମର୍ଯାଦାରସ୍ଥାନ ଦେଇଯାଇଛଂତି ।

ଖାଲି କଲିକତାରେ ନୁହେଁ, ଓଡ଼ିଶାରେ ମଧ ସେତେବେଳେ ଅଧିକାଂଶ ବଂଗାଳୀ କର୍ମଚାରୀ ଓଡ଼ିଆଂକୁ ତୁଚ୍ଛ ମନେକରୁଥିଲେ । ସବୁ ବଡ଼ ବଡ଼ ଚାକିରିରେ ସେମାନେ ଆସନ ଜମାଇ ବସିଥିଲେ । ସେଥିପାଇଁ ଓଡ଼ିଶାର ଲୋକଂକ ମଧରେ ବଂଗାଳୀଂକ ପ୍ରତି ବିଦ୍ୱେଷଭାବ ଥିଲା ।

କଲିକତାରେ ଅଧିକାଂଶ ଓଡ଼ିଆ ଚାକର, ପୂଝାରୀ ଓ ମାଳୀ କାମ କରଂତି । ସେମାନଂକ ଚାଲିଚଳନ ଟିକିଏ ନିମ୍ନସ୍ତରର । ସେଥିପାଇଁ ବଂଗାଳୀମାନେ ଭାବଂତି, ଓଡ଼ିଶାର ସମସ୍ତେ ଏହିପରି; ତେଣୁ ତୁଚ୍ଛତାଚ୍ଛଲ୍ୟ କରଂତି । ମାତ୍ର ଯେଉଁମାନେ ପ୍ରାଜ୍ଞ ସେମାନେ ଓଡ଼ିଶାକୁ ସମ୍ମାନର ଚକ୍ଷୁରେ ଦେଖଂତି । ମୁଁ ବହୁ ବଂଗାଳୀ ମନୀଷୀଂକ ଘନିଷ୍ଠ ସଂପର୍କରେ ପରେ ଆସିଛି । ସେମାନେ ଓଡ଼ିଶା ବା ଉତ୍କଳ ତଥା କଳିଂଗକୁ ମହାନ୍ ସଂସ୍କୃତିର ଦେଶ ବୋଲି ଶ୍ରଦ୍ଧା, ସମ୍ମାନ ଦେଖାଇଥାଂତି, ଯଥା – ଡ. କାଳିଦାସ ନାଗ, ଡ. ସୁନୀତି ଚ୍ୟାଟାର୍ଜୀ, ଡ. ନିହାରରଂଜନ ରାଏ, ଡ. ସୁକୁମାର ସେନ୍, ହୁମାୟୁନ୍ କବୀର, ପ୍ରଫେସର ଡ. ପ୍ରିୟରଂଜନ ସେନ୍, ବୁଦ୍ଧଦେବ ବସୁ, ବିଷ୍ଣୁ ଦେ, ତାରାଶଂକର, ଲେଡ଼ୀ ରାନୁ ମୁଖାର୍ଜୀ, ହରୀଂଦ୍ରନାଥ ଚଟ୍ଟୋପାଧାୟ, ବିପ୍ଳବୀ ବାରିନ୍ ଘୋଷ ପ୍ରଭୃତିଂକ ଘନିଷ୍ଠ ସାହଚର୍ଯ୍ୟରେ ଆସି ଦେଖିଛି, ସେମାନେ ଓଡ଼ିଶାକୁ ନିଜ ଦେଶ ବଂଗଠାରୁ କମ୍ ଭଲପାଆଂତିନାହିଁ ।

ମୁଁ ଗାଁରେ ଥିଲାବେଳେ ପ୍ରଥମ ଡିଭିଜନ୍‌ରେ ମ୍ୟାଟ୍ରିକ୍ ପାସ୍ କରିଥିବା କଥା ଜାଣିଲି । ଏକ ଲାଲ ଲଂବାଚଉଡ଼ା ବହିରେ ସବୁ ମ୍ୟାଟ୍ରିକ୍ ପାସ୍ କରିଥିବା ଛାତ୍ରଛାତ୍ରୀଂକ ନାମ ଛପାଯାଇଥାଏ । ତାହା ମୋ ପାଖକୁ ବ୍ରାହ୍ମ ବଏଜ୍ ସ୍କୁଲର

ହେଡ୍‌ମାଷ୍ଟର ମହାଶୟ ଡାକରେ ପଠାଇଦେଇଥିଲେ। ମୁଁ ତାଂକୁ ସେ ବହିର ମୂଲ୍ୟ ଦେଇ ଆସିଥିଲି। ଗାଁରେ ମ୍ୟାଟ୍ରିକ୍ୟୁଲେସନ୍ ପାସ୍ କରିଥିବା କଥା ଜାଣି ଆଇ.ଏ. ପଢ଼ିବା ପାଇଁ ମୁଁ ବେନାରସ୍ ହିଂଦୁ ବିଶ୍ୱବିଦ୍ୟାଳୟକୁ ଯିବିବୋଲି ସ୍ଥିରକଲି।

**ବେନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଦୁଇ ମାସ –**

ମୁଁ ବେନାରସ୍ ହିଂଦୁ ବିଶ୍ୱବିଦ୍ୟାଳୟରେ ଆଇ.ଏ. କ୍ଲାସ୍‌ରେ ନାମ ଲେଖାଇଲି। ବିର୍ଲା ହଷ୍ଟେଲ୍‌ରେ ମୋତେ ଗୋଟିଏ ରୁମ୍ ମିଳିଲା। ମୁଁ ରୋଜ୍ କଲେଜ ଯାଉଥିଲି ଏବଂ ପଢ଼ାପଢ଼ିରେ ମନଦେଉଥିଲି। ହିନ୍ଦୁ ବିଶ୍ୱବିଦ୍ୟାଳୟ ଏକ ବିରାଟ ଉଚ୍ଚଶିକ୍ଷା ଅନୁଷ୍ଠାନ। ଏଥିରେ କଳା ଓ ବିଜ୍ଞାନରେ ବହୁ ବିଷୟ ପଢ଼ାଯାଏ। ଭାରତର କୃତୀ ବିଦ୍ୱାନ୍‌ମାନେ ଏଥିରେ ଅଧ୍ୟାପକ ଥାଆଂତି। ପଂଡିତ ମଦନମୋହନ ମାଳବ୍ୟ ଏହି ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା। ସେ ସମଗ୍ର ଦେଶରୁ ବଦାନ୍ୟ ବ୍ୟକ୍ତିମାନଂକଠାରୁ ଚାଂଦା ମାଗି ଏ ବିରାଟ ପ୍ରତିଷ୍ଠାନ ସ୍ଥାପନକରିଥିଲେ। ଏହାକୁ ଦେଖିଲେ କେହି ବିଶ୍ୱାସ କରିବ ନାହିଁ ଯେ, ଜଣେ ଲୋକର ଏକକ ଉଦ୍ୟମରେ ଏତେ ବଡ଼ ଅନୁଷ୍ଠାନ ଗଢ଼ାଯାଇପାରେ। ପଂଡିତ ମାଳବ୍ୟ ମଧ୍ୟ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଥିଲେ। ସେ ରାଜନୀତିରେ ମଧ୍ୟମପଂଥୀ ଥିଲେ। ସେ ବିଲାତରେ ଗୋଲ୍‌ଟେବୁଲ ବୈଠକରେ ଗାଂଧିଜୀଂକ ସହ ଯୋଗ ଦେଇଥିଲେ। ଓଡ଼ିଶାର ଡ. ପ୍ରାଣକୃଷ୍ଣ ପରିଜା ଏହି ବିଶ୍ୱବିଦ୍ୟାଳୟରେ କିଛିଦିନ କୁଳପତି ଥିଲେ।

ହଷ୍ଟେଲରେ ଖିଆପିଆ ମଂଦ ନଥିଲା। ତେବେ ରୁଟି ବେଶି ଦିଆଯାଏ; ଶେଷରେ ଅଳ୍ପ କିଛି ଭାତ ଦିଆଯାଏ। ରୁଟିରେ ପ୍ରଚୁର ଘିଅ ମଖାଯାଇଥାଏ; ଡାଲିରେ ମଧ୍ୟ ଘିଅ-ଛୁଂକ ଦିଆଯାଇଥାଏ।

ହଷ୍ଟେଲ୍‌କୁ ଲାଗି ଗଂଗା ନଦୀ। ଆମେ କେତେ ଜଣ ହଷ୍ଟେଲର ପିଲା ରୋଜ୍ ଗଂଗାରେ ଗାଧୋଇବାକୁ ଯାଉଁ। ତେବେ ସେଠାରେ କୌଣସି ତୁଠ ନଥିଲା। ହଷ୍ଟେଲ୍ ପାଖ ନଦୀବଂଧରୁ ଧୀରେ ଧୀରେ ଓହ୍ଲାଇ ଗଂଗାରେ ସ୍ନାନକରୁ। ସେଠାରେ ପ୍ରାୟ ବେକେ ପାଣି।

ବିଶ୍ୱବିଦ୍ୟାଳୟର ଛାତ୍ରମାନେ ଟିକିଏ ରକ୍ଷଣଶୀଳ ମନେହେଲା। ବହୁସଂଖ୍ୟକ ଛାତ୍ର ମୋଟର ସାଇକେଲ୍‌ରେ ଚାଲବୁଲ କରଂତି। ପ୍ୟାଂଟ୍, ସାର୍ଟ ପିଂଧଂତି; ମାତ୍ର ଚୁର୍‌କି ରଖିଥାଂତି। ଚିତା ମଧ୍ୟ ଲଗାଇଥାଂତି। ମୋତେ ଏଠିକାର ଆବହାଓ୍ୱା କିଛିଦିନ ପରେ ଭଲଲାଗିଲାନାହିଁ। ବିଶ୍ୱବିଦ୍ୟାଳୟ ସହରରୁ ଏକପ୍ରକାର ବିଛିନ୍ନ କହିଲେ ଚଳେ। ତେବେ ମୁଁ ବିଶ୍ୱବିଦ୍ୟାଳୟରୁ ଦୁଇ-ତିନିଥର ଟଂଗାରେ ବେନାରସର ବଜାର ହାଟକୁ ଯାଇଛି। କାଶୀ ବିଶ୍ୱନାଥ ମଂଦିରକୁ ମଧ୍ୟ ଦୁଇଥର ଯାଇଛି। ବେନାରସର ଅନ୍ୟ ନାମ କାଶୀ।

ପଂଡିତ ମାଳବ୍ୟ ପ୍ରତି ଏକାଦଶୀ ଦିନ ଏକ ଧର୍ମଶିକ୍ଷା କ୍ଲାସ୍ ନେଇଥାଂତି। ମୁଁ ଥରେ ତାଂକ କ୍ଲାସ୍‌ରେ ଯୋଗଦେଇଥିଲି; ସେ ହିଂଦୁଧର୍ମର ଆଚାରବିଧି

ଏବଂ ଦର୍ଶନ ସଂବଂଧରେ ଛାତ୍ରମାନଂକୁ କୁହଂତି । ସେଦିନ ସେ କହିଲେ, ''ଯଦି ଜଣେ ଏକାଦଶୀ ଉପବାସ କରେ, ତେବେ ତା'ର ସବୁ ପାପ କ୍ଷୟ ହୋଇଯିବ ।'' ଏ ଭାଷଣ ଶୁଣିଲାପରେ ମୋ ମନଟା କାହିଁକି ପିତାହୋଇଗଲା । ମୁଁ ଭାବିଲି, ଆଜିର ଏ ବୈଜ୍ଞାନିକ ଯୁଗରେ ମାଲବ୍ୟଜୀ କିପରି କହୁଛଂତି ଯେ ଏକାଦଶୀ ଦିନ ଉପବାସ କଲେ ମଣିଷର ସବୁ ପାପ ଧୋଇହୋଇଯିବ ? ସେହିଦିନୁ ମୋ ମନଟା ବିଶ୍ୱବିଦ୍ୟାଳୟ ପ୍ରତି ତିକ୍ତ ହୋଇଉଠିଲା । ଏହାର କିଛି ଦିନ ପରେ ଦିନେ ମୁଁ ଟ୍ରାନ୍ସଫର୍ ଓ ମାଇଗ୍ରେସନ୍ ସାର୍ଟିଫିକେଟ୍ ନେଇ ଜିନିଷପତ୍ର ଧରି ବନାରସ ଛାଡ଼ି କଲିକତାରେ ପହଂଚିଲି । କଲିକତାରେ ପହଂଚି ମୁଁ ଟିକିଏ ସ୍ୱସ୍ତିରେ ନିଶ୍ୱାସ ମାଇଲି । ମନେହେଲା, ମୁଁ ଯେପରି ମୁକ୍ତ ବାୟୁ ଓ ଆଲୁଅର ଅଂଚଳକୁ ଫେରିଆସିଲି । ମୁଁ କଲିକତା ସି.ଟି. କଲେଜରେ ଆଇ.ଏ. ଶ୍ରେଣୀରେ ନାମଲେଖାଇଲି । ଅପ୍‌ସନାଲ୍ ବିଷୟ ନେଇଥାଏ History, Logic, Civics; ତା' ସାଂଗକୁ ତ କଂପଲ୍‌ସରି ଇଂରାଜୀ ଓ ଓଡ଼ିଆ ଥାଏ । ସି.ଟି. କଲେଜର ଦ୍ୱିତୀୟ ମହଲାରେ ରାଜା ରାମମୋହନ ରାୟ ହଷ୍ଟେଲ । ମୁଁ ରାଜା ରାମମୋହନ ରାୟ ହଷ୍ଟେଲ୍‌ରେ ଭର୍ତିହେଲି । ମୋ ରୁମ୍‌ରେ ଜଣେ ସିନିୟର୍ ଛାତ୍ର ଅମର୍ ଦା' ଥାଆଂତି । ସେ ବଡ଼ ଶାଂତଶିଷ୍ଟ ଓ ସ୍ନେହୀ । ସେ ତୃତୀୟ-ବାର୍ଷିକ ବିଜ୍ଞାନ ଶ୍ରେଣୀରେ ପଢୁଥାଂତି ।      ପ୍ରିନ୍ସିପାଲ ହେରଂବ ମୈତ୍ର ଅଳ୍ପଦିନ ହେଲା ଅବସର ନେଇଥାଂତି । ତାଂକ ଜାଗାରେ ଭାଇସ୍-ପ୍ରିନ୍ସିପାଲ୍ ଅସ୍ଥାୟୀ ପ୍ରିନ୍ସିପାଲ୍ ଥାଂତି । ସି.ଟି. କଲେଜ୍ ଏକ ଖାଂଟି ବ୍ରାହ୍ମ କଲେଜ । ଏହା ଆମାର୍ହଷ୍ଟ୍ ଷ୍ଟ୍ରୀଟ୍ ଉପରେ ଅବସ୍ଥିତ । ପ୍ରିନ୍ସିପାଲ୍ ହେରଂବ ମୈତ୍ର ଜଣେ ନୈଷ୍ଠିକ ବ୍ରାହ୍ମ ଥିଲେ । ତାଂକ ସଂବଂଧରେ ଅନେକ କଥା ଶୁଣାଯାଏ । ସେଥିରୁ ଗୋଟିଏ ହେଲା – ସେ ଥରେ ତାଂକ ପରିବାର ସହିତ ଟ୍ରେନ୍‌ରେ କୁଆଡ଼େ ଯାଉଥିଲେ । ସଂଗରେ ଥିଲେ କିଶୋରୀ ଝିଅ ଓ ଅନ୍ୟମାନେ । ରାତି ବାରଟା ବାଜିବାମାତ୍ରେ ସେ ଟ୍ରେନ୍‌ର ଚେନ୍ ଟାଣିଲେ । ଟ୍ରେନ୍ ରହିଲା । ଟି.ଟି.ଆଇ., ଗାର୍ଡ ଓ ଅନ୍ୟ ସମସ୍ତେ ତାଂକ କଂପାର୍ଟମେଂଟ୍‌କୁ ଧାଇଁଆସିଲେ । କ'ଣ ହେଲା ପଚାରିବାରୁ ସେ କହିଲେ, ''ମୋର ଏହିଠାରୁ ଏହି ଝିଅଟି ପାଇଁ ପୂର୍ଣ ଟିକେଟ୍ ଦରକାର, କାରଣ ତା'ର ଏହିମାତ୍ର ବାରବର୍ଷ ପୂରିଗଲା ।'' ଟ୍ରେନ୍‌ର କର୍ମଚାରୀମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଟି.ଟି.ଆଇ. ତାଂକୁ ସଂଗେ ସଂଗେ ସେହିଠାରୁ ତାଂକ ଝିଅଟି ପାଇଁ ପୂର୍ଣ ଟିକେଟର ପଇସା ନେଇ ରସିଦ ବଢ଼ାଇଦେଲେ । ଏହିପରି ଆହୁରି ଅନେକକଥା ।

**ଦୀପକ ସଂଘ –**

ମୁଁ ସି.ଟି. କଲେଜରେ ପଢୁଥିବାବେଳେ ଗୌରୀ କାନୁନ୍‌ଗୋ ବିଦ୍ୟାସାଗର କଲେଜରେ ଦ୍ୱିତୀୟ-ବାର୍ଷିକ କଳା ଶ୍ରେଣୀରେ ପଢୁଥାଏ । ଏହି ଗୌରୀ କାନୁନ୍‌ଗୋ ଓ ମୁଁ ଯୁଗ୍ମସଂପାଦକ ଥାଇ ପୁରୀରେ ପ୍ରଥମ ନିଖିଳଉତ୍କଳ ଯୁବସମ୍ମିଳନୀ କରିଥିଲୁ

ଏବଂ ସମସ୍ତ ଓଡ଼ିଆ ଭାଷାଭାଷୀ ଅଂଚଳମାନଂକୁ ନେଇ ଏକ ପୂର୍ଣାଂଗ ସ୍ୱତଂତ୍ର ଉତ୍କଳପ୍ରଦେଶ ଦାବି କରିଥିଲୁ। ଏହା ଥିଲା ୧୯୩୩ ମସିହାର କଥା। ଏହା ଓଡ଼ିଶାର ପ୍ରଥମ ପ୍ରଦେଶସ୍ତରୀୟ ଯୁବ ସମ୍ମିଳନୀ ଥିଲା। କଲିକତାରେ ସେତେବେଳେ ଶଶାଂକ ପଟ୍ଟନାୟକ କୌଣସି ଏକ ବ୍ୟାଂକ୍‌ରେ ଚାକିରି କରୁଥିଲେ। ଆମେ ତିନିଜଣ ପରସ୍ପର ସହିତ ବରାବର ମିଶୁଥିଲୁ। ହଠାତ୍ ଆମର ଖିଆଲ ହେଲା, କଲିକତାରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଚର୍ଚ୍ଚା ଓ ପ୍ରସାର ପାଇଁ ଏକ ଅନୁଷ୍ଠାନ ଗଢ଼ାଯିବା ଉଚିତ। ଅନୁଷ୍ଠାନର ନାମ 'ଦୀପକ ସଂଘ' ଦିଆଗଲା। ଏହି ଦୀପକ ସଂଘ ତରଫରୁ ମୋର ଖଂଡିଏ ପ୍ରବଂଧ ପୁସ୍ତିକା 'ପ୍ରେମ' ଓ 'ପନ୍ୟ' ଏବଂ ମୋର ବହୁଚର୍ଚ୍ଚିତ ଉପନ୍ୟାସ 'ଚିତ୍ରଗ୍ରୀବ' ପ୍ରକାଶ ପାଇଥିଲା ୧୯୩୫ ମସିହାରେ।

କଲିକତାରେ ଏକ ଓଡ଼ିଆ ସମ୍ମିଳନୀ ଡକାଯାଇଥିଲା। ସେଥିରେ ବହୁ ଲୋକ ଯୋଗଦେଇଥିଲେ। ଏହି ସମ୍ମିଳନୀରେ ସଭାନେତ୍ରୀ ଥିଲେ ବିଖ୍ୟାତ ସାହିତ୍ୟିକା ଡାକ୍ତର କୁଂତଳାକୁମାରୀ ଦେବୀ (ସାବତ)। ସେ ଦିଲ୍ଲୀରେ ରହି ଡାକ୍ତରୀ ପ୍ରାକ୍ଟିସ୍ କରୁଥିଲେ। ସେ କଲିକତା ଆସିବାରେ ମୋ ସହିତ ତାଂକର ପ୍ରଥମ ଦେଖାସାକ୍ଷାତ ଓ ଆଳାପ ହେଲା। ସେ ମୋର କବିତାକୁ ଖୁବ୍ ପ୍ରଶଂସା କରି ଏଥିପୂର୍ବରୁ ବ୍ରହ୍ମପୁରର 'ନବୀନ' ପତ୍ରିକାରେ ଏକ ଚିଠି ଲେଖିଥିଲେ। ତେଣୁ ତାଂକ ସହିତ ପରିଚୟ ହେବାରୁ ମୁଁ ବଡ଼ ଖୁସିହୋଇଥିଲି। ସେ ମଧ୍ୟ ଖୁସିହୋଇଥିଲେ।

ଏହି ସମ୍ମିଳନୀରେ କଲିକତାରେ ବେଶ୍ୟାବୃତ୍ତି କରୁଥିବା ଓଡ଼ିଆ ନାରୀମାନଂକର ଉଦ୍ଧାରପାଇଁ ଏବଂ ସେମାନଂକୁ ସୁସ୍ଥ ସାମାଜିକ ଜୀବନଯାପନ କରିବାରେ ସାହାଯ୍ୟ କରିବାପାଇଁ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା। ପରବର୍ତ୍ତୀ କାଳର କମ୍ୟୁନିଷ୍ଟ ନେତା ଶରତ୍ ପଟ୍ଟନାୟକ ଏହି ପ୍ରସ୍ତାବଟି ଆଗତ କରିଥିଲେ। ମୁଁ ତାହାକୁ ଅନୁମୋଦନ କରିଥିଲି। ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା। ମୁଁ 'ପ୍ରେମ' ଓ 'ପନ୍ୟ' ପୁସ୍ତିକାରେ ପ୍ରଚଳିତ ବିବାହପ୍ରଥା ସମାଜରେ ବେଶ୍ୟାବୃତ୍ତିର ପ୍ରଚଳନ ପାଇଁ ଦାୟୀ ବୋଲି ଦର୍ଶାଇଥିଲି। ନାରୀକୁ ଆର୍ଥିକ ସ୍ୱାଧୀନତା ଦେବା ଏକାଂତ ଦରକାର ବୋଲି ଯୁକ୍ତି ବାଢ଼ିଥିଲି। ମୁଁ ବେଟ୍ରାଂଡ ରସେଲଂକଠାରୁ ଆରଂଭ କରି ବାର୍ନାଡ୍ ଶ' ଓ ହେଭେଲକ୍ ଏଲିସ୍‌ଙ୍କ ପର୍ଯ୍ୟଂତ ବହୁ ମନୀଷୀଂକ ମତାମତ ଉଦ୍ଧାରକରି ପ୍ରଚଳିତ ବିବାହପ୍ରଥା ବିରୋଧରେ ସ୍ୱର ଉଠାଇଥିଲି। 'ଚିତ୍ରଗ୍ରୀବ' ଉପନ୍ୟାସରେ ମୁଁ ରୋମାଂଟିସିଜିମ୍ ବିରୋଧରେ ଏକ ଅଭିଯାନ ଚଳାଇଛି, ପ୍ରଗତିବାଦୀ ଏବଂ ମାର୍କ୍ସୀୟ ଦୃଷ୍ଟିକୋଣର ପ୍ରବର୍ତ୍ତନ କରିଛି। ଦୀପକ ସଂଘ ଦ୍ୱାରା ପ୍ରକାଶିତ ଏ ଦୁଇଟି ବହି ଓଡ଼ିଶାରେ ସେତେବେଳେ ଚହଳ ପକାଇଥିଲା।

**ରବୀନ୍ଦ୍ରନାଥଂକ ସହ ସାକ୍ଷାତ୍କାର –**

କବିଗୁରୁ ରବୀଂଦ୍ରନାଥଂକ ସହ ଦୀପକ ସଂଘ ତରଫରୁ ମୁଁ ଓ ଗୌରୀ କାନୁନଗୋ କଲିକତାଠାରେ ତାଂକ ଜୋରାଶାଂକୋ ବାସଭବନରେ ଦୁଇଥର

ସାକ୍ଷାତ କରିଥିଲୁ ଏବଂ ସାହିତ୍ୟସାଧନାରେ ତାଂକ ଆଶୀର୍ବାଦ ଲୋଡ଼ିଥିଲୁ। କବିଗୁରୁ ଦୀପକ ସଂଘ ସଂବଂଧରେ ଜାଣି ବଡ଼ ଖୁସିହୋଇଥିଲେ। ସେ ଆମ ଅନୁରୋଧକ୍ରମେ ଦୀପକ ସଂଘକୁ ଶୁଭେଚ୍ଛା ଜଣାଇ ବଂଗଳାରେ ଏକ ସ୍ୱହସ୍ତଲିଖିତ ବାଣୀ ପ୍ରଦାନ କରିଥିଲେ। ସେ ବାର୍ତାଟି ଆଠ-ଦଶ ଲାଇନ୍‌ର ହେବ। ତାହାର ଶେଷ ଦୁଇଧାଡ଼ି ମୋର ମନେଅଛି। ତାହା ହେଉଛି–

"ବାଂଗ୍ଲାର ସଂଗେ ଉଡ଼ିଷ୍ୟାର ସୌହାର୍ଦ୍ୟର ଯୋଗସୂତ୍ର ଦୃଢ଼ହୋ– ଏହା ଆମାର ଆଂତରିକ କାମନା" ତଳେ ସେ ଦସ୍ତଖତ କରିଥିଲେ। ବାଣୀଟିକୁ ଆମେ ବ୍ଲକ୍ କରାଇ ଦୀପକ ସଂଘର ଇଂରାଜୀ ମେନିଫେଷ୍ଟୋର୍ ସାମନା ମଲାଟ ଉପରେ ଛାପିଥିଲୁ। କବିଗୁରୁଂକର ସେ ଚେହେରା ଏବେବି ମନରେ ଝଲସିଉଠେ ଏବଂ ଅପୂର୍ବ ପ୍ରେରଣା ସଂଚାରକରେ। ତାଂକର ଶୁଭ୍ରକେଶମଂଡିତ ଋଷିପ୍ରତିମ ମୁଖମଂଡଳ ଏବଂ ଏକ ଆଲ୍‌ଖାଲାପରିହିତ ଦୀର୍ଘ ଦେହଯଷ୍ଟି ଏବଂ ପ୍ରକୋଷ୍ଠ ମଧ୍ୟରେ ଧୀର ପଦଚାରଣା ଦୀର୍ଘ ୬୦ ବର୍ଷ ପରେ ବି ମୋର ସ୍ପଷ୍ଟ ମନେଅଛି।

**ମାର୍କ୍ସବାଦର ପ୍ରଭାବ –**

କଲିକତାରେ ପଢ଼ୁଥିବାବେଳେ ମୁଁ ମାର୍କ୍ସବାଦ ପ୍ରତି ଆକୃଷ୍ଟ ହୋଇଥିଲି। ମାର୍କ୍ସ, ଏଂଗେଲସ୍, ଲେନିନ୍ ଓ ଷ୍ଟାଲିନଂକର ବହୁ ପୁସ୍ତକ ଓ ଜୀବନୀ ପଢ଼ି ଓଡ଼ିଆ ସାହିତ୍ୟରେ ସେମାନଂକ ମତବାଦ ପ୍ରବର୍ତନ କରିବା ଦିଗରେ ଲାଗିପଡ଼ିଥିଲି। ଏଥିପୂର୍ବରୁ ୧୯୩୧ ମସିହାରେ 'ନବୀନ' ପତ୍ରିକାରେ ପ୍ରକାଶିତ ମୋର 'ଭଗବାନ ଅଛ କାହିଁ' କବିତାରେ ମୋର ମାର୍କସୀୟ ଦୃଷ୍ଟିକୋଣ ପ୍ରତିଫଳିତ ହୋଇଛି। ଏହାଛଡ଼ା ୧୯୩୨ ମସିହାରେ 'ଯୁଗବୀଣା' ପତ୍ରିକାରେ ପ୍ରକାଶିତ ମୋର 'ବିସର୍ଜନ' ନାମକ ଗଳ୍ପଟି ମଧ୍ୟ ମାର୍କସୀୟ ଦୃଷ୍ଟିକୋଣର ପରିଚୟ ଦିଏ। ଏହାର ଅଳ୍ପଦିନ ପରେ ମୋର 'ଭାତ', 'ରୁଟି', 'ବଂଦୀର ବଂଦନା', 'ସର୍ବହରା', 'ସ୍ୱେନ୍', 'କାରାଗାର', 'କୋଣାର୍କ' ପ୍ରଭୃତି କବିତାମାନ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବୈଜ୍ଞାନିକ ସାମ୍ୟବାଦର ଆଗମନୀ ଶୁଣାଏ। ଏସବୁ କବିତା ସେତେବେଳେ ସାରା ଓଡ଼ିଶାରେ ଆଲୋଡ଼ନ ସୃଷ୍ଟିକରିଥିଲା। ପରେ ଏସବୁ କବିତା ମୋର ଅନ୍ୟ କେତେକ ପ୍ରଗତିବାଦୀ ଓ ଫ୍ୟାସିଷ୍ଟବିରୋଧୀ କବିତା ସହ ୧୯୩୭ ମସିହାରେ 'ଅଭିଯାନ' ପୁସ୍ତକରେ ସଂକଳିତ ହୋଇ ଓଡ଼ିଆ ସାହିତ୍ୟରେ ଚାଂଚଲ୍ୟ ସୃଷ୍ଟିକରିଥିଲା। ପାଠକମହଲରେ 'ଅଭିଯାନ' ଅପୂର୍ବ ଉନ୍ମାଦନା ଆଣିଦେଇଥିଲା। କଲିକତାରେ ପଢ଼ୁଥିବାବେଳେ ମୁଁ ଲେଖିଥିବା ଉପନ୍ୟାସ 'ଚିତ୍ରଗ୍ରୀବ' ମଧ୍ୟ ଅନୁରୂପ ପ୍ରଭାବ ପକାଇଥିଲା। ଚିତ୍ରଗ୍ରୀବ ପ୍ରକାଶ ପାଇବାର ବହୁପରେ ଭଗବତୀଚରଣ ପାଣିଗ୍ରାହୀଂକଦ୍ୱାରା ସଂପାଦିତ 'ଆଧୁନିକ' ପତ୍ରିକା ପ୍ରକାଶପାଏ। ଏହା ଏକ ମାର୍କସ ମତବାଦୀ ତ୍ରୈମାସିକ ପତ୍ରିକା ଥିଲା। ଏହା ୧୯୩୭ ସାଲରେ ପ୍ରକାଶପାଏ। ଏହାର ଦ୍ୱିତୀୟ ସଂଖ୍ୟାରେ 'ଚିତ୍ରଗ୍ରୀବ' ଉପନ୍ୟାସର ଏକ ଆକର୍ଷକ ବିଜ୍ଞାପନ

ପ୍ରକାଶପାଇଥିଲା, ଯେଉଁଥିରୁ ପ୍ରମାଣିତ ହୁଏ ଯେ 'ଆଧୁନିକ'ର ବହୁପୂର୍ବରୁ ଚିତ୍ରଗ୍ରୀବ ଓ ମୋର କବିତା ମାଧ୍ୟମରେ ଓଡ଼ିଆ ସାହିତ୍ୟରେ ମାର୍କସୀୟ ଦୃଷ୍ଟିଭଂଗୀ ଦୃଢ଼ ପ୍ରତିଷ୍ଠିତ ହୋଇସାରିଥିଲା। ବିଜ୍ଞାପନଟି ତଳେ ଦିଆଗଲା –

"ପ୍ରକାଶ ପାଇଲା ! ପ୍ରକାଶ ପାଇଲା ! ସଚ୍ଚିଦାନନ୍ଦ ରାଉତରାୟଂକର ସେହି ବହୁଜନନିନ୍ଦିତ ଓ ବହୁଜନପ୍ରଶଂସିତ ଉପନ୍ୟାସ **ଚିତ୍ରଗ୍ରୀବ** – ଗୋଟିଏ ରକମର ହସ ଅଛି, ଯାହାକୁ ଦେଖିଲେ ମନେହୁଏ ସିଂହ ହସୁଛି। ଗୁର୍ଖା ସିପାହିର ସଂଗୀନ୍‌ପରି ଦୁନିଆର ସବୁ ଢ଼ାଲିଆତି, ସବୁ ଧପ୍‌ପାବାଜି ବିରୁଦ୍ଧରେ ସେ ହସ ଦାନ୍ତ ବାହାର-କରିଛି। ଆଜିହିଁ କିଣି ପଢ଼ଂତୁ। ପ୍ରକାଶକ: **ଦୀପକ ସଂଘ**, କଲିକତା। କଟକର ବଡ଼ ବଡ଼ ବହି ଦୋକାନରେ ମିଳେ।"

କେତେକ ତୁଂଗ କମ୍ୟୁନିଷ୍ଟ ନେତାଂକ ସହିତ ମଧ୍ୟ ମୋର କଲିକତାରେ ଆଳାପ ହୋଇଥିଲା। ସେଥିମଧ୍ୟରେ ମୁଜାଫର ଅହମ୍ମଦ୍ ଏବଂ ବଂକିମ ମୁଖାର୍ଜୀ ପ୍ରଭୃତି ଅନ୍ୟତମ। ମୁଜାଫର ଅହମ୍ମଦ ମୀରଟ୍ କମ୍ୟୁନିଷ୍ଟ ଷଡ଼ଯଂତ୍ର ମାମଲାରେ ଦୀର୍ଘ କାରାଦଂଡ ଭୋଗିଥିଲେ। ଏହାଛଡ଼ା କଂଗ୍ରେସର କେତେକ ନେତା ଓ କର୍ମୀଂକ ସଂପର୍କରେ ଆସିଥିଲି। କାଳିପଦ ମୁଖାର୍ଜୀଂକ (ଛୋଟକାଳି) ସହିତ ଥରେ-ଦୁଇଥର ଦେଖାହୋଇଥିଲା। ସେ ବଂଗବାସୀ କଲେଜର ଛାତ୍ର ଥିଲେ। ତାଂକଠୁ ମୁଁ ଲେନିନଂକର ଖଂଡିଏ ବହି ପଢ଼ିବାକୁ ନେଇଥିଲି। ବହିଟିର ନାମ "Left-Wing Communism: An Infantile Disorder"। ଏହାଛଡ଼ା ମୁଁ କେତୋଟି ଶ୍ରମିକ ସଭାରେ ମଧ୍ୟ ଯୋଗଦେଇଥିଲି। ସେଥିରେ ଡାକ୍ତର ସୁରେଶ୍ ବାନାର୍ଜୀ ପ୍ରଭୃତି ଟ୍ରେଡ୍ ୟୁନିଅନ୍ ନେତାମାନେ ଭାଷଣଦେଉଥିଲେ। ଶରତ୍ ପଟ୍ଟନାୟକ (ପରେ କମ୍ୟୁନିଷ୍ଟ ନେତା) ମଧ୍ୟ ବକ୍ତୃତା ଦେଇଥିଲେ।

ମୋତେ ବଂଗଳା ଥିଏଟର ଖୁବ୍ ଭଲଲାଗୁଥିଲା। ଷ୍ଟାର୍ ଓ ମିନର୍ଭାରେ ବଂଗଳା ଥିଏଟର ସପ୍ତାହକେ ଦୁଇ-ତିନି ଦିନ ପରିବେଷିତ ହେଉଥିଲା। ଅଭିନେତାମାନଂକ ମଧ୍ୟରେ ଅଧ୍ୟାପକ ଶିଶିର ଭାଦୁଡ଼ୀ ଓ ଅହିନ୍ଦ୍ର ଚୌଧୁରୀ ଆଉ ଅଭିନେତ୍ରୀମାନଂକ ମଧ୍ୟରେ କଂକାବତୀ, ଚନ୍ଦ୍ରାବତୀ ପ୍ରଭୃତି ପ୍ରଭାବଶାଳୀ ଅଭିନୟ କରୁଥିଲେ। 'କର୍ଣାର୍ଜୁନ' ନାଟକରେ ଦେଖିଲି ଶ୍ରୀକୃଷ୍ଣଂକ ରଂଗ ବଦଳି ଯାଇଛି। ସେ ମୁହଁରେ ଓ ଦେହରେ ଧଳା ପାଉଡ଼ର ମାଖି ମଂଚ ଉପରେ ସୁନ୍ଦର ଅଭିନୟ କରିଗଲେ। ଶ୍ରୀକୃଷ୍ଣ ପ୍ରାୟ ସବୁଠି ଶ୍ୟାମଳ ରଂଗର ହୋଇଥାଂତି; ମାତ୍ର ଏଠାରେ ତହିଁର ବ୍ୟତିକ୍ରମ ଦେଖିଲି। ମୁଁ କେତେ ଜଣ ବିଜ୍ଞ ଦର୍ଶକଂକୁ ଏହାର କାରଣ ପଚାରିବାରୁ, ସେମାନେ କହିଲେ, 'କୃଷ୍ଣ' ଅର୍ଥ କୃଷିସଂପନ୍ନ – ଏହାର ଅର୍ଥ ଏହା ନୁହେଁ ଯେ ତାଂକ ଦେହର ରଂଗ କଳା ଥିଲା।

# ଚତୁର୍ଦ୍ଦଶ ଉଲ୍ଲାସ

## କଲିକତା ଜେଲ୍‌ରେ ଦୁଇ ମାସ

ମୋର ଆଇ.ଏ. ପରୀକ୍ଷା ଆଉ ଦୁଇମାସ ଥାଏ। ମୁଁ ଓ ଅମରଦା' ଆମ ରୁମ୍ ଭିତରୁ ବଂଦ୍‌କରି ନିଜ ନିଜ ବିଛଣାରେ ଲାଇଟ୍ ଅଫ୍ କରି ଶୋଇଥିଲୁ। ରାତ୍ରି ପ୍ରାୟ ୩ଟାବେଳେ ଦରଜାରେ ହଠାତ୍ ଖୁବ୍ ଜୋର୍‌ରେ ଆଘାତ ହେଲା। ଏତେ ରାତିରେ କିଏ କବାଟ ବାଡ଼େଇଉଛି, ଦେଖିବାପାଇଁ ଅମରଦା' ଦରଜା ଖୋଲିଲେ। ଦରଜା ଖୋଲିବାମାତ୍ରକେ ଘର ଭିତରକୁ ଆଠ-ଦଶ ଜଣ ପୁଲିସ୍ କନେଷ୍ଟବଲ ଓ ଦୁଇଜଣ ଅଫିସର୍ ପଶିଆସିଲେ। ଜଣେ ଅଫିସର ପଚାରିଲେ, ''ଏଖାନେ ସଚ୍ଚି ରାଉତରାୟ ଆଛେନ୍?'' ଅମର୍‌ଦା' ଥତମତ ଖାଇ ମୋ' ଆଡ଼କୁ ଅନାଇଲେ। ମୁଁ ବିଛଣାରୁ ଉଠି ତଳେ ଛିଡ଼ାହୋଇପଡ଼ି କହିଲି, ''ହାଁ, ଆମି।''

ସେ ବଂଗଳାରେ କହିଲେ– ଆପଣଂକର ନାଁରେ ସର୍ଚ୍ଚୱାରେଂଟ୍ ଅଛି। ଆମେ ଆପଣଂକ ଜିନିଷପତ୍ର ଖାନ୍‌ତଲାସ କରିବୁ। ମୁଁ ମୋ ଜିନିଷପତ୍ର ଦେଖାଇଦେଲି। ସେ ମୋ ଟ୍ରଂକ୍ ଖୋଲି ଲୁଗାପଟା, କାମିଜ୍ ଓ ବହିପତ୍ର ଗୋଟି ଗୋଟି କରି ଯାଂଚ୍‌କଲେ, ଲେନିନଂକର 'Leftwing Communism' ବହିଟି ପାଇଲେ; ତା'ପରେ ଆଉ କିଛି ସମୟ ଖାନ୍‌ତଲାସ୍ କରି ମୋତେ କହିଲେ, ''ଚଲୁନ୍ ଆମାଦେର୍ ସଂଗେ।'' ମୁଁ ପଚାରିଲି– ''କୋଥାଏ?'' ଅଫିସର୍ କହିଲେ– ''ଥାନାଏ।''

ମୁଁ ତାଂକ ସଂଗେ ସିଡ଼ିଦେଇ ତଳକୁ ଗଲି। ସେଠାରେ ବହୁ ପୋଲିସ୍ ଓ ଦୁଇ-ତିନିଜଣ ବଂଧୁକଧାରୀ ସଂତ୍ରୀ ମୁତୟନ ହୋଇଥିବାର ଦେଖିଲି। ଗୋଟାଏ କଳାରଂଗର ଜେଲ୍‌ଭ୍ୟାନ୍ ଥୁଆହୋଇଥାଏ। ମୋତେ ସେମାନେ ସେଥିରେ ଏଲିସିଏମ୍‌ରୋକୁ ନେଇଗଲେ। ଏଲିସିଏମ୍‌ରୋ କଲିକତାର ଏକ କୁଖ୍ୟାତ ହାଜତ୍ ଓ ଥାନା। ଏହା ଜଗୁବାବୁବଜାରର ବା ଶ୍ୟାମାପ୍ରସାଦ ମୁଖାର୍ଜୀ ରୋଡ଼୍‌ରେ ଅବସ୍ଥିତ। ମୋତେ ଗୋଟାଏ ରୁମ୍‌ରେ ବଂଦ୍‌କରିଦିଆଗଲା। ବାହାରୁ ତାଲା ପକାଇ ଅଫିସର୍‌ଜଣକ ଚାଲିଗଲେ; ଗଲାବେଳେ କହିଗଲେ– ପରେ ଦେଖାହବେ।

ସେ ରୁମ୍‌ରେ ଗୋଟାଏ ଖଟ ପଡ଼ିଥାଏ, ତା' ଉପରେ ଥାଏ ଦୁଇଟା ମୋଟା ଓ ଟାଂସୁଆ କଳା କଂବଳ; ତକିଆ ବା ବାଲିସ୍ ବୋଲି କିଛି ନଥିଲା। ମୁଁ ଗୋଟାଏ କଂବଳକୁ ଚୌତି ତକିଆ କଲି ଆଉ ଗୋଟାଏ କଂବଳ ବିଛାଇ

ତା' ଉପରେ ଶୋଇଲି। ଦିନ ବାରଟାରେ ଖାଇବା ଆସିଲା। ଜଣେ କନେଷ୍ଟବଲ୍ ଓ ହୋଟେଲ୍‌ର ଥାଳି ନେଇ ଜଣେ ଲୋକ ଆସି ମୋ ପାଖରେ ସେ ଥାଳିଟାକୁ ରଖିଦେଇ ଗଲା। ଏକ ଗ୍ଲାସ ପାଣି ମଧ ଦେଇଗଲେ। ଖାଇବା ଭିତରେ ୪-୫ଟା ମୋଟା ମୋଟା ରୁଟି, ଚଣାଡାଲି, ବୋଧହୁଏ କିଛି ଭଜା ଏବଂ କିଛି ବଡ଼ ବଡ଼ କଂଚା ପିଆଜ କୋଳା। ପରେ ବୁଝିଲି, ତାହା ପାଖ ପଂଜାବୀ ହୋଟେଲ୍‌ରୁ ଆସିଚି। ଚାରିଟା-ପାଂଚଟାବେଳକୁ ଜଣେ ଅଫିସର୍ ଆସିଲେ; ତାଂକ ପାଇଁ ଗୋଟାଏ ଚୌକି ମଧ ଥାନା ଅଫିସର୍ ପଠାଇଦେଲେ। ସେ ଚୌକିରେ ବସି ମୋତେ ପ୍ରାୟ ଏକଘଂଟାକାଳ ଅନର୍ଗଳ ନାନା ପ୍ରଶ୍ନ ପଚାରିଲେ। ମୁଁ କେଉଁଠିକି ଯାଏ, ଅମୁକ ଅମୁକ ଲୋକଂକୁ ଜାଣେ କି ନାହିଁ, ଇତ୍ୟାଦି ଇତ୍ୟାଦି। ମୁଁ ଯେତେଦୂର ଜାଣେ, ତାଂକ ପ୍ରଶ୍ନର ଉତ୍ତର ଦେଉଥିଲି। ଏକ ଘଂଟା ପରେ ସେ ଚାଲିଗଲେ। ସେ ଯିବା ପରେ ଜଣେ କନେଷ୍ଟବଲ ଆସି ସେ ଚୌକିଟା ଉଠାଇନେଲା ଏବଂ ବାହାରୁ ତାଲା ବଂଦକରିଦେଲା। ଏହିପରି ପ୍ରତିଦିନ ସେ ଅଫିସର୍ ଆସି ଗୁଡ଼େଇତୁଡ଼େଇ ପ୍ରଶ୍ନ ପଚାରଂତି। ପ୍ରଶ୍ନବାଣରେ ମୁଁ ଅସ୍ଥିର ହୋଇଉଠେ। ୭-୮ ଦିନ ଏହିପରି କଟିଗଲା। ତା'ପରେ ଦିନେ ମୋତେ ଜେଲ୍ ଭ୍ୟାନ୍‌ରେ ଲର୍ଡ ସିନ୍ହା ରୋଡ଼୍‌କୁ ନିଆଗଲା। ସେଠାରେ ଡେପୁଟି ପୁଲିସ୍ କମିଶନରଂକ ଅଫିସ୍‌ରେ ହାଜରକରାଗଲା। ସେ ଭଦ୍ରଲୋକ (ଡେପୁଟି କମିଶନର) ମୋଟା ଓ ତ୍ରିପଂଡକଳା। ତାଂକର ବଡ଼ ମୁହଁ ଓ ବଡ଼ ଆଖିକୁ ଦେଖିଲେ ଡରମାଡ଼ିବ। ସେ ମୋତେ ତାଂକ ସାମ୍ନା ଚୌକିରେ ବସିବାକୁ କହିଲେ; ତା'ପରେ ଫାଇଲ୍‌ରେ ମନଦେଲେ। କିଛି ସମୟ ପରେ ଫାଇଲ୍ ରଖିଦେଇ ମୋ ଆଡ଼କୁ କଟମଟ କରି ଚାହିଁଲେ ଏବଂ କହିଲେ, "ମୋ ବାପା ଢେଂକାନାଳରେ ପୁଲିସ୍ ଚାକିରି କରୁଥିଲେ। ଆମ ପିଲାଦିନ ଢେଂକାନାଳରେହିଁ କଟିଛି।" ସେଠାର ଲୋକମାନେ ଖୁବ୍ ଭଲ, ସରଳ ଓ ଶାଂତିପ୍ରିୟ।" ତା'ପରେ କହିଲେ, କଲିକତାରେ ଏକ କମ୍ୟୁନିଷ୍ଟ ଷଡ଼ଯଂତ୍ର ମୋକଦ୍ଦମା ଚାଲିଛି। ମୋତେ ସେହି ସଂପର୍କରେ ଗିରଫ୍ କରାଯାଇଛି। ଦୁଇ-ତିନିଜଣ ଅଭିଯୁକ୍ତ ନେତାଂକ ଡାଏରିରୁ ମୋ ନାମ ମିଳିଛି। ତା'ପରେ ସେ ମୋତେ କେତେକ ପ୍ରଶ୍ନ ପଚାରିଲେ। ମୁଁ ଅମୁକଂକୁ ଚିହ୍ନେ କି ନାହିଁ, ତାଂକ ସଂଗରେ ଦେଖାସାକ୍ଷାତ ହୁଏ କି ନାହିଁ; ଏହିପରି ନାନା ପ୍ରଶ୍ନ। ତା'ପରେ ମୋତେ ଚାଲିଯିବାକୁ କହିଲେ। ଅଳ୍ପ ଦୂରରେ ଛିଡ଼ାହୋଇଥିବା ପୋଲିସ୍ କନେଷ୍ଟବଲମାନେ ମୋତେ ନେଇ ଜେଲ୍ ଭ୍ୟାନ୍‌ରେ ବସାଇ ଏଲ୍‌ସିଅମ୍‌ରୋରେ ପହଂଚାଇଦେଲେ। ମୁଁ ସେଠାରେ ଆଉ କିଛିଦିନ ରହିଲାପରେ ମୋତେ କଲିକତା ଜେଲ୍‌ରେ ରଖାଗଲା।

ମୋ ଟ୍ରଂକ୍‌ରେ ଯାହା ଟଂକା ପଇସା ଥିଲା ମୁଁ ସବୁ ଅମରଦାଂକୁ ଦେଇଆସିଥିଲି। ତାଂକୁ କହିଥିଲି, ମୋ ଆଇ.ଏ. ପରୀକ୍ଷା ଫିସ୍ କଲେଜରେ

ଦାଖଲକରିଦେବେ ଏବଂ ମୋ ସିଟ୍ କେଉଁ କଲେଜରେ ପଡ଼ିଲା, ମୋତେ ଜଣାଇଦେବେ। ମୁଁ ଆସିଲାବେଳେ ସଂଗରେ କେବଳ ଦୁଇଖଂଡ ଲୁଂଗି, ଦୁଇ-ତିନିଟା ଗେଂଜି ଏବଂ ତିନି-ଚାରିଟା ଧୋତି ଓ ପଂଜାବି ଓ ସାର୍ଟ ସଂଗରେ ଆଣିଥିଲି। ପଢ଼ା ବହି କିଛି ଆଣିନଥିଲି। ତେଣୁ ହାଜତରେ ବା ଜେଲ୍‌ରେ ଥିଲାବେଳେ ମୁଁ କୌଣସି ପାଠ୍ୟପୁସ୍ତକ ଛୁଇଁନାହିଁ। ମୋ ପକେଟ୍‌ରେ ଗୋଟାଏ କଳା ପାର୍କର୍ ଫାଉଂଟେନ୍ ପେନ୍ ଥିଲା। ଖୁଚୁରା ପଇସା ବା ଟଂକା କିଛି ଥିଲା। ସେସବୁ ଏଲିସିଅମ୍‌ରୋରେ ହାଜତର ଜଣେ ଅଫିସର୍ ଜମାରଖିଲେ। ତା' ମଧ୍ୟ ମୋ ଆଗରେ ଗୋଟାଏ ରେଜିଷ୍ଟରରେ ଲେଖାଗଲା।

ଗୌରୀ କାନୁନ୍‌ଗୋ ମୋ ଜାମିନ ପାଇଁ ବହୁ ଚେଷ୍ଟାକଲା। ସେ କଲିକତାର ଜଣେ ଦି'ଜଣ ଓକିଲଂକଦ୍ୱାରା ଜାମିନ ପାଇଁ ଦରଖାସ୍ତ ପେସ୍ କରିଥିଲା। ମୋ ମୁଂଡ ଉପରେ ବିଶ୍ୱବିଦ୍ୟାଳୟ ପରୀକ୍ଷା; ତେଣୁ ଶୀଘ୍ର ଜାମିନ ଦିଆଯାଉ ବୋଲି ଅର୍ଜି କରାଯାଇଥିଲା। ମାତ୍ର ମୋତେ ଜାମିନ ମିଳିଲା ନାହିଁ। ବଡ଼ଦେଇ ବି କଲିକତାରେ ଆସି ପହଂଚିଥାଂତି। ଟଂକାପଇସା ଯାହା ଦରକାର, ଗୌରୀକୁ ଦେଉଥାଂତି। ଯା' ଭିତରେ ଗୌରୀଠୁଁ ଶୁଣିଲି, ମୋ ପରୀକ୍ଷା ଫିସ୍ ଦାଖଲ କରାଯାଇଛି। ମୋ ସିଟ୍ ସ୍କଟିସ୍ ଚର୍ଚ୍ଚ କଲେଜରେ ପଡ଼ିଛି। ସେ ମୋ ଆଡ୍‌ମିଟ୍ କାର୍ଡ ମଧ୍ୟ ଜେଲ୍‌ରେ ଦେଇଗଲା। ଗୌରୀ ମଝିରେ ମଝିରେ ଆସି ମୋ ସହିତ ହାଜତରେ ଏବଂ ଜେଲ୍‌ରେ ଦେଖାକରି ଯାଉଥାଏ।

ଏହିପରି ପ୍ରାୟ ଦୁଇମାସ କଟିଗଲା। ମୁଁ ଆଉ ସେ ବର୍ଷ ଆଇ.ଏ. ପରୀକ୍ଷା ଦେଇପାରିବିନି ବୋଲି ଧରିନେଇଥିଲି। ମୋର ଯେଉଁ ଦିନ ପରୀକ୍ଷା ଆରଂଭ ହେବ, ଠିକ୍ ସେହି ଦିନ ସକାଳ ୮ଟାବେଳେ ଗୌରୀ ଧଇଁସଇଁ ହୋଇ ଆସି ମୋତେ ଜେଲ୍‌ରେ ଖବରଦେଲା ଯେ ମୋତେ ଜାମିନ ମିଳିଛି। ତା'ପରେ ଅଧଘଂଟାଏ ମଧ୍ୟରେ ମୋତେ ଜେଲ୍‌ରୁ ଖଲାସକରିଦିଆଗଲା। ସକାଳ ୧୦ଟାରେ ପରୀକ୍ଷା ଆରଂଭ। ପ୍ରଥମ ଦିନ କ'ଣ ଥାଏ, ତାହା ମଧ୍ୟ ମୁଁ ସଠିକ୍ ଜାଣିନଥିଲି। ସେ ଯାହାହେଉ, ମୁଁ ଜେଲ୍‌ରୁ ଖଲାସହୋଇ ଗୋଟାଏ ଦୁଇଟା ଫାଉଂଟେନ୍ ପେନ୍ କିଣି, ଗୌରୀଠୁଁ କିଛି ଟଂକା ନେଇ ଟ୍ୟାକ୍‌ସି କରି ସ୍କଟିସ୍ ଚର୍ଚ୍ଚ କଲେଜରେ ପହଂଚିଲି ଏବଂ ପରୀକ୍ଷାଦେଲି। ସେଦିନ ଇଂରାଜୀ ପ୍ରଥମ ପତ୍ର ଥାଏ। ଉପରବେଳା ଥାଏ, ସେକେଂଡ ପେପର୍। ତା'ପର ଦୁଇଦିନ ଛୁଟି। ତା' ପରେ ଯାଇ ଇଂରାଜୀ ଥାର୍ଡ ପେପର୍। ମୁଁ ପରୀକ୍ଷା ଦେଇସାରି ହଷ୍ଟେଲ୍‌ରେ ପହଂଚିଲି। ମୋତେ ଦେଖି ସମସ୍ତେ ବଡ଼ ଖୁସି ହେଲେ। ଅମରଦା' ମୋତେ କୁଂଡାଇପକାଇଲେ। ପ୍ରତି ପରୀକ୍ଷା ମଝିରେ ଯେଉଁ ଦୁଇ-ତିନି ଦିନ ଫାଂକା ମିଳେ, ମୁଁ ସେହିଥିରେ ରାତି ଦୁଇଟାଯାଏ ସବୁ ପାଠ୍ୟପୁସ୍ତକ ଓ ନୋଟ୍ ପଢ଼େ ଏବଂ ପରୀକ୍ଷା ଦିଏ।

ମୁଁ ସେକେଣ୍ଡ ଡିଭିଜନ୍‌ରେ ଆଇ.ଏ. ପାସ୍ କରିଥିଲି। ପରୀକ୍ଷା ସରିବା ପରେ ମୁଁ ଏଲ୍‌ସିଅମରୋ ଅଫିସ୍‌କୁ ଯାଇ ମୋର ଜମାଥିବା କଳା ପାର୍କର ପେନ୍ ଓ ଟଂକାପଇସା ଫ୍ଵାପସ୍ ଆଣିବାକୁ ଚାହିଁଲି। ମାତ୍ର ଆସିଷ୍ଟାଂଟ ପୁଲିସ୍ ଅଫିସର୍ ଖୋଜାଖୋଜି କରି କହିଲେ, କାହିଁ ସେସବୁତ ମିଳୁନି (କିଛୁ ତ ପାଓ୍ଵାଯାଛେନା)। ମୁଁ ଲେନିନ୍‌ଙ୍କର ସେ ବହିଟା ମାଗିଲି। ତାହା ଭାରତରେ ବ୍ୟାଜ୍ୟାପ୍ତ ହୋଇନଥିଲା; ମାତ୍ର ଅଫିସର୍ ତାହା ମଧ୍ୟ ପାଇଲେ ନାହିଁ। ମୁଁ ନିରାଶ ହୋଇ ହଷ୍ଟେଲ୍‌କୁ ଫେରିଲି।

ମୁଁ ଜେଲ୍ ଯିବା ଆଗରୁ 'ଚିତ୍ରଗ୍ରୀବ' ଉପନ୍ୟାସଟି ସଂପୂର୍ଣ ହୋଇସାରିଥିଲା। ତାହା କଟକର ଉତ୍କଳ ସାହିତ୍ୟ ପ୍ରେସ୍‌ରେ ଛପାହେଉଥିଲା। ଡାକଯୋଗେ ପ୍ରୁଫ୍ ଆସୁଥିଲା ଏବଂ ମୁଁ ପ୍ରୁଫ୍ ଦେଖିସାରି ଡାକଯୋଗେ ପ୍ରେସ୍‌କୁ ପଠାଇ ଦେଉଥିଲି। ଗୌରୀ ଦୌଡ଼ାଦୌଡ଼ି କରି ସେ ବହିଟିକୁ ୧୯୩୫ ମସିହା ଡିସେଂବର ଶେଷ ସୁଦ୍ଧା ଛପାଇ ଶହେଖଂଡ ବଂଧାଇ ପୁସ୍ତକ ଆଣିଥିଲା।

'ଚିତ୍ରଗ୍ରୀବ' ଉପନ୍ୟାସଟି ଏକ ଆକୃତି-ବିହୀନ (formless) ଉପନ୍ୟାସ। ଏଥିରେ ପ୍ରଚଂଡ ଶ୍ଳେଷ (Irony) ସମସ୍ତ ଗଳ୍ପହୀନତାକୁ ଢାଂକିଦିଏ। ପାଠକ ମନରେ ଏହା ଆଣିଦିଏ ଆନଂଦ, ଉତ୍କଂଠା। ଔତ୍ସୁକ୍ୟବାଦ ବା ରୋମାଂଟିସିଜିମ୍‌କୁ ଏହା ବାରଂବାର ଚାବୁକମାରିଛି। ସମସ୍ତ ପ୍ରଚଳିତ ମୂଲ୍ୟବୋଧ ଓ ଧାରଣା ତଥା ସ୍ଥିତାବସ୍ଥାକୁ ଏହା ବାରଂବାର ପ୍ରଶ୍ନକରିଛି— ସେମାନଂକର ସ୍ଥିତି କେତେଦୂର ଯୁକ୍ତିସମ୍ମତ। ଏଥିରେ କୌଣସି ନିର୍ଦ୍ଦିଷ୍ଟ ଗଳ୍ପ ନାହିଁ। ଗଳ୍ପହୀନତାହିଁ ଏହାର ଗଳ୍ପ। ଅନେକ ବିଜ୍ଞ ସମାଲୋଚକ ଲେଖିଛଂତି ଯେ 'ଚିତ୍ରଗ୍ରୀବ' ପ୍ରଥମ antinovel, କାରଣ ଜର୍ମାନ୍ ଆକ୍ରମଣ ଓ ଅଧିକାର ପରେ ଅର୍ଥାତ୍ ୧୯୪୫ ବେଳକୁ antinovel ଆନ୍ଦୋଳନ ପ୍ୟାରିସ୍‌ରେ ଆରଂଭହୋଇଥିଲା। ମାତ୍ର 'ଚିତ୍ରଗ୍ରୀବ' ତହିଁର ପ୍ରାୟ ୧୦ ବର୍ଷ ପୂର୍ବରୁ ଅର୍ଥାତ୍ ୧୯୩୫ ମସିହା ଶେଷଭାଗରେ ପ୍ରକାଶପାଇଥିଲା। ସେମାନଂକର ନିର୍ଣୟ କେତେଦୂର ଯୁକ୍ତିଯୁକ୍ତ, ତାହା ପାଠକସମାଜ ଓ ସାହିତ୍ୟର ଇତିହାସକାରମାନେ ସ୍ଥିରକରିବେ।

**ବଂଧୁବାଂଧବୀଂକ ପ୍ରତିକ୍ରିୟା –**

ଜେଲ୍‌ରୁ ବାହୁଡ଼ିବାପରେ ମୁଁ ଅନୁଭବ କଲି ଯେପରି ମୋର ପରିବେଶର ଚେହେରା ଟିକିଏ ବଦଳିଯାଇଛି। ବହୁ ବଂଧୁ ଓ ବାଂଧବୀ ମୋତେ ପୂର୍ବାପେକ୍ଷା ଟିକିଏ ଭିନ୍ନ ଆଖିରେ ଦେଖିବା ଅନୁଭବ କଲି। କେଉଁଠି ସେ ଦୃଷ୍ଟିରେଖା ସପ୍ରଶଂସ ତ କେଉଁଠି ଉଦାସୀନ ବା ପ୍ରତିକୂଳ।

କଲିକତା ଓଡ଼ିଆ ମହଲରେ ମୋର ସ୍ଥିତି ଟିକିଏ ଉନ୍ନତ ସ୍ତର ଛୁଇଁଲାପରି ଲାଗୁଥିଲା। କଟକରେ ବଂଧୁ ଭଗବତୀଚରଣ ପାଣିଗ୍ରାହୀ, ଅନଂତ ପଟ୍ଟନାୟକ ଓ ବୈଦ୍ୟନାଥ ରଥ, ଶ୍ରୀରାମଚଂଦ୍ର ଭବନରେ ଏକ ସଭାର ଆୟୋଜନ କରିଥିଲେ।

ସେଥିରେ ମୋତେ ମୁଖ୍ୟ ବକ୍ତାଭାବେ ଡକାଯାଇଥିଲା । ମୁଁ ମୋର କଲିକତା ଜେଲ୍ ଅଭିଜ୍ଞତା ସଂବଂଧରେ ମୁଖ୍ୟତଃ କହିଥିଲି ।

କଲିକତାରେ ଦୁଇଜଣ ବାଂଧବୀ ଜେଲ୍ ବାହୁଡ଼ିବା ପରେ ମୋତେ ଦେଖି ଟିକିଏ ଅପ୍ରସ୍ତୁତ ହେଲାପରି ଜଣାଗଲା । ନିଳୀମା ଘରକୁ ଗଲେ ସେ ଓ ତା'ର ମା' ଖୁବ୍ ଖୁସିହୋଇଉଠଂତି । ନିଳୀମା ସଂଗେ ଦୀର୍ଘ ସମୟ ନାନାକଥା ଆଲୋଚନା ପରେ ମନେହେଲା, ସେ ଯେପରି ଏକ ସଂଦିଗ୍ଧ ଦୋଳାରେ ଛଂଦିହେଉଛି; କିଂତୁ ପର ମୁହୂର୍ତ୍ତରେ ସେ ନିଜକୁ ସଂଭାଳିନେଉଛି ।

କୁମାରୀ ବେଳାହଡ୍‌ସନ୍ ଜଣେ ଓଡ଼ିଆ ମହିଳା ଯେ କି ଏମ୍.ଏ. ପାସ୍ କରି କଲିକତାରେ ଚାକିରି କରୁଥାଂତି । ସେ ମୋତେ ଭେଟିବାପାଇଁ ଚାହୁଁଥିଲେ, ମାତ୍ର ମୁଁ ହଠାତ୍ ଗିରଫ୍ ହୋଇଯିବାରୁ ତାଂକ ପାଖକୁ ଯାଇପାରିନଥିଲି । ଜେଲ୍‌ରୁ ଫେରି କିଛିଦିନ ପରେ ତାଂକ ଘରେ ଦେଖାହୋଇଥିଲା । ସେ ମୋତେ ଦେଖି ଟିକେ ଅପ୍ରସ୍ତୁତ ହୋଇପଡ଼ିଥିଲେ । ମାତ୍ର ପର ମୁହୂର୍ତ୍ତରେ ସେ ଦ୍ୱିଧା ଓ ସଂଶୟର ଛକ ପାରହୋଇ ନିଜ ଭୂମିକୁ ଫେରିଆସିଥିଲେ ଏବଂ ମୋତେ ସହଜ ଭାବରେ ଗ୍ରହଣ କରିଥିଲେ ।

**କମ୍ୟୁନିଷ୍ଟ ଷଡ଼ଯଂତ୍ର ମୋକଦ୍ଦମା –**

କଲିକତାରେ ମୋର ଆଇ.ଏ. ପରୀକ୍ଷାର ଅବ୍ୟବହିତ ପୂର୍ବରୁ ମୋତେ ଯେଉଁ କମ୍ୟୁନିଷ୍ଟ ଷଡ଼ଯଂତ୍ର ମାମଲା ସଂକ୍ରାଂତରେ ଗିରଫ କରି ଦୁଇମାସ ଜେଲ୍‌ରେ ରଖାଯାଇଥିଲା, ସେ ମୋକଦ୍ଦମା ଶେଷ ପର୍ଯଂତ କ'ଣ ହେଲା, ମୁଁ ଜାଣିପାରିଲିନାହିଁ । ଆଇ.ଏ. ପରୀକ୍ଷା ଦେଇସାରି ମୁଁ କଲିକତାରେ ରାଜା ରାମମୋହନ ରାୟ ହଷ୍ଟେଲ୍‌ରେ କିଛିଦିନ ଥିଲି । ମୁଁ ୨୦୦୦ ଟଂକା ଜାମିନରେ ଖଲାସ ହୋଇଥିଲି । ମୁଁ ଭାବିଥିଲି, ମୋକଦ୍ଦମା ଚାଲିଲେ ମୋତେ ଶୁଣାଣିରେ ହାଜର ହେବାପାଇଁ ସମନ ଆସିବ; ମାତ୍ର କୌଣସି ସମନ ଆସିଲା ନାହିଁ । ତା'ପରେ ମୁଁ ଗାଁକୁ ଆସି ଖରାଛୁଟି ଶେଷ ପର୍ଯଂତ ରହେ । ପୁରୀ ମଧ୍ୟ ସାତ-ଆଠ ଦିନ ପାଇଁ ଯାଇଥିଲି । ମାତ୍ର କୌଣସି ସମନ ନ ଆସିବାରୁ ପୁଲିସ୍ ମୋ ବିରୁଦ୍ଧରେ ଚାର୍ଜସିଟ୍ ଦେଇଥିଲା କି ନାହିଁ ଏବଂ ସେ ମୋକଦ୍ଦମା କ'ଣ ହେଲା, ସେ ବିଷୟରେ ମୁଁ କୌଣସି ସଠିକ୍ ଖବର ପାଇନଥିଲି ।

ଏଣେ ଘରେ ସମସ୍ତେ ଏବଂ ମହନୀ ଅପା ପ୍ରଭୃତି ବି.ଏ. ପଢ଼ିବାପାଇଁ ମୁଁ କଲିକତା ଯାଏ, ଏହା ଚାହୁଁନଥିଲେ । ମାମା ବେଶୀ ବାଧାଦେଉଥିଲା । କହୁଥିଲା, କଲିକତାରେ କେଉଁ ଦିନ ଫାଶୀ-ହୋଇଯିବ ସେଠି ଆମର ପଢ଼ିବାର ଦରକାର ନାହିଁ ।

**ରେଭେନ୍‌ସାର ଛାତ୍ର –**

ଅବଶ୍ୟ ମୁଁ ବାଧ୍ୟହୋଇ କଟକ ରେଭେନ୍‌ସା କଲେଜରେ ବି.ଏ. ତୃତୀୟ-ବାର୍ଷିକ ଶ୍ରେଣୀରେ ଭର୍ତ୍ତିହେବାପାଇଁ ଦରଖାସ୍ତ କରିଥାଏ। ସେତେବେଳେ ପ୍ରିନ୍‌ସିପାଲ୍ ଥାଆଂତି ପ୍ରଫେସର୍ ଶ୍ୟାମାଚରଣ ତ୍ରିପାଠୀ। ସେ ମୋତେ ଡକାଇ କେତେକ ପ୍ରଶ୍ନ ପଚାରିଥିଲେ। ସେ ମୋ ସଂବଂଧରେ ଆଗରୁ ଖବରକାଗଜରୁ ଓ ଲୋକମୁଖରୁ କିଛି କିଛି ଖବର ପାଇଥିଲେ। ମୁଁ ଜଣେ ରାଜନୈତିକ ଚରମପଂଥୀ ବୋଲି ବୋଧହୁଏ ଜାଣିଥିଲେ। ମୁଁ ତାଂକ ପ୍ରଶ୍ନର ଯଥାଯଥ ଉତ୍ତର ଦେଇଥିଲି। ଶେଷରେ ସେ ହସିକରି କହିଲେ "I hope you won't create any trouble in my College"। କହିଲି, ନାଇଁ ସାର୍! ତା' ପରେ ସେ ମୋ ଦରଖାସ୍ତରେ Admit ବୋଲି ଲେଖିଦେଲେ।

ସେତେବେଳେ ରେଭେନ୍ସା କଲେଜ ଥାଏ ଓଡ଼ିଶାର ଏକମାତ୍ର ଡିଗ୍ରୀ କଲେଜ। ଖାଲି B.A., B.Com. ବା B.Sc. ନୁହେଁ, ସେଠାରେ ସକାଳବେଳା Law ଏବଂ M.A. ପଢ଼ାଯାଉଥିଲା। ଓଡ଼ିଶାର ଅନ୍ୟ କଲେଜରେ ବି.ଏ. ପର୍ଯ୍ୟଂତ ପଢ଼ାଯାଉନଥିଲା। କେବଳ ବ୍ରହ୍ମପୁରର ଖଲ୍ଲିକୋଟ୍ କଲେଜ ଏବଂ କଟକର ଗୌରୀଶଂକର ପାର୍କ ନିକଟସ୍ଥ ରେଭେନ୍‌ସା ବାଳିକା ସ୍କୁଲରେ ଆଇ.ଏ. ପର୍ଯ୍ୟଂତ ପଢ଼ାଯାଉଥିଲା। ରେଭେନ୍ସା କଲେଜ ସେତେବେଳେ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା। ଉତ୍କଳ ବିଶ୍ୱବିଦ୍ୟାଳୟ ହେବାକୁ ଆହୁରି ପାଞ୍ଚ-ଛଅ ବର୍ଷ ବାକିଥାଏ।

ଶେଷରେ ମୁଁ ହେଲି ରେଭେନ୍‌ସା କଲେଜର ଛାତ୍ର।

# ପଞ୍ଚଦଶ ଉଲ୍ଲାସ

## ରେଭେନ୍ସା କଲେଜରେ ଛାତ୍ରଜୀବନ

**ଦେଶର ଅବସ୍ଥା –**

ସେତେବେଳକୁ ସମଗ୍ର ଦେଶ କ୍ଳାନ୍ତ । ୧୯୩୦ ମସିହାରୁ ଯେଉଁ ଆନ୍ଦୋଳନ ଚାଲିଆସୁଥିଲା, ତାହା ସାମୟିକ ଭାବେ ବନ୍ଦ ରହିଥିଲା । ମାତ୍ର ଦେଶବାସୀ ବୀଭତ୍ସ ଦମନଲୀଳା ଓ ଅତ୍ୟାଚାର ଫଳରେ ବହୁ କ୍ଷତିଗ୍ରସ୍ତ ହୋଇଥିଲେ ଏବଂ ବହୁ ଧନଜୀବନ ନଷ୍ଟହୋଇଥିଲା । ଓଡ଼ିଶା ଲବଣ ସତ୍ୟାଗ୍ରହ ଓ ଆଇନ୍ ଅମାନ୍ୟ ଆନ୍ଦୋଳନରେ କେବଳ ଗୁଜୁରାଟର ପଛରେ ଥିଲା । ଗୁଜୁରାଟର ନାସିକ ଜିଲ୍ଲା ଥିଲା ସବୁଠାରୁ ଆଗୁଆ । ତା ପଛକୁ ଓଡ଼ିଶାର ବାଲେଶ୍ୱର ଜିଲ୍ଲା । ଓଡ଼ିଶାର ହଜାର ହଜାର ନରନାରୀ କାରାବରଣ କରିଥିଲେ ଏବଂ ଲାଠିମାଡ଼ ଓ ଗୁଳିମାଡ଼ର ସାମନା କରିଥିଲେ ।

୧୯୩୧ ସାଲ ମାର୍ଚ୍ଚ ମାସରେ ଗାନ୍ଧୀ-ଇରଉଇନ୍ ଚୁକ୍ତି ଫଳରେ ଯେଉଁ ମିଳାମିଶାର ବାୟୁମଣ୍ଡଳ ସୃଷ୍ଟିହୋଇଥିଲା, ତାହା ଇରୱଇନ୍ ଭାରତ ଛାଡ଼ିବାପରେ ଅମଲାତନ୍ତ୍ରର ଚକ୍ରାନ୍ତ ଫଳରେ ସଂପୂର୍ଣ୍ଣ ଧ୍ୱଂସହୋଇଗଲା । ଏହି ଚୁକ୍ତି ଅନୁଯାୟୀ ସମସ୍ତ କଂଗ୍ରେସଲୋକ କାରାମୁକ୍ତ ହୋଇଥିଲେ ଏବଂ କଂଗ୍ରେସ ଉପରୁ ବେଆଇନ୍ ଆଦେଶ ଉଠାଇନିଆଯାଇଥିଲା । ମାତ୍ର ଲର୍ଡ ଇର୍‌ଉଇନ୍ ୧୯୩୧ ମସିହା ଏପ୍ରିଲ୍ ୧୮ ତାରିଖରେ ଚାଲିଯିବା ପରେ ଲର୍ଡ୍ ଉଇଲିଂଗ୍‌ଡନ୍ ବଡ଼ଲାଟ୍ ହୋଇ ଆସନ୍ତି ଏବଂ ଭାରତରେ ପୁନରାୟ ପ୍ରଚଣ୍ଡ ଦମନଲୀଳା ଆରମ୍ଭ ହୋଇଯାଏ । ତଥାପି ଗାନ୍ଧିଜୀ ଗୋଲ୍‌ଟେବୁଲ୍ ବୈଠକରେ ଯୋଗଦିଅନ୍ତି । ୧୯୩୨ ମସିହାରେ ଓଡ଼ିଶାର ପୁରୀଠାରେ କଂଗ୍ରେସ ଅଧିବେଶ ବସିବାର ସ୍ଥିରହୋଇଥାଏ ଏବଂ ପ୍ରସ୍ତୁତି କାର୍ଯ୍ୟ ଦ୍ରୁତଗତିରେ ଆଗେଇଚାଲିଥାଏ; ମାତ୍ର ସରକାରୀ କର୍ତ୍ତୃପକ୍ଷ ଓ ପୁଲିସ୍ ସେ ସବୁ ଧ୍ୱସ୍ତବିଧ୍ୱସ୍ତ କରିଦିଅନ୍ତି । ୧୯୩୩ ମସିହା ଅଗଷ୍ଟରେ ଗାନ୍ଧିଜୀ ଦେଶରେ ଗଣ-ସତ୍ୟାଗ୍ରହ ବନ୍ଦକରିଦିଅନ୍ତି ଏବଂ ବ୍ୟକ୍ତିଗତ ସତ୍ୟାଗ୍ରହ ଚାଲୁରଖନ୍ତି । ବ୍ୟକ୍ତିଗତ ସତ୍ୟାଗ୍ରହ କରି ଗାନ୍ଧିଜୀ ଏକବର୍ଷପାଇଁ ଜେଲ୍‌ଦଣ୍ଡରେ ଦଣ୍ଡିତହୁଅନ୍ତି । ଗାନ୍ଧିଜୀଙ୍କ ସମେତ ବହୁ କଂଗ୍ରେସ ନେତା ଗିରଫ୍ ହୁଅନ୍ତି ।

ବ୍ରିଟିଶ୍ ସରକାର ହରିଜନମାନଙ୍କୁ ହିନ୍ଦୁ ସମାଜରୁ ପୃଥକ୍ କରିବାପାଇଁ ସ୍ୱତନ୍ତ୍ର ଭୋଟ ଅଧିକାର ଦେବାକୁ ଚାହୁଁଥିଲେ । ଗାନ୍ଧିଜୀ ଜେଲ୍‌ରେ ଏହାର ଦୃଢ଼ ପ୍ରତିବାଦ କରି ୨୧ ଦିନ କାଳ ଉପବାସ କରିଥିଲେ । ଶେଷରେ ସରକାର

ଏହା ପ୍ରତ୍ୟାହାର କରିନେଇଥିଲେ। ଏହାପରେ ସେହି ବର୍ଷ ଅଗଷ୍ଟ ମାସରେ ତାଂକୁ ଜେଲ୍‌ରେ ପୂର୍ବପରି ହରିଜନ କାମର ସୁବିଧା ସୁଯୋଗ ନମିଳିବାରୁ ସେ ପୁଣି ଉପବାସ ଆରଂଭକରଂତି। ଅବସ୍ଥା ନିତାଂତ ସାଂଘାତିକ ହେବାରୁ ତାଂକୁ ଖଲାସ କରିଦିଆଯାଏ।

ଜଏଂଟ୍ ପାର୍ଲିଆମେଂଟାରୀ କମିଟି ପ୍ରସ୍ତାବ ଅନୁଯାୟୀ ୧୯୩୫ ମସିହା ଭାରତ ଶାସନ ଆଇନ୍ ପ୍ରଚଳିତ ହୁଏ। ଏଥିରେ ପ୍ରାଦେଶିକ 'ଅଟୋନୋମି' ଦିଆଯାଇଥିଲା। ଏହା ଫଳରେ ପ୍ରତି ପ୍ରଦେଶକୁ ନିଜ ନିଜ ବିଧାନସଭାକୁ ଲୋକପ୍ରତିନିଧି ବାଛିବାକୁ ଅଧିକାର ମିଳେ। ସେହି ବର୍ଷ ସେହି ଆଇନ୍‌ରେ ଓଡ଼ିଶାକୁ ଏକ ସ୍ୱତଂତ୍ର ପ୍ରଦେଶ ବୋଲି ଘୋଷଣା କରାଯାଇଥିଲା।

୧୯୩୬ ସାଲ ଡିସେଂବର ମାସରେ* ଓଡ଼ିଶାର ବିଧାନସଭାକୁ ଯେଉଁ ନିର୍ବାଚନ ହୁଏ, ସେଥିରେ ୫୬ଟି ନିର୍ବାଚିତ ଆସନ ମଧ୍ୟରୁ କଂଗ୍ରେସ ୩୬ଟି ଆସନ ଅଧିକାରକରେ ଏବଂ ବିରୋଧୀଦଳ – ଯଥା Orissa National Party ଓ United Party ୧୦ଟି ଆସନ ଏବଂ ସ୍ୱାଧୀନ ପ୍ରାର୍ଥୀ ୧୦ଟି ଆସନ ଲାଭ କରଂତି। ବାକୀ ଚାରିଜଣ ମନୋନୀତ ସଭ୍ୟ। ଏହିପରି ସମୁଦାୟ ଆସନସଂଖ୍ୟା ଥିଲା ୬୦। ସେତେବେଳକୁ ଓଡ଼ିଶାରେ ଗଡ଼ଜାତ ମିଶ୍ରଣ ଘଟିନଥିଲା। ଓଡ଼ିଶା କହିଲେ କେବଳ ପୁରୀ, କଟକ, ବାଲେଶ୍ୱର, ସଂବଲପୁର, ଗଂଜାମ – ଏହି ୫ଟି ଜିଲ୍ଲାକୁ ବୁଝାଉଥିଲା। ବିରୋଧୀଦଳ ରାଜା, ଜମିଦାର ଏବଂ ତାଂକ ମିତ୍ର ଲୋକମାନଂକୁ ନେଇ ଗଠିତ ହୋଇଥିଲା। ମାତ୍ର ଅନ୍ୟାନ୍ୟ ପ୍ରଦେଶମାନଂକ ପରି ଓଡ଼ିଶାରେ କଂଗ୍ରେସ ଦଳ ଶାସନକ୍ଷମତା ନେବାକୁ କୁଂଠାବୋଧ କରେ। କାରଣ ଭାରତ ଶାସନ ଆଇନ୍‌ରେ ପ୍ରାଦେଶିକ ଗଭର୍ଣରମାନଂକୁ ଯେଉଁ କ୍ଷମତାମାନ ଦିଆଯାଇଥିଲା, ତାହା ଲୋକପ୍ରତିନିଧି ସରକାରଂକୁ ଅଚଳ କରିଦେବ ବୋଲି ଆଶଂକା କରାଯାଉଥିଲା। ମାତ୍ର ସେତେବେଳର ଗଭର୍ଣର ଜେନେରାଲ୍ ଲର୍ଡ ଲିନ୍‌ଲିଥ୍‌ଗୋ ନିର୍ଭର ଆଶ୍ୱାସନା ଦିଅଂତି ଯେ ଗଭର୍ଣରମାନେ ମଂତ୍ରୀମାନଂକ ପରାମର୍ଶରେ ପରିଚାଳିତ ହେବେ। ଏହା ଉପରେ ବିଶ୍ୱାସ ରଖି କଂଗ୍ରେସ ପ୍ରଦେଶମାନଂକରେ ୧୯୩୭ ଜୁଲାଇ ମାସରେ ମଂତ୍ରିମଂଡ଼ଳ ଗଠନ କରଂତି।

ଓଡ଼ିଶାରେ କଂଗ୍ରେସ୍ ବିଧାୟକ ଦଳ ୧୯୩୭ ସାଲ ମାର୍ଚ୍ଚ ମାସରେ ଏକ ଘରୋଇ ବୈଠକରେ ଗଂଜାମ ବ୍ରହ୍ମପୁରର ଶ୍ରୀ ବିଶ୍ୱନାଥ ଦାସଂକୁ ନେତା

---

* ଡଃ ମହତାବଂକ ଓଡ଼ିଶା ଇତିହାସରେ ଏହି ନିର୍ବାଚନ ୧୯୩୬ ମସିହା ଡିସେଂବର ମାସରେ ହୋଇଥିଲା ବୋଲି ଲେଖାଥିବା ସ୍ଥଳେ ଏ.ସି. ପ୍ରଧାନଂକ ପ୍ରଣୀତ 'A Study of History of Orissa' ପୁସ୍ତକରେ ଏହା ୧୯୩୭ ମସିହା ଜାନୁୟାରୀ ମାସରେ ହୋଇଥିଲା ବୋଲି ଉଲ୍ଲେଖ ଅଛି।)

ନିର୍ବାଚନ କରିଥିଲେ । ଏଥିପୂର୍ବରୁ ଶ୍ରୀ ବିଶ୍ୱନାଥ ଦାସ ମାଡ୍ରାସ୍ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଭ୍ୟ ଥିଲେ । ସେତେବେଳେ ଗଂଜାମ ଜିଲ୍ଲା ମାଡ୍ରାସ ପ୍ରେସିଡେନ୍ସିର ଅଂତର୍ଗତ ଥିଲା । ସର୍ବଭାରତୀୟ କଂଗ୍ରେସ କମିଟି (A.I.C.C.) ପ୍ରଦେଶମାନଂକର କଂଗ୍ରେସ୍ ବିଧାୟକ ଦଳକୁ ମଂତ୍ରିମଂଡଳ ଗଠନ କରିବାକୁ ଅନୁମତି ଦେଇନଥିଲେ । ସେଥିପାଇଁ ବିଶ୍ୱନାଥ ଦାସ ଓଡ଼ିଶାରେ କଂଗ୍ରେସ ମଂତ୍ରିମଂଡଳ ଗଢ଼ିବାପାଇଁ ୧୯୩୭ ମସିହା ମାର୍ଚ ମାସରେ ପ୍ରାଦେଶିକ ଗଭର୍ଣରଂକ ଆମଂତ୍ରଣ ପାଇ ସୁଦ୍ଧା ସରକାର ଗଠନ କରିବାକୁ ନାସ୍ତି କରିଦେଇଥିଲେ ।

ଏହାପରେ ଗଭର୍ଣର ପାରଳାଖେମୁଂଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତିଦେବଂକୁ ସରକାର ଗଢ଼ିବାପାଇଁ ଆମଂତ୍ରଣ କରଂତି । ପାରଳାଖେମୁଂଡି ମହାରାଜା ମାଂଧାତା ଗୋରାଚାଂଦ ପଟ୍ଟନାୟକ ଏବଂ ମୌଲବି ଲତିଫୁର୍ ରହମନଂକୁ ନେଇ ୧୯୩୭ ମସିହା ଏପ୍ରିଲ ୧ ତାରିଖରେ ଏକ ମିଳିତ ମଂତ୍ରିମଂଡଳ ଗଠନକରଂତି । ପାରଳା-ଖେମୁଂଡି ମହାରାଜାଂକର ମଂତ୍ରିମଂଡଳ ସଂଖ୍ୟାନ୍ୟୂନ ଥିବାରୁ ଦେଶରେ ସଂବାଦପତ୍ର ଓ ସଭାସମିତିମାନଂକରେ ଘୋର ସମାଲୋଚନା କରାଯାଇଥିଲା । ଗଭର୍ଣର ତାଂକ କାର୍ଯ୍ୟର ସ୍ପଷ୍ଟୀକରଣ ଦିଅଂତି ଯେ କଂଗ୍ରେସକୁ ମଂତ୍ରିମଂଡଳ ଗଢ଼ିବାକୁ ସେ ପ୍ରଥମେ ଆମଂତ୍ରଣ କରିଥିଲେ; ମାତ୍ର କଂଗ୍ରେସ ରାଜି ନହେବାରୁ ସେ ସଂଖ୍ୟାନ୍ୟୂନ ଦଳକୁ ସରକାର ଗଢ଼ିବାକୁ ସୁଯୋଗ ଦେବାକୁ ବାଧହେଲେ, ଏହାଛଡ଼ା ତାଂକର ଅନ୍ୟ ବିକଳ୍ପ ନଥିଲା । ମାତ୍ର ଓଡ଼ିଶା ବିଧାନସଭାରେ କଂଗ୍ରେସ୍ ସଦସ୍ୟମାନେ ପାରଳାଖେମୁଂଡି ମହାରାଜାଂକ ମଂତ୍ରିମଂଡଳର ଇସ୍ତଫା ଦାବି କରଂତି ଏବଂ ଗଭର୍ଣରଂକୁ ଅନାସ୍ଥା ପ୍ରସ୍ତାବ ପଠାଇଦିଅଂତି ।

ଏଣେ ଦେଶରେ ସର୍ବତ୍ର ବିକ୍ଷୋଭ ଓ ରାଜନୈତିକ ଆଂଦୋଳନ ଅବ୍ୟାହତ ଥାଏ । ପ୍ରଭିନ୍‌ସିଆଲ୍ ଅଟୋନୋମି ଗ୍ରହଣକରି ନିର୍ବାଚନ ଲଢ଼ିଥିଲେ ମଧ୍ୟ କଂଗ୍ରେସ ଦେଶରେ ଆଂଦୋଳନ କରୁଥାଏ । ୧୯୩୭ ମସିହା ଜାନୁୟାରୀ ୨୬ ତାରିଖ ଦିନ ସରକାରୀ ନିଷେଧାଜ୍ଞା ଅମାନ୍ୟ କରି ଓଡ଼ିଶାର ସବୁ ବଡ଼ ବଡ଼ ସହରମାନଂକରେ ସ୍ୱାଧୀନତା ଦିବସ ପାଳିତହୋଇଥିଲା । ସେଦିନ ପୁରୀ ଓ ସତ୍ୟବାଦୀଠାରେ ପୋଲିସ୍ କଂଗ୍ରେସ ଅଫିସ୍‌ରୁ ସ୍ୱାଧୀନତା ଶପଥପତ୍ର ଜବତକରେ । ସଂବଲପୁରରେ ଡେପୁଟି ପୁଲିସ୍ କମିସନର ସେଦିନ ସଭା-ଶୋଭାଯାତ୍ରା ଉପରେ ନିଷେଧାଜ୍ଞା ଜାରି କରଂତି । ୧୯୩୭ ମସିହା ଏପ୍ରିଲ୍ ପହିଲାରେ, ଯାହା କି ନୂତନ ଓଡ଼ିଶା ପ୍ରଦେଶର ଜନ୍ମଦିନ, ଓଡ଼ିଶା କଂଗ୍ରେସ୍ ଭାରତ ଶାସନ ଆଇନ୍ ୧୯୩୫କୁ ଜାତୀୟତା ବିରୋଧୀ ଏବଂ ପ୍ରତିକ୍ରିୟାଶୀଳ ବୋଲି ଘୋଷଣା କରଂତି । ସେମାନେ ସାବାଳକ ଭୋଟ୍‌ରେ ଏକ କନ୍‌ଷ୍ଟିଚୁଏଂଟ୍ ଆସେଂବ୍ଲି ଗଠନକରି ଗଣତାଂତ୍ରିକ ସଂବିଧାନ ପ୍ରଣୟନ କରିବାକୁ ଦୃଢ଼ ଦାବି କରଂତି । ୧୯୩୭ ମସିହା ଏପ୍ରିଲ୍ ୧୩ ତାରିଖ 'ଇଂଟୁଡ଼ି ଦିବସ' ରୂପେ ପାଳିତହୁଏ ଏବଂ ଲବଣ ସତ୍ୟାଗ୍ରହକୁ

ଇଂଚୁଡ଼ିର ବୀରତ୍ୱପୂର୍ଣ୍ଣ ଅବଦାନ କଥା ସ୍ମରଣ କରାଯାଏ ।

୧୯୩୭ ମସିହା ଜୁନ୍ ୨୧ ତାରିଖରେ ଭାରତର ଗଭର୍ଣ୍ଣର ଜେନେରାଲ୍ (ବଡ଼ଲାଟ) କଂଗ୍ରେସ୍ ପାର୍ଟିକୁ ଆଶ୍ୱାସନା ଦିଅଂତି ଯେ, ପ୍ରଦେଶର ଗଭର୍ଣ୍ଣରମାନେ ମଂତ୍ରିମଂଡଳର ପରାମର୍ଶ ଅନୁଯାୟୀ ତାଂକର କ୍ଷମତା ବ୍ୟବହାର କରିବେ । ଏହା ପରେ ଓଡ଼ିଶା କଂଗ୍ରେସ ବିଧାୟକ ଦଳ କଂଗ୍ରେସ୍ ୱାର୍କିଂ କମିଟିର ଅନୁମତି ନେଇ ଓଡ଼ିଶାରେ ମଂତ୍ରିମଂଡଳ ଗଠନ କରିବାକୁ ନିଷ୍ପତ୍ତି ନିଅଂତି ଓ ପାରଳାଖେମୁଂଡି ମହାରାଜା ଇସ୍ତଫା ଦିଅଂତି । ୧୯୩୭ ମସିହା ଜୁଲାଇ ୧୯ ତାରିଖରେ ଓଡ଼ିଶାରେ ପ୍ରଥମ କଂଗ୍ରେସ୍ ମଂତ୍ରିମଂଡଳ ଶ୍ରୀ ବିଶ୍ୱନାଥ ଦାସଂକ ନେତୃତ୍ୱରେ ବା 'ପ୍ରଧାନମଂତ୍ରୀତ୍ୱ'ରେ ଗଠିତହୁଏ । ସେତେବେଳେ ମୁଖ୍ୟମଂତ୍ରୀ ପ୍ରଧାନମଂତ୍ରୀ ରୂପେ (Prime Minister) ଅଭିହିତ ହେଉଥିଲେ । ଅନ୍ୟ ଦୁଇଜଣ ମଂତ୍ରୀ ହେଲେ ଶ୍ରୀ ନିତ୍ୟାନଂଦ କାନୁନ୍‌ଗୋ ଏବଂ ସଂବଲପୁରର ବୋଧରାମ ଦୁବେ । ଏହାଛଡ଼ା ଚାରିଜଣ ପାର୍ଲିଆମେଂଟାରୀ ସେକ୍ରେଟାରୀ ମଧ୍ୟ ନିଯୁକ୍ତ ହୋଇଥିଲେ । ସେମାନେ ହେଲେ ସର୍ବଶ୍ରୀ ଯଦୁମଣି ମଂଗରାଜ, ଜଗନ୍ନାଥ ମିଶ୍ର, ପ୍ୟାରୀଶଂକର ରାୟ ଏବଂ ରାଧାକୃଷ୍ଣ ବିଶ୍ୱାସରାଏ । ବାଲେଶ୍ୱରର ଶ୍ରୀ ମୁକୁଂଦ ପ୍ରସାଦ ଦାସ ଏବଂ ଶ୍ରୀ ନଂଦକିଶୋର ଦାସ ଯଥାକ୍ରମେ ବିଧାନସଭାର ବାଚ୍‌ସ୍ପତି ଏବଂ ଉପବାଚ୍‌ସ୍ପତି ରୂପେ ନିର୍ବାଚିତ ହୋଇଥିଲେ । ସେତେବେଳେ ଓଡ଼ିଶା ଆସେଂବ୍ଲି ରେଭେନ୍‌ସା କଲେଜ୍ ହଲ୍‌ରେ ବସୁଥାଏ ।

ପ୍ରକାଶ ଥାଉ କି, ସ୍ୱତଂତ୍ର ଓଡ଼ିଶା ପ୍ରଦେଶ, ଯାହା ଜଏଂଟ୍ ସିଲେକ୍ଟ କମିଟି ରିପୋର୍ଟ ଅନୁଯାୟୀ ୧୯୩୫ ମସିହା ଭାରତ ଶାସନ ଆଇନ୍‌ରେ ଘୋଷିତ ହୋଇଥିଲା ଏବଂ ଯାହା ଏପ୍ରିଲ୍ ପହିଲା ୧୯୩୬ ମସିହାରେ କାର୍ଯ୍ୟକାରୀ ହେଲା, ବହୁ ଲୋକଂକୁ ହତାଶ କରିଥିଲା । ମେଦିନାପୁର, ସିଂହଭୂମି ଜିଲ୍ଲା ଦୁଇଟି ଏବଂ ଗଂଜାମ ତଥା ବିହାର, ମଧ୍ୟପ୍ରଦେଶ ଓ ମାଡ୍ରାସ୍ ପ୍ରେସିଡେନ୍ସିର କେତେକ ଓଡ଼ିଆଭାଷୀ ଅଂଚଳ ଓଡ଼ିଶାର ମାନଚିତ୍ରରୁ ବାଦ୍‌ପଡ଼ିଲା । ଏଥିରେ ଓଡ଼ିଶାର ଜନମତ ବିଶେଷ କ୍ଷୁବ୍ଧ ହୋଇଥିଲା । ୧୯୨୮ ମସିହାରେ ପଂଡିତ ଗୋପବଂଧୁ ଦାସ ଏବଂ ୧୧ ଫେବୃୟାରୀ ୧୯୩୪ ମସିହାରେ ଉତ୍କଳ ଗୌରବ ମଧୁସୂଦନ ଦାସ ଇହଧାମ ତ୍ୟାଗକରିଥିଲେ । ଏହି ଖଂଡିତ ଓ କବଂଧ ଉତ୍କଳ ଦେଖିଥିଲେ ସେମାନେ ମର୍ମଂତୁଦ ଦୁଃଖ ଅନୁଭବ କରିଥାଂତେ । ସେ ଯାହାହେଉ, ମହାମାନ୍ୟ ସମ୍ରାଟଂକର କାଉନ୍‌ସିଲ୍‌ରେ ପ୍ରଦତ୍ତ ୩ ମାର୍ଚ୍ଚ ୧୯୩୬ ଆଦେଶାନୁଯାୟୀ ସ୍ୱତଂତ୍ର ଉତ୍କଳ ପ୍ରଦେଶ କଟକ ରେଭେନ୍‌ସା କଲେଜ ହଲ୍‌ରେ ମହାସମାରୋହର ସହିତ ଉଦ୍‌ଘାଟିତ ହୋଇଥିଲା । ସାର୍ ଜନ୍ ହବାକ୍ ପ୍ରଥମ ଗଭର୍ଣ୍ଣର ରୂପେ ସେହିଦିନ କଟକଠାରେ ଶପଥ ଗ୍ରହଣ କରଂତି ।

ଏହାପରେ ୧୯୩୬ ଜୁନ୍‌ରେ ନୂତନ ଓଡ଼ିଶା ପ୍ରଦେଶର ବିଭିନ୍ନ ସମସ୍ୟା

ନିର୍ଦ୍ଧାରଣ ପାଇଁ ଯଥା – ନୂଆ ପ୍ରଦେଶର ରାଜଧାନୀ, ହାଇକୋର୍ଟ, ବିଶ୍ୱବିଦ୍ୟାଳୟ ଓ ଜିଲ୍ଲାନିରୂପଣ ଏବଂ ବିଭିନ୍ନ ପ୍ରଶାସନିକ ବ୍ୟାପାର ଆଦିରେ ସିଦ୍ଧାଂତ ନେବାପାଇଁ ଏକ ଆଡ୍‌ମିନିଷ୍ଟ୍ରେଟିଭ୍ କମିଟି ଗଠନ କରାଯାଏ। ଏଥିରେ ସାର୍ ଜନ୍ ହବାକ୍ (ଚେୟାରମ୍ୟାନ୍), ମଧୁସୂଦନ ଦାସ, ଲକ୍ଷ୍ମୀଧର ମହାଂତି, ଏନ୍. ଆର୍. ନାଇଡୁ, ଡବ୍ଲ୍ୟୁ. .ଓ. ନିଉସାମ୍, ନୀଳମଣି ସେନାପତି, ଲୋକନାଥ ମିଶ୍ରଂକ ସମେତ ୯ ଜଣ ସଦସ୍ୟ ଅଂତର୍ଭୁକ୍ତ ଥିଲେ। ପରେ ଗଣତାଂତ୍ରିକ ପ୍ରକ୍ରିୟାରେ ମଂତ୍ରିମଂଡଳ ଗଠିତ ହୋଇ ଶାସନ ଦାୟିତ୍ୱ ହାତକୁ ନିଅଂତି।*

**ରେଭେନ୍‌ସାରେ ଗୃହ-ପ୍ରବେଶ –**

ଏହିପରି ଜାତୀୟ ଓ ପ୍ରାଦେଶିକ ପୃଷ୍ଠଭୂମିରେ ୧୯୩୭ ମସିହା ଜୁଲାଇ ଆଡ଼କୁ କଟକ ରେଭେନ୍‌ସା କଲେଜ୍‌ରେ ତୃତୀୟ-ବାର୍ଷିକ କଳା ଶ୍ରେଣୀରେ ନାମ ଲେଖାଇଲି। ତିଥି ଲଗ୍ନ ଶୁଭ ଥିଲା କି ଅଶୁଭ ଥିଲା ଜାଣେନାହିଁ। ମାତ୍ର ଓଡ଼ିଶାର ଏହି ପ୍ରମୁଖ ଶିକ୍ଷାନୁଷ୍ଠାନରେ ମୋର ଯେଉଁ ଦୁଇ ବର୍ଷ ବିତିଥିଲା, ତାହା ଘୋର ଅଶାଂତି, ଆଂଦୋଳନ, ଧର୍ମଘଟ ଏବଂ ଜେଲ୍ ଜୋରିମାନା ଆଦି ଦଂଡବିଧାନ ଭିତରେହିଁ କଟିଥିଲା। ମୁଁ ଏଠାରୁ ବି.ଏ. ପାସ୍ କରିବା ଯାଏଁ କେବଳ ଝଡ଼ଝଂଜା ଭିତରେହିଁ କଟାଇଛି।

ପ୍ରିନ୍‌ସିପାଲ୍ ତ୍ରିପାଠୀ ସାହେବ୍ ଅଳ୍ପଦିନ ପରେ କାର୍ଯ୍ୟରୁ ଅବସର ନିଅଂତି। ତାଂକ ସ୍ଥାନରେ ପ୍ରିନ୍‌ସିପାଲ୍ ହୋଇ ଆସଂତି ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ଡଃ ପ୍ରାଣକୃଷ୍ଣ ପରିଜା ସାହେବ୍। ଓଡ଼ିଶାର ପ୍ରାଣକେଂଦ୍ର ଏବଂ ଶିକ୍ଷା ଓ ସଂସ୍କୃତିର ପୀଠସ୍ଥଳି କଟକ ନଗରୀରେ ରହିବାର ମୋତେ ସୁଯୋଗ ମିଳେ। ଏଥିପୂର୍ବରୁ ମୁଁ ଅବଶ୍ୟ ଅନେକ ଥର କଟକ ଆସିଛି ଏବଂ କିଛିଦିନ ରହି ଚାଲିଯାଇଛି– ବର୍ତ୍ତମାନ୍ ମୁଁ କଟକରେ କୁଣିଆ ନୁହେଁ; ସେଠାର ଜଣେ ଅଧିବାସୀ। ମୁଁ ଦିବାଧାୟୀ ଭାବରେହିଁ ରେଭେନ୍‌ସାରେ ଯୋଗଦେଇଥିଲି; ରହୁଥିଲି ତେଲେଂଗା ବଜାରସ୍ଥିତ ମହନୀ ଅପା ବା ଡାକ୍ତର ଜଗନ୍ନାଥ ଦାସଂକ ଘରେ, ଅଂତତଃ କିଛିକାଳ ପାଇଁ। ପରେ ଅନ୍ୟତ୍ର ରହିବାକୁ ପଡ଼େ।

ସେତେବେଳେ ଡଃ ଜଗନ୍ନାଥ ଦାସ ବାହାରେ କେଉଁଠି ଥିଲେ; ବୋଧହୁଏ, କୋରାପୁଟ୍ ବା ଅନ୍ୟ କେଉଁଠି ସିଭିଲ୍ ସର୍ଜନ୍ ଭାବରେ। ରୋଜ୍ ସାଇକେଲ୍ ନେଇ କଲେଜ୍ ଆସୁଥିଲି। କଟକରେ କିଛିଦିନ ରହିବାଦ୍ୱାରା ମୁଁ ଓଡ଼ିଆ ସଂସ୍କୃତିର ମହାସ୍ରୋତରେ ସାମିଲ୍ ହେବାର ସୁଯୋଗ ପାଇଲି; ଓଡ଼ିଆ ଜୀବନଶୈଳୀ ସହିତ ପରିଚିତହେଲି। ମୁଁ ଉଚ୍ଚକୋଟୀର ତଥା ସଂଭ୍ରାଂତ ଓଡ଼ିଆ ପରିବାର ଓ ବହୁ ମେଧାବୀ ଧୀମାନ୍ ଛାତ୍ର ଓ ନାଗରିକଂକ ସଂସ୍ପର୍ଶରେ ଆସିଲି। ମୁଁ ବିଭିନ୍ନ ଶ୍ରେଣୀର ବହୁ ପ୍ରତିଭାବାନ୍ ଲୋକଂକୁ ଭେଟିଲି, ଜାଣିଲି। ବହୁ ଶିଳ୍ପୀ, ଲେଖକ,

* (ଡକ୍ଟର ଏ. ସି. ପ୍ରଧାନଂକ 'A Study of History of Orissa)।

ସମାଜସେବୀ ଓ କଳାକାର ତଥା ଆଇନ୍‌ଜୀବୀ ଓ ରାଜନୀତିଜ୍ଞମାନଂକ ସଂପର୍କରେ ଆସିଲି। ମୁଁ ଏଥିପୂର୍ବରୁ କଲିକତା ଏବଂ ବେନାରସରେ ପ୍ରାୟ ତିନିବର୍ଷ ଛାତ୍ରଜୀବନ କଟାଇଥିଲି; ବର୍ତ୍ତମାନ ଓଡ଼ିଶାର ହୃତ୍‌ପିଂଡ ସ୍ଥଳୀକୁ ଆସିଲି। ମୋର ମନେହେଲା ଓଡ଼ିଶାର ଛାତ୍ର ଓ ବୁଦ୍ଧିଜୀବୀ ଭାରତର କୌଣସି ପ୍ରଦେଶର ଛାତ୍ର ଓ ବୁଦ୍ଧିଜୀବୀଂକଠାରୁ ଊଣା ନୁହଂତି; ବରଂ ଅନେକ ଦିଗରୁ ସେମାନଂକଠାରୁ ଉଚ୍ଚରେ। ଓଡ଼ିଶାର ଶିଳ୍ପକଳା, ଅନନ୍ୟଭାସ୍କର୍ଯ ଏବଂ ଉଚ୍ଚାଂଗ ସାହିତ୍ୟ, ବିଶେଷ ଭାବରେ ରୀତି-ଯୁଗର ଅମର କୃତି ସାରା ଭାରତରେ ଏବଂ ପୃଥିବୀରେ ମଧ୍ୟ ଅତୁଳନୀୟ। ବହୁବୈଦେଶିକ କଳାପ୍ରେମୀ ଓଡ଼ିଶାର ଶିଳ୍ପସ୍ଥାପତ୍ୟକୁ ଭାରତର ଶ୍ରେଷ୍ଠ ରତ୍ନ ବୋଲି କହିଛଂତି; ଯଥା– ଫର୍ଗୁସନ୍।

ମାତ୍ର କେତେକ ବିଦେଶୀ ଐତିହାସିକ ଓଡ଼ିଶାର ନିମକ ଖାଇ ମଧ୍ୟ ଓଡ଼ିଶା ପ୍ରତି ଜାଣିଶୁଣି ଅବିଚାର କରିଛଂତି। ହଂଟରଂକ ଓଡ଼ିଶା ଇତିହାସରେ ଦେଖୁଁ, ସେ ଓଡ଼ିଆଂକୁ 'ବୋକା' ବା ନିର୍ବୋଧ (ଷ୍ଟୁପିଡ୍) କହିବାକୁ ଛାଡ଼ିନାହାଂତି। ସେ ବହୁବର୍ଷ ଓଡ଼ିଶାରେ ଚାକିରି କରି ଓଡ଼ିଶାର ଦାନାପାଣିରେ ହୃଷ୍ଟପୁଷ୍ଟ ହୋଇ ଶେଷରେ ତା'ର ପ୍ରତିଦାନ ଦେଇଯାଇଛଂତି ଓଡ଼ିଶାକୁ ଭାରତର 'ବୋଏସିଆ' କହି। ବୋଏସିଆ ଥିଲା ପ୍ରାଚୀନ ଗ୍ରୀସ୍‌ର ଏକ ନିର୍ବୋଧମାନଂକ ବାସସ୍ଥାନ।

ରେଭେନ୍‌ସା କଲେଜ ସେତେବେଳକୁ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା। ଓଡ଼ିଶା ବିଶ୍ୱବିଦ୍ୟାଳୟ ହେବାକୁ ଆହୁରି ଛଅ ବର୍ଷ ଅପେକ୍ଷା କରିବାକୁ ପଡ଼ିଥିଲା। ଓଡ଼ିଶାର ସବୁ ସ୍କୁଲ୍ ଓ କଲେଜ୍ ପାଟନା ବିଶ୍ୱବିଦ୍ୟାଳୟଦ୍ୱାରା ପରିଚାଳିତ ହେଉଥିଲା।

ମୁଁ ଅର୍ଥଶାସ୍ତ୍ର ଏବଂ ଇତିହାସ ବିଷୟ ନେଇଥିଲି। ଇକୋନୋମିକ୍‌ସ ଅନର୍ସ୍ ମଧ୍ୟ ନେଇଥିଲି। ଏହାଛଡ଼ା ଓଡ଼ିଆ ଓ ଇଂରାଜୀ ତ ବାଧ୍ୟତାମୂଳକ ବିଷୟ ଥିଲା। ସ୍ୱନାମଧନ୍ୟ ଓଡ଼ିଆ ଅଧ୍ୟାପକ ପ୍ରଫେସର ଡଃ ଆର୍ତ୍ତବଲ୍ଲଭ ମହାଂତି ଆମର ଗୋଟିଏ ଓଡ଼ିଆ କ୍ଲାସ୍ ନେଉଥିଲେ। ପ୍ରଫେସର୍ ଡଃ ସଦାଶିବ ମିଶ୍ର ଶେଷ ଆଡ଼କୁ ଆମର ଏକ ଅର୍ଥନୀତି କ୍ଲାସ୍ ନେଉଥିଲେ। ଏ ଦୁଇଜଣ ଶିକ୍ଷକଂକଠାରୁ ଶିକ୍ଷାପାଇବାର ସୌଭାଗ୍ୟ ମୋର ହୋଇଥିଲା। ଏ ସଂପର୍କରେ କବି ବୈକୁଂଠନାଥ ପଟ୍ଟନାୟକଂକର ଗୋଟିଏ କଥା ମନେ ପଡ଼େ। ସେ ଥରେ ତାଂକ ଗୁରୁଂକ ସଂବନ୍ଧରେ କହୁଥିଲେ ଯେ, ସେ ସତ୍ୟବାଦୀ ବନବିଦ୍ୟାଳୟରେ ପଢୁଥିବାବେଳେ ପଂଡିତ ନୀଳକଂଠ ଦାସ ଥିଲେ ଜଣେ ଶିକ୍ଷକ। ଥରେ କ୍ଲାସ୍‌ରେ ପାଠ ନ କହିପାରିବାରୁ ପଣ୍ଡିତ ନୀଳକଂଠ ତାଂକର ବାଁକାନଟି ମୋଡ଼ିଦେଇଥିଲେ। ସେତିକି କହି ସେ ଟିକିଏ ଅଟକିଗଲେ। ତା'ପରେ ବାଷ୍ପ ଗଦ୍‌ଗଦ କଂଠରେ କହିଲେ– ସେ ସିନା ମୋର ବାଁ କାନଟି ମୋଡ଼ିଦେଇଥିଲେ; ଡାହାଣ କାନଟି ମୋଡ଼ିବାପାଇଁ ଓଡ଼ିଶାର ଆଉ କୌଣସି ଲୋକ ରହିଲେ ନାହିଁ।

ପ୍ରଫେସର୍ ଆର୍ତ୍ତବଲ୍ଲଭ ମହାଂତି ମୋତେ ସବୁବେଳେ ଟିକିଏ ଭିନ୍ନ ଆଖିରେ ଦେଖୁଥିଲେ। ତୁ-ତା ରେ-ରା କରୁଥିଲେ ସିନା; ହେଲେ ତାଂକ ଚାହାଣୀରେ ଟିକିଏ ସଂଭ୍ରମର ଚିହ୍ନ ଥିଲା। ସେ କେବେ ମୋତେ ପଦେ କଟୁକଥା କହିନାହାଂତି। ଯଦିଚ୍ ମୁଁ ନାନା ରାଜନୀତିକ କାମରେ ମାତି ତାଂକ ଦିଆ ହୋମ୍‌ଟାସ୍କରେ ବରାବର ଅବହେଳା କରୁଥିଲି।

**ଆର୍ତ୍ତବାବୁ –**

ପ୍ରଫେସର୍ ଆର୍ତ୍ତବଲ୍ଲଭ ମହାଂତିଙ୍କୁ ସମସ୍ତେ 'ଆର୍ତ୍ତବାବୁ' କହଂତି। ତାଂକ ପରି ଶବ୍ଦପାଗଳ ଲୋକ ମୁଁ ଆଉ କାହାରିକୁ ଦେଖିନି। ଓଡ଼ିଆ ଭାଷାକୁ ସେ ପ୍ରାଣଠାରୁ ଅଧିକ ଭଲପାଉଥିଲେ। ସେ ସାରଳା ମହାଭାରତର ଶୁଦ୍ଧ ସଂକଳନ କରିଯାଇଛଂତି। ଏହାଛଡ଼ା ପ୍ରାଚୀ ସମିତି ସ୍ଥାପନ କରି ବହୁ ଓଡ଼ିଆ କାବ୍ୟ-କବିତା, ଟୀକା ଓ ସୁଦୀର୍ଘ ମୁଖବଂଧ ସହ ପ୍ରକାଶ କରିଯାଇଛଂତି। ଗୋଟିଏ ଓଡ଼ିଆ ଶବ୍ଦ ପାଇଲେ ସେ କୋଟିନିଧି ପାଇଲାପରି ମନେକରୁଥିଲେ। ସାରଳା ମହାଭାରତରୁ ସେ ଦୈତମାନଂକ ବଂଧୁ ଅର୍ଥରେ ଦୈତାରି ଶବ୍ଦ ବ୍ୟବହାର ହୋଇଥିବା ଦେଖି ଟିକିଏ ଅସୁବିଧାରେ ପଡ଼ିଥିଲେ। ଆଉ କିଏ ହୋଇଥିଲେ ସେ ସାରଳାଦାସ ଭୁଲ୍ ଲେଖିଛଂତି ବୋଲି କହିଥାଂତେ କିଂବା ଶବ୍ଦଟିକୁ ବଦଳାଇଦେଇଥାଂତେ। ମାତ୍ର ସେ ଶବ୍ଦଟିକୁ ନ ବଦଳାଇ ଅବିକଳ ସେହିପରି ରଖିଥିଲେ। କେତେବର୍ଷ ପରେ ସେ ବେଦରୁ ଦୈତମାନଂକ ବଂଧୁ ଅର୍ଥରେ ଦୈତାରି ଶବ୍ଦର ପ୍ରୟୋଗ ଦେଖିଲେ। ତାଂକ ଆନଂଦ କହିଲେ ନସରେ। ସେ କ୍ଲାସରେ କହିଲେ, ସାରଳାଦାସଂକ ସଂସ୍କୃତରେ ନିଶ୍ଚୟ ପାଂଡିତ୍ୟ ଥିଲା, ତାହା ନହେଲେ ସେ ତାଂକ ମହାଭାରତରେ ଯେଉଁ ସବୁ ଶବ୍ଦ ପ୍ରୟୋଗ କରିଛଂତି, ତାହା କରିପାରି ନଥାଂତେ। ମୁଁ ମୋର କେତେକ କବିତାରେ 'ହେର' (ଦେଖିବା ଅର୍ଥରେ) ଏବଂ 'ଶିହରି', 'ଶିହରଣ' ଶବ୍ଦ ବ୍ୟବହାର କରିଥିବାରୁ ମୋତେ କେତେକ ପତ୍ରକାର ଓ ପାଠକ ମୁଁ ଏହା ବଂଗଳାରୁ ନେଇଛି ବୋଲି ସମାଲୋଚନା କରିଥିଲେ। ମୁଁ ଆର୍ତ୍ତବାବୁଂକୁ ଏ ବିଷୟ ପଚାରିଥିଲି। ସେ ପାଟିକରି କହିଉଠିଲେ 'ହେର' କାହିଁକି ବଂଗଳା ହେବ। ଏହା ତ ଖାଂଟି ଓଡ଼ିଆ ଶବ୍ଦ। ପୁରୀରେ ହେରାଗୌରୀ ସାହି ଅଛି। ସେଥିରେ 'ହେର' ଶବ୍ଦ ଦେଖିବା ଅର୍ଥରେହିଁ ବ୍ୟବହାର କରାଯାଇଛି। 'ଶିହରି', 'ଶିହରଣ' ଏକ ଖାଂଟି ଓଡ଼ିଆ ଶବ୍ଦ, ଏହା ବଂଗଳା କାହିଁକି ହେବ ?

ତାଂକ ପରି ଜଣେ ମନନଶୀଳ ବ୍ୟକ୍ତି ମୁଁ ଖୁବ୍ କମ୍ ଦେଖିଛି। ଓଡ଼ିଆ ଭାଷା ଯେପରି ତାଂକ ପ୍ରାଣର ସର୍ବସ୍ୱ ଥିଲା। ସେ ବହୁ ପ୍ରାଚୀନ କାବ୍ୟ-ଗାଥା – 'ଲାବଣ୍ୟବତୀ', 'ବିଦଗ୍ଧ ଚିଂତାମଣି', 'ବୈଦେହୀଶବିଳାସ', ଯଦୁମଣିଂକ 'ପ୍ରବଂଧ ପୂର୍ଣଚନ୍ଦ୍ର' ପ୍ରଭୃତିର ବିଶୁଦ୍ଧ ସଟୀକ ସଂସ୍କରଣ ପ୍ରକାଶ କରିଯିବା ସଂଗେ ସଂଗେ

ଓଡ଼ିଶାରେ ମିଳିଥିବା ଶିଳାଲିପିଗୁଡ଼ିକ ମଧ୍ୟ ସେ ଏକ ସଂକଳନରେ ଫଟୋ-ଚିତ୍ରସହ ପ୍ରକାଶ କରିଯାଇଛନ୍ତି। ଓଡ଼ିଆ ଭାଷାର ଇତିହାସ ଲେଖିଥିବା ବିଜୟଚନ୍ଦ୍ର ମଜୁମଦାରଙ୍କ ଉପରେ ସେ ବଡ଼ ଚିଡ଼ୁଥିଲେ। ମଜୁମଦାର ତାଙ୍କ ବହିରେ କେତେକ ବିଶିଷ୍ଟ ଓଡ଼ିଆ କାବ୍ୟକୁ ଅଶ୍ଳୀଳତାପୂର୍ଣ୍ଣ ବୋଲି କହିଥିବାରୁ ଆର୍ତ୍ତବାବୁ ତାଙ୍କର ଏକ ବହିର ମୁଖବନ୍ଧରେ ତାଙ୍କୁ କଠୋର ସମାଲୋଚନା କରିଛନ୍ତି। ତାଙ୍କ ସହିତ ମୋର ଶେଷ ଦେଖା ହୋଇଥିଲା ପରବର୍ତ୍ତୀ କାଳରେ ଏକ ସାହିତ୍ୟ-ସଭାରେ। ମୁଁ ତାଙ୍କୁ ଶ୍ରୀରାମଚନ୍ଦ୍ରଭବନରେ ହେଉଥିବା ଏକ ସାହିତ୍ୟ ସଭାରେ ଭେଟିଥିଲି। ମିଟିଂ ପରେ ତାଙ୍କୁ ମୋ ଗାଡ଼ିରେ ଆଣି ତାଙ୍କ ଘରେ ଛାଡ଼ି ଦେଇ ଆସିଥିଲି। ସେ ଗାଡ଼ିରେ କହୁଥିଲେ ତାଙ୍କର ଆଫେଡ଼ିସ୍‌ସାଇଟିଜ୍ ହୋଇଛି ବୋଲି ଡାକ୍ତରମାନେ କହୁଛନ୍ତି ଓ ବେଳେବେଳେ ଭାରି ବିନ୍ଧୁଛି। ମୁଁ ତାଙ୍କୁ କହିଲି, ଆପଣ ଏପରି ଅବସ୍ଥାରେ ମିଟିଂକୁ କାହିଁକି ଆସିଲେ; ବରଂ ଘରେ ବିଶ୍ରାମ ନେବା ଉଚିତ ଥିଲା। ସେ ବେପରବା ଭାବେ କହିଲେ– "ହଁ ମ, ଯା' ହବାର ଥିବ ହେବ।" ସେହି ତାଙ୍କ ସଂଗେ ମୋର ଶେଷଦେଖା ଏବଂ ଶେଷ କଥାବାର୍ତ୍ତା। ଏହାର ତିନି-ଚାରି ଦିନ ପରେ ସେ ଇହଧାମ ତ୍ୟାଗ କରଂତି।

**ବୀରେନ୍ ମିତ୍ର –**

ଓଡ଼ିଶାର ପୂର୍ବତନ ମୁଖ୍ୟମଂତ୍ରୀ ବୀରେନ୍ ମିତ୍ର ମୋର ସହପାଠୀ ଥିଲା। ମୁଁ ତାକୁ ବିରେନ୍ ବୋଲି ଡାକୁଥିଲି। ସେ ମୋତେ ସଚ୍ଚି, କେତେବେଳେ 'ଶଳା ସଚ୍ଚି' ବୋଲି ଡାକୁଥିଲା। ବୀରେନ୍ ସେତେବେଳେ ସଂପୂର୍ଣ୍ଣ ସୁସ୍ଥ ଥିଲା। ସାଇକେଲ୍‌ରେ ସବୁଆଡ଼େ ଯିବା ଆସିବା କରୁଥିଲା, ଟେନିସ୍ ଖେଳୁଥିଲା। ଅଳ୍ପ କେତେ ବର୍ଷ ପରେ ସେ କୌଣସି ବେମାରିରେ ଛୋଟା ହୋଇଗଲା। ମୁଁ ସେତେବେଳକୁ କଲିକତାରେ ଚାକିରି କରୁଥିଲି। ମୋତେ ପେନିସିଲିନ୍ ପଠାଇବାକୁ ସେ ଲେଖିଥିଲା।

କଟକରେ ପଢ଼ିଲାବେଳେ ରେଭେନ୍‌ସାରେ ସେ ମୋର ତୀବ୍ର ପ୍ରତିଦ୍ୱନ୍ଦୀ ଥିଲା। ମୁଁ ରେଭେନ୍‌ସାକୁ ଆସିବା ଆଗରୁ ସେ ସାରା ରେଭେନ୍‌ସାରେ ପ୍ରତିପତ୍ତି ଜମାଇଆସିଥାଏ। ସବୁଥିରେ ସେହି ଥିଲା କର୍ମକର୍ତ୍ତା – ସେକ୍ରେଟାରୀ, ପ୍ରେସିଡେଂଟ୍ ଇତ୍ୟାଦି। ତାକୁ ହଟାଇବା ପିଲା କେହି ନଥିଲେ। ମୁଁ ଆସି ତାକୁ ପ୍ରଚଂଡ ଆଘାତ ଦେଲି ଏବଂ କେତେକ ଅନୁଷ୍ଠାନରୁ ତାହାର ଦଖଲ ହଟାଇଲି। ମୁଁ ରେଭେନ୍‌ସା କଲେଜ୍‌ରେ ଭର୍ତ୍ତିହେବାର କେତେକ ଦିନ ପରେ ଇକୋନୋମିକସ୍ ସୋସାଇଟିର ସେକ୍ରେଟାରୀ ନିର୍ବାଚନ ହେଲା। ମୁଁ ତାକୁ ବହୁ ଭୋଟ୍‌ରେ ହରାଇ ନିର୍ବାଚିତ ହେଲି। ସେ ହାରିଯାଇ ମୋ ଉପରେ ରକ୍ତଚାଉଳ ଚୋବାଉଥିଲା। ମାତ୍ର ପରେ ପୁଣି ଆମେ ଘନିଷ୍ଠ ସାଂଗ ହୋଇଗଲୁ।

**ରେବା ମଲ୍ଲିକ୍ –**

ଆମ କ୍ଲାସ୍‌ରେ ଯେଉଁ ସାତ-ଆଠଜଣ ଛାତ୍ରୀ ପଢୁଥିଲେ, ସେମାନେ ସମସ୍ତେ ମୋତେ ଭୋଟ୍ ଦେଇଥିଲେ। କେତେକ ଛାତ୍ର ମୋତେ ସେମାନଂକ ମଧ୍ୟରୁ ଜଣେ ଦି'ଜଣ ସହପାଠିନୀଂକ ସହିତ ଜଡ଼ାଇ ନାନା ଗୁଜବ ପ୍ରଚାରକଲେ, ମାତ୍ର ସେଥିରେ ମୋର କିଛି କ୍ଷତି ହେଲାନାହିଁ। ମୋର ଅନ୍ୟତମ ସହପାଠିନୀ ରେବା ମଲ୍ଲିକ୍ ସହ ମୋତେ ଜଡ଼ାଇ ସେତେବେଳେ 'ଦେଶକଥା' ନାମକ ଏକ ଦୈନିକ ଖବରକାଗଜରେ ବହୁ କୁତ୍ସାମୂଳକ ଓ ବ୍ୟଂଗରସପୂର୍ଣ୍ଣ ଲେଖା ପ୍ରକାଶପାଉଥାଏ। ଏହାର ସଂପାଦକ ଥାଆଂତି ଲାଲା ନଗେନ୍ଦ୍ର କୁମାର ରାଏ। ସେ ବର୍ଷେ-ଦୁଇବର୍ଷ କାଳ ମୋ ବିରୁଦ୍ଧରେ ଅନବରତ କୁତ୍ସାରଚନା କରିଛଂତି। ସେ କାଗଜ ସଂଜବେଳେ ବାହାରେ। ତାହା ବାହାରିବା ମାତ୍ରକେ ହକରମାନେ 'ଦେଶକଥା' 'ଦେଶକଥା' ଡାକିଲାବେଳେ କଟକର ବହୁ ଲୋକ ତାହା ଆଗ୍ରହରେ କିଣି ପଢୁଥାଂତି।

ରେବା ମଲ୍ଲିକକୁ ମୋ ସଂଗେ ଜଡ଼ାଇ ଏପରି ଦୁର୍ନାମ ରଟାଇବା 'ଦେଶକଥା' ପକ୍ଷରେ ଏକ ଅଶାଳୀନ କାର୍ଯ୍ୟ। ସେ ନିରୀହା ଓ ସରଳା ଝିଅଟିକି ବଦନାମ୍ କରି ଲାଲା ନଗେନ୍ କ'ଣ ସାର୍ଥକତା ପାଇଲେ, ତାହା କେବଳ ସେ'ଇ ଜାଣଂତି। ପ୍ରତିଦିନ କ୍ଲାସରେ ରେବା ସଂଗେ ଦେଖାହେଲେ ମୋତେ ଭୀଷଣ ଦୁଃଖଲାଗେ। ରେବା ସାହସିନୀ ଝିଅ। ସେ କେବଳ ମୋତେ କରୁଣ ଆଖିରେ ବେଳେବେଳେ ଚାହେଁ। ମୁଁ ପ୍ରାୟ ପଛ ବେଂଚ୍‌ରେ ବସୁଥାଏ। ଝିଅମାନେ ବସୁଥାଂତି ସାମ୍ନାରେ। ସେତେବେଳେ ମୁଁ ଯେଉଁ ଦୁଇଟି କବିତା ଲେଖିଥିଲି, ତାହା ସାରା ଓଡ଼ିଶାରେ ବିଦଗ୍ଧ ପାଠକମହଲରେ ଭୀଷଣ ଆଦୃତ ହୋଇଥିଲା। ସେଥିମଧ୍ୟରୁ ଗୋଟିଏ ହେଉଛି 'ଝଡ଼'; ଯାହା 'ପାଂଡୁଲିପି'ର ପ୍ରଥମ କବିତା।

''ଏହି ଯେ ଆସୁଛି ଝଡ଼
　　　　କର ସଖି ତାରେ ନମସ୍କାର
ତା'ପଦେ ପ୍ରଣତି ବାଢ଼େ
　　　　ଗିରି, ବନ, ନଦୀ, ପାରାବାର।
ଏ ଝଡ଼ ଦେଇଚି ସଖି,
　　　　ତୁମକୁ ଯେ ମୋର ପରିଚୟ,
ଭାଂଗିବାର ମଂତ୍ର ସାଥେ
　　　　ଗଢ଼ିବାର ଭୂମିକା ଅକ୍ଷୟ।''

ଏ କବିତାଟି ପ୍ରଥମେ 'ସହକାର' ପତ୍ରିକାରେ ୧୯୩୭-୩୮ ମସିହାରେ ପ୍ରକାଶପାଇଥିଲା। ଏହା ସାରା ଓଡ଼ିଶାରେ ଏକ କରୁଣ ପ୍ରତିକ୍ରିୟା ସୃଷ୍ଟି କରିଥିଲା।

ଅନ୍ୟ କବିତାଟି ହେଉଛି– 'ହେ ମୋର ନିରପରାଧ ଦେଶ'। ତା'ର

ଗୋଟିଏ ପଦ୍‌କ୍ତି ଉଦ୍ଧାର କଲି –

"ମନେପଡ଼େ ଆଜି –
କରୁଣ କପୋତୀ ସମ ଭୟାତୁର ଶତମୁଖରାଜି
ମୋ ପାଇଁ ଯା କଳଂକର ଟିକା
ମୋ ଦେଶେ ନାଇଲା ଦିନେ ସ୍ୱଇଚ୍ଛାରେ ମୁଖ କରି ଫିକା
କିରାତର ଶରେ ବିଦ୍ଧ ହୁଏ ଯଥା ବନର ହରିଣୀ,
ତେସନ ସହିଚି ଦୁଃଖ ମୋହ ପାଇଁ 'ମୋ' ସହପାଠିନୀ
ଲଜ୍ଜାର ତିଳକ
ସ୍ୱେଚ୍ଛାରେ ନେଇଛି ଭାଲେ ନାରୀ ଏକ, ଧିକ୍! ଶତ ଧିକ୍!!"

ମୁଁ ରେବାକୁ ଠିକ୍ ଭଲପାଉଥିଲି କି ନାହିଁ ଜାଣେନି; କିଂତୁ ପ୍ରବଳ ଝଡ଼ ଓ ବର୍ଷା ତୋଫାନରେ ଜଣେ ସହଯାତ୍ରୀ ଯେପରି ତା'ର ନିକଟମ ସହଯାତ୍ରିଣୀ ଆଡ଼କୁ ଟାଣିହୋଇଯାଏ ଏବଂ ଦୁହେଁ ଦୁହିଁକି ଜଡ଼େଇଧରଂତି, ଅବସ୍ଥାଟା ଥିଲା ଅନେକଟା ସେହିପରି। ମନେହେଉଥିଲା, ଗୋଟିଏ ପ୍ରବଳ ଝଂଝାର ନିଶ୍ୱାସରେ ଯେପରି ଦୁଇଟି ଅସହାୟ ନରନାରୀ ପରସ୍ପର ଭିତରେ ଆଶ୍ରୟ ଖୋଜୁଛଂତି।

ଗୋଟିଏ ବଂଗାଳୀ ପରିବାରର ଝିଅ ରେବା। ତାହାର ପିତାମାତା ଓ ଭାଇଭଉଣୀଂକ ସହ ସେତେବେଳେ କଟକରେ ରହୁଥାଏ। ମୁଁ କେତେ ଥର ସେମାନଂକ ଘରକୁ ଯାଇଛି; ମାତ୍ର ତାକୁ ଏ ଝଂଝାର କବଳରୁ ରକ୍ଷା କରିବାର ଶକ୍ତି ମୋର ନଥାଏ।

କଲେଜ୍ ଛାଡ଼ିବାପରେ କଲିକତାରେ ରେବା ସହିତ ଥରେ ଦି'ଥର ଦେଖାହୋଇଥିଲା। କେବଳ ଗଭୀର ଦୁଃଖର ଦୀର୍ଘଶ୍ୱାସ ଛଡ଼ା ଆଉ ଆମ ପାଖରେ କିଛି ନ ଥିଲା ପରସ୍ପରକୁ ଦେବାପାଇଁ। ୱେଲିଂଗ୍‌ଟନ୍ ସ୍କୋୟାର (ପରେ ନାମ ବଦଳି ରାଜା ସୁବୋଧ ମଲ୍ଲିକ୍ ସ୍କୋୟାର)ରେ ଦୀର୍ଘ ସମୟ ବସିରହିଲୁ। ଅଧିକାଂଶ ସମୟ କଟିଛି କେବଳ ନୀରବତା ମଧ୍ୟରେ। ତା ସଂଗେ ମୋର ଦେଖା ଯାଉଯାଉ ଅଚାନକ ଫୁଟ୍‌ପାଥିରେ। ତା' ପଛରେ କୌଣସି dating ନଥାଏ। ସେଥିପାଇଁ ତାହା ଏତେ ବେଶୀ ହୃଦୟସ୍ପର୍ଶୀ।

## କଲେଜ୍ ୟୁନିଅନ୍ ଗଠନପାଇଁ ଧସ୍ତାଧସ୍ତି ଓ ଲିଫ୍‌ଲେଟ୍ ଯୁଦ୍ଧ –

ସେତେବେଳେ ସବୁ କଲେଜରେ କଲେଜ୍ ୟୁନିଅନ୍ ଗଢ଼ାଯିବ ବୋଲି ନିର୍ଦ୍ଦେଶ ଆସିଥାଏ। ରେଭେନ୍‌ସାରେ କଲେଜ୍ ୟୁନିଅନ୍ ଗଢ଼ାଯିବାର ପ୍ରସ୍ତୁତି ଚାଲିଥାଏ। ସବୁ କଲେଜ୍ ୟୁନିଅନ୍‌ର ପ୍ରିନ୍‌ସିପାଲ୍ Ex-Officio ସଭାପତି ରହିବେ ବୋଲି ନିର୍ଦ୍ଦେଶଥାଏ। ଆମେ ଏହାକୁ ବିରୋଧକଲୁ। ବୀରେନ୍ ଏହାକୁ ସମର୍ଥନ କରୁଥାଏ। ଉଭୟପକ୍ଷରୁ ଲିଫ୍‌ଲେଟ୍‌ମାନ ପ୍ରକାଶ ପାଇ ଛାତ୍ରମାନଂକ ମଧ୍ୟରେ

ଚୋର୍‌ସୋର୍‌ରେ ବଂଟାଯାଉଥାଏ । ଆମ ପକ୍ଷରୁ ହଳଦିଆ ରଂଗର ଲିଫ୍‌ଲେଟ୍ ବାହାରୁଥାଏ । ଆମେ କହୁଥାଉ, ପ୍ରିନ୍‌ସିପାଲ୍ ସଭାପତି ରହିଲେ ଆମର ଆପତ୍ତି ନାହିଁ; ମାତ୍ର ସେ ଛାତ୍ରମାନଂକଦ୍ୱାରା ନିର୍ବାଚିତ ହେବା ଦରକାର । Ex-Officio ସଭାପତି ହେବା ଚଳିବ ନାହିଁ । ବୀରେନ୍ ଓ ତା ସପକ୍ଷ ଲୋକ କହୁଥାଂତି ପ୍ରିନ୍‌ସିପାଲ୍ କିପରି ନିର୍ବାଚନରେ ଛିଡ଼ାହେବେ ? ଏହାଦ୍ୱାରା ତାଂକ ମର୍ଯ୍ୟାଦା କ୍ଷୁଣ୍ଣ ହେବ । ଏମାନେ ଆଜି ପ୍ରିନ୍‌ସିପାଲଂକୁ ନିର୍ବାଚିତ କରିବା କଥା କହୁଛଂତି, କାଲି ସେମାନେ ଭଗବାନଂକୁ ନିର୍ବାଚିତ କରିବାପାଇଁ କହିବେ ("Today they want to elect the Principal. Tomorrow they will want to elect God") । ଆମେ କହୁଥାଉଁ, ପରିଜା ସାହେବ ଭଲଲୋକ । ସେ କଲେଜ୍ ୟୁନିଅନ୍ ସଭାପତି ହେଲେ କିଛି କ୍ଷତି ନାହିଁ; ମାତ୍ର କାଲି ଅନ୍ୟ ପ୍ରିନ୍‌ସିପାଲ୍ ଆସିବେ । ସେ ଯେ ପରିଜା ସାହେବଂକ ପରି ଭଲଲୋକ ହେବେ, ତା'ର ନିଶ୍ଚିତତା କ'ଣ ? ସେ ହୁଏତ ଜଣେ ଖରାପ ଲୋକ ହୋଇପାରଂତି । ତେଣୁ ଆମେ ପ୍ରିନ୍‌ସିପାଲ୍ କଲେଜ୍ ୟୁନିଅନ୍ ସଭାପତି ଭାବେ ନିର୍ବାଚିତ ହୁଅଂତୁ ବୋଲି ଏକ ନୀତିଗତ ପ୍ରଶ୍ନ ଉଠାଉଛୁ ।

ଏହିପରି ପାଂପ୍ଲେଟ୍ ଯୁଦ୍ଧ ଚାଲିଥାଏ । ଆମ ପାଂପ୍ଲେଟ୍‌ରେ ସ୍ୱାକ୍ଷରକାରୀମାନେ ହେଲେ ମୁଁ, ଅଶୋକ ଦାସ୍, ବିଜୟଚଂଦ୍ର ଦାସ, ଗଂଗାଧର ମହାପାତ୍ର, ନୀଳମଣି ରାଉତରାୟ, ବିଭୁଦେଂଦ୍ର ମିଶ୍ର ଓ ସୁରଜମଲ୍ଲ ସାହା । ତାଂକ ପାଂପ୍ଲେଟ୍‌ରେ ଦସ୍ତଖତକାରୀମାନେ ହେଲେ ବୀରେନ୍ ମିତ୍ର ଓ ତା'ର ଆଉ ୨୦-୨୫ ଜଣ ସମର୍ଥକ । ନୀଳମଣି ରାଉତରାୟ, ବିଭୁଦେଂଦ୍ର ମିଶ୍ର ଓ ସୁରଜମଲ୍ଲ ସାହା ମୋ ତଳ କ୍ଲାସ୍‌ରେ ପଢୁଥାଂତି । ଗଂଗାଧର ମହାପାତ୍ର ଓ ଅଶୋକ ଦାସ ଏବଂ ବିଜୟଚଂଦ୍ର ଦାସ ବି.ଏ. ପାସ୍ କରିସାରି ଆଇନ୍ କ୍ଲାସ୍‌ରେ ପଢୁଥାଂତି । ଆଇନ୍ କ୍ଲାସ୍ ଓ ଏମ୍.ଏ. କ୍ଲାସ ସକାଳବେଳା ବସୁଥାଏ । (ପରେ ଗଂଗାଧର ମହାପାତ୍ର ଶିକ୍ଷାମଂତ୍ରୀ ହୋଇଥିଲେ, ଅଶୋକ ଦାସ ଆଡ୍‌ଭୋକେଟ୍ ଜେନେରାଲ୍ ହୋଇଥିଲେ, ବିଭୁଦେଂଦ୍ର ମିଶ୍ର କେଂଦ୍ର ରାଷ୍ଟ୍ରମଂତ୍ରୀ ଏବଂ ନୀଳମଣି ରାଉତରାୟ ଓଡ଼ିଶାର ମୁଖ୍ୟମଂତ୍ରୀ ହୋଇଥିଲେ) ।

## ଷୋଡ଼ଶ ଉଲ୍ଲାସ

## ଗଡ଼ଜାତ ପ୍ରଜାଆଂଦୋଳନ ଓ ମୁଁ

ରେଭେନ୍‌ସାରେ ପଢୁଥିବାବେଳେ ମୁଁ ଓଡ଼ିଶାର ଗଡ଼ଜାତ ପ୍ରଜା ଆଂଦୋଳନ, ଛାତ୍ର-ଆଂଦୋଳନ ଓ କୃଷକ-ଆଂଦୋଳନରେ ପ୍ରମୁଖ ଭୂମିକା ନେଇଥିଲି। ସେସବୁ ସ୍ମୃତି ଏବେ ମଧ ଜାଗରୂକ ଅଛି। ମୋ' ଜୀବନରେ ସେସବୁ ଜନସଂଯୋଗ ନୂତନ ଦିଗ୍‌ଦର୍ଶନ ଦେଇଛି। ମୋ ସାହିତ୍ୟକର୍ମକୁ ମଧ ତାହା ଯଥେଷ୍ଟ ପ୍ରେରଣା ଦେଇଛି।

ଓଡ଼ିଶାରେ ୩୬ଟି ଗଡ଼ଜାତକୁ ମୋଗଲବଂଦୀ ଅଂଚଳର ଲୋକମାନେ 'ଅଂଧାରୀ ମୁଲକ' କହିଥାଂତି। ମାହାଲା ମଧ କୁହାଯାଏ; ତା'ର କାରଣ ଏହି ଗଡ଼ଜାତ ରାଜାମାନଂକର ମନୋମୁଖୀ ଓ ହୁଂକାପିଟା ଶାସନରେ ପ୍ରଜାମାନେ ଅନବରତ ସହୁଥାଂତି; ଅନ୍ୟାୟ, ଅତ୍ୟାଚାର ସହ୍ୟ କରି ମୁହଁମାଡ଼ି ପଡ଼ିଥାଂତି। ସେଠାରେ କ'ଣ ହେଉଛି ନହେଉଛି, ସେ ଖବର ପ୍ରାୟ ବାହାରକୁ ଆସେନାହିଁ। ଏହି ଗଡ଼ଜାତଗୁଡ଼ିକୁ ଗୋରା ଶାସକମାନେ କୃତ୍ରିମ ଉପାୟରେ ସୃଷ୍ଟି କରି ବଂଧୁକମୁନ ଜୋର୍‌ରେ ବଂଚାଇରଖିଥିଲେ। ଇଷ୍ଟ୍ ଇଂଡିଆ କଂପାନୀ ଏବଂ ଇଂରେଜ୍ ସରକାର ଗଡ଼ଜାତ ରାଜାମାନଂକୁ ସେମାନଂକର ସମସ୍ତ ଅମାନୁଷିକ କାର୍ଯପାଇଁ ଉତ୍ସାହିତ କରିଆସିଛଂତି; ପ୍ରଜାମାନେ ବିଦ୍ରୋହ କଲେ ସେମାନଂକୁ କଠୋରହସ୍ତରେ ଦମନ କରିଛଂତି। ଅତୀତରେ ଗଡ଼ଜାତମାନଂକରେ ବହୁ ବିଦ୍ରୋହ ଓ ପ୍ରଜାମେଳି ହୋଇଥିଲା; ମାତ୍ର ଇଂରେଜ ସରକାର ସୈନ୍ୟ ପଠାଇ ସେସବୁକୁ ଦୃଢ଼ହସ୍ତରେ ଦମନ କରିଛଂତି। ଗଡ଼ଜାତରେ ପୂର୍ବେ ରାଜାମାନଂକର ଏପରି ନିରଂକୁଶ କ୍ଷମତା ନଥିଲା। ବିଦ୍ରୋହ ହେଲେ ଇଂରେଜ ସରକାର ବିଦ୍ରୋହ ଦମନ କରିବା ସଂଗେ ସଂଗେ ପ୍ରଜାମାନଂକର ଦୁଃଖଦୁର୍ଦ୍ଦଶା ଓ ଅଭାବ ଅଭିଯୋଗ ମଧ କିଛି କିଛି ଦୂରକରୁଥିଲେ। ୧୮୧୮ରୁ ଓଡ଼ିଶାର କମିଶନର ଉଭୟ ମୋଗଲବଂଦୀ ଓ ଗଡ଼ଜାତର ଶାସନକର୍ତ୍ତା ଥିଲେ। ଗଡ଼ଜାତଗୁଡ଼ିକ ବାଲେଶ୍ୱର, କଟକ, ପୁରୀ ପ୍ରଭୃତି ଜିଲ୍ଲାଗୁଡ଼ିକରେ ସାମିଲ୍ ଥିଲା। ୧୮୧୪ରୁ ୧୮୧୮ କଟକର ଜଜ୍ ତଥା ମ୍ୟାଜିଷ୍ଟ୍ରେଟ୍ ଓଡ଼ିଶାର କରଦ ରାଜ୍ୟଗୁଡ଼ିକର ସୁପରିନ୍‌ଟେନ୍‌ଡେଂଟ୍ ଥିଲେ। ମାତ୍ର ୧୯୦୬ରୁ ଗଡ଼ଜାତ କଥା ବୁଝିବାପାଇଁ କମିଶନରଂକ ଅଧୀନରେ ଜଣେ ପଲିଟିକେଲ୍ ଏଜେଂଟକୁ ନିଯୁକ୍ତ କରାଗଲା। ୧୯୨୨ରୁ ସେ (ପଲିଟିକେଲ୍ ଏଜେଂଟ) ସ୍ୱାଧୀନ ଭାବରେ କର୍ମ କରିବାର ଅଧିକାର ପାଇଲେ। ଏହି ପଲିଟିକେଲ୍ ଏଜେଂଟ୍ ରାଜାମାନଂକୁ ମନଇଚ୍ଛା ଶାସନ କରିବାକୁ ଏବଂ ଲୋକମାନଂକ ଉପରେ

ଅକଥନୀୟ ଅତ୍ୟାଚାର କରିବାକୁ କ୍ଷମତା ଦେଇଥିଲେ। ଗଡ଼ଜାତରେ ବେଠି, ଭେଟି, ମାଗଣ ଓ ରସଦ ଆଦି ନାନାପ୍ରକାର ଶୋଷଣ ପ୍ରଥା ଅବାଧରେ ଚାଲିଥିଲା । ପ୍ରଜାମାନେ ଯାନବାହନ ଓ କେତେକ ଅଳଂକାର ବ୍ୟବହାର କରିପାରିବେ ନାହିଁ ବୋଲି ହୁକୁମ୍ ଜାରି କରାଯାଇଥିଲା। ଜାଉଂଳିକବାଟ ଲଗାଇବା ମଧ୍ୟ ନିଷେଧ କରାଯାଇଥିଲା।* ଢେଂକାନାଳ ପଟ୍ଟାୟତଂକର 'ଯତନନଗର' କିପରି ବେଠି ବେଗାରିରେ ତିଆରିହୋଇଥିଲା, ତାହା ସମସ୍ତେ ଜାଣଂତି। ଉଚ୍ଚ ପର୍ବତ ଉପରେ ଏଡ଼େବଡ଼ ବିଳାସଭବନ ବେଠି ଓ ମାଗଣରେ ନିର୍ମାୟିତ ହୋଇଥିଲା। ଲୋକମାନଂକୁ ପଶୁପରି ଖଟାଇ ରଜାଂକ ଗାଡ଼ି ମଟର ଯିବାପାଇଁ ରାସ୍ତା ବନାଯାଉଥିଲା। ଗଛ ମାଛରେ ପ୍ରଜାଂକର ଅଧିକାର ନଥିଲା। ଫଳଂତି ଫସଲ ଉପରେ ମଧ୍ୟ ପ୍ରଜାଂକର ଅଧିକାର ଗୌଣ ଥିଲା। ଏହାଛଡ଼ା କେଉଁଠି କେଉଁଠି ଝିଅମାନେ ବଡ଼କନ୍ୟା ହେଲେ ରାଜାଂକ ଉଆସକୁ ପଠାଯାଉଥିଲେ; କାରଣ ରାଜାଂକର ପହିଲି ଫଳରେ ଅଧିକାର ଅଛି। ଦଂଡବିଧି ମଧ୍ୟ ବଡ଼ ନୃଶଂସ ଥିଲା। ହାତୀ, ଘୋଡ଼ା ମଡ଼ାଯାଉଥିଲା। ଏକ ବନ୍ଦ ଘରେ (କବାଟ, ଝରକା ବଂଦକରି) ଲୋକଂକୁ ପୂରାଇ ଲଂକାମରିଚ ଧୂଆଁ ଦିଆଯାଉଥିଲା। ଘରଭିତରୁ ଚିତ୍କାର ଯେପରି ବାହାରକୁ ନଶୁଭିବ ଲୋକମାନଂକ, ସେଥିପାଇଁ ଘର ପିଂଢାରେ କୀର୍ତ୍ତନ କରାଯାଉ-ଥିଲା। ଏବେ ମଧ୍ୟ ଏହା 'କୀର୍ତ୍ତନଘର' ନାମରେ ଢେଂକାନାଳ ଲୋକଂକ ମନେଅଛି। ଢେଂକାନାଳ ଦରବାରରେ ଲୋକଂକ ନିଶ ଗୋଟି ଗୋଟି କରି ଉପାଡ଼ିଦିଆଯାଉଥିଲା ବୋଲି ଶୁଣାଯାଏ। ଲୋକଂକଠୁ ଖଜଣା ନେଇ ଅନେକ ସମୟରେ କର୍ମଚାରୀମାନେ ରସିଦ ଦେଉନଥିଲେ; ପୁଣି କେଉଁଠି କେଉଁଠି କର୍ମଚାରୀମାନେ ବେଶୀ ଟଂକା ନେଇ କମ୍ ଟଂକାର ରସିଦ ଦେଉଥିଲେ। ହାତୀଖେଦାପାଇଁ ଲୋକଂକୁ ବିନା ମଜୁରିରେ ଖଟାଯାଉଥିଲା। ଏହାଛଡ଼ା ରାଜା ପାରିଧିକି ଗଲେ ତାଂକ ସଂଗେ ଯାହାକୁ ଇଚ୍ଛା ତାକୁ ଜବରଦସ୍ତି ନେଉଥିଲେ। ସେମାନଂକର କାମ ଥିଲା ଟିଣ ବାଡ଼େଇବା; ହୋ-ହା କରି ପଶୁମାନଂକୁ ରଜାକଂର ମଂଚା ଆଡ଼କୁ ତଡ଼ିଆଣିବା। କେବେ କେବେ ଗୁଳି ବାଜି ସେମାନଂକ ଭିତରୁ କିଏ ମରିଗଲେ ତା' ଶବକୁ ଜଂଗଲରେ ଫୋପାଡ଼ିଦେଇ ଆସୁଥିଲେ। ରଣପୁର ପ୍ରଭୃତିରେ ରଜାଂକ ପାଇଁ ପ୍ରତିବର୍ଷ ମଣିନାଗ ପର୍ବତରେ ମଣିନାଗ ଠାକୁରାଣୀଂକଠାରେ ନରବଳୀ ଦିଆ-ଯାଉଥିଲା। ସେଠାରେ ବଳୀ ପକାଇବାପାଇଁ କିଛି ଲୋକଂକୁ ବଂଶାନୁକ୍ରମେ ଜାଗିରି ଦିଆଯାଇଥିଲା। ଏହି ବଳୀ ଦେବା ଲୋକଂକୁ 'ମାଘମାସିଆ' କୁହାଯାଉ-

---

* ଏହାର ବିଶଦ ବିବରଣୀ ଏବଂ ରାଜା ଓ ତାଂକ ବଂଶୀୟମାନଂକର ନାରୀଧର୍ଷଣ କାହାଣୀ ପରେ ଦିଆଗଲା – (ଶ୍ରୀ ଜୀମୂତ ମଂଗରାଜଂକ ଲିଖିତ 'ଯତନ ନଗର' – 'ଦୈନିକ ସଂବାଦ' ୧୧ମଇ, ୧୯୮୬ ଦ୍ରଷ୍ଟବ୍ୟ)।

ଥିଲା । ଏମାନଂକର ମୌଳିକ କାମ ଥିଲା ଲୋକଂକୁ ଫୁସୁଲେଇନେଇ କିଂବା ଜବରଦସ୍ତି ଧରିନେଇ ଠାକୁରାଣୀଂକ ପାଖରେ ବଳୀ ଦେବା । କିଂବା ତା' ରକ୍ତକୁ ନେଇ ମଣିନାଗ ଠାକୁରାଣୀଂକ ନିକଟରେ ସମର୍ପିଦେବା – (ବିଶଦ ବିବରଣୀ ପରେ ଦିଆଗଲା ।) ବଳୀଦେଇସାରି କଟା ଲୋକର ଜିଭ କାଟି ଆଣି ରଜାଂକୁ ଦେଖାଇଲେ ତାକୁ କିଛି ଅର୍ଥ ମିଳୁଥିଲା ।

ଏହାଛଡ଼ା ଆହୁରି ଅନେକ ପ୍ରକାର ଅତ୍ୟାଚାର କରାଯାଉଥିଲା । ନୂଆ ନୂଆ କର ବସାଇବା ଏବଂ କର ବୃଦ୍ଧିକରିବା ସେଥିମଧ୍ୟରୁ ଅନ୍ୟତମ । ମୋକଦ୍ଦମାରେ ଲଢ଼ିବାପାଇଁ ଲୋକମାନେ ଓକିଲ ନିଯୁକ୍ତ କରିପାରୁନଥିଲେ । ସଭାସମିତି କରିବା ମନାଥିଲା । ରାଜା ଓ ତାଂକ ପରିବାର ଲୋକଂକ ବାହାଘରେ ପ୍ରଜାମାନଂକୁ ସଲାମୀ ଦେବାକୁ ପଡୁଥିଲା । ଜେଲ୍‌ରେ ବଂଦୀମାନଂକୁ ଅସହ୍ୟ ମାଡ଼୍‌ପିଟ୍ କରାଯାଉଥିଲା । ସେଥିପାଇଁ ଲୋକମାନେ ଭୟରେ ରାଜ୍ୟ ଛାଡ଼ି ପଳାଇଯାଉଥିଲେ । ଜମିଦାରମାନେ ମଧ୍ୟ ଲୋକଂକ ଉପରେ ଏହିଭଳି ଅନେକ ପ୍ରକାର ଅତ୍ୟାଚାର କରୁଥିଲେ । ଆଳି, କନିକା ଜମିଦାରମାନେ ବି କିଛି କମ୍ ନ ଥିଲେ । ସେମାନଂକୁ ଲୋକମାନେ ରାଜା କହୁଥିଲେ ।

ଅତୀତରେ ରାଜାମାନଂକର ଅକଥ୍ୟ ଅତ୍ୟାଚାର ବିରୁଦ୍ଧରେ ପ୍ରଜାମାନେ ବିଦ୍ରୋହ କରିଛଂତି । ଖ୍ରୀ: ୧୮୬୨-୬୩ରେ କେଉଁଝରରେ ଏକ ଭୂୟାଁ-ବିଦ୍ରୋହ ହୋଇଥିଲା । ୧୯୦୮ ସାଲରୁ ୧୯୨୮ ସାଲ ଭିତରେ ବାମଡ଼ା ଗଡ଼ଜାତରେ କରବୃଦ୍ଧି ବିରୋଧରେ ୪ଟି ପ୍ରଜାମେଳି ବା ବିଦ୍ରୋହ ହୋଇଥିଲା । ୧୯୧୧ ମସିହାରେ ତାଳଚେରରେ ବାଜେକର ନାମରେ ଏକ କର ଧାର୍ଯ୍ୟ ହେବା ସମୟରେ ଲୋକେ ଆଂଦୋଳନ କରିଥିଲେ । ପୁଣି ୧୯୨୨ରେ ସେହି କରବୃଦ୍ଧିପାଇଁ ଆଂଦୋଳନ ହୋଇଥିଲା । ୧୯୨୮ ମସିହାରେ ବେଠି ଓ ମାଗଣରେ ଉତ୍‌କ୍ଷିପ୍ତ ହୋଇ ନୀଳଗିରି ଲୋକେ ପ୍ରବଳ ଆଂଦୋଳନ କରିଥିଲେ । ଏହାଛଡ଼ା ୧୯୩୦ ମସିହାରେ ବୌଦ ରାଜ୍ୟର ଲୋକେ ବିଦ୍ରୋହ କରିଥିଲେ । ମାତ୍ର ଏହିସବୁ ବିଦ୍ରୋହକୁ ଇଂରେଜ ସରକାର ଲୌହ ହସ୍ତରେ ଦମନକରିଥିଲେ ଏବଂ ବିଦ୍ରୋହୀ-ମାନଂକୁ ଫାଶୀ, ଜେଲ୍ ଓ ବେତମାଡ଼ ପ୍ରଭୃତି ଦଂଡ ଦିଆଯାଇଥିଲା । ଏହି ବିଦ୍ରୋହ କଥା ଯେପରି ବାହାରକୁ ପ୍ରକାଶନପାଇବ, ସେପାଇଁ କଟକଣା ଜାରିକରାଯାଇଥିଲା ।

ମହାତ୍ମା ଗାଂଧୀ ୧୯୨୧ ମସିହାରେ ଇଂରେଜ ସରକାର ବିରୁଦ୍ଧରେ ଅସହଯୋଗ ଆଂଦୋଳନ ଚାଲୁକରିବା ପରେ ସାରା ଭାରତର ଲୋକେ ଉଦ୍‌ବୁଦ୍ଧ ହୋଇଥିଲେ । ଏହି ଆଂଦୋଳନର ପ୍ରଭାବରୁ ଗଡ଼ଜାତର ଲୋକେ ମଧ୍ୟ ବାଦ୍ ପଡ଼ିନଥିଲେ । ଗଡ଼ଜାତର କେତେକ ଶିକ୍ଷିତ ଲୋକ ଏବଂ ସଚେତନ ତରୁଣ ମୋଗଲବଂଦୀକୁ ଆସି ଏହି ଆଂଦୋଳନରେ ମଧ୍ୟ ଯୋଗଦେଇଥିଲେ ଏବଂ କାରା ବରଣ କରିଥିଲେ । କ୍ରମେ ସ୍ୱରାଜ୍ୟ ଆଂଦୋଳନ କଥା ମୋଗଲବଂଦୀ

ଓ ଗଡ଼ଜାତର ଗାଁ ଗାଁ ବ୍ୟାପିଯାଇଥିଲା । ଭାରତର ସବୁ ଦେଶୀୟ ରାଜ୍ୟମାନଂକ ପରି ଓଡ଼ିଶାର ଦେଶୀୟ ରାଜ୍ୟଗୁଡ଼ିକର ଲୋକମାନେ ମଧ୍ୟ ଏଥିରୁ ପ୍ରଚୁର ପ୍ରେରଣା ଲାଭକରିଥିଲେ । ସେମାନେ ନିଜ ନିଜ ରାଜ୍ୟରେ ଦାୟିତ୍ୱଶୀଳ ଶାସନପାଇଁ ଆଂଦୋଳନ କରିବାକୁ ପଶ୍ଚାତ୍‌ପଦ ହେଲେନାହିଁ ।

୧୯୩୯ ମସିହାରେ ବେସରକାରୀ ଷ୍ଟେଟ୍ ଏନ୍‌କ୍ୱାରୀ କମିଟି, ଯାହାର ଅଧ୍ୟକ୍ଷଥିଲେ ହରେକୃଷ୍ଣ ମହତାବ, ଗଡ଼ଜାତର କୃଷକମାନଂକର ଅବସ୍ଥା ନିମ୍ନଲିଖିତ ଭାବରେ ବର୍ଣ୍ଣନା କରିଛଂତି –

"The peasantry has no full land right in all these states. It is liable to ejection inspite of its long possession and enjoyment for generations. The claims of reclamation were of no avail to it... Besides, there are no rules for remission and suspension of arrears in land rent. A default in payment means the confiscation of land which is sold to the highest bidder without the balance if any, over the arrears being refunded.".

ଅର୍ଥାତ୍ ଗଡ଼ଜାତରେ କୃଷକମାନଂକର ଜମି ଉପରେ କୌଣସି ସ୍ଥାୟୀ ଦଖଲସ୍ୱତ୍ୱ ନଥିଲା । ତାଂକଠାରୁ ଯେ କୌଣସି ସମୟରେ ଜମିର ଦଖଲ କାଢ଼ିନିଆଯାଉଥିଲା ଏବଂ ସେ ପୁରୁଷାନୁକ୍ରମେ ଭୋଗକରୁଥିବା ଜମି ଫେରିପାଇବାପାଇଁ ଦରଖାସ୍ତ କଲେ ତାହା ଶୁଣାଯାଉନଥିଲା । ଖଜଣା ଦେବାକୁ ଡେରିକଲେ ଯିଏ ବେଶୀ ଟଂକା ଦେଉଥିଲା ତାକୁ ଜମି ନିଲାମ କରିଦିଆ ଯାଉଥିଲା । ଜମିର ଦାମ୍ ଅପେକ୍ଷା ଯେ ନିଲାମରେ ବେଶୀ ଟଂକା ଦେଉଥିଲା, ତାକୁ ଜମି ନିଲାମ କରିଦିଆଯାଉଥିଲା । ଜମିର ଦାମ୍ ଅପେକ୍ଷା ନିଲାମରୁ ବେଶୀ ଟଂକା ଦେଉଥିଲା, ତାକୁ ଜମି ନିଲାମ କରିଦିଆଯାଉଥିଲା । ଜମିର ଦାମ୍ ଅପେକ୍ଷା ନିଲାମରୁ ବେଶୀ ଟଂକା ମିଳିଲେ ତାହା ଚାଷୀକୁ ଦିଆଯାଉନଥିଲା ।

ଷ୍ଟେଟ୍ ଏନ୍‌କ୍ୱାରୀ କମିଟି କର ବସାଇବା ନୀତି ଉପରେ ଲେଖିଛଂତି, "ପ୍ରଜାଂକ ଉପରେ ମାତ୍ରାଧିକ କର ବସୁଥିଲା । ଏହି କର କୌଣସି ନୀତିନିୟମ ଅନୁଯାୟୀ ଧାର୍ଯ୍ୟ କରାଯାଉନଥିଲା । ପ୍ରାଚୀନ ମନୁସଂହିତାରେ ଯେଉଁ କରଧାର୍ଯ୍ୟ-ନୀତି ଲିଖିତଅଛି, ତାହା ଅବଲଂବନ କରାଯାଉନଥିଲା କିଂବା ଆଧୁନିକ ଯୁଗର କର-ଧାର୍ଯ୍ୟନୀତି ଗ୍ରହଣକରାଯାଉନଥିଲା । ରଜାଂକର ମନୋମୁଖି ନୀତିହିଁ ଏକମାତ୍ର ନୀତି-ଥିଲା । ବ୍ରିଟିଶ୍-ଭାରତରେ ରାଜସ୍ୱହାର ଅପେକ୍ଷା ଗଡ଼ଜାତର ରାଜସ୍ୱହାର ଅନେକ ବେଶି ଥିଲା । ପାନ, କିରାସିନି, ନଡ଼ିଆ, ଲୁଣ ଆଦି ଉପରେ କରବସୁଥିଲା ।"

ଏହିସବୁ ଅନ୍ୟାୟ, ଅତ୍ୟାଚାର ଓ ଦୁର୍ନୀତି ବିରୁଦ୍ଧରେ ପ୍ରଜାମାନେ ଆଂଦୋଳନ କରିବାକୁ ସ୍ଥିରକଲେ । ୧୯୩୧ ମସିହାରେ କଟକଠାରେ ପ୍ରଥମ ଗଡ଼ଜାତ

ପ୍ରଜାସମ୍ମିଳନୀ ବସିଥିଲା । ଏହାର ଉଦ୍ୟୋକ୍ତା ଥିଲେ କବିରାଜ ବାଲୁଂକେଶ୍ୱର ଆଚାର୍ଯ୍ୟ, ରାଧାନାଥ ରଥ ('ସମାଜ' ସଂପାଦକ), ମଧୁସୂଦନ ପଟ୍ଟନାୟକ ଓ ଗୋବିନ୍ଦଚନ୍ଦ୍ର ମିଶ୍ର । ଏ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ଶ୍ରୀ ଭୁବନାନନ୍ଦ ଦାସ (କେନ୍ଦ୍ର ଆସେଂବ୍ଲିର ସଭ୍ୟ) । ମାତ୍ର ଏ ସମ୍ମିଳନୀ ବିଶେଷ କିଛି କାର୍ଯ୍ୟ କରିପାରିନଥିଲା । ୧୯୩୭ ମସିହାରେ ଏହାକୁ ପୁନର୍ଜ୍ଜୀବିତ କରାଯାଇଥିଲା । ଏହାର ତୃତୀୟ ଅଧିବେଶନ କଟକଠାରେ ୨୬.୬.୧୯୩୭ ତାରିଖରେ ଡଃ ପଟ୍ଟାଭି ସିତାରାମାୟାଂକ ସଭାପତିତ୍ୱରେ ବସିଥିଲା । ଡଃ ପଟ୍ଟାଭି ନିଖିଳ ଭାରତ ପ୍ରଜାମଂଡଳର ସଭାପତି ଥିଲେ । ଓଡ଼ିଶା ଶାଖାର ସେକ୍ରେଟାରୀ ରୂପେ ନିର୍ବାଚିତ ହୋଇଥିଲେ ସାରଂଗଧର ଦାସ । ଏହି ସମ୍ମିଳନୀରେ ଓଡ଼ିଶାର ଗଡ଼ଜାତମାନଂକରେ ଦାୟିତ୍ୱଶୀଳ ଶାସନ ସ୍ଥାପନ କରିବାପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା ।

### ଗଡ଼ଜାତ ଆଂଦୋଳନର ପ୍ରଥମ ପର୍ବ – ନୀଳଗିରି

ଏହି ସମୟରେ ନୀଳଗିରି ଗଡ଼ଜାତର ରଜାଂକ ବିଭାଘରପାଇଁ ବେଠି ଖଟିବାକୁ ପ୍ରଜାମାନଂକୁ ବାଧକରାଯାଇଥିଲା ଏବଂ ସେମାନଂକଠାରୁ ସଲାମୀ ଅସୁଲ୍ କରାଯାଇଥିଲା । ଏହାର ପ୍ରତିବାଦକରି ନୀଳଗିରି ପ୍ରଜାମଣ୍ଡଳ କୈଳାସ ଚନ୍ଦ୍ର ମହାଂତିଂକ ନେତୃତ୍ୱରେ ଆଂଦୋଳନ ଆରଂଭକରିଥିଲେ । ୧୯୩୮ ସାଲ ଜୁଲାଇମାସରେ ୧୧୬ ଜଣ ପ୍ରଜାମଂଡଳ କର୍ମୀଂକୁ ରାଜ୍ୟର ଆଇନ୍ ଭଂଗ ଅପରାଧରେ ଗିରଫ୍ କରାଯାଇଥିଲା । ପ୍ରଜାମଂଡଳର କର୍ମୀମାନେ ନୀଳଗିରିରୁ ଅଫିସ୍ ଉଠାଇନେଇ ମୋଗଲବନ୍ଦୀ ଅଂଚଳରେ, ନୀଳଗିରି ସୀମା ନିକଟରେ ଥିବା ବାଲେଶ୍ୱର ଜିଲ୍ଲାର ଗୋଟିଏ ଗାଁରେ, ତାଂକର ମୁଖ୍ୟ କାର୍ଯ୍ୟାଳୟ ସ୍ଥାପନକରଂତି । ମୁଁ ଦୁଇଥର ନୀଳଗିରି ଯାଇଥିଲି । ପ୍ରଜାମଂଡଳ କର୍ମୀମାନଂକୁ ଭେଟି କିଛି ଆଲୋଚନା କରିଥିଲି ଏବଂ କିଛି ପ୍ରଚାରପତ୍ର ଦେଇଥିଲି । ସେମାନଂକଠାରୁ ସଂବାଦ ଆଣି କଟକ ଅଫିସ୍‌ରେ ଜଣାଇଥିଲି । ନୀଳଗିରି ଦରବାର ଆଂଦୋଳନକାରୀଂକ ବିରୋଧରେ କଠିନ ବ୍ୟବସ୍ଥା ଅବଲଂବନ କରଂତି । ଯେଉଁମାନେ ସଭା-ଶୋଭାଯାତ୍ରା କରୁଥିଲେ, ସେମାନଂକୁ ଜୋରିମାନା ଓ ବେତମାଡ଼ ପ୍ରଭୃତି ଦଂଡ ମିଳୁଥିଲା । ନୀଳଗିରି ପ୍ରଜାମଂଡଳର ତରୁଣ ସଂପାଦକ ବନମାଳୀ ଦାସଂକୁ ଗିରଫ୍ କରାଯିବାରେ ଆଂଦୋଳନ ବ୍ୟାପକତର ହୋଇଥିଲା । ୧୦ ଅଗଷ୍ଟ ୧୯୩୮ ତାରିଖରେ ପୁଲିସ୍ ଦଳେ ଶୋଭାଯାତ୍ରୀଂକ ଉପରେ ଗୁଳି ଚଳାଂତି; ଏହା ଫଳରେ ବହୁ କର୍ମୀ ଆହତ ହୁଅଂତି । ତା'ପରଦିନ ମଧ ପୁଲିସ୍ ଦଳେ ଆଂଦୋଳନକାରୀଂକ ଉପରେ ଲାଠି ଚଳାଂତି ଏବଂ ଗୁଳିମାଡ଼କରଂତି; ଫଳରେ ବହୁଲୋକ ଗୁରୁତରଭାବେ କ୍ଷତବିକ୍ଷତ ହୁଅଂତି । ନୀଳଗିରି ଲୋକେ ଏଥିରେ ଉତ୍‌କ୍ଷିପ୍ତ ହୋଇ ରଜା ଓ ତାଂକ ପରିବାରଂକୁ ବାସନ୍ଦକରଂତି । ଶେଷ ପର୍ଯ୍ୟାୟରେ ପ୍ରଜାମଂଡଳ ସଭାପତି କୈଳାସଚନ୍ଦ୍ର ଦାସ ପ୍ରାୟ ୧୦ ହଜାର ଲୋକଂକୁ ନେଇ ସତ୍ୟାଗ୍ରହ ଆରମ୍ଭକରଂତି । ଏଥିରେ ଷ୍ଟେଟ୍

ଏନ୍‌କ୍ୱାରୀ କମିଟିର ସଭାପତି ଡଃ ହରେକୃଷ୍ଣ ମହତାବ, ବାଲେଶ୍ୱର ଜିଲ୍ଲା କଲେକ୍ଟର ଓ ନୀଳଗିରିର ଦେୱାନ କୈଳାସ ମହାଂତିଂକ ସଂଗେ ଆଳାପ-ଆଲୋଚନା କରି ଏକ ମିଳାମିଶା କରାଂତି । ଏହାଫଳରେ ଲୋକମାନେ ରଜା ଓ ତାଂକ ପରିବାରଂକ ଉପରୁ ବାସଂଦ ଉଠାଇ ଆଣଂତି । ଏହି ରାଜିନାମା ଫଳରେ ରାଜା ଗିରଫ୍ ହୋଇଥିବା ଓ କାରାଦଂଡ ଭୋଗୁଥିବା କର୍ମୀମାନଂକୁ ଖଲାସ କରିଦିଅଂତି । ଲୋକମାନଂକୁ ନାଗରିକ ସ୍ୱାଧୀନତା ଏବଂ ତାଂକର ଅଭାବ ଅଭିଯୋଗ ସାଂବିଧାନିକ ଉପାୟରେ ପ୍ରକାଶ କରିବାପାଇଁ ଅଧିକାର ମଧ୍ୟ ଦିଅଂତି । ଏହାଛଡ଼ା ପ୍ରଜାମାନଂକ ଉପରୁ ବେଠି ଓ ମାଗଣ ଉଠାଇନିଆଯାଏ । ମାତ୍ର ରାଜା ଷ୍ଟେଟ୍ ଆସେଂବ୍ଲି ଗଠନ ପାଇଁ ପ୍ରଜାମାନଂକର ଦାବିକୁ ଗ୍ରହଣ କରିବାକୁ ଅସ୍ୱୀକାର କରଂତି ।

**ଢେଂକାନାଳ ପ୍ରଜା-ଆଂଦୋଳନ :**

**ବାଜିରାଉତ ଓ ଅନ୍ୟ କର୍ମୀମାନଂକର ସହିଦତ୍ୱପ୍ରାପ୍ତି –**

ନୀଳଗିରି ପରେ ଢେଂକାନାଳ ପ୍ରଜାମଂଡଳ ଆଂଦୋଳନ ଆରଂଭକରେ । ପଲିଟିକାଲ୍ ଏଜେଂଟ୍ ବା ରେସିଡେଂଟ୍ ରଜାଂକୁ ସାହାଯ୍ୟ କରିବାପାଇଁ ପେଶୱାରୀ ଓ ଗୁର୍ଖା ସୈନ୍ୟ ସହିତ ଏକ ବାଟାଲିଆନ୍ ଗୋରା ପଲଟଣ୍ ପଠାଂତି । ସେମାନେ ଢେଂକାନାଳରେ ଗାଁକୁ ଗାଁ ଖେଦିଯାଆଂତି ଏବଂ ଲୁଟତରାଜ କରଂତି । ବହୁ କୁଳନାରୀଂକୁ ଧର୍ଷଣ କରଂତି । ବିଭିନ୍ନ ସ୍ଥାନରେ ଗୁଳିଚଳାଇ ପ୍ରାୟ ୪୦ ଜଣ ଲୋକଂକୁ ହତ୍ୟାକରଂତି । ୧୨ ବର୍ଷର ପିଲା ସହିଦ ବାଜିରାଉତ ଥିଲା ସେମାନଂକ ମଧ୍ୟରେ ଅନ୍ୟତମ ।

ମୁଁ ଢେଂକାନାଳ ପ୍ରଜା-ଆଂଦୋଳନରେ ଯେଉଁସବୁ କବିତା-ବନାମ-ସଂଗୀତ ଲେଖିଥିଲି, ତାହା ଢେଂକାନାଳରେ ଚାଂଚଲ୍ୟ ଖେଳାଇଦେଇଥିଲା । ଏସବୁ କବିତା କଟକରୁ ସୁରେଂଦ୍ରନାଥ ଦ୍ୱିବେଦୀଂକ ସଂପାଦିତ ସାପ୍ତାହିକ ପତ୍ରିକା 'କୃଷକ'ରେ ପ୍ରକାଶପାଇଥିଲା । ଢେଂକାନାଳ ରଜା ଢେଂକାନାଳ ଗେଜେଟ୍‌ରେ ଏହିସବୁ କବିତାକୁ ତାଂକ ରାଜ୍ୟରେ ବ୍ୟାଜ୍ୟାପ୍ତ କରିଥିଲେ । ସେ କବିତାଗୁଡ଼ିକ ମଧ୍ୟରେ "ମାର୍ ତୁ ଯେତେ ଗୁଳି... ହୁଂକାପିଟା ଶାସନ ଆମେ ଗୋଡ଼ରେ ଦେବୁ ଦଳି" କବିତାଟି ଲୋକଂକ ମୁହଁରୁ ମୁହଁକୁ ବ୍ୟାପୀ ଚାରିଆଡ଼େ ଅଭୁତ ପ୍ରେରଣା ଆଣିଦେଇଥିଲା । ଓଡ଼ିଶାରେ ମଧ୍ୟ ଏସବୁ କବିତା-ବନାମ-ସଂଗୀତ ଲୋକମୁଖରେ ପ୍ରସାରିତ ହୋଇଥିଲା । ଏହିସବୁ ନିଷିଦ୍ଧ କବିତା ଗାନକରି ବହୁ କର୍ମୀ ଶୋଭାଯାତ୍ରାରେ ଅଗ୍ରସର ହୋଇ ଗୁଳି ଖାଇ ମରିଛଂତି । ଏହି ଅମର ସହିଦମାନେ ଏ ଜାତିର ଚିରସ୍ମରଣୀୟ ହୋଇ ରହିବେ ।

ଆଜିକୁ ୫୩ ବର୍ଷ ତଳର କଥା । ୧୯୩୮ ସାଲ ଅକ୍‌ଟୋବର ମାସ ୧୦ ତାରିଖ ରାତିରେ ଭୁବନ ନିକଟସ୍ଥ ନୀଳକଂଠପୁର ଗ୍ରାମର ୧୨ ବର୍ଷର ଏକ ଗରିବ ଖଂଡାୟତ ଘରର ପିଲା ବାଜି ଫୌଜର ଗୁଳିମାଡ଼ରେ ସହିଦ

ହୋଇଥିଲା । ବୁଢ଼ିମା’ ତା’ର ଧାନ କୁଟି ପେଟପାଟଣା ପାଳେ । ବାଜି ଅଂଧାର କିଟିକିଟି ରାତିରେ ଗାଁମୁଂଡ ବ୍ରାହ୍ମଣୀନଦୀ କୂଳରେ ଘାଟ ଡଂଗାକୁ ଜଗି ଶୋଇଥିଲା । ବାହାରେ ପ୍ରବଳ ଝଡ଼ିବର୍ଷା ଲାଗିରହିଥାଏ । ନଈକୂଳରେ ପ୍ରଜାମଂଡଳର ଅନ୍ୟ କର୍ମୀମାନେ ନିଜ ନିଜ ଘରେ ଥାଆଂତି; ବେଳେବେଳେ ଘାଟ ନିକଟକୁ ଆସି ତଦାରଖ କରି ଯାଉଥାଂତି ।

ବାଜି ଡଂଗା ଚାଳିତଳେ ଶୋଇଥିଲା । ରାତି ଅଧରେ ବ୍ରିଟିଶ୍ ଫୌଜ ଓ ଗଡ଼ଜାଘର ପୁଲିସ୍ ଆସି ତାକୁ ଉଠାଇଲେ; ନଈ ଆରପାରିକୁ ତାଂକୁ ଡଂଗାରେ ପାରିକରିଦେବାକୁ କହିଲେ । ସେମାନେ ଅଳ୍ପଦୂରରେ ଭୁବନଠାରେ ଦୁଇ-ତିନିଜଣ ପ୍ରଜାମଂଡଳର ଲୋକଂକୁ ଗୁଳିରେ ହତ୍ୟାକରି ନଈ ପାରିହେବାପାଇଁ ଡଂଗା ଚାହୁଁଥିଲେ । ବାଜି ନିଦ ମଳମଳ ଆଖିରେ ଫୌଜ ଆଡ଼କୁ ଚାହିଁଲା । ଦୃଢ଼କଂଠରେ ଜବାବ ଦେଲା – ‘‘ପ୍ରଜାମଣ୍ଡଳର ହୁକୁମ୍ ନାହିଁ– ମୁଁ ଡଂଗା ଛାଡ଼ିବି ନାହିଁ ।’’ ଫୌଜ ଭିତରୁ ଜଣେ ବାଜି ମୁଂଡକୁ ବଂଧୁକ କୁଂଦାରେ ପିଟିଦେଲା । ତା’ ମୁଂଡରୁ ରକ୍ତ ବୋହିବାକୁ ଲାଗିଲା । ବାଜି ରକ୍ତ-ସାଲୁବାଲୁ ଦିହରେ ତଳେ ପଡ଼ିଗଲା । ତା’ପରେ ଉଠିପଡ଼ି ତା’ର ଟିକି ଦିହର ସବୁ ଜୋର୍ ଠୁଳକରି ଡକାପାରିଲା – ‘‘ପ୍ରଜାମଣ୍ଡଳର ଲୋକେ କିଏ କେଉଁଠି ଅଛ, ଧାଇଁଆସ । ଫୌଜ ଡଂଗା ନେଇଯାଉଛି ।’’ ବାଜିର ଚିତ୍କାର ଶୁଣି ପ୍ରଜାମଂଡଳର କର୍ମୀମାନେ ଆସି ନଈକୂଳରେ ପହଂଚିଲେ । ତାଂକ ସଂଗରେ ଆସିଲେ ଶହ ଶହ ଗ୍ରାମବାସୀ । ସେମାନଂକ ଭିତରୁ କେତେକ ଟାଣୁଆ କର୍ମୀ ଡଂଗା ଦଉଡ଼ିକୁ ଅଂଟାରେ ବାଂଧି ଛିଡ଼ାହେଲେ ଭୂଇଁ ତଳୁ ଫୁଟି ବାହାରିଥିବା ଗୋଟିଏ ଗୋଟିଏ ଗଛପରି । ପୁଲିସ୍ ଡଂଗା ଦଉଡ଼ିକୁ ଛୁରିରେ କାଟିଦେଇ ନଈ ମଝିକୁ ଡଂଗା ବାହିନେଲା । ତା’ପରେ ସେମାନେ ଖଂଡେ ଦୂର ଚାଲିଯିବା ପରେ ମଝି ନଈରୁ ଭାସି ଆସିଲା ଅବିଶ୍ରାଂତ ବଂଧୁକର ଆବାଜ; ଘନ ଘନ ଗୁଳିର ଶବ୍ଦ ।

ଗଛ କାଟିଲା ପରି ଗୋଟିକି ଗୋଟି ବୀର ସହିଦ ଭୂଇଁରେ ଲୋଟିପଡ଼ିଲେ । ବାଜିରାଉତ, ହୁରୁଷି ପ୍ରଧାନ, ରଘୁ ନାୟକ, ଗୁରି ନାୟକ, ନଟ ମଳିକ, ଲକ୍ଷ୍ମଣ ମଳିକ ମୁର୍ଦ୍ଦାର ହୋଇ ତଳେ ପଡ଼ିଗଲେ – ଗଲେ . . . ।

ଅଂଧାର ମୁଲକର ସେଇ ନିଛାଟିଆ ଅଂଧାର ରାତିରେ ଛଅ-ଛଅଟା ମଣିଷ ଦିହର ଗରମ ଲହୁରେ କାଳିଆ ନଈପାଣି ହଠାତ୍ ସେଦିନ ନାଲ୍ ହୋଇଉଠିଥିଲା । ଏସବୁ ବିବରଣୀ ସେତେବେଳେ ‘କୃଷକ’ ପତ୍ରିକାରେ ଅବିକଳ ପ୍ରକାଶ ପାଇଥିଲା । କେହି ଏହାର ପ୍ରତିବାଦ କରିନଥିଲେ ।

**ଢେଂକାନାଳ ସହିଦବାହିନୀ –**

ତା ୧୨.୧୦.୧୯୩୮ ଅପରାହ୍ଣରେ ଛ’ଟିଯାକ ମୁର୍ଦ୍ଦାରକୁ ଡଂଗାଯୋଗେ ଢେଂକାନାଳର କବାଟବଂଧଠାରୁ ଜେନାପୁର ଅଣାଯାଏ । ସେଠାରୁ ବୈଷ୍ଣବ

ପଟ୍ଟନାୟକ, ସ୍ୱର୍ଗତ ଡଃ ରବି ଘୋଷ ଓ ଢେଙ୍କାନାଳର ବଳଦେବ ଲାଲା ପ୍ରଭୃତି ଗୋଟିଏ ମାଲ୍ ଗାଡ଼ି ଡବା ଭଡ଼ାକରି ସେଥିରେ ଛ'ଟିଯାକ ଶବକୁ କଟକ ଆଣିଂତି। ତା'ପରେ ଡାକ୍ତରମାଇନା ହେବା ପରେ ଗୋଟିଏ ଗୋଟିଏ ଶଗଡ଼ରେ ଗୋଟିଏ ଗୋଟିଏ ଶବକୁ ପୁଷ୍ପାଚ୍ଛାଦିତ କରି ଜଣେ ଜଣେ ସାଥୀଂକ ଚାଳକତ୍ୱରେ ଲକ୍ଷାଧିକ ଲୋକଂକ ଶୋଭାଯାତ୍ରାରେ ଖାନ୍‌ନଗର ମଶାଣିକୁ ନିଆଯାଏ ଏବଂ ସେଠାରେ ଗୋଟିଏ ଚିତାରେ ଶୁଆଇଦେଇ ଦାହକରାଯାଏ। ମୁଁ ବୋଧହୁଏ ଥିଲି ହୁରୁଷି ପ୍ରଧାନ ଶଗଡ଼ର ଚାଳକ। ଅନ୍ୟ ଗାଡ଼ିର ଚାଳକମାନେ ଥିଲେ ସ୍ୱର୍ଗତ ଅନଂତ ପଟ୍ଟନାୟକ, ଗୋବିଂଦ ଚଂଦ୍ର ମହାଂତି, ଛାତ୍ରନେତା ସ୍ୱର୍ଗତ ମୋତିଲାଲ୍ ତ୍ରିପାଠୀ, ସ୍ୱର୍ଗତ ଡଃ ରବି ଘୋଷ ଏବଂ ବୋଧହୁଏ ସ୍ୱର୍ଗତ ବିଶ୍ୱନାଥ ପଶାୟତ୍। ଏଇ ଛ'ଜଣ ମାଲଭାଇଂକ ଭିତରୁ କେବଳ ମୁଁ ଓ ଗୋବିଂଦ ଜୀବିତ ଅଛୁଁ; ବାକି ସମସ୍ତେ ଗଲେଣି। କଟକବାସୀ 'ସେଭଳି ଶୋଭାଯାତ୍ରା କେବେ ଦେଖିନଥିଲେ ବୋଲି ପୂଜ୍ୟା ଶ୍ରୀମତୀ ମାଳତୀ ଦେବୀ (ଚୌଧୁରୀ) ଅନୁଗୁଳ ବାଜିରାଉତ ଛାତ୍ରାବାସରୁ ମୋତେ ଏକ ପତ୍ର ଲେଖି ଜଣାଇଥିଲେ। ସେ ନିଜେ ଅଂତଃସତ୍ତ୍ୱା ଥିବାରୁ 'ଶାଶୁଂକ ଆକଟ ମାନି' ନିଜେ ଶୋଭାଯାତ୍ରାରେ ଯୋଗଦେଇପାରିନଥିଲେ ବୋଲି ମଧ୍ୟ ସେ ଚିଠିରେ ଲେଖିଥିଲେ।

ଓଡ଼ିଶାର ଜଣେ ଭୂତପୂର୍ବ ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ ତାଂକ 'ସ୍ମୃତି ଓ ଅନୁଭୂତି' ନାମକ ଆତ୍ମଜୀବନୀରେ ଏହି ଶବ-ଶୋଭାଯାତ୍ରାର ବର୍ଣ୍ଣନା କରିଛଂତି ଏବଂ ସେ ନିଜେ ଶ୍ମଶାନଘାଟ ପର୍ଯଂତ ଯାଇଥିବା କଥା ଲେଖିଛଂତି।

ଏହାଛଡ଼ା ଶ୍ରୀ ସୁରେଂଦ୍ରନାଥ ଦ୍ୱିବେଦୀ, ଢେଂକାନାଳ ପ୍ରଜା-ଆଂଦୋଳନର ଅନ୍ୟତମ ନେତା ଶ୍ରୀ ବୈଷ୍ଣବ ପଟ୍ଟନାୟକ, ସ୍ୱର୍ଗତ ଭଗବତୀ ପାଣିଗ୍ରାହୀ ପ୍ରମୁଖ ନେତୃବୃନ୍ଦ ଏହି ଘଟଣା ସମୟରେ ଏବଂ ପରେ ବହୁ ଲେଖା ଲେଖି ବାଜିରାଉତ ଏବଂ ଅନ୍ୟ ସହିଦମାନଂକ କଥା ଉଲ୍ଲେଖ କରିଛଂତି। ଏ ସମସ୍ତ ବିଷୟ ଇତିହାସରେ ପରିଣତ ହୋଇଛି। ଏହାକୁ ଲୋପକରିବା ବା ବିକୃତ କରିବାକୁ ଯିବା ଅର୍ଥ ଆମ ଦେଶର ଏକ ଗୌରବମୟ ଇତିହାସକୁ ଲୋପକରିବାର ଅପଚେଷ୍ଟା ମାତ୍ର।

ବାଜିରାଉତ ଖାଲି ଓଡ଼ିଶା ନୁହେଁ, ସମଗ୍ର ଭାରତବର୍ଷର ଜାତୀୟ ମୁକ୍ତି ସଂଗ୍ରାମରେ ପ୍ରବଳ ପ୍ରେରଣା ଓ ଶକ୍ତି ଯୋଗାଇଥିଲା। ସେ ଯେ ପୃଥିବୀର ସର୍ବକନିଷ୍ଠ ସହିଦ, ଏହା ଆମ ଦେଶର ପ୍ରତିଷ୍ଠିତ ସଂବାଦପତ୍ରମାନେ ଲେଖିଛଂତି। କଟକ ଖାନନଗର ମଶାଣିରେ ୧୯୩୮ ମସିହା ଅକ୍ଟୋବର ମାସ ୧୨ ତାରିଖ ରାତିରେ ଗୋଟିଏ ଚିତାରେ ଛ'ଟିଯାକ ସହିଦଂକ ଶବକୁ ଦାହକଲାବେଳେ ସେଇ ଲେଲିହାନ ଶିଖା ପାଖରେ ବସି ମୋ ମନରେ ଯେଉଁସବୁ ଭାବନା ଜାଗିଉଠିଥିଲା, ମୁଁ ତାହା 'ବାଜିରାଉତ' ନାମକ ଖଂଡକାବ୍ୟରେ ଲିପିବଦ୍ଧ କରିଥିଲି। ତାହା ଥିଲା ମୋ ପ୍ରାଣର ଗଭୀର ଉଲ୍ଲାସ।

ମୋର 'ବାଜିରାଉତ' କାବ୍ୟଟି ପ୍ରଥମେ ୧୯୩୮ ମସିହା ନଭେମ୍ବର ସଂଖ୍ୟା 'ସହକାର' ପତ୍ରିକାରେ ପ୍ରକାଶପାଏ ଏବଂ ପରେ ପୁସ୍ତିକାକାରରେ ପ୍ରକାଶଲାଭକରେ। ଏହି ପୁସ୍ତିକାଟି ପ୍ରକାଶ କରଂତି ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ପୂର୍ଣଚଂଦ୍ର ବସୁ; ପରେ ୧୯୪୩ ମସିହାରେ ଏହାର ପରିବର୍ଦ୍ଧିତ ସଂସ୍କରଣ କଲିକତାର ବହୁବଜାରସ୍ଥିତ ଚଂଦ୍ରଶେଖର ପୁସ୍ତକାଳୟ ଆନୁକୂଲ୍ୟରେ ପ୍ରକାଶିତ ହୁଏ।

୧୯୪୧ ମସିହାରେ ଭାରତର ପ୍ରସିଦ୍ଧ କବି ଏବଂ ସରୋଜିନୀ ନାଇଡୁଂକ ସାନଭାଇ ହରୀଂଦ୍ରନାଥ ଚଟ୍ଟୋପାଧ୍ୟାୟ ଏହାକୁ ଇଂରାଜୀରେ ଅନୁବାଦ କରଂତି। ଏହାର ଶୀର୍ଷକ ଥିଲା 'The Boatman Boy'। ୧୯୪୨ ମସିହାରେ 'ଭାରତଛାଡ଼' ଆଂଦୋଳନବେଳେ ଏହା କଲିକତାରୁ 'The Boatman Boy & other Poems' ନାମରେ ପ୍ରକାଶପାଇ ଭାରତର ସ୍ୱାଧୀନତା ଆଂଦୋଳନ ଏବଂ ଗଣ-ଆଂଦୋଳନମାନଂକରେ ବହୁ ମୁକ୍ତିଯୋଦ୍ଧାଂକୁ ଉଦ୍‌ବୁଦ୍ଧ କରିଥିଲା। ୧୯୫୫ ମସିହାରେ କଲିକତାର ବିଖ୍ୟାତ 'Modern Review' ପତ୍ରିକା ଏହାର ଏକ ଶୋଭନ ଓ ପରିବର୍ଦ୍ଧିତ ସଂସ୍କରଣ ପ୍ରକାଶ କରିଥିଲେ। ଏହାର ନାମ ଥିଲା 'The Boatman Boy & Forty Poems'.

ପରେ ଶେଖ୍ ଅବଦୁଲ୍ଲା (ଶେର୍-ଇ-କାଶ୍ମୀରୀ) କାଶ୍ମୀରୀ ଭାଷାରେ ଏବଂ ଇ.ଏମ୍. ନାଂବୁଦ୍ରିପଦ (ପରେ କେରଳର ମୁଖ୍ୟମଂତ୍ରୀ) ମାଲୟାଲମ୍ ଭାଷାରେ ଏହାର ଅନୁବାଦ କରଂତି। ଏହାଛଡ଼ା ହିଂଦୀ, ଉର୍ଦ୍ଦୁ, ବଂଗଳା, ଗୁଜରାଟୀ, ଅସମୀୟା, ତେଲେଗୁ, ତାମିଲ୍, ମରାଠୀ ଓ ଅନ୍ୟାନ୍ୟ ଭାରତୀୟ ଭାଷାମାନଂକରେ ଆଂଶିକ ବା ପୂର୍ଣତଃ ଅନୂଦିତ ହୋଇ ଏହା ସମଗ୍ର ଭାରତବର୍ଷରେ ବାଜିରାଉତକୁ ଏକ ଜାତୀୟ 'ହିରୋ' ଭାବେ ସୁପ୍ରତିଷ୍ଠିତ କରିଛି। ତେଣୁ ବ୍ରିଟିଶ୍ ସାମ୍ରାଜ୍ୟବାଦ ଓ ରାଜାରାଜୁଡ଼ା ଏବଂ ତାଂକ ବଂଶଧରମାନେ ସେହିଦିନୁ ବାଜିରାଉତକୁ ଇତିହାସ-ପୃଷ୍ଠାରୁ ମୂଳପୋଛ କରିବା ପାଇଁ ନାନାପ୍ରକାର ଅପପ୍ରଚାର ଚଳାଇଆସୁଛଂତି– ଏହା ଆଜି କିଛି ନୂଆ କଥା ନୁହେଁ। ସେମାନଂକର ଉଦ୍ଦେଶ୍ୟ ବାଜିରାଉତ ସଂବଂଧରେ କିଛିଟା ସଂଶୟ ସୃଷ୍ଟିକରିବା ଏବଂ ଆଗାମୀ ଓ ବର୍ତ୍ତମାନ ପ୍ରଜନ୍ମର ବଂଶଧରମାନଂକ ମନରେ ବିଭ୍ରାଂତି ଜାତକରିବା, ଯାହା ରାଜା ରାଜୁଡ଼ାମାନଂକୁ କଳଂକମୁକ୍ତ କରିବାର ସାହାଯ୍ୟ କରିବ। ସେଥିପାଇଁ ସାମ୍ରାଜ୍ୟବାଦ ଓ ସାମଂତବାଦର କିଂକରମାନେ ଟିକିଏ ବି ସୁବିଧା ପାଇଲେ ସଜାଗ ହୋଇ ଉଠିଥାଂତି। କିଂତୁ ବାଜିରାଉତ ଆଜି ହିମାଚଳ ପରି ଅଟଳ। ତାକୁ ଏମାନେ ଗୋଟାଏ କଲମ ଗାରରେ ଉଡ଼ାଇ ଦେଇ ପାରିବେ ନାହିଁ। ସେ ଜନମାନସରେ ମିଶିଯାଇ ଜାତୀୟ ସ୍ମୃତିର ଏକ ଅଂଶରୂପେ ପରିଣତ ହୋଇସାରିଛି। ତାକୁ ସେଠାରୁ ବିଛିନ୍ନ କରିବା କୌଣସି ରାଜାରାଜୁଡ଼ାଂକ ଅନୁଗତ ବ୍ୟକ୍ତି ପକ୍ଷରେ ସଂଭବନୁହେଁ। ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ସେ ଜନସ୍ମୃତିରେ ମିଶି ରହିଛି– ତାକୁ ସେଠାରୁ ଅଲଗା କରିବ କିଏ ?

ବାଜିରାଉତ ସହିଦ ନୁହେଁ ବୋଲି ବେଳେବେଳେ କେତେକ କୁତ୍ସିତ କଂଠରୁ ଧ୍ୱନି ଉଠିଥାଏ। ଏହା ଇତିହାସ ବିରୁଦ୍ଧରେ ଏକ ଷଡ଼ଯଂତ୍ର। ବାଜି ଆଜି ଆମ ପାଖରେ ନାହିଁ, ମାତ୍ର ବେଶୀ ଦୂରରେ ମଧ୍ୟ ନାହିଁ; କାରଣ ବାଜିରାଉତ ମରଂତିନାହିଁ। ସେମାନେ ଜନଚେତନାରେ ମିଶି ଜାତୀୟ ସ୍ମୃତିର ଅଂଶ ହୋଇ ରହିଛଂତି। ସେମାନେ ଚିର ଅବିନାଶୀ।

ବାଜିରାଉତକୁ ନେଇ ବହୁ କାବ୍ୟ, କବିତା, ନାଟକ ଗତ ଅର୍ଦ୍ଧଶତାବ୍ଦୀ ଧରି ଗଢ଼ିଉଠିଛି। ଢେଂକାନାଳର ସହିଦବାହିନୀ ପୃଥିବୀରୁ ବିଦାୟ ନେବାର ଅବ୍ୟବହିତ ପରେ (୧୯୩୯ ନଭେଂବର ମାସରେ) ଓଡ଼ିଶାରେ ଜଣେ ପ୍ରଖ୍ୟାତ କବି ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀଂକ ଲେଖନୀରୁ ଏକ ମର୍ମସ୍ପର୍ଶୀ କବିତା ନିସୃତ ହୋଇଥିଲା। ଏହି କବିତା 'କୃଷକ'ର ପୃଷ୍ଠା ମଂଡନ କରିଥିଲା। କବିତାଟି ତଳେ ଦିଆଗଲା –

**'ଅମର ସହିଦ'**

**ଲେଖକ – ବଂଦୀ ସୈନିକ।**

''ଝାଳ ଦେଇ ଯେତେ ଗଢ଼ିଲୁ ରାଇଜ ରଜା
ଲହୁ ଦେଇ ତୋର ହତିଆର ତହିଁ ପଜା,
ବେଳ ଏହି ବେଳ ଏହି
ତୋଳିଥିଲୁ ଯାହା ତାଡ଼ିବୁ ତାହାକୁ ନଣୁଥରେ ଆଉ ଚେଇଁ।
ଆସ 'ଲକ୍ଷ୍ମଣ', ଆସ ହେ 'ନଟ', ରଘୁ ଗୁରି
ହୁରୁଷି ପ୍ରଧାନ ବଜା ରେ ମରଣ ତୂରୀ
ଡର ନାହିଁ ଡର ନାହିଁ
ବାରବରଷର ବାଜିରାଉତ ସେ ମରିନାହିଁ ମରିନାହିଁ।
କୋଣାରକଠାରୁ ତୋଳିଲା ଦେଉଳ ବଡ଼,
ନମାନିଲା ରଜା, ଗୁଳି ବଂଧୁକ ଝଡ଼,
ବଡ଼ ଅବିନୀତ ଟୋକା
ଢେଂକାନାଳର କଂକାଳ ପିଟି ବଜାଇଲା ଜୟଢକା।
ବଢାଇଲା ସେ ତ ଦୁନିଆ ଉପରେ ବାଜା
ଫୁଲାଇ ଛାତିକୁ ନାହିଁ ''ରଜା ନାହିଁ ରଜା,''
କାହୁଁ ଶିଖିଲୁ ଏ କଥା
କହ କହ ବାଜି କାହା ଲାଗି ଆଜି ବଳିଦେଲୁ ତୋର ମଥା ?
ଗଂଜାମ ଜିଲା ବଢ଼ିରେ ମରୁଚି ଲୋକ
ନିତି ଶହ ଶହ ମାରୁଚି ତ ରୋଗ ଭୋକ,
ଆରେ ମରଣର ଦାସ
କହ କେତେ ଜଣ ମରିଥିଲେ ଏଥି ଗଢ଼ିବାକୁ ଇତିହାସ ?

ତୁନିହ, ତୁନିହ, ଧୀରେ ଦେଖ ଏଠି ଆଜି
ନଟ, ରଘୁ, ଗୁରି, ବାର ବରଷର ବାଜି
ଶୋଇଛି ହୁରୁଷି ବୀର
ଆକାଶକୁ ଠେଲି ଉଠିଛି ଉଚ୍ଚେ ତାହାର ଦେଉଳ ଶିର-
ତୁନି ହୁଅ ଆରେ କବି
ବିଶ୍ରାମ ଏଠି ନେଇଛି ଯୋଦ୍ଧା ଏ ଜାତିର କୁଳରବି।
'କୃଷକ' – (କଟକ, ନଭେମ୍ବର, ୧୯୩୮)

ଚାରଣକବି ଏସ୍.ଏ. ହମିଦ୍ ସେହି ସମୟରେ ଅର୍ଥାତ୍ ଅକ୍ଟୋବର ୧୯୩୮ରେ 'ଢେଂକାନାଳ ଗୁଳି ଫୟେର କାହାଣୀ' ନାମକ ତାଂକର ଏକ ପଇସିକିଆ ପୁସ୍ତିକାରେ ସହିଦ ବାଜିରାଉତ ବିଷୟ ଉଲ୍ଲେଖ କରିଛଂତି। ଏହା କଟକ କୋହିନୂର ପ୍ରେସ୍‌ରେ ମୁଦ୍ରିତ ହୋଇ ପ୍ରକାଶପାଇଥିଲା –

''ଦିନୁ ଦିନୁ ବଳିଲା ରେ ଢେଂକାନାଳ ଅତ୍ୟାଚାର
ଘରେ ଘରେ ଖାନତଲାସ ଆହୁରି ଗିରଫଦାର।
ପୁଲିସ ଫଉଜ ଗୋରା ସୈନ୍ୟ କଲେ ଛାରଖାର
ଛଡ଼ାଇଲେ ଜମିବାଡ଼ି ପ୍ରଜାମାନଂକର
ହାତୀ ଘୋଡ଼ା ମଡ଼ାଇଲେ କଲେ ନାରଖାର
ପ୍ରଜାମଂଡଳର ନାମ ରଖିଲା ଅମର
ବାର ବରଷର ପିଲା ବାଜି ନାମ ତାର।''

ମୋ ନିଜ କବିତାଗ୍ରଂଥ 'ବାଜିରାଉତ'ର ପଂକ୍ତିଗୁଡ଼ିକ ପାଠକମାନଂକୁ ବେଶ୍ ଜଣା। ଏହା ଆଂଶିକଭାବରେ କଟକରୁ ପ୍ରକାଶିତ 'ସହକାର' ପତ୍ରିକାରେ ୧୯୩୮ ସାଲ ନଭେମ୍ବର ମାସରେ ପ୍ରକାଶପାଇଥିଲା। ତଳେ କେତେକ ପଂକ୍ତି ଦିଆଗଲା –

''ନୁହେଁ ବଂଧୁ ନୁହେଁ ଏହା ଚିତା
ଏ ଦେଶ ତିମିର ତଳେ ଏ ଅଲିଭା ମୁକତି ସଳିତା।
ନୁହେଁ ଏହା ଜଳିଯିବା ପାଇଁ
ଏହାର ଜନମ ଏଥି ଜାଳି ପୋଡ଼ି ଦେବାକୁ ଧସାଇ।
ଏ ଶିଖା ଦେଇଛି ଆଜି ଇତିହାସେ ହାତ ଟେକି ଦାନ
ଶତାବ୍ଦୀର ଶ୍ରେଷ୍ଠ ଫୁଲ ମୁକୁଳିତ ମୃତ୍ୟୁହୀନ ପ୍ରାଣ।
ନିରନ୍ନ ଏ ଜନତାକୁ ଦେଇଛି ସେ ତାହାର ଚାଳକ
କ୍ଷୁଦ୍ର ଏକ ନାଉରୀ ବାଳକ
ବାହିବାକୁ ଏ ଦେଶର ତରୀ
ଭିଡ଼ି ନାହିଁ ଘାଟେ ନାଆ ନାଉରିଆ ପାରେକିରେ ମରି ?''
('ବାଜିରାଉତ' – 'ସହକାର', ନଭେମ୍ବର, ୧୯୩୮)

ଏହାଛଡ଼ା ବହୁ ନାଟକ, କବିତା ଓ ପ୍ରବଂଧ ବାଜିରାଉତକୁ କେନ୍ଦ୍ର କରି ଗତ ଦୀର୍ଘ ୫୬ ବର୍ଷ ମଧ୍ୟରେ ସୃଷ୍ଟିହୋଇଛି। କେହି ଜଣେହେଲେ ଲେଖକ ବା ପାଠକ ଏହାର ବିଷୟବସ୍ତୁକୁ ସଂଦେହ କରିନାହାଂତି ବା ବାଜିରାଉତ ସହିଦ ନୁହେଁ ବୋଲି କହିନାହାଂତି। ସମସ୍ତେ ଏକ ବାକ୍ୟରେ ଓ ଏକମନରେ ବାଜିରାଉତର ସତ୍ୟତା ଓ ସହିଦତ୍ୱକୁ ଗ୍ରହଣ କରି ନେଇଛଂତି।

ଏହାଛଡ଼ା କଲିକତାରୁ ପ୍ରକାଶିତ ଇଂରାଜୀ ଦୈନିକ 'ହିଂନ୍ଦୁସ୍ଥାନ ଷ୍ଟାଡ଼ାର୍ଡ' ତା୧୦.୩.୧୯୩୯ ସଂଖ୍ୟାରେ ଏକ ଦୀର୍ଘ ପ୍ରବଂଧ ଓଡ଼ିଶା କଂଗ୍ରେସ ସୋସିଆଲିଷ୍ଟ ପାର୍ଟିର ସଂପାଦକ ସାଥୀ ଭଗବତୀଚରଣ ପାଣିଗ୍ରାହୀ 'ଢେଂକାନାଳ ମୁଭ୍‌ମେଂଟ୍' ନାମକ ଏକ ଦୀର୍ଘ ପ୍ରବଂଧ ଲେଖିଥିଲେ। ସେଥିରେ ସେ ଢେଂକାନାଳ ପ୍ରଜାମାନଂକ ଉପରେ ରାଜା କିପରି ଅକଥ୍ୟ ଅତ୍ୟାଚାର ଚଳାଇଛଂତି, ତାହା ବର୍ଣନାକରିଥିଲେ। ବେଠି, ଭେଟି, ମାଗଣ ଓ ନାରୀମାନଂକ ଉପରେ ଅତ୍ୟାଚାର ଅବାଧ ଗତିରେ ଚାଲିଥିଲା; ରାଜାଂକ କଥାହିଁ ଥିଲା ରାଜ୍ୟର ଆଇନ୍। ସେ (ଭଗବତୀବାବୁ) ଢେଂକାନାଳରେ ପ୍ରଜାମଂଡଳ ଆଂଦୋଳନର ଉତ୍ପତ୍ତି ଓ ପ୍ରସାରର ଇତିହାସ ଦେଇ ବୀର ସହିଦମାନଂକର ଗୁଳି ଆଗରେ ଆତ୍ମବଳିଦାନର ବର୍ଣନା କରିଥିଲେ।

ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର National Front, ବଂବେ, ୨୯.୧.୧୯୩୯ ସଂଖ୍ୟାରେ ସି.ପି.ଆଇ.ର ସାଧାରଣ ସଂପାଦକ ଶ୍ରୀ ପି.ସି. ଯୋଷୀ ଢେଂକାନାଳ ଯାଇ ବହୁ ପ୍ରତ୍ୟକ୍ଷ ବିବରଣୀ ସଂଗ୍ରହ କରି ଉକ୍ତ ପତ୍ରିକାରେ On Dhenkanal front 'Cadres, Heroes and Martyrs' ନାମକ ଏକ ତଥ୍ୟମୂଳକ ଲେଖା ପ୍ରକାଶ କରିଥିଲେ। ସେଥିରେ ସେ ବାଜିରାଉତ ଓ ହୁରୁଷି ପ୍ରଧାନ ପ୍ରଭୃତିଂକର ଆତ୍ମୋତ୍ସର୍ଗ ଓ ଦେଶ ପାଇଁ ସହିଦତ୍ୱ ବରଣର ଉଚ୍ଚ ପ୍ରଶଂସା କରିଛଂତି। ସେ ବାଜି ସଂବଂଧରେ ଲେଖିଛଂତି –

"Baji Rout a boy volunteer of 12 years from Nilakanthapur, was guarding the boats on the ferryghat. When the village Bhuban was being raided and the eleders were discussing whether to go to the rescue of their brothers at Bhuban or not, suddenly from the dark the advance police party of 10 arrived and demanded the boats. Baji wanted to drift the boat to midstream, but before he could do this the policemen caught him and the boat and themselves got into it. Hurshi, a prominent Praja Mondal worker and himself a boatman came running to help Baji. Baji had caught hold of the rope and would not let it go. A bayonet was thrust into his tender arm, he caught the rope with the other arm. "You may kill

me but I wouldn't give you the boat" said the brave boy. A tussel ensued, Baji and Hurshi at one side and ten police on the other. They were soon joined by another 30 policemen running away from Bhuban with the arrested 8 villagers. The policemen took out their knives and cut the rope. Baji and Hurshi shouted for help, their fellow villagers came running. Baji and Hurshi went some distance in water with boat. Policemen fired point-blank. Baji fell first and then Hurshi and later two more Harijans from the crowed."

ଅର୍ଥାତ୍ – "ବାଜିରାଉତ ନୀଳକଂଠପୁର ଗ୍ରାମର ଏକ ୧୨ ବର୍ଷ ବୟସର ଜଣେ ସ୍ୱେଚ୍ଛାସେବୀ ବାଳକ ଯାହାର କାମ ଥିଲା ଘାଟଡଂଗା ଜଗିବା ଓ ଡଂଗା ଉପରେ ପହରାଦେବା। ରଜାଘର ସିପାହି ଓ ଫୌଜମାନେ ନିକଟସ୍ଥ ଭୁବନ ଉପରେ ଚଢ଼ାଉ କରୁଥାଂତି। ଗ୍ରାମବାସୀମାନେ ଭୁବନ ଯାଇ ସାଥୀମାନଂକୁ ରକ୍ଷା କରିବା ବିଷୟ ଆଲୋଚନା କରୁଥିବାବେଳେ ରଜାଘର ସିପାହି ଓ ବ୍ରିଟିଶ୍ ପଲଟନ୍ ଅଂଧାର ରାତିରେ ଆଗୁଆ ଦଳରେ ଦୌଡ଼ି ଦୌଡ଼ି ଆସି ବାଜିକୁ ନଈ ପାରହେବାପାଇଁ ଡଂଗା ମାଗିଲେ। ବାଜି ଡଂଗାକୁ ଘାଟରୁ ନଈ ଭିତରକୁ ନେଇଯିବାପାଇଁ ଚାହୁଁଥିଲା, ମାତ୍ର ସେ କିଛି କରିବା ଆଗରୁ ପୁଲିସ ଫୌଜମାନେ ତାକୁ ଧରିପକାଇ ଡଂଗା ଭିତରକୁ ପଶିଆସିଲେ। ପ୍ରଜାମଂଡଳର ଜଣେ ଟାଣୁଆ କର୍ମୀ ହୁରୁଷି ପ୍ରଧାନ ଦଉଡ଼ିଆସି ବାଜିକୁ ସାହାଯ୍ୟ କରିବାକୁ ଚାହିଁଲା। ବାଜି ଡଂଗା-ଦଉଡ଼ିକି ଧରି ଡଂଗା ଛାଡ଼ିଲା ନାହିଁ। ତା'ର କୋମଳ ବାହୁରେ ବଂଧୁକର ସଙ୍ଗିନ୍ ଭୁଷିଦିଆଗଲା। ବାଜି ଅନ୍ୟହାତରେ ଡଂଗା-ଦଉଡ଼ିକି ଟାଣିଧରିଲା। ତା'ପରେ ସେ ବୀର ବାଳକ ଦୃପ୍ତ କଂଠରେ କହିଲା, ତମେ ମୋତେ ମାରିଦିଅ ପଛକେ ମୁଁ ଡଂଗା-ଦଉଡ଼ି ଛାଡ଼ିବିନି। ତା'ପରେ ଚାଲିଲା ଧସ୍ତାଧସ୍ତି। ଗୋଟେ ପାଖରେ ବାଜି ଆଉ ହୁରୁଷି; ଅନ୍ୟ ପାଖରେ ୧୦ ଜଣ ପୁଲିସ ଫୌଜ। ଏତିକିବେଳେ ଆଉ ୩୦ ଜଣ ପୁଲିସ ଫୌଜ ଭୁବନରୁ ୮ ଜଣ ଗିରଫ୍ କରିଥିବା ଲୋକଂକୁ ଧରି ସେଠୁ ପଳାଇଆସି ନଈଘାଟରେ ପହଂଚିଲେ। ପୁଲିସ ଫୌଜ ତାଂକ ଛୁରୀରେ ଡଂଗା ଦଉଡ଼ି କାଟିଦେଲେ। ବାଜି ଓ ହୁରୁଷି ଚିତ୍କାର କରି ଅନ୍ୟମାନଂକୁ ସାହାଯ୍ୟ କରିବାକୁ ଡାକମାରିଲେ। ସବୁ ଗାଁଲୋକମାନେ ଦୌଡ଼ିଆସିଲେ। ବାଜି ଓ ହୁରୁଷି ଡଂଗା ସଂଗେ ସଂଗେ କିଛିଦୂର ପାଣି ଭିତରକୁ ପଶିଗଲେ। ପୋଲିସ୍ ଫୌଜ ସିଧା ଗୁଳିଚଳାଇଲେ। ବାଜି ପ୍ରଥମେ ଗୁଳିମାଡ଼ରେ ଟଳିପଡ଼ିଲା। ତା'ପରେ ହୁରୁଷି ତଳେ ପଡ଼ିଗଲା ଆଉ ଦୁଇ-ତିନିଜଣ ହରିଜନ ମଧ୍ୟ ଗୁଳିମାଡ଼ରେ ତଳେ ପଡ଼ିଗଲେ।" ('ନେସ୍‌ନାଲ ଫ୍ରଂଟ୍', ବଂବେ, ତା୨୯.୧.୧୯୩୯)

ସେଇ ପତ୍ରିକାର ତା ୨୨.୧.୧୯୩୯ ସଂଖ୍ୟାରେ ଯୋଷୀ 'Dhenkanal

Defies Death ଅର୍ଥାତ୍ 'ଢେଂକାନାଳ ମୃତ୍ୟୁକୁ ଖାତିରକରେନାହିଁ' ଶୀର୍ଷକ ଏକ ଲେଖା ଲେଖି ଢେଂକାନାଳ ପ୍ରଜାଂକ ବୀରତ୍ୱ, ନିଃସ୍ୱାର୍ଥପରତା, ଦେଶାତ୍ମବୋଧର ଭୂୟସୀ ପ୍ରଶଂସା କରିଛଂତି। ଶ୍ରୀ ଯୋଷୀ ନିଜେ ଢେଂକାନାଳ ଯାଇଥିଲେ ଏବଂ ପ୍ରଜାମଂଡଳର ନେତା ଓ କର୍ମୀମାନଂକୁ ଏବଂ ରାଜାଂକୁ ମଧ୍ୟ ସାକ୍ଷାତ କରି ପ୍ରତ୍ୟକ୍ଷବିବରଣୀ ସଂଗ୍ରହ କରିଥିଲେ।

ଏହିସବୁ ପୁରୁଣା ସଂବାଦପତ୍ର ତଥ୍ୟରୁ ବାଜି ସହିଦ କି ନୁହେଁ, ତାହା ସ୍ପଷ୍ଟ ଜଣାପଡ଼ିବ। କଟକରେ ସହିଦମାନଂକର ଶବସତ୍କାର ଓ ଶବଶୋଭାଯାତ୍ରାର ବିବରଣୀ କଟକରୁ ପ୍ରକାଶିତ ଦୈନିକ 'ଉତ୍କଳଦୀପିକା'ରେ ପ୍ରକାଶ ପାଇଥିଲା। ସେତେବେଳେ ଏହାର ସଂପାଦକଥିଲେ ସ୍ୱର୍ଗତ ପ୍ୟାରୀଶଂକର ରାୟ ଏମ୍.ଏଲ୍.ଏ.। ଏହାଛଡ଼ା କଲି-କତାର ଦୈନିକ ଇଂରାଜୀ ପତ୍ରିକାମାନଂକରେ ମଧ୍ୟ ଏହି ଘଟଣା ପ୍ରକାଶ ପାଇଥିଲା।

ଏହାଛଡ଼ା 'ବଲବଂତ ରାଓ ମେହେଟ୍ଟା କମିଟି', ଯାହାର ଅନ୍ୟତମ ସଦସ୍ୟ ଥିଲେ ଡଃ. ହରେକୃଷ୍ଣ ମହତାବ ବାଜିରାଉତ ଓ ଅନ୍ୟାନ୍ୟ ସହିଦମାନଂକ ବିଷୟ ପୁଂଖାନୁପୁଂଖଭାବେ ଅନୁସଂଧାନ କରି ସେମାନେ ଡଂଗା ଅଟକାଇ ପଉଜର ଗୁଳିମାଡ଼ରେ ମୃତ୍ୟୁବରଣ କରିଥିବା କଥା ସ୍ପଷ୍ଟଭାବରେ ଉଲ୍ଲେଖ କରିଛଂତି। ବିଲାତ ସରକାର ପଠାଇଥିବା ମିସ୍ ଆଗାଥା ହାରିସନ୍ ମଧ୍ୟ ଏ ବିଷୟ ତଦଂତ କରି ତାଂକ ରିପୋର୍ଟରେ ଏହା ସାବ୍ୟସ୍ତ କରିଛଂତି।

ଏ ସମସ୍ତ ସାକ୍ଷ୍ୟ ପ୍ରମାଣ ସତ୍ତ୍ୱେ ଅର୍ଦ୍ଧଶତାବ୍ଦୀରୁ ବେଶୀ କାଳ ନୀରବ ରହିବାପରେ ଶ୍ରୀ ସୁରେଂଦ୍ର ମହାଂତି ତାଂକ ଆତ୍ମଜୀବନୀ 'ପଥ ଓ ପୃଥିବୀ'ରେ (୧୯୮୬) ମସିହାରେ ଲେଖିଛଂତି ଯେ ୧୯୫୭ ମସିହାରେ ଓଡ଼ିଶା ଆସେମ୍ବ୍ଲି ନିର୍ବାଚନବେଳେ ସେ ଢେଂକାନାଳ ରାଜା ସ୍ୱର୍ଗତ ଶଂକର ପ୍ରତାପ ମହୀଂଦ୍ର ବାହାଦୁରଂକ ସପକ୍ଷରେ ଭୋଟପ୍ରଚାର କରିବାକୁ ନୀଳକଂଠପୁର ଯାଇଥିଲେ ଏବଂ ସେ ସେଠାରେ ଏକ ସଭାରେ ଯୋଗଦେଇଥିଲେ। ରାଜାସାହେବଂକ ସଭାକୁ ଆସିବା ଡେରିହୋଇଥିଲା। ଏହି ଅବସରରେ ସଭାକାର୍ଯ୍ୟ ବିଳଂବ ଥିବାରୁ ସେ ବାଜିରାଉତ ଘରକୁ ଯାଇଥିଲେ। ସେଠାରେ ବାଜିରାଉତର ବୋଉଂକ ସଂଗେ ଦେଖାହେଲା। ବସଂତରେ ଗୋଟିଏ ଆଖିଡୋଳା ନଷ୍ଟ ହୋଇଯାଇଥିବା ବାଜିରାଉତର ଜଣେ ଭାଇ ମଧ୍ୟ ସେଠାରେ ଥିଲେ। ବାଜିରାଉତର ବୋଉ ସୁରେଂଦ୍ର ମହାଂତିକୁ କୁଆଡ଼େ କହିଲେ ଯେ, ବାଜି ଡଂଗା ଅଟକାଇନଥିଲା। ସେ ତାଂକ ବାଡ଼ିରେ ପଣସଗଛ ମୂଳେ ଛିଡ଼ାହୋଇ ଗାଁଲୋକେ ନଈକୂଳରେ ଡଂଗା ଅଟକାଇବା ଦେଖୁଥିଲା। ହଠାତ୍ ଗୋଟାଏ ଗୁଳି ଛିଟିକିଆସି ବାଜିରାଉତ ଦେହରେ ଲାଗିଗଲା ଏବଂ ସେ ସେଠାରେ ଟଳିପଡ଼ିଲା। ଏହାପରେ ସୁରେଂଦ୍ରବାବୁ ସେ ନଈ ଅତଡ଼ାରେ ଥିବା ପଣସ ଗଛମୂଳକୁ ଯାଇଥିଲେ, ଇତ୍ୟାଦି ଇତ୍ୟାଦି . . .।

ମାତ୍ର ୭.୧୦.୧୯୯୦ ରବିବାର ସଂଖ୍ୟା 'ସଂବାଦ'ରେ ବାଜିରାଉତର

ଏକମାତ୍ର ଭାଇ ଓ ବଡ଼ଭାଇ ଶ୍ରୀ ନଟବର ରାଉତ ଏବଂ ଅନ୍ୟ କେତେକ ଗ୍ରାମବାସୀ ବିବୃତି ଦେଇ କହିଛନ୍ତି ଯେ, ବାଜିରାଉତର ବଡ଼ଭାଇ ନଟବର ରାଉତର ଏକ ଆଖିଡୋଳା ବସନ୍ତରେ ନଷ୍ଟ ହୋଇନାହିଁ କି ତାଂକ ପୂର୍ବଘର ବାଡ଼ିରେ କେବେ କୌଣସି ପଣସଗଛ ନଥିଲା । (ବର୍ତମାନ ସେ ବାଡ଼ିର ଅଧେ ବ୍ରାହ୍ମଣୀନଦୀ ଗର୍ଭରେ ଲୀନହୋଇଗଲାଣି, ଏହାଛଡ଼ା ନଈକୂଳଠାରୁ ଡଂଗାଘାଟର ଦୂରତ୍ୱ ଏତେ ବେଶୀ ଯେ ସେଠାରେ ଛିଡ଼ାହୋଇ ଡଂଗାଘାଟରେ କ'ଣ ହେଉଛି ତାହା ରାତି ଅଂଧାରରେ ଦେଖିପାରିବା ଆଦୌ ସଂଭବନୁହେଁ । ବଡ଼ିପାହାଂତାରେ ଘଡ଼ିଏ ଅଂଧାର ଥାଉ ଥାଉ ଜଣେ ୧୨ ବର୍ଷର ପିଲା ନିଜ ବାଡ଼ିରେ ଏକୁଟିଆ ଛିଡ଼ାହୋଇ ନଈକୂଳ ଦୃଶ୍ୟ ଦେଖିଥିବା ଆଦୌ ସଂଭବପର ନୁହେଁ । ବାଜିରାଉତ ଘରଠାରୁ ନଈକୂଳ ଡଂଗାଘାଟର ଦୂରତ୍ୱ ପ୍ରାୟ ୧୨୦୦ ପଦିକା ଥିଲା ବୋଲି ଗ୍ରାମବାସୀମାନେ 'ସଂବାଦ'ର ସଂବାଦଦାତାଂକ ନିକଟରେ ସାକ୍ଷ୍ୟ ଦେଇଥିଲେ । ତାହା ଉପରିଲିଖିତ ତାରିଖରେ ଦୈନିକ 'ସଂବାଦ'ରେ ପ୍ରକାଶପାଇଥିଲା ।

ବାଜିରାଉତର ମାଆ ୨୬ ବର୍ଷ ହେଲା ଅର୍ଥାତ୍ ତା ୧୮.୭.୧୯୬୦ ମସିହାରୁ ଇହଧାମ ତ୍ୟାଗକଲେଣି । ସୁରେନ୍ଦ୍ରବାବୁ ଏତେଦିନଯାଏଁ ଏକଥା ପ୍ରକାଶନକରି ବାଜିରାଉତର ମାଆ ମରିବାର ପ୍ରାୟ ୨୬ ବର୍ଷ ପରେ ପ୍ରକାଶ କରିବାର ତାତ୍ପର୍ଯ କ'ଣ, ମୁଁ ବୁଝିବାକୁ ଅକ୍ଷମ । ଏହାର ଅର୍ଥ ବାଜିରାଉତଠାରୁ ସହିଦତ୍ୱ ଛଡ଼ାଇନେଇ ତାକୁ ଏକ ସାଧାରଣ ବାଳକରେ ପରିଣତ କରିବା ମାତ୍ର । ଏହା ଘୋର ଅନ୍ୟାୟ ଏବଂ ଇତିହାସ ପ୍ରତି ଚରମ ବିଶ୍ୱାସଘାତକତା । ଅନ୍ୟପକ୍ଷରେ ଏହା ଢେଂକାନାଳ ରାଜାଂକୁ ଘଂଟ ଘୋଡ଼ାଇବା ପାଇଁ ଏବଂ ତାଂକୁ ଦୋଷମୁକ୍ତ କରିବାପାଇଁ ଏକ ଦୁର୍ବଳ ଚେଷ୍ଟା ମାତ୍ର ।

**ପଶ୍ଚିମବଂଗ ସରକାରଂକ ପୁସ୍ତକରେ ଓଡ଼ିଆ ସହିଦ –**

୧୯୮୭ ମସିହାରେ ପଶ୍ଚିମବଂଗ ସରକାର 'India's Struggle for Freedom' ନାମକ ଏକ ପ୍ରାମାଣିକ ପୁସ୍ତକ ପ୍ରକାଶ କରିଛନ୍ତି । ଏଥିରେ ପର୍ଯାୟକ୍ରମେ ଭାରତର ସ୍ୱାଧୀନତା ସଂଗ୍ରାମର ଇତିବୃତ୍ତ ଓ ସହିଦମାନଂକ ଫଟୋଚିତ୍ରମାନ ସୁନ୍ଦରଭାବରେ ଗ୍ରଥିତ ଓ ସନ୍ନିବିଷ୍ଟ ହୋଇଛି । ଏକ ୨୧ଜଣିଆ ସଂପାଦକମଂଡଳୀ ବା କମିଟି ଏହି ଗ୍ରଂଥଟିର ରଚନା ଓ ସଂପାଦନା କରିଛନ୍ତି । ଦେଶର ଏବଂ ପଶ୍ଚିମ ବଂଗଳାର ୨୧ ଜଣ ତୁଂଗ ଐତିହାସିକ, ଗବେଷକ ଓ ସମାଜବିଜ୍ଞାନୀ ଏହି ସଂପାଦକୀୟ କମିଟିରେ ଅଛଂତି । ସେମାନେ ହେଲେ ସର୍ବଶ୍ରୀ ଚିନ୍ମୟ ସ୍ନେହାବିଶ, ଗଣେଶ ଘୋଷ, ଡଃ. ନିହାରରଂଜନ ରାୟ, ଡଃ. ଅମଳେଶ ତ୍ରିପାଠୀ, ଡଃ. ବରୁଣ ଦେ, ପ୍ରଫେସର ନିର୍ମଳ ବସୁ, ପ୍ରଫେସର ଅମଳେନ୍ଦୁ ଗୁହ, ପ୍ରଫେସର ଅତୀଶ ଦାସଗୁପ୍ତ ଓ ପ୍ରଫେସର ଶାୟାଦ୍ ସାହାବୁଲ୍ଲା ପ୍ରମୁଖ ପ୍ରଖ୍ୟାତ ବିଦ୍ୱାନ୍‌ଗଣ । ବହିଟିର ମୁଖବଂଧ ଲେଖିଛନ୍ତି ପଶ୍ଚିମ ବଂଗର ମୁଖ୍ୟମଂତ୍ରୀ ଜ୍ୟୋତି ବସୁ ।

ଏହି ବହିଟିର ପ୍ରାମାଣିକତା ସଂପର୍କରେ କୌଣସି ପ୍ରଶ୍ନ ଉଠି ନପାରେ। ବାଜିରାଉତ ବିତର୍କ ୧୯୯୦ ମସିହାରେ ଆରଂଭହୁଏ। ମାତ୍ର ତହିଁର ତିନିବର୍ଷ ପୂର୍ବେ ପ୍ରକାଶିତ ଏହି 'India's Struggle for Freedom' ଗ୍ରଂଥରେ ଖୋରଧାର ପାଇକ-ବିଦ୍ରୋହ (୧୮୧୭-୧୮)ର ସଂକ୍ଷିପ୍ତ ବିବରଣୀ ଦିଆଯାଇଛି। ଓଡ଼ିଶାର ତୁଂଗ ସହିଦମାନଂକ ମଧ୍ୟରେ ବାଜିରାଉତ (୧୯୩୮) ଏବଂ ରଣପୁରରେ ବେଜେଲ୍‌ଗେଟ୍ ହତ୍ୟା ମାମଲାରେ ଫାଶୀ ପାଇଥିବା ରଘୁ ଓ ଦିବାକରଂକ ବିବରଣୀ (୧୯୩୯) ଓ ଫଟୋଚିତ୍ର ରହିଛି। ୧୯୪୨ ଆଂଦୋଳନରେ ସହିଦ ହୋଇଥିବା ଲକ୍ଷ୍ମଣ ନାୟକଂକ ନାମୋଲ୍ଲେଖ କରାଯାଇଛି।

ଢେଂକାନାଳର ବୀର ସହିଦ ବାଜିରାଉତ ସଂପର୍କରେ ଉକ୍ତ ଗ୍ରଂଥର ୧୭୦ ପୃଷ୍ଠାରେ ଲେଖାଅଛି–

"Baji Rout of Dhenkanal (1925-1938): On 10th October 1938, the police and military while chasing the rebels, came to Nilkanthapur ghat and ordered 13 year old boatman boy, Baji Rout to help to cross the river Brahmani. Baji refused and the soldiers started bayonetting him and breaking his bones with the butt of their guns. Baji shouted out and warned the villagers. He died that night due to excessive bloodshed. The famous Oriya Poet Sachi Routroy has written a long poem immortalising this boy hero. To protest against the death of Baji Rout, a huge rally was held on 10th October 1938, at the Nilakanthapur Ghat and the police and military opened fire on it, killing Phagu Sahoo and Guri Sahoo and others. The Congress Socialist leader Nabakrishna Choudhury (later on Congress Chief Minister of Orissa), his wife Malati Devi and the next leader Baishnab Charan Pattnayak led the Dhenkanal popular struggle." ('India's Struggle for Freedom' Pub. by West Bengal Govt. 1987)

ଅର୍ଥାତ୍ "ଢେଂକାନାଳର ବାଜିରାଉତ (୧୯୨୫-୧୯୩୮) ମସିହା ଅକ୍ଟୋବର ୧୦ ତାରିଖ ରାତିରେ ଫୌଜ କେତେକ ବିଦ୍ରୋହୀ ପ୍ରଜାଂକୁ ଗୋଡ଼ାଇ ନୀଳକଂଠପୁର ଘାଟରେ ଆସି ପହଂଚିଲେ ଏବଂ ନାଉରୀପିଲା ବାଜିରାଉତ୍‌କୁ ବ୍ରାହ୍ମଣୀ ନଈ ପାରହେବାପାଇଁ ଡଂଗା ମାଗିଲେ। ବାଜି ଡଂଗା ଛାଡ଼ିବାକୁ ମନାକଲା। ପୁଲିସ ତାକୁ ସଂଗିନ୍‌ରେ ମାରିଲେ ଏବଂ ବଂଧୁକ କୁନ୍ଦାରେ ତା' ହାଡ଼ ଭାଂଗିଦେଲେ। ବାଜି ଚିତ୍କାର କରି ଗ୍ରାମବାସୀଂକୁ ସାବଧାନ କରିଦେଲା। ଅତ୍ୟଧିକ ରକ୍ତସ୍ରାବ

ଫଳରେ ବାଜି ସେଇ ରାତିରେ ମୃତ୍ୟୁବରଣ କରେ। ପ୍ରସିଦ୍ଧ ଓଡ଼ିଆ କବି ସଚ୍ଚି ରାଉତରାୟ ତାଂକର କାବ୍ୟ 'ବାଜିରାଉତ' ଲେଖି ତାକୁ ଅମର କରିଯାଇଛନ୍ତି। ବାଜିରାଉତର ମୃତ୍ୟୁର ପ୍ରତିବାଦରେ ସେଠାରେ ବହୁ ଗ୍ରାମବାସୀଂକର ସମାବେଶ ହୁଏ ୧୦ ଅକ୍ଟୋବର ୧୯୩୮ ତାରିଖ ରାତିରେ ନୀଳକଂଠପୁର ଗ୍ରାମର ବ୍ରାହ୍ମଣୀ ନଦୀକୂଳରେ। ପୁଲିସ ଓ ଫୌଜ ବାରଂବାର ଗୁଳି ଚଳାଂତି। ଗୁଳି ମାଡ଼ରେ ଫଗୁ ସାହୁ, ଗୁରି ସାହୁ ଓ ଅନ୍ୟ କେତେଜଣ ଗ୍ରାମବାସୀ ଟଳିପଡ଼ଂତି। କଂଗ୍ରେସ ସୋସାଲିଷ୍ଟ ନେତା ନବକୃଷ୍ଣ ଚୌଧୁରୀ (ପରେ ଓଡ଼ିଶାର କଂଗ୍ରେସ ମୁଖ୍ୟମଂତ୍ରୀ) ଏବଂ ତାଂକ ସ୍ତ୍ରୀ ମାଳତୀଦେବୀ ଏବଂ ବୈଷ୍ଣବଚରଣ ପଟ୍ଟନାୟକ ଏହି ତିନିଜଣ ଅନ୍ୟମାନଂକ ସହ ଆଂଦୋଳନରେ ନେତୃତ୍ୱ ନେଇଥିଲେ।''

ଉପରିଲିଖିତ ବିଭିନ୍ନ ବିବରଣୀ ସହିତ 'କୃଷକ'ରେ ପ୍ରକାଶିତ ବିବରଣୀର ସାମଂଜସ୍ୟ ଦେଖାଯାଏ। ମାତ୍ର ସମସ୍ତ ବିବରଣୀ ଅନୁସାରେ ବାଜିରାଉତ ଡଂଗା ଅଟକାଇଥିଲା ଏବଂ ଘଟଣା ସ୍ଥଳରେ ପୁଲିସ ଫୌଜର ଗୁଳିମାଡ଼ରେ ଏବଂ ବଂଧୁକ କୁଂଦାମାଡ଼ରେ ମୃତ୍ୟୁବରଣ କରିଥିଲା। ଏଥିରେ ସମସ୍ତ ବିବରଣୀ ଏକମତ।

**ଗଡ଼ଜାତ ପ୍ରଜା-ଆଂଦୋଳନରେ ମୋର ଭୂମିକା –**

ଗଡ଼ଜାତ ପ୍ରଜା-ଆଂଦୋଳନ ସମୟରେ ଲକ୍ଷ ଲକ୍ଷ ଭୟାର୍ତ୍ତ ପ୍ରଜା – ସ୍ତ୍ରୀ, ପୁରୁଷ, ବୃଦ୍ଧ, ଶିଶୁ ବିଭିନ୍ନ ଗଡ଼ଜାତ ଅଂଚଳରୁ ନିଜ ନିଜ ଗାଁ-ଗଂଡା ଘରଦ୍ୱାର ଛାଡ଼ି ବ୍ରିଟିଶ୍‌ଶାସିତ ମୋଗଲବଂଦୀ ଅଂଚଳକୁ ପଳାଇଆସି ମାସମାସଧରି ଶରଣାର୍ଥୀ ଶିବିରମାନଂକରେ ଆଶ୍ରୟ ନେଇଥିଲେ। ଢେଂକାନାଳ, ତାଳଚେର, ନୀଳଗିରି୍ ପ୍ରଭୃତି ଗଡ଼ଜାତମାନଂକରୁ ହଜାର ହଜାର ନରନାରୀ, ଶିଶୁ ରାଜ୍ୟରୁ ପଳାଇଆସି ଅନୁଗୁଳ ନିକଟସ୍ଥ କଲାଂଡ ଓ ବୁଢ଼ାପଂକ ଶରଣାର୍ଥୀ ଶିବିରରେ ଆଶ୍ରୟ ନେଇଥିଲେ। ମୁଁ ସେ ଶିବିର ଦାୟିତ୍ୱରେ ପ୍ରାୟ ଏକ ମାସ ଥିଲି। ମୋ ସହିତ ଥିଲେ ନୀଳଗିରିର ବନମାଳୀ ଦାସ। ସେ ପରେ ଏମ୍.ଏଲ୍.ଏ. ହୋଇଥିଲେ। ୧୦ ସେପ୍ଟେମ୍ବର ୧୯୩୮ରେ ପଲିଟିକାଲ୍ ଏଜେଂଟ୍ ମେଜର ବେଜେଲ୍‌ଗେଟଂକ ଅଧୀନରେ ବହୁ ଗୋରା ସୈନ୍ୟ ଓ ପେଶୱାରୀ ଫଉଜ ଢେଂକାନାଳ ଆସି ଗାଁ-ଗଂଡା ଖେଦିଯାଇ-ଥିଲେ ଏବଂ ଅବାଧରେ ଲୁଟତରାଜ, ନାରୀଧର୍ଷଣ ଓ ଗଣହତ୍ୟା ଚଳାଇଥିଲେ। ବହୁ ଝିଅ ବୋହୂ ସୈନ୍ୟମାନଂକଦ୍ୱାରା ଧର୍ଷିତା ହୋଇ ଗର୍ଭବତୀ ହୋଇଯାଇଥିଲେ। ସେମାନେ ମଧ୍ୟ ରାଜ୍ୟରୁ ପଳାଇଆସି ଏହି କ୍ୟାଂପ୍‌ମାନଂକରେ ରହୁଥିଲେ।

ଥରେ ଶ୍ରୀମତୀ ମାଳତୀ ଦେବୀଂକ ନିର୍ଦ୍ଦେଶନାରେ ମୁଁ ଅନୁଗୁଳ ପାଖ ବୁଢ଼ାପଂକ କ୍ୟାଂପ୍‌ରୁ ଦୁଇଜଣ ଗର୍ଭବତୀ ସ୍ତ୍ରୀଲୋକଂକୁ ନେଇ ଚାଲିଚାଲି ଢେଂକାନାଳ ରେଳଷ୍ଟେସନକୁ ଯାଉଥିଲି; କାରଣ ତା' ପରଦିନ କଟକକୁ ଦୀନବଂଧୁ ସି.ଏଫ୍. ଆଂଡ୍ରୁଜ୍ ସାହେବ୍ ଆସୁଥାଂତି। ତାଂକ ଆଗରେ ସୈନ୍ୟଂକଦ୍ୱାରା ଗର୍ଭବତୀ ହୋଇଯାଇଥିବା ଏ ଦୁଇଜଣ ନାରୀ ସାକ୍ଷ୍ୟ ଦେବେ ବୋଲି ସ୍ଥିର ହୋଇଥିଲା।

ଢେଂକାନାଳ ରେଳଷ୍ଟେସନ୍ ୪-୫ ମାଇଲ ଦୂର। ଆମକୁ ତାଳଚେର ଗାଡ଼ି ଧରିବାକୁହେବ ଦିନ ଦି'ଟାରେ। ଆମେ ଖରାରେ ଝାଳନାଳ ହୋଇ ଜୋର୍ ଜୋର୍ ଚାଲିଥାଉଁ। ଗର୍ଭବତୀ ନାରୀ ଦୁଇଜଣ ବେଶୀ ଜୋରରେ ଚାଲିପାରୁନଥାଂତି। ଷ୍ଟେସନ ଆଉ ଅଳ୍ପ ଦୂର ଅଛି, ଜଣେ ଲୋକ ସାଇକେଲ୍‌ରେ ଆସି ଖବର ଦେଲା ଯେ ରଜାଘର ଲୋକ ଜାଣିସାରିଲେଣି। ସେମାନେ ଆମ ପିଛା ଧରିଛଂତି। ସେ ଯାହାହେଉ, ଆମେ ରେଳଲାଇନ୍ ଧାରେ ଧାରେ ଆସୁଥାଉଁ। କାରଣ ରେଳଲାଇନ୍ ରେଳବାଇ କଂପାନୀର; କେଂଦ୍ର ସରକାରଂକର ସଂପତ୍ତି। ତାହା ଢେଂକାନାଳ ରାଜାଂକ କର୍ତ୍ତୃତ୍ୱ ବାହାରେ। ମାତ୍ର ଆମର ଯୁକ୍ତି ଶୁଣିବ କିଏ? ଆମକୁ ରେଳଲାଇନ୍ ଉପରୁ ଟାଣିନେଇ ରାଜ୍ୟ ଭିତରୁ ଆମକୁ ଧରିଛଂତି ବୋଲି ରଜାଘର ଲୋକ ସହଜରେ କହିପାରିବେ। କିଏ ଆମ ସପକ୍ଷରେ ସାକ୍ଷ୍ୟ ଦେବ? ଅନଂତ ପଟ୍ଟନାୟକଂକୁ ଢେଂକାନାଳ ସୀମା ନିକଟବର୍ତ୍ତୀ ମୋଗଲ-ବଂନ୍ଦୀର ଏକ ଗ୍ରାମରୁ ଧରିନେଇ, 'ଆମ ରାଜ୍ୟରୁ ଧରିଛୁ' ବୋଲି କହି ସେମାନେ ଢେଂକାନାଳ ଜେଲ୍‌ରେ ପୂରାଇଥିଲେ। ସେ ସେଠାରେ ଦୀର୍ଘ କାରାବାସ କରିଥିଲେ। ସେହିପରି ଡାକ୍ତର ରବି ଘୋଷଂକୁ ମଧ୍ୟ ଢେଂକାନାଳ ଷ୍ଟେସନ କ୍ୟାବିନ୍‌ରୁ ଧରିନେଇ ଇଏ ଆମ ରାଜ୍ୟରେ ଲୋକମାନଂକୁ ମତାଉଥିଲେ ବୋଲି ଜେଲ୍‌ରେ ରଖିଥିଲେ। ସେ ଯାହା ହେଉ, ଆମେ ଖୁବ୍ ଜୋର୍ ଜୋର୍‌ରେ ଚାଲି ଷ୍ଟେସନ୍‌ରେ ପହଁଚିଗଲୁ। ଆମେ ଷ୍ଟେସନରେ ପହଁଚିଲାବେଳକୁ ତାଳଚେର ପ୍ୟାସେଂଜର ଗାଡ଼ି ଆସି ଠିଆହୋଇଥାଏ। ଆମେ ତରତରରେ ଗୋଟାଏ ଇଂଟର କ୍ଳାସ୍ ଡବାରେ ଉଠିଗଲୁ। ଆମେ ଟ୍ରେନ୍‌ରେ ଉଠିବାର କିଛି ସମୟ ପରେ ଦେଖିଲୁ ୫-୬ ଜଣ ଲୋକ ଧଇଁସଇଁ ହୋଇ ଷ୍ଟେସନକୁ ଆସି ଆମ ଡବା ଚାରିପଟେ ପଇଁତରା ମାରୁଥାଂତି; ମାତ୍ର ଆମକୁ ଟ୍ରେନ୍‌ରୁ ଧରିନେବାକୁ ସାହସ କରୁନଥିଲେ। ଆମେ କଟକରେ ଠିକ୍ ସମୟରେ ପହଁଚିଲୁ, ସେଇ ଗର୍ଭବତୀ ସ୍ତ୍ରୀ ଦୁଇଜଣ ସାକ୍ଷ୍ୟ ଦେବାବେଳେ କାଂଦିପକାଉଥାଂତି। ସି.ଏଫ୍. ଆଂଡ୍ରୁଜଂକ ଦୁଇ ଚକ୍ଷୁ ମଧ୍ୟ ଲୋତକପୂର୍ଣ୍ଣ। ସେ ମଝିରେ ମଝିରେ କହି ଉଠୁଥାଂତି 'hurrible! hurrible!' ଆଂଡ୍ରୁଜ୍ ସାହେବ କାଠଯୋଡ଼ି କୂଳରେ ଥିବା ନବବାବୁଂକ ଘରେ ତଳ ମହଲାରେ ଗୋଟିଏ ଘରେ ଖଂଡିଏ ଚଟେଇ ଉପରେ ବସିଥାଂତି। ତାଂକ ପାଖକୁ ବସିଥାଂତି ମାଳତୀ ଦେବୀ ଓ ନବକୃଷ୍ଣ ଚୌଧୁରୀ। ଆମେ ସମସ୍ତେ ତଳେ ବସିଥାଉଁ। ସେଦିନ ଆମେ ଯଦି ଧରାପଡ଼ି ଯାଇଥାଂତୁ, ତେବେ ଆମର ମୃତ୍ୟୁ ପ୍ରାୟ ନିଶ୍ଚିତ ଥିଲା।

ବିଭିନ୍ନ ଗ୍ରାମରୁ ପ୍ରାୟ ୨୦ଟି ସହିଦଂକ ଶବର ସଂଧାନ ମିଳିଥିଲା ବୋଲି ଶ୍ରୀ ବୈଷ୍ଣବ ପଟ୍ଟନାୟକଂ(ପରେ ଏମ୍.ପି.)କ ଦ୍ୱାରା ପ୍ରଚାରିତ ସେତେବେଳର ଏକ ବିବରଣୀରୁ ଜଣାଯାଏ। ସେ ସେମାନଂକ ନାମ ଧାମ ଇତ୍ୟାଦି ଲିଫ୍‌ଲେଟ୍‌ରେ

ଲିପିବଦ୍ଧ କରିଥିଲେ। ଏହାଛଡ଼ା ବହୁ କର୍ମୀ ଗୁଳିଚୋଟରେ ଗୁରୁତର ଆହତ ହୋଇଥିଲେ। କେବଳ ଭୁବନରୁ ତିନିଜଣ ଲୋକ ଗୁଳିମାଡ଼ରେ ଆହତ ହୋଇଥିଲେ। ମଧୁ ସାହୁ ଛାତିରେ ଗୁଳି ବାଜିଥିଲା। ବାଇଧର ବେହେରା ଗୋଡ଼ରେ ଓ ନଟ ଦାସ ଛାତି କଡ଼ରେ ଗୁଳି ପଶିଯାଇଥିଲା। (ଡଃ. ପ୍ରମୋଦ କୁମାର ମିଶ୍ର, 'ଦୈନିକ ପ୍ରଜାତଂତ୍ର', ତା ୩.୧୨.୯୦)।

ଏହାଛଡ଼ା ବିଶିଷ୍ଟ ଐତିହାସିକ ପ୍ରଫେସର ଡଃ. ଜଗନ୍ନାଥ ପଟ୍ଟନାୟକ ଅକ୍ଟୋବର ୧୧, ୧୯୯୦ ତାରିଖର 'ଦୈନିକ ପ୍ରଜାତଂତ୍ର'ରେ ଲେଖିଛଂତି ''ବାଜିରାଉତ ପ୍ରକୃତ ସହିଦ ପଦବାଚ୍ୟ। 'ସହିଦ୍ ବାଜିରାଉତ ଏକ ଅମ୍ଳାନ ପ୍ରତିଭା' ଶିରୋନାମାରେ ପ୍ରଜାତଂତ୍ର, ସାପ୍ତାହିକ ୧୯୮୮ ମସିହାରେ, ୩୦ ଅକ୍ଟୋବର ୫ ନଭେଂବର ଓ ୨୦ ନଭେଂବର ଏବଂ ୨୬ ନଭେଂବର ସଂଖ୍ୟାରେ ମୁଁ ଧାରାବାହିକ ପ୍ରବଂଧ ପ୍ରକାଶ କରିଥିଲି। ବାଜିରାଉତ କେଉଁ ପରିସ୍ଥିତିରେ ସହିଦ ହୋଇଥିଲା ତାହା ମୁଁ ସେହି ପ୍ରବଂଧରେ ଉପସ୍ଥାପନ କରିଛି।''

ବିଭିନ୍ନ ଦେଶୀୟ ରାଜ୍ୟ, ଯଥା— ନୀଳଗିରି, ତାଳଚେର, ରଣପୁର, ସବୁଠି ସେଇ ଏକଇ ଅବସ୍ଥା। ଲୋକେ ଘରଦ୍ୱାର ଛାଡ଼ି ନିକଟବର୍ତୀ ମୋଗଲବଂନ୍ଦୀ ଅଂଚଳରେ କିଂବା କ୍ୟାଂପମାନଂକରେ ଆଶ୍ରୟ ନେଇଥାଂତି। ଗାଁ-ଗଂଡା ଶୂନ୍ୟ ହୋଇଯାଇଥାଏ। ଏହାର ପ୍ରାୟ ତିନିମାସ ପରେ ୫ ଜାନୁୟାରୀ ୧୯୩୯ରେ ରଣପୁରଠାରେ ବ୍ରିଟିଶ୍ ପଲିଟିକାଲ୍ ଏଜେଂଟ୍ ମେଜର୍ ବେଜେଲ୍‌ଗେଟଂକୁ, ସେ ଲୋକଂକ ଉପରେ ଗୁଳି ଚଳାଇ ଜଣକୁ ହତ୍ୟା କରିବା ପରେ, ଲୋକମାନେ ଉତ୍ତ୍ୟକ୍ତ ହୋଇ ଟେକା ପଥର ମାରି ତାଂକୁ ହତ୍ୟା କରଂତି। ରଣପୁର ପ୍ରଜାମଂଡଳର ଦୁଇଜଣ ନେତା ରଘୁନାଥ ମହାଂତି ଓ ଦିବାକର ପରିଡ଼ାଂକୁ ବେଜେଲ୍‌ଗେଟ୍ ହତ୍ୟା ମାମଲାରେ ଜଡ଼ିତକରି ଗିରଫ କରାଯାଏ। ବିଚାରରେ ସେମାନଂକୁ ଫାଶୀଦଂଡ ମିଳେ। ହଜାରିବାଗ୍ ଜେଲ୍‌ରେ ୧୯୪୦ ଏପ୍ରିଲ୍ ୪ ତାରିଖରେ ସେମାନଂକୁ ଫାଶୀ ଦିଆଯାଏ।

ପଶ୍ଚିମବଂଗ ସରକାରଂକ ଦ୍ୱାରା ପ୍ରକାଶିତ 'India's Struggle for Freedom' ପୁସ୍ତକରେ ରଣପୁର ପ୍ରଜା-ବିଦ୍ରୋହର ଯେଉଁ ବିବରଣୀ ଦିଆଯାଇଛି, ତାହା ତଳେ ଦିଆଗଲା —

''On 5th January 1939 in the princely State of Ranpur, the British Political Agent Major Bazelgate opened fire on the people gathered there. The perople retaliated and killed the Major by stone throwing. Raghunath Mohanty and Dibakar Parida were sentenced to death on the charge of murder of Baze-lgate and were gagged on 4th April 1940 inside Hazaribag-Jail.''

ରଣପୁରରେ ଗିରଫ ରଘୁ ଓ ଦିବାକରଙ୍କ ବିଚାର ରଣପୁର ଜେଲ୍‌ରେ ଚାଲିଥିବାବେଳେ ମୁଁ ଥରେ ରଘୁ ସହ ଦେଖାକରିବାପାଇଁ ଖୋରଧାର ମୁକ୍ତାର ରଘୁନାଥ ମିଶ୍ରଙ୍କ ସହିତ ଏକ ଟ୍ୟାକ୍ସିଯୋଗେ ରଣପୁର ଯାଇଥିଲି। ଶ୍ରୀ ମିଶ୍ର କଟକର ଆଡ଼ଭୋକେଟ୍ ଦୀନବନ୍ଧୁ ସାହୁଙ୍କ ସହିତ ସେମାନଙ୍କ ପକ୍ଷର ଜଣେ ଓକିଲ ଥିଲେ। ଟ୍ୟାକ୍ସି ରଣପୁର ଜେଲ୍ ନିକଟରେ ପହଁଚିବା ମାତ୍ରକେ ପୋଲିସମାନେ ଟ୍ୟାକ୍ସି ରୋକି ମୁକ୍ତାର ମିଶ୍ରଙ୍କୁ ଜେଲ୍ ଭିତରକୁ ଛାଡ଼ିଦେଲେ; କିନ୍ତୁ ମୋତେ ଟ୍ୟାକ୍ସିରେ ବସାଇ ରଖିଲେ। କିଛି ସମୟପରେ ମୋତେ ଗିରଫ କରି ରଜାଘର ଷ୍ଟେସନ ଓ୍ୟାଗନ୍‌ରେ ଜଗରଦଷ୍ଟି ବସାଇ ମୋ ଗାଁ ଗୁରୁଜଙ୍ଗ ଆମ ଘରେ ଛାଡ଼ିଦେଇଗଲେ, ଏକଥା ମୁଁ ପୂର୍ବରୁ କହିଛି।

ଏହି ହେଲା ଓଡ଼ିଶା ଗଡ଼ଜାତ ପ୍ରଜା-ଆନ୍ଦୋଳନର ପୃଷ୍ଠଭୂମି। କେତେ ଲୋକ ମଲେ, କେତେ ଲୋକ ଆହତ ହେଲେ। ଲକ୍ଷ ଲକ୍ଷ ନିରୀହ ମଣିଷଙ୍କ ଲହୁଲୁହରେ ଲେଖା ଏ ଅମାନୁଷିକ କାହାଣୀ ବ୍ରିଟିଶ୍ ସରକାର ଓ ତାଙ୍କ ପାଳିତ ରାଜାରାଜୁଡ଼ାଙ୍କ ଦଲାଲଙ୍କର ଗୋଟାଏ କଲମଗାରରେ ଲିଭିଯାଇ ନପାରେ। ଆଜି ଯେଉଁମାନେ ଥଣ୍ଡା ହାୱାରେ ବସି ଏ ବିଷୟରେ ତାତ୍ତ୍ୱିକ ଗବେଷଣା ଚଳାଇଛନ୍ତି, ମୁଁ ସେମାନଙ୍କୁ କହିବି, ସେମାନେ ଓଡ଼ିଶାର ସେତେବେଳର ଗଡ଼ଜାତଗୁଡ଼ିକୁ ଯାଇ ସେଇ ଅନ୍ଧାରିମୂଲକରେ ପ୍ରକୃତ ଭୁକ୍ତଭୋଗୀ ମଣିଷଙ୍କ ସହ ସାକ୍ଷାତ କରନ୍ତୁ; ହୃଦୟ ଦେଇ ସେମାନଙ୍କ କଥା ଶୁଣନ୍ତୁ। ପ୍ରକୃତ ସତ୍ୟ କଥା ବୁଝନ୍ତୁ। ଆମ ଜାତିର ସ୍ୱାଭିମାନ ଓ ଆମ ଇତିହାସର ସର୍ବଶ୍ରେଷ୍ଠ ଗୌରବକୁ ଏପରିଭାବେ ମାଟିରେ ମିଶାଇ ଦିଅନ୍ତୁ ନାହିଁ। ଏହା ମୋର ବା ଅନ୍ୟ କାହାର ବ୍ୟକ୍ତିଗତ ବିଷୟ ନୁହେଁ– ଏହା ଜାତୀୟ ପ୍ରଶ୍ନ; ସମଗ୍ର ଓଡ଼ିଆ ଜାତିର ପତିଆରା ଏହା ସହିତ ଜଡ଼ିତ।

**ଢେଙ୍କାନାଳରେ ଦିନେ –**

ଢେଙ୍କାନାଳ ବିଷୟ ଲେଖିଲାବେଳେ ସେଠାରେ ମୋର ଦିନକର ଅଭିଜ୍ଞତା କଥା ନକହି ରହିପାରୁନି। ପ୍ରଜା-ଆନ୍ଦୋଳନ ଶାନ୍ତପଡ଼ିବାପରେ ଥରେ କଟକରୁ ମୁଁ ଓ ଅନନ୍ତ ପଟ୍ଟନାୟକଙ୍କ ସାନଭାଇ ଗୁରୁଚରଣ ପଟ୍ଟନାୟକ ବା ବାଉ ସାଇକେଲ୍‌ଯୋଗେ ଢେଙ୍କାନାଳ ଯାଇଥିଲୁ। ଢେଙ୍କାନାଳ ଜେଲ୍‌ରେ ବନ୍ଦୀଥିବା ଅନନ୍ତ ପଟ୍ଟନାୟକଙ୍କୁ ଦେଖିବାପାଇଁ ଏବଂ ତାଙ୍କୁ କେତେକ ନିତ୍ୟବ୍ୟବହାର୍ଯ୍ୟ ଜିନିଷପତ୍ର ଓ ବହିପତ୍ର ଇତ୍ୟାଦି ଦେବାକୁ ଯାଇଥିଲୁ। ଚହଟାଘାଟ ପାର ହୋଇ ଆମେ ସାଇକେଲ୍‌ରେ ପ୍ରାୟ ଦି'ପହର ସମୟରେ ଢେଙ୍କାନାଳ ଗଡ଼ରେ ପହଂଚିଲୁ। ସେତେବେଳେ ନୀଳମଣି ଧଳ ଢେଙ୍କାନାଳର ପୁଲିସ ଇନସ୍‌ପେକ୍ଟର ଥାଆନ୍ତି। ସେ ମୋର ଦୂର-ସଂପର୍କୀୟ ବନ୍ଧୁବାନ୍ଧବ ହେବେ। ଆମେ ଯାଇ ଢେଙ୍କାନାଳ ଜେଲ୍ ନିକଟରେ ପହଂଚିବାପରେ କେତେକ ପୁଲିସ ଓ ଇନସ୍‌ପେକ୍ଟର ଧଳ

ଆମକୁ ଡକାଇ ଆମ ଆସିବାର କାରଣ ପଚାରିଲେ। ସେମାନେ ଗୁରୁଚରଣଙ୍କୁ ଜେଲ୍‌ରେ ଅନନ୍ତ ପଟ୍ଟନାୟକଙ୍କୁ ଭେଟିବାପାଇଁ ଛାଡ଼ିଦେଲେ; କିନ୍ତୁ ମୋତେ ଛାଡ଼ିଲେନାହିଁ। ଇନସ୍‌ପେକ୍ଟର ଧଳ ମୋତେ ନେଇ ସେ ରହୁଥିବା କ୍ୱାଟରର ଦାଣ୍ଡଘରେ ବସାଇଦେଲେ; କହିଲେ, ଏଇଠି ଅପେକ୍ଷାକରନ୍ତୁ ଗୁରୁଚରଣବାବୁ ଫେରିବାଯାଏଁ। ମୁଁ ପ୍ରାୟ ଦେଢ଼ଘଣ୍ଟାକାଳ ତାଙ୍କ ଦାଣ୍ଡଘରେ ଗୋଟିଏ ଚୌକିରେ ବସିରହିଲି। ମୋତେ ବଡ଼ ବିରକ୍ତ ଲାଗୁଥାଏ; ମାତ୍ର କୌଣସି ଉପାୟ ନ ଥିଲା। ଶେଷରେ ଗୁରୁଚରଣ ଜେଲ୍‌ରୁ ଅନନ୍ତଙ୍କୁ ଭେଟି ଫେରିବାପରେ ଆମେ ଦୁହେଁ ସାଇକେଲ୍‌ଯୋଗେ କଟକ ଫେରିଆସିଲୁ।

**ରାଜନୈତିକ ପେନ୍‌ସନ୍ –**

ବାଜିରାଉତର ମା' ଓ ଭାଇ ପ୍ରଭୃତି କାହିଁକି ସ୍ୱାଧୀନତା ସଂଗ୍ରାମୀ ପେନ୍‌ସନ୍ ପାଉନଥିଲେ ବୋଲି ସୁରେନ୍ଦ୍ର ମହାନ୍ତି ଓ ଅନ୍ୟ କେହି କେହି ପ୍ରଶ୍ନ କରନ୍ତି। ଏହାର ଉତ୍ତର ହେଉଛି, ସ୍ୱାଧୀନତା ସଂଗ୍ରାମୀ ପେନ୍‌ସନ୍ ଭାରତ ସ୍ୱାଧୀନ ହେବା ପରେ ପ୍ରାୟ ୧୯୫୦ ଦଶକର ଶେଷଭାଗରେ ପ୍ରବର୍ତ୍ତିତ ହୁଏ। ସେତେବେଳେ ପଣ୍ଡିତ ଜବାହରଲାଲ ନେହେରୁ ପ୍ରଧାନମନ୍ତ୍ରୀ ଥାନ୍ତି। ତାହା ପୂର୍ବରୁ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲାବେଳେ 'Political Sufferers Pension' ନାମକ ଏକ ଭତ୍ତା ରାଜନୀତିକ କର୍ମୀ ଆଉ ତାଙ୍କ ପିତା, ମାତା ଓ ତାଙ୍କ ଉପରେ ନିର୍ଭରଶୀଳ ବ୍ୟକ୍ତିମାନଙ୍କ ପାଇଁ ଚାଲୁକରିଥିଲେ। ବାଜିରାଉତର ମା' ଓ ଭାଇ ପ୍ରଭୃତି ସେ ଭତ୍ତା ନିୟମିତ ପାଇଆସୁଥିଲେ। ସ୍ୱାଧୀନତା ପେନ୍‌ସନ୍ ଚାଲୁହେଲାପରେ ତା' ଭାଇ ନଟବର ରାଉତ ସେ ପେନ୍‌ସନ୍ ପାଉଛନ୍ତି।

**ଢେଙ୍କାନାଳ ପ୍ରଜା-ଆନ୍ଦୋଳନର ନେତୃବୃନ୍ଦ –**

ଢେଙ୍କାନାଳ ଆନ୍ଦୋଳନର ନେତୃବୃନ୍ଦ ଥିଲେ ବୈଷ୍ଣବଚରଣ ପଟ୍ଟନାୟକ, ମହେଶ୍ୱର ସୁବାହୁସିଂ, ହରମୋହନ ପଟ୍ଟନାୟକ ଓ ବ୍ରଜକିଶୋର ଧଳ ପ୍ରଭୃତି। ବୈଷ୍ଣବଚରଣ ପଟ୍ଟନାୟକ ଢେଙ୍କାନାଳର ଜେଲ୍ ପାଚେରି ଡେଇଁ ପଳାଇ ଆସି ବାହାରେ ଆନ୍ଦୋଳନ ଚାଲୁରଖିଥିଲେ। ଜେଲ୍‌ରୁ ପଳାଇଲାବେଳେ ପୁଲିସ୍‌ର ଗୁଳି ତାଙ୍କ ଦେହରେ ବାଜିଥିଲା; ସେ ଜଖମ ହୋଇଯାଇଥିଲେ। ତା'ପରେ ସେ ଆତ୍ମଗୋପନ କରି ରହିଥିଲେ। ମୁଁ କଲିକତା କେଶୋରାମ କଟନ୍ ମିଲ୍‌ର ଚିଫ୍ ଲେବର୍ ଓ୍ୱେଲ୍‌ଫେୟାର୍ ଅଫିସର ଥିଲାବେଳେ ତାଙ୍କୁ କିଛି ଟଙ୍କା ଓ ଲୁଗାପଟା ଇତ୍ୟାଦି ଦେଇ ଚିକିତ୍ସା ପାଇଁ ଏବଂ ତାଙ୍କ ବିରୁଦ୍ଧରେ ଓ୍ୱାରେଣ୍ଟ୍ ଥିବାରୁ କିଛିଦିନ ଆତ୍ମଗୋପନ କରି ରହିଯିବାପାଇଁ ବମ୍ବେ ପଠାଇଦେଇଥିଲି।

**ବାଜିରାଉତର ଗାଁ –**

ବାଜିରାଉତର ଘର ଓ ବାଡ଼ିର କେତେକାଂଶ ବ୍ରାହ୍ମଣୀ ନଦୀ ଗର୍ଭରେ ନିଶ୍ଚିହ୍ନ ହୋଇଗଲାଣି। ତା' ବଡ଼ଭାଇ ଶ୍ରୀ ନଟବର ରାଉତ ସେଠାରୁ ଉଠିଯାଇ

ଅଳ୍ପ ଦୂରରେ ବସତି ସ୍ଥାପନ କରି ରହିଛନ୍ତି। ବର୍ତ୍ତମାନ ତା'ର ନାମ ନୂଆନୀଳକଂଠପୁର। କେତେବର୍ଷ ତଳେ ମୁଁ ଥରେ ତା' ଗାଁ ନୀଳକଂଠପୁର ଯାଇଥିଲି। ମୋ' ସଂଗରେ ଥିଲେ ତତ୍‌କାଳୀନ ସଂସ୍କୃତି ରାଷ୍ଟ୍ରମଂତ୍ରୀ ଯୁଗଳକିଶୋର ପଟ୍ଟନାୟକ ଏବଂ ଅନ୍ୟତମ ରାଷ୍ଟ୍ରମଂତ୍ରୀ ଭଜମନ ବେହେରା। ସେଠାରେ ବାଜିରାଉତର ସହିଦ ଦିବସ ପାଳିତ ହେଉଥିଲା। ମୁଁ ସେ ସଭାରେ ଭାଷଣ ଦେଇଥିଲି। ସେଠାରେ ବାଜିରାଉତର ଏକ ସ୍ମୃତିସ୍ତଂଭ ସ୍ଥାପିତ ହୋଇଥିବାର ଦେଖିଲି।

**'ମାର୍ ତୁ ଯେତେ ଗୁଳି' –**

ମୋର କବିତା 'ମାର୍ ତୁ ଯେତେ ଗୁଳି' ଢେଂକାନାଳ ଆଂଦୋଳନରେ ବହୁତ ପ୍ରେରଣା ଯୋଗାଇଥିଲା ଏବଂ ବହୁ କର୍ମୀ ଓ ସ୍ୱେଚ୍ଛାସେବକ ସେହି ନିଷିଦ୍ଧ ଗୀତଟି ଗାଇ କାରାବରଣ ଏବଂ କେଉଁଠି କେଉଁଠି ଗୁଳିଚୋଟରେ ମୃତ୍ୟୁବରଣ କରିଥିଲେ। 'ମାର୍ ତୁ ଯେତେ ଗୁଳି' କବିତାର କିଛି ଧାଡ଼ି ତଳେ ଦିଆଗଲା –

''ମାର୍ ତୁ ଯେତେ ଗୁଳି
ମରିବୁ ପଛେ ଡରିବୁ ନାହିଁ ଯାଅନା ଏହା ଭୁଲି।
ରଖ୍ ତୋ ଲାଠି, କାଠର ଲାଠି, ହାଡ଼ର ଆମ ଛାତି
ମରଣ ଆମ ମୈତ୍ର ଜାଣ, କଷଣ ଆମ ସାଥୀ।
ମାହୁଂତ ତୋର ଚଢ଼ା ରେ ହାତୀ, ପାଇକ ଖେଳା ଅସି
ଗୁର୍ଖାଥାଟ ଆମରି ଧନେ ରଖିଚୁ ଯେତେ ପୋଷି
ଆଣ ରେ ସବୁ, ତିଆରି ଆମେ ଆସିଚୁଁ ପଣ କରି
ହୁଂକାପିଟା ଶାସନ ନୀତି ଗୋଡ଼ରେ ଦେବୁଁ ଦଳି।''

ମୋର ଅନ୍ୟ କେତେକ କବିତା ମଧ୍ୟ ସମାନ ହୃଦୟଗ୍ରାହୀ ଏବଂ ଜନପ୍ରିୟ ହୋଇଥିଲା। କି ଗଡ଼ଜାତ କି ମୋଗଲବନ୍ଦୀ ସବୁଠାରେ ତାହା ଲୋକମୁଖରେ ଗୀତହେଉଥିଲା। ଗୋଟିଏ କବିତାର ପଂକ୍ତି ହେଲା –

''ତମେ ମାର ଯେତେ ଆଜି ମାରିବ
ନିତି ଯେ ମରଇ ଭୋକ-ଉପାସରେ
ଦିନେ ମରିବାକୁ ସେ କି ଡରିବ।''

ଏ କବିତାଟି ବୈଷ୍ଣବଚରଣ ପଟ୍ଟନାୟକ ରାତିଅଧରେ ଲୋକମାନେ ତାଟି କବାଟ ଦେଇ ଶୋଇଥିବାବେଳେ ଘୋର ଅଂଧାରରେ ଗାଆଁ ଦାଂଡରେ ବୋଲି ବୋଲି ଯାଉଥିବାବେଳେ ଲୋକମାନେ ଭାବୁଥିଲେ ଯେ ଠାକୁରାଣୀ ଗୀତ ବୋଲି ଆମକୁ ଚେତେଇଦେଉଛି। ଆଉ ଗୋଟିଏ କବିତାର ପଂକ୍ତି ହେଲା –

''ଦେଖିନେବୁ ତାକୁ ଛାଡ଼ିଦେ ହାତ
କପିଳାସ ବଣ ଥରାଇ ଥରାଇ
ଶୁଭୁଅଛି ଆଜି ରଡ଼ି କୁହାଟ।''

**ଗୁଣାତ୍ମକ ପରିବର୍ତ୍ତନ –**

ଗଡ଼ଜାତ ପ୍ରଜା-ଆଂଦୋଳନ ସମୟରେ ମୁଁ ଲକ୍ଷ୍ୟକରିଥିଲି ଯେ, ଜନସାଧାରଣଂକ ମଧ୍ୟରେ ଏକ ଗୁଣାତ୍ମକ ପରିବର୍ତ୍ତନ ଘଟିଛି। ଲେନିନ୍ ଓ ମାଓ-ସେ-ତୁଂଗ ପୋଥିଗତ ବିଦ୍ୟା ତୁଳନାରେ ସଂଗ୍ରାମ ମାଧ୍ୟମରେ ଉପଲବ୍ଧ ଶିକ୍ଷା ଯେ ପ୍ରକୃତ ଶିକ୍ଷା ଏହାର ସତ୍ୟତା ମୁଁ ଗଣସଂଗ୍ରାମ ବେଳେ ନିଜେ ଅନୁଭବ କରିଛି। ଥରେ ଗୋଟିଏ ଗରିବ ଲୋକ ଢେଂକାନାଳରେ କୌଣସି ଗାଆଁ ହାଟରେ ଯାଉ ଯାଉ ଏକ ଶହେଟଂକିଆ ନୋଟ୍ ପାଇଲା। ସେତେବେଳେ ଶହେଟଂକାର ମୂଲ୍ୟ ଅନେକ ବେଶି। ସେ ଲୋକଟି ସେ ନୋଟ୍‌ଟିକୁ ନିଜେ ନ ନେଇ ପ୍ରଜାମଂଡଳ ଅଫିସ୍‌ରେ ଆଣି ଜମାଦେଇଗଲା। କହିଲା – "ମୁଁ ହାଟରୁ ପାଇଲି।" ଆଉ ଏକ ଘଟଣା କହୁଛି – ଗୋଟିଏ ବୁଢ଼ୀ ଖଂଡିଏ ବେତ ହଲାଇ ବାଳ ମୁକୁଳା କରି କାଳିସୀ ଲାଗିଲାପରି ପୁଲିସ୍ ଓ ଫୌଜଂକ ଆଗରେ ନାଚୁଥିଲା; କହୁଥିଲା – "ଠାକୁରାଣୀ ଲାଗିଛି"। ବେତ ହଲାଇ ଇଆଡୁସିଆଡୁ କ'ଣ କହି ଦର୍ଶକମାନଂକୁ ଭୟଭୀତ କରିଦେଉଥିଲା। ପୁଲିସ ପଲଟନ୍ ଓ ଅନ୍ୟ ଲୋକମାନେ ତାକୁ ପଇସାଏ-ଦି'ପଇସା, ଏକ ଅଣା ବା କେହି କେହି ଚାରଣି, ଆଠଣି କିଂବା ଏକ ଟଂକା ପ୍ରଣାମି ଦେଉଥିଲେ। ସମସ୍ତେ ଚାଲିଗଲା ପରେ ସେ ମିଳିଥିବା ପଇସାପତ୍ର ଠୁଳକରି ଆଣି ପ୍ରଜାମଂଡଳ ଅଫିସ୍‌ରେ ଦେଇଯାଉଥିଲା। ଏହିପରି ନାନା ଘଟଣା ଜନସାଧାରଣଂକ ମନରେ ଗୁଣାତ୍ମକ ପରିବର୍ତ୍ତନ ଘଟିଥିବାର ସୂଚନାଦିଏ।

**ଗଡ଼ଜାତ ଅତ୍ୟାଚାରର ନମୁନା –**

ରଣପୁରର ନରହଂତା 'ମାଘମାସିଆ' – 'ମାଘମାସିଆ' କହିଲେ ରଣପୁରଠାରୁ ଦୂରବର୍ତ୍ତୀ ଅଂଚଳର ଲୋକେ କେହି କିଛି ବୁଝିପାରିବେନି; ମାତ୍ର ରଣପୁର ଏବଂ ତା' ଆଖପାଖ ଅଂଚଳର ଲୋକେ 'ମାଘମାସିଆ' କହିଲେ ଭୀତତ୍ରସ୍ତ ହୋଇଉଠଂତି। ରାଜାଂକ ଶାସନ ସମୟରେ ମଣିନାଗ ପର୍ବତ ଉପରେ ଥିବା ମଣିନାଗ ଠାକୁରାଣୀଂକ ପାଖରେ ପ୍ରତ୍ୟେକ ବର୍ଷ ମାଘ ମାସରେ ପ୍ରତ୍ୟହ ନରରକ୍ତ ଦିଆଯାଉଥିଲା। ଏଥିପାଇଁ ରଣପୁରର ବିଭିନ୍ନ ଅଂଚଳରେ କେତେକ ନରହଂତାଂକୁ ଜାଗିରି ଦେଇ ରଜାଂକ ତରଫରୁ ନିଯୁକ୍ତି ଦିଆଯାଇଥିଲା। ଏହି ନରହଂତାମାନେ କେବଳ ମାଘମାସରେ ନରହତ୍ୟା କରି ସେ ରକ୍ତକୁ ଠାକୁରାଣୀଂକ ପାଖରେ ସମର୍ପୁଥିବାରୁ ସେମାନଂକୁ ମାଘମାସିଆଭାବେ ରଣପୁର ଗଡ଼ଜାତ ଏବଂ ଏହାର ନିକଟସ୍ଥ ଅଂଚଳ ଯଥା – ନୟାଗଡ଼, ଦଶପଲ୍ଲା, ଖଂଡପଡ଼ା ଏବଂ ଖାସ୍‌ମାହାଲ୍ ଖୋର୍ଦ୍ଧା, ବାଣପୁର ପ୍ରଭୃତି ଅଂଚଳର ଲୋକମାନେ ଜାଣିଥିଲେ। ରାଜଶାସନର ସମାପ୍ତି ପରେ ମଧ୍ୟ ୧୯୮୫ ସାଲରେ ଏହି ମଣିନାଗ ଠାକୁରାଣୀଂକ ନିକଟରେ ତିନୋଟି ନରବଳୀ ଦିଆଯାଇଥିବା ଖବର ସାରା ଓଡ଼ିଶାରେ ଚହଳ

ପକାଇଦେଇଥିଲା । ସେହି ବିବରଣୀ ସଂଗ୍ରହ କରିବା ପାଇଁ 'ଦୈନିକ ସଂବାଦ'ର ପ୍ରତିନିଧି ଶ୍ରୀ ଜୀମୂତ ମଂଗରାଜ ରଣପୁର ଯାଇ କେତେକ ସଂପୃକ୍ତ ବ୍ୟକ୍ତିଂକଠାରୁ ପ୍ରତ୍ୟକ୍ଷ ବିବରଣୀ ସଂଗ୍ରହ କରିଥିଲେ । ସେ ୨୯ ଜୁନ୍ ୧୯୮୬ ତାରିଖ ସଂଖ୍ୟା 'ସଂବାଦ'ରେ 'ରଣପୁରର ନରହଂତା ମାଘମାସିଆ' ଶୀର୍ଷକ ଦେଇ ଏହି ବିବରଣୀମାନ ପ୍ରକାଶ କରିଥିଲେ । ତଳେ ତା'ର ସାରାଂଶ ଦିଆଗଲା –

''ରଣପୁରର ମାଘମାସିଆମାନେ ଏକ ସ୍ୱୀକୃତିପ୍ରାପ୍ତ ସଂଘବଦ୍ଧ ନରହଂତାଦଳ ବୋଲି କୁହାଯାଇପାରିବ । ରାଜଶାସନ ସମୟରେ ଜଣେ ମାଳସର୍ଦାର ଥାଂତି । ସେ କୁଆଡ଼େ ମାଘମାସିଆମାନଂକର କାର୍ଯ୍ୟକଳାପକୁ ତଦାରଖ କରଂତି । ସେଥିପାଇଁ ତାଂକୁ ରାଜା ଜାଗିର ଦେଇଥାଂତି । ମାଳସର୍ଦାରଂକ ଘର ଖୋଦ୍ ରଣପୁର ଗଡ଼ର କଂସାରିସାହି । ମାତ୍ର ସେ ସେତେବେଳକୁ ଜୀବିତ ନଥିଲେ । ତେଣୁ ସାଂବାଦିକ ଶ୍ରୀ ମଂଗରାଜଂକୁ ରଣପୁରର ଭିତର ଅଂଚଳକୁ ଯିବାକୁ ପଡ଼ିଥିଲା । ଏହି ଅଂଚଳକୁ ମାଳ ଅଂଚଳ କୁହାଯାଏ । ଚାରିଆଡ଼େ ଘଂଚ ଜଂଗଲ । ମଝିରେ ମଝିରେ ଗୋଟିଏ ଗ୍ରାମ । ବର୍ତମାନ ମଧ୍ୟ ସେ ସବୁ ଜାଗାରେ ସୂର୍ଯକିରଣ ତଳେ ପଡ଼େ ନାହିଁ ବୋଲି କହିଲେ ଚଳେ । ଖୁବ୍ ସଂକୀଂର୍ଣ ରାସ୍ତା । ଥରେ ରାସ୍ତା ଭୁଲିଗଲେ ବାଟବଣା ହୋଇଯିବା ସଂଭବ । ରଣପୁରଠାରୁ ପ୍ରାୟ ୪୦ କିଲୋମିଟରରୁ ଅଧିକ ଦୂର ଏହି ମାଳ ଅଂଚଳକୁ ଯାଇ ସାଂବାଦିକ ଶ୍ରୀ ମଂଗରାଜ ରାଜାଂକ ସମୟରେ 'ମାଘମାସିଆ' ଥିବା ୨-୩ଟି ପରିବାରର ଲୋକଂକ ସହିତ ମିଶିଥିଲେ ଏବଂ ସେମାନଂକଠାରୁ ତଥ୍ୟ ସଂଗ୍ରହ କରିଥିଲେ । ଯେଉଁ ପୁରୁଣାକାଳିଆ ଲୋକମାନେ ଭୁକ୍ତଭୋଗୀ ମାଘମାସିଆ ଥିଲେ, ସେମାନଂକର ବୟସ ପ୍ରାୟ ଅଶିରୁ ଊର୍ଦ୍ଧ ହେବ । ଜଣେ କହିଲେ –

ମାଘମାସରେ ବାପା ଦାଦା, ପ୍ରଭୃତି ଗାଁରେ ପ୍ରାୟ ରହୁନଥିଲେ । ମାଘମାସରେ ସେମାନଂକୁ ଦେଖିଲେ ଗ୍ରାମବାସୀଂକ ଆଖିରେ ଭୟାତୁର ଚାହାଣି ଫୁଟିଉଠୁଥିଲା । ମୁଁ ବାପାଂକୁ କେତେଥର ମାଘମାସିଆ ବୃତ୍ତି ଛାଡ଼ିଦେବା ପାଇଁ କହିଛି; କିଂତୁ ବାପା କୁହଂତି, ରାଜା ଆମର ଭଗବାନଂକ ପରି; ତାଂକ ହୁକୁମ୍ ନ ମାନିଲେ ଆମର ମୃତ୍ୟୁ ନିଶ୍ଚିତ । ସିଆଡ଼େ ପୁଣି ଠାକୁରାଣୀ ଅଛଂତି, ତାଂକୁ ଯିଏ ଅମାନ୍ୟ କରିବ ସିଏ ମରିବ । ଆମେ ଯଦି କାମ ନକରିବା ବା ଅଳସମାରି ବସିବା, ତେବେ ଆମ ଘରୁ କାହାକୁ ମାରି ମାଘମାସରେ ମଣିନାଗ ଠାକୁରାଣୀଂକଠାରେ ତା' ରକ୍ତକୁ ସମର୍ପିବା ଦରକାର – ଏହା ରାଜାଂକର କଡ଼ା ଆଦେଶ ।

ତା'ପରେ ବୃଦ୍ଧ ଜଣକ ଟିକିଏ ଥତମତ ଖାଇ କହିଲେ, ଜଂଗଲରେ ଲୁଚିଛପି ଥିବା ବେଳେ ଯଦି କିଏ ଯାଉଥାଏ, ତେବେ ଆମେ ଆସ୍ତେ ଆସ୍ତେ ତା' ପାଖକୁ ଯାଇ ତା' ମୁହଁରେ ଅଖା ପକାଇଦେଉ ଏବଂ ପାଟିଟିକୁ ଜୋର୍‌ରେ ଚିପିଧରୁ । ସେତେବେଳେ ଲୋକଂକର ମାଘମାସିଆମାନଂକ ପ୍ରତି ଭୀଷଣ ଭୟ

ଥାଏ। ଯଦି ୩-୪ ଜଣ ଲୋକ ସାଂଗହୋଇ ଯାଉଥିବେ, ତେବେ ସୁବିଧା ସୁଯୋଗ ଦେଖି ଆମେ ପଛ ଲୋକଟିକୁ ଧରିନେଉ। ସାଂଗରେ ଥିବା ଲୋକମାନେ ଯଦି ଜାଣିଲେ ଯେ, ତାଂକ ସାଂଗରେ ଥିବା ଲୋକଟିକୁ ମାଘମାସିଆ ନେଇଗଲେଣି ବୋଲି, ତେବେ ପ୍ରାଣଭୟରେ ସେମାନେ ଦୌଡ଼ିବା ଆରଂଭ କରଂତି। ଯଦି ସଂଘବଦ୍ଧଭାବେ ସେମାନେ ଆମ ଉପରେ ଆକ୍ରମଣ କରଂତେ, ତେବେ ଅବଶ୍ୟ ଆମେ ଲୋକମାଂନକ ନିକଟରେ ପରାସ୍ତ ହୁଅଂତୁ। ଲୋକମାନଂକୁ କାବୁକରି ତାଂକୁ ମାରି ତାଂକ ଦେହରୁ ରକ୍ତ ନିଗାଡ଼ିବା ପର୍ଯଂତ ସବୁ କାମ ବାପା, ଦାଦା କରୁଥିବାର ମୁଁ ଦେଖିଛି। ମୁଁ କିଂତୁ ଏସବୁ କାମ କରିବାକୁ ପସଂଦକରେନି। ଲୋକଟି ଉପରେ ଅଖା ପକାଇ କାବୁକରିସାରିବାପରେ ତାକୁ ଏକ ନିର୍ଜନ ସ୍ଥାନକୁ ଟେକିନିଆଯାଏ। ଲୋକଟିର ଗୋଡ଼ଠୁ ମୁଂଡ ପର୍ଯଂତ ଅଖା ଭିତରେ ଥାଏ। ପୁଣି ବାହାରୁ ବଂଧାହୋଇଥାଏ। ତଳେ ପକେଇଦେଇ ତା'ର ତଂଟି ଉପରେ ଜଣେ କିଂବା ଦୁଇଜଣ କିଛି ସମୟ ପର୍ଯଂତ ଠିଆହୋଇପଡ଼ଂତି। ଅଧିକାଂଶ ଲୋକଂକର ଆଂଠୁଗଂଠି ଠୋ-ଠୋ ହୋଇ ଫୁଟୁଥିବାର ମୁଁ ନିଜେ ଶୁଣିଛି। ତା'ପରେ ସଦ୍ୟ ମୃତ ଶରୀରଟିକୁ ଅଖା ଭିତରୁ ପଦାକୁ ବାହାରକରାଯାଏ। ମୃତ ଶରୀରର ନାକପୁଡ଼ା ଭିତରେ ଗୋଟିଏ ଦୁଇମୁନିଆ ତୀକ୍ଷ୍ଣ ଲୁହାକୁ ଫୋଡ଼ି ରକ୍ତ ନିଆଯାଏ। ଏସବୁ କାମ କୌଣସି ଏକ ଗଛମୂଳେ କରିବାକୁ ହୁଏ। କାରଣ ନାକପୁଡ଼ା ଭିତରେ ତୀକ୍ଷ୍ଣ ଲୁହାକୁ ଫୋଡ଼ାଯିବା ପରେ ଉକ୍ତ ମୃତଦେହକୁ ଏକ ଗଛ ଡାଳରେ ଗୋଡ଼ ଉପରକୁ ମୁଂଡ ତଳକୁ କରି ଟଂଗାଇଦିଆଯାଏ। ନାକ ତଳେ ଏକ ବଡ଼ ବାଉଁଶ ନଳି ରଖିଦିଆଯାଏ। ଦେହ ଭିତରର ସବୁତକ ରକ୍ତ ନାକପଟେ ଫୋଡ଼ାଯାଇଥିବା କଣା ଦେଇ ବାଉଁଶ ନଳରେ ପଡ଼େ ଏବଂ ଗୋଟିକ ପରେ ଗୋଟିଏ ବାଉଁଶ ନଳିକୁ ମଣିଷ-ରକ୍ତରେ ପୂର୍ଣ କରି ରଖାଯାଏ। ମୃତ ଶରୀରରୁ ରକ୍ତର ଧାର କମିଆସିଲେ ତାକୁ ଗଛରୁ ଓହ୍ଲାଇଦେଇ ଗଛମୂଳରେ ଡେରିଦେଇ ଚାଲିଆସୁ। ଆସିଲାବେଳେ ଶବଟିର ନାକରୁ ଟୋପାଏ ଟୋପାଏ ରକ୍ତ ଝରିପଡୁଥିବାର ମୁଁ ଦେଖିଛି। ତାଜା ରକ୍ତକୁ ନେଇ ଆମ ଭିତରୁ ଯିଏ ହେଲେ ଜଣେ ମଣିନାଗ ପର୍ବତ ଉପରେ ଥିବା ମଣିନାଗ ମଂଦିରଠିକି ଯାଆଂତି ଏବଂ ସେଠାରେ ଦେବୀଂକ ସମ୍ମୁଖରେ ରକ୍ତକୁ ଢାଳଂତି।

ଆମେ ତ ଏଠି ଗୋଟିଏ ପରିବାର ଏ କାମ କରୁଥିଲୁ। ତେବେ ରଣପୁରର ବିଭିନ୍ନ ଅଂଚଳରେ ଏହି ମାଘମାସିଆମାନେ ରହିଥିଲେ। ଗୋଟିଏ ଦିନର ଘଟଣା ମୁଁ ଏଠି ଆପଣଂକୁ କହୁଛି; ଯେଉଁଟାକି ମୋ ମନକୁ ଆଜି ବି ଚହଲାଇଦିଏ। ସେଇ କର୍ମଯୋଗୁଁ ବୋଧହୁଏ ଭଗବାନ୍ ମୋତେ ଖୁସିରେ ମରିବାକୁ ଦେଉନାହାଂତି। ମାଘମାସରେ ବାପାଂକ ସହିତ ମୁଁ ବୁଲୁଥାଏ। ଠାକୁରାଣୀଂକୁ ରକ୍ତ ଦେବାପାଇଁ ଦୁଇ ଦିନ ପର୍ଯଂତ ପ୍ରାୟ କୌଣସି ଲୋକ ମିଳିଲେନି। ପୁଣି ତା' ପରଦିନ

ମାଘ ପୂର୍ଣ୍ଣିମା । ଯେଉଁ ଦିନ ଯାହା ମିଳୁ ବା ନମିଳୁ; କିଂତୁ ମାଘମାସ ପୂର୍ଣ୍ଣିମାରେ ଠାକୁରାଣୀ ନିଶ୍ଚୟ ତାଜା ରକ୍ତ ପିଇବେ । ସେଥରକ ବାପାଂକର ଭାରି ଚିଂତା – କୁଆଡ଼ୁ ହେଲେ କାବୁ କରିବାପାଇଁ ମଣିଷ ମିଳୁନଥାଂତି । ସମୟ ଗଡିଯାଉଛି; କ'ଣ କରାଯିବ ? ଶେଷକୁ ବାପା ଆମର ଜଣେ ବଂଧୁବାଂଧବଂକର ପୁଅକୁ ଟେକିଆଣିଥିଲେ ଓ ତାକୁ ସେଦିନ ରାତିରେ ଚକଟି ଚକଟି ମାରିଦେବାପରେ ରକ୍ତ ସଂଗ୍ରହ କରିଥିଲେ । ମୁଁ ସେଦିନ ଭୀଷଣ କାଂଦିଥିଲି; ଯେଉଁ କାଂଦକି ଆଜି ପର୍ଯ୍ୟଂତ ମୋର ମନେରହିଛି । ତେବେ ଏସବୁ କଥା ରଣପୁରରେ ବେଜେଲ୍‌ଗେଟ୍ ମର୍ଡର୍‌ର ପୂର୍ବକଥା ।

ମୋର ମନେଅଛି, ସେତେବେଳକୁ ମତେ ୧୮ କି ୧୯ ବର୍ଷ ହେବ । ସେଇ ଦିନରୁ ଆଉ ଆମର କେହି ଏଭଳି ଜଘନ୍ୟ କାମ କରୁନାହାଂତି । ତେବେ ମାଘମାସ ପୂର୍ଣ୍ଣିମାରେ ଆମେ ଯେଉଁଠି ଥାଉ ପଛେ, ସେଦିନ ମା' ମଣିନାଗଂକ ନାମରେ ଯୁଆଡ଼ୁ ହେଲେ କିଛି ତାଜା ରକ୍ତ ସମର୍ପି ଦେଉ, ବେଳେବେଳେ ସମୟ ଆସିଲେ, କୁଆଡ଼ୁ କିଛି ନ ମିଳିଲେ, ନିଜ ଦେହକୁ କାଟି କିଛି ତାଜା ରକ୍ତ ମୁଁ ବାହାରକରିନିଏ । ମଣିନାଗ ଠାକୁରାଣୀ ଏବଂ ରାଜାଂକୁ ଆମେ ବର୍ତ୍ତମାନ ପର୍ଯ୍ୟଂତ ଭକ୍ତି କରୁଛୁ, ତେବେ ଏବେ ଆଉ ନରବଳି କଥାଟା ନାହିଁ' ...

'ମାଘମାସିଆ'ମାନଂକୁ ରଣପୁରର ରାଜା କେବେ ନିଯୁକ୍ତି ଦେଇଥିଲେ, ସେ ସଂପର୍କରେ ସଠିକ୍ ସଂବାଦ ଜଣା ନ ପଡ଼ିଲେ ମଧ୍ୟ ଏହା ୧୩୪୮ ମସିହା ପରବର୍ତ୍ତୀ ବୋଲି ଜଣାପଡ଼ିଛି । ଶୁଣାଯାଏ, ରଣପୁରରେ ଏହି ନରବଳିପ୍ରଥା ଆରଂଭ କରିଥିଲେ ରାଜା ଉଦ୍ଧବ ସିଂହ ନରେଂଦ୍ର । ସେ ଭାରି ଦୁର୍ଦ୍ଦାଂତ ଏବଂ ଭଗବଦ୍‌ବିଶ୍ୱାସୀ ଥିଲେ । ରାଜା ଉଦ୍ଧବ ସିଂହ ପ୍ରତ୍ୟେକ ଦିନ ଅଶ୍ୱପୃଷ୍ଠରେ ପୁରୀ ଶ୍ରୀକ୍ଷେତ୍ରକୁ ଯାଇ ଶ୍ରୀଜଗନ୍ନାଥ ଦର୍ଶନ କରଂତି । ତାଂକରି ରାଜତ୍ୱ ସମୟରେ ସେ ମଣିନାଗ ପର୍ବତ ଉପରେ ଦେବୀଂକ ପାଇଁ ମଂଡପ ନିର୍ମାଣ କରିଥିଲେ ଏବଂ ବିଶ୍ୱାସ କରାଯାଏ ଯେ, ତାଂକରି ସମୟରେ ଏହି ମାଘମାସିଆ ପ୍ରଥାର ଆରଂଭ ହୋଇଥିଲା ।''

ମୋ ଜନ୍ମିତ ମା', ଯାହାକୁ ମୁଁ ବୋଉ ବୋଲି ଡାକେ, ରଣପୁର ରାଜାଂକ କୁଟୁଂବ ବା ବିରାଦରଂକ କନ୍ୟା ଥିଲେ । ଆମେ ଥରେ ଦି'ଥର ଆମ ଗାଁ ଗୁରୁଜଂଗରୁ ରଣପୁର ଗଡ଼କୁ ଶଗଡ଼ଗାଡ଼ିରେ ମାମୁଘରକୁ ଯାଇଛୁ । ତେବେ ମାଘମାସରେ ନୁହେଁ । ସାନ ମାମୁ ରାହାସ ରାଏ ଖୁବ୍ ସ୍ନେହୀ ଲୋକ । ସେ ମଝିରେ ମଝିରେ ଆମ ଘରକୁ ଆସି ଆମକୁ ଶଂଖୋଳି ଯାଆଂତି । ରଣପୁର ହାଇସ୍କୁଲର ତତ୍କାଳୀନ ହେଡ୍‌ମାଷ୍ଟର ଯୁଗୋଳକିଶୋର ରାଏଂକ କନ୍ୟାଂକ ସହ ମିଟିଦଦା (ଲଳିତମୋହନ)ଙ୍କର ବିବାହ ପ୍ରସ୍ତାବ ପଡ଼ିଥାଏ । ତାଂକର ପ୍ରଥମ ସ୍ତ୍ରୀଂକର ବିୟୋଗ ହୋଇଯାଇଥାଏ । ମୁଁ, ବଡ଼ ଦଦେଇ ଓ ଦଈବାବୁ ଶଗଡ଼

ଗାଡ଼ିରେ ରଣପୁର ଯାଇ କନ୍ୟା ଦେଖିଥିଲୁ। ମଣିନାଗ ପାହାଡ଼କୁ ଦୂରରୁ ଦେଖିଛୁ। ଲୋକମୁଖରେ ତାହା ଏକ ଭୟାବହ ସ୍ଥାନ।

ଯତନ ନଗର –

ଯତନ ନଗର ଢେଂକାନାଳଠାରୁ ଛ' କି.ମି. ଦୂରବର୍ତ୍ତୀ ଏକ ଉଚ୍ଚ ପାହାଡ଼ ଉପରେ ନିର୍ମାୟିତ ଏକ ବିରାଟ ଅଟ୍ଟାଳିକା। ଏହି ପ୍ରାସାଦର ପ୍ରତିଟି ଶିଳାରେ ଲାଗିଛି ମଣିଷର ଲୁହ ଲୁହ ଓ ଝାଳ। ଏହି ପାହାଡ଼ ଉପରେ ଏଡ଼େବଡ଼ ଅଟ୍ଟାଳିକା ନିର୍ମାଣ କରାଇଥିଲା କିଏ? ସେ କ'ଣ ପାଗଳ କିଂବା ଆଡ଼ବାୟା ଥିଲା? ତାହା ନହେଲେ ଏ ସମୁଚ୍ଚ ପାହାଡ଼ ଉପରେ ଏଡ଼େ ବଡ଼ ଏକ ଅଟ୍ଟାଳିକା ନିର୍ମାଣ କରାଇଥିଲା କାହିଁକି– ଯେଉଁଥିରେ କି ସେ ଦିନେ ମଧ୍ୟ ବାସକରିନାହିଁ। ଏହି 'ଯତନନଗର' ଅନେଶୋତ ବଖରାବିଶିଷ୍ଟ ଏକ ପ୍ରକାଂଡ ହର୍ମ୍ୟ। ଏହାକୁ ନିର୍ମାଣ କରାଇବାକୁ ହେଲେ ଅଜସ୍ର ଧନବଳ ଓ ଲୋକବଳ ଦରକାର। ଏହି ଯତନନଗରରୁ ଗଡ଼ଜାତ ଶାସନର ବିକଟାଳ ରୂପ ଦର୍ଶକକୁ ଭୟଭୀତ କରିଦିଏ। ଯତନନଗରର ସମସ୍ତ ବିବରଣୀ ସଂଗ୍ରହ କରିବା ପାଇଁ 'ଦୈନିକ ସଂବାଦ'ର ପ୍ରତିନିଧି ଶ୍ରୀ ଜୀମୂତ ମଂଗରାଜ ଢେଂକାନାଳ ଯାଇଥିଲେ। ସେ ପ୍ରତ୍ୟକ୍ଷଦର୍ଶୀ ଓ ଭୁକ୍ତଭୋଗୀ ବହୁ ଲୋକଂକ ସଂସ୍ପର୍ଶରେ ଆସି ଯେଉଁ ଟିକିନିଖି ତଥ୍ୟ ସଂଗ୍ରହ କରିଥିଲେ, ତାହା ସେ 'ଦୈନିକ ସଂବାଦ'ରେ ୧୧.୫.୧୯୮୬ ତାରିଖ ସଂଖ୍ୟାରେ 'ଯତନନଗର' ଶୀର୍ଷକ ଦେଇ ଲିପିବଦ୍ଧ କରିଛଂତି। ସେହି ଅଶ୍ରୁପ୍ଲୁତ କାହାଣୀର ସଂକ୍ଷିପ୍ତ ସାର ତଳେ ଦିଆଗଲା।

ଜଣେ ଭୁକ୍ତଭୋଗୀ କହିଲେ– ''ଏହି ଯତନନଗରର ନିର୍ମାତା ହେଉଛଂତି ଆମର ଏବର ରଜା ଯିଏ ପାଂଚ୍‌ବର୍ଷିଆ ନିର୍ବାଚନରେ ଦିଲ୍ଲୀରେ ଅଛଂତି ଏବଂ ଯିଏ ଓଡ଼ିଶାର ମଂତ୍ରୀ ଥିଲେ, ତାଂକ ଭାଇ ନରସିଂହ ସିଂହଦେଓ (ଯାହାଂକୁ ଆମ ଏଠିକାର ଲୋକମାନେ ପଟ୍ଟାୟତ ସାହେବ ବୋଲି ଡାକୁଥିଲେ) ସେ ଏହି ଘରଟିକୁ ତିଆରିକରାଇଥିଲେ।''

ଏ ପ୍ରାସାଦ ନିର୍ମାଣ କରାଇବାରେ ବହୁ ଟଂକା ଖର୍ଚ୍ଚ ହୋଇଥିବ ବୋଲି କହିବାରୁ ଲୋକମାନେ ହସିଲେ, କହିଲେ– ଟଂକା? ...ଲୋକମାନଂକୁ ବେଠି ଖଟାଇ, ମାଗଣ, ସଲାମୀ ପ୍ରଭୃତିରେ ଅର୍ଥ ଆଦାୟ କରି ଏ ଘର ବନାଯାଇଥିଲା। ତେଣୁ ଏହାର ପ୍ରକୃତ ମାଲିକ ଆମେ, ଲୋକମାନେ। ଢେଂକାନାଳ ରାଜାଂକ ଅଧୀନରେ ଯେତେଗୁଡ଼ିଏ ଗାଁ ଥିଲା, ସବୁ ଗାଁର ଲୋକମାନେ ଏଥିରେ ବେଠି ଖଟିଛଂତି। ତେଣୁ ସେଇସବୁ ଗାଁମାନଂକରେ ଥିବା ଏବେକାର ଲୋକମାନଂକର ବାପା, ଜେଜେବାପା, ସମସ୍ତଂକ ରକ୍ତରେ ଏଇ ଘରଟି ତିଆରି ହୋଇଛି। ବେଠି, 'ବେଠି' ମାନେ କ'ଣ, ଜାଣଂତି ଆପଣ? ମାନେ, ଘରୁ ଖାଇବେ କିଂତୁ ରାଜାଂକ କାମ କରିବେ। ପୁଣି ସକାଳୁ ସଂଧ୍ୟା ପର୍ଯ୍ୟଂତ ବିଶ୍ରାମର ସମୟ

ନଥାଏ । ଆଉ ପରିଶ୍ରମ ବାବଦରେ ରାଜାଂକଆଡୁ କିଛି ମିଳେନି । ଯିଏ ଅଭିଯୋଗ କଲା, ତା' ଉପରେ ଚାଲେ ଚାବୁକ୍‌ର ପ୍ରହାର ।

**ଅବାଧ ନାରୀଉପଭୋଗ –**

ଐତିହାସିକ ପ୍ରଫେସର ଡକ୍ଟର ଜଗନ୍ନାଥ ପଟ୍ଟନାୟକଂକଦ୍ୱାରା ଲିଖିତ 'ଓଡ଼ିଶାରେ ରାଜାରାଜୁଡ଼ାଂକ ଶାସନ' (୧୮୦୩-୧୮୬୭) ଡି.ଲିଟ୍. ଥେସିସ୍‌ଟିକୁ ସଂପ୍ରତି ପଢ଼ିବାର ସୁଯୋଗ ପାଇଲି । ଏଥିରେ ଡକ୍ଟର ପଟ୍ଟନାୟକ ରାଜାମାନଂକର ନାରୀଉପଭୋଗ ସଂପର୍କରେ ବର୍ଣନା କରିଛଂତି । ପୁଣି ଏହି ନାରୀଭୋଗରେ କୁଆଡ଼େ ଢେଂକାନାଳର ତତ୍କାଳୀନ ରାଜା ପ୍ରସିଦ୍ଧ ଥିଲେ ଏବଂ ଅନ୍ୟ ରାଜାମାନଂକ-ଠାରୁ ସେ ସର୍ବାଧିକ ନାରୀ ଭୋଗକରୁଥିଲେ । ଡଃ. ପଟ୍ଟନାୟକ ତାଂକ ଥେସିସ୍‌ରେ ଉଲ୍ଲେଖ କରିଥିଲେ ଯେ ତତ୍କାଳୀନ ଢେଂକାନାଳ ରାଜା ରାମଚନ୍ଦ୍ର ସିଂହ ଉପଭୋଗ କରିବାପାଇଁ ୫୦ ଜଣ ସୁଂଦରୀଂକୁ ରାଜପ୍ରାସାଦରେ ରଖିଥିଲେ; ତଥାପି ମଧ୍ଧ ତାଂକର ଯୌନଲାଳସା ଏଥିରେ ମେଂଟିନଥିଲା । ତାଂକ ଶାସନାଧୀନରେ ଥିବା ଗାଁଗୁଡ଼ିକରେ କୌଣସି ସୁଂଦରୀଂକର ଯଦି କେବେ ଦର୍ଶନ ମିଳିଯାଏ, ତେବେ ତାକୁ ମଧ୍ଧ ରାଜାଂକ ଯୌନଲାଳସା ମେଂଟାଇବା ପାଇଁ ରାଜଉଆସକୁ ଅଣାଯାଉଥିଲା । ପୁଣି ଲାସ୍ୟମୟୀ କିଶୋରୀମାନଂକୁ ରାଜାଂକ ପାଖକୁ ଆଣିବା ଓ ସେମାନଂକ ସଂପର୍କରେ ଖବର ଦେବାପାଇଁ ସ୍ୱତଂତ୍ର ରାଜକର୍ମଚାରୀମାନେ ନିଯୁକ୍ତହେଉଥିଲେ ଏବଂ ସେମାନଂକୁ ମଧ୍ଧ ଅଧିକ ପଇସା ଦିଆଯାଉଥିଲା ।

ତେବେ ୧୯୦୦ ମସିହା ପୂର୍ବରୁ ଢେଂକାନାଳରେ ରାଜଦରବାରକୁ ଗାଁମାନଂକରୁ ସ୍ତ୍ରୀଲୋକମାନଂକୁ ଜବରଦସ୍ତ ଧରିନିଆଯାଉଥିଲା ଏବଂ ସେଠାରେ ରାଜକର୍ମଚାରୀମାନେ ତାଂକୁ ଗଣଧର୍ଷଣ କରୁଥିଲେ ଏବଂ ଧର୍ଷିତା ହେବା ପରେ କେତେକ ସ୍ତ୍ରୀଲୋକଂକୁ ରାଜକର୍ମଚାରୀମାନଂକ ସମ୍ମୁଖରେ ନଗ୍ନ ଭାବରେ ନୃତ୍ୟ କରିବାପାଇଁ ବାଧ୍ୟକରାଯାଉଥିଲା ବୋଲି ଡକ୍ଟର ପଟ୍ଟନାୟକ ଉକ୍ତ ଥେସିସ୍‌ରେ ଦର୍ଶାଇଛଂତି ।

୧୯୦୦ ମସିହା ପୂର୍ବରୁ ଢେଂକାନାଳ ରାଜା, ରାଜକର୍ମଚାରୀମାନେ ନାରୀଭୋଗରେ ଅଧିକ ସମୟ ଲିପ୍ତ ରହୁଥିଲେ ବୋଲି ଡକ୍ଟର ପଟ୍ଟନାୟକଂକର ଥେସିସ୍‌ରୁ ଜଣାଯାଏ ।

**ଯତନ ନଗରର କଳଂକିତ ଇତିହାସ –**

ଗଡ଼ଜାତ ଅତ୍ୟାଚାରର ନଗ୍ନ ନମୁନା ହେଉଛି ଯତନ ନଗର । ଆଗରୁ କହିଛି, ଏହି ଯତନନଗରକୁ ତୋଳାଇଥିଲେ ଢେଂକାନାଳର ପଟ୍ଟାୟତ, ଯେ ଥିଲେ ପ୍ରଜାପୀଡ଼ନର ଜୀବଂତ ବିଗ୍ରହ । ରାଜା ସୁର ପ୍ରତାପ ମହେଂଦ୍ର ବାହାଦୂରଂକର ଛ'ପୁଅ ଥିଲେ । ସେମାନେ ହେଲେ ଶଂକରପ୍ରତାପ ମହେଂଦ୍ର ବାହାଦୂର, ନରସିଂହ ପ୍ରତାପ ସିଂହ ଦେଓ, ଶେଷ ପ୍ରତାପ ସିଂହ ଦେଓ, ଅମରେଂଦ୍ର ମାନସିଂହ,

ଶୌରେନ୍ଦ୍ର ପ୍ରତାପ ସିଂହ ଦେଓ ଓ ସମରେନ୍ଦ୍ର ପ୍ରତାପ ସିଂହ ଦେଓ। ସାଧାରଣତଃ ଢେଙ୍କାନାଳ ରାଜପରିବାରରେ ରାଜାଂକର ବଡ଼ପୁଅହିଁ ରାଜଗାଦିରେ ବସିବା ପାଇଁ ଯୋଗ୍ୟ ଅଟେ। ତେଣୁ ବଡ଼ପୁଅ ସାଂଗିଆଟି ବାହାଦୂର ହୋଇଥାଏ। ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଯେପରି ଛ'ଭାଇଂକ ମଧ୍ୟରେ ରାଜ-ସଂପତ୍ତିକୁ ନେଇ କୌଣସି ବିବାଦ ନ ଉପୁଜେ ସେଥିପାଇଁ ଭାଇମାନଂକ ମଧ୍ୟରେ କିଛି ଜାଗାକୁ ରାଜମାତା ବାଂଟିଦେଇଥିଲେ। ତେବେ ଚତୁର୍ଥ ପୁତ୍ର ଅମରେଂଦ୍ର ମାନସିଂହ ଡମପଡ଼ା ବିଧବା ରାଣୀଂକର ପୋଷ୍ୟପୁତ୍ର ହୋଇ ଡମପଡ଼ା ରାଜକର୍ମ ଚଳାଇଲେ।

ଢେଂକାନାଳ ରାଜପରିବାରର ଏହି ପାଂଚଭାଇଂକ ମଧ୍ୟରେ ୨ୟ ଭାଇ ନରସିଂହ ପ୍ରତାପ ସିଂହ ଦେଓ (ଯାହାଂକୁ କି ଢେଂକାନାଳର ପ୍ରଜାବୃନ୍ଦ 'ପଞ୍ଚାୟତ ସାହେବ' ବୋଲି ଡାକଂତି) ଅନ୍ୟ ଭାଇମାନଂକ ତୁଳନାରେ ବିଚକ୍ଷଣ ବୁଦ୍ଧିମାନ୍ ଥିଲେ। ସେ ମଧ୍ୟ ଦେଓ୍ୱାନଭାବେ କାର୍ଯ୍ୟ କରୁଥିଲେ। ରାଜା ଶଂକର ପ୍ରତାପ ଥରେ କୌଣସି ଏକ କାମରେ ବିଦେଶ ଯାଇଥିଲେ। ରାଜାଂକ ଅନୁପସ୍ଥିତିରେ ପଞ୍ଚାୟତ ସାହେବ ସମସ୍ତ କ୍ଷମତାର ଅପବ୍ୟବହାର କରିବାକୁ ଲାଗିଲେ। ସେ ସମୟରେ ତାଂକ ମୁଂଡରେ ଏକ ଅଦ୍ଭୁତ ଚିଂତାଧାରା ଜନ୍ମନେଲା। ଚିଂତାଧାରାଟି ହେଲା— ଢେଂକାନାଳ ରାଜବାଟୀ ଭଳି ସେ ଏକ ପ୍ରାସାଦ ତିଆରି କରିବେ; କିଂତୁ ତାଂକ ପ୍ରାସାଦଟି ରାଜବାଟୀଠାରୁ ସଂପୂର୍ଣ ଭିନ୍ନ ହେବ। ତାଂକ ପ୍ରାସାଦଟି ଏକ ପାହାଡ଼ ଉପରେ ରହିବ; ଯେଉଁ ପ୍ରାସାଦଟି ସମସ୍ତ ପ୍ରଜାମାନଂକ ଦୃଷ୍ଟିଗୋଚରହେବ।

ଜଣେ ଭୂତପୂର୍ବ ରାଜକର୍ମଚାରୀଂକ ମତରେ ଏହି ପ୍ରାସାଦର ନିର୍ମାଣ କାର୍ଯ୍ୟ ୧୯୩୩ କି ୩୪ ମସିହାରେ ଆରଂଭହୁଏ। ପାହାଡ଼ ଉପରେ ୯୯ କକ୍ଷରାବିଶିଷ୍ଟ ଗୋଟିଏ ପ୍ରାସାଦ ନିର୍ମାଣ କରିବାପାଇଁ ଯୋଜନା ହେଲା। ପ୍ରାସାଦଟିର ରୂପରେଖ କିପରି ହେବ, ପଞ୍ଚାୟତ ସାହେବ ସେ ସଂପର୍କରେ ଚିଂତାକରିଥିଲେ। ତାଂକର ଜିଦ୍ ଥିଲା ଯେ ପ୍ରାସାଦ ଉପରେ ଗୋଟିଏ ଟେନିସ୍ କୋର୍ଟ ରହିବ ଏବଂ କାଚର ଗୋଟିଏ ଗଂବୁଜ ରହିବ। ରାତିବେଳେ ସେ ଗଂବୁଜରେ ଆଲୁଅ ଜଳିବ; ଯାହାକୁ କି ଢେଂକାନାଳ ପ୍ରଜାମାନେ ଦେଖିପାରିବେ। 'ଯତନନଗର'ରେ ଏବେ ମଧ୍ୟ ଏ ଦୁଇଟି ରହିଛି।

ପଞ୍ଚାୟତ ସାହେବଂକର ଯୋଜନା ଥିଲା ଇଂଲଂଡର ବଂକିମହାମ୍ ପ୍ୟାଲେସଟି ଯେମିତି ହୋଇଛି, ଏଇଟିକୁ ସେମିତି କରିବେ। ସେଇ ଅନୁସାରେ କାର୍ଯକ୍ରମ ଆରଂଭ ହେଲା। ଅବଶ୍ୟ ଏତେ ବଡ଼ ପ୍ରାସାଦଟିଏ ପାହାଡ଼ ଉପରେ ନିର୍ମାଣ ହେବା ସଂପର୍କରେ ରାଜା ଜାଣିଥିଲେ ଏବଂ ସେଥି ନିମଂତେ ମଧ୍ୟ ଆବଶ୍ୟକୀୟ ପଦକ୍ଷେପ ନେଉଥିଲେ।

ପାହାଡ଼ ଉପରେ ଯେଉଁ ଘରଟି ନିର୍ମାଣ ହେବ, ତା'ର ନାମ 'ଯତନ-

ନଗର' ଦିଆଯିବ ବୋଲି ପଞ୍ଚାୟତ ସାହେବ କହିଲେ । ସେତେବେଳେ ପଞ୍ଚାୟତ ସାହେବ ପାହାଡ଼ ଉପରେ ଘର ତିଆରିକରିବା ବହୁ କଷ୍ଟସାଧ୍ୟ ବୋଲି ଜାଣିଥିଲେ । ପଥର, ଇଟା, କାଠ, ଲୁହା ପ୍ରଭୃତି ଘରତିଆରିର ସମସ୍ତ ସାମଗ୍ରୀ ତଳୁ ଉପରକୁ ବୁହାଯିବା ଏକ ସମସ୍ୟା ହେବ ବୋଲି ଜଣାପଡ଼ିଗଲା । କିଂତୁ ପଞ୍ଚାୟତ ସାହେବ ବଡ଼ ଚତୁର ଥିଲେ । ତାଂକ ମୁଂଡରେ ଏକ ବୁଦ୍ଧି ଜୁଟିଲା । ଢେଂକାନାଳ ରାଜାଂକ ଅଧୀନରେ ଥିବା ସମସ୍ତ ଗ୍ରାମର ଲୋକମାନଂକୁ ବେଠି ଖଟାଇ ଏହି ପ୍ରାସାଦଟିକୁ ନିର୍ମାଣ କରିବାପାଇଁ ତାଂକର ଯୋଜନା ଆରଂଭହେଲା ।

ଯତନନଗର ନିକଟରେ ଅବସ୍ଥିତ ଶିମୁଳିଆ ଗ୍ରାମ । ଏହି ଗ୍ରାମର କେତେକ ଲୋକ ଏହି ବେଠି ଖଟିବାର ପ୍ରତ୍ୟକ୍ଷଦର୍ଶୀ ଥିଲେ; କିଂତୁ ଜଣଂକୁ ବାଦ୍‌ଦେଲେ କାଳର କରାଳ ଚକ୍ରରେ ଅନ୍ୟମାନେ ଆଉ ଏ ଇହଧାମରେ ନାହାଂତି । ସେ ଜଣକ ହେଉଛଂତି ଘନ ବେହେରା । ବୟସ ଅଶୀ ପାଖାପାଖି । ବୟସାଧିକ୍ୟ ଦୃଷ୍ଟିରୁ ଅଧିକ ସମୟ ପର୍ଯଂତ ଗପସପ କରିପାନଥିଲେ । ସେ କହିଲେ –

"ଯେତେବେଳେ 'ଯତନନଗର' କାମ ଆରଂଭ ହେବ ବୋଲି ଶୁଣିଲୁ, ସେତେବେଳେ ଆମେ ଭାବୁଥାଉ, ଗୋଟିଏ ପାହାଡ଼ ଉପରେ ଉଆସ ନିର୍ମାଣ କରିବାପାଇଁ ପଞ୍ଚାୟତ କାହିଁକି ନିଷ୍ପତ୍ତି ନେଲେ ? ତେବେ ଗାଁରେ ଯେଉଁ ଦିନ ରାତିରେ ଆମେ ଏ ବିଷୟରେ କଥାବାର୍ତ୍ତା କଲୁ, ତା' ପରିଦିନ ଦେଖିଲୁ 'ଯତନନଗର'କୁ ରାସ୍ତା ତିଆରି କାମ ଆରଂଭ ହୋଇଯାଇଛି । ରାଜାଂକ ନଅରଠାରୁ 'ଯତନନଗର'କୁ ସିଧା ରାସ୍ତା ନଥିଲା । ସେଇ ରାସ୍ତା ଆମର ଏଇ ଗାଁ ଭିତରଦେଇ ଗଲା । ଯାହାର ଘର, ବାରି, ଆଦି ସେ ରାସ୍ତା ଆଗରେ ପଡ଼ିଲା, ତେବେ ତାକୁ ଜବରଦସ୍ତ ଅବରୋଧ କରାଗଲା ଏବଂ ସେ ସବୁ ଭାଂଗିଦିଆଯାଇ ସେଥିରେ ରାସ୍ତା କାମ ଚାଲିଲା; ଯତନନଗରକୁ ରାସ୍ତା ହୋଇଗଲା ।

"ସେତେବେଳକୁ ବିଭିନ୍ନ ଗାଁରୁ ଲୋକମାନେ ବେଠିଖଟିବାପାଇଁ ଏଠାରେ ଆସି ପହଂଚିସାରିଥାଂତି । ରାଜାଂକ ଆଦେଶ କିଏ ନମାନିବ ? କାହାର କ'ଣ ପିଠି ଗଲୁ କରୁଛି କି ? ଗାଁରୁ ଆସିଲାବେଳେ ସମସ୍ତେ ଗୋଟିଏ ଗୋଟିଏ ଗଂଠିଲିରେ ଚୁଡ଼ା, ଚାଉଳ ଧରି ଆସିଥିବାର ମୁଁ ଦେଖିଛି । ଦିନଯାକ ଖଟିବେ, ତା' ବଦଳରେ ରାଜାଂକଠୁ ତ କିଛି ପାଇବେନି; ବରଂ ରାତି ହେଲେ ଗାଁରୁ ଆଣିଥିବା ଚାଉଳରୁ ଦୁଇମୁଠା ଫୁଟାଇ ଖାଂତି, ପୁଣି ସକାଳ ହେଲେ ବେଠି ଖଟଂତି । ଇମିତି ନିଜକୁ ପ୍ରାୟ ନଅ ଶହରୁ ଏକ ହଜାର ଜଣ ପର୍ଯଂତ ବେଠି ଖଟଂତି – କିଏ ମାଟି ବୋହେ ତ କିଏ ପଥର, କିଏ ପୋଖରୀ ଖୋଳେ ତ କିଏ କୂଅ; ଏମିତି ବହୁତ କିଛି । କାମ ତଦାରଖ କରିବାକୁ ଲୋକ ଥାଂତି । କାମରେ ଅବହେଳା କଲେ ଚାବୁକ୍ ପ୍ରହାରଠାରୁ ଆରଂଭକରି ବିଛୁଆତି ଲଗାଇଦିଆଯାଇଥିବାର ଶୁଣିଛି । କିଂତୁ ଆମେ ଯେଉଁଠି କାମ କରୁଥିଲୁ ସେଠାରେ

କେହି ଠକୁନଥିଲୁ। ଏ ବିଷୟରେ ଆଉ ଅଧିକ କିଛି କହିପାରିବିନି। ତେବେ ପଚାୟତ ସାତ-ଆଠଟି ମାଇକିନା ରଖିବାର ମୁଁ ଶୁଣିଛି। ଛାଡ଼ନ୍ତୁ . . . ରାଜାଙ୍କର ସେସବୁ ନିତିଦିନିଆ କାମ''।

ତା'ପରେ ଢେଙ୍କାନାଳରେ ରହୁଥିବା ରଘୁନାଥ ଦାସଙ୍କ ସହ ଦେଖାହେଲା। ବୟସ ଅଶୀରୁ ଊର୍ଦ୍ଧ୍ୱ। ଯତନନଗର ନିକଟରେ ପଚାୟତ ସାହେବଙ୍କର ଖମାରରେ ଦାସେ ଖମାରୀ ଥିଲେ। ଏହି ଖମାର ନିକଟ ଦେଇ ଯତନ ନଗରକୁ ରାସ୍ତା। ସେତେବେଳେ ଯେଉଁ ବେଠି କାରବାର ଚାଲିଥିଲା, ତାହାର ପ୍ରତ୍ୟକ୍ଷଦର୍ଶୀ ଥିଲେ ଦାସେ। ସେ ମଧ୍ୟ କେତେକ ସମୟରେ ବେଠିଆମାନଙ୍କୁ ଖଟାଉଥିଲେ। ଯତନନଗରର ଇତିହାସ ସଂପର୍କରେ ଜାଣିବାପାଇଁ ତାଙ୍କ ନିକଟରେ ଯେତେବେଳେ ମୁଁ ପହଂଚିଲି, ସେତେବେଳେ ସେ ଯତନନଗର ସଂପର୍କରେ ଅନ୍ୟ କଥା କିଛି ନକହି, କେବଳ ଏତିକି କହିଲେ, ''ଯତନନଗର ନିର୍ମାଣ କାର୍ଯ୍ୟ ଚାଲିଥିଲାବେଳେ ବହୁ ଅତ୍ୟାଚାର ହୋଇଚି। ମୋ ଜାଣିବାରେ ପଂଚୁ ମିସ୍ତ୍ରି ହେଡ୍ ମିସ୍ତ୍ରି ଥିଲା। ସେ ଯଦି ଆଜି ବଂଚିଥାଂତା, ତେବେ ଏ ଯତନନଗରର ବେଠି ଓ ଅତ୍ୟାଚାର ସଂପର୍କରେ ବହୁତ କଥା କହିଥାଂତା। ମୁଁ ନିଜେ ଦେଖିଛି, ପ୍ରଥମେ ହାତୀମାନେ ଡଲୁ ପାହାଡ଼ ଉପରକୁ ପଥର ବୋହୁଥିଲେ। ଦୁଇଟା ହାତୀ କୁଆଡ଼େ ଟିକିଏ ଦୁର୍ବଳ ଥିଲେ। ପଥର ବୋହିଲାବେଳକୁ ସେମାନଙ୍କ ଆଖିରୁ ଲୁହଗଡୁଥିଲା; କିଂତୁ ହାତୀକୁ କଷ୍ଟ ହେଉଛି ବୋଲି କେହି କହୁନଥିଲେ। ଯିଏ କହିବ, ସିଏ ପଥର ବୋହିବ। ୫-୬ ଦିନ ପରେ ହାତୀ ଦୁଇଟି ମରିଗଲେ। ହାତୀ ମରିଗଲାପରେ ବେଠି ଖଟୁଥିବା ଲୋକମାନଙ୍କର ଭାଳେଣି ପଡ଼ିଗଲା। ସମସ୍ତଙ୍କର ଗୋଟିଏ ଚିଂତା – ଆଉ କ'ଣ ହାତୀ ଯେଉଁ କାମ କରୁଥିଲା ସେଇ କାମଗୁଡ଼ାକ ଆମକୁ କରିବାକୁ ପଡ଼ିବ କି? ସତକୁ ସତ ସେମାନେ ଯାହା ଭାବୁଥିଲେ, ସେଇଆ ଘଟିଲା। ଶେଷକୁ ବେଠି ଖଟୁଥିବା ଲୋକମାନେ ଡଲୁ ପାହାଡ଼ ଉପରକୁ ପଥର, କାଠ, ଲୁହା, ଇଟା ବୋହିଲେ। ସେତେବେଳକୁ ସେମାନଙ୍କ କଷ୍ଟ ଦେଖିଲେ ଆଖି ବୁଜିହୋଇଯିବ। ମୁଁ ଭାବେ, ଯାହାହେଉ ରାଜକର୍ମଚାରୀ ହୋଇ ମୁଁ ଏସବୁ କଷ୍ଟ ପାଇବାରୁ ବଂଚିତ ହୋଇଯାଇଛି। ଆଉ ଅତ୍ୟାଚାରର କଥା ଶୁଣିବେ? ଶୁଣଂତୁ, ଯିଏ ବୋହିକରି ନେଇନପାରିଲା – ପଛରୁ ତା' ପିଠିରେ ଚାବୁକ୍ ବସୁଥିଲା। ଘର ତିଆରି ଚାଲିଥିବା ସମୟରେ କେତେକ ଲୋକ ଚଟାଣକୁ ଜନାରେ ଘଷୁଥାଂତି। ସେମାନଙ୍କୁ କିଂତୁ ମଝିରେ ବିଶ୍ରାମ ମିଳୁନଥିଲା। ପୁଣି ପଚାୟତ ସାହେବ ଯେତେବେଳେ କାମ ତଦାରଖ କରିବାକୁ ଆସୁଥିଲେ, ସେତେବେଳେ ଚଟାଣକୁ ଆହୁରି ଜୋର୍‌ରେ ଘଷିବାକୁ ସେମାନଙ୍କୁ କୁହାଯାଏ। ତାଂକ ଆଦେଶକୁ ଅମାନ୍ୟ କରିବ କିଏ? ଅମାନିଆ ହେଲେ ସବୁଦିନପାଇଁ ହାତ ଦୁଇଟି ଚାଲିଯିବ ଯେ? ସେମାନେ ଖୁବ୍ ଜୋର୍‌ରେ ଚଟାଣକୁ ଘଷଂତି ଏବଂ କେତେକଂକ ହାତ ଛିଂଡିଯାଇ

ରକ୍ତ ବାହାରିବାର ମୁଁ ଦେଖିଛି। କେତେକ ଲୋକ ଯେଉଁମାନେ କି ବେଠିରେ ଖଟୁଥିଲେ, ସେମାନେ ପଞ୍ଚାୟତଂକୁ ଅଭିଶାପ ଦେଉଥିବାର ମଧ୍ୟ ଶୁଣିଛି। ସେମାନେ ଦିନରେ ପଥର ବୋହୁଥାଂତି, କିଂତୁ ରାତିରେ ଏକାଠି ହେଲାପରେ କହୁଥାଂତି– ଏ ଘର ବେଶୀ ଦିନ ଭୋଗହୋଇପାରିବନି।

**ରାଜାଂକ ବୀଭତ୍ସ କର୍ମ –**

ରାଜାଂକୁ ଲୋକମାନଂକର ବହୁତ ଭୟ ଥାଏ। ସମ୍ମୁଖରେ ଯମକୁ ଦେଖିଲେ ମଧ୍ୟ ଏମିତି କେହି ଡରିବେନି। ରାଜା ଆସୁଛଂତି ବୋଲି ଜାଣିବାକୁ ପାଇଲା ପରେ ସମସ୍ତେ ଘର ଭିତରେ ଲୁଚଂତି। ଗାଁ ଦାଂଡଟି ପୂରା ଜନଶୂନ୍ୟ। କିଂତୁ ସେତେବେଳେ ଆମ ରାଜାମାନଂକର ଲୋକଂକ ପ୍ରତି ଅତ୍ୟାଚାର ଅଧିକ ଭାବରେ ହେଉଥିଲା। ଗାଁ ଭିତରେ ଯାଉଥିବାବେଳେ ଯଦି ସୁଂଦର ଚେହେରା-ସଂପନ୍ନ ଯୁବକଟିଏ ଉପରେ ରାଜାଂକର ଆଖି ପଡ଼ିଗଲା, ତେବେ ସେ ଯୁବକଟି ମଲା। କାହିଁକିନା ରାଜା ଭାବଂତି ତାଂକଠାରୁ ଆଉ ଅଧିକ ସୁଂଦର ପୁରୁଷ ତାଂକ ରାଜ୍ୟରେ କିଏ ଯେପରି ନରହଂତୁ। ତେଣୁ ସେ ଡଉଲ-ଡାଉଲ ଯୁବକଟିକୁ ରାଜଦରବାରକୁ ଧରିନେବାପାଇଁ ଆଦେଶ ଦିଅଂତି ଏବଂ ରାଜଦରବାରରେ ଉକ୍ତ ଯୁବକଟିର ନିଶ ଉପୁଡ଼ାଯାଏ, ଦେହରେ ତତଲା ଲୁହାରେ ଚିହାଁଦିଆଯାଏ; ଏହିପରି ଅନେକ କିଛି। ଆଉ ଯଦି ସୁଶ୍ରୀ, ସୁଂଦରୀ ଯୁବତୀଟିଏ ରାଜାଂକ ହାବୁଡ଼ରେ ପଡ଼ିଗଲା, ତେବେ କଥା ସରିଗଲା। ସାଂଗେ ସାଂଗେ ଯୁବତୀଟିକୁ ରାଜପ୍ରାସାଦକୁ ନିଆଯାଏ ଏବଂ ସ୍ୱୟଂ ମହାରାଜା ତାକୁ ଉପଭୋଗ କରଂତି। ତେଣୁ ଏଥିପାଇଁ ସେତେବେଳେ ରାଜା ଆସୁଥିବାର ଜାଣିଲେ ବୁଢ଼ା, ବୁଢ଼ୀ, ଟୋକା, ଟୋକୀ ସମସ୍ତେ ଘର ଭିତରେ ଯାଇ ଲୁଚଂତି। ମୁଁ ଜାଣିବାରେ, ସେତେବେଳେ 'ଯତନନଗର' କାମ ଚାଲିଥାଏ। ଆମ ଗାଁରେ ଥିବା ସ୍କୁଲରେ ଡଉଲଡାଉଲ ଝିଅଟିଏ ପଢୁଥିଲା। ତା' ପ୍ରତି ପଞ୍ଚାୟତଂକର ନଜରପଡ଼ିଗଲା। ତାକୁ ସଂଗେ ସଂଗେ ରାଜଉଆସକୁ ନିଆଗଲା; ସେଠାରୁ ଆଉ ସିଏ ଘରକୁ ଫେରିଲାନି। ତିନି-ଚାରିବର୍ଷ ପରେ ସେ ଝିଅଟିକୁ ପଞ୍ଚାୟତ ସାହେବ ଅନ୍ୟ କାହା ସହିତ ବାହାକରାଇଦେଇଥିବାର ଜାଣିବାକୁ ପାଇଲୁ।

**ପଞ୍ଚାୟତଂକ ନିର୍ବାସନ –**

ଅଜସ୍ର ଲୋକଂକ ଝାଳରେ ନିର୍ମିତ 'ଯତନନଗର'କୁ ଦେଖିବାକୁ ପାହାଡ଼ ଉପରକୁ ଯାଇଥିଲି। ସତେ ଯେପରି ଏକ ଭୂତକୋଠି। ଅତୀତରେ ସୁଂଦର ଭାବେ ନିର୍ମିତ ହୋଇଥିବା ଯତନନଗରଟି ଆଜି ଜରାଜୀର୍ଣ୍ଣ। ଅଧିକାଂଶ ଜାଗାରେ ଛାତ ଭୁଷୁଡ଼ିଯାଇଛି। କେତେକ ଜାଗାରେ ମୂଳରୁ ଛାତ ପଡ଼ି ନଥିଲା। ବର୍ତ୍ତମାନ ଅନେକ କୋଠରିରେ ଛୋଟ ଛୋଟ ଗଛସବୁ ମୁଂଡ ଟେକିଲେଣି। ତେବେ ଗୋଟିଏ ସ୍ଥାନରେ ମୋର ଆଖି ଲାଖିରହିଲା। ସେଇଟା ହେଉଛି ଗୋଟିଏ

କାଂଥରୁ କିଛି ଅଂଶ ଖୋଲାହୋଇଥିବା ସ୍ଥାନଟି । ଏ ସଂପର୍କରେ ମୁଁ ରଘୁନାଥ ଦାସଂକୁ ପଚାରିଲି । ସମଗ୍ର ଢେଂକାନାଳରେ ଯେଉଁ କଥା ପ୍ରଚାରିତ, ତାଂକରି ମୁହଁରୁ ମଧ୍ୟ ମୁଁ ସେଇକଥା ଶୁଣିବାକୁ ପାଇଲି । ଶ୍ରୀ ଦାସ କହିଲେ, "ରାଜା ନଥିବାବେଳେ ପଟ୍ଟାୟତ ରାଜବାଟୀରୁ ବହୁ ଧନରତ୍ନ ଆଣି ଏହି କାଂଥ ଭିତରେ ରଖିଥିଲେ । ପଟ୍ଟାୟତ ଯେତେବେଳେ ଢେଂକାନାଳ ଛାଡ଼ି ଚାଲିଗଲେ, ସେତେବେଳେ ସେଇ କାଂଥ ଖୋଲି ଧନରତ୍ନଗୁଡ଼ିକ ସାଥିରେ ନେଇଯାଇଥିଲେ ।

ଯତନନଗର ସଂପର୍କରେ ଢେଂକାନାଳ ଏବଂ ତାହାର ନିକଟବର୍ତ୍ତୀ ଗ୍ରାମମାନଂକରେ ଯେଉଁ କେତେଜଣଂକ ସହ ସାକ୍ଷାତ ହୋଇଥିଲା, ସମସ୍ତେ ମତ ପ୍ରକାଶ କରିଥିଲେ ଯେ, ପଟ୍ଟାୟତ ସିନା ଏତେ ବଡ଼ ପ୍ରାସାଦ ନିର୍ମାଣ କଲେ; ହେଲେ ଗୋଟିଏ ଦିନ ମଧ୍ୟ ସେଇ ପ୍ରାସାଦରେ ସେ ରହିପାରିଲେନି । ଯତନନଗର ସଂପୂର୍ଣ୍ଣ ହେବା ନିମଂତେ ଆହୁରି କିଛି ଦିନ ବାକି ଥାଏ, କୁଆଡ଼େ ରାଜାଂକ ନିର୍ଦ୍ଦେଶ ହେଲା ଯେ, ଛତ୍ରିଶ ଘଂଟା ମଧ୍ୟରେ ପଟ୍ଟାୟତ ଢେଂକାନାଳ ଛାଡ଼ି ଯିବାକୁ । ଦାବାନଳପରି ହୁତୁହୁତୁ ହୋଇ ଜଳୁଥିବା ପ୍ରଜା-ଆଂଦୋଳନରୁ ରକ୍ଷାପାଇବାପାଇଁ ସେ ନିଜ ଭାଇ ପଟ୍ଟାୟତ ସାହେବଂକୁ ନିର୍ବାସନ ଆଦେଶ ଦେଇଥିବା ଅନୁମତି ହୁଏ । ଲୋକମାନଂକଠୁ ଶୁଣିଲି, ପଟ୍ଟାୟତ ସାହେବ ଏବେ ମଧ୍ୟ ଜୀବିତ ଅଛଂତି । ସେ କଟକର ତୁଳସୀପୁରରେ ରହୁଛଂତି । ମୁଁ ତାଂକୁ ଭେଟିବାପାଇଁ ଯାଇଥିଲି । ଦେଖିଲି, କଟକ ତୁଳସୀପୁରରେ ଏକ ଟିଣଛପର ଦୁଇବଖରିଆ ଘରେ ପଟ୍ଟାୟତ ସାହେବ ରହୁଛଂତି । କାହିଁ ଯତନନଗରର ଅନେକ୍ଶତ ବଖରା ଥିବା ସୁରମ୍ୟ ଅଟ୍ଟାଳିକା; ଆଉ କାହିଁ ତାଂକର ଏବର ତୁଳସୀପୁରସ୍ଥ ଟିଣ ଛପର ବାସଗୃହ ! ମୁଁ ତାଂକଠୁ କିଛି ତଥ୍ୟ ପାଇବା ଆଶାରେ ସାକ୍ଷାତ୍ ଲୋଡ଼ିଥିଲି; ମାତ୍ର ସେ ଘର ଭିତରେ ଥାଇ ମୋତେ ସାକ୍ଷାତ ଦେଇ ପାରିବେ ନାହିଁ ବୋଲି ଜଣେ ଲୋକ ହାତରେ ମନାକରିଦେଇଥିଲେ ।*

('ଦୈନିକ ସଂବାଦ' ୧୧ ମଇ, ୧୯୮୬ ତାରିଖ)

## ଛାମୁଂକ କଥାହିଁ ଥିଲା ଆଇନ୍ –

ଢେଂକାନାଳରେ ଛାମୁ ଯାହା କହୁଥିଲେ, ତାହାହିଁ ଥିଲା ଆଇନ୍ । ଏ ବିଷୟରେ ଏକ କୌତୂହଳଜନକ କଥା ଢେଂକାନାଳ ଲୋକଂକଠୁ ଶୁଣିଥିଲି । ଦିନେ ଶୀତଦିନ ସକାଳେ ଛାମୁ ମଣିମା ମୋଟରରେ କୁଆଡ଼େ ଯାଉଥିଲେ । ଦେଖିଲେ ଦୁଇ-ତିନିଜଣ ଲୋକ ଏକ ଘର ପିଂଡାରେ ବସି କଥାବାର୍ତ୍ତା ହେଉଛଂତି ଏବଂ ଖରାପୋଉଁଛଂତି । ସେ ଗାଡ଼ି ରଖି ସେମାନଂକ ପାଖକୁ ଆସି ପଚାରିଲେ,

* ଏ ଲେଖାଦୁଇଟି 'ଦୈନିକ ସଂବାଦ'ରେ ୧୯୮୬ ମସିହାରୁ ଅର୍ଥାତ୍ ଆଜିକୁ ପ୍ରାୟ ନଅ-ଦଶବର୍ଷ ହେଲା ପ୍ରକାଶିତ ହେଲାଣି । କେହି ଏପର୍ଯ୍ୟଂତ ଏହାର ପ୍ରତିବାଦ କରିନାହାଂତି ।

''ତମେ ଏଠି କ'ଣ କରୁଛ? ମିଟିଂ କରୁଛ?'' ସେମାନେ ଡରିଯାଇ କହିଲେ, ''ନାହିଁ ମଣିମା ! ଆମେ ସୁଖଦୁଃଖ ହେଉଛୁ; ମିଟିଂ କରୁନଥିଲୁ''। ଛାମୁ ରାଗିଯାଇ କହିଲେ, 'ମିଟିଂ କରୁନଥିଲ, ଖାଲି ସୁଖଦୁଃଖ ହେଉଥିଲ? ହଉ ତେବେ, ସୁଖପାଇଁ କୋଡ଼ିଏ ଟଂକା ଓ ଦୁଃଖପାଇଁ କୋଡ଼ିଏ ଟଂକା ଜୋରିମାନା କାଲି ଯାଇ ଜମାଦେଇ ଆସିବ।'

**ଅକଥ୍ୟ ଅତ୍ୟାଚାର –**

ଛାମୁ ମଣିମା କିଂବା ତାଂକ ଭାଇ ପଟ୍ଟାୟତ ସାହେବ ପାରିଧିକୁ ବିଜେକରିବେ, ସଂଗରେ ଯିବେ ଦୁଇ-ତିନି ଜଣ ବାଣୁଆ। ଭେଂଡା ଭେଂଡା ଲୋକମାନଂକୁ ତଲବକରି ସଂଗରେ ନେବେ। ସେମାନଂକ କାମ ହେଲା ଘୋର ଜଂଗଲ ଭିତରେ ପଶୁମାନଂକୁ ରାଜାଂକ ଆଡ଼କୁ ତଡ଼ିଆଣିବା। ରାଜା ମଂଚା ଉପରେ ବସି ଗୁଳି ଫୟେର୍ କରିବେ। ଯଦି କୌଣସି ଲୋକ ଦେହରେ ଗୁଳି ବାଜି କିଂବା ଜଂତୁମାନଂକଦ୍ୱାରା ଆକ୍ରାଂତ ହୋଇ ମରିଯାଉଥିଲା, ତେବେ ତା ଶବକୁ ଘୋର ଜଂଗଲ ଭିତରେ ପୋପାଡ଼ିଦେଇ ଆସୁଥିଲେ। ସେହିପରି ହାତୀଖେଦା। ବଣୁଆ ହାତୀକି ତଡ଼ିଆଣିଲାବେଳେ କେତେ ଲୋକ ମୃତାହତ ହେଉଥିଲେ। ଏସବୁ ବିଷୟ ଗଡ଼ଜାତ ଲୋକମାନଂକର ନିତିଦିନିଆ କଥା।

ଏହି ଅଂଧାରୀମୂଲକରେ ବିଦ୍ରୋହ ଜାଳିବାପାଇଁ ଲୋକମାନେ ଭିତରେ ଭିତରେ ପ୍ରସ୍ତୁତ ହେଉଥିଲେ।

**ଗଡ଼ଜାତମିଶ୍ରଣ –**

ଓଡ଼ିଶାର ୨୬ଟି ଗଡ଼ଜାତ, ଯାହା ସାମଂତ ରାଜାମାନଂକଦ୍ୱାରା ଶାସିତ ହେଉଥିଲା, ଯୁଗଯୁଗଧରି ନାନା ଅତ୍ୟାଚାର, ଶୋଷଣ ଏବଂ ଦମନ-ଲୀଳାରେ ସେଠାର ଲୋକମାନେ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ। ୧୯୩୬ ମସିହାରେ ଓଡ଼ିଶା ସ୍ୱତଂତ୍ର ପ୍ରଦେଶ ହେଲା ପରେ ଏହି ଦେଶୀୟ ରାଜ୍ୟଗୁଡ଼ିକର ପ୍ରଜାମାନଂକ ମଧ୍ୟରେ ଏକ ନୂତନ ଜାଗରଣ ଦେଖାଦେଇଥିଲା। ସେମାନେ ମୋଗଲବଂଦୀ ଅଂଚଳ ବା ବ୍ରିଟିଶ୍ ଓଡ଼ିଶାରେ ଯେପରି ଉନ୍ନତ ଶାସନ ପ୍ରଣାଳୀରେ ଭାବ ପ୍ରକାଶ ଓ ସଭାସମିତି କରିବାର ସ୍ୱାଧୀନତା ଏବଂ ଶିକ୍ଷାଗତ ସୁବିଧାମାନ ମିଳୁଥିଲା, ତାହା ନିଜ ନିଜ ଦେଶୀୟ ମୂଲକମାନଂକରେ ଚାଲୁ ବୋଲି କାୟମନୋବାକ୍ୟରେ ଚାହୁଁଥିଲେ। ଏହି ଗଡ଼ଜାତଗୁଡ଼ିକ ଐତିହାସିକ, ଭୌଗୋଳିକ ଏବଂ ସାଂସ୍କୃତିକ ତଥା ସାମାଜିକ ଯୋଗସୂତ୍ରରେ ଓଡ଼ିଶା ସହିତ ଅଛେଦ୍ୟ ବଂଧନରେ ଜଡ଼ିତଥିଲେ। ଏଗୁଡ଼ିକୁ କୃତ୍ରିମ ଉପାୟରେ ବ୍ରିଟିଶ୍ ସରକାର ସ୍ୱତଂତ୍ର କରି ରଖିଥିଲେ। ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀ ୧୯୩୧ ମସିହାରେ ହୋଇଥିଲା। ଏହା ପୂର୍ବରୁ କୁହାଯାଇଛି, ମାତ୍ର ଏ ସଂଗଠନଟି ଏକପ୍ରକାର ନିଷ୍କ୍ରିୟ ହୋଇ ପଡ଼ିରହିଥିଲା। ୧୯୩୭ ମସିହାରେ ଏହି ସଂଗଠନକୁ ପୁନର୍ଜୀବିତ କରିବାପାଇଁ ଚେଷ୍ଟା କରାଯାଇଥିଲା।

ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀର ଦ୍ୱିତୀୟ ଅଧିବେଶନ କଟକଠାରେ ୧୯୩୭ ମସିହା ଜୁନ୍ ୨୪ ତାରିଖରେ ଅନୁଷ୍ଠିତ ହୋଇଥିଲା । ଏହାର ସଭାପତି ଥିଲେ ଡଃ ପଟ୍ଟାଭି ସୀତାରାମାୟା, ଯେ କି ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜାସମ୍ମିଳନୀର ସଭାପତି ଥିଲେ । ଏହି ଅଧିବେଶନରେ ଗଡ଼ଜାତ ପ୍ରଜାଂକର ଧନଜୀବନ ଓ ସମ୍ମାନର ସୁରକ୍ଷାପାଇଁ ଏବଂ ସେଥିସକାଶେ ଦାୟିତ୍ୱଶୀଳ ସରକାର ପ୍ରତିଷ୍ଠା କରିବାପାଇଁ ଦାବି କରି ପ୍ରସ୍ତାବମାନ ଗୃହୀତ ହୋଇଥିଲା । ଏହି ସମ୍ମିଳନୀରେ ଏକ ପ୍ରସ୍ତାବରେ ସାମଂତ ରାଜାମାନେ ଲୋକମାନଂକୁ ଜମିଜମାରେ ମୌଳିକ ଅଧିକାର ଏବଂ ନାଗରିକ ସ୍ୱାଧୀନତା ଦେବାକୁ ଦାବିକରାଯାଇଥିଲା ଏବଂ ଯେଉଁସବୁ ବେଆଇନ୍ କର ଓ ବେଠି, ଭେଟି, ମାଗଣ, ରସଦ ଏବଂ ବେଗାରି ଓ ସଲାମୀ ପ୍ରଭୃତି ପ୍ରଥା ଚାଲିଥିଲା, ତାହା ବଂଦକରିବାପାଇଁ ଦୃଢ଼ ଦାବି କରାଯାଇଥିଲା ।

ଏହି ସମ୍ମିଳନୀରେ ଓଡ଼ିଶା ଷ୍ଟେଟ୍ ଏନ୍‌କ୍ୱାରୀ କମିଟି ଗଠନ କରାଯାଇଥିଲା । ଏହାର ସଂପାଦକ ନିର୍ବାଚିତ ହୋଇଥିଲେ ସାରଂଗଧର ଦାସ ଏବଂ ସଭ୍ୟମାନେ ଥିଲେ – ହରେକୃଷ୍ଣ ମହତାବ (ଚେୟାରମ୍ୟାନ୍), ଲାଲ୍‌ମୋହନ ପଟ୍ଟନାୟକ ଏବଂ ବଳବଂତ ରାଏ ମେହେଟ୍ଟା । ସମସ୍ତ ରାଜାଂକର ଅସହଯୋଗ ସତ୍ତ୍ୱେ କମିଟି ୧୯୩୯ ମସିହାରେ ଏହାର ରିପୋର୍ଟ ଦାଖଲ କରିଥିଲେ ।

ଇତିମଧ୍ୟରେ ସବୁ ଦେଶୀୟ ରାଜ୍ୟରେ ପ୍ରଜାମଂଡଳମାନ ଗଢ଼ିଉଠିଥିଲା । ଏମାନଂକର ଲକ୍ଷ୍ୟ ଥିଲା, ସବୁ ଦେଶୀୟ ରାଜ୍ୟରେ ଦାୟିତ୍ୱଶୀଳ ଶାସନ ପ୍ରଚଳନ କରିବା । ପ୍ରଜାମଂଡଳଗୁଡ଼ିକ ରାଜାଂକ ନିକଟରେ ବହୁପ୍ରକାର ଦାବି ଉପସ୍ଥାପିତ କରିଥିଲେ । ତନ୍ମଧ୍ୟରେ ବେ-ଆଇନ୍ ଆର୍ଥିକ ଶୋଷଣ ଏବଂ ଦମନନୀତି ଉଠାଇଦେବା ଅଂତର୍ଗତ । ଏହାଛଡ଼ା ନାଗରିକ ସ୍ୱାଧୀନତା ଏବଂ ମୋକଦ୍ଦମା ଇତ୍ୟାଦି ଲଢ଼ିବାପାଇଁ ଓକିଲ ନିଯୁକ୍ତି କରିବାର ଅଧିକାର ଅନ୍ୟତମ ଥିଲା । ଏହି ପ୍ରଜାମଂଡଳ ଆଂଦୋଳନ ଚାରୋଟି ଗଡ଼ଜାତରେ, ଯଥା– ନୀଳଗିରି, ଢେଂକାନାଳ, ତାଳଚେର ଓ ରଣପୁରରେ ପ୍ରବଳ ଆକାର ଧାରଣକରିଥିଲା ।

୧୯୩୮ ମସିହା ଜୁନ୍ ୧୯ ତାରିଖରେ ସାରା ଭାରତ ଦେଶୀୟ ରାଜ୍ୟ ପ୍ରଜାସମ୍ମିଳନୀର ସଂପାଦକ ବଳବଂତ ରାଏ ମେହେଟ୍ଟା ଦେଶୀୟ ରାଜ୍ୟ ଲୋକମାନଂକର ଅବସ୍ଥା ଅନୁସଂଧାନ ପାଇଁ ଓଡ଼ିଶା ଆସିଥିଲେ । କଟକଠାରେ ୫.୭.୧୯୩୮ ମସିହାରେ ଏକ ଜନସଭାରେ ଭାଷଣ ଦେଇ ସେ ଗଡ଼ଜାତ ପ୍ରଜାଂକର ବହୁବିଧ ଦୁର୍ଦ୍ଦଶା ମୋଚନ କରିବା ନିତାଂତ ଦରକାର ବୋଲି ବିଶେଷ ଜୋର୍ ଦେଇଥିଲେ ।

ଏହାପରେ ନୀଳଗିରି ପ୍ରଜାମଂଡଳ ରାଜାଂକ ବିରୁଦ୍ଧରେ ବେଠି, ଭେଟି, ମାଗଣ, ରସଦ, ସଲାମୀ ଇତ୍ୟାଦିର ଅଭିଯୋଗ ଆଣିଥିଲେ । ଏ ବିଷୟ ପୂର୍ବ ପ୍ରସଂଗରେ କୁହାଯାଇଛି ।

ଢେଂକାନାଳରେ ୧୧.୯.୧୯୩୮ ତାରିଖରେ ପ୍ରଜାମଂଡଳ ଆଂଦୋଳନ ଉଗ୍ରରୂପ ଧାରଣକରେ। ରାଜାଂକର ଅତ୍ୟାଚାର ଫଳରେ ଲୋକମାନେ ଅତିଷ୍ଠ ହୋଇ ଉଠିଥିଲେ। ସେମାନେ ଅସ୍ତ୍ରଶସ୍ତ୍ର ଧରି ହଜାର ହଜାର ସଂଖ୍ୟାରେ ରାଜବାଟୀ ଘେରାଉକରିଥିଲେ। ଦରବାର ପ୍ରଜାମଂଡଳ ଆଂଦୋଳନ ଦମନକରିବାପାଇଁ କଠୋର ବ୍ୟବସ୍ଥା ଗ୍ରହଣକରିଥିଲା। ବହୁ ସ୍ଥାନରେ ମଧ୍ୟ ଗୁଳି ଫାୟାର୍ ହୋଇଥିଲା; ଫଳରେ ବାଜିରାଉତ ସମେତ ୧୮ ଜଣ କର୍ମୀ ପ୍ରାଣ ହରାଂତି। ଆଂଦୋଳନ ଅତି ତୀବ୍ର ହେବାରୁ ମିଳାମିଶା କରିବାପାଇଁ ସାରଂଗଧର ଦାସ, ହରେକୃଷ୍ଣ ମହତାବ ଓ ମାଳତୀ ଦେବୀ ମଧ୍ୟସ୍ଥତା କରିଥିଲେ। ସେମାନେ ରାଜାଂକ ସହ ଆଲୋଚନା କରିଥିଲେ। ପଲିଟିକାଲ୍ ଏଜେଂଟ ମେଜର୍ ବେଜେଲ୍‌ଗେଟ୍ ମଧ୍ୟ ଏହି ଆଲୋଚନାରେ ଯୋଗଦେଇଥିଲେ। କିଂତୁ ଆଲୋଚନା ବିଫଳ ହୋଇଥିଲା।

ଏଠାରେ ସୂଚନାଯୋଗ୍ୟ ଯେ ୧୧.୯.୧୯୩୮ ତାରିଖରେ ରାଜବାଟୀ ଘେରାଉବେଳେ ବାଜିରାଉତ ମଧ୍ୟ ତାର ଗାଁ ଲୋକଂକ ସହ ସେଥିରେ ଯୋଗ ଦେଇଥିଲା। (ଏ ବିଷୟରେ ଐତିହାସିକ ପ୍ରଫେସର୍ ଡଃ ଜଗନ୍ନାଥ ପଟ୍ଟନାୟକଂକ ଲେଖା ପ୍ରବଂଧ ୧୧.୧୦.୧୯୯୦ 'ପ୍ରଜାତଂତ୍ର'ରେ ଦ୍ରଷ୍ଟବ୍ୟ) ତେଣୁ ବାଜି ରାଉତ ସହିଦ ହେବାର ବହୁ ଆଗରୁ ପ୍ରଜାମଂଡଳର ଜଣେ ସଚେତନ କର୍ମୀ ଥିଲା ବୋଲି ଜଣାପଡୁଛି। ଏହିସବୁ କାରଣରୁ ଯେଉଁମାନେ ବାଜି ରାଉତର ସହିଦତ୍ୱ ବରଣକୁ ଏକ ଆକସ୍ମିକ ଘଟଣା ବୋଲି ଉଡ଼ାଇଦେବାକୁ ଚାହାଂତି, ସେମାନଂକର ଦୁରଭିସଂଧି ସ୍ପଷ୍ଟ ଧରାପଡୁଛି।

ଏହି ସମୟରେ ତାଳଚେରରେ ମଧ୍ୟ ପ୍ରଜାମଂଡଳ ଆଂଦୋଳନ ତେଜିଉଠିଥିଲା। ଶ୍ରୀ ପବିତ୍ରମୋହନ ପ୍ରଧାନଂକ ସଭାପତିତ୍ୱରେ ଅନୁଗୁଳର କୋଶଳ ଗ୍ରାମରେ ପ୍ରାୟ ୬ ହଜାର ତାଳଚେରବାସୀଂକ ଏକ ସଭାରେ ତାଳଚେର ପ୍ରଜାମଂଡଳ ଗଠିତ ହୋଇଥିଲା। ଏହାର ସଭାପତିରୂପେ ପବିତ୍ରମୋହନ ପ୍ରଧାନ ନିର୍ବାଚିତ ହୋଇଥିଲେ। ଏହାପରେ ୧୬.୯.୧୯୩୮ ତାରିଖରେ ତାଳଚେର ପ୍ରଜାମଂଡଳ ଦ୍ୱାରା ଆହୂତ କୋଶଳ ଗ୍ରାମରେ ପ୍ରାୟ ୪୦ ହଜାର ଲୋକଂକର ଏକ ବିରାଟ ଜନସଭା ଅନୁଷ୍ଠିତ ହୋଇଥିଲା। ଏହାର ସଭାପତିତ୍ୱ କରିଥିଲେ ପବିତ୍ରମୋହନ ପ୍ରଧାନ। ଲୋକମାନେ ପ୍ରଜାମଂଡଳର ଲକ୍ଷ୍ୟ ଓ କାର୍ଯକ୍ରମକୁ ହୃଦୟର ସହିତ ଗ୍ରହଣ କରିଥିଲେ। ତାଳଚେର ପ୍ରଜାମଂଡଳର ଉଦ୍ଦେଶ୍ୟ ଥିଲା ତାଳଚେର ରଜାଂକୁ ବହିଷ୍କାରକରି ଜାତୀୟ କଂଗ୍ରେସ ସହିତ ମିଶି ବ୍ରିଟିଶ୍ ଅଧୀନରୁ ଭାରତକୁ ସ୍ୱାଧୀନ କରିବାଲାଗି ସଂଗ୍ରାମ କରିବା। ତାଳଚେର ଦରବାର ବହୁ ଲୋକଂକୁ ଗିରଫ କରି ଜେଲ୍‌ଦଂଡ ଦେଇଥିଲା। ରାଜାଂକର ଅସହ୍ୟ ଦମନନୀତି ଫଳରେ ହଜାର ହଜାର ଲୋକ ତାଳଚେରରୁ ପଳାଇଆସି ଅନୁଗୁଳ ନିକଟରେ ଠକ୍କର ବାପାଂକଦ୍ୱାରା ସ୍ଥାପିତ ଶିବିରରେ ଆଶ୍ରୟ ଗ୍ରହଣ କରିଥିଲେ।

୨୯.୧୦.୧୯୩୮ ତାରିଖରେ ସାରା ଓଡ଼ିଶାରେ 'ଗଡ଼ଜାତ ଦିବସ' ପାଳିତ ହୋଇଥିଲା । ଚାରିଆଡ଼େ ସଭାସମିତି ହୋଇ ରାଜାରାଜୁଡ଼ାମାନଂକର ବର୍ବରୋଚିତ ଦମନଲୀଳା ଏବଂ ସେମାନଂକୁ ପୋଷକତା କରୁଥିବା ବ୍ରିଟିଶ୍ ସରକାରର କାର୍ଯାବଳୀର ଘୋର ନିଂଦା କରାଯାଇଥିଲା । ଏହିସବୁ ସଭାସମିତିରେ ବ୍ରିଟିଶ୍ ସରକାର ପ୍ରଜା-ଦୁର୍ଗତିର ମୂଳ କାରଣ ବୋଲି ଘୋଷିହୋଇଥିଲା । ବସ୍ତୁତଃ ପ୍ରଜାମଂଡଳ ଆଂଦୋଳନ ଏକ ବ୍ରିଟି-ବିରୋଧୀ ଆଂଦୋଳନରେ ପରିଣତ ହୋଇସାରିଥିଲା । ଏହାକୁ ମହାତ୍ମା ଗାଂଧୀ ଏବଂ ଓଡ଼ିଶାର କଂଗ୍ରେସ ନେତାମାନେ ଯଥା– ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ପ୍ରମୁଖ ପୂର୍ଣପ୍ରାଣରେ ସମର୍ଥନ କରୁଥିଲେ । (ଡଃ ଏ. ସି. ପ୍ରଧାନଂକ ପ୍ରଣୀତ 'A Study of History of Orissa' ପୁସ୍ତକ ଦ୍ରଷ୍ଟବ୍ୟ) ।

ନଭେଂବର ୧୯୩୮ ବେଳକୁ ଢେଂକାନାଳରେ ପ୍ରଜା-ଆଂଦୋଳନ ତୀବ୍ରତର ହୋଇଥିଲା । ଉତ୍ତେଜିତ ଜନସାଧାରଣ ଧନୁଶର, କୁରାଢ଼ି, କଟୁରି ଓ ଲାଠି ଆଦି ଧରି ଷ୍ଟେଟ୍ ପୁଲିସ ଉପରେ ଆକ୍ରମଣ କରିଥିଲେ । ନଭେଂବର ୧୯୩୮ ମସିହା ୨ ଏବଂ ୧୧ ତାରିଖରେ ପୁଲିସ ଜନତା ଉପରେ ଦୁଇଥର ଗୁଳି-ଚାଳନା କରିଥିଲା; ଫଳରେ ବହୁ ପୁଲିସ ଓ ଆଂଦୋଳନକାରୀ ଆହତ ହୋଇଥିଲେ ।

୧୯୩୮ ମସିହା ଡିସେଂବର ୧ ତାରିଖରେ ଢେଂକାନାଳ ରାଜାଂକ ବିରୁଦ୍ଧରେ କଟକଠାରେ ଆଂଦୋଳନ ଆରଂଭ କରାଯାଇଥିଲା । ଏହାର ନେତୃତ୍ୱ ନେଇଥିଲେ ନବକୃଷ୍ଣ ଚୌଧୁରୀ । ସେ ଢେଂକାନାଳ ଯାଇ ଆଂଦୋଳନ କରିବାପାଇଁ ବିଧାନସଭା ସଭ୍ୟପଦରୁ ଇସ୍ତଫାଦେଇଥିଲେ । ନବକୃଷ୍ଣ ଚୌଧୁରୀଂକ ନେତୃତ୍ୱରେ ଯାଇଥିବା ଆଂଦୋଳନକାରୀ ବା ସତ୍ୟାଗ୍ରହୀମାନଂକୁ ଢେଂକାନାଳ ପୋଲିସ୍ ୩.୧୧.୧୯୩୮ ତାରିଖରେ ଗିରଫ କରିଥିଲା । କଂଗ୍ରେସ ଭିତରେ ଥିବା ସୋସାଲିଷ୍ଟମାନେ (କଂଗ୍ରେସ ସୋସାଲିଷ୍ଟ ଦଳର କର୍ମୀମାନେ) ଢେଂକାନାଳ ଆଂଦୋଳନକୁ ସକ୍ରିୟ ଭାବରେ ସମର୍ଥନ କରୁଥିଲେ । ଏହାପରେ ଗୌରାଂଗଚରଣ ଦାସ ଦଳେ ସତ୍ୟାଗ୍ରହୀଂକ ସହିତ ଢେଂକାନାଳ ଯାତ୍ରା କରିଥିଲେ । ତାଂକୁ ଆମେ କଟକଠାରେ ବିଦାୟ ସଂବର୍ଧନା ଜଣାଇଥିଲୁ । ଏହି ସଭାରେ ମୁଁ, ଭଗବତୀ ପାଣିଗ୍ରାହୀ, ବିଶ୍ୱନାଥ ପଣାୟତ୍ ପ୍ରମୁଖ ଉପସ୍ଥିତ ଥିଲୁ ।

ଲୋକେ ଯେତେ ଉତ୍ତେଜିତ ହେଉଥିଲେ, ରାଜା ସେତିକି ପ୍ରତିଶୋଧ-ପରାୟଣ ଓ କଠୋର ହେଉଥିଲେ । ଆଂଦୋଳନକାରୀମାନଂକର ଫସଲ ରାଜା ବର୍ଦ୍ଧିତ ଖଜଣା ନଦେବା ଅଭିଯୋଗରେ ଦଖଲ କରିନେଉଥିଲେ । ରାଜ୍ୟଛାଡ଼ି ଶରଣାର୍ଥୀ କ୍ୟାମ୍ପରେ ରହୁଥିବା କର୍ମୀମାନଂକ ବିରୁଦ୍ଧରେ Extradition Warrants ବାହାରକରାଯାଉଥିଲା ।

ଡିସେଂବର ୧୯୩୮ ମସିହାରେ ନୟାଗଡ଼ରେ କୃଷକମାନେ ରାଜାଂକ

ବିରୁଦ୍ଧରେ ଆଂଦୋଳନ ଆରଂଭ କରିଥିଲେ । ରାଜା ଏକ ଅର୍ଡିନାନ୍ସ କରି ସବୁ ସଭାସମିତି ଉପରେ ନିଷେଧାଜ୍ଞା ଜାରିକରିଥିଲେ । ଆଂଦୋଳନକାରୀମାନେ ଏହି ଅର୍ଡିନାନ୍ସକୁ ଭଂଗକରି ସତ୍ୟାଗ୍ରହ ଆରଂଭ କରିଥିଲେ ।

୧୯୩୯ ମସିହା ପ୍ରାରଂଭରେ ରଣପୁରଠାରେ ପ୍ରଜାମଂଡଳ ଆଂଦୋଳନ ହିଂସାତ୍ମକ ଆକାର ଧାରଣକରିଥିଲା । ପଲିଟିକାଲ୍ ଏଜେଂଟ୍ ମେଜର୍ ବେଜେଲ୍-ଗେଟ୍ ଜଣେ ବିକ୍ଷୋଭକାରୀଂକୁ ଗୁଳିକରି ମାରିଦେବାରୁ ଲୋକମାନେ ତାଂକୁ ଘଟଣାସ୍ଥଳରେ ଟେକା ପଥର ଫିଂଗି ହତ୍ୟାକରିଥିଲେ ।

ଏହି ସମୟରେ ମହତାବ ରଣପୁର ଯାଇଥିଲେ ଏବଂ ଲୋକମାନଂକୁ ରାଜ୍ୟ ଛାଡ଼ି ମୋଗଲବଂଦୀ ଅଂଚଳକୁ କିଛିଦିନ ସକାଶେ ଚାଲିଯିବାକୁ ଉପଦେଶ ଦେଇଥିଲେ । ଏହାପରେ ବହୁସଂଖ୍ୟକ ଗୋରା ସୈନ୍ୟ ରଣପୁର ପଠାଯାଇଥିଲା । କିଂତୁ ସେମାନେ ଯାଇ ଦେଖିଲେ ରାଜ୍ୟରେ କେହି ଲୋକ ନାହାଂତି; ଗାଁ-ଗଂଡା ସବୁ ଶୂନ୍ୟ । ଏହା ପରେ ରେସିଡେଂଟ୍ ଓ ମହାତାବ୍‌ଙ୍କୀ ଏକ ଆଲୋଚ୍ନା କରି ପ୍ରକୃତ ଦୋଷୀକୁ ଦଂଡିତ କରାଯିବ ଏବଂ ସାଧାରଣ ଲୋକଂକ ବିରୋଧରେ ଆକ୍ରୋଶମୂଳକ କାର୍ଯାନୁଷ୍ଠାନ କରାଯିବନାହିଁ ବୋଲି ସ୍ଥିରହୋଇଥିଲେ । ଏହି ଘୋଷଣା ପରେ ପ୍ରଜାମାନେ ନିଜ ନିଜ ଗାଁ-ଗଂଡାକୁ ଫେରିଆସିଥିଲେ ।

ହାଇକୋର୍ଟ ରଣପୁରର ଦୁଇଜଣ ନେତା ରଘୁନାଥ ମହାଂତି ଓ ଦିବାକର ପରିଡ଼ାଂକୁ ମୃତ୍ୟୁଦଂଡାଦେଶ କାଏମ ରଖିଥିଲେ । ସେମାନଂକୁ ଫାଶୀ ଦିଆଯାଇଥିଲା । ଅନ୍ୟ କେତେକଂକୁ ଦ୍ୱୀପାଂତର ଆଦେଶ ଦେଇଥିଲେ । ମାତ୍ର ରାୟରେ ହାଇକୋର୍ଟ ଦର୍ଶାଇଥିଲେ ଯେ ବେଜେଲ୍‌ଗେଟ୍ ନିଜ ମୃତ୍ୟୁପାଇଁ ଆଂଶିକଭାବେ ଦାୟୀ; କାରଣ ସେ ଲୋକମାନଂକୁ ଉତ୍ୟକ୍ତ କଲାଭଳି ବହୁ କାର୍ଯ୍ୟ କରିଥିଲେ । ରଣପୁର ରାଜାଂକୁ ରାଜ୍ୟଚ୍ୟୁତ କରାଯାଇଥିଲା ଏବଂ ରଣପୁରର ଶାସନଭାର ପଲିଟିକାଲ୍ ବିଭାଗ ଗ୍ରହଣ କରିଥିଲା ।

ଏହାପରେ ପଲିଟିକାଲ୍ ଏଜେଂଟଂକ ହସ୍ତକ୍ଷେପ ଫଳରେ ତାଳଚେର ଓ ଢେଂକାନାଳର ରାଜା ପ୍ରଜାମାନଂକୁ କେତେକ ସୁବିଧା ଦେବାକୁ ଘୋଷଣା କରିଥିଲେ । ଏଥିମଧ୍ୟରେ ଦଂଡିତ କର୍ମୀମାନଂକର ଦଂଡ ହ୍ରାସ, ବେଠି, ବେଗାରିର ମାତ୍ରା କମେଇଦେବା ଇତ୍ୟାଦି ଅଂତର୍ଗତ; ମାତ୍ର ଏହା ପ୍ରଜାମାନଂକୁ ସଂତୁଷ୍ଟ କରିପାରିନଥିଲା । କେତେକ ଶରଣାର୍ଥୀ ନିଜ ନିଜ ରାଜ୍ୟକୁ ଫେରିଥିଲେ ସତ; ମାତ୍ର ୧୦ ଜୁଲାଇ ୧୯୩୯ ତାରିଖର ପୋଲିସ ରିପୋର୍ଟ ଅନୁଯାୟୀ ଧାନ ଅମଳ ସମୟ ହେବାରୁ କିଛି କିଛି ଲୋକ ନିଜ ରାଜ୍ୟକୁ ଫେରିଥିଲେ; ରାଜାଂକ ଘୋଷଣାଯୋଗୁଁ ନୁହେଁ । ରାଜନୀତିକ ଏବଂ ମନସ୍ତାତ୍ତ୍ୱିକ ଉଭୟ ଦିଗରୁ ପ୍ରଜାମଂଡଳ ଆଂଦୋଳନ ଉଲ୍ଲେଖଯୋଗ୍ୟ ସାଫଲ୍ୟ ଲାଭକରିଥିଲା ।

ବେସରକାରୀ ଷ୍ଟେଟ୍ ଏନ୍‌କ୍ୱାରୀ କମିଟି, ଯାହାର ଅଧ୍ୟକ୍ଷ ଥିଲେ ହରେକୃଷ୍ଣ

ମହତାବ, ୧୯୩୯ ମସିହା ଜୁଲାଇ ମାସରେ ଏହାର ରିପୋର୍ଟ ପ୍ରଦାନ କରିଥିଲେ। ଏଥିରେ ଓଡ଼ିଶାର ଗଡ଼ଜାତଗୁଡ଼ିକୁ ଓଡ଼ିଶାରେ ମିଶାଇଦେବା ଉଚିତ ବୋଲି ମତ ପ୍ରକାଶପାଇଥିଲା। ମହତାବଙ୍କୀ ଲେଖିଥିଲେ ଯେ ଏହି ଦେଶୀୟ ରାଜ୍ୟଗୁଡ଼ିକ ପ୍ରକୃତରେ ଏକ ଏକ ମାହାଲ ଜମିଦାରିବିଶେଷ ବା ଏଷ୍ଟେଟ୍। ଆଳି, କନିକା, କୁଜଂଗ ପରି ଏମାନେ ମଧ୍ୟ ଏକ ଏକ ଜମିଦାରି। ଏଗୁଡ଼ିକୁ ବ୍ରିଟିଶ୍ ସରକାର ଅଯଥା ଷ୍ଟେଟ୍ ବୋଲି କହି ସ୍ଫୀତ କରିଦେଇଛନ୍ତି।

**'ଭାରତଛାଡ଼' ଆନ୍ଦୋଳନ ଓ ଓଡ଼ିଶା ଗଡ଼ଜାତ –**

୧୯୩୯ ମସିହା ଶେଷାର୍ଧରେ ଦ୍ୱିତୀୟ ମହାଯୁଦ୍ଧ ଲାଗିଯାଏ। ବ୍ରିଟିଶ୍ ସରକାର ଓ ଗଡ଼ଜାତ ରାଜାମାନେ ସବୁ ଜନଆନ୍ଦୋଳନ କଠୋର ହସ୍ତରେ ଦବାଇଦେବାକୁ ଚେଷ୍ଟାକରନ୍ତି। କିଛି ସମୟ ପାଇଁ ପ୍ରଜାମଣ୍ଡଳ ଆନ୍ଦୋଳନ ଧିମେଇଯାଏ; କିନ୍ତୁ ୧୯୪୨ ମସିହାରେ 'ଭାରତଛାଡ଼' ଆନ୍ଦୋଳନ ଆରମ୍ଭ ହେବା ପରେ ଏହା ପୁଣି ସକ୍ରିୟ ହୋଇଉଠେ। ସବୁ ରାଜ୍ୟରେ ପ୍ରଜାମଣ୍ଡଳ ଆନ୍ଦୋଳନ କାର୍ଯ ଆରମ୍ଭ କରନ୍ତି। ମୋଗଲବନ୍ଦୀ ଅଞ୍ଚଳରେ ସଂଗ୍ରାମୀମାନଙ୍କର ଅଭୂତପୂର୍ବ ଆତ୍ମତ୍ୟାଗ ଓ ମୃତ୍ୟୁବରଣ ଗଡ଼ଜାତବାସୀଙ୍କୁ ଉଦ୍‌ବୁଦ୍ଧ କରେ। ବାଲେଶ୍ୱର ଜିଲ୍ଲା ଇରମଠାରେ ୧୯୪୨ ମସିହା ସେପ୍ଟେମ୍ବର ୨୮ ତାରିଖ ଦିନ ପୋଲିସ୍ ଗୁଳିରେ ୨୯ ଜଣ ସହିଦ ହୋଇଥିଲେ। ଏହା ଗଡ଼ଜାତର ପ୍ରଜା-ଆନ୍ଦୋଳନକୁ ଅଭୂତ ପ୍ରେରଣା ଯୋଗାଇଥିଲା ବୋଲି ଐତିହାସିକ ଡଃ ଜଗନ୍ନାଥ ପଟ୍ଟନାୟକ ଦର୍ଶାଇଛନ୍ତି। (୧୧.୧୦.୧୯୯୦ 'ପ୍ରଜାତନ୍ତ୍ର' ଦ୍ରଷ୍ଟବ୍ୟ)

ଏହି ସମୟରେ ଢେଙ୍କାନାଳ ଓ ତାଳଚେରରେ ପ୍ରଜାମଣ୍ଡଳ ଆନ୍ଦୋଳନ ବ୍ୟାପକ ହୁଏ। ପ୍ରବଳ ପ୍ରତିରୋଧ ଓ ଦମନ ସତ୍ତ୍ୱେ ତାଳଚେରରେ ପବିତ୍ରମୋହନ ପ୍ରଧାନ ଆନ୍ଦୋଳନ ଚଳାନ୍ତି। ୧୯୪୨ ମସିହା ଅଗଷ୍ଟ ୩୧ ତାରିଖରେ ସେ କେତେକ ବନ୍ଧୁଙ୍କ ସହ ତାଳଚେର ଜେଲ୍‌ରୁ ଖସି ପଳାନ୍ତି। ପବିତ୍ରମୋହନଙ୍କ ଜେଲ୍‌ରୁ ଖସିପଳାଇବା ଖବର ସାରା ରାଜ୍ୟରେ ବ୍ୟାପିଗଲା। ଲୋକମାନେ ଭାବିଲେ ରାଜା ଏପରି ମିଛରେ ଘୋଷଣା କରିଛନ୍ତି; ପ୍ରକୃତରେ ତାଙ୍କ ନେତାଙ୍କୁ ଜେଲ୍‌ରେ ମାରିଦିଆଯାଇଛି। ପ୍ରଧାନ ଏକ ଲୁଚାଛପା (under-ground) ପ୍ରତିରୋଧ ଆନ୍ଦୋଳନ ଚାଲୁକରିଥିଲେ। ତାଙ୍କର ସଂଗଠନ ସମଗ୍ର ତାଳଚେରରେ କର୍ତ୍ତୃତ୍ୱ ବିସ୍ତାର କରିଥିଲା। ତାଳଚେର ରାଜା ଏକପ୍ରକାର ଲୋକଙ୍କଠାରୁ ବିଚ୍ଛିନ୍ନ ହୋଇଯାଇଥିଲେ। ରାଜା ପଲିଟିକାଲ୍ ବିଭାଗର ସାହାଯ୍ୟ ଲୋଡ଼ିଥିଲେ। ୧୯୪୨ ମସିହା ସେପ୍ଟେମ୍ବର ୬ ତାରିଖରେ ପ୍ରଜାମାନେ ରାଜାଙ୍କ ନଗର ଦଖଲକରି ନେଇଥିଲେ। ରାଜାଙ୍କ ବାହିନୀ ଏବଂ ଲୋକଙ୍କ ଦଳ ମଧ୍ୟରେ ସଂଘର୍ଷ ଲାଗିଥିଲା। ରାଜ୍ୟ କର୍ତ୍ତୃପକ୍ଷ ଲୋକଙ୍କ ମଧ୍ୟରେ ଉଡ଼ାଜାହାଜରୁ ପ୍ରଚାରପତ୍ରମାନ ପକାଇ ଏ ପ୍ରକାର ବୈପ୍ଳବିକ କାର୍ଯରୁ କ୍ଷାନ୍ତହେବାପାଇଁ ପ୍ରବର୍ତ୍ତାଇଥିଲେ। ଆକାଶରୁ

ଗୁଳି ଫାଏର୍ କରାଯାଇଥିଲା ଏବଂ ବହୁ ଲୋକ ମୃତାହତ ହୋଇଥିଲେ। ବିପ୍ଳବୀ ଜନତା ଛତ୍ରଭଂଗ ଦେଲାବେଳେ ଦଳାଚକଟାରେ କେତେ ଜଣ ଲୋକ ପ୍ରାଣହରାଇଥିଲେ।

ତାଳଚେର ପ୍ରଜାମଂଡଳ ପଲିଟିକାଲ୍ ଏଜେଂଟ ଓ ଭାଇସ୍‌ରାୟଂକୁ ଏକ ସ୍ମାରକ-ପତ୍ର ଦେଇ ଦୁଇଟି ଦାବି ଉପସ୍ଥାପିତ କରିଥିଲେ : (୧) ରାଜାଂକ ଦ୍ୱାରା ଗଠିତ ପ୍ରଜାପରିଷଦ ଉଠାଇଦିଆଯାଉ ଓ (୨) ବିଭିନ୍ନ କର ବଂଦ କରାଯାଉ।

ଢେଂକାନାଳର କାମାକ୍ଷାନଗରଠାରେ ବୈଷ୍ଣବଚରଣ ପଟ୍ଟନାୟକ ପ୍ରତିରୋଧ ଆଂଦୋଳନ ଚଳାଇଥିଲେ। ଲୋକଂକ ଦଳ ଏବଂ ବ୍ରିଟିଶ୍ ବାହିନୀଦ୍ୱାରା ପରିପୁଷ୍ଟ ରାଜ୍ୟ ପୁଲିସ ଫଉଜ ମଧ୍ୟରେ ବହୁ ସ୍ଥଳରେ ସଂଗ୍ରାମ ଲାଗିଥିଲା। ବୈଷ୍ଣବଚରଣ ପଟ୍ଟନାୟକଂକ ଦେହରେ ବୁଲେଟ୍ ମାଡ଼ ହୋଇଥିଲା। ସେ ଆତ୍ମଗୋପନ କରି ପ୍ରତିରୋଧ ଆଂଦୋଳନ ଚଳାଉଥିଲେ।

**ଗଡ଼ଜାତ ମିଶ୍ରଣ ପାଇଁ ପଦକ୍ଷେପ –**

ଓଡ଼ିଶାରେ Government of India 1935 ଅନୁଯାୟୀ ଲୋକପ୍ରତିନିଧି ଶାସନ ବା ଦାୟିତ୍ୱଶୀଳ ଶାସନ ଚାହେବାପରେ ଗଡ଼ଜାତର ଲୋକମାନେ ଚାହୁଁଥିଲେ ଯେ, ଓଡ଼ିଶାରେ ସବୁ ଗଡ଼ଜାତ ମିଶିଯାଉ ଏବଂ ଗଡ଼ଜାତର ଲୋକେ ମଧ୍ୟ ସେ ସବୁ ସୁବିଧା-ସୁଯୋଗ ପାଆଂତୁ। ଓଡ଼ିଶାରେ କଂଗ୍ରେସ ନେତାମାନେ ମଧ୍ୟ ଚାହୁଁଥିଲେ ଯେ ଓଡ଼ିଶା ସହିତ ଗଡ଼ଜାତର ମିଶ୍ରଣ ହେଉ ଏବଂ ଏକ ବୃହତ୍ତର ଓଡ଼ିଶା ଗଠିତହେଉ। ଏଥିପୂର୍ବରୁ ଜଣେ ବ୍ରିଟିଶ କର୍ମଚାରୀ ସାର୍ ହଥର୍ଣ ଲୁଇ ଯେ କି ୧୯୩୯ ମସିହାରେ ରିଫର୍ମସ ସେକ୍ରେଟାରୀ ବା ସଂସ୍କାର ସଚିବ ଥିଲେ ଏବଂ ପରେ ଓଡ଼ିଶାର ରାଜ୍ୟପାଳ ହୋଇଥିଲେ, ସେ ଆଟ୍‌ଲି ସବ୍‌କମିଟି ଆଗରେ ମତ ପ୍ରକାଶ କରିଥିଲେ ଯେ, ଗଡ଼ଜାତ ମିଶ୍ରଣ ନହେଲେ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ସ୍ୱାବଲଂବୀ ହୋଇ ପାରିବନାହିଁ। କିଂତୁ ବ୍ରିଟିଶ ସରକାରଂକ ରାଜନୈତିକ ବିଭାଗ ଗଡ଼ଜାତଗୁଡ଼ିକୁ ଓଡ଼ିଶା ସହ ନମିଶାଇବାପାଇଁ ଚାହୁଁଥିଲେ। ଅନ୍ୟ ପକ୍ଷରେ ସେମାନେ ରାଜାରାଜୁଡ଼ାମାନଂକୁ ନିଜ ନିଜ ରାଜ୍ୟର ଆଦି-ବାସୀମାନଂକୁ ମତାଇ ଭାରତର ଜାତୀୟ ଆଂଦୋଳନ ବିରୁଦ୍ଧରେ ସଂଗଠିତ କରିବା ପାଇଁ ପ୍ରବର୍ତ୍ତାଉଥିଲେ।

୧୯୪୬ ମସିହା ମାର୍ଚ ମାସ ୨୪ ତାରିଖରେ କ୍ୟାବିନେଟ୍ ମିଶନ୍ ଦିଲ୍ଲୀରେ ପହଂଚଂତି। ଏପ୍ରିଲ ୬ ତାରିଖରେ ଓଡ଼ିଶାରେ ହେବାକୁ ଥିବା ପ୍ରଧାନମଂତ୍ରୀ ହରେକୃଷ୍ଣ ମହତାବ କ୍ୟାବିନେଟ୍ ମିଶନଂକ ସହିତ ସାକ୍ଷାତକରଂତି ଏବଂ ଏକ ସ୍ମାରକପତ୍ର ଦିଅଂତି। ସେଥିରେ ସେ ଓଡ଼ିଶାପ୍ରଦେଶ ସହିତ ଓଡ଼ିଶା ଗଡ଼ଜାତଗୁଡ଼ିକୁ ମିଶାଇଦେବାପାଇଁ ଦାବି କରଂତି।

୧୯୪୬ ମସିହା ଏପ୍ରିଲ ୨୬ ତାରିଖରେ ହରେକୃଷ୍ଣ ମହତାବ, ଯେ

କି ସେତେବେଳକୁ ଓଡ଼ିଶାର 'ପ୍ରଧାନମଂତ୍ରୀ' ହୋଇସାରିଥିଲେ, କ୍ୟାବିନେଟ୍ ମିଶନ୍‌ର ଅନ୍ୟତମ ସଭ୍ୟ ସାର୍ ଷ୍ଟାଫୋର୍ଡ କ୍ରିପ୍‌ସଂକୁ ଲେଖିଥିଲେ– "ଆପଣ ଜାଣଂତି, ମୁଁ ଓଡ଼ିଶା ପ୍ରଦେଶ ସହିତ ୨୬ଟି ଗଡ଼ଜାତ ମିଶିଯାଉ ବୋଲି ଏକାଂତ ଆଗ୍ରହୀ । ମୋର ଆଶା, ଆପଣ କର୍ତ୍ତୃପକ୍ଷଂକ ଉପରେ ପ୍ରଭାବ ବିସ୍ତାର କରି ଏହା ଯେପରି ସଂଭବ ହେବ, ତହିଁର ଆଶୁ ବ୍ୟବସ୍ଥା କରିବେ ।"

ଏହାଛଡ଼ା ମହତାବଜୀ କ୍ୟାବିନେଟ୍ ମିଶନଂକୁ ଏକ ସ୍ୱତଂତ୍ର ମ୍ୟାପ୍ ଦେଇଥିଲେ । ସେଥିରେ ଜିଲ୍ଲାଗୁଡ଼ିକ ଛୋଟ ଛୋଟ ଦ୍ୱିପ ବା ଟାପୁ ସଦୃଶ ଗଡ଼ଜାତଗୁଡ଼ିକର ବିରାଟ ମହାସାଗରରେ ରହିଥିଲା ପରି ଦେଖାଯାଉଥିଲେ । ମାତ୍ର କ୍ୟାବିନେଟ୍ ମିଶନ୍ ମୁଖ୍ୟତଃ ହିଂଦୁ ମୁସଲମାନ ସମସ୍ୟା ସମାଧାନରେ ବ୍ୟସ୍ତଥିଲେ । ସେମାନଂକର ଓଡ଼ିଶାରେ ଗଡ଼ଜାତ ମିଶ୍ରଣ କଥା ଭାବିବାକୁ ବେଳ ନଥିଲା । ଏହା ପରେ ମହତାବଜୀ ରାଜାମାନଙ୍କ ସହିତ ଆଲୋଚନା ଆରଂଭକରଂତି । ସେ ପ୍ରସ୍ତାବ ଦିଅଂତି ଯେ, ସେମାନେ ଓଡ଼ିଶା ସହିତ ଏକ ପ୍ରଶାସନିକ ୟୁନିଅନ ଗଠନ କରିବାକୁ ରାଜିହୁଅଂତୁ, ଯେଉଁଥିରେ କି ସେମାନଂକର ରାଜ୍ୟ ଓ ଜିଲ୍ଲାଗୁଡ଼ିକ ଏକ ପ୍ରଶାସନିକ କ୍ଷେତ୍ରରେ ପରିଣତ ହେବେ; କିଂତୁ ସେମାନଂକର ଉପାଧି ଓ ପର୍ଯ୍ଯ ବା ନିଜଥଳି ପୂର୍ବଭଳି ଅବ୍ୟାହତ ରହିବ । ଏହା ବୃହତ୍ତର ଓଡ଼ିଶାର ଜନସ୍ୱାର୍ଥ ରକ୍ଷା ପାଇଁ ଏକାଂତ ଆବଶ୍ୟକ । ସେ ଓଡ଼ିଶାର ସବୁ ଗଡ଼ଜାତର ରାଜାମାନଂକୁ ଦୁଇଖଂଡି ବିଜ୍ଞପ୍ତିମୂଳକ ପତ୍ର ବା ସାରକୁଲାର ଚିଠି ପଠାଇଥିଲେ । ୧୯୪୬ ମସିହା ମେ ମାସ ୯ ତାରିଖ ପତ୍ରରେ ସେ ଲେଖିଥିଲେ ଯେ ଓଡ଼ିଶା ପ୍ରଦେଶ ଓ ଗଡ଼ଜାତମାନଂକର ସାମୂହିକ ସ୍ୱାର୍ଥ ପାଇଁ ଉଭୟଂକ ମଧ୍ୟରେ ପ୍ରଶାସନିକ ସମନ୍ୱୟ ରହିବା ଏକାଂତ ଅପରିହାର୍ଯ୍ୟ । ଏହା ନହେଲେ ଓଡ଼ିଶା ପ୍ରଦେଶ ଓ ଗଡ଼ଜାତଗୁଡ଼ିକର ସମୃଦ୍ଧି ଓ ଉପଯୁକ୍ତ ବିକାଶ ସଂଭବପର ହେବନାହିଁ । ଏହା ସ୍ପଷ୍ଟ କରିଦିଆଯାଉ ଅଛି ଯେ ରାଜାମାନଂକର ବଂଶାନୁକ୍ରମ ଓ ନିଜ ଥଳି ଉଠାଇ ଦେବାର ପ୍ରଶ୍ନ ଆଦୌ ଉଠୁନାହିଁ । ମାତ୍ର ମହତାବଜୀଂକ ଚିଠିର ଫଳାଫଳ ଆଶାଜନକ ହୋଇନଥିଲା । ଖୋଦ ବ୍ରିଟିଶ ସରକାର ଏବଂ ରାଜାମାନେ ଏହାର ବିରୋଧ କରିଥିଲେ । ଭାରତ ସରକାରଂକର ରାଜନୈତିକ ପରାମର୍ଶଦାତା ସାର୍ କନରୋଡ୍ କରଫିଲଡ୍ ଏବଂ ଇଷ୍ଟର୍ଣ ଷ୍ଟେଟସ୍ ଏଜେନ୍‌ସିର ରେସିଡେଂଟ କର୍ଣେଲ୍ ଟଡ୍ ଏହାର ବିରୋଧକରିଥିଲେ । ଏପରି କି ଓଡ଼ିଶା ପ୍ରଦେଶ ଓ ସାମଂତ ରାଜାମାନଂକ ମଧ୍ୟରେ କେତେକ ସାଧାରଣ ବିଷୟରେ ସହଯୋଗ ରହୁ ବୋଲି ସେମାନେ ଚାହୁଁନଥିଲେ ତଥା– ଖାଦ୍ୟ, ଉଦ୍‌ଯୋଗ, ପରିବହନ ଏବଂ ବିଶ୍ୱବିଦ୍ୟାଳୟ ଇତ୍ୟାଦି । ମହତାବଜୀଂକର ସାମଂତ ରାଜାମାନଂକ ସହିତ ଆଲୋଚନା କରିବା ପ୍ରସ୍ତାବକୁ ସେମାନେ ଗ୍ରହଣକରିନଥିଲେ । ଷ୍ଟେଟ୍‌ଗୁଡ଼ିକ ଐତିହାସିକ ଦୃଷ୍ଟିରୁ ଯେ ଓଡ଼ିଶାର ଅଂଶ, ଏହା ସେମାନେ ସ୍ୱୀକାର କରି

ନ ଥିଲେ। ମହତାବଂକର ଏ ମତକ ସେମାନେ ଗ୍ରହଣ କରି ନ ଥିଲେ। ଷଢ଼େଇକଳାର ରାଜା ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ୍ ଏଜେନ୍ସିର ରେସିଡେଂଟ୍ କର୍ଣ୍ଣେଲ୍ ଟଡଂକୁ ଏକ ପତ୍ରରେ ଜଣାଇଥିଲେ ଯେ ଅଧିକାଂଶ ରାଜନ୍ୟବର୍ଗଂକ ପୂର୍ବପୁରୁଷମାନେ ସ୍ଥାନୀୟ ଆଦିବାସୀମାନଂକୁ ଯୁଦ୍ଧରେ ପରାସ୍ତ କରି ଏହି ରାଜ୍ୟମାନ ସ୍ଥାପନକରିଥିଲେ। ସେମାନେ ମୂଳରୁ ସ୍ୱତଂତ୍ର ଥିଲେ। ଓଡ଼ିଶା ୫ ଶହ ବର୍ଷ ପୂର୍ବେ ମୋଗଲ, ଆଫଗାନ୍ ବା ତୁର୍କିମାନଂକ ଅଧୀନରେ ଥିବା ସମୟରେ ସେମାନେ ସ୍ୱାଧୀନ ଭାବରେ ନିଜ ନିଜର ରାଜ୍ୟ ସ୍ଥାପନ କରିଥିଲେ। ପାଟଣା, କଳାହାଣ୍ଡି, ସୋନପୁର, ସଂବଲପୁର, ରେଢ଼ାଖୋଲ, ବାମଂଡା, ବଣାଇ, ଗାଂଗପୁର, ବଉଦ, ଆଠମଲ୍ଲିକ, ଦଶପଲ୍ଲା ପ୍ରଭୃତିର ରାଜାମାନେ କେବେହେଲେ ଓଡ଼ିଶା ରାଜାଂକ ଅଧୀନରେ ନଥିଲେ। ଏହାର ଅନ୍ୟ ନାମ ଥିଲା ପାଟଣା ଗଡ଼ଜାତ। ପାଟଣା ଏକ ସ୍ୱାଧୀନ ରାଜ୍ୟ ଥିଲା। ଇତିହାସ ଏବଂ ପ୍ରତ୍ନତତ୍ତ୍ୱ ଏ ବିଷୟରେ ସାକ୍ଷ୍ୟ ଦିଅଂତି। ଏହି ରାଜ୍ୟଗୁଡ଼ିକୁ ଓଡ଼ିଶାର ୧୮ଟି ଦେଶୀୟ ରାଜ୍ୟ ସହ ୧୮୦୩ ଖ୍ରୀଷ୍ଟାବ୍ଦରେ ଭୋନ୍‌ସଲାଂକଠାରୁ ଇଂରେଜମାନେ ଦଖଲ କରିନଥିଲେ କି ଏମାନେ ଇଂରେଜ କର୍ତ୍ତୃତ୍ୱାଧୀନରେ ନଥିଲେ। ଏଥିମଧ୍ୟରୁ କେବଳ ବଉଦ ଓ ଦଶପଲ୍ଲା ଛଡ଼ା ଅନ୍ୟ ଦେଶୀୟ ରାଜ୍ୟଗୁଡ଼ିକ ଗଭର୍ଣ୍ଣର ଜେନେରାଲ୍ ଏଜେଂଟଂକ ଅଧୀନରେ ଥିଲେ। କେବଳ ବଉଦ ଓ ଦଶପଲ୍ଲାହିଁ ଇଂରେଜ ସରକାରଂକ ସହିତ ସଂଧି ସ୍ୱାକ୍ଷର କରିଥିଲେ। ପାଟଣା, କଳାହାଂଡି, ସୋନପୁର ଓ ବାମଂଡା ୧୯୦୩ ପର୍ଯ୍ୟଂତ ମଧ୍ୟପ୍ରଦେଶର ଚିଫ୍ କମିଶନରଂକ ଅଧୀନରେ ଥିଲେ ଏବଂ ସେମାନଂକର ସ୍ୱତଂତ୍ର ସତ୍ତା ଅନସ୍ୱୀକାର୍ଯ୍ୟ ଥିଲା। ପ୍ରଜାମାନଂକର ଜୀବନ-ମରଣ ଉପରେ ଏମାନଂକର ଅଧିକାର ବ୍ରିଟିଶ ଅମଳ ଆରଂଭରୁ ମାନିନିଆଯାଇଛି। ସେମାନଂକୁ ଜମିଦାର କହିବା ସଂପୂର୍ଣ୍ଣ ଅବାଂତର ଏବଂ ହାସ୍ୟାସ୍ପଦ . . . ଇତ୍ୟାଦି, ଇତ୍ୟାଦି।

ପାଟଣା ମହାରାଜା ଆର୍. ଏନ୍. ସିଂହଦେଓ ଭାଇସ୍‌ରାଏଂକୁ ୧୯୪୬ ମସିହା ଜୁନ୍ ୩୦ ତାରିଖ ଚିଠିରେ ଓଡ଼ିଶା ସହିତ ଗଡ଼ଜାତଗୁଡ଼ିକର ମିଶ୍ରଣ ପ୍ରସ୍ତାବର ବିରୋଧ କରିଥିଲେ। ସେ ଦର୍ଶାଇଥିଲେ ଯେ ଏହା ଫଳରେ ଛୋଟ ଛୋଟ ରାଜ୍ୟଗୁଡ଼ିକ ଉପରେ ଅନଧିକାର ହସ୍ତକ୍ଷେପ କରାଯିବ। ଓଡ଼ିଶାର ମୁଖ୍ୟମଂତ୍ରୀ ଗଡ଼ଜାତଗୁଡ଼ିକର ଶାଂତିଶୃଙ୍ଖଳା ଭଂଗ ପାଇଁ ଉଦ୍ୟମ କରୁଛଂତି। ସେ ଇଂରେଜ ସରକାରଂକୁ ଚିଠିରେ ଲେଖିଥିଲେ ଯେ, ମହତାବ ଓଡ଼ିଶା ରାଜାମାନଂକର ସାର୍ବ-ଭୌମତ୍ୱ ସଂବଂଧରେ ନଜାଣି ପର୍ଶୁରାମଂକ ଭଳି ରାଜାମାନଂକ ପଛରେ ଲାଗିଛଂତି।

ଏହାପରେ ୧୯୪୬ ମସିହା ଜୁଲାଇ ମାସରେ କଲିକତାର ଆଲିପୁରଠାରେ ଓଡ଼ିଶା ଏବଂ ଛତିଶଗଡ଼ ରାଜ୍ୟର ରାଜାମାନେ ପଲିଟିକାଲ୍ ରେସିଡେଂଟଂକ ଉପସ୍ଥିତିରେ ସ୍ଥିର କଲେ ଯେ ସେମାନେ ଏକ Federal Union ଗଢ଼ିବେ।

**ମହତାବଂକ ପ୍ରସ୍ତାବ ବିଫଳ –**

୧୯୪୬ ମସିହା ଅକ୍ଟୋବର ୧୬ ତାରିଖରେ ଓଡ଼ିଶାର ମୁଖ୍ୟମଂତ୍ରୀ ମହତାବଙ୍କୀ ଏବଂ ଓଡ଼ିଶାର ରାଜାମାନେ ସଂବଲପୁରଠାରେ ଏକ ଆଲୋଚନା ବୈଠକରେ ମିଳିତ ହୋଇଥିଲେ । ଏଥିରେ ପଲିଟିକାଲ୍ ଏଜେଂଟ୍ ମଧ ଉପସ୍ଥିତଥିଲେ । ଏହି ସମ୍ମିଳନୀରେ ମହତାବଙ୍କୀ ପ୍ରସ୍ତାବ ଦିଅଂତି ଯେ ଓଡ଼ିଶାର ଦେଶୀୟ ରାଜାମାନେ ଓ ଓଡ଼ିଶା ରାଜ୍ୟ ସରକାର ମଧ୍ୟରେ ଆଇନ୍ ଶୃଙ୍ଖଳା, ଖାଦ୍ୟ ଓ ବସ୍ତ୍ର, ନଦୀଜଳନିୟଂତ୍ରଣ, ଯାତାୟାତ ବ୍ୟବସ୍ଥା, ସାଧାରଣ ସ୍ୱାସ୍ଥ୍ୟ ଓ ଶିକ୍ଷା ପ୍ରଭୃତି ବିଷୟରେ ମିଳିତ ଯୋଜନା ଓ ପ୍ରଶାସନ ଏକାଂତ ଜରୁରି; କିଂତୁ ରାଜାମାନେ ଏଥିରେ ରାଜି ହୁଅଂତି ନାହିଁ । ଅନ୍ୟପକ୍ଷରେ ପାଟଣା ମହାରାଜା ସୂଚନା ଦିଅଂତି ଯେ ସଂବଲପୁର, ଯାହା କୋଶଳ ରାଜ୍ୟମଂଡଳର ଅଂତର୍ଭୁକ୍ତ ଥିଲା, ଏବଂ ଅନୁଗୁଳ ଇଷ୍ଟର୍ଣଷ୍ଟେଟ୍ସ୍ ଫେଡ଼େରେସନ୍ ବା ପୂର୍ବାଂଚଳ ରାଜ୍ୟ ପରିଷଦର ଅଂତର୍ଭୁକ୍ତ ହେବା ଉଚିତ ।

**ବୃହତ୍ତର ଓଡ଼ିଶା ଗଠନ ବିରୋଧରେ ଷଡ଼ଯଂତ୍ର –**

କୋଶଳ ରାଜ୍ୟମଂଡଳ ଗଠନପାଇଁ ଏହି ରାଜାମାନେ ବହୁ ଉଦ୍ୟମ କରଂତି । ଏମାନଂକୁ ମୋଗଲବଂଦୀ ଅଂଚଳର ବା ଓଡ଼ିଶା ପ୍ରଦେଶର କେତେକ ଜଣାଶୁଣା ବ୍ୟକ୍ତି ଖୋଲାଖୋଲି ସାହାଯ୍ୟ ସମର୍ଥନ କରୁଥିଲେ । ସେମାନେ ଓଡ଼ିଶାରେ କୋଶଳ ରାଜ୍ୟ ସପକ୍ଷରେ ଜନମତ ସୃଷ୍ଟିକରିବାକୁ ଚେଷ୍ଟା କରୁଥିଲେ । ଏମାନଂକ ମଧ୍ୟରେ ଶ୍ରୀ ମଧୁସୂଦନ ମହାଂତି ଓ ତାଂକ ଭ୍ରାଇଁ ଶ୍ରୀ ସୁରେଂଦ୍ର ମହାଂତି ଏବଂ ଶ୍ରୀ ଯଦୁମଣି ମଂଗରାଜ ପ୍ରମୁଖ ବିଶେଷ ଉଲ୍ଲେଖଯୋଗ୍ୟ । ଶ୍ରୀ ମଧୁସୂଦନମହାଂତି ଏବଂ ସୁରେଂଦ୍ର ମହାଂତି ଷଢ଼େଇକଳା ଯୁବରାଜ ଓ କୁମାର ସାହେବଂକ ସହିତ ଯୋଗାଯୋଗ ରଖିଥିଲେ ଏବଂ ପ୍ରଚାର ପାଇଁ ହଜାର ହଜାର ଟଂକାଆଣୁଥିଲେ ।

ଇଷ୍ଟର୍ଣଷ୍ଟେଟ୍ସ୍ ୟୁନିଅନ୍‌ର କଲିକତା ଅଫିସ୍ ଖାନତଲାସ କରି ଏହି ସବୁ ଚିଠିପତ୍ର ଓ ଅନ୍ୟାନ୍ୟ କାଗଜପତ୍ର ତଥା ଦଲିଲ୍ ଓଡ଼ିଶା ସରକାରଂକର ହସ୍ତଗତ ହୋଇଥିଲା । ସେଥିରୁ ଷଡ଼ଯଂତ୍ରର ସମସ୍ତ ରହସ୍ୟ ଜଣାପଡ଼ିଗଲା । ଓଡ଼ିଶା ସରକାର ୧୯୫୬ ମସିହାରେ ସେ ସବୁ ଚିଠିପତ୍ରର ନକଲ ଏବଂ ଫଟୋଚିତ୍ର ଏକ ପୁସ୍ତକରେ ପ୍ରକାଶକରିଥିଲେ । ଏହାର ଶୀର୍ଷକ ଥିଲା 'ବୃହତ୍ତର ଓଡ଼ିଶା ଗଠନରେ ବାଧାବିଘ୍ନ' । ଏହାର ପ୍ରକାଶକ ଥିଲେ ଓଡ଼ିଶା ସରକାରଂକ ଲୋକସଂପର୍କ ବିଭାଗ । ଏହି ଚିଠିପତ୍ରରୁ ପରିଷ୍କାର ଜଣାଯିବ ଯେ ମଧୁସୂଦନବାବୁ ଓ ସୁରେଂଦ୍ରବାବୁ ଷଢ଼େଇକଳାର. କୁମାରସାହେବ ଏବଂ ରାଜକୁମାର ବିଜୟ ପ୍ରତାପ ସିଂହଂକ ମଧରେ ବହୁ ଚିଠିପତ୍ର ଆଦାନପ୍ରଦାନ ହୋଇଥିଲା । ସେମାନେ ଲକ୍ଷ ଲକ୍ଷ ଟଂକା ସଂଗ୍ରହ କରି ରୀତିମତ ଗୋଟାଏ ସଂଗଠନ ଗଢ଼ି ଓଡ଼ିଶାର ଚାରିଆଡ଼େ ବେତନ ଦେଇ ଲୋକ ନିଯୁକ୍ତ କରି ଓଡ଼ିଶା ସରକାରଂକୁ କାବୁକରିଦେବାପାଇଁ

ଭିତରେ ଭିତରେ ଯେଉଁ ଅଭିସଂଧିମୂଳକ କାର୍ଯ ଚଳାଇଥିଲେ, ତାହା ସେହି ସମୟରେ ଜଣାପଡ଼ିନଥିଲେ ପରିସ୍ଥିତି ଯେ କି ଆକାର ଧାରଣକରିଥାଂତା, ତାହା ଅନୁମାନ କରିବା କଷ୍ଟ (ବୃ.ଓ.ବା.ବି.)। ସେମାନେ କିପରି ଓଡ଼ିଶାରେ କୋଶଳରାଜ୍ୟ ଗଠନପାଇଁ ଜନମତ ସୃଷ୍ଟି କରୁଛଂତି ଏବଂ ରାଜାରାଜୁଡ଼ାଂକ ସପକ୍ଷରେ ସଭା-ସମିତିମାନ କରୁଛଂତି, ତହିଁର ବିବରଣୀ ଦେଇ ଏଠାରେ ସଂଗଠନକୁ ମଜବୁଦ୍ କରିବାପାଇଁ ଏମାନେ ପ୍ରଚୁର ଟଂକା ଆଣୁଥିଲେ। 'ବୃହତ୍ତର ଓଡ଼ିଶା ଗଠନରେ ବାଧାବିଘ୍ନ' ପୁସ୍ତକରୁ ସେ ସବୁ ଚିଠିପତ୍ରର କେତେ ଖଂଡି ନିମ୍ନରେ ପ୍ରଦତ୍ତ ହେଲା। ଏହାର ଫଟୋକପି ବ୍ଲକ୍ କରାଇ ଓଡ଼ିଶା ସରକାରଂକଦ୍ୱାରା ପ୍ରକାଶିତ ଉପରୋକ୍ତ ପୁସ୍ତକରେ ଦିଆଯାଇଛି; ତା ସହିତ ମଧ ଷଢ଼େଇକଳା ଯୁବରାଜ ଓ ଜୟପାଳ ସିଂହଂକ ଚିଠିର ଫଟୋ ବ୍ଲକ୍‌ମାନ ଦିଆଯାଇଛି। ଓଡ଼ିଶାର ପୂର୍ବତନ ମୁଖ୍ୟମଂତ୍ରୀ ଶ୍ରୀ ନୀଳମଣି ରାଉତରାୟ ଯେ କି ସେତେବେଳେ ନବକୃଷ୍ଣ ଚୌଧୁରୀ ମଂତ୍ରିମଂଡଳରେ ଡେପୁଟି ହୋମ୍ ମିନିଷ୍ଟର ଥିଲେ, ତାଂକ ଆତ୍ମଜୀବନୀ 'ସ୍ମୃତି ଓ ଅନୁଭୂତି'ରେ ମଧ୍ୟ ଏହି ଚିଠିପତ୍ର ସବୁର ବ୍ଲକ୍ ପ୍ରକାଶ କରିଛଂତି।

My dear Kumar Saheb,

× × × ×

3. Yesterday there was a mammoth meeting in the Cuttack Town Hall, where Pt. L.N. Sahu, Member, Constituent Assembly, the President pleaded for a Union. In the Capital City itself, there is now a formidable swing in our favour Mr. Mahatab is doing all he can, to stop it. But now it has caught fire. He cannot stop it... What passed in Jamshedpur meeting? I have received no reply as yet either from Bolangir or Natabar Pandey.

Yours Sincerely,
Sd/-Surendra

15.5.48

P.S. – We are placed in a tight-corner now for want of money to arrange meetings, send men etc.

(ଓଡ଼ିଆ ଅନୁବାଦ)

ପ୍ରିୟ କୁମାର ସାହେବ,

ଗତକାଲି ଟାଉନ୍‌ହଲ୍‌ରେ ଗୋଟିଏ ବିରାଟ ସଭା ହୋଇଥିଲା। ଏହି ସଭାରେ ଶାସନବିଧାୟକ ସଭାର ସଭ୍ୟ ପଂଡିତ ଏଲ୍.ଏନ୍. ସାହୁ ସଭାପତିତ୍ୱ କରି ଗଡ଼ଜାତ ୟୁନିଅନ୍ ସପକ୍ଷରେ ମତ ପ୍ରକାଶ କରିଥିଲେ। ରାଜଧାନୀ କଟକ ସହରରେ ମଧ ବହୁ ସଂଖ୍ୟକ ଲୋକ ଇଉନିୟନ୍ ପ୍ରସ୍ତାବକୁ ସମର୍ଥନ କରୁଛଂତି।

ଏହାକୁ ବନ୍ଦ୍ କରିବାପାଇଁ ମହତାବ୍ ଯଥାସାଧ୍ୟ ଚେଷ୍ଟା କରୁଛନ୍ତି; କିନ୍ତୁ ବର୍ତ୍ତମାନ ଏହା ଚାରିଆଡ଼େ ବ୍ୟାପିଗଲାଣି, ସେ ଏହା ବନ୍ଦ୍ କରିପାରିବେ ନାହିଁ...। ଜାମସେଦ୍‌ପୁର ବୈଠକରେ କ'ଣ ହେଲା ? ମୁଁ ଏପର୍ଯ୍ୟନ୍ତ ବଲାଂଗିରରୁ ବା ନଟବର ପାଂଡେଂକଠାରୁ କୌଣସି ଉତ୍ତର ପାଇନାହିଁ। ଇତି

୧୫.୫.୪୮ ସୁରେନ୍ଦ୍ର

ବି.ଦ୍ର— ସଭା-ସମିତି କରିବା, ଲୋକ ପଠାପଠି କରିବା ଇତ୍ୟାଦି ପାଇଁ ଟଂକା ଅଭାବରୁ ଆମେ ବଡ଼ ଅସୁବିଧାରେ ପଡ଼ିଛୁ।

ପୁଣି ମେ ୧୯ ତାରିଖରେ ଶ୍ରୀ ମହାଂତିଂକ ଚିଠି—

URGENT

19.5.48

Dear Kumar Saheb,

As our success becomes clearer, opponents press harder. Hence I am in too tight corner. Pray do help. A couple of thousand needed immediately and imperatively to carry on till end of this month. Please don't fail.

Sincerely,
Sd/- M. S. Mahanty.

(ଓଡ଼ିଆ ଅନୁବାଦ)— ଜରୁରୀ ଚିଠି

୧୯.୫.୪୮

ପ୍ରିୟ କୁମାର ସାହେବ,

ଆମ ବିଜୟ ଯେତିକି ସ୍ପଷ୍ଟ ହୋଇ ଉଠୁଛି, ବିରୋଧୀମାନେ ସେତିକି ଜୋର୍‌ରେ ଲାଗିପଡୁଛନ୍ତି। ତେଣୁ ମୁଁ ବିଶେଷ ଅସୁବିଧାରେ ପଡ଼ିଛି। ଏ ମାସ ଶେଷ ପର୍ଯ୍ୟନ୍ତ କାମ ଚାଲୁରଖିବାପାଇଁ ଦୁଇ ହଜାର ଟଂକା ତୁରଂତ ନିତାଂତ ଦରକାର। ପଠାଇବାକୁ କେବେହେଲେ ଭୁଲିବେନାହିଁ। ଇତି

ବିଶ୍ୱସ୍ତ
ସ୍ୱା./- ଏମ୍. ଏସ୍. ମହାଂତି

ଅନ୍ୟ ଏକ ଚିଠିର ଓଡ଼ିଆ ଅନୁବାଦ—

ପ୍ରିୟ ମଝିଆଭାଇ,

ଆପଣ କୋରିଆ ରାଜାସାହେବଂକଠାରୁ ୨୪ ହଜାର ୮ ଶହ ଟଂକାର ଗୋଟିଏ ଚେକ୍ ପାଇଥିବେ। ଏହି ଟଂକାର କେତେକାଂଶ ଆଂଦୋଳନ ପାଇଁ ଖର୍ଚ୍ଚ କରିବାକୁ ହେବ। ଏହି କାମ ପାଇଁ ଦଶହଜାର ଟଂକାର ଗୋଟିଏ ଚେକ୍ ଶ୍ରୀ ଏମ୍. ଏସ୍. ମହାଂତିଂକ ନାମରେ କାଟିଦେବେ। ଏହି ପତ୍ର ନେଇ ଶ୍ରୀ ମହାଂତି

ଆପଣଂକ ସଂଗେ ସାକ୍ଷାତକରିବେ । ପତି ଓ ମୁଁ ଏ ବିଷୟରେ କଥାବାର୍ତ୍ତା କରିଛୁଁ ।

ଟ୍ରିବ୍ୟୁନାଲ୍ ଖୁବ୍ ଶୀଘ୍ର ଷଢ଼େଇକଳା ପରିଦର୍ଶନ କରିବାକୁ ଆସିବେ । ଆପଣ ଅବିଳଂବେ ଷଢ଼େଇକଳା ଚାଲିଯାଆଂନ୍ତୁ ।

କୁମାର ବିଜୟ ପ୍ରତାପ ସିଂହ — ଆପଣଂକର ସ୍ନେହର
୩/୧ କାମାକ ଷ୍ଟ୍ରିଟ୍, କଲିକତା । — ଏ.ପି.ସିଂହ

ଏହି ରାଜାମାନଂକର ଉଦ୍ଦେଶ୍ୟ ଥିଲା, ସେମାନେ ଏକ ଇଷ୍ଟର୍ଣ ଷ୍ଟେଟ୍ସ୍ ୟୁନିଅନ୍ ଗଢ଼ିବେ ଏବଂ ବିହାର ସହିତ ସାମିଲ୍ ହେବେ । ଝାଡ଼ଖଂଡ ଆଂଦୋଳନର ନେତା ଜୟପାଳ ସିଂହ ମଧ ବିହାର ସହିତ ଛତିଶଗଡ଼ ରାଜ୍ୟଗୁଡ଼ିକୁ ଏବଂ ସଂବଲପୁର ସମେତ ଓଡ଼ିଶାର ଦେଶୀୟରାଜ୍ୟଗୁଡ଼ିକୁ ଏହି ୟୁନିଅନ୍‌ରେ ସାମିଲ୍ କରାଇବାକୁ ଆପ୍ରାଣ ଚେଷ୍ଟା କରୁଥିଲେ । ତାହା ନ ହେବା ପର୍ଯଂତ ଏ ରାଜ୍ୟଗୁଡ଼ିକ ବିହାରରେ ରହିବେ ବୋଲି ନାନାପ୍ରକାର ଷଡ଼ଯଂନ୍ତ୍ର କରୁଥିଲେ । ସେ ଏବଂ ଷଢ଼େଇକଳା ରାଜା, ଷଢ଼େଇକଳା ଓ ଖରସୁଆଁ ବିହାରରେ ରହୁ ବୋଲି ଦାବି କରିଥିଲେ ଏବଂ ସେଠାର ଆଦିବାସୀମାନଂକୁ ନେଇ ପ୍ରବଳ ଆଂଦୋଳନ ଚଳାଇଥିଲେ । ଓଡ଼ିଶାର ଶ୍ରୀ ସୁରେଂନ୍ଦ୍ର ମହାଂତି ଓ ମଧୁସୂଦନ ମହାଂତି ପ୍ରମୁଖ ଏମାନଂକର ଏଜେଂଟ୍ ରୂପେ ଓଡ଼ିଶାରେ କାର୍ଯ କରୁଥିଲେ; ଉପରିଲିଖିତ ଚିଠିରୁ ତାହା ଜଣାପଡ଼ିବ । ଏକସମୟରେ ଏମାନେ ହାଇଦ୍ରାବାଦ ନିଜାମଂକ ସଂଗେ ମିଶି ଏକ ବୃହତ୍ତର ମେଂଟ ଗଢ଼ିବାକୁ ଉଦ୍ୟମ ଚଳାଇଥିଲେ । ନିଜାମଂକ ପାଖକୁ ଜଣେ ପ୍ରତିନିଧି ପଠାଇ ଏ ବିଷୟରେ କଥାବାର୍ତ୍ତା ଚଳାଇଥିଲେ । ମାତ୍ର ନିଜାମ ସରକାରଂକ ପତନ ପରେ ଏହା ଫସରଫାଟିଗଲା । ଷଢ଼େଇକଳା ରାଜା ବରାବର ଦାବି କରୁଥିଲେ ଯେ, ଷଢ଼େଇକଳା ଓ ଖରସୁଆଁ ବିହାରର ଅଂଶ । ଏହା କେବେ ଓଡ଼ିଶାରେ ନଥିଲା ।

ସେହିଭଳି ପୋଡ଼ାହାଟ ଓ ଷଢ଼େଇକଳା ରାଜ୍ୟ ସମେତ ସିଂହଭୂମି ଓଡ଼ିଶାରେ ନଥିଲା । ମୋଗଲ, ପଠାଣ ବା ମରହଟ୍ଟା କେହି ଏହାକୁ କେବେ ଜୟକରି ନଥିଲେ କିଂବା ଏହା କେବେହେଲେ କୌଣସି ଓଡ଼ିଶା ରାଜାଂକ ଅଧୀନରେ ନଥିଲା । ସେମାନେ ସିଧାସଳଖ ଇଂରେଜ ସରକାରଂକଠାରୁ ପୋଡ଼ାହାଟ ସହ ୧୯୧୮ ମସିହା ଚୁକ୍ତି ଅନୁଯାୟୀ 'ଫିଉଡେଟାରୀ ଷ୍ଟେଟ୍' ସ୍ୱୀକୃତି ପାଇଥିଲେ । ଏମାନଂକର ସାର୍ବଭୌମ କ୍ଷମତା କେହି ଅସ୍ୱୀକାର କରିପାରିବେନାହିଁ । ଷଢ଼େଇକଳା ରାଜାଂକୁ ତାଂକ ଉଦ୍ଦେଶ୍ୟ ପୂରଣରେ ସାହାଯ୍ୟ କରିବାପାଇଁ ଏବଂ ଷଢ଼େଇକଳା ଖରସୁଆଁକୁ ବିହାରରେ ମିଶାଇବାପାଇଁ ଓଡ଼ିଶାରେ ଯେଉଁ କେତେଜଣ ଅନୁଗତ ବ୍ୟକ୍ତି ତାଂକୁ ସାହାଯ୍ୟ କରୁଥିଲେ, ସେମାନଂକ ନାମ ଉପରେ ଦିଆଯାଇଛି ।

ଶାସନଗତ ବିଚାର ଦୃଷ୍ଟିରୁ ଓଡ଼ିଶା ପ୍ରଦେଶ ଓ ତାହାର ପ୍ରତିବେଶୀ ଦେଶୀୟ ରାଜ୍ୟମାନଂକ ମଧ୍ୟରେ ଶାସନଗତ ସହଯୋଗ ଓ ପ୍ରୟୋଜନୀୟ ସମନ୍ୱୟ ହେବା

ଯେ ନିତାଂତ ଆବଶ୍ୟକ, ବନ୍ଧୁଦିନତଳେ ୧୯୨୮ ମସିହାରେ ସାଇମନ୍ କମିଶନ୍ ଏ ମତ ଦେଇଥିଲେ। ଏଭଳି ଗୋଟିଏ ବ୍ୟବସ୍ଥା ନ ହେବାଯାଏଁ ଓଡ଼ିଶା ପୃଥକ୍ ପ୍ରଦେଶରୂପେ ଉନ୍ନତି କରିପାରିବନାହିଁ। ଏପ୍ରକାର ସୂଚନା ସାର୍ ହଥର୍ଣ ଲୁଇଂକ ଭଳି ଅଭିଜ୍ଞ ଇଂରେଜ ଶାସକମାନଂକଠାରୁ ମଧ୍ୟ ମିଳିଥିଲା। ମାତ୍ର ଏହାକୁ ଓଡ଼ିଶାର ରାଜାରାଜୁଡ଼ାମାନେ ଏବଂ ଷଢ଼େଇକଳା ପ୍ରଭୃତି କେତେକ ରାଜାରାଜୁଡ଼ା ସେମାନଂକର ଓଡ଼ିଶାରେ ଥିବା ବଚସ୍କରମାନଂକୁ ନେଇ କିପରି ପଂଡ କରିଦେବାକୁ ଚେଷ୍ଟାକରିଥିଲେ, ତାହାର ସୂଚନା ଆମେ ପାଇଲୁ।

୧୯୪୭ ମସିହାରେ ଭାରତ ସ୍ୱାଧୀନ ହୁଏ। ଭାରତ ସ୍ୱାଧୀନ ହେବା ପରେ ଗଡ଼ଜାତ ପ୍ରଜା ଆଂଦୋଳନ ଆହୁରି ତୀବ୍ର ଆକାର ଧାରଣକରେ। ସେମାନେ ମଧ୍ୟ ଜାତୀୟ ମହାସ୍ରୋତରେ ସାମିଲ୍ ହେବାପାଇଁ ସବୁପ୍ରକାର ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହୁଅଂତି। ଏଣେ ରାଜାରାଜୁଡ଼ାମାନେ ମଧ୍ୟ ଖୁବ୍ ଜୋର୍‌ରେ ଇଷ୍ଟର୍ଣ ଷ୍ଟେଟ୍‌ସ୍ ଏଜେନ୍ସି ଗଠନ କରିବାପାଇଁ ସକ୍ରିୟ ହୋଇଉଠଂତି। ସେମାନଂକୁ ଏଥିରୁ ନିବୃତ୍ତ ହେବାପାଇଁ କଟକରେ ୧.୩.୧୯୪୭ ତାରିଖରେ ବସିଥିବା ସର୍ବଭାରତୀୟ ଗଡ଼ଜାତ ପ୍ରଜାସମ୍ମିଳନୀ ସାବଧାନ କରିଦେଇଥିଲେ।

ସୌଭାଗ୍ୟକୁ କେଂଦ୍ର ସ୍ୱରାଷ୍ଟ୍ରମଂତ୍ରୀ ସର୍ଦାର ବଲ୍ଲଭଭାଇ ପଟେଲ୍ ପଲିଟିକାଲ୍ ବିଭାଗ ଦାୟିତ୍ୱ ନେଇଥିଲେ। ସେ ଓଡ଼ିଶାରେ ଗଡ଼ଜାତ ମିଶ୍ରଣ ସପକ୍ଷରେ ମତ ଦିଅଂତି। ଏହା ଭିତରେ ୧୯୪୭ ମସିହା ମେ ମାସ ୯ ଓ ୧୪ ତାରିଖ ମଧ୍ୟରେ ଓଡ଼ିଶା ଏବଂ ଛତିଶଗଡ଼ ରାଜାମାନେ ଓଡ଼ିଶାରେ ଗଡ଼ଜାତ ମିଶ୍ରଣର ପ୍ରତିରୋଧ କରିବାପାଇଁ ପୁରୀଠାରେ ଏକ ବୈଠକରେ ମିଳିତ ହୁଅଂତି। ୧୯୪୭ ମସିହା ଅଗଷ୍ଟ ମାସ ୧ ତାରିଖରେ ୩୯ଟି ଓଡ଼ିଶା ଏବଂ ଛତିଶଗଡ଼ ରାଜ୍ୟକୁ ନେଇ ଇଷ୍ଟର୍ଣ ଷ୍ଟେଟ୍‌ସ୍ ୟୁନିଅନ୍ ଗଠିତହୁଏ। ସେମାନେ ଏକ ସଂବିଧାନ ପ୍ରଣୟନ କରିଥିଲେ ଏବଂ ପ୍ରଜା-ଆଂଦୋଳନକୁ ଦବାଇବାପାଇଁ ଏକ ମିଳିତ ପୁଲିସ୍‌ବାହିନୀ ଗଠନ କରିଥିଲେ। ସେହି ପୁଲିସ୍ ବାହିନୀରେ ଗୁର୍ଖା ଏବଂ ପାକିସ୍ଥାନୀ ଲୋକଂକୁ ବହୁସଂଖ୍ୟାରେ ଭର୍ତିକରାଯିବ ବୋଲି ସ୍ଥିର କରାଯାଇଥିଲା।

୧୯୪୭ ମସିହା ଅଗଷ୍ଟ ୧୦ ତାରିଖରେ ଓଡ଼ିଶା ଏବଂ ଛତିଶଗଡ଼ ରିଜିଓନାଲ୍ କାଉନ୍‌ସିଲ୍ ଅଫ୍ ଦି ଟେନାନ୍ସର ପ୍ରଥମ ବୈଠକ କଟକଠାରେ ବସେ ଏବଂ ଓଡ଼ିଶା ସହିତ ଗଡ଼ଜାତଗୁଡ଼ିକୁ ମିଶାଇଦେବାପାଇଁ ଦାବି କରି ପ୍ରସ୍ତାବ ଗୃହୀତହୁଏ। ୧୯୪୭ ମସିହା ସେପ୍‌ଟେଂବର ୨୬ ତାରିଖରେ ଏହି ରାଜାମାନେ ଭବାନୀପାଟଣାଠାରେ ମିଳିତ ହୁଅଂତି ଏବଂ ନିଜ ନିଜ ରାଜ୍ୟରେ ଲୋକପ୍ରତିନିଧି ଶାସନ ପ୍ରବର୍ତନ କରିବାପାଇଁ ସିଦ୍ଧାଂତ ଗ୍ରହଣ କରଂତି। ସରକାର ଓ ଲୋକମାନଂକୁ ସଂତୁଷ୍ଟ କରିବାପାଇଁ ଏହି ପଦକ୍ଷେପ ଗ୍ରହଣ କରାଯାଇଥିଲା। କେତେକ ରାଜା ଦାୟିତ୍ୱଶୀଳ ଶାସନ ପ୍ରବର୍ତନ ପଦକ୍ଷେପକୁ ସ୍ୱାଗତକରିଥିଲେ।

ମାତ୍ର ଅନ୍ୟ କେତେକ ରାଜା ବଳ ପ୍ରୟୋଗ ଦ୍ୱାରା ବା ଦମନନୀତି ଦ୍ୱାରା ପ୍ରଜାଆଂଦୋଳନକୁ ଦବାଇଦେବାକୁ ଚାହୁଁଥିଲେ ।

ରାଜାମାନେ ନିଜ ନିଜ ସାର୍ବଭୌମ କ୍ଷମତାକୁ ଜାବୁଡ଼ି ଧରି ରହିବାକୁ ପ୍ରାଣପଣେ ଚେଷ୍ଟା କରୁଥିବାବେଳେ ନବଲବ୍ଧ ସ୍ୱାଧୀନତାର ସୂର୍ଯାଲୋକରେ ସମଗ୍ର ଗଡ଼ଜାତ ଭୂଇଁ ନୂତନ ଉତ୍ସାହରେ ଜାଗିଉଠୁଥିଲା । ୧୯୪୭ ମସିହା ଅକ୍ଟୋବର ୨୯ ଏବଂ ୩୦ ତାରିଖରେ ରାଜ୍ୟ କୃଷକ ସଂଘ ଏକ ବିରାଟ ସମ୍ମିଳନୀ ବଲାଂଗିର-ପାଟନାଠାରେ ଆହ୍ୱାନ କରିଥିଲେ । ଏଥିରେ ପ୍ରାୟ ୧୦ ହଜାର କୃଷକ ଯୋଗଦେଇଥିଲେ । ଏହି ସମ୍ମିଳନୀ ପାଟନା ମହାରାଜାଂକର ଦାୟିତ୍ୱଶୀଳ ଶାସନ ପ୍ରବର୍ତ୍ତନପାଇଁ ଦେଇଥିବା ଆଂଶିକ ଅର୍ପଣକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ୍ ୟୁନିଅନ୍‌କୁ ସଂପୂର୍ଣ୍ଣ ଅସ୍ୱୀକାର କରିଥିଲେ ।

**ନୀଳଗିରି ମିଶ୍ରଣ – ଆଦ୍ୟ-ପର୍ବ**

୧୯୪୭ ମସିହା ନଭେଂବର ୧୪ ତାରିଖରେ ଓଡ଼ିଶା ସରକାର ଏକ ସାହସିକ ପଦକ୍ଷେପ ନେଇ ନୀଳଗିରି ରାଜ୍ୟକୁ ଓଡ଼ିଶାରେ ମିଶାଇଦେଇଥିଲେ । ରାଜାଂକ ବିରୁଦ୍ଧରେ ଅଭିଯୋଗ କରିଥିଲେ ଯେ, ସେ ପ୍ରଜାମଂଡଳର ଲୋକଂକ ବିରୁଦ୍ଧରେ ଆଦିବାସୀମାନଂକୁ ମତାଇ ଆଇନ୍ ଶୃଙ୍ଖଳା ପରିସ୍ଥିତିର ବିପର୍ଯୟ ଘଟାଇ-ଛଂତି । ଅନ୍ୟ ରାଜାମାନେ ଏହାକୁ ତାଂକପ୍ରତି ଏକ ଆହ୍ୱାନରୂପେ ଗ୍ରହଣ କରିଥିଲେ ।

୧୯୪୭ ମସିହା ନଭେଂବର ୨୦ ତାରିଖରେ ରାଜ୍ୟ ମଂତ୍ରିମଂଡଳର ଏକ ଉଚ୍ଚସ୍ତରୀୟ ବୈଠକରେ, ଯେଉଁଥିରେ କି ଓଡ଼ିଶାର ପ୍ରଧାନମଂତ୍ରୀ (Prime Minister) ହରେକୃଷ୍ଣ ମହତାବ ଅଧ୍ୟକ୍ଷ ଭାବେ ଯୋଗଦେଇଥିଲେ, ସ୍ଥିରହୋଇଥିଲା ଯେ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ୟୁନିଅନ୍ ଓ ଗଡ଼ଜାତ ରାଜ୍ୟ ପରିଷଦକୁ ଓଡ଼ିଶା ସରକାର ସ୍ୱୀକୃତି ଦେବେ ନାହିଁ । ଏହାଛଡ଼ା ୧୫ଟି 'ବି' ଏବଂ 'ସି' କ୍ଲାସ୍ ଅଂତର୍ଭୁକ୍ତ ଷ୍ଟେଟ୍ ରାଜ୍ୟ ସରକାରଂକ ସହ କେତେକ ବିଷୟରେ 'Common Administra-tion' ବା ମିଳିତ ପ୍ରଶାସନ କରିବେ ବୋଲି ସ୍ଥିର କରାଯାଇଥିଲା । ଏଥିସକାଶେ ୧୯୪୭ ମସିହା ଡିସେଂବର ମାସରେ ଓଡ଼ିଶା ସରକାର ରାଜାମାନଂକ ସହିତ ଏକ ବୈଠକରେ ମିଳିତହୋଇ ଆଲୋଚନା କରିବେ ବୋଲି ନିର୍ଦ୍ଦେଶଦିଆଯାଇଥିଲା ।

ଓଡ଼ିଶା ସରକାର ଭାରତ ସରକାରଂକୁ ଅବିଳଂବେ ଏକ ସ୍ମାରକପତ୍ର ପଠାଇଥିଲେ । ଏଥିରେ ନିମ୍ନଲିଖିତ ସର୍ତ୍ତମାନ ଥିଲା –

(୧) ସାମଂତ ରାଜାମାନଂକଠାରୁ ସେମାନଂକର ରାଜନୈତିକ ଓ ପ୍ରଶାସନିକ କ୍ଷମତା କାଢ଼ିଦିଆଯିବ । (୨) ସେମାନଂକର ବଂଶଗତ ଉତ୍ତରାଧିକାର ନିଜିଥଳି (Privy Purse) ବ୍ୟକ୍ତିଗତ ସଂପତ୍ତିର ମାଲିକାନା ସ୍ୱତ୍ୱ ଏବଂ ସୁନିର୍ଦ୍ଦିଷ୍ଟ ବଂଶ-ମର୍ଯାଦା ଓ ସୁବିଧା-ସୁଯୋଗ ଅକ୍ଷୁଣ୍ଣ ରହିବ ବୋଲି ସେମାନଂକୁ ଗ୍ୟାରେଂଟି ଦିଆଯିବ, (୩) ଏହି ଦେଶୀୟ ରାଜ୍ୟଗୁଡ଼ିକ Indian Unionରେ ମିଶିବା ପାଇଁ ତୁରଂତ

କାର୍ଯ୍ୟାନୁଷ୍ଠାନ କରାଯିବ (୪) ୨୬ଟି ଗଡ଼ଜାତକୁ ଓଡ଼ିଶାରେ ମିଶାଇଦିଆଯିବ।

୧୪.୧୨.୧୯୪୭ ତାରିଖରେ ସର୍ଦ୍ଦାର ପଟେଲ ଓଡ଼ିଶା ଷ୍ଟେଟ୍‌ର ରାଜାମାନଂକୁ କଟକ ରାଜଭବନଠାରେ ଭେଟିଥିଲେ। ସେଦିନ ସକାଳେ ସେ 'ବି' ଏବଂ 'ସି' କ୍ଳାସ୍ ରାଜ୍ୟଗୁଡ଼ିକର ରାଜାମାନଂକୁ ଏବଂ ଅପରାହ୍ଣରେ 'ଏ' କ୍ଳାସ ରାଜାମାନଂକୁ ଭେଟିଥିଲେ। ସର୍ଦ୍ଦାର ପଟେଲ୍ ଗଡ଼ଜାତର ରାଜାମାନଂକୁ ଓଡ଼ିଶାରେ ସେମାନଂକ ରାଜ୍ୟର ମିଶ୍ରଣକୁ ଗ୍ରହଣ କରିନେବାକୁ ଉପଦେଶ ଦେଇଥିଲେ। ସେମାନଂକର ନିଜିଥଲି (Privy Purse) ଏବଂ ବ୍ୟକ୍ତିଗତ ସମ୍ମାନ ତଥା ମର୍ଯ୍ୟାଦା ଅକ୍ଷୁଣ୍ଣ ରହିବ ବୋଲି ସେ ପ୍ରତିଶ୍ରୁତି ଦେଇଥିଲେ। ପ୍ରଥମେ ଅସମ୍ମତି ପ୍ରକାଶ କରିଥିଲେ ସୁଦ୍ଧା ୨୫ଟି ଦେଶୀୟ ରାଜ୍ୟ ସର୍ଦ୍ଦାର ପଟେଲଂକ ନିର୍ଦ୍ଦେଶ ମାନିନେଇ-ଥିଲେ; କେବଳ ମୟୂରଭଞ୍ଜ ମହାରାଜା ଉକ୍ତ ରାଜିନାମାରେ ସ୍ୱାକ୍ଷର କରିନଥିଲେ। ସେ କାରଣ ଦର୍ଶାଇଥିଲେ ଯେ, ସେ ତାଂକ ରାଜ୍ୟରେ ଦାୟିତ୍ୱଶୀଳ ଶାସନ ପ୍ରତିଷ୍ଠା କରିଛଂତି। ସେ ଲୋକପ୍ରତିନିଧିଂକୁ ନପଚାରି ଏ ଚୁକ୍ତିନାମାରେ ସ୍ୱାକ୍ଷର କରିପାରିବେନି। ଏହାପରେ ଭାରତ ସରକାର ଓଡ଼ିଶା ସରକାରଂକୁ କ୍ଷମତାଦେଇ-ଥିଲେ ଯେ ସେ ଏହି ଦେଶୀୟ ରାଜ୍ୟଗୁଡ଼ିକୁ ଜିଲ୍ଲାଗୁଡ଼ିକ ଭଳି ଶାସନ କରିପାରିବେ। ଏହି ୨୫ଟି ରାଜ୍ୟର ମିଶ୍ରଣ ୧୯୪୮ ମସିହା ଜାନୁଆରୀ ୧ ତାରିଖଠାରୁ ବଳବତ୍ତର ହେବ। ଓଡ଼ିଶା ଇତିହାସର ଏକ କଳଂକମୟ ଅଧ୍ୟାୟର ପରିସମାପ୍ତି ଘଟିଲା। ଓଡ଼ିଶାର ଗଡ଼ଜାତମାନଂକୁ ସ୍ୱାଧୀନ ଓଡ଼ିଶାରେ ମିଶାଇଦିଆଗଲା।

ଇତିମଧ୍ୟରେ ମୟୂରଭଂଜ ପରିସ୍ଥିତି ବଡ଼ ସଂକଟପୂର୍ଣ୍ଣ ହେଲା। ତାଂକର ଦାୟିତ୍ୱଶୀଳ ସରକାର ଦକ୍ଷତାର ସହିତ କାର୍ଯ୍ୟ କରିବାକୁ ଅକ୍ଷମ ହେଲେ; ଫଳତଃ ମହାରାଜା ତାଂକ ଦେଶୀୟ ରାଜ୍ୟର ଶାସନଭାର ଭାରତ ସରକାରଂକୁ ଅର୍ପଣ କରିବାକୁ ବାଧ୍ୟହେଲେ। ଭାରତ ସରକାର ଅସ୍ଥାୟୀ ଭାବରେ ମୟୂରଭଂଜର ଶାସନଭାର ଜଣେ ଚିଫ୍ କମିଶନରଂକ ହାତରେ ନ୍ୟସ୍ତକଲେ।

୧୯୪୯ ଜାନୁଆରୀ ୧ ତାରିଖରେ ଏହି ଦେଶୀୟ ରାଜ୍ୟ ମୟୂରଭଂଜର ଶାସନଭାର ଓଡ଼ିଶା ସରକାରଂକୁ ଦିଆଗଲା। ଓଡ଼ିଶାରେ ମୟୂରଭଂଜ ମିଶିବାରେ ବିରୋଧକରି ହଜାର ହଜାର ଆଦିବାସୀ ବିକ୍ଷୋଭ କରିଥିଲେ। ଏହାକୁ ଏକ ବିଦ୍ରୋହ କୁହାଯାଇପାରେ। ଆଇନ୍ ଶୃଙ୍ଖଳା ସଂପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇପଡ଼ିଥିଲା। ମାତ୍ର ଶୀଘ୍ର ସ୍ୱାଭାବିକ ଅବସ୍ଥା ଫେରିଆସିଲା ଏବଂ ମୟୂରଭଂଜର ଆଦିବାସୀମାନେ ଓଡ଼ିଶା ସହିତ ମୟୂରଭଂଜର ମିଶ୍ରଣକୁ ମାନିନେଲେ।

**ଷଢ଼େଇକଳା, ଖରସୁଆଁ –**

ଦୁର୍ଭାଗ୍ୟବଶତଃ ଷଢ଼େଇକଳା ଓ ଖରସୁଆଁ ରାଜା ଦୁହେଁ, ଯେ କି ପ୍ରଥମେ ଓଡ଼ିଶା ସହିତ ସେମାନଂକ ରାଜ୍ୟର ମିଶ୍ରଣ ସପକ୍ଷରେ ସମ୍ମତି ପ୍ରକାଶକରିଥିଲେ, ସେମାନଂକର ମତ ବଦଳାଇ ବିହାର ସହିତ ମିଶିବାକୁ ଚାହିଁଲେ। ସେମାନେ

କାରଣ ଦର୍ଶାଇଥିଲେ ଯେ ମୟୂରଭଞ୍ଜ ପ୍ରଥମେ ଓଡ଼ିଶାରେ ନ ମିଶି ବିଚ୍ଛିନ୍ନ ଥିବାରୁ ସେମାନଂକ ରାଜ୍ୟକୁ ଓଡ଼ିଶାରୁ ଯିବାଆସିବାର ରାସ୍ତା ବଂଦହୋଇଯାଇଥିଲା, ତେଣୁ ସେମାନେ ବିହାରରେ ମିଶିବାକୁ ଚାହିଁଥିଲେ। ୧୮.୫.୧୯୪୮ରେ ଷଢ଼େଇକଳା, ଖରସୁଆଁ ରାଜ୍ୟ ଦୁଇଟିକୁ ବିହାରରେ ମିଶାଇ ଦିଆଯାଇଥିଲା। ଏ ଦୁଇଟି ରାଜ୍ୟ ଓଡ଼ିଆ ଭାଷାଭାଷୀ ଅଂଚଳ। ଏହାର ରାଜାମାନେ ମଧ୍ୟ ଓଡ଼ିଆବଂଶୋଦ୍‌ଭବ। ଷଢ଼େଇକଳା, ଖରସୁଆଁକୁ ହରାଇ ସମଗ୍ର ଓଡ଼ିଶାବାସୀ ଦୁଃଖ ଓ କ୍ଷୋଭରେ ବୁଡ଼ିଯାଇଥିଲେ। ଏ ଦୁଇଟି ରାଜ୍ୟକୁ ବିହାରରେ ମିଶାଇଦେଲା-ବେଳେ ସର୍ତ୍ତ ରଖାଯାଇଥିଲା ଯେ, ଏ ମିଶ୍ରଣ ଅସ୍ଥାୟୀ। ଏକ କମିଶନ ବସି ଏ ରାଜ୍ୟ ଦୁଇଟି ବିହାର ବା ଓଡ଼ିଶା, କେଉଁ ପ୍ରଦେଶରେ ଅଂଗୀଭୂତ ହେବ, ତାହା ପରେ ସ୍ଥିରକରିବେ।

ଓଡ଼ିଶାର ସିଂହଭୂମି ମିଶ୍ରଣ ଯାହା କ୍ୟାବିନେଟ୍ ମିଶନଂକ ଆଗରେ ଓଡ଼ିଶା ସରକାର ଦାବି କରିଥିଲେ, ତାହା କନ୍‌ଷ୍ଟିଚୁଏଣ୍ଟ୍ ଆସେଂବ୍ଲି ସ୍ଥିରକରିବେ ବୋଲି କ୍ୟାବି-ନେଟ୍ ମିଶନ ଜଣାଇଦେଲେ। ତା'ପରେ ୧୯୪୮ ମସିହା ଫେବୃଆରୀ ମାସରେ ଷଢ଼େଇକଳା ଓ ଖରସୁଆଁର ଭବିଷ୍ୟତ ନିର୍ଣ୍ଣୟ କରିବାପାଇଁ ଭାରତ ସରକାର ତତ୍କାଳୀନ ବଂବେ ହାଇକୋର୍ଟର ବିଚାରପତି ବାଉଦେକରଂକୁ ନିଯୁକ୍ତକଲେ। ମାତ୍ର ସେ କମିଶନ୍ କେବେ ବସିନାହିଁ। ଷଢ଼େଇକଳା ଖରସୁଆଁ ଚିରଦିନ ପାଇଁ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ରହିଲା। ଏଥିପାଇଁ କିଏ ଦାୟୀ, ତାହା ଓଡ଼ିଶାବାସୀ ବିଚାର କରିବେ।

**ଭାଷା ଆଂଦୋଳନ –**

୧୯୫୨ ମସିହାରେ ନବକୃଷ୍ଣ ଚୌଧୁରୀଂକ ସରକାର ଅମଳରେ ଓଡ଼ିଶାରେ ଷଢ଼େଇକଳା ଖରସୁଆଁ ମିଶାଇବାପାଇଁ ପ୍ରବଳ ଜନ-ଆଂଦୋଳନ ଦେଖାଦେଇଥିଲା। କଲିକତାରେ ମଧ୍ୟ ବହୁ ସଭା-ସମିତି ହୋଇଥିଲା। କଟକଠାରେ ବିରାଟ ଜନସମାଗମରେ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା। ଗୌରୀଶଂକର ପାର୍କ ନିକଟରେ ଜନତାକୁ ଘଉଡ଼ାଇବାକୁ ଯାଇ ପୁଲିସ ଗୁଳିଚାଳନା କରିଥିଲେ। ଏହା ଫଳରେ ସୁନିଲ୍ ଦେ ନାମକ ଜଣେ ଯୁବକ ମୃତ୍ୟୁବରଣ କରିଥିଲେ। ସେହିପରି ପୁରୀରେ ପୁଲିସ ଗୁଳିରେ ବେଂଗପାଣିଆ ନାମକ ଆଉ ଜଣେ ବାଳକ ସହିଦ ହୋଇଥିଲେ।

**କଲିକତାରେ ଲୋକମତଗଠନ –**

ଗଡ଼ଜାତ ମିଶ୍ରଣବେଳେ ମୁଁ କଲିକତାରେ ଥିଲି। ସେଠାରେ ବିଭିନ୍ନ ପ୍ରବାସୀ ଓଡ଼ିଆମାନଂକ ପକ୍ଷରୁ ଷଢ଼େଇକଳା ଓ ଖରସୁଆଁ ଓଡ଼ିଶାକୁ ଫେରାଇଦିଆଯାଉ ବୋଲି ଆମେ ଦୃଢ଼ ଦାବି କରିଥିଲୁ। ଓଡ଼ିଶା ସରକାର ଓ ଭାରତ ସରକାରଂକୁ ଆମର ଦାବି ସ୍ମାରକପତ୍ର ଜରିଆରେ ପଠାଇଥିଲୁ। ଓଡ଼ିଶାର ତତ୍କାଳୀନ ପ୍ରଧାନମଂତ୍ରୀ ହରେକୃଷ୍ଣ ମହତାବଂକୁ ଡକାଇ ମେଟିଆବୁରୁଜରେ ଏକ ବିରାଟ ଜନସଭା ଆୟୋଜନ କରିଥିଲୁ। ମୁଁ ଏହି ସମ୍ମିଳନୀର ଅଭ୍ୟର୍ଥନା ସମିତିର ସଭାପତି ଥିଲି। ପଶ୍ଚିମ

ବଂଗଳାର ପ୍ରଥମ କଂଗ୍ରେସ ପ୍ରଧାନମଂତ୍ରୀ ଡଃ ପ୍ରଫୁଲ୍ଲ ଘୋଷ, ଓଡ଼ିଶା ବିଶ୍ୱବିଦ୍ୟାଳୟର କୁଳପତି ଚିଂତାମଣି ଆଚାର୍ଯ ଏଥିରେ ଭାଷଣ ଦେଇଥିଲେ। ଏହି ସମ୍ମିଳନୀରେ ଓଡ଼ିଶା ଗଡ଼ଜାତ ମିଶ୍ରଣ ଏବଂ ଷଢ଼େଇକଳା ଖରସୁଆଁ ଓଡ଼ିଶାରେ ରହୁବୋଲି ଦାବି କରାଯାଇଥିଲା। ଏହାଛଡ଼ା ୧୯୫୯ ଏବଂ ୧୯୬୦ ମସିହାରେ କଲିକତାରେ ବିରାଟ ନିଖିଳ ଭାରତ ପ୍ରବାସୀ ଓଡ଼ିଆ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ଏହା ତିନିଦିନ ଚାଲିଥିଲା। ମୁଁ ପ୍ରସ୍ତୁତି କମିଟିର ଅଧ୍ୟକ୍ଷ ଥିଲି। ଲାଲ୍ ବାହାଦୁର ଶାସ୍ତ୍ରୀ, ପଶ୍ଚିମ ବଂଗର ମୁଖ୍ୟମଂତ୍ରୀ ପ୍ରଫୁଲ୍ଲ ସେନ୍ ଏବଂ କେନ୍ଦ୍ର ମଂତ୍ରୀ ହୁମାୟୁନ୍ କବିର ଏଥିରେ ମୁଖ୍ୟ ଅତିଥିରୂପେ ଭାଷଣ ଦେଇଥିଲେ। ପ୍ରତି ସମ୍ମିଳନୀରେ ଲକ୍ଷାଧିକ ଲୋକ ଯୋଗଦେଇଥିଲେ। ଓଡ଼ିଶାରେ ଷଢ଼େଇକଳା ଓ ଖରସୁଆଁର ପୁନଃମିଶ୍ରଣ ଦାବି କରି ପ୍ରସ୍ତାବମାନ ଗୃହୀତ ହୋଇଥିଲା ଏବଂ ଓଡ଼ିଶା ସରକାର ଓ କେନ୍ଦ୍ର ସରକାରଂକୁ ଏହା ପଠାଯାଇଥିଲା। ସମ୍ମିଳନୀରେ ଷଢ଼େଇକଳାର ଛଉନାଚ ପ୍ରଦର୍ଶିତ ହୋଇଥିଲା। ଏହି ସମ୍ମିଳନୀ ଉପଲକ୍ଷେ ପ୍ରକାଶିତ ସ୍ମରଣିକାରେ ଭାରତର ବହୁ ପ୍ରଖ୍ୟାତ ଲେଖକ ଯଥା– ଡଃ ରାଧାକୁମୁଦ ମୁଖାର୍ଜୀ, ଓ.ସି. ଗାଂଗୁଲି, ଡଃ ସୁନୀତି କୁମାର ଚାଟାର୍ଜୀ, ପଂଡିତ ନୀଳକଂଠ ଦାସ ପ୍ରମୁଖ ଓଡ଼ିଆ ସାହିତ୍ୟ, ଚିତ୍ରକଳା, ସଂସ୍କୃତି ଓ ଜଗନ୍ନାଥ ତତ୍ତ୍ୱ ଉପରେ ଉପାଦେୟ ପ୍ରବଂଧମାନ ଲେଖିଥିଲେ; ଯାହା ଏପର୍ଯଂତ ଗବେଷକମାନେ ଲୋଡ଼ୁଛଂତି।

ଓଡ଼ିଶାର ବନ୍ୟାଦୁର୍ଗତଂକ ସାହାଯ୍ୟାର୍ଥେ ପାଂଚହଜାର ଟଂକାର ଏକ ଥଳି ମହତାବଜୀଂକ ହାତରେ ଅନ୍ୟ ଏକ ସଭାରେ ଦେଇଥିଲୁ। ମୁଁ କଲିକତାରେ ଥିଲାବେଳେ ଗଡ଼ଜାତ ମିଶ୍ରଣ ଦାବିକରି ବହୁ ସଭାରେ ଭାଷଣମାନ ଦେଇଛି ଏବଂ କେତେକ କବିତା ମଧ୍ୟ ପ୍ରକାଶକରିଛି। ଏହି ସମୟରେ ଲିଖିତ ମୋର ଏକ କବିତାର କେତୋଟି ପଂକ୍ତି ତଳେ ଦିଆଗଲା।

'ଦେଖିନେବୁ ତାକୁ' –"ଦେଖିନେବୁ ତାକୁ ଛାଡ଼ିବେ ହାତ
କପିଳାସ ବଣ ଥରାଇ ଥରାଇ
ଶୁଭେ ଆଜି ଏ କି ରଡ଼ି କୁହାଟ !!
ଆମ ଗାଁ-ଗଂଡା କଲା ଯେ ମଶାଣି,
ପଚାର ପଚାର ତାକୁ ଧରିଆଣି-
କିଏ ଆଜି ତାର ପଡ଼ିବ ପିଠିରେ
କେଉଁଠାକୁ ଯିବ ? କାହିଁ ସେ ଗାତ ?
ପଳାଇଲା ଡରି ବ୍ରିଟିଶ୍ କେଶରୀ
ଏ ଛାର ଶିଆଳ ପକାଉଛି ହୁରି
ପରଖିବା ଚାଲ କା'ର କେତେ ବଳ
ଦେଖି ନେବା କେତେ କାହା ତାକତ୍।"

ପ୍ରକାଶ ଥାଉ କି, ସେତେବେଳେ କଲିକତାହିଁ ଭାରତର ସବୁଠାରୁ ବୃହତ୍ତମ ଓଡ଼ିଆଭାଷୀ ନଗରୀ ଥିଲା । କଟକର ଜନସଂଖ୍ୟା ସେତେବେଳକୁ ଦୁଇ ଲକ୍ଷ ଥିଲାବେଳେ କଲିକତାରେ ପ୍ରବାସୀ ଓଡ଼ିଆମାନଂକର ସଂଖ୍ୟା ପ୍ରାୟ ସାତଲକ୍ଷ ଥିଲା । ଭୁବନେଶ୍ୱର ଓ ରାଉରକେଲା ସେତେବେଳକୁ ଜନ୍ମ ହୋଇନଥିଲା । ତେଣୁ କଲିକତାହିଁ ଭାରତର ସବୁଠୁ ବଡ଼ ଓଡ଼ିଆଭାଷୀ ସହର ଥିଲା; ଏଥିରେ କୌଣସି ସଂଦେହର ଅବକାଶ ନାହିଁ । କଲିକତା ପ୍ରବାସୀ ଓଡ଼ିଆମାନେ ସମଗ୍ର ଓଡ଼ିଶାର ବିଭିନ୍ନ ଅଂଚଳରୁ ଆସିଥାଂତି; ତେଣୁ ସେମାନେ ସମସ୍ତ ଓଡ଼ିଶାର ଜନମତର ପ୍ରତିନିଧିତ୍ୱ କରଂତି । ସେମାନଂକର ରାଜନୀତିକ ସଚେତନତା ମଧ ଅଧିକ ।

**ସମୟର ପରିହ୍ରାସ –**

ସମୟର ପରିହ୍ରାସ କ୍ରମେ ଦେଶୀୟ ରାଜ୍ୟଗୁଡ଼ିକ ଓଡ଼ିଶା ପ୍ରଦେଶରେ ମିଶିଯିବା ପରେ ରାଜା-ରାଣୀମାନେ ଭେକ ବଦଳାଇ ଓଡ଼ିଶା ବିଧାନସଭାକୁ ଲୋକପ୍ରତିନିଧି ଭାବରେ ନିର୍ବାଚିତ ହେବାପାଇଁ ଚେଷ୍ଟା କଲେ । ସେମାନେ ଓଡ଼ିଶା ବିଧାନସଭା ନିର୍ବାଚନରେ ପ୍ରାର୍ଥୀଭାବେ ଛିଡ଼ାହୋଇ ଦୁଆର ଦୁଆର ବୁଲି ଭୋଟଭିକ୍ଷା କରିଥିଲେ । ସେମାନେ ଗଣତଂତ୍ର ପରିଷଦ ନାମକ ଏକ ଦଳ ଗଢ଼ି ଏହା ତରଫରୁ ବିଧାନସଭାକୁ କେତେକ ନିର୍ବାଚନ ମଂଡଳୀରୁ ସଭ୍ୟ ନିର୍ବାଚିତ କରାଇଥିଲେ । ଏମାନେ ଭୋଟମାଗିଲାବେଳେ ଲୋକମାନଂକ ଦୁଆରକୁ ଯାଇ ନାନା ଚାଟୁକଥା କହି, ସେମାନଂକର ପିଲାଝିଲାମାନଂକୁ ଗେଲକରି ସେମାନଂକର ମନ ଭୁଲାଇପାରିଥିଲେ । ଭୋଟଦାତାମାନଂକର ସଂଖ୍ୟା ମଧ ସୀମିତ ଥିଲା । ଯେଉଁମାନେ ମ୍ୟାଟ୍ରିକୁଲେସନ୍ ପାସ୍‌କରିଥିଲେ କିଂବା ଚୌକିଦାରୀ ଟିକସ ଦେଉଥିଲେ, ସେହିମାନଂକର କେବଳ ଭୋଟ ଦେବାର ଅଧିକାର ଥିଲା । ସାବାଳକ ଗଣଭୋଟ ପ୍ରଚଳିତ ହେବା ପାଇଁ ଆହୁରି କେତେ ବର୍ଷ ଡେରିଥିଲା । ୧୯୬୬-୬୭ ସାଲରେ ଏମାନେ ବହୁସଂଖ୍ୟାରେ ଓଡ଼ିଶା ବିଧାନସଭାକୁ ସଭ୍ୟ ହୋଇ ଆସିଥିଲେ । ସମୟର ପରିହ୍ରାସ କ୍ରମେ କଂଗ୍ରେସ ସହିତ କଳିକରି ଡଃ. ହରେକୃଷ୍ଣ ମହତାବ ପରେ ଜନକଂଗ୍ରେସ ନାମକ ଏକ ସ୍ୱଳ୍ପଜୀବୀ ଅନୁଷ୍ଠାନ ଗଢ଼ିଥିଲେ । ଏହି ଜନକଂଗ୍ରେସ ଓଡ଼ିଶାରେ ସ୍ୱତଂତ୍ର ଦଳ ସହିତ ମିଶି ଏକ ମିଳିତ ସରକାର ଗଢ଼ିଥିଲେ । ଓଡ଼ିଶାର ରାଜରାଜୁଡ଼ା-ମାନେ ପ୍ରଥମେ ଗଣତଂତ୍ର ପରିଷଦ ଗଢ଼ି ନିର୍ବାଚନ ଲଢ଼ିଥିଲେ ଏବଂ କେତେକ ଆସନ ଅଧିକାର କରିଥିଲେ । ପରେ ରାଜଗୋପାଳାଚାରୀଂକ ନେତୃତ୍ୱରେ ଗଢ଼ା-ଯାଇଥିବା ସ୍ୱତଂତ୍ର-ଦଳରେ ସାମିଲହୋଇ ଓଡ଼ିଶାରେ ଜନକଂଗ୍ରେସ ଦଳ ସହିତ ମିଶି ମିଳିତ ସରକାର ଗଠନ କରିଥିଲେ । ଏହା ପ୍ରାୟ ତିନିବର୍ଷ କାଳ ଶାସନରେ ଥିଲା । ଏହି ସରକାରର ମୁଖ୍ୟମଂତ୍ରୀ ଥିଲେ ପାଟନା ମହାରାଜା ରାଜେଂଦ୍ରନାରାୟଣ ସିଂହ ଦେଓ । ଉପମୁଖ୍ୟମଂତ୍ରୀ ଥିଲେ ଜନକଂଗ୍ରେସ ନେତା ପବିତ୍ରମୋହନ ପ୍ରଧାନ ।

**ଓଡ଼ିଶା ବୋର୍ଡମିଲ୍‌ସ୍ ଲିମିଟେଡ୍ : ଏକ ବଳିଦାନ –**

ଓଡ଼ିଶାର ଗଡ଼ଜାତ ଆଂଦୋଳନରେ ମୁଁ ଯେଉଁ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲି, ତା'ର ପ୍ରତିଫଳ ପାଇଲି ମୋର ସର୍ବସ୍ୱ ହରାଇ। ୧୯୬୨ ମସିହାରେ ମୁଁ କଲିକତା ଚାକିରିରୁ ଇସ୍ତଫାଦେଇ ଓଡ଼ିଶା ଚାଲିଆସିଥିଲି। ଏଠାରେ ମୁଁ ଏବଂ ମୋ' ସ୍ତ୍ରୀ ୩୧ ହଜାର ଟଂକାର ସେୟାର କିଣି ଜଗତପୁରଠାରେ ଓଡ଼ିଶା ବୋର୍ଡ ମିଲ୍‌ସ୍ ଲିଃ ପ୍ରତିଷ୍ଠା କରିଥିଲୁ। ଏହା ଥିଲା ଓଡ଼ିଶାର ପ୍ରଥମ ଷ୍ଟ୍ର ବୋର୍ଡ ମିଲ୍।

ଜନକଂଗ୍ରେସ ଦଳ ରାଜାରାଜୁଡ଼ାଂକ ସ୍ୱତଂତ୍ରଦଳ ସହିତ ମିଶି ଓଡ଼ିଶାରେ ମିଳିତ ସରକାର ଗଢ଼ିଲେ। ପାଟନା ମହାରାଜା ଏହାର ମୁଖ୍ୟମଂତ୍ରୀ ଥିଲେ। ଜନକଂଗ୍ରେସର ନେତା ଥିଲେ ପବିତ୍ରମୋହନ ପ୍ରଧାନ, ଯେ କି ଉପମୁଖ୍ୟମଂତ୍ରୀ ହୋଇଥିଲେ। ମାତ୍ର ଏହାସବୁ ମହତାବଂକର କାରସାଦି ଥିଲା। ଏହି ସରକାରଂକର ପ୍ରଥମ କାର୍ଯ୍ୟମାନଙ୍କ ମଧ୍ୟରୁ ଅନ୍ୟତମ ଥିଲା ମୋ ଓଡ଼ିଶା ବୋର୍ଡ ମିଲ୍‌କୁ ଧ୍ୱଂସକରିଦେବା। ପାଟନା ମହାରାଜା ମୁଖ୍ୟମଂତ୍ରୀ ହେବାର ମାସକ ପରେ ନିର୍ଦ୍ଦେଶ ଦେଲେ ଯେ ଓଡ଼ିଶା ସରକାର ଏ ମିଲ୍‌ରେ ପାଇଲଟ୍ ସ୍କୀମ୍ ଯୋଜନା ଅନୁଯାୟୀ ଯେଉଁ ଅଢ଼େଇଲକ୍ଷ ଟଂକାର ସେୟାର କିଣିଛଂତି, ତାହା ମୁଁ ତାଂକଠୁ କିଣିନେବି; କାରଣ ସରକାର ଆଉ କୌଣସି ପାଇଲଟ୍ ଉଦ୍‌ଯୋଗରେ ଅଂଶୀଦାର ହୋଇ ରହିବାକୁ ଚାହାଂତି ନାହିଁ। ଏହାର ଅର୍ଥ, ଏହି ମିଲ୍‌ଟିକୁ ସମୂଳେ ଧ୍ୱଂସକରିଦେବା। କାରଣ ମୁଁ ଅଢ଼େଇଲକ୍ଷ ଟଂକା କେଉଁଠୁ ଏକ ସମୟରେ ଯୋଗାଡ଼ କରିପାରିଥାଂତି ଯେ, ସରକାରୀ ସେୟାର କିଣିନେଇଥାଂତି! ବର୍ତ୍ତମାନ ଦଶଲକ୍ଷ ଟଂକାର ଏହି ମିଲ୍‌ଟି ଜଗତପୁର ଇଂଡଷ୍ଟ୍ରିଆଲ୍ ଇଷ୍ଟେଟ୍‌ରେ ଖଡଖାଉଛି। ଏହାର ମେସିନ୍‌ପତ୍ର, ଜଂକ୍ ଖାଇ ନଷ୍ଟହୋଇଗଲାଣି। ଏ ମିଲ୍‌ଟି ଚାଲିଥିଲାବେଳେ ସାରା ଭାରତରେ ବିଶେଷ ଲୋକପ୍ରିୟ ହୋଇଥିଲା। ଏଥିରୁ ଉତ୍ପନ୍ନ ଷ୍ଟ୍ରବୋର୍ଡ ଉଚ୍ଚମାନର ଥିଲା। ଦିଲ୍ଲୀ, କଲିକତା, ମାଡ୍ରାସ୍, ବଂବେ ପ୍ରଭୃତି ବଜାରରେ ଏହାର ବିଶେଷ ଚାହିଦା ଥିଲା। ଏହି ବଡ଼ ବଡ଼ ସହରମାନଂକରେ ଏହାର ସୋଲ୍ ଏଜେଂଟ୍ ରହିଥିଲେ। ମାତ୍ର ମିଲ୍‌ଟି ମୁଂଡଟେକିଲାବେଳକୁ ସରକାରଂକ କୁରାଢ଼ିଚୋଟରେ ଧୂଳିସାତ୍ ହୋଇଗଲା। ଏହି ମିଲ୍‌ର ବୋର୍ଡ ଅଫ୍ ଡାଇରେକ୍ଟର୍ସରେ ମୁଁ କେବଳ ଏକମାତ୍ର ବେସରକାରୀ ସଭ୍ୟ ଥିଲି। ଅନ୍ୟ ଚାରିଜଣ ସଭ୍ୟ ଥିଲେ ବଡ଼ ବଡ଼ ବିଭାଗୀୟ ଅଫିସ୍‌ର ଓ ଶାସନ ସଚିବ; ତେଣୁ ସେମାନଂକର ମତାମତହିଁ ଚୂଡ଼ାଂତ ଥିଲା। ସେମାନେ ଏକ ପ୍ରସ୍ତାବ ପାସ୍ କରି ଏ ମିଲ୍‌ଟିକୁ ସଂବଲପୁରର ଜଣେ ଲୋକଂକୁ (ଦୁର୍ଗାମାଧବ ନଂଦ) ଲିଜ୍ ଦେଇଦେଲେ। ସେ ମିଲ୍‌ର ଯଂତ୍ରପାତି, ମୋଟର୍ସ ଆଦି ବିକାବିକି କରି ମିଲ୍‌ଟିକୁ ଅଚଳ କରିଦେଲେ। ମୋର କିଛି କରିବାରନଥିଲା।

ଗଡ଼ଜାତ ଆଂଦୋଳନ ମୋ ଜୀବନରେ ବହୁ ଗଭୀର ରେଖା କାଟିଛି।

ମୁଁ ଏଠାରେ ସେଥିରୁ ସାମାନ୍ୟ ସୂଚନା ଦେଲି ମାତ୍ର।

**ପରବର୍ତ୍ତୀ ରାଜନୈତିକ ପରିପ୍ରେକ୍ଷୀରେ –**

ଏହି ମିଲ୍‌ଟି ବଗବାଦ ହୋଇଯିବା ଫଳରେ ମୁଁ ଏକପ୍ରକାର ସର୍ବସ୍ୱାଂତ ହୋଇପଡ଼ିଲି; ଏପରିକି ପରିବାର ଚଳାଇବା ମଧ୍ୟ କଷ୍ଟକର ହେଲା। ମୋ ସ୍ତ୍ରୀ ମଧ୍ୟ ବହୁ କଷ୍ଟ ଭୋଗିଲେ। ସେ ଯାହାହେଉ, ଏହା ମୋର ଏକ ବଳିଦାନ ବୋଲି କୁହାଯାଇପାରେ। ସେତେବେଳର କଥା ମନେପଡ଼ିଲେ ଏବେ ମଧ୍ୟ ବଡ଼ ଦୁଃଖଲାଗେ। ସେତେବେଳେ ଆମେ କଟକ ମେରିଆବଜାରର ଏକ ଘରେ ଭଡ଼ାରେ ରହୁଥିଲୁ।

**ପ୍ରବଳ ଛାତ୍ର ଆଂଦୋଳନ –**

ସ୍ୱତଂତ୍ର-ଜନକଂଗ୍ରେସ ମିଳିତ ସରକାର ବିରୁଦ୍ଧରେ ଓଡ଼ିଶାର ଛାତ୍ର-ଆଂଦୋଳନ ଜୋରସୋରରେ ତେଜିଉଠିଲା। କଟକ ସମେତ ବହୁ ସ୍ଥାନର ଛାତ୍ରମାନେ ବିକ୍ଷୋଭ ପ୍ରଦର୍ଶନ କଲେ। ସରକାର ଛାତ୍ର-ଆଂଦୋଳନକୁ ଦବାଇଦେବାପାଇଁ ବହୁ ନୃଶଂସ କାଂଡ କରିଥିଲେ। ବହୁସ୍ଥାନରେ ଗୁଳିକରି କେତେକ ଛାତ୍ରଂକୁ ମାରିଦେଇଥିଲେ।

**ଚିର ପ୍ରଦୀପ୍ତ –**

୧୯୬୯ ମସିହାରେ ସାରା ପୃଥିବୀରେ ଏକ ଅଭୂତପୂର୍ବ ଛାତ୍ର-ଆଂଦୋଳନ ଦେଖାଦେଇଥିଲା। ଆମେରିକା, ଇଂଲଂଡ, ଫ୍ରାନ୍‌ସ ପ୍ରଭୃତି ଦେଶର ଛାତ୍ରସମାଜ ମଧ୍ୟରେ ଏକ ସଂସ୍ଥା-ବିରୋଧୀ ମନୋଭାବ ପରିଲକ୍ଷିତ ହୋଇଥିଲା। ତାର ପ୍ରଭାବ ଭାରତବର୍ଷ ତଥା ଓଡ଼ିଶାରେ ମଧ୍ୟ ଅନୁଭୂତ ହୋଇଥିଲା। ଏହାଛଡ଼ା ଓଡ଼ିଶା ଛାତ୍ରସମାଜର ବହୁ ସମସ୍ୟା ଓ ଦାବିପତ୍ର ଥିଲା। ଅମଲାତଂତ୍ର ସେସବୁକୁ ଉପେକ୍ଷା କରିଚାଲିଥିଲା। ଛାତ୍ରମାନଂକର ଅଭାବ-ଅଭିଯୋଗ ସରକାର ଶୀତଳ-ଭଂଡାରରେ ରଖିଦେଇ ସେମାନଂକୁ କେବଳ ମୌଖିକ ଆଶ୍ୱାସନା ଦେଉଥିଲା; ଫଳରେ ଛାତ୍ରମାନଂକ ମନରେ ଅସଂତୋଷ କୁହୁଳୁଥିଲା।

୨୨.୮.୬୯ ତାରିଖରେ କଟକର ଶ୍ରୀରାମଚନ୍ଦ୍ର ଭଂଜ ମେଡ଼ିକାଲ୍ କଲେଜର ଛାତ୍ରମାନେ ଭୁବନେଶ୍ୱରରେ ଏକ ଶାଂତିପୂର୍ଣ୍ଣ ଶୋଭାଯାତ୍ରାରେ ଯାଉଥିଲାବେଳେ ପୁଲିସ ସେମାନଂକୁ ନିର୍ମମ ଲାଠି ପ୍ରହାରକରେ। ବହୁ ଛାତ୍ରଛାତ୍ରୀ ଆହତ ହୁଅଂତି। ଏହାର ପ୍ରତିବାଦରେ କଟକ ରେଭେନ୍‌ସା କଲେଜର ଛାତ୍ରମାନେ ଏକ ଶୋଭାଯାତ୍ରା ବାହାରକରିବାକୁ ଉଦ୍ୟମ କରଂତି। ପୁଲିସ ରେଭେନ୍‌ସା କଲେଜ ଭିତରେ ପଶି ଛାତ୍ରମାନଂକ ଉପରେ ଆକ୍ରମଣ କରେ। କଲେଜ ଅଧ୍ୟକ୍ଷ ଓ କେତେକ ଅଧ୍ୟାପକ ଏଥିରେ ବାଧାଦେବାରୁ ସେମାନଂକୁ ପୁଲିସବାହିନୀ ଅପମାନିତକରେ ଏବଂ ଛାତ୍ରମାନଂକୁ ଅଂଧାଧୁନିଆ ମାଡ଼ ଚଢ଼ାଏ। କଟକ ଖ୍ରୀଷ୍ଟ କଲେଜର ଛାତ୍ର ଶ୍ରୀ ପ୍ରଦୀପ୍ତ କୁମାର ମିଶ୍ର ପୁଲିସମାନଂକୁ ଅଟକାଇବା ଉଦ୍ୟମରେ ରେଭେନ୍‌ସା କଲେଜର ଫାଟକ ବଂଦ କରିବାକୁ ଯାଏ। ଏହି ସମୟରେ ପୁଲିସ ପିସ୍ତଲ୍ ଚଳାଇ ପ୍ରଦୀପ୍ତକୁ

ହତ୍ୟାକରେ। ପ୍ରଦୀପ୍ତର ଶବ ଶୋଭାଯାତ୍ରାରେ କଟକ ସହରର ପ୍ରାୟ କୋଡ଼ିଏ ହଜାର ନାଗରିକ ଅଶ୍ରୁପ୍ଲୁତ ଆଖିରେ ଖାନନଗର ମଶାଣି ପର୍ଯ୍ୟନ୍ତ ଯାଇଥିଲେ।

ରେଭେନ୍ସା କଲେଜର ପ୍ରଧାନ ଫାଟକ ନିକଟରେ ପ୍ରଦୀପ୍ତର ଏକ ସ୍ମୃତିସ୍ତମ୍ଭ ସ୍ଥାପନ କରାଯାଇଛି। ଏହି ସ୍ତମ୍ଭଟି ମୁଁ ଉଦ୍‌ଘାଟନ କରିଥିଲି। ବହୁ ଛାତ୍ରଛାତ୍ରୀ ଓ ଅଧ୍ୟାପକ ଏହି ଉଦ୍‌ଘାଟନ ସଭାରେ ଯୋଗଦେଇଥିଲେ। ଏହାଛଡ଼ା ରେଭେନ୍ସା କଲେଜ ସାମ୍ନାରେ ପୁଲିସ ଷ୍ଟାଣ୍ଡ୍ ପାଖରୁ ଯେଉଁ ରାସ୍ତାଟି ଯୋବ୍ରା ଆଡ଼କୁ ଯାଇଛି, ତାହାର ନାମ ପ୍ରଦୀପ୍ତ ମାର୍ଗ ବୋଲି ନାମିତ କରାଯାଇଥିଲା ଏବଂ ଏକ ସାଇନ୍‌ବୋର୍ଡ ଦିଆଯାଇଥିଲା।

ମୁଁ 'ଚିର ପ୍ରଦୀପ୍ତ' ନାମକ ଏକ କବିତା ପୁସ୍ତକ ରଚନାକରି ନିଜେ ପ୍ରକାଶ କରିଥିଲି; କାରଣ କୌଣସି ପ୍ରକାଶକ ଏହାକୁ ପ୍ରକାଶ କରିବାକୁ ସାହସ କରିନଥିଲେ। ଏହି କବିତାଗୁଡ଼ିକ ପ୍ରଥମେ କେତେକ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଜନପ୍ରିୟ ଓ ପ୍ରଶଂସିତ ହୋଇଥିଲା। ସେଥିରୁ କେତୋଟି ପଂକ୍ତି ତଳେଦେଲି।

"ନିଆଁକୁ ମାରିବ କେଉଁପରି ତୁମେ ? ନିଆଁ କି ରେ କେବେ ମରେ ?
ଏଠି ଲିଭିଗଲେ ସେଠି ସେ ଜଳିବ ପୁଣି ନୂଆ ଅଂଗୀକାରେ
ସୁପ୍ତ ଜଡ଼କୁ କରିବ ବନ୍ଦୀ ତୁମରି ଅସ୍ତ୍ରାଗାରେ ?
×  ×  ×  ×
ଭିସୁଭିଏସକୁ ସୁରାର ପାତ୍ରେ ବନ୍ଦୀ କରିବ ତୁମେ !
ଆରେ ହତଭାଗା ଭାଗ୍ୟ-ଶିକାରୀ ! ବସିଚ୍ଛ ଶାସକ ନାମେ !
×  ×  ×  ×
ଖୁଣୀ ସବୁଦିନ ଖୁଣୀ।
"ବିଚାରକ ତାର ମୋ ଦେଶ ତରୁଣ— ବିଧାତାର ଶୁଭବାଣୀ।"

ସ୍ମରଣ କରାଯାଇପାରେ ଯେ, ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ଥାଇ ଏକ ଜନକଂଗ୍ରେସ ସରକାର ଗଢ଼ାଯାଇଥିଲା। ଏହି ମାସରେ ପାର୍ଲିଆମେଂଟ୍ ନିର୍ବାଚନ ସହିତ ଓଡ଼ିଶାର ବିଧାନସଭା ନିର୍ବାଚନ କରାଗଲା। ମାତ୍ର କୌଣସି ଦଳ ଏ ନିର୍ବାଚନରେ ସଂଖ୍ୟାଗରିଷ୍ଠତା ଲାଭ କରିପାରିଲେ ନାହିଁ। ତେଣୁ ଅବସରପ୍ରାପ୍ତ ଉତ୍ତରପ୍ରଦେଶ ରାଜ୍ୟପାଳ ତଥା ନିର୍ଦ୍ଦଳୀୟ ନେତା ଶ୍ରୀ ବିଶ୍ୱନାଥ ଦାସଂକୁ ମୁଖ୍ୟମନ୍ତ୍ରୀ କରି ଓଡ଼ିଶାର ରାଜାରାଜୁଡ଼ାଂକ 'ସ୍ୱତନ୍ତ୍ର ଦଳ' ଏବଂ ବିଜୁ-ନୀଳମଣିଂକ ଏକ 'ଉତ୍କଳ କଂଗ୍ରେସ ଦଳ' ଓ ଝାଡ଼ଖଣ୍ଡ ଦଳ ମିଶି ମିଳିତ ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା। ଏହା ପ୍ରାୟ ତିନିବର୍ଷ ଶାସନ କ୍ଷମତାରେ ଥିଲା (ପ୍ରକାଶଥାଉ କି ଏହି ନିର୍ବାଚନରେ ମହତାବ ଦୁଇଟି ବିଧାନସଭା ଆସନରେ ନିର୍ବାଚିତ ହୋଇଥିବାବେଳେ ବିଜୁ ପଟ୍ଟନାୟକ ଚାରିଗୋଟି ବିଧାନସଭା ଆସନ ଏବଂ ଗୋଟିଏ ଲୋକସଭା ଆସନ ଏହିପରି ପାଂଚଗୋଟି ଆସନରେ ପ୍ରତିଦ୍ୱନ୍ଦ୍ୱିତା

କରି ଗୋଟିକରେ ମଧ୍ୟ ଜୟଯୁକ୍ତ ହୋଇପାରିନଥିଲେ)। ଏହି ନିର୍ବାଚନରେ କଂଗ୍ରେସ ଏକାବନ, ଉତ୍କଳ କଂଗ୍ରେସ୍ ବତ୍ରିଶ, ସ୍ୱତଂତ୍ର ଦଳ ଛତ୍ରିଶ ଏବଂ ଝାଡ଼ଖଣ୍ଡ, କମ୍ୟୁନିଷ୍ଟ ଓ ପ୍ରଜା ସୋସିଆଲିଷ୍ଟ ଦଳର ସ୍ଥାନ ଥିଲା ପ୍ରତ୍ୟେକର ଚାରୋଟି ଲେଖାଏଁ। ୧୯୭୦ ମସିହା ମଇ ମାସରୁ ଶାସକ କଂଗ୍ରେସଦଳ ବିଭାଜିତ ହୋଇ ବିଜୁ ପଟ୍ଟନାୟକ ଓ ନୀଳମଣି ରାଉତରାୟଂକ ନେତୃତ୍ୱରେ 'ଉତ୍କଳ କଂଗ୍ରେସ' ଗଠିତ ହୋଇଥିଲା। ତେଣୁ ବହୁ ଗୋଷ୍ଠୀବିବାଦ, ଛକାପଂଝା ଓ ମାର୍‌ପେଂଚ୍ ପରେ ଜଣେ ନିର୍ଦ୍ଦଳୀୟ ନେତା ଶ୍ରୀ ବିଶ୍ୱନାଥ ଦାସଂକ ନେତୃତ୍ୱରେ ଏପ୍ରିଲ୍ ତିନି ତାରିଖରେ ସ୍ୱତଂତ୍ର-ଉତ୍କଳ କଂଗ୍ରେସ ଓ ଝାଡ଼ଖଣ୍ଡ ଦଳର ଏକ ମିଳିତ ମଂତ୍ରିମଂଡଳ ବାଅଷ୍ଠି ଜଣ ସଭ୍ୟଂକ ସମର୍ଥନରେ ଗଠିତହେଲା।

ପରେ ବିଶ୍ୱନାଥ ଦାସ ରାଉରକେଲାରୁ ଏବଂ ବିଜୁ ପଟ୍ଟନାୟକ ଏକ ଉପନିର୍ବାଚନରେ ରାଜନଗରରୁ ବିଧାନସଭାକୁ ନିର୍ବାଚିତ ହେଲେ। ସେ ବିଶ୍ୱନାଥ ଦାସଂକୁ ହଟାଇ ତାଂକ ସ୍ଥାନରେ ମୁଖ୍ୟମଂତ୍ରୀ ହେବାକୁ ଖୋଲାଖୋଲି ଚେଷ୍ଟା ଚଳାଇଥିଲେ। ବିଶ୍ୱନାଥ ଦାସଂକ କାର୍ଯ୍ୟକାଳ ସୁରୁଖୁରୁରେ ଚାଲିଲା ନାହିଁ। ମିଳିତ ଦଳ ମଧ୍ୟରେ ନାନାପ୍ରକାର ଗୋଷ୍ଠୀବିବାଦ ଦଳର ସଂହତିକୁ ବାରଂବାର ଆଘାତକଲା। ପ୍ରତିଦ୍ୱଂଦ୍ୱୀମାନଂକର ବିଦ୍ରୋହ ଓ ବିକ୍ଷୋଭରେ ମିଳିତ ମଂତ୍ରିମଂଡଳର ମୂଳଦୁଆ ଦୋହଲିଗଲା। ଅବସ୍ଥା ଏପରି ହେଲା, ଉତ୍କଳ କଂଗ୍ରେସରୁ କେତେକ ସଭ୍ୟ କଂଗ୍ରେସକୁ ଫେରିଆସିବାକୁ ଉଦ୍ୟମକଲେ। ଏ ମଧ୍ୟରେ ଉତ୍କଳ କଂଗ୍ରେସର ତିନିଜଣ ସଭ୍ୟ, ସ୍ୱତଂତ୍ରଦଳ ଟିକେଟରେ ନିର୍ବାଚିତ ଛଅଜଣ ବିଧାନସଭା ସଦସ୍ୟ କଂଗ୍ରେସ ଦଳରେ ଯୋଗଦେଲେ। ପ୍ରଜା-ସୋସିଆଲିଷ୍ଟ ଦଳ ମଧ୍ୟ କଂଗ୍ରେସରେ ମିଶିଯିବାକୁ ନିଷ୍ପାରଣ ନେଲେ। ଜୁନ୍ ନଅ ତାରିଖରେ ଉତ୍କଳ କଂଗ୍ରେସକୁ ଭାଂଗି କଂଗ୍ରେସରେ ପୁନର୍ବାର ମିଶିଯିବା ପାଇଁ ଉତ୍କଳ କଂଗ୍ରେସ ଯେଉଁ ପ୍ରସ୍ତାବ ଗ୍ରହଣକଲେ, ବିଶ୍ୱନାଥ ଦାସଂକ ମଂତ୍ରୀମଂଡଳର ଅସ୍ତିତ୍ୱ ଉପରେ ତାହାହିଁ ଥିଲା ଶେଷ କୁଠାରାଘାତ। ଏହି ପ୍ରସ୍ତାବର ନକଲ ପାଇବାପରେ ବିଶ୍ୱନାଥ ଦାସ ତୁରଂତ ଇସ୍ତଫା ପ୍ରଦାନକଲେ ଏବଂ ଓଡ଼ିଶା ରାଜନୀତିରେ ଏକ ନାଟକୀୟ ପରିସ୍ଥିତିର ସମାପ୍ତି ଘଟିଲା। (ଗଂଗାଧାର ରଥଂକ 'ଭୁଲିନାହିଁ' ଦ୍ରଷ୍ଟବ୍ୟ)

ବିଶ୍ୱନାଥ ମଂତ୍ରିମଂଡଳ ଭାଂଗିଯିବା ପରେ ଉତ୍କଳ କଂଗ୍ରେସର ବହୁ ସଭ୍ୟ ନୀଳମଣି ରାଉତରାୟଂକ ଗହଣରେ କଂଗ୍ରେସରେ ଯୋଗଦେଲେ। ନୀଳମଣି ରାଉତରାୟ ଭାବିଥିଲେ ତାଙ୍କର ଦୀର୍ଘଦିନର ଅଭିଜ୍ଞତା ଦୃଷ୍ଟିରୁ ତାଂକୁ ଦଳର ନେତା ନିର୍ବାଚିତ କରାଯିବ ଓ ସେ ମୁଖ୍ୟମଂତ୍ରୀ ହେବେ; ମାତ୍ର ତାହା ହେଲାନାହିଁ। ଇଂଦିରା ଗାଂଧୀ ନିଜର ବିଶ୍ୱସ୍ତ ସହକର୍ମୀମାନଂକ ଭିତରୁ ଜଣକୁ ମୁଖ୍ୟମଂତ୍ରୀରୂପେ ନିଯୁକ୍ତ କରିଥାଂତି, ଏହା ଏକ ଜଣାଶୁଣା କଥା। ତେଣୁ ତାଂକର କେନ୍ଦ୍ରମଂତ୍ରି-ମଂଡଳରେ ପ୍ରଥମେ ଉପମଂତ୍ରୀ ଥିବା ଏବଂ ପରେ ରାଷ୍ଟ୍ରମଂତ୍ରୀ ହୋଇଥିବା

ରାଜ୍ୟସଭା ସଭ୍ୟ ଶ୍ରମତୀ ନନ୍ଦିନୀ ଶତପଥୀଙ୍କୁ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ନିଯୁକ୍ତ କରିବାକୁ ଚାହିଁଲେ; ଫଳରେ ୧୯୭୨ ମସିହା ଜୁନ୍ ୧୨ ତାରିଖରେ ଶ୍ରୀମତୀ ଶତପଥୀଙ୍କୁ ଓଡ଼ିଶା କଂଗ୍ରେସ ଦଳର ନେତ୍ରୀଭାବରେ ନିର୍ବାଚିତ କରାଗଲା । ତା' ପରଦିନ ସେ ମୁଖ୍ୟମନ୍ତ୍ରୀରୂପେ ଶପଥନେଲେ । ତାଙ୍କ ମନ୍ତ୍ରିମଣ୍ଡଳରେ କ୍ୟାବିନେଟ୍ ମନ୍ତ୍ରୀରୂପେ ନୀଳମଣି ରାଉତରାୟ, ବିନାୟକ ଆଚାର୍ଯ, ବ୍ରଜମୋହନ ମହାନ୍ତି, ବାଙ୍କବିହାରୀ ଦାସ, ଲକ୍ଷ୍ମଣ ମଲ୍ଲିକ ଓ ଗଙ୍ଗାଧର ପ୍ରଧାନ ଶପଥ ନେଇଥିଲେ । ସେ ଯାହାହେଉ, ନୀଳମଣି ରାଉତରାୟ କ୍ଷୁବ୍ଧ ଓ ଅସନ୍ତୁଷ୍ଟ ହୋଇଥିଲେ ।

**କେନ୍ଦୁପତ୍ରହିଁ କାଳହେଲା –**

କେନ୍ଦୁପତ୍ର ରାଜନୀତି ଯୋଗୁଁ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା । କେନ୍ଦୁପତ୍ର କମିସନି ନେଇ ମତଭେଦର ଆଶଙ୍କା ଦେଖାଦେଲା । ଶ୍ରୀ ନୀଳମଣି ରାଉତରାୟ ପୂର୍ବରୁ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ଅସନ୍ତୁଷ୍ଟ ଥିଲେ । ସେ ଆଉ ଅଧିକ ଦିନ ଅସନ୍ତୁଷ୍ଟ ଅବସ୍ଥାରେ କଂଗ୍ରେସ ଦଳରେ ରହିପାରିଲେନାହିଁ । ସେ ବିଜୁଙ୍କ ସଂଗେ ଅପଡ଼ ହୋଇ କଂଗ୍ରେସ ଦଳରେ ଯୋଗଦେଇଥିଲେ । ୧୯୭୩ ମସିହା ଫେବୃଆରୀ ୨୮ ତାରିଖ ରାତିରେ ଉଦ୍ୟାନ ମାର୍ଗର ଏକ ନିଭୃତ କୋଠରିରେ ଏକ ଗୁପ୍ତ ବୈଠକ ବସିଲା । ଏଥିରେ ଉପସ୍ଥିତ ଥିଲେ ବିଜୁବାବୁ, ମହତାବ ବାବୁ, ସିଂହ ଦେଓ ଓ ନୀଳମଣିବାବୁ ଇତ୍ୟାଦି । ସେହି ଗୁପ୍ତ ବୈଠକର ନିଷ୍ପତ୍ତି ଅନୁଯାୟୀ ୨୧ ଜଣ ପୂର୍ବତନ ଉତ୍କଳ କଂଗ୍ରେସ ବିଧାୟକ, କଂଗ୍ରେସ ଛାଡ଼ି ବିଜୁବାବୁଙ୍କ ନବଗଠିତ ପ୍ରଗତି ଦଳରେ ଯୋଗଦେଇଛନ୍ତି ବୋଲି ନୀଳମଣି ରାଉତରାୟ ମାର୍ଚ୍ଚ ପହିଲା ସକାଳେ ବାଚସ୍ପତିଙ୍କୁ ଜଣାଇଦେଲେ । ଏ ସଂବାଦ ଅଳ୍ପ ସମୟ ମଧ୍ୟରେ ବିଜୁଳି ବେଗରେ ବ୍ୟାପିଗଲା । ସେଦିନ ସକାଳେ ବିଧାନସଭାର ବୈଠକ ଡକାଯାଇଥାଏ । ଏହି ଆକସ୍ମିକ ସଂକଟର ସମ୍ମୁଖୀନ ହେବାପାଇଁ କ୍ୟାବିନେଟ୍‌ର ଜରୁରୀ ବୈଠକ ବସିଲା ଓ ଇସ୍ତଫା ଦେବା ପାଇଁ ନିଷ୍ପତ୍ତି ନିଆହେଲା । ନନ୍ଦିନୀ ଦେବୀ ରାଜ୍ୟପାଳଙ୍କୁ ତାଙ୍କ ମନ୍ତ୍ରୀ-ପରିଷଦର ଇସ୍ତଫା ଦେଲେ । ମନ୍ତ୍ରୀ-ପରିଷଦ ବିନା ବିଧାନସଭାର ଅଧିବେଶନ ଚାଲିପାରିବନାହିଁ; ଏଣୁ ମନ୍ତ୍ରିମଣ୍ଡଳର ଇସ୍ତଫାଦୃଷ୍ଟିରୁ ରାଜ୍ୟପାଳ ତୁରନ୍ତ ବିଧାନସଭା ଅଧିବେଶନ ଅନିର୍ଦ୍ଦିଷ୍ଟ କାଳ ପାଇଁ ସ୍ଥଗିତ ରଖିବାକୁ ଆଦେଶ ପଠାଇଲେ । ଫଳରେ ମନ୍ତ୍ରୀ-ପରିଷଦ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆଗତ କରିବାକୁ ବିରୋଧୀ ଦଳକୁ ସୁଯୋଗ ମିଳିଲା ନାହିଁ । (ଏକନ୍)

ଏଥିପୂର୍ବରୁ ଜନକଂଗ୍ରେସ ଓ ସ୍ୱତନ୍ତ୍ର ମିଳିତ ମନ୍ତ୍ରିମଣ୍ଡଳ ଠିକ୍ ଏହି କେନ୍ଦୁପତ୍ର କାରଣଯୋଗୁଁ ଭାଙ୍ଗିଯାଇଥିଲା । ୧୯୬୯ ମସିହା ଜୁଲାଇ ୨୩ ତାରିଖରେ ମଧ୍ୟ ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ସରକାର କେନ୍ଦୁପତ୍ର ରାଜନୀତିରେ ଶିକାର

ହୋଇ ଭୂଷୁଡ଼ିପଡ଼ିଥିଲା । ଏହି ସରକାରର ସ୍ୱତଂତ୍ରଦଳ ପକ୍ଷରୁ ନିଯୁକ୍ତ ମୁଖ୍ୟମଂତ୍ରୀ ରାଜେଂଦ୍ର ନାରାୟଣ ସିଂହ ଦେଓ, ଜଂଗଲ ବିଭାଗ ମଂତ୍ରୀ ହରପ୍ରସାଦ ମହାପାତ୍ର ଓ ଅଇଁଠୁ ସାହୁ ପ୍ରମୁଖଂକ ନାମରେ କେଂଦୁପତ୍ର ଦୁର୍ନୀତିର ଅଭିଯୋଗପତ୍ର ହାଇକୋର୍ଟରେ ଦାଖଲ ହୋଇଥିଲା । ଏମାନେ ନିଷ୍ପତ୍ତି କରିଥିଲେ ଯେ, ଯେଉଁ ଏଜେଂଟ୍‌ମାନଂକୁ ପୂର୍ବ ବର୍ଷ କେଂଦୁପତ୍ର ସଂଗ୍ରହ କରିବା ଓ ବିକ୍ରୟ କରିବାକୁ ଠିକାଦିଆଯାଇଥିଲା, ସେହିମାନେ କେବଳ ଏହି ବର୍ଷ ସେ ସୁଯୋଗ ପାଇବେ । ହାଇକୋର୍ଟ ଦରଖାସ୍ତଟିକୁ ଖାରଜ କରିଦେଇଥିଲେ । ବିଶିଷ୍ଟ ଆଇନଜ୍ଞ ଏମ୍. ସି. ଚଗଲା ଦରଖାସ୍ତକାରୀଂକ ପକ୍ଷରୁ ବାଦାନୁବାଦ କରିଥିଲେ । ଏହାପରେ ଦରଖାସ୍ତକାରୀମାନେ ସୁପ୍ରିମ୍ କୋର୍ଟରେ ଅପିଲ୍ କରଂତି । ସୁପ୍ରିମ୍‌କୋର୍ଟ ଅପିଲ୍ ମଂଜୁର କରି ଓଡ଼ିଶା ସରକାରଂକ କାର୍ଯ୍ୟର କଠୋର ସମାଲୋଚନା କରିଥିଲେ । ବିନା ଟେଂଡର୍‌ରେ କେଂଦୁପତ୍ର ଠିକା ଦେଇଥିବାଯୋଗୁ ଜନକଂଗ୍ରେସ ଓ ସ୍ୱତଂତ୍ର ସରକାର କଠୋର ସମାଲୋଚନାର ଶିକାର ହୋଇଥିଲେ । (ରାସବିହାରୀ ପଂଡା ବନାମ ଓଡ଼ିଶା ସରକାର ଶୀର୍ଷକ ନିଷ୍ପତ୍ତି ୧୯୬୯ ମସିହାରେ ଆଇନ୍ ପତ୍ରିକା ଅଲ୍ ଇଂଡିଆ ରିପୋର୍ଟରେ ପ୍ରକାଶପାଇଛି ।)

ସୁପ୍ରିମକୋର୍ଟ ରାୟରେ ଓଡ଼ିଶା ସରକାର ସଂବିଧାନର ଚଉଦ ଅନୁଚ୍ଛେଦରେ ସନ୍ନିବିଷ୍ଟ 'ସମାନ-ଅଧିକାର' ନୀତିର ବିରୁଦ୍ଧାଚରଣ କରିଛଂତି ବୋଲି ମତ ପ୍ରକାଶପାଇଥିଲା । ମିଳିତ ସରକାରର ଅଂଶୀଦାର ଜନକଂଗ୍ରେସର ନେତା ଓ ଉପମୁଖ୍ୟମଂତ୍ରୀ ପବିତ୍ରମୋହନ ପ୍ରଧାନ ଏହି କେଂଦୁପତ୍ର ଦୁର୍ନୀତି ପରେ ସରକାରରୁ ନିଜ ଦଳର ସମର୍ଥନ ପ୍ରତ୍ୟାହାର କରିନେଇଥିଲେ; ଫଳରେ ମିଳିତ ସରକାରର ପତନ ଘଟିଥିଲା ।

କେଂଦ୍ରରେ ଇଂଦିରା ଗାଂଧୀ ସରକାର ଏବଂ ରାଜ୍ୟରେ ନଂଦିନୀ ସରକାର ଜରୁରୀ ଆଇନ୍ ବା Emergency ଜାରି କରି ସମଗ୍ର ଦେଶକୁ ଏକ ବଂଦିଶାଳାରେ ପରିଣତ କରିଥିଲେ । ଜୟପ୍ରକାଶ ନାରାୟଣ ପ୍ରମୁଖଂକ ସହିତ ରାଜ୍ୟର ବହୁ ବିଶିଷ୍ଟ ନେତା ଯଥା – ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ବିଜୁ ପଟ୍ଟନାୟକଂକୁ ମାସ ମାସ ଜେଲ୍‌ରେ ରଖାଯାଇଥିଲା ।

**ଗଡ଼ଜାତ ପ୍ରଜା-ଆଂଦୋଳନରେ ଆମର କାର୍ଯ୍ୟ –**

ଗଡ଼ଜାତ ପ୍ରଜା-ଆଂଦୋଳନ ବେଳେ ମୁଁ ରେଭେନ୍ସା କଲେଜ୍‌ରେ ବି.ଏ. କ୍ଲାସରେ ପଢୁଥିଲି । ପ୍ରାୟ ପ୍ରତିଦିନ ସଂଧ୍ୟାରେ ଆମେ ସମସ୍ତେ ନବକୃଷ୍ଣ ଚୌଧୁରୀଂକ କାଠଯୋଡ଼ୀ କୂଳ ବାସଭବନ ସାମ୍ନାରେ ମିଳିତ ହୋଇ ସମସ୍ତ ବିଷୟ ଆଲୋଚନା କରୁଥିଲୁଁ । ମାଳତୀ ଦେବୀ, ସାରଂଗଧର ଦାସ, ଭଗବତୀ ପାଣିଗ୍ରାହୀ, ସୁରେଂଦ୍ରନାଥ ଦ୍ୱିବେଦୀ, ଅନଂତ ପଟ୍ଟନାୟକ, ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାୟତ୍ ପ୍ରାୟ ନିୟମିତ ଆସୁଥିଲେ । ଆମେ ସମସ୍ତେ କଂଗ୍ରେସ

ସୋସାଲିଷ୍ଟ ଦଳର ସଭ୍ୟ ଥିଲୁଁ। ତାହା ମଧ୍ୟରୁ କେହି କେହି ନୂଆ ଗଢ଼ାହୋଇଥିବା ଏବଂ ନିଷିଦ୍ଧ ଥିବା କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲେ। ମୁଁ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ନଥିଲି; ମାତ୍ର ସେମାନଂକ ସହିତ ମିଶି ଗଡ଼ଜାତ ପ୍ରଜା-ଆଂଦୋଳନ, ଛାତ୍ର-ଆଂଦୋଳନ ଏବଂ କୃଷକ ଆଂଦୋଳନ ପ୍ରଭୃତିରେ ନେତୃତ୍ୱ ଭୂମିକା ନେଉଥିଲି।

ଗଡ଼ଜାତ ଭିତରୁ କ'ଣ ଖବର ଆସିଲା, ତାହା ସେଦିନ ସଂଧ୍ୟା ସୁଦ୍ଧା ପହଂଚିଥିବା ରିପୋର୍ଟମାନଂକରୁ ଜାଣିବାକୁ ପାଉଁ। କେଉଁଠି ଗୁଳି ଚାଲିଲା, କେଉଁଠି ଲାଠିମାଡ଼ ହେଲା, ସମସ୍ତ ଖବର ଆସି ପହଂଚିଯାଏ। ତା'ପର ଦିନ କ'ଣ କରିବାକୁ ହେବ; ତାହା ସମସ୍ତେ ବସି ଆଲୋଚନା କରୁଥିଲୁଁ। ମୋଗଲବଂଦୀ ଓ ଗଡ଼ଜାତ ସୀମାଂତବର୍ତ୍ତୀ ଗାଁ-ଗଂଡାକୁ ଯାଇ ଖବର ସଂଗ୍ରହ କରିବାକୁ ପଡୁଥିଲା। ମାତ୍ର ମୋଗଲବଂଦୀ ଗାଁ ଉପରେ ରଜାଘର ଲୋକମାନେ ସତର୍କ ନଜର ରଖିଥିଲେ। ସେମାନେ ସେ ଗାଁରୁ କାହାକୁ ଟେକିନେଇ 'ରାଜା ଇଲାକାରୁ ଧରିଛୁଁ' ବୋଲି କହି ଜେଲ୍‌ରେ ପୂରାଇଦେଉଥିଲେ; ଯେପରିକି ପୂର୍ବକଥିତ ପ୍ରକାରେ ଅନଂତ ପଟ୍ଟନାୟକଂକୁ ମୋଗଲବଂଦୀରୁ ଧରିନେଇ ଢେଂକାନାଳ ଜେଲ୍‌ରେ ରଖିଥିଲେ। ଢେଂକାନାଳ ଷ୍ଟେସନ୍ କ୍ୟାଂଟିନ୍ ଭିତରୁ ମଧ୍ୟ ଡାକ୍ତର ରବି ଘୋଷଂକୁ ଧରିନେଇଥିଲେ। ତେଣୁ ଏହା ଆଦୌ ବିପଦମୁକ୍ତ ନଥିଲା।

ଏହାଛଡ଼ା ମୁଁ ଅନେକ ବିପ୍ଳବାତ୍ମକ କବିତା ଲେଖିଥିଲି, ଯାହା ଲୋକଂକ ମନରେ ଶତସିଂହର ବଳ ସଂଚାର କରୁଥିଲା। ଏହାଛଡ଼ା ଲଂବା ଛୁଟି ପଡ଼ିଲେ ଶରଣାର୍ଥୀ ଶିବିରମାନଂକର ଦାୟିତ୍ୱ ନେବା ମୋର ଅନ୍ୟତମ କାମ ଥିଲା।

**ବାଜି ରାଉତର ପ୍ରେତାତ୍ମା –**

କଟକରେ ବାଜି ରାଉତର ଶବଦାହର ପରଦିନ ଟାଉନ୍‌ହଲ୍ ପଡ଼ିଆରେ ଏକ ବିରାଟ ପ୍ରତିବାଦ ସଭା ଅନୁଷ୍ଠିତ ହୋଇଥିଲା। ହଜାର ହଜାର ଲୋକ "ବାଜି ରାଉତ ଜିଂଦାବାଦ୍", "ଢେଂକାନାଳ ରାଜା ମୁର୍ଦ୍ଦାବାଦ୍", "ବ୍ରିଟିଶ୍ ସାମ୍ରାଜ୍ୟବାଦ୍ ଧ୍ୱଂସହେଉ", "ଇନ୍‌କିଲବ୍ ଜିଂଦାବାଦ୍" ଧ୍ୱନିମାନ ଦେଇ ସଭାରେ ଯୋଗଦେଇଥାଂତି। ବେଳେବେଳେ ଉଦ୍‌ବେଳିତ ଜନତା ଭିତରୁ ବାଜି ରାଉତ "ଅମର ରହେ" ଧ୍ୱନି ଉଠୁଥାଏ। ଏତିକିବେଳେ ସଭାରେ କିଏ ଜଣେ ଆସି ଖବର ଦେଲା ଯେ ଢେଂକାନାଳ ରଜା ପୁଲିସ୍ ଫୌଜ ଘେରରେ ତାଳଚେର ଗାଡ଼ିରେ କଟକ ଆସିଛି। ସେ ଫୌଜ ଗହଣରେ ଏକ ଫାଷ୍ଟକ୍ଲାସ୍ ବଗିରେ କଲିକତା ଯିବ। ସଭାରେ ପ୍ରଚଂଡ ଉତ୍ତେଜନା ଖେଳିଗଲା। ସମସ୍ତଂକ ମୁହଁରେ ସେହି ଗୋଟିଏ କଥା – ଚାଲ ଷ୍ଟେସନ୍‌କୁ; କେଉଁ ପୁଲିସ୍ ତାକୁ ରକ୍ଷାକରିବ ଦେଖିବା। ମାତ୍ର ନବବାବୁ ଓ ଆମେ ସମସ୍ତେ ଲୋକମାନଂକୁ ବୁଝାଇ-ଶୁଝାଇ ସଭାରେ ଶାଂତି ସ୍ଥାପନ କଲୁ; ପୁଣି ସଭାକାର୍ଯ୍ୟ ଚାଲିଲା। ନବବାବୁ ତାଂକ ଭାଷଣରେ ଓଜସ୍ୱିନୀ ଭାଷାରେ କହିଲେ – ରାଜା ଫାଷ୍ଟକ୍ଲାସ୍ କଂପାର୍ଟମେଂଟ୍‌ରେ

ଯିବ। ତା' ପାଖ ଡବାରେ ପୋଲିସ୍ ଛାଉଣି। ସେ କଂପାର୍ଟମେଂଟ୍‌ର ଦରଜା ଓ ଝରକିକି ଭିତରୁ ବନ୍ଦକରି ମନେକରୁଛି ଯେ, ସେ ଏଥର ନିରାପଦ। କିଂତୁ ବାଜି ରାଉତ ଓ ଅନ୍ୟ ସହିଦମାନଂକର ପ୍ରେତାତ୍ମା ତା' ଆଗରେ ଅଟ୍ଟହାସ୍ୟ କରି ନାଚୁଛଂତି; କହୁଛଂତି— ତୁ ହାତ୍ୟାକାରୀ, ତୁ ଖୁନୀ, ତୁ ଦେଶଦ୍ରୋହୀ ଛ'ଅଛ'ଅଟା କଂକାଳର ଅଟ୍ଟହାସ୍ୟରେ କଂପାର୍ଟମେଂଟ୍‌ଟି ଫାଟିପଡୁଛି। . . .''

ପୂର୍ବତନ ଆଡ୍‌ଭୋକେଟ୍ ଜେନେରାଲ୍ ଶ୍ରୀ ଗଂଗାଧର ରଥ ମଧ୍ୟ ତାଂକ ଆତ୍ମଜୀବନୀ 'ଭୁଲି ନାହିଁ'ରେ ଏହି ଘଟଣାର ଉଲ୍ଲେଖ କରିଛଂତି। (ପୃ-୬୧-୨୯) ସେ ଲେଖିଛଂତି— ''ସେକ୍ସପିଅରଂକ 'ଜୁଲିଅସ୍ ସିଜର୍' ନାଟକରେ ସିଜରଂକ ହତ୍ୟା ପରେ ହତ୍ୟାକାରୀ ବ୍ରୁଟସଂକୁ ଆକ୍ଷେପ କରି ସିଜରଂକ ବଂଧୁ ଆଂଟୋନୀ ଯେଉଁ ବକ୍ତୃତା ଦେଇଥିଲେ, ଇଂରାଜୀ ସାହିତ୍ୟରେ ତାହା ଏକ ଅବିସ୍ମରଣୀୟ ରଚନା। କିଂତୁ ବାଳକ ବାଜି ରାଉତର ହତ୍ୟା ଉପରେ ନବବାବୁଂକର ଭାଷଣ ଥିଲା ତା'ଠାରୁ ଆହୁରି ତୀକ୍ଷ୍ଣ, ଆହୁରି ଶାଣିତ, ଆହୁରି ଉତ୍ତେଜକ ଓ ଶକ୍ତିମାନ୍।''

କହିଥିଲେ— ''ବାଜି ରାଉତ ଆମ ନିକଟରେ ନାହିଁ, ଦୂରରେ ମଧ୍ୟ ନାହିଁ, ସେ ମରିନାହିଁ, ବାଜି ରାଉତ ମରଂତିନାହିଁ, ତା'ର ଏକ ଏକ ବିଂଦୁ ରକ୍ତରୁ ହଜାର ହଜାର ବାଜି ରାଉତ ଜନ୍ମନେଉଛଂତି ରକ୍ତବୀଜପରି . . .।''

ସେତେବେଳେ ସଭା-ସମିତିମାନଂକରେ ମାଇକ୍ ବା ଡାକବାଜି ଯଂତ୍ର ବ୍ୟବହୃତ ହେଉନଥିଲା। ତଥାପି ବକ୍ତାମାନେ ଯାହା କହୁଥିଲେ, ତାହା ହଜାର ହଜାର ଶ୍ରୋତାଂକ ନିକଟରେ ପହଂଚିପାରୁଥିଲା।

# ସପ୍ତଦଶ ଉଲ୍ଲାସ

## ଛାତ୍ର-ଆଂଦୋଳନରେ ମୋର ଭୂମିକା

ମୁଁ ରେଭେନ୍ସା କଲେଜରେ ପଢୁଥିବା ବେଳେ ଛାତ୍ର-ଆଂଦୋଳନରେ ମୁଖ୍ୟ ଭୂମିକା ନେଇଥିଲି। ସେତେବେଳକୁ 'ନିଖିଳ ଭାରତ ଛାତ୍ର ଫେଡରେସନ୍' ଜନ୍ମନେଲାଣି। ଆମେ ସମସ୍ତେ ଏହାର ସଭ୍ୟ ଥିଲୁ। ନିଖିଳ ଭାରତ ଛାତ୍ର ସମ୍ମିଳନୀ ପ୍ରତିବର୍ଷ କଟକରେ ହୋଇଆସୁଥିଲା। କଟକହିଁ ଓଡ଼ିଶାର ରାଜଧାନୀ ଥିଲା; ମାତ୍ର ଏହା ସରକାରୀ ଢାଂଚାରେ ହେଉଥିଲା। ବିଭିନ୍ନ ସ୍କୁଲରୁ ଛାତ୍ର-ପ୍ରତିନିଧିମାନେ ଜଣେ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ଏ ସମ୍ମିଳନୀରେ ଯୋଗ ଦେଉଥିଲେ। ମାତ୍ର ୧୯୩୬ ବେଳକୁ ଏହା ନୂଆ ମୋଡ଼ ନେଲା। ଏହା ସରକାରୀ ପ୍ରଭାବ ହଟାଇ ଏକ ଗଣତାଂତ୍ରିକ ଛାତ୍ର-ସଂଗଠନରେ ପରିଣତ ହେଲା। ୧୯୩୫ ମସିହାରେ କଟକଠାରେ ଯେଉଁ ଛାତ୍ର ସମ୍ମିଳନୀ ବସିଥିଲା, ସେଥିରେ ଉଦ୍‌ବୋଧନ ଦେଇଥିଲେ ଖୋଦ୍ ଡି.ପି. ସାହେବ୍। ମାତ୍ର ୧୯୩୬ ସାଲରେ ଏହା ସ୍ୱାଧୀନ ରୂପ ନେଲା। ସେ ବର୍ଷ ଅଭ୍ୟର୍ଥନା ସମିତିର ସଭାପତି ହୋଇଥାଂତି କବି ଅଂନତ ପଟ୍ଟନାୟକ। ତାଂକର ଉଦ୍‌ବୋଧନୀ ସଂଗୀତ 'ଯେ ଦୀପ ଜଳିଲା ଆଜି, ଜଳାଅ ଜଳାଅ ତାରେ' ଛାତ୍ରମାନଂକ ଭିତରେ ବେଶ୍ ଉଦ୍ଦୀପନା ଆଣିଦେଇଥିଲା। ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ, ଲବଣ ସତ୍ୟାଗ୍ରହ ସମସ୍ତ ଦେଶରେ ଏକ ନୂତନ ଗଣତାଂତ୍ରିକ ଚେତନା ଓ ମୂଲ୍ୟବୋଧ ଆଣିଦେଇଥିଲା।

ଛାତ୍ରମାନେ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହେବାକୁ ଲାଗିଲେ। ଏହି ସମ୍ମିଳନୀର ସଭାପତି ହୋଇଥିଲେ ତରୁଣ ଆଡ୍‌ଭୋକେଟ୍ ହରିହର ମହାପାତ୍ର। ସାଧାରଣ ସଂପାଦକରୂପେ ଶ୍ରୀ ବିଶ୍ୱନାଥ ପଶାୟତ୍ ଓ ସହ-ସଂପାଦକ ଶ୍ରୀ ବାଳମୁକୁଂଦ ଦାସ ନିର୍ବାଚିତ ହୋଇଥିଲେ।

ଏଥିପୂର୍ବରୁ ପ୍ରିନ୍‌ସିପାଲ୍‌ମାନେ ଓ ଶିକ୍ଷକମାନେ ଏହି ସମ୍ମିଳନୀରେ ଭାଷଣ ଦେଉଥିଲେ। ସେତେବେଳକୁ ଓଡ଼ିଶାରେ କେବଳ ଗୋଟିଏ ପୂର୍ଣ ଡିଗ୍ରୀ କଲେଜ ଥାଏ – ତାହା ହେଉଛି ରେଭେନ୍‌ସା କଲେଜ। ଅନ୍ୟ ଦୁଇଟି କଲେଜ ଯଥା ଖଲିକୋଟ କଲେଜ ଓ ପାରଳାଖେମୁଣ୍ଡି କଲେଜ କେବଳ ଆଇ.ଏ. ପର୍ଯଂତ ଶିକ୍ଷାଦେଉଥାଂତି। କଟକରେ ମେଡ଼ିକାଲ୍ ସ୍କୁଲ୍, ଇଂଜିନିୟରିଂ ସ୍କୁଲ୍, ତିନୋଟି ଟ୍ରେନିଂ ସ୍କୁଲ୍ ଥାଏ ଓ ଗୋଟିଏ ଟ୍ରେନିଂ କଲେଜ ଥାଏ; ବାକି ମୁଷ୍ଟିମେୟ ସ୍କୁଲ୍। ତେଣୁ ମୁଖ୍ୟତଃ ସ୍କୁଲ୍‌ଛାତ୍ରମାନେହିଁ ଏହି ଛାତ୍ର ସମ୍ମିଳନୀମାନଂକରେ ଅଂଶ ଗ୍ରହଣ କରୁଥିଲେ।

୧୯୩୭ ମସିହା ମଧ୍ୟଭାଗରେ ମୁଁ କଲିକତା ସି.ଟି. କଲେଜରୁ ଆଇ.ଏ. ପାସ୍ କରି ଆସି ରେଭେନ୍ସା କଲେଜ୍‌ରେ ନାମ ଲେଖାଇଲି। ସେତେବେଳକୁ ନିଖିଳ ଭାରତ ଛାତ୍ର ସଂଘ (Federation) ଜନ୍ମହୋଇଥାଏ ଏବଂ ଏହାର ସର୍ବଭାରତୀୟ କମିଟିରେ ସଭ୍ୟ ଥାଆଂତି ଓଡ଼ିଶାର ଶ୍ରୀ ବୈଦ୍ୟନାଥ ରଥ। ନିଖିଳ ଭାରତ ଛାତ୍ରସଂଘର ଓଡ଼ିଶା ଶାଖା ୧୯୩୭ ମସିହାରୁ ମଜଭୁତ୍ ଆକାର ନେଇ ସ୍ଥାପିତହେଲା। ସର୍ବଭାରତୀୟ ଛାତ୍ର ସଂଘ ସହ ସଂଯୁକ୍ତ ହେବାର ପ୍ରସ୍ତାବ ହେଲା। ଏହାର ପ୍ରତିଷ୍ଠାତାମାନେ ହେଲେ— ବୈଦ୍ୟନାଥ ରଥ, ରାମକୃଷ୍ଣ ପତି, ସଚ୍ଚି ରାଉତରାୟ, ବିଜୟଚଂଦ୍ର ଦାସ, ଅଶୋକ ଦାସ, ବିବୁଧେଂଦ୍ର ମିଶ୍ର, ସୁରଜମଲ ଶାହା, ନୀଳମଣି ରାଉତରାୟ, ମନମୋହନ ମିଶ୍ର, ଗଂଗାଧର ମହାପାତ୍ର ପ୍ରଭୃତି। କିଛିଦିନ ପରେ ବୀରେନ୍ ମିତ୍ର ଆସି ଆମ ସଂଗେ ଯୋଗଦେଲେ। (ଆଡ୍‌ଭୋକେଟ୍ ରାମଚଂଦ୍ର ରାମଂକ ଲେଖା ପ୍ରଣୀତ 'ସଂଗ୍ରାମୀ' ପୁସ୍ତକ ଦ୍ରଷ୍ଟବ୍ୟ)

ଉଦାରପନ୍ଥୀ ସରକାରୀ କର୍ମଚାରୀମାନଂକର ଭାଷଣ ଶୁଣିବା ପରିବର୍ତ୍ତେ ଏଣିକି ଛାତ୍ର ସମ୍ମିଳନୀମାନଂକରେ ଶ୍ରୋତାମଂଡଳୀ ଶୁଣିଲେ ସରକାରୀ ବିରୋଧୀ ବକ୍ତୃତା ତଥା ଗଣତାଂତ୍ରିକ ମୂଲ୍ୟବୋଧ ପ୍ରତିଷ୍ଠା ପାଇଁ ବିପ୍ଳବାତ୍ମକ ଭାଷଣ। ପ୍ରତି ସ୍କୁଲ୍-କଲେଜରେ ଛାତ୍ରସଂଘର ଶାଖାମାନ ସ୍ଥାପିତହେଲା। ମୁଁ ଓ ବିଶ୍ୱନାଥ ପଶାଏତ୍ ଖୋର୍ଧା ସ୍କୁଲ୍‌କୁ ଯାଇ ଛାତ୍ର-ସଂଗଠନକୁ ଦୃଢ଼ କରିବା ପାଇଁ ଭାଷଣ ଦେଇଥିଲୁ। ପରେ ପରେ ଶ୍ରୀ ଅଶୋକ ଦାସ୍, ବିବୁଧେଂଦ୍ର ମିଶ୍ର ଓ ସୁରଜମଲ ଶାହା ଯାଇଥିଲେ। ଏ ସମସ୍ତ ନେତୃବୃନ୍ଦଂକ ବକ୍ତୃତା ଖୋର୍ଧା ସ୍କୁଲ୍ ନିକଟ ପଲଟଣ ପଡ଼ିଆରେ ଛାତ୍ରମାନେ ଶୁଣିଲେ। ଏ ଖବର ପ୍ରବଳପରାକ୍ରମୀ ହେଡ୍‌ମାଷ୍ଟର ରାଏସାହେବ ବାଂକନିଧି ପଟ୍ଟନାୟକଂକ କାନକୁ ଗଲା। ସେ ସଂଗଠନକୁ ଭାଂଗିଦେବାର ସମସ୍ତ ଉଦ୍ୟମ କଲେ ଓ ଶ୍ରୀ ରାମଚଂଦ୍ର ମିଶ୍ର ଓ ବସଂତ କୁମାର ମହାଂତିଂକୁ ସ୍କୁଲ୍‌ରୁ ବହିଷ୍କାର କଲେ। ଉଭୟେ ଖୋର୍ଧା ନିକଟସ୍ଥ ଓଲସିଂ ହାଇସ୍କୁଲ୍‌ରେ ନାମ ଲେଖାଇଲେ। ସେଥିପାଇଁ ମଧ୍ୟ ହେଡ୍‌ମାଷ୍ଟର ଶ୍ରୀକୃଷ୍ଣ ମହାଂତିକ ଉପରେ ବହୁ ସରକାରୀ ଚାପ ପଡ଼ିଲା। କିଂତୁ ସ୍କୁଲ୍‌ର ପ୍ରତିଷ୍ଠାତା ଶ୍ରୀ ଦାଶରଥି ପଟ୍ଟନାୟକଂକ ସ୍ୱଦେଶବତ୍ସଳତା ଓ ଦେଶପ୍ରେମ ଏବଂ ଶ୍ରୀ କୃଷ୍ଣ ମହାଂତିଂକ ସ୍ୱାଧୀନ ଚିଂତା ସରକାରୀ ଚାପ ଆଗରେ ମୁଂଡ ନୁଆଁଇଲା ନାହିଁ। ରାମଚଂଦ୍ର ଓ ବସଂତ ଓଲସିଂ ସ୍କୁଲ୍‌ର ଛାତ୍ରମାନଂକୁ ସଂଗଠିତ କରି ସେଠାରେ ଛାତ୍ର ସଂଘର ଶାଖା ଖୋଲିଲେ ଓ ଏକ ବିରାଟ ଛାତ୍ର ସମ୍ମିଳନୀ କଲେ। ସମ୍ମିଳନୀରେ ମାଳତୀ ଚୌଧୁରୀ ମୁଖ୍ୟବକ୍ତା ଭାବରେ ଯୋଗଦେଇଥିଲେ। ('ସଂଗ୍ରାମୀ' ପୁସ୍ତକ ଦ୍ରଷ୍ଟବ୍ୟ)

**କଂଗ୍ରେସ ସରକାରର ପ୍ରତିକ୍ରିୟାଶୀଳ ନୀତି—**

ଓଡ଼ିଶାରେ ସେତେବେଳେ କଂଗ୍ରେସ ସରକାର ଶାସନ କରୁଥାଏ। ପ୍ରଧାନମଂତ୍ରୀ ଥାଂତି ବ୍ରହ୍ମପୁର(ଗଂଜାମ)ର ଶ୍ରୀ ବିଶ୍ୱନାଥ ଦାସ ଓ ଅନ୍ୟ ଦୁଇଜଣ ମଂତ୍ରୀ

ଥାଂତି କଟକର ନିତ୍ୟାନଂଦ କାନୁନ୍‌ଗୋ ଏବଂ ସଂବଲପୁରର ବୋଧରାମ ଦୁବେ। ଯଦୁମଣି ମଂଗରାଜ ଓ ରାଜକୃଷ୍ଣ ବୋଷ୍ ପାର୍ଲିଆମେଂଟାରୀ ସେକ୍ରେଟାରୀ ନିଯୁକ୍ତ ହୋଇଥାଂତି। ଓଡ଼ିଶା ଆସଂବ୍ଲିର ବାଚସ୍ପତି ଥାଂତି ବାଲେଶ୍ୱରର ମୁକ୍ତାର ମୁକୁଂଦ ପ୍ରସାଦ ଦାସ। ଓଡ଼ିଶା ଆସଂବ୍ଲି ସେତେବେଳେ ରେଭେନ୍ସା କଲେଜରେ ବସୁଥାଏ ଏବଂ ସେକ୍ରେଟେରିଏଟ୍ ଥାଏ ଆଜିର ପୁରୁଣା ସେକ୍ରେଟେରିଏଟ୍।

**ଶିକ୍ଷା କୋର୍ଡ୍‌ର ପରିବର୍ତନ ଦାବି –**

ଶିକ୍ଷା କୋର୍ଡ୍‌ରେ ଆମୂଳ ପରିବର୍ତନ ଆଣି ଛାତ୍ରମାନଂକୁ ନିଜ ଇଚ୍ଛାମୁତାବକ ସଂବାଦପତ୍ର ପଢ଼ିବାର ଅଧିକାର ଦେବା ଏବଂ ଶିକ୍ଷାନୁଷ୍ଠାନରୁ ଦଂଡବିଧି ଉଠାଇଦେବା ପାଇଁ ବା କୋହଳ କରିବା ପାଇଁ ଦାବି ଇତ୍ୟାଦି ନେଇ ଛାତ୍ରମାନେ ଆଂଦୋଳନକଲେ। ଛାତ୍ରମାନଂକ ପକ୍ଷରୁ ବହୁ ଦାବି ଓ ଆଂଦୋଳନ ପରେ ସରକାର ଶିକ୍ଷା କୋର୍ଡ୍‌ରେ ଆବଶ୍ୟକୀୟ ପରିବର୍ତନ ଆଣିବା ପାଇଁ ଏକ ଶିକ୍ଷା କମିଟି ବସାଂତି। ଏଥିରେ ସଦସ୍ୟ ଥିଲେ– (୧) ଓଡ଼ିଶା ଶିକ୍ଷାବିଭାଗର ଡାଇରେକ୍ଟର, (୨) ଉତ୍ତର-ଓଡ଼ିଶାର ଶିକ୍ଷା ନିର୍ଦ୍ଦେଶକ, (୩) ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହରେକୃଷ୍ଣ ମହତାବ, (୪) କଟକ ମ୍ୟୁନିସିପାଲିଟି ଚେୟାରମ୍ୟାନ୍ ଭାଗୀରଥି ମହାପାତ୍ର, (୫) ପ୍ରଫେସର ପି. କେ. ପରିଜା, (୬) ପୂର୍ବତନ ଗଂଜାମ ଜିଲ୍ଲା ଶିକ୍ଷା-ନିର୍ଦ୍ଦେଶକ ଶ୍ରୀ ଶିବରାମ ରଥ।

କମିଟି ନିମ୍ନଲିଖିତ ସୁପାରିଶ କଲେ ଛାତ୍ରମାନଂକୁ କେତେକ ନିର୍ଦ୍ଦିଷ୍ଟ ଖବରକାଗଜ ପରିବର୍ତେ ନିଜର ଇଛାମୁତାବକ ଅନ୍ୟ ଖବରକାଗଜମାନ ପଢ଼ିବାର ଅଧିକାର ଦିଆଯିବ; ମାତ୍ର ଅଶ୍ଳୀଳ ଓ ସାଂପ୍ରଦାୟିକ ସଂବାଦ ପରିବେଷଣ କରୁଥିବା ଖବରକାଗଜ ନୁହେଁ।

କେବଳ ଅଂତେବାସୀ ଛାତ୍ରଂକ ବ୍ୟତୀତ ଅନ୍ୟ କଲେଜ ଛାତ୍ରଂକୁ ରାଜନୈତିକ ସଭା-ସମିତିରେ ଯୋଗଦେବାପାଇଁ କର୍ତୃପକ୍ଷଂକ ଅନୁମତି ପ୍ରୟୋଜନ ହେବ ନାହିଁ। କିଂତୁ ଛାତ୍ରମାନେ ସେ ସଭାମାନଂକରେ ସକ୍ରିୟ ଅଂଶ ଗ୍ରହଣ କରିବେ ନାହିଁ। ଶାଂତିଭଂଗର ଆଶଂକା ଥିଲେ କିଂବା ସାଂପ୍ରଦାୟିକଭାବ ଉଦ୍ରେକ ହେବାର ସଂଭାବନା ଥିଲେ ଅଧକ୍ଷ ସମସ୍ତ ଛାତ୍ରଂକୁ ସେପରି ସଭାରେ ଯୋଗଦେବାରୁ ନିବୃତ୍ତ କରିବା ପାଇଁ ପଦକ୍ଷେପ ନେଇପାରିବେ। କୌଣସି ରାଜନୈତିକ ସମାରୋହରେ ସାମାଜିକ କାର୍ଯ ପାଇଁ ସ୍ୱେଚ୍ଛାସେବକ କାର୍ଯ କରିବାକୁ ବଛାହେବା ଅର୍ଥ କୌଣସି କାର୍ଯକ୍ରମରେ ଯୋଗଦେବା ବୁଝାଯିବନାହିଁ। କୌଣସି ରାଜନୈତିକ ଉଦ୍ଦେଶ୍ୟ ପାଇଁ ଛାତ୍ର ସ୍ୱେଚ୍ଛାସେବକଂକୁ ବ୍ୟବହାର କରାଯାଇ ପାରିବ ନାହିଁ।

ସରକାରୀ ବା ବେସରକାରୀ ସାହାଯ୍ୟପ୍ରାପ୍ତ କୌଣସି କଲେଜ, କଲେଜ ବାହାରର ସରକାରୀ ଅନୁମତି ପାଇନଥିବା କ୍ଲବ୍ ବା ଅନୁଷ୍ଠାନରେ ଯୋଗଦେବାକୁ ଚାହିଁଲେ, ଅଧକ୍ଷଂକ ଅନୁମତି ନେବାକୁ ପଡ଼ିବ। ଏ ନିୟମ ଲଂଘନ କଲେ

ତାହା ଗୁରୁତର ଅପରାଧରୂପେ ଗଣିତ ହେବ। ବିଧିବଦ୍ଧ ଲିଖିତ ଦରଖାସ୍ତ ଦେଇ ଅଧ୍ୟକ୍ଷଙ୍କଠାରୁ ଛାତ୍ରର ପିତା ବା ଅଭିଭାବକ ଅନୁମତି ନେଇପାରିବେ।

**ଦଂଡ ବିଧାନ**— ଦଶମ, ଏକାଦଶ ଶ୍ରେଣୀ ବା ୫, ୬ ଫର୍ମର ସ୍କୁଲ୍ ଛାତ୍ରମାନେ ରାଜନୈତିକ ସଭାରେ ଯୋଗଦେବାରେ ବାଧାନାହିଁ; କିଂତୁ ସରକାରୀ ନୀତି ଅନୁସାରେ ସ୍କୁଲ୍ ପିଲାମାନେ ରାଜନୀତିରେ ପ୍ରତ୍ୟକ୍ଷ ସହଯୋଗ କରିବା ଉଚିତ ନୁହେଁ।

ଛାତ୍ରାବାସର କୌଣସି ନିୟମ ବଦଳାଇବା ପାଇଁ କମିଟି ବର୍ତ୍ତମାନ ସୁପାରିଶ କରୁନାହାଂତି। ଶାସ୍ତି ସ୍ୱରୂପ ଡ୍ରିଲ୍, ଅଟକ ପ୍ରଭୃତିକୁ କମିଟି ବର୍ତ୍ତମାନ ବିଚାର କରୁନାହାଂତି। ପ୍ରଧାନ ଶିକ୍ଷକ କୌଣସି ଛାତ୍ରର ଅପରାଧର ଅନ୍ୟୂନ ଏକ ଘଂଟା ପରେ ସ୍ଥିରଚିତ୍ତରେ ଯାଂଚ କରିସାରି ଛାତ୍ରକୁ ଦଂଡଦେବା ପାଇଁ କମିଟି ସୁପାରିଶ କରୁଛଂତି। ଶାସ୍ତି ରୂପେ ଦିନକୁ ଅଧଘଂଟାରୁ ଅଧିକ ଅଟକ ରଖିବା ଉଚିତ ନୁହେଁ ବୋଲି କମିଟି ମନେକରଂତି। (ଏଜନ୍)

ମୋଟଉପରେ ଶିକ୍ଷାକମିଟିର କୌଣସି ନିଷ୍ପତ୍ତି ବା ସୁପାରିଶରେ ଛାତ୍ରମାନଂକର ମନଃପୂତ ହୋଇନଥିଲା। ଏହା ଯେଉଁପରି ନୈରାଶ୍ୟଜନକ, ସେହିପରି ପ୍ରତି-କ୍ରିୟାଶୀଳ ଥିଲା। ଛାତ୍ରର ରାଜନୀତିରେ ଯୋଗଦେବାର ଅଧିକାର ଏକ ମୌଳିକ ପ୍ରଶ୍ନ ଥିଲା; ତାହାକୁ କଂଗ୍ରେସ ସରକାର ନାକଚ଼କରିଦେଇଥିଲେ। କଂଗ୍ରେସ ସରକାରଠାରୁ ଛାତ୍ରମାନେ ଅଧିକ ପ୍ରଗତିଶୀଳ ବିଚାର ଓ କର୍ମାନୁଷ୍ଠାନ ଆଶା-କରୁଥିଲେ; ତେଣୁ କଂଗ୍ରେସ ସରକାର ଉପରୁ ସେମାନେ ଆସ୍ଥା ହରାଇଥିଲେ।

**କଂଗ୍ରେସ ଓ ମୁଁ**—

ରେଭେନ୍ସାରେ ଚତୁର୍ଥ-ବାର୍ଷିକ କଳା ଶ୍ରେଣୀରେ ପଢୁଥିବାବେଳେ ମୁଁ ସୁଜିଂଦାରୁ ନିର୍ଦ୍ୱଂଦ୍ୱରେ ପ୍ରଦେଶ କଂଗ୍ରେସ କମିଟିକୁ ସଭ୍ୟ ନିର୍ବାଚିତ ହୋଇଥିଲି। ମୁଁ ସେତେବେଳକୁ ଓଡ଼ିଆବଜାରସ୍ଥ 'ଜାନକୀନାଥ ଭବନ' ଯାହା କି ନେତାଜୀ ସୁଭାଷ ଚଂଦ୍ର ବୋଷଂକର ଜନ୍ମସ୍ଥଳୀ ଥିଲା ଏବଂ ପରେ ପ୍ରାଦେଶିକ କଂଗ୍ରେସ କମିଟି ଅଫିସ ରୂପେ ବ୍ୟବହୃତ ହେଉଥିଲା, ତା'ର ଦ୍ୱିତୀୟ ମହଲାର ଏକ କୋଠରିରେ ରହୁଥିଲି। ମୋର ଭିଣୋଇ ଡକ୍ଟର ଜଗନ୍ନାଥ ଦାସଂକ ଘରେ, ତେଲେଂଗାବଜାରରେ ରହିବା ଆଉ ସଂଭବ ହେଲାନାହିଁ; କାରଣ ସେ ଜଣେ ସରକାରୀ ଚାକିରିଆ ଥିଲେ। ସେ ପ୍ରକାରାଂତରେ ମୋତେ ଅନ୍ୟତ୍ର ରହିବାକୁ କହିଲେ। ମାମା ଆସି ତାଂକ ପାଖେ ତେଲେଂଗା ବଜାରରେ ରହୁଥାଏ। ମୁଁ ମୋର ଡେରା ପକାଇଥାଏ ଓଡ଼ିଆବଜାରରେ ଜାନକୀନାଥ ଭବନରେ।

ମୁଁ ପ୍ରତିଦିନ ସକାଳୁ ଉଠି ଦେଖେ ରାସ୍ତା ଆରପଟେ ଥିବା ଚାଳଘର ପିଂଡାରେ କେତେକ ସି.ଆଇ.ଡି. ବଡ଼ିଭୋରରୁ ରାତି ଦଶଟା ପର୍ଯଂତ ବସିଥାଂତି। ମୁଁ ସାଇକେଲ୍‌ରେ କିଂବା ରିକ୍ସାରେ ଯୁଆଡ଼େ ଗଲେ, ସେମାନେ ମୋ ପଛେପଛେ

ଯାଉଥିଲେ। ମୁଁ ଫେରିଆସି ମୋ କୋଠରିରେ ରହିଲେ ସେମାନେ ସେହି ପିଂଡାରେ ବସିରହୁଥିଲେ ରାତିଅଧ ପର୍ଯ୍ୟଂତ। ମୁଁ କଟକ ବଜାରରେ ଗଲାବେଳେ ମୋ ପଛରେ ସି.ଆଇ.ଡି.ମାନଂକୁ ସାଇକେଲରେ ଯାଉଥିବାର ଦେଖି ସମସ୍ତେ ଥଟ୍ଟାକରି କହୁଥିଲେ– "ଏମାନେ ସଚ୍ଚି ରାଉତରାୟଂକ ବଡ଼ିଗାର୍ଡ।" ଏହିପରି ଭାବରେ କେତେକ ଦିନ କଟିଗଲା। ମାମା ରୋଜ୍ ସକାଳେ ଡଃ ଜଗନ୍ନାଥବାବୁଂକ ଘରେ ଥାଇ ଏକ ଛୋଟ ଗିନାରେ କିଛି ରାବିଡ଼ି କି ଅନ୍ୟ ଭଲ ଖାଇବା ଜିନିଷ କମାଣ୍ଡଂଟ ଜଗଦୀଶ ପାଣିଂକ ହାତରେ ପଠାଉଥାଏ। ମୁଁ ପ୍ରତିଦିନ ଦୁଇବେଳା ହୋଟେଲରେ ଖାଉଥାଏ।

କଂଗ୍ରେସ ସେତେବେଳେ କୌଣସି ଆଂଦୋଳନାତ୍ମକ କାର୍ଯ୍ୟପଂଥା ନେଇ ନଥାଏ। ତେଣୁ କଂଗ୍ରେସ କାମ କହିଲେ କେବଳ କେତେକ ଗଠନମୂଳକ କାମ କରିବାକୁ ପଡୁଥିଲା।

**ସରୋଜିନୀ ନାଇଡୁଂକ ଆଗମନ–**

୨୬.୧୧.୧୯୩୮ ତାରିଖରେ ବିଖ୍ୟାତ କବି ଓ ରାଜନୈତିକ ନେତ୍ରୀ ସରୋଜିନୀ ନାଇଡୁ କଟକ ଆସିଥିଲେ। ସେ ନିମଚଉଡ଼ିରେ ସେବର ପ୍ରଧାନମଂତ୍ରୀ ବିଶ୍ୱନାଥ ଦାସ ରହୁଥିବା ଦି'ତାଲା କୋଠାଘରେ ତାଂକର ଅତିଥି ଭାବରେ ରହୁଥିଲେ। ଛାସଂଘ ତରଫରୁ ତାଂକୁ ୨୭.୧୧.୧୯୩୮ ତାରିଖରେ ଏକ ସଭାରେ ଅଭିନଂଦନ ଦେବାପାଇଁ ସ୍ଥିରକରାଗଲା। ମୁଁ ଏବଂ ଆଉ ଜଣେ ଛାତ୍ର (ନାମ ମନେପଡୁନାହିଁ) ତାଂକୁ ଆମଂତ୍ରଣ ଜଣାଇବା ପାଇଁ ଭେଟିଥିଲୁ। ସେ ସାଗ୍ରହରେ ଆମ ସଭାରେ ଯୋଗଦେବା ପାଇଁ ସମ୍ମତି ପ୍ରକାଶ କରିଥିଲେ।

ରେଭେନ୍ସା କଲେଜ ଟେନିସ୍ କୋର୍ଟରେ ଏକ ବିରାଟ ଛାତ୍ରସଭାରେ ସେ ଭାଷଣଦେଇ ଛାତ୍ରମାନଂକୁ ଉଦ୍‌ବୋଧନ ଦେଇଥିଲେ। ତାଂକ ବକ୍ତୃତାର ଗୋଟିଏ ଲାଇନ୍ ମୋ'ର ମନେ ଅଛି। ତାହା ହେଉଛି, "Like the perenniel flower of Basanta-Panchami" ଅର୍ଥାତ୍ "ଛାତ୍ର ଓ ତରୁଣମାନେ ବସଂତ ପଞ୍ଚମୀର ସଜଫୁଲ ପରି . . .।" ତାଂକୁ ଛାତ୍ରସଂଘ ତରଫରୁ ଯେଉଁ ଅଭିନନ୍ଦନ ଦିଆଯାଇଥିଲା ସେଥିରେ ଛାତ୍ରସମାଜର ଜାତୀୟନୀତି ବର୍ଣନା କରାଯାଇଥିଲା। କେତୋଟି ପଂକ୍ତି ତଳେ ଉଦ୍ଧାର କରାଗଲା। (ରାମଚଂଦ୍ର ରାମଂକ 'ସଂଗ୍ରାମୀ' ପୁସ୍ତକରୁ ଉଦ୍ଧୃତ)

"କମ୍ରେଡ୍

ଉତ୍କଳର ଉନ୍ମେଷଶୀଳ ଛାତ୍ର-ସଂଗଠନ ଆଜି ହୃଦୟର ଗଭୀର ସ୍ନେହ ଓ ଆନଂଦ ଘେନି ଆପଣଂକୁ ସର୍ବାଗ୍ରେ ଅଭିନଂଦନ ଜଣାଉଛି। ଆପଣ କେବଳ ପରାଧୀନ ଭାରତରେ ନୁହେଁ, ସମଗ୍ର ପୃଥିବୀରେ କଳ୍ପନାବିଳାସୀ କବିରୂପେ ସ୍ୱାଧୀନତା, ଶାଂତି ଓ ପ୍ରଗତିର ପ୍ରଦୀପ ଧରି କୋଟି କୋଟି ଦଳିତ ନିଷ୍ପେଷିତଂକ ପ୍ରାଣରେ ନୂତନ ଜୀବନର ଆଶା ଓ ଅଭୟ ସଂଚାର କରୁଛଂତି ତା ନୁହେଁ;

ଚତୁର୍ଦ୍ଦିଗରେ ଫାସିଜିମ୍ ଓ ସାମ୍ରାଜ୍ୟବାଦ ଉତ୍ପୀଡ଼ନ ଚାଲିଥିଲାବେଳେ ସୀମିତ ପରିସର ମଧ୍ୟରେ ନିଜକୁ ଆବଦ୍ଧ ରଖି ମାନବଜାତିର ସୁକଲ୍ୟାଣ ଲାଗି ବାସ୍ତବ କ୍ଷେତ୍ରରେ ନିର୍ଭୀକ ସୈନିକରୂପେ ଉଭାହୋଇରହିଛନ୍ତି ।

ହେ ସୈନିକ-କବି ! ଆଜି ତାରୁଣ୍ୟର ଅଭିଯାନପାଇଁ ନବଯୁଗର ଆଗନ୍ତୁକ ସୈନିକମାନଙ୍କୁ ଆପଣ ଯେଉଁ ସମ୍ବୋଧନ ଦେଇଆସିଛନ୍ତି, ଆଜି ସେହିମାନେ ବିପ୍ଲବର ଉଦ୍‌ବେଳନ ଭିତରେ ଆପଣଙ୍କୁ ଅଗ୍ରଦୂତ ଭାବରେ ପୁନରାୟ ଅଭିବାଦନ ଜଣାଉଛନ୍ତି ।

ସ୍ୱାଧୀନତା ସଂଗ୍ରାମର ହେ ସେନାପତି ! ଆଜି ଉତ୍କଳର ଛାତ୍ର ସଂପ୍ରଦାୟ ପୂର୍ଣ୍ଣରୂପେ ଉପଲବ୍ଧି କରୁଛି ଯେ, ଯେତେଦିନଯାଏ ସାମ୍ରାଜ୍ୟବାଦର ସମାଧି ଉପରେ ସ୍ୱାଧୀନ ଭାରତର ସ୍ୱର୍ଣ୍ଣସୌଧ ରଚିତ ନହୋଇଚି, ଆପଣଙ୍କ ପରିକଳ୍ପିତ ମହାମାନବିକତାର ସଂସ୍କୃତି ସମଭାବରେ ସବୁ କ୍ଷେତ୍ରରେ ପ୍ରସାରିତ ହୋଇପାରିବ ନାହିଁ। ବିଶ୍ୱବ୍ୟାପୀ ପ୍ରତିକ୍ରିୟାଶୀଳତାର ଅବଲୋପରେ ସେ ସଂସ୍କୃତିର ପଥ ଉନ୍ମୁକ୍ତ କରିବା ଲାଗି ଆମ ଦେଶରେ କଂଗ୍ରେସ ଯେ ଆଦର୍ଶ କର୍ମପଂଥା ଗ୍ରହଣ କରିଚି, ଆମର ମନେହୁଏ, ସଂସ୍କାରମୂଳକ ନୀତିର ପ୍ରଭାବରେ ଆସିଲେ ମହାଆଦର୍ଶରୁ ତାହା ବେଳେବେଳେ ବିଚ୍ୟୁତ ହୋଇପଡୁଚି । ସମଗ୍ର ବିପ୍ଲବାତ୍ମକ ଶକ୍ତିର କେନ୍ଦ୍ରୀଭୂତ ଐକ୍ୟକୁ ତାହା ସଂଗ୍ରାମମୁଖୀ ନକରି, ପ୍ରତିବାଦରେ ଆପୋଷର ମନୋଭାବ ଘେନିବାଦ୍ୱାରା ନିଜର ସାବଲୀଳ ଗତିକୁ ବ୍ୟାହତ କରିଦେବ। ଆଜି ସୁଦ୍ଧା ଏ ଦେଶରେ ଛାତ୍ରମାନଙ୍କୁ ରାଜନୀତିର ପ୍ରତ୍ୟକ୍ଷ ସଂପର୍କରେ ଆସିବାକୁ ନଦେବାଦ୍ୱାରା କଂଗ୍ରେସର ମଂତ୍ରିମଂଡଳ ସାମ୍ରାଜ୍ୟବାଦ-ବିରୋଧୀ ଶକ୍ତିକୁ ଅନେକାଂଶରେ ଦୁର୍ବଳ କରିପକାଉଛନ୍ତି ବୋଲି ଆମର ଧାରଣା। ଆଧୁନିକ ପରିସ୍ଥିତିରେ ସୁଧାରମୂଳକ ଉପାୟରେ ଶିକ୍ଷା ଓ ସଂସ୍କୃତି ବିସ୍ତାରର ସକଳ ଚେଷ୍ଟା ବ୍ୟର୍ଥ ହେବ ବୋଲି ଆମର ମଧ୍ୟ ଦୃଢ଼ ବିଶ୍ୱାସ। ସମାଜ-ସଂସ୍କାର ଆମୂଳ ପରିବର୍ତ୍ତନ ବ୍ୟତିରେକେ ଦେଶର ନିରକ୍ଷରତା ଦୂରୀକରଣ ଓ ଶିକ୍ଷାବିଧାନରେ ପ୍ରକୃତ ସଂଶୋଧନ ସାଫଲ୍ୟ-ମଂଡିତ ହୋଇପାରିବ ନାହିଁ। ଏ ଆମୂଳ ପରିବର୍ତ୍ତନ ବା ବିପ୍ଲବର ଆଗରେ, ହେ ଚିରତାରୁଣ୍ୟର ପ୍ରତୀକ ! ପ୍ରଗତିର ପତାକାବାହୀ ଛାତ୍ରସମାଜକୁ ନ ରଖିଲେ ଦେଶ ଓ ସମାଜର ସାମୂହିକ ମୁକ୍ତି ସୁଦୂର-ପରାହତ ହେବ।

"ହେ ମୁକ୍ତିପଥର ଅଗ୍ରଗାମୀ। ଦଳିତ ଜାତିର ସଂତାନରୂପେ ଏ ଛାତ୍ରସମାଜ ଶତ ବାଧା-ବଂଧନ ଭିତରେ ନିଜର ନାଗରିକ ଅଧିକାର ସାବ୍ୟସ୍ତ କରିବାକୁ ସଚେଷ୍ଟ ଥିବା ସଂଗେ ସଂଗେ କୋଟି କୋଟି ଶ୍ରମିକ, କୃଷକ ଓ ଦେଶୀୟ ରାଜ୍ୟବାସୀଙ୍କର ଆନ୍ଦୋଳନରେ ସହଯୋଗିତା ଓ ସହାନୁଭୂତି ଦେଇଆସିଛି। ଅଦୂରଭବିଷ୍ୟତରେ ପ୍ରତ୍ୟକ୍ଷ ସମରର ଦୁଂଦୁଭି ବାଜିଉଠିଲେ, ପୁନରାୟ ଯୁଦ୍ଧକ୍ଷେତ୍ରରେ ଏହା ଛିଡ଼ାହେବ। ଏଣୁ ସେ ଭବିଷ୍ୟ ସମର ଲାଗି ଶିବିରରେ ଶିକ୍ଷାପାଉଥିବା

ସୈନିକ ଆମେ। ଆଜି ହେ ସେନାପତି! ଆପଣଂକୁ ଶେଷଥର ପାଇଁ ଅଭିବାଦନ ଜଣାଉଛୁ। ଭାରତର ସ୍ୱାଧୀନତା ସଂଗ୍ରାମରେ

କଟକ ଆପଣଂକର ସହଯାତ୍ରୀ

୨୭।୧୧।୧୯୩୮ ନିଖିଳ ଉତ୍କଳ ଛାତ୍ର ସଂଘର ସଭ୍ୟବୃନ୍ଦ''

ଏହି ମାନପତ୍ରରେ ଛାତ୍ରସଂଘର ଆଭିମୁଖ୍ୟ ଓ ପ୍ରଗତିଶୀଳ ଚିଂତା ଓ ଚେତନା ପ୍ରତିଫଳିତ ହୋଇଛି। ଏହି ମାନପତ୍ରଟି, ଯେତେଦୂରମନେପଡ଼େ, ମୁଁ ଲେଖି-ଥିଲି। ଶ୍ରୀ ବିଜୟଚଂଦ୍ର ଦାସ ଏଥିରେ ସ୍ଥଳବିଶେଷରେ କିଛି ଅଦଳବଦଳ କରିଥିଲେ।

**ଛାତ୍ର ଆଂଦୋଳନରେ ମୋର କାରାବାସ –**

ଓଡ଼ିଶାରେ ଛାତ୍ରଆଂଦୋଳନରେ ମୁଁ ଦୁଇ ଥର କାରାବରଣ କରିଥିଲି। କଟକ ମେଡ଼ିକାଲ୍ ସ୍କୁଲ ଛାତ୍ର ଧର୍ମଘଟ, ଯାହା ଏକ ଐତିହାସିକ ଘଟଣା ଥିଲା, ସେଥିରେ ମୋତେ ଗିରଫ୍ କରିବାପରେ ମୁଁ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ସଭ୍ୟ ଥିବା ଦୃଷ୍ଟିରୁ ମୋତେ ଛାଡ଼ିଦିଆଯାଇଥିଲା। ମୁଁ ଏହି ଧର୍ମଘଟର ମୁଖପତ୍ର ରୂପେ ଦୈନିକ 'ଛାତ୍ର' ପତ୍ରିକା ପ୍ରକାଶ କରୁଥିବାଯୋଗୁ ମୋତେ ପ୍ରେସ୍ ଆକ୍ଟ ଅନୁଯାୟୀ ଅଢ଼େଇଶହ ଟଂକା ଜୋରିମାନା, ଅନାଦାୟେ ଦୁଇମାସ ସଶ୍ରମ କାରାଦଂଡ ସଜା ମିଳିଥିଲା। ମୋ ଜୋରିମାନା ଟଂକା କୋର୍ଟରେ ଆଡ୍‌ଭୋକେଟ୍ ମଧୁସୂଦନ ମହାଂତି ଦାଖଲକରିଦେଇଥିଲେ; ତେଣୁ ମୁଁ ନିକଟରେ ହେବାକୁ ଥିବା ବି.ଏ. ପରୀକ୍ଷା ଦେଇପାରିଥିଲି। ୧୯୪୧ ମସିହାରେ ରେଭେନ୍ସା କଲେଜ ଛାତ୍ରଧର୍ମଘଟରେ ମୁଁ ଅନ୍ୟମାନଂକ ସହ କଟକ ଜେଲ୍‌ରେ ପ୍ରାୟ ଏକମାସ କାଳ ବଂଦୀଥିଲି। ସେସବୁ ବିବରଣୀ ଯଥାସ୍ଥାନରେ ଦିଆଯିବ।

ଏହାପୂର୍ବରୁ ମୁଁ କଲିକତାରେ ସି.ଟି. କଲେଜରେ ଆଇ.ଏ. ପଢୁଥିବାବେଳେ ୧୯୩୬ ମସିହା ନଭେଂବର-ଡିସେଂବର ମାସରେ ଏକ ରାଜନୈତିକ ମକଦ୍ଦମାରେ ଜଡ଼ିତ ହୋଇ କଲିକତା ଜେଲ୍‌ରେ ଦୁଇମାସ କାରାରୁଦ୍ଧଥିଲି। ଏହା ପୂର୍ବ ପରିଚ୍ଛେଦରେ ବର୍ଣିତ ହୋଇଛି।

**ପୁସ୍ତକ ବାଜ୍ୟାପ୍ତି : 'ରକ୍ତଶିଖା' ଓ 'ଉଠ ଜାଗ ଭୋକୀ ବଂଦୀ' ବାଜ୍ୟାପ୍ତ –**

ମୋର କେତେକ ବୈପ୍ଳବିକ କବିତା 'ରକ୍ତଶିଖା' ନାମରେ ସାଥୀ ବୈଦ୍ୟନାଥ ରଥ ୧୯୩୯ ମସିହାରେ ପ୍ରକାଶକରିଥିଲେ। ମୋର 'ଡାକ ଦିଏ ଲାଲ୍ ନଭେଂବର' ଏଥିମଧ୍ୟରେ ଅନ୍ୟତମ। ଏଥିରେ ଅନଂତ ପଟ୍ଟନାୟକଂକର ଗୋଟିଏ ଦୁଇଟି କବିତା ମଧ୍ୟ ସନ୍ନିବିଷ୍ଟ କରାଯାଇଥିଲା। ଅଧିକାଂଶ କବିତା ମୋରହିଁ ଥିଲା। ଏ କାଜି ବଜାରସ୍ଥିତ ଶ୍ରୀପ୍ରେସ୍‌ରେ ମୁଦ୍ରିତ ହୋଇଥିଲା। ଏହି ବହି ପ୍ରକାଶ ପାଇବା ସଂଗେ ସଂଗେ ସରକାର ବାଜ୍ୟାପ୍ତ କରିଦେଇଥିଲେ। ସେତେବେଳେ ଓଡ଼ିଶାରେ କଂଗ୍ରେସ ମଂତ୍ରିମଂଡଳ ଶାସନ କରୁଥିଲେ। ଏହି ବହିଟିକୁ ଛାପିଥିବା ଶ୍ରୀପ୍ରେସ୍‌କୁ ୧୦୦୦ ଟଂକା ଜୋରିମାନା କରାଯାଇଥିଲା। ପ୍ରେସ୍‌ର ମାଲିକ

ଥିଲେ ଅଜୟ କୁମାର ଘୋଷ (ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଂକର ସାନଭାଇ)। ସେ ରାତାରାତି ପ୍ରେସ୍‌କୁ କାଳିବଜାରରୁ ଶଗଡ଼ ଯୋଗେ ନେଇ ବିନୋଦବିହାରୀରେ ଗୋଟେ ଘରେ ପକାଇଦେଲେ। ସାଇନ୍‌ବୋର୍ଡ ଲଗାଇଥିଲେ 'ହରନାଥ ପ୍ରେସ୍'। ସେହିଦିନୁ ସେ ପ୍ରେସ୍ ସେଠାରେ ହରନାଥ ପ୍ରେସ୍ ନାମରେ ଚାଲିଲା। ସକାଳୁ ଉଠି ସମସ୍ତେ ଦେଖଂତିତ ଶ୍ରୀପ୍ରେସ୍ ନାହିଁ; ବିନୋଦବିହାରୀରେ ହରନାଥ ପ୍ରେସ୍ ଚାଲିଛି।

ମୋର କେତେକ ସାମ୍ୟବାଦୀ ଓ ବୈପ୍ଳବିକ କବିତା ସଂକଳିତ ହୋଇଥିବା ପୁସ୍ତିକା 'ଉଠ ଜାଗ ଭୋକୀ ବଂଦୀ' ନାମକ ଶୀର୍ଷକରେ ୧୯୪୩ ମସିହାରେ କଟକରୁ ସାଥୀମାନଂକଦ୍ୱାରା ପ୍ରକାଶପାଇଥିଲା। ଏହି ପୁସ୍ତକଟି ସରକାର ବାଜ୍ୟାପ୍ତ କରିଦେଇଥିଲେ। ସେତେବେଳେ ଓଡ଼ିଶାରେ କଂଗ୍ରେସ ମଂତ୍ରିମଂଡଳ ନଥିଲେ। ମୁଁ ସେତେବେଳେ କଲିକତାରେ କେଶୋରାମ୍ କଟନ୍ ମିଲ୍‌ର ମୁଖ୍ୟ ଶ୍ରମ ମଂଗଳ ଅଫିସର ରୂପେ କାର୍ଯ୍ୟକରୁଥିଲି। ଏହି ପୁସ୍ତକ ପାଇଁ ମୋ ଚାକିରି ନେଇ ଟଣାଓଟରା ହୋଇଥିଲା। ମାତ୍ର ଶେଷପର୍ଯଂତ ତାହା ବାହାଲ୍ ରହିଥିଲା।

**ମେଡ଼ିକାଲ୍ ସ୍କୁଲ ଛାତ୍ର-ଧର୍ମଘଟ : ଏକ ଖଣ୍ଡଯୁଦ୍ଧ –**

ଓଡ଼ିଶାର ଏକମାତ୍ର ଡାକ୍ତରୀ ଶିକ୍ଷା ଅନୁଷ୍ଠାନ ମେଡ଼ିକାଲ୍ ସ୍କୁଲ ଛାତ୍ରମାନଂକ ଭିତରେ (୧୯୩୫-୧୯୩୯) ଚାରିବର୍ଷବ୍ୟାପୀ ଅସଂତୋଷ ଲାଗିରହିଥିଲା। ସେ ସ୍କୁଲରେ ସ୍ଥାୟୀ ଶିକ୍ଷକ କେହି ନଥିଲେ। ଆସିଷ୍ଟାଂଟ୍ ସର୍ଜନ୍‌ମାନେ ସାମୟିକ ବଦଳି ହୋଇ ଆସି ସେ ସ୍କୁଲରେ ଶିକ୍ଷକତା କରୁଥିଲେ। ଏକା ଡାକ୍ତର ବିଭିନ୍ନ ସମୟରେ ଅଲଗା ଅଲଗା ବିଭାଗରେ ଶିକ୍ଷାଦାୟିତ୍ୱରେ ନିଯୁକ୍ତିପାଉଥିଲେ। ଥରେ ନିଦାନ ବିଭାଗରେ ଥିଲେ, ଆର ଥରକୁ ଶଲ୍ୟ ବିଭାଗ, ତା' ଆରଥରକୁ ଚକ୍ଷୁ ବିଭାଗରେ ପାଠପଢ଼ାଉଥିଲେ। ଏମାନଂକ ଭିତରୁ ଅନେକଂକର ଶିକ୍ଷା ଦେବା ଯୋଗ୍ୟତା ବା ସମୟ ନଥିଲା। କେହି କେହି ଅଣଓଡ଼ିଆ ଶିକ୍ଷକ ଓଡ଼ିଆ ଛାତ୍ରଂକୁ ଘୃଣାଚକ୍ଷୁରେ ଦେଖୁଥିଲେ। କଟକର ଗୋରା ସିଭିଲ୍ ସର୍ଜନ ଅଧ୍ୟକ୍ଷ ହେଉଥିଲେ। ୟୁରୋପୀୟ ମହିଳା ମାତାମାନେ ନର୍ସ କାର୍ଯ୍ୟ କରୁଥିଲେ। ସେମାନେ ଛାତ୍ରମାନଂକୁ ହେୟଦୃଷ୍ଟିରେ ଦେଖି ବେଳେବେଳେ ଦୁର୍ବ୍ୟବହାର କରୁଥିଲେ।

ଛାତ୍ରମାନଂକର ସୁବିଧା ଅସୁବିଧା ପ୍ରତି କେହି ଦୃଷ୍ଟି ଦେଉନଥିଲେ। ଏପରି କି ବେମାରପଡ଼ିଲେ ମଧ ଛାତ୍ରମାନଂକ ଦାୟିତ୍ୱରେ ଥିବା ଡାକ୍ତର ରୋଗୀକୁ ଦେଖିବାକୁ ଆସୁନଥିଲେ। ପିଲାମାନେ ନିଜ ଉଦ୍ୟମରେ ପଢ଼ାପଢ଼ି କରୁଥିବାବେଳେ, ପାଠ ସରିଥାଉ ବା ସରିନଥାଉ, ବେନିୟମ ଭାବରେ ଯେତେବେଳେ ଇଚ୍ଛା ସେତେବେଳେ ପରୀକ୍ଷା ହେବା ନୋଟିସ୍ ବିନା ଦସ୍ତଖତରେ କାର୍ଯାଳୟ ନୋଟିସ୍‌ବୋର୍ଡରେ ମାରି ଦିଆହେଉଥିଲା।

୧୯୩୫ରେ ଜଣେ ଅଣ-ଓଡ଼ିଆ ଶିକ୍ଷକ ଉଚ୍ଚଶ୍ରେଣୀର ପିଲାମାନଂକୁ ଅପମାନିତ କରିବାରୁ ସେ ପିଲାମାନେ ଧର୍ମଘଟ କଲେ। କର୍ତ୍ତୃପକ୍ଷ ତଳ ଶ୍ରେଣୀର

ଢ଼ଣେ ପୂର୍ବତନ ସ୍ୱାଧୀନତାସଂଗ୍ରାମୀ ଛାତ୍ର ଓ ଖୋର୍ଧା ସ୍କୁଲରୁ ବହିଷ୍କୃତ ହୋଇଥିବା ନରସିଂହ ସାମଂତସିଂହାରଂକୁ କଟକ ମେଡିକାଲ ସ୍କୁଲରୁ ବହିଷ୍କାର ଆଦେଶ ଦେଇଥିଲେ। ସେହିଦିନଠାରୁ ବରାବର ଧର୍ମଘଟ ଓ ଅସଂତୋଷ ଲାଗିରହିଥିଲା। ମେଡିକାଲ ଛାତ୍ରମାନଂକର ସମସ୍ତ ଆବେଦନ-ନିବେଦନ ନିଷ୍ଫଳ ହୋଇଥିଲା। ଶେଷରେ ସରକାର ଛାତ୍ରମାନଂକୁ ସମାଧାନ ପାଇଁ ଡକାଇନେଇ ସେମାନଂକ ଉପରେ ଦଂଡବିଧାନ କରିଥିଲେ। ସେହି ଛାତ୍ରମାନେ ଗୋଟିଏ କାଉନ୍‌ସିଲ୍ ଅଫ୍ ଆକ୍‌ସନ୍ କମିଟି ଗଢ଼ି 'ଦି ମେଡ଼ିକାଲ୍ ଅନରେଷ୍ଟ' ନାମକ ୧୩ ପୃଷ୍ଠାର ଇଂରେଜୀ ନିବେଦନପତ୍ର ଛାପି ବାଂଟିଥିଲେ। (୧) ଶ୍ରୀ ନୃସିଂହ ଚରଣ ସାମଂତ ସିଂହାର (ବହିଷ୍କୃତ ଛାତ୍ର), (୨) ମୋତିଲାଲ୍ ତ୍ରିପାଠୀ (ସଂପାଦକ ଓ ଏକବର୍ଷ ପାଇଁ ବହିଷ୍କୃତ ଛାତ୍ର), (୩) ଶ୍ରୀ ହରିଚରଣ ଦାସ (ଛଅମାସ ପାଇଁ ବହିଷ୍କୃତ ଛାତ୍ର), (୪) ଶ୍ରୀ ପଦ୍ମନାଭ ତ୍ରିପାଠୀ (ଛଅମାସ ପାଇଁ ବହିଷ୍କୃତ ଛାତ୍ର), (୫) ମହମ୍ମଦ ଶାମସୁଲ ହୋଦା (ଛଅମାସ ପାଇଁ ବହିଷ୍କୃତ ଛାତ୍ର) ସେ କ୍ରିୟାନୁଷ୍ଠାନ କମିଟିର ସଭ୍ୟ ଥିଲେ। ପ୍ରଚାରପତ୍ର ମେଡ଼ିକାଲ ଛାତ୍ର ଶ୍ରୀ ଉପେଂଦ୍ର ମହାପାତ୍ରଂକ ନାମରେ ପ୍ରକାଶିତ ହୋଇଥିଲା।

୨୬ ମାର୍ଚ୍ଚ, ୧୯୩୯ରେ ମେଡ଼ିକାଲ ଛାତ୍ରମାନେ ଧର୍ମଘଟ ଆରଂଭ କରିଥିଲେ। ସରକାର ୩.୪.୩୯ ତାରିଖରେ ତାଂକର ଇସ୍ତାହାର ପ୍ରକାଶକରିଥିଲେ। ତାହା ଅଭିସଂଧିମୂଳକ ଓ ମିଥ୍ୟା ତଥ୍ୟ ଉପରେ ପ୍ରତିଷ୍ଠିତ ବୋଲି ତାର ଉତ୍ତରରେ ୫.୪.୩୯ ତାରିଖରେ ମେଡିକାଲ ଛାତ୍ର ଉପେନ୍ଦ୍ର ମହାପାତ୍ରଂକ ପ୍ରକାଶକଂଦ୍ୱରେ ଛାତ୍ରମାନଂକ ଇସ୍ତାହାର ପ୍ରକାଶ ପାଇଥିଲା। ତା' ପୂର୍ବରୁ ୨୮.୩.୩୯ ତାରିଖଠାରୁ ମେଡିକାଲ ଛାତ୍ର ସୁଧୀର କବି ଆମରଣ ଅନଶନ ଆରଂଭ କରିଦେଇଥିଲେ। ୩୧.୩.୧୯୩୯ ତାରିଖରେ ମେଡିକାଲ ବୁଲେଟିନ୍ (ନଂ୧) ପ୍ରକାଶିତ ହୋଇ ସର୍ବସାଧାରଣରେ ବଂଟାଯାଇଥିଲା। ଛ'ଅ ଏପ୍ରିଲ୍‌ରେ ମେଡିକାଲ୍ ସ୍କୁଲ୍ 'ଧର୍ମଘଟ – ଅଭିଭାବକମାନଂକୁ ନିବେଦନ' ଶିରୋନାମାରେ ୪ ପୃଷ୍ଠାର ଏକ ନିବେଦନପତ୍ର ଉପେଂଦ୍ର ମହାପାତ୍ରଂକଦ୍ୱାରା ପ୍ରକାଶିତ ହୋଇଥିଲା। ମେଡିକାଲ୍ ଛାତ୍ରମାନଂକ ଦାବିକୁ ସମର୍ଥନକରି ଅଭିଭାବକମାନଂକର ବିବୃତି ପ୍ରକାଶିତ ହୋଇଥିଲା। ସେଥିରେ ଦଶଜଣ ମେଡିକାଲ ଛାତ୍ରଂକ ଅଭିଭାବକ ନିବେଦକ ଭାବରେ ସ୍ୱାକ୍ଷର କରିଥିଲେ।

ମେଡ଼ିକାଲ ସ୍କୁଲର 'ଛାତ୍ରଧର୍ମଘଟ'କୁ ସମର୍ଥନ କରି ଛାତ୍ରସଂଘ ସାରା ଓଡ଼ିଶାର ଛାତ୍ର-ସମାଜ ଏ ଧର୍ମଘଟକୁ ସମର୍ଥନ ଦେବା ନିମଂତେ ନିବେଦନ କଲେ। ନିଖିଳ ଉତ୍କଳ ଛାତ୍ରସଂଘର ଯୁଗ୍ମ-ସଂପାଦକ ଶ୍ରୀ ଗଂଗାଧର ମହାପାତ୍ର (ପରେ ଶିକ୍ଷାମଂତ୍ରୀ) ୩।୪।୩୯ ତାରିଖରେ ଏକ ନିବେଦନପତ୍ରରେ ଜଣାଇଲେ ଯେ, ମେଡିକାଲ ସ୍କୁଲର ଛାତ୍ରମାନଂକର ବୋର୍ଡିଂରେ ରହିବା ଘର, ଖାଇବା ପାଣି, ପଢ଼ିବାପାଇଁ ଆଲୁଅର ବ୍ୟବସ୍ଥା ଅତ୍ୟଂତ ହୀନ। ଛାତ୍ରମାନଂକପାଇଁ

ଲାଇବ୍ରେରୀରେ ବହି, ବସିବାପାଇଁ ସ୍ଥାନ, ବେମାରପଡ଼ିଲେ ରହିବାର ଜାଗା ପ୍ରଭୃତିର ବଂଦୋବସ୍ତ ଅତୀବ ଶୋଚନୀୟ । ଶିକ୍ଷକମାନଂକର ଛାତ୍ରମାନଂକ ପ୍ରତି ବ୍ୟବହାର ଓ ସାଇବାଣୀ ନର୍ସମାନଂକର ଛାତ୍ରମାନଂକ ପ୍ରତି ଘୃଣିତ ବ୍ୟବହାର ଯୋଗୁଁ ଛାତ୍ରମାନଂକ ମଧ୍ୟରେ ଅସଂତୋଷ ଦେଖାଦେଇଛି । ମେଡିକାଲ ସ୍କୁଲର ଛାତ୍ରମାନେ ଆଜିଠାରୁ ପରୀକ୍ଷା ବର୍ଜନ କରିଛଂତି । ଛାତ୍ର ସୁଧୀର କବିଂକର ସାତଦିନ ଅନଶନ ଫଳରେ ତାଂକର ଓଜନ ୨୨ ପାଉଂଡ କମିଯାଇଛି । ଏହି ନିବେଦନରେ ସାରା ଓଡ଼ିଶାରେ ଛାତ୍ର ଧର୍ମଘଟ ପାଇଁ ପ୍ରସ୍ତୁତ ରହିବାକୁ ଆହ୍ୱାନ ଦିଆଗଲା ।''

କଟକ ମେଡିକାଲ ଛାତ୍ରଧର୍ମଘଟକୁ ସମର୍ଥନ ଜଣାଇ ଦରଭଂଗାର ମେଡିକାଲ ଛାତ୍ରମାନେ ତାଂକର ପରୀକ୍ଷା ମଧ୍ୟ ବର୍ଜନକଲେ । ଏକ ପ୍ରଚାରପତ୍ର ଜରିଆରେ ସେମାନେ କହିଲେ ଯେ, ''ଓଡ଼ିଶାରେ କଂଗ୍ରେସ ସରକାର ପରିସ୍ଥିତିକୁ ଜଟିଳ ନକରି ଛାତ୍ରମାନଂକ ନ୍ୟାୟୋଚିତ ଦାବିକୁ ପୂରଣ କରଂତୁ ।''

ନିଖିଳ ଉତ୍କଳ ଛାତ୍ରସଂଘ ଅପ୍ରେଲ ୫ ତାରିଖରେ ଗଂଗାଧର ମହାପାତ୍ର, ସଚ୍ଚି ରାଉତରାୟ, ଅଶୋକ ଦାସ, ବିଜୟଚଂଦ୍ର ଦାସ, ମନମୋହନ ମିଶ୍ର, ଉଦୟନାଥ ମିଶ୍ର, ନୀଳମଣି ରାଉତରାୟ ଓ ଗୋବିନ୍ଦଚନ୍ଦ୍ର ମହାଂତିଂକ ଦସ୍ତଖତରେ ଏକ ସଭା ଡାକିଲେ ଓ ପୁରପଲ୍ଲୀ ସହରମାନଂକରେ ଛାତ୍ର ଧର୍ମଘଟ ପାଇଁ ଆହ୍ୱାନଦେଲେ । ଛାତ୍ର ଆଂଦୋଳନକୁ ଜୀବଂତ ରଖିବା ପାଇଁ 'ଛାତ୍ର' ନାମକ ଏକ ବୁଲେଟିନ୍ ପ୍ରକାଶିତହେଲା । ଏ ବୁଲେଟିନ୍‌ର ସଂପାଦନା କଲେ ସଚ୍ଚି ରାଉତରାୟ । ଏହାର ପ୍ରକାଶକ ମଧ୍ୟ ସଚ୍ଚି ରାଉତରାୟ ରହିଲେ । ବୁଲେଟିନ୍ ପ୍ରତ୍ୟେକ ଦିନ ପ୍ରକାଶିତ ହେଲା । ଏହା ଫୁଲସ୍କେପ୍ ସାଇଜ୍‌ରେ ଚାରିପେଜ୍ ଥିଲା । ଘଟଣାସମୂହର ବିବରଣୀ ଓ ଭବିଷ୍ୟତ କର୍ତ୍ତବ୍ୟର ରୂପରେଖ ଏଥିରେ ପ୍ରକାଶିତହେଲା । କେତେକ ସଂବାଦର ସଂକ୍ଷିପ୍ତ ସୂଚନା ତଳେ ଦିଆଗଲା ।

୧୦.୪.୩୯ ତାରିଖରେ ପ୍ରକାଶିତ 'ଛାତ୍ର' ବୁଲେଟିନ୍‌ରେ କଟକ କଲିଜିଏଟ୍ ସ୍କୁଲର ଛାତ୍ରାବାସର ବିକ୍ରମ ଦାସ ଓ ଚିଂତାମଣି ପାଣିଗ୍ରାହୀଂକ ଧର୍ମଘଟରେ ଯୋଗଦାନ ହେତୁ କର୍ତ୍ତୃପକ୍ଷ ସତର୍କବାଣୀ ଶୁଣାଇଥିବା କଥା ପ୍ରକାଶିତହେଲା (ବିକ୍ରମ ଦାସ ପରେ ମେଡ଼ିକାଲ୍ କଲେଜର ପ୍ରଫେସର; ଚିଂତାମଣି ପାଣିଗ୍ରାହୀ ପରେ ଏମ୍.ପି. ଓ ରାଜ୍ୟପାଳ) । ଭିକ୍ଟୋରିଆ ସ୍କୁଲର ହେଡ୍‌ମାଷ୍ଟର ଅଭିଭାବକ-ମାନଂକ ଜରିଆରେ ଛାତ୍ରମାନଂକୁ ସ୍କୁଲକୁ ପଠାଇବାକୁ ନିର୍ଦ୍ଦେଶ ଦେଇଥିବା କଥା ମଧ୍ୟ ପ୍ରକାଶିତହେଲା । 'ଛାତ୍ର' ବୁଲେଟିନ୍ ପ୍ରକାଶ କରିବା ଅପରାଧରେ ପ୍ରକାଶକ ସଚ୍ଚି ରାଉତରାୟଂକୁ ପ୍ରେସ୍ ଆଇନ୍‌ରେ ୨୫୦ ଟଂକା ଜୋରିମାନା କିଂବା ଦୁଇମାସ ସଶ୍ରମ କାରାଦଂଡ ଶାସ୍ତି ଦିଆଯାଇଥିଲା । 'ଛାତ୍ର' ବୁଲେଟିନ୍ କଟକ ଅବଜର୍ଭର ପ୍ରେସ୍‌ରୁ ପ୍ରକାଶିତ ହେଉଥିଲା । ଅବଜର୍ଭର ପ୍ରେସର ମାଲିକ ମଧୁସୂଦନ ମହାଂତି କେବଳ ଯେ 'ଛାତ୍ର' ବୁଲେଟିନ୍‌ଟିକୁ ତାଂକ ପ୍ରେସ୍‌ରେ ଛପାଇବାର

ସୁବିଧା ସୁଯୋଗ ଦେଉଥିଲେ ତାହା ନୁହେ, ଛାତ୍ର ଆଂଦୋଳନକୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସାହାଯ୍ୟ କରୁଥିଲେ। ଏଥିପାଇଁ ପରବର୍ତ୍ତୀ ସମୟରେ ତାଂକୁ ଢେରିମାନ ଦଂଡ ଭୋଗ କରିବାକୁ ପଡ଼ିଥିଲା। ବୁଲେଟିନ୍‌ର କିୟଦଂଶ ଏହି ମର୍ମେ ପ୍ରକାଶିତ ହେଲା।

**ଓଡ଼ିଶା ଛାତ୍ରଜଗତ୍‌ର ହାଲଚାଲ : ରାଷ୍ଟ୍ରପତିଂକଠାରୁ ତାର –**

(ଅତ୍ୟାଚାରର ହାତମୁଠା ଦୃଢ଼ରୁ ଦୃଢ଼ତର ହେଉଛି)

୧। ରାଷ୍ଟ୍ରପତି (ଅର୍ଥାତ୍ ଜାତୀୟ କଂଗ୍ରେସର ପ୍ରେସିଡେଂଟ) ସୁଭାଷ ଚନ୍ଦ୍ର ବୋଷଂକଠାକୁ ନିଖିଳ ଉତ୍କଳ ଛାତ୍ରସଂଘ ସଂପାଦକ ମେଡ଼ିକାଲ ସ୍କୁଲ ବିଷୟରେ କାଲି ଯେ ତାର କରିଥିଲେ, ତାହା ତାଂକ ପାଖରେ ପହଞ୍ଚିଲାଣି ବୋଲି ତାଂକ ସେକ୍ରେଟାରୀ ତାରଦ୍ୱାରା ଜଣାଇଛଂତି। ଆଶାହୁଏ, ସେ ଶୀଘ୍ର ଏଥିରେ ହସ୍ତକ୍ଷେପ କରିବେ।

୨। ଉତ୍କଳ ପ୍ରାଦେଶିକ କଂଗ୍ରେସ ସଭାପତି ପଂଡିତ ନୀଳକଂଠ ଦାସ ଆଜି ଦିଲ୍ଲୀରୁ ତାରଦ୍ୱାରା ଜଣାଇଛଂତି ଯେ, ସେ ଓଡ଼ିଶାର ପ୍ରଧାନମଂତ୍ରୀ ଓ ପ୍ରାଦେଶିକ କଂଗ୍ରେସ କମିଟି ସେକ୍ରେଟେରୀଂକୁ ଗୋଟିଏ ବେସରକାରୀ ତଦଂତ କମିଟି ବସାଇବା ପାଇଁ ତାରକରିଛଂତି। ଛାତ୍ରମାନେ ଏଥିରେ ସମ୍ମତ ହେବେ ବୋଲି ପଂଡିତଜୀ ଆଶା କରିଛଂତି।

୩। ନିଖିଳ ଭାରତ ଛାତ୍ର ସଂଘ ସଂପାଦକ ମେଡ଼ିକାଲ ଛାତ୍ର ଧର୍ମଘଟ କଥା ଶୁଣି ଉଦ୍‌ବେଗ ପ୍ରକାଶ କରି ପତ୍ର ଲେଖିଛଂତି। ତାଂକ ପାଖକୁ ସମସ୍ତ ତଥ୍ୟ ଓ କାଗଜପତ୍ର ପଠାଯାଇଛି।

୪। ମେଡ଼ିକାଲ ସ୍କୁଲ ଛାତ୍ରମାନଂକର ଅଭିଭାବକମାନେ ଆଜି ଆସି ସେମାନଂକୁ ଶେଷପର୍ଯ୍ୟଂତ ଧର୍ମଘଟ ପାଳିବାକୁ ଉପଦେଶ ଦେଇଛଂତି। ଅଭିଭାବକମାନେ ସବୁକଥା ଜାଣି ଛାତ୍ରମାନଂକର ଏ ଧର୍ମଘଟକୁ ସମର୍ଥନ କରିଛଂତି ଓ ସରକାର ବିରୁଦ୍ଧରେ ଦୃଢ଼ଭାବରେ ଛିଡ଼ା ହେବାପାଇଁ କହିଛଂତି।

୫। ଆଜି ମେଡ଼ିକାଲ ଛାତ୍ର ଓ ଛାତ୍ରୀମାନଂକ ବୋର୍ଡିଂରୁ ବିଜୁଳିବତିର କନେକ୍‌ସନ୍ କାଟିଦିଆଯାଇଛି। ଆଜିଠାରୁ ଛାତ୍ର ଓ ଛାତ୍ରୀମାନେ ଅଂଧାରରେ ସଢ଼ିବେ। ନିକଟରେ ପାଣିକଳ ବଂଦକରାଯିବ ବୋଲି ଶୁଣାଯାଏ।

୬। ମେଡ଼ିକାଲ୍ ସ୍କୁଲ୍‌ର ଧର୍ମଘଟକାରୀମାନଂକ ଅଭିଭାବକଂକୁ ତାଂକ ପିଲାମାନଂକୁ ବୋର୍ଡିଂରୁ ନେଇଯିବାକୁ ଚିଠି ଯାଇଛି। ଏହାର ଅର୍ଥ ସେମାନଂକୁ ବୋର୍ଡିଂରୁ ତଡ଼ାହୋଇଛି।

୭। ସବୁ ସ୍କୁଲ୍‌ରୁ ମେଡ଼ିକାଲ୍ ଛାତ୍ରଛାତ୍ରୀଂକ ପ୍ରତି ସହାନୁଭୂତି ଦେଖାଇ ଛାତ୍ର ସଂଘ ଅଫିସ୍‌କୁ ଚିଠି ଆସିଛି। ସମସ୍ତେ 'ନିଖିଳ ଉତ୍କଳ ଛାତ୍ର ଦିବସ' ପାଳନ କରିବେ ବୋଲି ଉତ୍ସାହର ସହିତ ପ୍ରକାଶ କରିଛଂତି। ଆଶା ହୁଏ,

'ନିଖିଳ ଉତ୍କଳ ମେଡ଼ିକାଲ୍ ଦିବସ' ଖୁବ୍ ସାଫଲ୍ୟମଂଡିତ ହେବ।

୮। ଅଗରପଡ଼ାଠାରେ ଗତ ୮ ତାରିଖ ଦିନ ହୋଇଥିବା ବାଲେଶ୍ୱର ଜିଲ୍ଲା ଛାତ୍ର ସମ୍ମିଳନୀରେ ମେଡ଼ିକାଲ୍ ଛାତ୍ର ଧର୍ମଘଟ ପ୍ରତି ସହାନୁଭୂତି ଦେଖାଇ ପ୍ରସ୍ତାବ ପାସ୍‌ହୋଇଛି। ଉକ୍ତ ପ୍ରସ୍ତାବରେ ସରକାରଂକ କାର୍ଯର ତୀବ୍ର ନିଂଦାବାଦ୍ କରାଯାଇଛି ଏବଂ ମେଡ଼ିକାଲ୍ ଛାତ୍ରଂକ ପଛରେ ଯେ ବାଲେଶ୍ୱର ଜିଲ୍ଲାର ଛାତ୍ରମାନେ ଅଛଂତି, ତାହା ଘୋଷଣା କରାଯାଇଛି।

ଗଂଗାଧର ମହାପାତ୍ର, ଯୁଗ୍ମ ସଂପାଦକ
ନିଖିଳ ଉତ୍କଳ ଛାତ୍ରସଂଘ

ଅଶୋକ ଦାସ, ସଚ୍ଚି ରାଉତରାୟ, ବିଜୟ ଚଂଦ୍ର ଦାସ, ମନମୋହନ ମିଶ୍ର, ନୀଳମଣି ରାଉତରାୟ।

ପ୍ରକାଶକ— ସଚ୍ଚି ରାଉତରାୟ, ନିଖିଳ ଉତ୍କଳ ଛାତ୍ରସଂଘ ଅଫିସ୍। ମୂଲ୍ୟ ୦.୩ ପଇସା, ଅବ୍‌ଜରଭର୍ ପ୍ରେସ୍— କଟକ, ('ସଂଗ୍ରାମୀ'ରୁ ଗୃହୀତ)

**ଛାତ୍ରମାନଂକର ସତ୍ୟାଗ୍ରହ ନିଷ୍ପତ୍ତି—**

'ଛାତ୍ର'ର ୫ମ ସଂଖ୍ୟା ପ୍ରକାଶିତ ହେଲା ୧୨।୪।୧୯୩୯ ତାରିଖରେ। ସରକାର ଛାତ୍ରମାନଂକ ଦାବି ପୂରଣ ନକଲେ, ସତ୍ୟାଗ୍ରହ ସଂଗ୍ରାମ ଆରଂଭ ହେବ। ଏଥିପାଇଁ ଶ୍ରୀ ଗଂଗାଧର ମହାପାତ୍ର, ସଚ୍ଚି ରାଉତରାୟ, ଅଶୋକ ଦାସ, ମନମୋହନ ମିଶ୍ର, ବିଜୟ ଚଂଦ୍ର ଦାସ, ନୀଳମଣି ରାଉତରାୟ, ବୈଦ୍ୟନାଥ ରଥ, ସୁବୋଧ ବେଉରିଆଂକୁ ନେଇ ଏକ କାଉନ୍‌ସିଲ୍ ଅଫ୍ ଆକ୍‌ସନ୍ ବା କ୍ରିୟାନୁଷ୍ଠାନ କମିଟି ଗଠିତହେଲା। ଶହ ଶହ ଛାତ୍ର ସତ୍ୟାଗ୍ରହୀ ଭାବେ ସେମାନଂକ ନାମ ଛାତ୍ରସଂଘ ଅଫିସ୍‌କୁ ପଠାଇବାକୁ ଅନୁରୋଧ କରାଗଲା। ଅନ୍ୟ ଏକ ପ୍ରସ୍ତାବରେ ସରକାରକୁ ଜଣାଇଦିଆଗଲା— ଯଦି ଅବିଳଂବେ ଛାତ୍ରମାନଂକର ଦାବି ଗୃହୀତ ନହୁଏ, ତାହାହେଲେ ପ୍ରତ୍ୟକ୍ଷ ସଂଗ୍ରାମ ଆରଂଭ କରାଯିବ।

ଏହାପରେ ଗଂଗାଧର ମହାପାତ୍ର ଓ ବିଶ୍ୱନାଥ ପଶାୟତ, ଯୁଗ୍ମ-ସଂପାଦକ ନିଖିଳ ଉତ୍କଳ ଛାତ୍ରସଂଘ, ୧୪।୪।୩୯ ତାରିଖରେ କଟକ ଟାଉନ୍ ହଲ୍‌ରେ ଏକ ସଭା ଆହ୍ୱାନ କଲେ। ଭିକ୍ଟୋରିଆ ସ୍କୁଲ୍‌ର ହେଡ୍‌ମାଷ୍ଟର ସୁବୋଧ ବେଉରିଆଂକୁ ପଢ଼ିବା ସୁଯୋଗରୁ ବଂଚିକଲେ। କଲେଜିଏଟ୍ ସ୍କୁଲ୍‌ର ଶ୍ରୀମାନ୍ ସତ୍ୟବାଦୀ ମିଶ୍ର (ପରେ ଦର୍ଶନଶାସ୍ତ୍ର ପ୍ରଫେସର)ଙ୍କୁ ହେଡ୍‌ମାଷ୍ଟର ସତର୍କବାଣୀ ଶୁଣାଉଥିବା ୫ ନଂବର 'ଛାତ୍ର' ବୁଲେଟିନ୍‌ରେ ପ୍ରକାଶିତ ହେଲା— 'ଛାତ୍ର' ପ୍ରକାଶିତ ହେବା ସଂଗେ ସଂଗେ ବିକ୍ରିହୋଇଯାଉଥିଲା। ନିଖିଳ ଭାରତ ଛାତ୍ର ସଂଘର ସଂପାଦକ କମ୍ରେଡ୍ ଏମ୍.ଏଲ୍. ସାହା ମେଡ଼ିକାଲ୍ ଛାତ୍ର ଧର୍ମଘଟ ପ୍ରତି ସମର୍ଥନ ଜଣାଇ ବାର୍ତ୍ତା ପଠାଇଲେ। ପ୍ରାଣକୃଷ୍ଣ ପଡ଼ିଆରୀଂକ ସଭାପତିତ୍ୱରେ କଟକ ଜିଲ୍ଲା କଂଗ୍ରେସ କମିଟିର କାର୍ଯକାରୀ କମିଟି ବସି ଛାତ୍ର ଧର୍ମଘଟ ଯୋଗୁଁ ଉଦ୍‌ବେଗ ପ୍ରକାଶକଲେ ଓ ଛାତ୍ରଂକ ଦାବି ସହାନୁଭୂତି ସହ ବିଚାର କରିବାକୁ ପ୍ରସ୍ତାବ ଗ୍ରହଣ କଲେ।

କଟକ କଲିଜିଏଟ୍ ସ୍କୁଲ୍‌ରୁ ମଧ୍ୟ ଅନ୍ୟ ଏକ ବୁଲେଟିନ୍ ପ୍ରକାଶିତ ହେଲା। ବିଭିନ୍ନ ସ୍କୁଲ୍‌ମାନଂକୁ ପଠାଯାଉଥିବା 'ଛାତ୍ର' ପତ୍ରିକା ଡାକଘରୁ ହରଣଚାଳ ହେଉଥିବା ଉକ୍ତ ବୁଲେଟିନ୍‌ରୁ ପ୍ରକାଶ।

୧୦.୪.୩୯ ତାରିଖ 'ସମାଜ'ରେ ପ୍ରକାଶିତ ଏକ ସଂବାଦରୁ ଜଣାପଡ଼େ ଯେ, ସରକାର ଅସ୍ଥାୟୀଭାବେ ମେଡ଼ିକାଲ୍ ସ୍କୁଲ୍ ବଂଦକରିଛଂତି ଓ ହଷ୍ଟେଲ୍ ଖାଲି କରି ଦେବାକୁ ନିର୍ଦ୍ଦେଶ ଦେଇଛଂତି। କିଂତୁ ଛାତ୍ରମାନେ ହଷ୍ଟେଲ୍‌ରୁ ବାହାରିଯିବେ ନାହିଁ ଓ ବଳ ପ୍ରୟୋଗ କରି ବାହାର କରିଦେବା ପର୍ଯ୍ୟଂତ ସେମାନେ ହଷ୍ଟେଲ୍ ଛାଡ଼ିବେ ନାହିଁ ବୋଲି ଜିଦ୍‌ଧରିଛଂତି। ପାଣିକଳ ସଂଯୋଗ ଛିନ୍ନ କରିଦେବାକୁ ଧମକ ଦେବା ସତ୍ତ୍ୱେ ଛାତ୍ରମାନେ ଅଚଳ ଓ ଅଟଳ ରହିଛଂତି। ୧୯୩୯ ମସିହା ଅପ୍ରେଲ୍ ୬ ତାରିଖରେ ସଚ୍ଚି ରାଉତରାୟଂକ ସଭାପତିତ୍ୱରେ ଓ ୧୪ ତାରିଖରେ ଗୋବିଂଦ ଚଂଦ୍ର ମହାଂତିଂକ ସଭାପତିତ୍ୱରେ ସଭା ହେଲା। ସର୍ବଶ୍ରୀ ସଚ୍ଚି ରାଉତରାୟ, ବିଜୟ ଚଂଦ୍ର ଦାସ, ଅଶୋକ ଦାସ, ବିଶ୍ୱନାଥ ପଶାଏତ୍, ଗଂଗାଧର ମହାପାତ୍ର, ମନମୋହନ ମିଶ୍ର, ବୈଦ୍ୟନାଥ ରଥ ଓ ସୁବୋଧ ବେଉରିଆ ଭାଷଣ ଦେଲେ ଓ ସାଧାରଣ ହରତାଳ ଡାକରା ଦେଲେ। କବି ସଚ୍ଚି ରାଉତରାୟଂକ କବିତାଟି ଧର୍ମଘଟକାରୀ ଛାତ୍ରମାନେ ବୋଲି ବୁଲୁଥିଲେ—

**ସତ୍ୟାଗ୍ରହ ସଂଗ୍ରାମର ଆହ୍ୱାନ**

ମେଡ଼ିକାଲ୍ ସ୍କୁଲ୍‌ରେ ଧର୍ମଘଟ

**(ଲେଖକ– କବି ସଚ୍ଚି ରାଉତରାୟ), ଛାତ୍ର**

ସ୍ୱପ୍ନସାଗର ଅଳସ ଛେଦି ରେ / ଜାଗିଛି ତରୁଣ ଛାତ୍ର,
ଅରୁଣ କିରଣେ ଉଷାର ତୋରଣେ / ନିଭିଛି ତିମିର ରାତ୍ର।
ସତ୍ୟର ପୂଜାଲାଗି ତାର 'କବି' / ବୁକୁର ଶୋଣିତେ ଲେଖେ ଏକି ଛବି
ମୁକ୍ତିର ଲାଗି ମରଣରସୁରା / ଭରିଚି ତାହାର ପାତ୍ର !!
ଏକତାର ମଂତ୍ର ଗାଏ କୋଟି ମନ / କୋଟିହାତେ ରାଖି ବାଂଧଇ ମିଳନ
ଝଂକାର ବାଣୀ ବାଜେ ତା'ର କଂଠେ / ପୁଲକେ ଚମକେ ଗାତ୍ର !!
ଅନ୍ୟାୟ ପୁଣି ଅନୀତିର ରଣେ / ଅଗ୍ରଗାମୀ ସେ ନ ଗଣେ ମରଣେ
ବୁଝିଲାଣି ସେ ଏ ନୁହେଁ ପାଠାଗାର / ଲୌହର କାରା ମାତ୍ର !!
ଶିକ୍ଷାର ନାମେ ଛଳନା, ବଡ଼ିମା / ପରକାଶେ ଏଥି ଆପଣା ଗରିମା,
ଜିଭ ହୁଏ କଟା, ମନାହୁଏ କଥା, / ରହିଚି ଆଇନ ସୂତ୍ର !!
ନିଜ ଅଧିକାର ନିଜେ କଲେ ଦାବି / ହୁଏ ବର୍ବର, ହୁଏ ପୁଣି ଦାଗୀ
ଭଲପିଲା ବୋଲି ନହୁଅଇ ଗଣା / ନକଲେ ଦି'ଓଳି ସ୍ତୋତ୍ର !!
ଦେଶର ଭବିଷ୍ୟ କଲେ ଏଥି ଚିଂତା / ଶୁଣିଦେଲେ ଥରେ ଦେଶର ବାରତା
ପଡ଼ା ହୁଏ ଛୁରୀ ସଢ଼ା ହୁଏ ଯଂତା / ନମୁନା ସ୍ୱରାଜ୍ୟ-ଛତ୍ର !!

ଜାଗିଉଠ ଆହେ ଛାତ୍ରବାହିନୀ / ଯେ ବା ଯହିଁ ଅଛ ଭାଇ ଓ ଭଉଣୀ
ଗୋଲାମ ପରି କି ସଲାମ କରିବ ? / ଲେଖର ମୁକତି ଚିତ୍ର !!
କାଲି ଯେ ହୋଇବ ଦେଶର ଚାଳକ / ଆଜି ସେହୁ ଦାସ, ସହୁଛି ଚଡ଼କ
ପୁରୁଷ ହୋଇଣ ପରଦା ଉହାଡ଼େ / ସହୁଛି ତ ନିତି ଅତ୍ର !!
ଦେଶେ ଦେଶେ ଛାତ୍ର ଆଣିଛି ଜୀବନ / ଇତିହାସେ ସେହୁ କରିଛି ନବୀନ,
ଏ ଦେଶେ ଆଣିବ ସେହୁ ଶୁଭଦିନ / ଗାଇବ ସ୍ୱାଧୀନ ମଂତ୍ର !!

ଛାତ୍ର ଏକଜୁଟ ହୁଅ ।

ପ୍ରକାଶକ : **ଶ୍ରୀ ଗଂଗାଧର ମହାପାତ୍ର**

ସଂପାଦକ : **ନିଖିଳ ଉତ୍କଳ ଛାତ୍ର ସଂଘ** (‘ସଂଗ୍ରାମୀ’ରୁ ଗୃହୀତ)

ଅପ୍ରେଲ୍ ୨୦ ତାରିଖରୁ ଛାତ୍ର ସଂଘର ନିଷ୍ପତ୍ତିକ୍ରମେ ସତ୍ୟାଗ୍ରହ ଲଢ଼େଇ ଆରଂଭ ହେଲା । ଏ ଲଢ଼େଇର ପ୍ରଥମ ସତ୍ୟାଗ୍ରହୀ କମ୍ରେଡ୍ ବିଶ୍ୱନାଥ ପଣ୍ଡାଏତ୍ । ଛାତ୍ରସଂଘ ପ୍ରସ୍ତାବ କଲେ ଯେ, କମ୍ରେଡ୍ ପଣ୍ଡାଏତ୍ ପ୍ରଥମ ଡିକ୍ଟେଟର୍ ଭାବେ ସତ୍ୟାଗ୍ରହ ଆରଂଭକରିବେ । ସେ ଜେଲ୍ ଗଲେ, ତାଂକ ପରବର୍ତ୍ତୀ ଡିକ୍ଟେଟରଂକୁ ବାଛିବେ । ଏହି କ୍ରମରେ ଡିକ୍ଟେଟର୍‌ମାନେ ବଛାଯିବେ ଓ ସତ୍ୟାଗ୍ରହ ଚାଲିବ । ହରତାଳର ପ୍ରଥମ ଦିବସର ଆହ୍ୱାନ ‘ଛାତ୍ର’ରେ ଯାହା ପ୍ରକାଶିତ ହୋଇଥିଲା, ଏଥିରେ ମଧ୍ୟ ଆହ୍ୱାନ ଦିଆଗଲା ଯେ, ଇଚ୍ଛୁକ ସତ୍ୟାଗ୍ରହୀମାନେ ଏକ ଶପଥପାଠରେ ଦସ୍ତଖତ କରି ଅଫିସ୍‌କୁ ପଠାଇବେ ।

‘ଛାତ୍ର’ର କିୟଦଂଶ : ଲଢ଼େଇ ଆହ୍ୱାନ ‘ଛାତ୍ର’ର ୮ ନଂବର ବୁଲେଟିନ୍‌ରେ ପ୍ରକାଶିତ ଏକାଂଶ— କାଲି ୨୦ ତାରିଖ ଏପ୍ରିଲ୍‌ଠାରୁ ସତ୍ୟାଗ୍ରହ ଲଢ଼େଇ ଆରଂଭ । କମ୍ରେଡ୍ ବିଶ୍ୱନାଥ ପଣ୍ଡାଏତ୍ ପ୍ରଥମ ସତ୍ୟାଗ୍ରହୀ-ବାହିନୀ ଚଳାଇବେ । ଶହ ଶହ ଛାତ୍ର ଜେଲ୍ ଯିବାକୁ ତିଆର ।

“ମାନ୍ୟବର ଶିକ୍ଷାମଂତ୍ରୀଂକ ସଂଗେ ମିଳାମିଶା କରିବାକୁ ନିଖିଳ ଉତ୍କଳ ଛାତ୍ରସଂଘ ତରଫରୁ ଯେଉଁ ପ୍ରତିନିଧି ଦଳ ପଠାଯାଇଥିଲେ, ସେମାନେ ନିରାଶ ହୋଇ ଫେରିଆସିଛଂତି । ସରକାର ନିଜର ଭୁଲ୍ ମାନିଲେ ମଧ୍ୟ ଜିଦ୍ ଛାଡ଼ିଲେନାହିଁ । କୌଣସି ସମ୍ମାନଜନକ ନିଷ୍ପତ୍ତିରେ ପହଂଚିବାକୁ ସେ ଜମା ରାଜି ନୁହଂତି ବୋଲି ଜଣାପଡ଼ିଗଲା । ପ୍ରତିନିଧି ଦଳର ନେତା ପୁରୀରୁ ଫେରିବା ପରେ ନିଖିଳ ଉତ୍କଳ ଛାତ୍ରସଂଘର Council of Action ବସି ଶେଷ ପଂଥା ସ୍ୱରୂପ ଏପ୍ରିଲ୍ ୨୦ ତାରିଖ ୧୯୩୯ଠାରୁ ସତ୍ୟାଗ୍ରହ ସମର ଚଳାଇବାକୁ ସ୍ଥିରକଲେ । ନିଖିଳ ଉତ୍କଳ ଛାତ୍ରସଂଘର ଯୁଗ୍ମ-ସଂପାଦକ କମ୍ରେଡ୍ ବିଶ୍ୱନାଥ ପଣ୍ଡାଏତ୍ ପ୍ରଥମ ସତ୍ୟାଗ୍ରହୀ ବାହିନୀର ଡିକ୍ଟେଟର୍ ହେଲେ । ସେ କାଲିଠାରୁ ସରକାରର ଉଦାସୀନତା ବିରୁଦ୍ଧରେ ଯୁଦ୍ଧଚଳାଇବେ । ଶହ ଶହ ଛାତ୍ର ସ୍ୱେଚ୍ଛାସେବକ ହୋଇ ବାହାରିଲେଣି । ପୁରୀ, ଖୋରଧା ପ୍ରଭୃତି ଦୂରବର୍ତ୍ତୀ ଅଂଚଳରୁ ବହୁତ ଛାତ୍ରସତ୍ୟାଗ୍ରହୀ ବାହିନୀରେ

ଯୋଗଦେବାକୁ ପ୍ରତିଶ୍ରୁତି ପଠାଉଛଂତି ।

ଗତକାଲି ପୁରୀରୁ ଶିକ୍ଷାମଂତ୍ରୀଂକ ସଂଗେ ଶେଷ କଥାବାର୍ତା କରି ପ୍ରତିନିଧି ଦଳର ନେତା ଶ୍ରୀ ମନମୋହନ ମିଶ୍ର ଫେରିଲା ପରେ ଉତ୍କଳ ଛାତ୍ରସଂଘର Council of Actionର ଜରୁରୀ ବୈଠକ ବସିଲା । ସରକାରଂକ ସଂଗେ ଆବଶ୍ୟକୀୟ ପଂଥା ସ୍ଥିର କରିବା ପାଇଁ ବିଜୟଚଂଦ୍ର ଦାସ, ବୈଦ୍ୟନାଥ ରଥ, ସଚ୍ଚି ରାଉତରାୟ, ଅଶୋକ ଦାସ, ମନମୋହନ ମିଶ୍ର, ଗଂଗାଧର ମହାପାତ୍ର, ନୀଳମଣି ରାଉତରାୟ ଓ ସୁବୋଧ ବେଉରିଆଂକୁ ନେଇ ଏହି Council of Action ଗଢ଼ାଯାଇଥିଲା । ରାତି ପ୍ରାୟ ୧୨ଟା ବେଳେ Council of Action ଶେଷ ଅସ୍ତ୍ର ସ୍ୱରୂପ ସତ୍ୟାଗ୍ରହ-ସମର ଚଳାଇବା ଏକମାତ୍ର ପଂଥା ବୋଲି ସ୍ଥିର କରେ । ନିମ୍ନଲିଖିତ ପ୍ରସ୍ତାବ Council of Actionରେ ଗୃହୀତ ହୋଇଗଲା ।

The Council of Action of the A.U.S.F. regrets that all its efforts to arrive at an honourable settlement between the government and the student of the Orissa Medical School have failed due to un-sympathetic attitude of the former.

It further feels that it has exhausted all possible steps except Satyagraha to which it painfully resorts, to save the student community and to save the student annihilation.

It resolves that Satyagraha be started on the 20th April, 1939 and calls upon the students of Orissa to enlist themselves as volunteers for this noble struggle.

The Council of Action appoints Com. Viswanath Pasayat with full powers to conduct the fight and to choose his successor in case of his forced absence from the struggle.

The Council of Action after delegating all its power to the first dictator dissolves itself."

ପ୍ରଥମ ଡିକ୍ଟେଟରଂକୁ ସବୁ କ୍ଷମତା ଦେବା ପରେ କାଉନ୍‌ସିଲ୍ ଅଫ୍ ଆକ୍‌ସନ୍ ମିଳାଇଗଲା । ପ୍ରଥମ ଡିକ୍ଟେଟର୍ ବଂଦୀହେଲେ ସେ ତାଂକ ଉତ୍ତରାଧିକାରୀ ନିର୍ବାଚନ କରିବେ । ଯେଉଁ ଛାତ୍ରମାନଂକର ସତ୍ୟାଗ୍ରହୀ ହେବା ପାଇଁ ଇଚ୍ଛା, ସେମାନେ ଛାତ୍ର ଅଫିସ୍‌କୁ ସଚ୍ଚି ରାଉତରାୟଂକ ନିକଟକୁ ଜଣାଇଦିଅଂତୁ । ସତ୍ୟାଗ୍ରହୀମାନଂକୁ ଏକ ଶପଥପତ୍ରରେ ଦସ୍ତଖତ କରି ସେମାନଂକର ନାମ ଓ ଠିକଣା ଆଦି ପଠାଇବାକୁ ଅନୁରୋଧ କରାଗଲା, ତାହା ହେଲା –

**କାଲି ୨୦ ତାରିଖ ଏପ୍ରିଲ୍‌ଠାରୁ ସତ୍ୟାଗ୍ରହ ଆରଂଭ । କମ୍ରେଡ ବିଶ୍ୱନାଥ ପଶାଏତ୍ ପ୍ରଥମ ସତ୍ୟାଗ୍ରହୀ – ସତ୍ୟାଗ୍ରହୀ ବାହିନୀରେ ଯୋଗଦିଅ :**

କାଲିଠାରୁ ସତ୍ୟାଗ୍ରହ ଆରଂଭହେବ। ଶହ ଶହ ଛାତ୍ର ଜେଲ୍ ଯିବାକୁ ତିଆର ହୋଇ ବାହାରୁଛଂତି। ଯେଉଁମାନେ ସ୍ୱେଚ୍ଛାସେବକ ହୋଇ ସତ୍ୟାଗ୍ରହ ଯୁଦ୍ଧରେ ଯୋଗଦେବାକୁ ଇଚ୍ଛା କରଂତି, ସେମାନଂକୁ କାୟମନୋବାକ୍ୟରେ ଅହିଂସା ଓ କଂଗ୍ରେସଭକ୍ତ ହୋଇ ରହିବା ପାଇଁ ଶପଥ ନେବାକୁ ହେବ। ନିମ୍ନଲିଖିତ ଶପଥପତ୍ରରେ ଯେଉଁମାନଂକର ବିଶ୍ୱାସ ଅଛି, ସେମାନେ ସ୍ୱେଚ୍ଛାସେବକ ହେବାପାଇଁ ଦରଖାସ୍ତ କରିପାରଂତି। ତଳେ ଶପଥପତ୍ର ଛପାଗଲା। ସେହି ଶପଥପତ୍ରରେ ଦସ୍ତଖତ କରି ପଠାଇବାକୁ ହେବ।

**ଶପଥପତ୍ର :**

ମୁଁ ଶପଥ ଗ୍ରହଣ କରି କହୁଛି ଯେ, ଛାତ୍ର-ସମାଜର ସମ୍ମାନ ରକ୍ଷା କରିବା ଲାଗି ମୁଁ ସତ୍ୟାଗ୍ରହୀ ଭାବରେ ଯୋଗଦେଉଛି। ମୁଁ ପ୍ରତିଜ୍ଞା କରୁଛି, ମୁଁ କାୟମନୋବାକ୍ୟରେ ସତ୍ୟ ଓ ଅହିଂସା ନୀତି ଅବଲଂବନ କରିବି। ପୁଣି ମଧ୍ୟ ମୁଁ ଘୋଷଣା କରୁଛି ଯେ, ଛାତ୍ରମାନଂକର ନ୍ୟାୟସଂଗତ ଦାବି ପାଇଁ ମୁଁ ଲଢୁଛି; କଂଗ୍ରେସ ବିରୁଦ୍ଧରେ ମୋର ଲଢ଼େଇ ନୁହେଁ। ଆମର ଏ ସଂଗ୍ରାମ ଯେ କଂଗ୍ରେସର ସମ୍ମାନ ଓ ଗୌରବ ବଢ଼ାଇବ, ଏହା ମୋର ଦୃଢ଼ ବିଶ୍ୱାସ। ଆମର ଯୁଦ୍ଧ ସାମ୍ରାଜ୍ୟବାଦର ସମସ୍ତ ପ୍ରତିକ୍ରିୟାଶୀଳ ମିତ୍ରମାନଂକ ବିରୁଦ୍ଧରେ। କାରଣ, ଏମାନେ କଂଗ୍ରେସର ବୃହତ୍ତର ଲକ୍ଷ୍ୟସ୍ଥଳ ପଥରେ ପ୍ରଧାନ ଅଂତରାୟ। ମୁଁ ପୁଣି ଶପଥ କରି କହୁଛି, ମୁଁ କୌଣସି ଦୁଃଖ ନିର୍ଯାତନା ଆଗରେ ପଛଘୁଞ୍ଚା ଦେବିନାହିଁ ଏବଂ ଡିକ୍ଟେଟର୍ ବା ଅଧିନାୟକଂକ ଆଦେଶ ହସି ହସି ପାଳନକରିବି।

ଠିକଣା ସ୍ୱାକ୍ଷର

କ୍ଲାସ୍/ସ୍କୁଲ୍/କଲେଜ ଓ ବୟସ

ତାରିଖ

ଏହି ପ୍ରତିଜ୍ଞାପତ୍ରରେ ସ୍ୱାକ୍ଷର କରି ତଳ ଠିକଣାରେ ପଠାଇବାକୁ ଅନୁରୋଧ।

**ସଚ୍ଚି ରାଉତରାୟ, ପରିଚାଳକ 'ଛାତ୍ର', ପୁରୁଣା କଲେଜ ଗଳି, କଟକ।**

('ସଂଗ୍ରାମୀ'ରୁ ଗୃହୀତ)

**ସତ୍ୟାଗ୍ରହର ପ୍ରଥମ ଦିବସ** – ପ୍ରଥମ ଡିକ୍ଟେଟର୍ ଶ୍ରୀ ବିଶ୍ୱନାଥ ପଶାଏତଂକ ନେତୃତ୍ୱରେ ୧୧ ଜଣ ମେଡ଼ିକାଲ୍ ଛାତ୍ର ୨୦.୪.୩୯ ତାରିଖରେ ମେଡ଼ିକାଲ୍ ସ୍କୁଲ୍‌ରୁ ବାହାରି ପୁରୁଣା ସଚିବାଳୟ (ବର୍ତ୍ତମାନ ସିଟି ହସ୍‌ପିଟାଲ୍) ଅଭିମୁଖେ ଯାତ୍ରାକଲେ (ଏହା 'ସଂଗ୍ରାମୀ' ପୁସ୍ତକରୁ ଜଣାଯାଏ। ମାତ୍ର ୨୫.୪.୩୯ 'ଛାତ୍ର' ଅନୁଯାୟୀ ୨୭ ଜଣ)। ରାସ୍ତାରେ ଛାତ୍ର ଓ ଜନସାଧାରଣ ଓ ଡିକ୍ଟେଟର୍ ସତ୍ୟାଗ୍ରହୀମାନଂକୁ ଫୁଲମାଳରେ ଭୂଷିତକଲେ ଓ କପାଳରେ ବିଜୟ-ସିଂଦୂର ଟିକା ଦେଲେ। ସତ୍ୟାଗ୍ରହୀମାନେ କୌଣସି କର୍ମଚାରୀଂକୁ ଭିତରକୁ ଛାଡ଼ିଦେଇନଥିଲେ ଓ ପୁଲିସ୍ ସହ ଟଣାଓଟଣା ମଧ୍ୟ ହେଲା। ପୁଲିସ୍ ଇନିସ୍‌ପେକ୍ଟର ଶ୍ରୀପତି ନଂଦ

ସେମାନଂକୁ ଗିରଫକଲେ ଓ କଟକ ଜେଲ୍‌କୁ ପଠାଇଦେଲେ। ସେମାନଂକ ବିଚାର ଭାରତୀୟ ପିଂଗଳ କୋର୍ଡର ୧୪୩ ଦଫା ଓ ୩୪୧ ଦଫା (ରାସ୍ତା ଅବରୋଧ ଓ ଜମାଏତ୍ ବନ୍ଧି) ଅନୁଯାୟୀ କଟକ ଜେଲ୍ ଭିତରେ ଆରଂଭହେଲା। ଶ୍ରୀ ଭଗବାନ୍ ମହାପାତ୍ର ମ୍ୟାଜିଷ୍ଟ୍ରେଟ୍ ମୁଦାଲାମାନଂକୁ ସେମାନଂକ ବିରୁଦ୍ଧରେ ଅଭିଯୋଗ ବୁଝାଇଥିଲେ। ସରକାରଂକ ତରଫରୁ ପୁଲିସ୍ ଇନ୍‌ସ୍‌ପେକ୍ଟର ଶ୍ରୀପତି ନଂଦ, ସେକ୍ରେଟାରିଏଟ୍ ହେଡ୍ ଆସିଷ୍ଟାଂଟ ମିଷ୍ଟର୍ ସାମୁଏଲ୍ ଦାସ (ରାୟସାହେବ), ମ୍ୟାଜିଷ୍ଟ୍ରେଟ୍ ଗଣେଶଚଂଦ୍ର ବାବୁ, ଜଗତନାରାୟଣ ପ୍ରହରାଜ ଓ ବାବୁ ପଦ୍ମଚରଣ ମହାପାତ୍ର ଜମାନବଂଦି କରିଥିଲେ। ସାକ୍ଷୀମାନଂକୁ ଜେରା ନକରି ସତ୍ୟାଗ୍ରହୀମାନେ କହିଲେ ଯେ ମେଡ଼ିକାଲ୍ ଛାତ୍ରମାନଂକ ଆପତ୍ତି-ଅଭିଯୋଗର ପ୍ରତିକାର ପାଇଁ ସରକାରଂକ ଉପରେ ନୈତିକ ପ୍ରଭାବ ପକାଇବା ତାଂକର ଉଦ୍ଦେଶ୍ୟ। ସେମାନେ କୌଣସି ଅପରାଧ କରିନାହାଂତି।

**ସତ୍ୟାଗ୍ରହର ଦ୍ୱିତୀୟ ଦିବସ:** ୨୧.୪.୩୯ ତାରିଖରେ ମେଡ଼ିକାଲ୍ ଛାତ୍ର ହରିଚରଣ ଦାସ ଦ୍ୱିତୀୟ ଡିକ୍ଟେଟର୍ ଭାବେ ୧୧ ଜଣ ମେଡ଼ିକାଲ୍ ଛାତ୍ରଂକୁ ନେଇ ସତ୍ୟାଗ୍ରହ ଆରଂଭ କଲେ। ଏଣେ ରେଭେନ୍‌ସା କଲିଜିଏଟ୍ ସ୍କୁଲ୍‌ରୁ ବିକ୍ରମ ଦାସ (ପରବର୍ତ୍ତୀ କାଳରେ ଡାକ୍ତର ଓ ପ୍ରଫେସର)ଙ୍କ ନେତୃତ୍ୱରେ କଲିଜିଏଟ୍ ସ୍କୁଲ୍‌ର ଛାତ୍ରମାନେ ମେଡ଼ିକାଲ୍ ସ୍କୁଲ୍‌ଠାରୁ ବାହାରି ସଚିବାଳୟ ସାମନାରେ ସତ୍ୟାଗ୍ରହ କରି ଗିରଫ୍ ହେଲେ ଓ କଟକ ଜେଲ୍‌କୁ ଗଲେ।

**ସତ୍ୟାଗ୍ରହ ସମରର ତୃତୀୟ ଦିବସ:** ଶ୍ରୀ ମନମୋହନ ମିଶ୍ରଂକ ନେତୃତ୍ୱରେ ୧୬ ଜଣ ସତ୍ୟାଗ୍ରହୀ ବିରାଟ ଶୋଭାଯାତ୍ରାରେ ଯାଇ ଗିରଫ ହେଲ। ତାଂକ ସହ ଯେଉଁମାନେ ତୃତୀୟ ସତ୍ୟାଗ୍ରହୀ ଦଳରେ ଗିରଫ ହେଲେ, ସେମାନେ ହେଲେ ବ୍ରଜକିଶୋର ପଟ୍ଟନାୟକ, କୁଳମଣି ମହାଂତି, ବସଂତ କୁମାର ମହାଂତି (ସମସ୍ତେ ପି.ଏମ୍. ଏକାଡେମୀ ଛାତ୍ର), ମିଶନ ସ୍କୁଲ୍ ଛାତ୍ର ବନବିହାରୀ ମହାଂତି, ବ୍ରଜମୋହନ ଦାସ, ଭରତ ଚରଣ ସାହୁ, କଲିଜିଏଟ୍ ସ୍କୁଲ୍ ଛାତ୍ର ବିଚିତ୍ରାନଂଦ ଚୌଧୁରୀ, ନିରଂଜନ ଦାସ, ମାନ୍ୟବର ସ୍ପିକରଂକ ପୁଅ ନଟଗୋପାଳ ଦାସ, ମେଡ଼ି-କାଲ୍‌ଛାତ୍ର ରାଧାଶ୍ୟାମସାହୁ, ଅନିଲକୁମାର ଆଚାର୍ଯ୍ୟ, ବୀରେଂଦ୍ର କୁମାର ପଟ୍ଟ-ନାୟକ, ଶିଶିର କୁମାର ଚାଂଦ, ଅମରେଶ୍ ପ୍ରସାଦ ଦାସ, ଗୋଲୋକବିହାରୀ ପାଣି।

ଚତୁର୍ଥ ଡିକ୍ଟେଟର୍ ନୀଳମଣି ରାଉତରାୟ ଓ ୫ମ ଡିକ୍ଟେଟର୍ ବିବୁଧେଂଦ୍ର ମିଶ୍ର ମେଡ଼ିକାଲ୍ ଓ ସ୍କୁଲ୍ ଛାତ୍ରମାନଂକ ସହ ଗିରଫ ହେଲେ। ସଚ୍ଚି ରାଉତରାୟ ଓ ବିବୁଧେଂଦ୍ର ମିଶ୍ର ଏକ ବିରାଟ ସଭାରେ ପ୍ରଧାନମଂତ୍ରୀଂକ ଘରଠାକୁ ଆସିଥିଲେ। ସେଠାରେ ଭାଷଣ ପ୍ରସଙ୍ଗରେ ସେମାନେ କହିଲେ ଯେ, ଧରାପୃଷ୍ଠରୁ ଛାତ୍ର-ସମାଜ ଲୋପ୍ ପାଉ ନଚେତ୍ ମଂତ୍ରିମଂଡଳ ଧ୍ୱଂସହେଉ। କବି ରବୀଂଦ୍ରନାଥ ଠାକୁରଂକୁ, ଯେ କି ସେତେବେଳେ ପୁରୀରେ ଥିଲେ, ଦେଖିଯିବା ପାଇଁ ଛାତ୍ରମାନଂକ ନିମନ୍ତେ

ସରକାରଂକ ତରଫରୁ ବ୍ୟବସ୍ଥା କରାଯାଇଥିବା ସ୍ପେଶାଲ୍ ଟ୍ରେନ୍‌କୁ ବଏକଟ୍ କରାଯିବା ପାଇଁ ବାବୁ ନୀଳମଣି ରାଉତରାୟ ଭାଷଣ ଦେଇଥିଲେ। ('ଛାତ୍ର'ରେ ପ୍ରକାଶିତ ବିବରଣୀ ସହିତ 'ସମାଜ'ରେ ପ୍ରକାଶିତ ଏହି ବିବରଣୀରେ ଟିକିଏ ପାର୍ଥକ୍ୟ ଦେଖାଯାଏ – 'ସମାଜ'– ୨୨.୪.୩୯ ତାରିଖ)

ଆଶୋକ ଦାସ, ସଚ୍ଚି ରାଉତରାୟ, ନୀଳମଣି ରାଉତରାୟ ଗିରଫ ହେଲେ; ମାତ୍ର ସଚ୍ଚି ରାଉତରାୟ ପି.ସି.ସି. ସଭ୍ୟ ଥିବାରୁ ତାଂକୁ ପରେ ଛାଡ଼ି ଦିଆଯାଇଥିଲା। 'ଛାତ୍ର' ବୁଲେଟିନ୍ ପ୍ରକାଶ କରୁଥିବା 'ଅବ୍‌ଜରଭର ପ୍ରେସ୍' ଖାନ୍‌ତଲାସହେଲା। କେତେକ ପାଂଡୁଲିପି ଜବତ୍‌ହେଲା। ସଚ୍ଚି ରାଉତରାୟଂକ ବିରୁଦ୍ଧରେ ଦ୍ୱିତୀୟ ମୋକଦ୍ଦମା ପ୍ରେସ୍ ଆଇନ୍ ଅନୁଯାୟୀ ରୁଜୁହେଲା। କଟକ ବାର-ଆସୋସିଏସନ୍‌ର ଓକିଲମାନେ ସରକାରଂକ କାର୍ଯ୍ୟକଳାପର ନିଂଦାବାଦ କରି ଓ ଛାତ୍ରମାନଂକର ପ୍ରକାଶ୍ୟ ବିଚାରଳାୟରେ ବିଚାରପାଇଁ ଦାବି କଲେ। ୨୨ ତାରିଖରେ ଏକ ଛାତ୍ର ସମାବେଶ ବୀରେନ୍ ମିତ୍ର (ପରେ ମୁଖ୍ୟମଂତ୍ରୀ)ଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା। ଯେଉଁ ଯେଉଁ କଂଗ୍ରେସ ନେତାମାନଂକ ପୁଅମାନେ ଗିରଫ ହେଲେ, ସେମାନଂକ ମଧ୍ୟରେ ମ୍ୟୁନିସିପାଲିଟି ଚେୟାରମ୍ୟାନ୍ କଂଗ୍ରେସ ନେତା ଭାଗୀରଥି ମହାପାତ୍ରଂକ ପୁତ୍ର ଅଭିତାଭ ମହାପାତ୍ର, ସ୍ପିକର୍ ମୁକୁନ୍ଦ ପ୍ରସାଦ ଦାସଂକ ପୁଅ ନଟଗୋପାଳ ଦାସ, ପଂଡିତ ନୀଳକଂଠ ଦାସଂକ ଦୁଇ ପୁଅ ଅଶୋକ ଦାସ ଓ ବିକ୍ରମ ଦାସ। ଏହାଛଡ଼ା ପାର୍ଲିଆମେଂଟାରୀ ସେକ୍ରେଟାରୀ ଯଦୁମଣି ମଂଗରାଜଂକ ପୁଅ ବିଜୟ ମଂଗରାଜ ମଧ୍ୟ ସତ୍ୟାଗ୍ରହ କରି ଗିରଫ ହୋଇଥିଲେ। ଛାତ୍ରସତ୍ୟାଗ୍ରହୀ ନେତା ନରସିଂହ ତ୍ରିପାଠୀ ଓ କଲିଜିଏଟ୍ ସ୍କୁଲ୍‌ର ଜଗତକୃଷ୍ଣ ଦାସ, ସତ୍ୟବାଦୀ ମିଶ୍ର ପ୍ରଭୃତି ମଧ୍ୟ ଗିରଫ୍ ହେଲେ।

ଷଷ୍ଠ ଡିକ୍ଟେଟର୍ ଗିରିଜା ଶଂକର ବହିଦାର (ପରବର୍ତ୍ତୀକାଳର ସରକାରୀ ଓକିଲ) ୪ ଜଣ ସତ୍ୟାଗ୍ରହୀଂକ ସହ ଗିରଫହେଲେ। ତା' ପରବର୍ତ୍ତୀ ଡିକ୍ଟେଟର୍ ହେଲେ– ବୀରେନ୍ ମିତ୍ର। ବଳରାମ ମହାଂତି, ନଟ ଗୋପାଳ ପଟ୍ଟନାୟକ, ଜୟକୃଷ୍ଣ, କିଶୋରୀ ମୋହନ ଓ ଗୋବିଂଦ ଚଂଦ୍ର ମହାଂତି, ସୁଧୀର କବି ପ୍ରଭୃତି ସତ୍ୟାଗ୍ରହ କରିଥିଲେ। ବିଶିଷ୍ଟ ବୟୋଜ୍ୟେଷ୍ଠ ଓକିଲ ପାରେଶ୍ୱର ମହାଂତିଂକ ସଭାପତିତ୍ୱରେ ଏକ ସାଧାରଣ ସଭା ହେଲା– ଆଡ୍‌ଭୋକେଟ୍ ଜେନେରାଲ୍ ବୀରକିଶୋର ରାୟ, ବିଚିତ୍ରାନଂଦ ମହାଂତି, ମହମ୍ମଦ ନୁରୁଲ୍ ହୁଦା, ଡାକ୍ତର ରଜନୀକାଂତ ଘୋଷ, ରାୟବାହାଦୂର ଲକ୍ଷ୍ମୀଧର ମହାଂତି ପ୍ରଭୃତିଂକୁ ନେଇ ଏକ କମିଟି ଗଠିତ ହେଲା। ବୀରବାବୁ, ଲକ୍ଷ୍ମୀଧରବାବୁ, ହରିହର ମହାପାତ୍ର, ସତ୍ୟନାରାୟଣ ସେନ୍‌ଗୁପ୍ତଂକ ଭାଷଣରେ ଧର୍ମଘଟର ଓ ସତ୍ୟାଗ୍ରହର ଅବସାନ ପାଇଁ ସରକାର ତୁରଂତ ପଦକ୍ଷେପ ଗ୍ରହଣ କରିବାକୁ ଦାବି କରାଗଲା।

ମେଡ଼ିକାଲ୍ ସ୍କୁଲ୍ ଧର୍ମଘଟ ଓ ସତ୍ୟାଗ୍ରହ ତୁରଂତ ସମାଧାନ ପାଇଁ କଂଗ୍ରେସ

ଅନୁଷ୍ଠାନ ଭିତରେ ମଧ୍ୟ ଉଦ୍‌ବେଗ ପ୍ରକାଶପାଇଲା । କାରଣ ଏପରି ଆଂଦୋଳନ ବହୁଦିନ ଧରି ଚାଲିଲେ କଂଗ୍ରେସ ସରକାର ବଦନାମ ହେବ ଓ ସର୍ବଭାରତୀୟ କ୍ଷେତ୍ରରେ ଏହାର ପ୍ରତିକ୍ରିୟା ଭିନ୍ନ ପ୍ରକାରର ହେବ। ଜନମତ ମଧ୍ୟ ଛାତ୍ରଂକ ସପକ୍ଷରେ ଗଲା । ପ୍ରଦେଶ କଂଗ୍ରେସ ସଭାପତି ପଂଡିତ ନୀଳକଂଠ ଦାସ ସମାଧାନର ଏକ ସୂତ୍ର ବାହାରକରିବାପାଇଁ ଓଡ଼ିଶାର ମୁଖ୍ୟମଂତ୍ରୀ ବିଶ୍ୱନାଥ ଦାସଂକ ପାଖକୁ ଚିଠି ଲେଖିଲେ । ନେତୃସ୍ଥାନୀୟ ବନ୍ଧୁ କଂଗ୍ରେସ ନେତା ଓ ପ୍ରାଦେଶିକ କଂଗ୍ରେସ ସଭାପତି ପଂଡିତ ନୀଳକଂଠ ଦାସ ଛାତ୍ରନେତା ଓ ସରକାରଂକ ମଧ୍ୟରେ ମଧ୍ୟସ୍ଥତା କଲେ । ମୁଖ୍ୟମଂତ୍ରୀଂକ ସହ ଏକ ଚୁକ୍ତିନାମା ସଂପାଦିତ ହେଲା ଓ ୨୬.୪.୩୯ ତାରିଖରେ ସରକାରୀ ବିଜ୍ଞପ୍ତି ପ୍ରକାଶିତ ହେଲା ଯେ, ଛାତ୍ରମାନଂକ ବିରୁଦ୍ଧରେ କୌଣସି ଶାସ୍ତିମୂଳକ କାର୍ଯ୍ୟ କରାଯିବ ନାହିଁ ଓ ସତ୍ୟାଗ୍ରହରେ ଯୋଗଦେଇଥିବା ହେତୁ ଛାତ୍ରମାନଂକ ଭବିଷ୍ୟତଉପରେ କୌଣସି ଆଂଚ ଆସିବନାହିଁ ଓ ଛାତ୍ରମାନଂକୁ ଖଲାସ କରିଦିଆଯିବ । ସେମାନଂକ ବିରୁଦ୍ଧରେ ଚାଲିଥିବା ମୋକଦ୍ଦମାମାନ ଉଠାଇଦିଆଯିବ ।

୨୭.୪.୩୯ ତାରିଖରେ ସବୁ ଛାତ୍ରବଂଦୀଂକୁ ଜେଲ୍‌ରୁ ମୁକ୍ତି ଦିଆଗଲା । ଛାତ୍ରମାନେ 'ବିଜୟ ଦିବସ ପାଳନ' କଲେ ଏକ ବିରାଟ ସଭାରେ । ଏ ସଭାରେ ବଂଗଳାର ଛାତ୍ରସଂଘ ସଂପାଦକ ଶ୍ରୀ ବିଶ୍ୱନାଥ ମୁଖାର୍ଜୀ ଏକ ଓଜସ୍ୱିନୀ ବକ୍ତୃତା ଦେଇ ଓଡ଼ିଶାର ଛାତ୍ରମାନଂକୁ ଏ ସଂଗ୍ରାମଯୋଗୁଁ ଧନ୍ୟବାଦ ଦେଇଥିଲେ । ଏ ଧର୍ମଘଟ ଯେ ଓଡ଼ିଶା ଛାତ୍ରସଂଘର ପ୍ରଥମ ଧର୍ମଘଟ, ତା' ନୁହେଁ; ଏହା ସାରା ଭାରତରେ ପ୍ରଥମ ଛାତ୍ର ଧର୍ମଘଟ ବୋଲି ଶ୍ରୀ ମୁଖାର୍ଜୀ ଅଭିହିତ କରିଥିଲେ । ଓଡ଼ିଶାରେ ମେଡ଼ିକାଲ୍ ଛାତ୍ରଧର୍ମଘଟ ଓ ସତ୍ୟାଗ୍ରହ ଆଂଦୋଳନ ଓଡ଼ିଶାର ପ୍ରଗତିଶୀଳ ଛାତ୍ର ଆଂଦୋଳନର ମୂଳଦୁଆ ପକାଇଥିଲା । ଏ ଆଂଦୋଳନ ଭାରତର ସ୍ୱାଧୀନତା ସଂଗ୍ରାମର ଏକ ଅଂଶ ରୂପେ ଇତିହାସରେ ଲିପିବଦ୍ଧ ହେଲା । ଏତେ ବଡ଼ ଛାତ୍ର ସତ୍ୟାଗ୍ରହ ଏ ପର୍ଯ୍ୟଂତ ଓଡ଼ିଶାରେ ହୋଇନି । ('ସଂଗ୍ରାମୀ'ରୁ ଗୃହୀତ)

**ସରକାରଂକ ସହ ମିଳାମିଶା : ପଂଡିତ ନୀଳକଂଠ ମଧ୍ୟସ୍ଥି ହେଲେ – ମୋତେ ୨୫୦ ଟଙ୍କା ଜୋରିମାନା ନଦେଲେ ଦୁଇମାସ ଜେଲ୍ ଦଂଡ଼ ମିଳିଲା :**

ଉତ୍କଳ ପ୍ରଦେଶ କଂଗ୍ରେସ ସଭାପତି ପଂଡିତ ନୀଳକଂଠ ଦାସଂକ ମଧ୍ୟସ୍ଥତାରେ ସରକାରଂକ ସହିତ ମିଳାମିଶାହେଲା । ତାହା ଫଳରେ ଛାତ୍ର ନେତାମାନଂକ ବିରୁଦ୍ଧରେ ଚାଲିଥିବା ମୋକଦ୍ଦମା ସବୁ ଉଠାଇନିଆଗଲା ।

**ମୋ' ବିରୋଧରେ ମୋକଦ୍ଦମା ସରକାର ଉଠାଇଲେ ନାହିଁ–** ମୋ' ବିରୋଧରେ ଓ ମଧୁସୂଦନ ମହାଂତିଂକ ବିରୁଦ୍ଧରେ ପ୍ରେସ ଆଇନବଳରେ 'ଛାତ୍ର' ପ୍ରକାଶ କରୁଥିବା ଯୋଗୁଁ ଯେଉଁ ମୋକଦ୍ଦମା ଚାଲୁଥିଲା, ତାହା ସେହିପରି ଚାଲିଲା । ମୋ ବି.ଏ. ପରୀକ୍ଷା ହେବା କିଛିଦିନ ପୂର୍ବରୁ ସେ ମୋକଦ୍ଦମାର ରାୟ ବାହାରିଲା – ବିଚାରରେ ମୋତେ ୨୫୦ ଟଂକା ଜୋରିମାନା ଏବଂ ତାହା ନଦେଲେ ଦୁଇମାସ

ସଶ୍ରମ କାରାଦଂଡ ଶାସ୍ତି ମିଳିଲା । 'ଛାତ୍ର'ର ମୁଦ୍ରକ 'ଅବଜରଭର' ପ୍ରେସ୍‌ର ମାଲିକ ଆଡଭୋକେଟ୍ ମଧୁସୂଦନ ମହାଂତିଂକୁ ମଧ୍ୟ ଅନୁରୂପ ସଜା ମିଳିଲା । ରାୟ ବାହାରିବା ପରେ ମଧୁବାବୁ କାଳୀଗଳି ଯାଇ ଓକିଲ ସୁବ୍ବା ରାଓଂକଠାରୁ ଟଂକା ଧାର୍ ଆଣି ମୋ' ଜୋରିମାନା ଏବଂ ତାଂକ ଜୋରିମାନା କୋର୍ଟରେ ଦାଖଲକରିଦେଲେ । ତାହା ଫଳରେ ମୁଁ ସଶ୍ରମ କାରାଦଂଡରୁ ବଂଚିଗଲି ଏବଂ ନିକଟରେ ହେବାକୁ ଥିବା ବି.ଏ. ପରୀକ୍ଷା ଦେବାକୁ ସୁଯୋଗ ପାଇଲି ।

ଓଡ଼ିଶା କଂଗ୍ରେସ କମିଟି ସଭାପତି ପଂଡିତ ନୀଳକଂଠ ଦାସ ଏ ବିଷୟରେ ସରକାରଂକୁ ଲେଖିଲେ । ମୋ ବିରୁଦ୍ଧରେ କେସ୍ ଉଠାଇନଦେଇ ଏବଂ ଶାସ୍ତିବିଧାନ କରି ସରକାର ଚୁକ୍ତିଭଂଗ କରିଛଂତି ବୋଲି ଅଭିଯୋଗ ଆଣିଲେ । ଏ ମିଳାମିଶାର ଅନ୍ୟାନ୍ୟ ସର୍ତମାନ ଥିଲା – ସବୁ ଛାତ୍ରବଂଦୀ ମୁକ୍ତହେବେ । ସରକାର କୌଣସି ଛାତ୍ର ବିରୋଧରେ ଆକ୍ରୋଶମୂଳକ ବ୍ୟବସ୍ଥା ନେବେ ନାହିଁ । ଛାତ୍ରମାନଂକ ବିରୋଧରେ ଚାଲିଥିବା ମୋକଦ୍ଦମାଗୁଡ଼ିକ ଉଠାଇ ନିଆଯିବ ଇତ୍ୟାଦି ।

ଉତ୍ତରରେ ଓଡ଼ିଶାର ମୁଖ୍ୟମଂତ୍ରୀ ଶ୍ରୀ ବିଶ୍ୱନାଥ ଦାସ ତାଂକୁ ଯାହା ଲେଖିଥିଲେ ତାହା ତଳେ ଦିଆଗଲା । ଶ୍ରୀ ଦାସ ଲେଖିଥିଲେ ଯେ ସଚ୍ଚି ରାଉତରାୟ ପ୍ରଭୃତିଂକ ବିରୁଦ୍ଧରେ ଚାଲିଥିବା ପ୍ରେସ୍ ଆକ୍ଟ ମୋକଦ୍ଦମା ସହିତ ମେଡ଼ିକାଲ ଷ୍ଟ୍ରାଇକ୍‌ର କିଛି ସଂବଂଧ ନାହିଁ । ତେଣୁ ସଚ୍ଚି ରାଉରାୟ ଓ ମଧୁସୂଦନ ମହାଂତିଂକ ନାମରେ ହୋଇଥିବା ମୋକଦ୍ଦମା ଉଠାଇନେବାର କି ଦଂଡବିଧି ହ୍ରାସ କରିବାର ପ୍ରଶ୍ନ ଉଠୁନାହିଁ । ସେସବୁ ଚିଠିର ନକଲ ତଳେ ଦିଆଗଲା ।

**ପଂଡିତ ନୀଳକଂଠ ଦାସଂକ ମୁଖ୍ୟମଂତ୍ରୀଂକୁ ଉତ୍ତର –**

ପଂଡିତ ନୀଳକଂଠ ଦାସ ତାଂକର ଖଂଡିଏ ଚିଠିରେ ମୁଖ୍ୟମଂତ୍ରୀ ଶ୍ରୀ ବିଶ୍ୱନାଥ ଦାସଂକୁ ସଚ୍ଚି ରାଉରାୟ ଓ ମଧୁସୂଦନ ମହାଂତିକ କେସ୍ ଓ ଦଂଡ ରଦ୍ଦ କରିବାକୁ ଅନୁରୋଧ କରି ନିମ୍ନ ପ୍ରକାରରେ ଲେଖିଥିଲେ ।

To Hon'ble Mr. B.N. Das
Chief Minister, Orissa, Cuttack

Your D.O. No. 14

(regarding Sachi Routray and others case)

As to publication of Dr. Jayant Rao's report students were immediately informed by me that it would be done in due course. What I wrote to you was only to expedite the matter. The sentiment you expressed about Sriman Gangadhar Mahaptara, M.A. Secretary of the Student Federation is, I trust, only written to me confidentially. Such sentiment will not be realised by the students in the present state of things. The

situation you know, is still very delicate. Hard words or unkind sentiments howover do not serve any useful purpose. They may rather damage the little good that has been done.

At Puri on the 19th we talked on the matter of the Press Act conviction against Sachi Routray and Madhusudan Mahanty. It is after you had written the letter under reply. I hope you are taking immediate steps to remit the punishment to which you have agreed.

Your's sincerely,
Sd/Nilakantha Das

The Hon'ble Mr. B.N. Das
Chief Minister, Orissa, Cuttack, 18.5.1939

(D.O. No.14)

My Dear Nilakantha Babu,

Your letter of 10th May from Sakhigopal was waiting for me till I returned from my village after the upanayan ceremony of my nephew. Another letter from you was also received soon after it. These letters bring out two questions, viz, × × ×

If the case of conviction of Sachi Routray and Madhusudan Mahanty referred by you in your letter, I do not remember the exact translation of my interview. You will please fully recollect that in the discussion we had at my place, you raised this case as a definite issue and we stated how it is not possible for us to accept the same. Mukunda Babu and Lalmohan Babu were also present at the place. A reference to papers will make the position clear. You stated that these are technical offences which may secure a small fine. You may recollect that we clearly stated that we would not interfere in the operation of law and it matters to us very little whether it is technical or otherwise.

Your sincerely
Biswanath Das
Chief Minister, Orissa.

Pandit Nilakantha Das
President, Orissa, P.C.C,
Cuttack

ମୁଖ୍ୟମଂତ୍ରୀ –

(ସେତେବେଳକୁ 'ପ୍ରାଇମ୍ ମିନିଷ୍ଟର' ଆଖ୍ୟା ବଦଳିଗଲାଣି । ତା ସ୍ଥାନରେ

ଚିଫ୍ ମିନିଷ୍ଟର ବା ମୁଖ୍ୟମଂତ୍ରୀ ପାହ୍ୟା ବ୍ୟବହୃତ ହେଉଥିଲା ।)

ମୁଖ୍ୟମଂତ୍ରୀଂକ ପତ୍ର –

ପଂଡିତ ନୀଳକଂଠ ଦାସଂକୁ ଲିଖିତ ଅନ୍ୟ ଏକ ଚିଠିରେ (ମେ, ୧୯୩୯) ମଧ୍ୟ ମୁଖ୍ୟମଂତ୍ରୀ ସଚି ରାଉତରାୟ ପ୍ରଭୃତିଂକ ଶାସ୍ତି ନାକଚ୍ କରିବା ବିଷୟ ଉଲ୍ଲେଖ କରିଛଂତି । ଏ ବିଷୟରେ କାର୍ଯାନୁଷ୍ଠାନ କରିବାକୁ ନାସ୍ତି କରିଦେଇଛଂତି । ଚିଠିର ସଂଶ୍ଳିଷ୍ଟ ଅଂଶ ତଳେ ଦିଆଗଲା ।

My Dear, Nilakantha Babu, Cuttack

23.05.1939

In the closing sentence of your letter of the 23rd May, you mention that "I hope you are taking immediate steps to remit the punishment to which you have agreed." I am sorry that this had escaped my notice. After I received your last letter, I had to go through these in detail and was surprised to read about an alleged promise to remit the fines of Messers Sachi Routray and Madhusudan Mohanty. Nothing could be far from truth than the statement such as this. Even on the day of compromise we have throughly discussed and decided that the prosecution under the Press Act has nothing to do with the strike. I having stated this fact, you, out of temper left the circuit house at Puri, where then is the promise?

With Namaskar

Your's sincerely,

Sd/Biswanath Das

(ରାଜ୍ୟ ଅଭିଲେଖାଗାରରୁ ସଂଗୃହୀତ)

'ଛାତ୍ର'ରେ ବିଭିନ୍ନ ସଂବାଦ ଓ ସଂପାଦକୀୟ –

'ଛାତ୍ର', ନିଖିଳ ଉତ୍କଳ ଛାତ୍ରସଂଘ ବୁଲେଟିନ୍-୮

୧୯ ଏପ୍ରିଲ୍, ୧୯୩୯

ମୂଲ୍ୟ : ଟ.୦.୩ ପଇସା

'ଛାତ୍ର'ରେ ପ୍ରକାଶିତ ମୁଁ ଲେଖିଥିବା ୧୯.୪.୩୯ ତାରିଖର ସଂପାଦକୀୟଟି ଦିଆଗଲା – "କାଲି ୨୦ ତାରିଖଠାରୁ ସତ୍ୟାଗ୍ରହ ଲଢ଼େଇ ଆରଂଭହେବ । ସରକାର ମିଳାମିଶାର ପ୍ରସ୍ତାବକୁ ଗୋଡ଼ରେ ଦଳିଦେଲେ । କଟକସହରବାସୀ ସମସ୍ତେ କାଲି ହରତାଳ ପାଳନକରି ସରକାର ଉପରେ ଜନମତର ଚାପପକାଂତୁ ।"

# ଅଷ୍ଟାଦଶ ଉଲ୍ଲାସ

## କାରାଗାର

ବେଳେବେଳେ କାରାଗାରର ଆହ୍ୱାନ ଆସେ। ଅତ୍ୟାଚାର ଯେତେବେଳେ ସୀମା ଲଂଘନ କରେ। ଅବିଚାର ଓ ଅନ୍ୟାୟର ସ୍ତୂପ ଯେତେବେଳେ ପାହାଡ଼ର ଭାରା ନେଇ ଦେଶର କଂକାଳ ଉପରେ ଜମିଉଠେ, ଯୁବକ ସେତେବେଳେ ଆତ୍ମରକ୍ଷାର ଶେଷ ଉପାୟସ୍ୱରୂପ ବିଦ୍ରୋହର ଧ୍ୱଜା ତୋଳିବାକୁ ବାଧ୍ୟହୁଏ। କାରାଗାରର ଡାକ ତା' ପ୍ରାଣରେ ଖେଳାଏ ଉଚ୍ଚାଟନର ମଂତ୍ର। ସେ ଭୁଲିଯାଏ ନିଜକୁ। ପତଂଗ ପରି ସେ ପଥ ଭୁଲି ଧାଏଁ ଜ୍ୱଳଂତ ଅଗ୍ନିର ଅଭିସାରରେ। ପ୍ରତିକ୍ରିୟାର ଅଂଧକୂପ ମଧ୍ୟରୁ ଯୁବକହିଁ ଉଦ୍ଧାର କରି ଆଣେ ଦେଶର ପ୍ରଗତିକୁ। ନିଜେ ହୁଏତ ସେ ନିଆଁରେ ଜଳିପୋଡ଼ି ଭସ୍ମହୋଇଯାଏ; କିଂତୁ ତା'ର ଭସ୍ମକଣା ମଧ୍ୟରୁ ଜନ୍ମ ଲଭେ ଦେଶର ଭବିଷ୍ୟତ।

ବହୁଦିନ ପରେ ଆଜି ପୁଣି ଭାସିଆସିଛି କାରାଗାରର ଶଂଖଧ୍ୱନି – ସଂଗ୍ରାମର ନିମଂତ୍ରଣ ଘେନି। ଯୁବକ ମୁଂଡ ଟେକି ସେ ନିମଂତ୍ରଣ ଗ୍ରହଣ କରିଛି; ପଛଘୁଂଚା ଦେଇନାହିଁ। ଆଜି ସତ୍ୟ ଓ ଅହିଂସାର ଗୈରିକ ବସ୍ତ୍ର ତଳେ ପ୍ରତିକ୍ରିୟାର ଅଂକୁର ଯେତେବେଳେ ପ୍ରତିମୁହୂର୍ତ୍ତରେ ପଲ୍ଲବିତ ହୋଇଉଠୁଛି, ସାମ୍ରାଜ୍ୟବାଦ ଅମଲାତଂତ୍ରର ତର୍ଜନୀ ଇଂଗିତରେ କଂଗ୍ରେସ ଭଳି ଏକ ପବିତ୍ର ଅନୁଷ୍ଠାନ ଯେତେବେଳେ କଳଂକିତ ହେବାକୁ ବସିଛି, ସେତେବେଳେ ସଚେତନ ଛାତ୍ର-ଶକ୍ତି ଆଉ ଥୟ ଧରି ରହିପାରିନାହିଁ। ସେ ବିଦ୍ରୋହ ଘୋଷଣା କରିଛି। ଏ ଦେଶର ୩୫ କୋଟି ନରନାରୀଂକ ହୃତ୍‌ପିଂଡରେ ଯେଉଁ ଅନୁଷ୍ଠାନ ଗଢ଼ା, କୋଟି କୋଟି ନିର୍ବାସିତ ରାଜବନ୍ଦୀ ଓ ସହିଦଂକ ରକ୍ତବିନ୍ଦୁରେ ଯେଉଁ ଅନୁଷ୍ଠାନ ଗଢ଼ାଯାଇଛି, ଏତେ ଶସ୍ତାରେ ତାହାକୁ ସାମ୍ରାଜ୍ୟବାଦ ପଦରେ ନିଲାମ କରାଯାଇନପାରେ।

ସେଥିପାଇଁ ଆଜି ସତ୍ୟାଗ୍ରହୀ ହେବା ପୂର୍ବରୁ ଓଡ଼ିଶାର ଛାତ୍ର ଶପଥ ନେଇଛି, ସେ କଂଗ୍ରେସର ସମ୍ମାନ ଓ ମର୍ଯାଦା ରକ୍ଷାକରିବାଲାଗି ଜୀବନ-ପଣ କରି ଲଢ଼ିବ। କାୟମନବାକ୍ୟରେ ସତ୍ୟ ଓ ଅହିଂସା ନୀତି ପାଳନ କରି କଂଗ୍ରେସକୁ ସାମ୍ରାଜ୍ୟବାଦୀ ଅମଲାତଂତ୍ରର ବିଷାକ୍ତ ପ୍ରଭାବରୁ ଉଦ୍ଧାରକରିବାହିଁ ତା'ର ଐତିହାସିକ ବ୍ରତ। ଏ ବ୍ରତର ଉଦ୍‌ଯାପନ ହେବ ସେ ଦିନ, ଯେଉଁ ଦିନ କଂଗ୍ରେସର ତ୍ରିରଂଗା ପତାକା ୟୁନିଅନ୍ ଜ୍ୟାକ୍‌ର କୃଷ୍ଣଛାୟା କବଳରୁ ସଂପୂର୍ଣରୂପେ ମୁକ୍ତହେବ।

ଭାରତରେ ଛାତ୍ର ସତ୍ୟାଗ୍ରହ ଏ ଦେଶରେ ପ୍ରଥମ। ପ୍ରଥମେ ଓଡ଼ିଶା

ଆଜିର ଭାରତୀୟ ଛାତ୍ରଆଂଦୋଳନର ପତାକାବାହୀ ଅଗ୍ରଦୂତ। କେବଳ ସଉକ ବା ଆମୋଦ ପାଇଁ ସେ ସତ୍ୟାଗ୍ରହର ଦୁର୍ଗମ ପଥରେ ପାଦଦେଇନାହିଁ। ବହୁଦିନର ନିର୍ଯାତନା ଓ ବଂଧନ ହାତରୁ ନିଜର ଅସ୍ତିତ୍ୱ ରକ୍ଷା କରିବା ଲାଗି ଆତ୍ମରକ୍ଷାର ଶେଷ ପଂଥା ସ୍ୱରୂପ ସେ ଦୁର୍ଗମ ପଥର ଯାତ୍ରୀ ହୋଇଛି। ସେ ଜାଣେ ଏ ପଥରେ ଝଡ଼, ବର୍ଷା ତା'ର ସହଯାତ୍ରୀ। ପୁଲିସର ବ୍ୟାଟନ୍, ବେଓନେଟ୍ ଓ ମେସିନ୍‌ଗନ୍‌ହିଁ ତା'ର ଏକମାତ୍ର ପୁରସ୍କାର। କିଂତୁ ସତ୍ୟ ଓ ନ୍ୟାୟ ପାଇଁ ସେ କାରାଗାର, ଲାଠିମାଡ଼ ତ ସାମାନ୍ୟ କଥା; ଫାଶୀ ଖୁଂଟରେ ମଧ୍ୟ ଝୁଲିବାକୁ ପଶ୍ଚାତ୍‌ପଦ ହେବନାହିଁ। ଯେଉଁମାନେ ମନେକରଂତି ଛାତ୍ର କେବଳ କଥା କହେ, କାର୍ଯ କରେ ନାହିଁ, ସେମାନେ ଆଜି ଆଖିରୁ ଅଂଧପୁଟୁଳି ଫିଟାଇ ଦେଖିବେ, ଛାତ୍ରଶକ୍ତିହିଁ ଏ ଦେଶରେ ଏକମାତ୍ର ପ୍ରଖର ପ୍ରଗତିଶୀଳ ଶକ୍ତି। ଜୟର ମୁକୁଟ, ନା ପରାଜୟର ଲଜ୍ଜା – କେଉଁଟା ଛାତ୍ରସମାଜ ବାଛିନେବ, ତାହା ସେ ନିଜେ ସ୍ଥିରକରିବ।

ଉତ୍କଳର ଛାତ୍ର ଭାଇ ଓ ଭଉଣୀମାନେ! ଆପଣମାନେ ଜୀବନ-ମରଣର ଏ ସମସ୍ୟାରେ ସଂଗ୍ରାମର ପତାକା ତଳେ ଏକଜୁଟ୍ ହୁଅଂତୁ। ମନେ ରଖଂତୁ – ଏହାହିଁ ଆମର ଶେଷ ପଂଥା। ଆପଣମାନେ ଏ ସଂଗ୍ରାମର ଯୋଗ୍ୟ ହୁଅଂତୁ; ଏହାହିଁ ଦେଶର ଇତିହାସ ଆପଣମାନଂକଠାରୁ ଆଶାକରେ।

୧୦.୪.୧୯୩୯ ତାରିଖ 'ଛାତ୍ର'ରେ ପ୍ରକାଶିତ ମତ୍‌ଲିଖିତ ସଂପାଦକୀୟଟି ତଳେ ଦିଆଗଲା –

**ଇତିହାସର ଆହ୍ୱାନ?**

ଇତିହାସ ଆଜି ଏ ଦେଶର ଯୁବକ, ଏ ଦେଶର ଛାତ୍ର ଉପରେ ଭାର ଦେଇଛି, ସେ କଂଗ୍ରେସକୁ ସଂଗଠିତ ପ୍ରତିକ୍ରିୟା ହାତରୁ ରକ୍ଷାକରି ଏକ ସଂଗ୍ରାମଶୀଳ ସାମ୍ରାଜ୍ୟବାଦ ବିରୋଧୀ ଅନୁଷ୍ଠାନରେ ପରିଣତ କରିବ। ଇତିହାସର ଏ ପବିତ୍ର ଦାୟିତ୍ୱ ମୁଂଡାଇ ଏ ଦେଶର ଛାତ୍ରଶକ୍ତି ଆଜି ଉଦାସୀନତାର ସମାଧି ଭିତରୁ ମୁଂଡ ଟେକି ବାହାରିଆସିଛି। ସେ ଆଜି ବୁଝୁଛି, ଜୀବତ୍ୱର ଟଂଟି ଚିପି ମାରିବାକୁହେବ। ତା'ର ଅଗ୍ରଗତିର ପଥରେ ଯାହା କଂଟା ପରି ଛିଡ଼ାହେବ, ତାକୁ ମାଡ଼ି ଦଳି ମାଟିରେ ମିଶାଇଦେଇ ଚାଲିଯିବାକୁ ସେ ନିଜର ଧର୍ମ ବୋଲି ଧରିନେଇଛି। ତା'ର ଯାତ୍ରାପଥରେ ବାଧା ଦେବ କିଏ?

**ଓଡ଼ିଶାର ଛାତ୍ରଶକ୍ତି ପ୍ରତିଶୋଧ ନେବ!**

ଆଜି ଗଣତଂତ୍ରର ପ୍ରାଥମିକ ନିୟମରେ ପଦାଘାତ କରି ଲୋକପ୍ରତିନିଧି ବୋଲାଉଥିବା କଂଗ୍ରେସ ସରକାର ଓଡ଼ିଶାର ଜାଗ୍ରତ ଛାତ୍ରଶକ୍ତିକୁ ଟଂଟି ଚିପି ମାରିଦେବାକୁ ବସିଛି। ପ୍ରତିଦିନ ସେଥିପାଇଁ ନୂଆ ନୂଆ ହତିଆର ଆବିଷ୍କାର ହେଉଛି। ସ୍କୁଲ କଲେଜମାନଂକରେ ଏହି ମଣିଷ ମାରିବାର କଳ ତିଆରିହେଉଛି। ଜୋରିମାନା, ଶାରୀରିକ ଶାସ୍ତି ଏବଂ ସ୍କୁଲ କଲେଜରୁ ବିତାଡ଼ନହିଁ ଆଜି ସରକାରର

ଛାତ୍ରମେଧ ଯଜ୍ଞରେ ଇଂଧନ ଯୋଗାଉଛି। ଅତ୍ୟାଚାରିତ ଭାଇ ଭଉଣୀ ପ୍ରତି ସହାନୁଭୂତି ଦେଖାଇଲେ ଆଜି ଏ ଦେଶରେ ଚରମ ବିଶୃଙ୍ଖଳା ବୋଲି ଧରାହେଉଛି। ନ୍ୟାୟ ପାଇଁ, ସତ୍ୟ ପାଇଁ ପାଟି ଫିଟାଇଲେ ଆଜି ଏ ଦେଶର ଶିକ୍ଷା ଆଇନ୍‌ରେ ଗୁରୁତର ଅପରାଧ ବୋଲି ଦଂଡନୀୟ ହେଉଛି। ସରକାର ଭାବିଛି, ଛାତ୍ରମାନଂକୁ ମଧ୍ୟଯୁଗର କ୍ରୀତଦାସ ପରି ଚିରକାଳ ପାଇଁ ବନ୍ଦୀ କରି ରଖିବ। ସେମାନଂକର ବ୍ୟକ୍ତିତ୍ୱର ସ୍ୱାଧୀନ ବିକାଶ ପଥରେ ଲୁହାର ପ୍ରାଚୀର ତିଆରିକରି ସରକାର ଆଜି ସେମାନଂକୁ ଏକ ନିର୍ଜୀବ ମାଂସପିଂଡ ବନାଇ ରଖିବାକୁ ବିଚାରିଛି।

କିଂତୁ ସରକାର ମନେରଖୁ, ଛାତ୍ର ମାଂସର ପେଂଡୁ ନୁହେଁ। ସେ ନିଜକୁ ଫୁଟ୍‌ବଲ୍ ପରି ଗୋଇଠାମାଡ଼ ଖାଇବାକୁ ଦେବନାହିଁ। ତା’ ଭିତରେ ଜୀବନର ଶିଖା ଏ ପର୍ଯଂତ ଲିଭିନାହିଁ। ସରକାର ଯଦି ଆଜହୁଁ ସାବଧାନ ନହୁଏ, ତେବେ ସେ କ୍ଷୁଦ୍ର ଶିଖାର ସାମାନ୍ୟ ସ୍ଫୁଲିଂଗରେ ସାମ୍ରାଜ୍ୟବାଦର ଖେଳନା ହୋଇଥିବା ମଂତ୍ରିମଂଡଳ ତ ସାମାନ୍ୟ କଥା, ଖୋଦ୍ ବ୍ରିଟିଶ୍ ସାମ୍ରାଜ୍ୟବାଦର ମଧ୍ୟ ମୂଳଦୁଆ ଦୋହଲିଯିବ। ଛାତ୍ର ବୁଝିଛି, ନୀରବରେ ଅପମାନ ସହ୍ୟ କରିବା ଏକ ମହାପାପ। ସେ ସମସ୍ତ ଲାଞ୍ଛନା, ଅପମାନର ପ୍ରତିଶୋଧ ନେବା ପାଇଁ ଆଜି ପ୍ରସ୍ତୁତ ହେଉଛି। ଯଦି ଓଡ଼ିଶାର ଜଣେ ମାତ୍ର ଛାତ୍ର ଅପମାନିତ ବା ଦଂଡିତ ହେବ, ତେବେ ଓଡ଼ିଶାର ସମଗ୍ର ଛାତ୍ରବାହିନୀ ତା’ପଛରେ ଆସି ଛିଡ଼ାହେବ; ସରକାରଂକୁ ସଂଗ୍ରାମର ଆହ୍ୱାନ ଦେବ।

**‘ଛାତ୍ର’ରେ ପ୍ରକାଶିତ ସତ୍ୟାଗ୍ରହୀମାନଂକ ହାଲ୍‌ଚାଲ –**

‘ଛାତ୍ର’ ବୁଲେଟିନ୍‌ର ୨୫.୪.୧୯୩୯ ସଂଖ୍ୟାରେ ପ୍ରକାଶିତ ସଂବାଦ ଅନୁଯାୟୀ ପ୍ରଥମ ଓ ଦ୍ୱିତୀୟ ସତ୍ୟାଗ୍ରହୀ ବାହିନୀର ସୈନିକମାନେ ଦଂଡିତ।

“ଆଜି ୨୪ ତାରିଖ ଦିନ ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ଭଗବାନ ମହାପାତ୍ର ପ୍ରଥମ ଓ ଦ୍ୱିତୀୟ ସତ୍ୟାଗ୍ରହୀ ବାହିନୀର କମ୍ରେଡ୍ ବିଶ୍ୱନାଥ ପଣ୍ଡାଏଦ୍ ଓ ହରିଚରଣ ଦାସଂକ ଅଧିନାୟକତ୍ୱରେ ସରକାରର ଉଦାସୀନତା ବିରୁଦ୍ଧରେ ସତ୍ୟାଗ୍ରହ ସମର ଘୋଷଣା କରିଥିବା ପ୍ରାୟ ୨୭ ଜଣ ଛାତ୍ରବଂଦୀକୁ ଦେଢ଼ମାସ ଲେଖାଏଁ ସଶ୍ରମ କାରାଦଂଡ ହୁକୁମ୍ ଦେଲେ। ବନ୍ଦୀମାନଂକର ବିଚାର ଜେଲ୍ ଭିତରେ ଚୁପ୍‌ଚାପ୍ ଭାବରେ ହୋଇଥିଲା।

ବଂଦୀମାନଂକୁ ଭାରତୀୟ ପେନାଲ୍ କୋର୍ଡର ୧୪୩ ଓ ୩୪୧ ଦଫାରେ ରାସ୍ତା ଅବରୋଧ ଏବଂ ବେଆଇନ୍ ଜନତାଭୁକ୍ତ ଥିବାର ଅପରାଧରେ ଅଭିଯୁକ୍ତ କରାଯାଇଥିଲା। ଆଜି ସେମାନଂକ ବିଚାର ହୋଇ ସେମାନଂକୁ ଦେଢ଼ମାସ ଲେଖାଏଁ ସଶ୍ରମ କାରାଦଂଡ ହୁକୁମ ହୋଇଛି।

**୨୭ ଜଣ ଛାତ୍ରଂକୁ ଅନୁଗୁଳ ଜେଲ୍‌କୁ ନିଆଗଲା –**

ବଂଦୀମାନଂକୁ ଅନଶନ କରିଥିବା ଅବସ୍ଥାରେ ବଦଳି କରାଯାଉଛି। ଓନିଲ୍-

ସାହେବ ମୁହଁ ଉପରେ ଗୁରୁତର ଅଭିଯୋଗ –

ଆଜି ପ୍ରଥମ ଓ ଦ୍ୱିତୀୟ ସତ୍ୟାଗ୍ରହୀ ବାହିନୀର ୨୭ ଜଣ ବନ୍ଦୀଙ୍କୁ କଟକ ଜେଲ୍‌ରୁ ଅନୁଗୁଳ ଜେଲକୁ ବଦଳିକରାଯାଇଛି। ବନ୍ଦୀମାନେ କାଲି ଜେଲ୍ କର୍ତ୍ତୃପକ୍ଷଙ୍କର ଅନ୍ୟାୟ ଅବିଚାରର ପ୍ରତିବାଦକରି ଅନଶନ କରିଥିଲେ। ସେହି ଅନଶନ କରିଥିବା ଅବସ୍ଥାରେ ସେମାନଙ୍କୁ ଅନୁଗୁଳ ଜେଲ୍‌କୁ ନିଆଯିବ ବୋଲି ଜଣାଇଦିଆଗଲା। ୨୫ ତାରିଖ ସକାଳେ ଦୁଇଟା ବଡ଼ ପୁଲିସ ଲରୀରେ ପ୍ରଥମ ଓ ଦ୍ୱିତୀୟ ସତ୍ୟାଗ୍ରହୀ ବାହିନୀର ପ୍ରାୟ ୨୭ ଜଣ ବନ୍ଦୀଙ୍କୁ ଷ୍ଟେସନ୍‌କୁ ନେଇ ତାଳଚେର ଗାଡ଼ିରେ ଅନୁଗୁଳ ପଠାଇଦିଆଯାଇଚି। ବନ୍ଦୀମାନଙ୍କୁ ନେଲାବେଳେ ହଜାର ହଜାର ଲୋକ ଜେଲ୍ ଚାରିପଟେ ଜମାହୋଇଥିଲେ। ଜେଲ୍ ସୁପରିନ୍‌ଟେଂଡେଂଟ୍ ଓନିଲ୍ ସାହେବ ଜେଲ୍ ହତା ଭିତରେ ଲସରପସର ହେଉଥିଲେ। କାଲି ସେ ବନ୍ଦୀମାନଙ୍କୁ ଜେଲ୍ ଭିତରେ ମାଡ଼ ଦେଇ ନାହାଂତି ବୋଲି ସରକାରୀ କାଗଜ 'ସମାଜ'ରେ ପ୍ରତିବାଦ କରିଥିଲେ। ଆଜି ବନ୍ଦୀମାନେ ଜେଲ୍ ଭ୍ୟାନ୍‌କୁ ଆସିଲା ବେଳେ ୨ୟ ଅଧିନାୟକ କମ୍ରେଡ୍ ହରିଚ୍ଚରଣ ଦାସଙ୍କୁ ଜେଲ୍ ବାହାରେ ଥାଇ ସଚ୍ଚି ରାଉତରାୟ ଓନିଲ୍ ସାହେବ ମାଡ଼ ଦେବା କଥା ସତ କି ମିଛ ପଚାରିଥିଲେ। ହରିଚ୍ଚରଣ ହଜାର ହଜାର ଲୋକଂକ ଆଗରେ ଓନିଲ୍ ସାହେବ କରିଥିବା ଅତ୍ୟାଚାର କଥା ବଡ଼ପାଟିରେ ବର୍ଣ୍ଣନାକରିଥିଲେ। କମ୍ରେଡ୍ ହରିଚ୍ଚରଣ କହିଥିଲେ ଯେ, ସେମାନଙ୍କୁ କ୍ରିମିନାଲ୍ ଭଳିଆ ବ୍ୟବହାର କରାଯାଉଛି, ମଶାରି ଦିଆଯାଉନାହିଁ, ଓ-ଓନିଲ୍ ସାହେବ ସେମାନଙ୍କୁ ଟର୍ଚ୍ଚ ଓ ଜୁତାରେ ମାଡ଼ଦେଉଛି। କମ୍ରେଡ୍ ହରିଚ୍ଚରଣଂକ କଥାକୁ ଅନ୍ୟାନ୍ୟ ବନ୍ଦୀମାନେ ସମର୍ଥନ କରିଥିଲେ। ଉପସ୍ଥିତ ଜନତା ଓନିଲ୍ ସାହେବକୁ ତାଂକ ମୁହଁ ଉପରେ ଛି ଛି କରିଥିଲେ। ଓନିଲ ସାହେବ ବନ୍ଦୀମାନଂକ କଥାରେ ପଦେହେଲେ ପ୍ରତିବାଦ କରିପାରିନଥିଲେ। ଏହାପରେ ବନ୍ଦୀମାନଙ୍କୁ ଲରୀରେ ବୋଝାଇକରି ଷ୍ଟେସନ୍‌କୁ ନିଆଯାଇଥିଲା।

ଭିତରୁ କର୍ତ୍ତୃପକ୍ଷଙ୍କର ଧମକ ଏବଂ ପ୍ରଲୋଭନ ସତ୍ତ୍ୱେ ଚାରିଶହ ଛାତ୍ର ଧର୍ମଘଟ ପାଳିଥିଲେ। ଭିକ୍‌ଟୋରିଆ ସ୍କୁଲରୁ ୨୫୦ରୁ ଅଧିକ ଏବଂ ସେମିନାରୀ, ମିଶନ୍ ଏବଂ କଲିଜିଏଟ୍ ସ୍କୁଲମାନଙ୍କରୁ ତଳ କ୍ଲାସ ଛଡ଼ା ବାକି ସମସ୍ତ ଛାତ୍ର ପ୍ରାୟ ଏ ପ୍ରତିବାଦରେ ସ୍ୱର ମିଳାଇ ଧର୍ମଘଟ କରିଥିଲେ। ×××

ନାନା ଖବରକାଗଜରେ ଏପରି ଅଳୀକ ପ୍ରଚାର ଛଡ଼ା ସରକାର ମଧ୍ୟ ଏକ ବିବୃତି ପ୍ରକାଶକରି ଦାୟିତ୍ୱହୀନ ମିଥ୍ୟା ପ୍ରଚାର କରିବାକୁ ଲଜ୍ଜିତ ହୋଇନାହାଂତି। ଉକ୍ତ ବିବୃତିର ପ୍ରଥମ ପାରାରେ ଲେଖାଯାଇଚି, "ମେଡ଼ିକାଲ୍ ଛାତ୍ରମାନେ ଗତ ୮ ତାରିଖ ଦିନ ହସ୍‌ପିଟାଲ୍ କମନ୍ ରୁମ୍‌ରେ ସଭାକରି ସରକାରଂକୁ ଚରମ ପତ୍ର (Ultimatum) ଦେଇଥିଲେ। କିଂତୁ ସମସ୍ତଂକର ଜାଣିରଖିବା ଉଚିତ ଯେ, ହସ୍‌ପିଟାଲ୍‌ରେ ଛାତ୍ରମାନେ ଯେଉଁ ପ୍ରସ୍ତାବ କରିଥିଲେ, ତାହାକୁ ଚରମ-ପତ୍ର

କୁହାଯାଇ ନପାରେ...।"  ('ଛାତ୍ର'– ୨୫।୪।୧୯୩୯)

**ସଚ୍ଚି ରାଉତରାୟଂକ ନାଁରେ ମକଦ୍ଦମା –**

ଆଜି କମ୍ରେଡ ସଚ୍ଚି ରାଉତରାୟ ଓ ଗଂଗାଧର ମହାପାତ୍ର ପ୍ରମୁଖଂକ ନାଁରେ ପୁଲିସ ଆକ୍ଟର ୩୨ ଦଫା ଅନୁସାରେ ଶୋଭାଯାତ୍ରା କରିଥିବା ଯୋଗୁଁ ଯେଉଁ ମକଦ୍ଦମା ରୁଜୁହୋଇଥିଲା, ତାହାର ବିଚାର ଟାଉନ୍ ମାଜିଷ୍ଟ୍ରେଟ୍ ଶ୍ରୀ ଭଗବାନ୍ ମହାପାତ୍ରଂକ କୋର୍ଟରେ ପଡ଼ିଥିଲା। ସଚ୍ଚିବାବୁ ପ୍ରଭୃତି ନିରପରାଧ ବୋଲି କହି ମକଦ୍ଦମା ଲଢ଼ିବେ ବୋଲି ଜଣାଇଲେ। ସେମାନଂକ ପକ୍ଷରୁ ଓକିଲମାନେ ସଫେଇ ଦେବା ପରେ ସଚ୍ଚିବାବୁ ଓ ଗଂଗାଧରବାବୁ ପ୍ରମୁଖଂକୁ ଜାମିନ୍‌ରେ ଖଲାସକରିଦିଆଗଲା। ପୁଣି ୨୯ ତାରିଖରେ ଏ ମକଦ୍ଦମାର ବିଚାର ହେବ।

('ଛାତ୍ର'– ୨୫।୪।୧୯୩୯)

**ସଚ୍ଚି ରାଉତରାୟଂକ ନାଁରେ ଆଉ ଏକ ମକଦ୍ଦମା –**

୨୬ ତାରିଖ ଦିନ ଜିଲ୍ଲା ମାଜିଷ୍ଟ୍ରେଟଂକ କଚିରିରେ ସଚ୍ଚିବାବୁଂକ ନାଁରେ ପ୍ରେସ୍-ଆକ୍ଟର ୧/୩ ଓ ୧୫/୫ ଧାରା ଅନୁସାରେ ପୁଣି ଗୋଟିଏ ମୋକଦ୍ଦମା ସରକାର ଆରଂଭକରଂତି। 'ଛାତ୍ର' ବୁଲେଟିନ୍ ବାହାରକରି ସରକାରଂକର ଅନ୍ୟାୟ ଅବିଚାରର କଥା ଧରାପକାଇଦେଉଥିବାରୁ ସେ ପ୍ରେସ୍ ଆକ୍ଟରେ ପଡ଼ିଛଂତି। ସେ ଏ ମୋକଦ୍ଦମା ମଧ୍ୟ ଓକିଲ ଦେଇ ଲଢ଼ିବାକୁ ସ୍ଥିରକରିଛଂତି। ଆସଂତା ୨୬ ତାରିଖ ଦିନ ତାଂକର ଏହି ଦୁଇ ନଂବର ମୋକଦ୍ଦମାର ବିଚାର ଆରଂଭହେବ।

('ଛାତ୍ର'– ୨୫।୪।୩୯)

**ତୃତୀୟ ସତ୍ୟାଗ୍ରହୀ ବାହିନୀର ସେନାପତି ଗିରଫଦାର –**

କମ୍ରେଡ୍ ମନମୋହନଂକ ସଂଗେ ଷୋଳ ଜଣ ଛାତ୍ର ବଂଦୀ, ଦୁଇ ହଜାର ଛାତ୍ରଂକର ବିରାଟ ଶୋଭାଯାତ୍ରା ଓ ସଭା –

ଆଜି ତୃତୀୟ ସତ୍ୟାଗ୍ରହୀ ବାହିନୀର ସେନାପତି କମ୍ରେଡ୍ ମନମୋହନ ମିଶ୍ର ଷୋଳଜଣ ଛାତ୍ର ସୈନିକ ଧରି ସେକ୍ରେଟେରିଏଟ୍ ନିକଟରେ ସତ୍ୟାଗ୍ରହ ଅର୍ପଣକଲେ। ପୁଲିସ୍ ସବ୍‌ଇନସ୍ପେକ୍ଟର ଓ ମାଜିଷ୍ଟ୍ରେଟ୍ ସାହେବ ଉପସ୍ଥିତ ଥିଲେ। ଚାରିଆଡ଼େ ଅସଂଖ୍ୟ ନରନାରୀ ନିଶ୍ଚଳ ହୋଇ ସେ ଦୃଶ୍ୟ ଦେଖୁଥାଂତି। ଆଜି ପ୍ରାୟ ବାରଜଣ ସ୍କୁଲଛାତ୍ର ସତ୍ୟାଗ୍ରହୀ ସୈନିକ ବାହିନୀରେ ଯୋଗ ଦେଇଥିଲେ। ବହୁତ ସ୍କୁଲ ଛାତ୍ର ଧର୍ମଘଟ କରି ଚାରିଆଡ଼େ ପୂରିରହିଥାଂତି।

('ଛାତ୍ର'– ୨୨।୪।୧୯୩୯)

**ସେକ୍ରେଟେରିଏଟ୍ ନିକଟରେ କରୁଣ ଦୃଶ୍ୟ –**

ସ୍ୱେଚ୍ଛାସେବକମାନେ ଗିରଫହେବା ପୂର୍ବରୁ ମିଶନ୍ ସ୍କୁଲର ଛାତ୍ର ଶ୍ରୀମାନ୍ ବନବିହାରୀ ମହାଂତି ସେକ୍ରେଟେରିଏଟ୍‌ର ପ୍ରଧାନ ଫାଟକ ନିକଟରେ ପିକେଟିଂ କରୁଥିଲେ। ଏହି ସମୟରେ ତାଂକର ଅଭିଭାବକ ଓ ପିତା ଆସି ତାଂକୁ ଘରକୁ

ନେଇଯିବା ପାଇଁ ଜବରଦସ୍ତିକଲେ । ପିଲାଟି ଜବାବ ଦେଲା ଯେ ସେ ସତ୍ୟାଗ୍ରହର ଶପଥ ନେଇଚି; ସେ ଘରକୁ ଫେରିପାରିବନାହିଁ। ଏଥିରେ ରାଗିଯାଇ ତାଂକ ପିତା ତାଂକୁ ଜବରଦସ୍ତି ଟେକିନେଇଯିବାକୁ ବାହାରିଲେ। ମାଜିଷ୍ଟ୍ରେଟ୍ ସାହେବ ମଧ ତାଂକୁ ସେଥିରେ ଉତ୍ସାହିତ କରୁଥାଂତି।

ପିଲାଟି କରୁଣ ଭାବରେ ତାଂକୁ ଛାଡ଼ିଦେବାପାଇଁ କେତେ ପ୍ରାର୍ଥନା କଲା; କିଂତୁ କେହି ଶୁଣିଲେ ନାହିଁ। ଶେଷରେ ନିରାଶ ହୋଇ. ସେ ଦୌଡ଼ି ଆସି କମ୍ରେଡ୍ ସଚ୍ଚି ରାଉତରାୟଂକୁ କୁଂଢାଇପକାଇଲା ଓ ତାଂକୁ ଛାଡ଼ି କଦାପି ଯିବ ନାହିଁ ବୋଲି କହିଲା। ତା'ର ପିତା ଅନ୍ୟ ଜଣେ ଭଦ୍ରଲୋକଂକ ସଂଗେ ଶ୍ରୀମାନ୍ ବନବିହାରୀ ଓ ସଚ୍ଚିବାବୁଂକୁ ଟଣାଓଟରାକଲେ; କିଂତୁ ପିଲାଟି ସେହିପରି ସଚ୍ଚିବାବୁଂକ ଅଂଟାକୁ ପ୍ରାଣର ସବୁ ଶକ୍ତି ଠୁଳ କରି ଜାବୁଡ଼ିଧରିଥାଏ। ସେମାନେ ସଚ୍ଚିବାବୁଂକ ଅଂଟାରୁ ତା'ର ଜାବ ଫିଟାଇବା ପାଇଁ ବହୁତ ବଳପ୍ରୟୋଗ କଲେ ଓ ଦୁହିଂକି ଟଣାଓଟରା କରି ପ୍ରାୟ ୧୦୦ ଗଜ ଦୂରକୁ ଘୋଷାରିନେଲେ। ଉପସ୍ଥିତ ଜନତା ଚାରିଆଡୁ ଛି-ଛି କରୁଥାଂତି। ସମସ୍ତଂକ ଆଖି ପିଲାଟିର କରୁଣ ଅବସ୍ଥାରେ ଛଳଛଳ ହେଉଥାଏ। ଶେଷରେ ଉକ୍ତ ପିଲାର ପିତା ଓ ଅଭିଭାବକ ନିରୁପାୟ ହୋଇ ସଚ୍ଚି ରାଉତରାୟଂକୁ ମଧ ଟଣାଓଟରାକଲେ। ମାଜିଷ୍ଟ୍ରେଟ୍ ଶ୍ରୀ ଗଣେଶ ଚ଼ଂଦ୍ର ନିକଟରେ ଛିଡ଼ା ହୋଇ ନୀରବରେ ଏ ଦୃଶ୍ୟ ଦେଖୁଥାଂତି। ସଚ୍ଚିବାବୁ ତାଂକର ଦୃଷ୍ଟି ଆକର୍ଷଣ କଲେ। କିଂତୁ ମାଜିଷ୍ଟ୍ରେଟ୍ ଜବାବ ଦେଲେ ଯେ, ପିତାର ଦାବି ପିଲା ଉପରେ ଅଧିକ; ସେ ସେଥିରେ ବାଧା ଦେଇ ପାରିବେ ନାହିଁ। ସଚ୍ଚିବାବୁ ତାଂକ ଉପରେ ବଳ ପ୍ରୟୋଗ କରାଯାଉଛି ବୋଲି ଅଭିଯୋଗକଲେ। କିଂତୁ ମାଜିଷ୍ଟ୍ରେଟ୍ ତଥାପି ଉଦାସୀନ ରହିଲେ।

ଚାରିଆଡ଼େ ହଜାର ହଜାର ଲୋକ ଓ ଗାର୍ଲସ୍ ସ୍କୁଲର ଅସଂଖ୍ୟ ଛାତ୍ରୀ ଓ ଶିକ୍ଷୟିତ୍ରୀ ଏ ଦୃଶ୍ୟ ଦେଖି ବିଚ଼ଳିତ ହୋଇପଡ଼ିଥିଲେ।

**ଅଶୋକ ଦାସ ଓ ନୀଳମଣି ରାଉତରାୟ ଗିରଫ –**

ଚାରିଆଡ଼େ ଲୋକାରଣ୍ୟ ଭିତରେ କମ୍ରେଡ୍ ଅଶୋକ ଦାସ୍ ଓ କମ୍ରେଡ୍ ନୀଳମଣି ରାଉତରାୟଂକ କଥାରେ ଲୋକମାନେ ଆଡ଼େଇହୋଇଗଲେ। କିଂତୁ ହଠାତ୍ କେଜାଣି କାହିଁକି ମାଜିଷ୍ଟ୍ରେଟ୍ ସାହେବ ଏ ଦୁହିଂକି ଗିରଫକଲେ। କେଉଁ ଦଫାରେ ସେମାନଂକୁ ବଂଦୀକରାଗଲା, କିଛି ଜଣାଯାଇନାହିଁ। ଶାଂତିରକ୍ଷା କରିବାକୁ ଯାଇ ସେମାନେ ଶାଂତି ଭଂଗ କରିଛଂତି ବୋଲି ମାଜିଷ୍ଟ୍ରେଟ୍ କହିଥିବା ପ୍ରକାଶ। ଏହି ଗୋଳମାଳ ଭିତରେ ସଚ୍ଚି ରାଉତରାୟ ତାଂକୁ କୁଂଢାଇ ଧରିଥିବା ପିଲାଟିକୁ ନେଇ ପିକେଟିଂ ଜାଗାରେ ଛାଡ଼ିଦେଇ ଆସିଲେ। ତପ୍ରରେ ମାଜିଷ୍ଟ୍ରେଟ୍ ଅନ୍ୟ ସ୍ବେଚ୍ଛାସେବକଂକ ସହିତ ସେ ବାଳକଟିକୁ ମଧ ଗିରଫ କରି ଜେଲ୍‌କୁ ପଠାଇଦେଲେ।

**ଅଶୋକ ଦାସ ଓ ନୀଳମଣି ରାଉତରାୟଙ୍କ ମର୍ମସ୍ପର୍ଶୀ ବାଣୀ –**

ଜେଲ୍ ଫାଟକରେ ପହଂଚି ଅଶୋକ ଦାସ ଉପସ୍ଥିତ ଜନତାକୁ କଂଗ୍ରେସ ମଂତ୍ରିମଂଡଳରେ ବୀଭତ୍ସ ରୂପ ସଂବଂଧରେ ପରିଷ୍କାର ଭାଷାରେ ବୁଝାଇଦେଇଥିଲେ । ଲୋକମାନେ 'ଶେମ୍' 'ଶେମ୍' କହୁଥାଂତି, କମ୍ରେଡ୍ ନୀଳମଣି ମଧ୍ୟ ସରକାର ଛାତ୍ରମାନଂକୁ ପୁରୀ ଆସିଥିବା କବିଗୁରୁ ରବୀଂଦ୍ରନାଥ ଠାକୁରଂକୁ ଦେଖିବା ବାହାନାରେ ଯେଉଁ ଭ୍ରମଣ ଟ୍ରେନ୍‌ରେ ପୁରୀ ବୁଲାଇ ନେବାକୁ ବସିଛଂତି, ସେ ଟ୍ରେନ୍‌କୁ ବର୍ଜନ କରିବାଲାଗି ଉପଦେଶ ଦେଇଥିଲେ ।

**ବିରାଟ ଛାତ୍ର-ସମୁଦ୍ର ମାଡ଼ିଆସିଲା –**

ଠିକ୍ ଏତିକିବେଳେ ପ୍ରାୟ ଦୁଇହଜାର ଛାତ୍ରଂକର ଏକ ବିରାଟ ଶୋଭାଯାତ୍ରା ମାଡ଼ିଆସିଲା । ବିଭିନ୍ନ ସ୍କୁଲ କଲେଜର ଛାତ୍ରମାନେ ନିଜ ମନକୁ ସ୍କୁଲ କଲେଜ ଛାଡ଼ି ଚାଲିଆସୁଥିଲେ । ସେମାନେ ଜେଲ୍‌ଖାନା ପାଖରେ ବଂଦୀ ସୈନିକମାନଂକର ଜିଂଦାବାଦ କରିବା ପରେ ଭିକ୍ଟୋରିଆ ସ୍କୁଲ ଆଡ଼କୁ ଯାଇଥିଲେ । ବାଟରେ ପ୍ରଧାନମଂତ୍ରୀଂକ ଘର ସାମନାରେ ସେମାନେ ଛିଡ଼ାହୋଇ ଏକ ସଭା କରିଥିଲେ ।

**ପ୍ରଧାନମଂତ୍ରୀ ଘରେ ଲୁଚ଼ିଲେ –**

ପ୍ରଧାନମଂତ୍ରୀ ଏ ତରଂଗମୟ ଜନସମୁଦ୍ରର ସମ୍ମୁଖୀନ ହେବାକୁ ସାହସ କରିନପାରି ଘର ଭିତରେ ଲୁଚ଼ିରହିଥିଲେ । ଦୁଇହଜାର ଛାତ୍ର ଏକ ସ୍ୱରରେ ସରକାରର ଏ ବୀଭତ୍ସ ଦମନ ନୀତିର ନିଂଦାବାଦ କରୁଥାଂତି । କମ୍ରେଡ୍ ସଚି ରାଉତରାୟ ପ୍ରଧାନମଂତ୍ରୀଂକ ଫାଟକ ଉପରେ ଚଢ଼ି ଉପସ୍ଥିତ ଛାତ୍ରମାନଂକୁ ଏକ ଜ୍ୱଳାମୟୀ ବକ୍ତୃତା ଦେଇ ସରକାରର ଏ ଅମଲାତାଂତ୍ରିକ ନୀତି ଧ୍ୱଂସକରିବାଲାଗି ଉଦ୍‌ବୋଧନ ଦେଇଥିଲେ । ଛାତ୍ରମାନଂକ ଆଖିରେ ପ୍ରତିଶୋଧର ଅଗ୍ନି ଜଳୁଥାଏ । ସମସ୍ତେ ଆକାଶ ଫଟାଇ ମଂତ୍ରୀମାନଂକର ନିର୍ମମ ନୀତିର ନିଂଦାବାଦକରୁଥାଂତି । ୫ମ ଡିକ୍‌ଟେଟର ବିବୁଧେଂଦ୍ର ମିଶ୍ର ଛାତ୍ରମାନଂକ ଏ ସମରକୁ ଜୟଯୁକ୍ତ କରିବାଲାଗି ନିବେଦନ କରିଥିଲେ ।

**ସଚିବାବୁଂକୁ ଗିରଫ୍ କରି ପୁଣି ଛାଡ଼ିଦେଲେ –**

ସଚିବାବୁ ପୂର୍ବକଥିତ ବାଳକଟିର ପିତା ଓ ଅଭିଭାବକଂକୁ ହାତଯୋଡ଼ି ଉକ୍ତ ପିଲାଟିକୁ ଛାଡ଼ିଦେବାପାଇଁ ଅନୁରୋଧ କରିଥିଲେ । କିଂତୁ ମାଜିଷ୍ଟ୍ରେଟ୍ ସାହେବ ତାଂକର ଏଭଳି କାମ ହିଂସାମୂଳକ ହେଉଛି ବୋଲି କହି ତାଂକୁ ଗିରଫକଲେ । ପ୍ରାୟ ଏକ ଘଂଟା ପରେ ପୁଣି ତାଂକୁ ଖଲାସକରିଦିଆଗଲା ବୋଲି ଜଣାଇଦେଲେ । ଜନରବ ଯେ, ସଚିବାବୁ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ଥିବାରୁ ଓ ସଂପୂର୍ଣ ଅଂହିସା ନୀତି ଅବଲଂବନ କରିଥିବାରୁ କଂଗ୍ରେସ ମଂତ୍ରିମଂଡଳ ତାଂକୁ ଗିରଫ କରିବାକୁ ସାହସ କଲେନାହିଁ । ('ଛାତ୍ର' – ୨୨ । ୪ । ୧୯୩୯)

**ଆଜି ୨୨ ଜଣ ଛାତ୍ର-ସୈନିକ ବନ୍ଦୀହେଲେ –**
**ପ୍ରାୟ ୧ ଘଣ୍ଟା ପରେ ପୁଲିସ୍ ସେମାନଙ୍କୁ ଧକ୍କାଦେଇ ବାହାରକରିଦେଲେ –**
**ଏ ନୀତି ପରିବର୍ତ୍ତନର ଭିତିରି ଉଦ୍ଦେଶ୍ୟ କ'ଣ ?**

ଆଜି କମ୍ରେଡ୍ ସୁଧୀର କବିଙ୍କ ଅଧିନାୟକତ୍ୱରେ ୨୬୫ ଜଣ ସୈନିକ ସତ୍ୟାଗ୍ରହ ଯୁଦ୍ଧ ଚଳାଇଥିଲେ। ସେମାନେ ଆସିବା ଆଗରୁ ଲାଠିଧାରୀ ପୁଲିସ୍ ସେକ୍ରେଟେରିଏଟ୍‌ର ଫାଟକ ସବୁ ଘେରିରହିଥିଲେ। ପରେ ସେମାନେ ସତ୍ୟାଗ୍ରହ କରିବାକୁ ଆସିଛନ୍ତି ବୋଲି କହିବାରୁ ସେମାନଂକ ଭିତରୁ କେତେକଂକୁ ଭିତରକୁ ଛାଡ଼ି ସଂଗେ ସଂଗେ ଗିରଫ କରିନେଲେ। ପ୍ରାୟ ୨୨ ଜଣ ଛାତ୍ରଂକୁ ଗିରଫ କରିବାପରେ ଆଉ କାହାରିକୁ ଫାଟକ ପାଖକୁ ଛାଡ଼ିଲେ ନାହିଁ। Notified Area ବୋଲି କହି ସେମାନେ ରାସ୍ତା ବନ୍ଦ କରି ରହିଲେ। ଏପରିକି ଗାଡ଼ି ଘୋଡ଼ାର ଯିବା ଆସିବା ମଧ୍ୟ ବନ୍ଦ ହୋଇଗଲା। ଉକ୍ତ ୨୨ ଜଣ ଛାତ୍ରଂକୁ ଗ୍ରେପ୍ତାର କରି ଘଂଟାକ ପରେ ସେମାନଂକୁ ଜେଲ୍‌ରୁ ଖଲାସକରିଦେଲେ। ବଂଦୀମାନେ ଜେଲ୍ ଛାଡ଼ି ଯିବେ ନାହିଁ ବୋଲି କହିବାରୁ ପୁଲିସ୍ ସେମାଂନକୁ ଧକ୍କା ଦେଇ ବାହାରକରିଦେଲେ। ସରକାରଂକର ହଠାତ୍ ଏ ନୀତି ପରିବର୍ତ୍ତନର ଉଦ୍ଦେଶ୍ୟ କ'ଣ, ବୁଝାଯାଇନାହିଁ। ବଂଦୀମାନେ ଜେଲ୍‌ରୁ ଆସି ଶୋଭାଯାତ୍ରା କରି ସହର ବୁଲିଥିଲେ। ('ଛାତ୍ର' – ୨୫।୪।୧୯୩୯)

**ଆଜି ୪୩ ଜଣ ଛାତ୍ର ବଂଦୀ ହେଲେ :**
**୮ ଜଣ ଡିକ୍‌ଟେଟର ଗିରଫଦାର**
**କମ୍ରେଡ୍ ସୁଧୀର କବି ୧୨-ନମ୍ବର ଡିକ୍‌ଟେଟର୍ ହେଲେ**

ଆଜି ୪ର୍ଥ ସତ୍ୟାଗ୍ରହୀ ବାହିନୀ ୫ମ ଡିକ୍‌ଟେଟର ଶ୍ରୀମାନ୍ ବିବୁଧେଂଦ୍ର ମିଶ୍ରଂକ ଅଧିନାୟକତ୍ୱରେ ସେକ୍ରେଟେରିଏଟ୍ ନିକଟରେ ସତ୍ୟାଗ୍ରହ ସମର ଘୋଷଣା କଲେ। ୫୦ଜଣ ସ୍ୱେଚ୍ଛାସେବକ ଏ ବାହିନୀରେ ଆସିଥିଲେ। ପ୍ରାୟ ସାତଆଠଜଣ ମେଡ଼ିକାଲ୍ ସ୍କୁଲ୍ ଛାତ୍ରଂକୁ ଛାଡ଼ିଦେଲେ ବାକୀ ସମସ୍ତେ ପ୍ରାୟ ସ୍କୁଲ-କଲେଜର ଛାତ୍ର।

ପ୍ରଥମ ଫାଟକ ନିକଟରେ ମାଜିଷ୍ଟ୍ରେଟ୍ ଗଣେଶଚନ୍ଦ୍ର ୫ମ ଡିକ୍‌ଟେଟରଂକ ସଂଗେ ୪ ଜଣ ସ୍ୱେଚ୍ଛାସେବକଂକୁ ଗ୍ରେପ୍ତାରକଲେ। ବିବୁଧେନ୍ଦ୍ରଂକ ପରେ ଗିରିଜାଶଂକର ବହିଦାର (କଲେଜ ଛାତ୍ର) ୬ଷ୍ଠ ଡିକ୍‌ଟେଟର ହେଲେ ଓ ଅନ୍ୟ ୪ ଜଣ ଛାତ୍ର ସତ୍ୟାଗ୍ରହ ଲଢ଼େଇ ଚଳାଇଲେ। ସେମାନଂକୁ ମଧ୍ୟ ସଂଗେ ସଂଗେ ଗିରଫଦାର କରାଗଲା। ତତ୍ପରେ ବୀରେନ୍ ମିତ୍ର (କଲେଜ) ଡିକ୍‌ଟେଟର ହୋଇ ଅନ୍ୟ ଦୁଇଜଣ ସ୍ୱେଚ୍ଛାସେବକଂକୁ ଧରି ସଂଗ୍ରାମ ଘୋଷଣା କଲେ। ତାଂକୁ ଗିରଫଦାର କରାଗଲା। ତାଂକ ପରେ କଲେଜଛାତ୍ର ବଳରାମ ମହାଂତି, ତାଂକ ପରେ ନବଗୋପାଳ ପଟ୍ଟନାୟକ (ମେଡ଼ିକାଲ) ଯଥାକ୍ରମେ ଡିକ୍‌ଟେଟର ହୋଇ ପ୍ରତ୍ୟେକ ଚାରି ଚାରି ଜଣ ସୈନିକ ନେଇ ସତ୍ୟାଗ୍ରହ ଅର୍ପଣକଲେ।

ସେମାନେ ଗିରଫ ହେବାପରେ ଜୟକୃଷ୍ଣ, କିଶୋରୀମୋହନ ଏବଂ ଗୋବିନ୍ଦଚନ୍ଦ୍ର ମହାଂତି ଯଥାକ୍ରମେ ଡିକ୍‌ଟେଟର ହେଲେ ଓ ପରେ ପରେ ଗିରଫହେଲେ। ଶେଷ ଡିକ୍‌ଟେଟର ଗୋବିନ୍ଦଚନ୍ଦ୍ର ମହାଂତିଂକ ପରେ ଅନଶନ କରିଥିବା ମେଡ଼ିକାଲ୍ ଛାତ୍ର କମ୍ରେଡ୍ ସୁଧୀର କବି ୧୨ ନମ୍ବର ଡିକ୍‌ଟେଟର ମନୋନୀତ ହୋଇଛନ୍ତି। ସର୍ବମୋଟ ୨୩ ଜଣ ଛାତ୍ର ସୈନିକ ଓ ୮ ଜଣ ଡିକ୍‌ଟେଟର ବଂଦୀ ହୋଇଛନ୍ତି।

**ପୁଲିଶଂକ ସଂଖୋଳା –**

ପ୍ରାୟ ୪୩ ଜଣ ଛାତ୍ରଂକୁ ଗିରଫ କରିବା ପରେ ପୁଲିଶ ସାହେବ ଉପସ୍ଥିତ ଲୋକଂକ ଆଡ଼କୁ ଚାହିଁ ପଚାରିଲେ – "ସଚ୍ଚି ରାଉତରାୟ କାହାଂତି ?" ମାଜିଷ୍ଟ୍ରେଟ୍ ଗଣେଶଚଂଦ୍ର ଥଟ୍ଟା କରି ଜବାବଦେଲେ – "ସେ ବୋଧହୁଏ ପଳାଇଗଲେଣି।" ଲୋକମାନେ ତାଂକ ବ୍ୟଂଗୋକ୍ତିର ପ୍ରତିବାଦ କରିଉଠିଲେ। ଶେଷ ଡିକ୍‌ଟେଟର ଗୋବିଂଦଚଂଦ୍ର ମହାଂତି ତୀବ୍ର ଜବାବଦେଲେ – "ସେ ଜରୁରୀ କାମରେ ବ୍ୟସ୍ତ ଅଛଂତି। ଆମେ କେହି ଗିରଫ ହେବାକୁ ଡରୁନା। କିଂତୁ ଆଂଦୋଳନକୁ ବଂଚାଇବା ପାଇଁ ସଚ୍ଚିବାବୁ ପଛରେ ଅଛଂତି। ଆମର ନେତାମାନେ ଗିରଫ ହେଲେ, କିଏ ଲଢ଼ାଇ ଚଳାଇବ ?" ମାଜିଷ୍ଟ୍ରେଟ୍ ଚୁପ୍ ହୋଇଗଲେ। ଠିକ୍ ସେତିକିବେଳେ ସଚ୍ଚିବାବୁ ଟିକିଏ ଦୂରରେ ରହି କାଲିକାର ଲଢ଼େଇ ପାଇଁ ସ୍ୱେଚ୍ଛାସେବକ ସଂଗ୍ରହ କରୁଥିଲେ। ('ଛାତ୍ର' – ୨୪।୪।୩୯)

**ଛାତ୍ରୀମାନେ ସତ୍ୟାଗ୍ରହୀ ବାହିନୀରେ ଯୋଗଦେଲେ –**

ମେଡ଼ିକାଲ ସ୍କୁଲର ୯ଜଣ ଛାତ୍ରୀ ଗାର୍ଲସ୍କୁଲ ଫାଟକ ନିକଟରେ ସତ୍ୟାଗ୍ରହ କରିଥିଲେ।

**କାଠଯୋଡ଼ି ବାଲିରେ ବିରାଟ ଜନସଭା –**

**ଶ୍ରୀମତୀ ଜାହ୍ନବୀ ଦେବୀ ସଭାନେତ୍ରୀ :**

**କଟକ ଜନସାଧାରଣଂକର ମେଡ଼ିକାଲ୍ ପ୍ରତି ଗଭୀର ସହାନୁଭୂତି –**

କାଲି କଟକସହରରେ ଦୋକାନ ବଜାରମାନଂକରେ ମେଡ଼ିକାଲ୍ ପ୍ରତି ସହାନୁଭୂତି ଦେଖାଇ ପୂର୍ଣ୍ଣ ହରତାଳ ପାଳନ କରାଯାଇଥିଲା। ସକାଳେ ବିଭିନ୍ନ ସ୍କୁଲରେ ଧର୍ମଘଟ କରି ଛାତ୍ରମାନେ ସରକାରଂକ ଅନ୍ୟାୟ ଅବିଚାରର ପ୍ରତିବାଦ କରି ସହରତମାମ ଶୋଭାଯାତ୍ରା କରିଥିଲେ। ସଂଧ୍ୟାବେଳେ କଟକ ସହରବାସୀ ଜନସାଧାରଣଂକର କାଠଯୋଡ଼ି ନଈ ବାଲିରେ ଏକ ବିରାଟ ସଭା ହୋଇଥିଲା। ସଭାରେ ସହରର ବହୁ ଗଣ୍ୟମାନ୍ୟ ବିଶିଷ୍ଟ ଭଦ୍ରବ୍ୟକ୍ତି ଯୋଗଦେଇଥିଲେ ଓ ମାନ୍ୟବର ସ୍ପିକରଂକ ପତ୍ନୀ ଶ୍ରୀମତୀ ଜାହ୍ନବୀ ଦେବୀ ସଭାନେତ୍ରୀର ଆସନ ଅଳଂକୃତ କରିଥିଲେ। ସଭାରେ ଛାତ୍ରମାନଂକର ଏକତା ଓ ସମ୍ମାନରକ୍ଷା ଲାଗି ସେମାନଂକର ଚେଷ୍ଟାର ପ୍ରଶଂସା କରି ଲୋକପ୍ରିୟ ସରକାରଂକଠାରେ ଶୀଘ୍ର ଏହାର ସମ୍ମାନଜନକ ନିଷ୍ପତ୍ତି କରିବାପାଇଁ ଦାବି କରାଯାଇଥିଲା।

ଗତ ୨୨.୪.୩୯ ତାରିଖ ଦିନ କଟକ ଟାଉନ୍‌ହଲ୍‌ରେ ଏକ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା। ସହରର ବିଶିଷ୍ଟ ଭଦ୍ରଲୋକମାନେ ଏ ସଭାରେ ଉପସ୍ଥିତ ଥିଲେ। ବୟୋଜ୍ୟେଷ୍ଠ ଓକିଲ ପାରେଶ୍ୱର ମହାନ୍ତି ସଭାପତି ହୋଇଥିଲେ। ସଭାରେ ସରକାର ଓ ଛାତ୍ରମାନଙ୍କ ମଧ୍ୟରେ ଶୀଘ୍ର ସମାଧାନ କରିବା ପାଇଁ ଆଡ଼ଭୋକେଟ୍ ଜେନେରାଲ୍ ବୀରକିଶୋର ରାୟ, ବିଚିତ୍ରାନନ୍ଦ ମହାନ୍ତି, ମହମ୍ମଦ ହୋଦା, ଡାକ୍ତର ରଜନୀକାନ୍ତ ଘୋଷ୍, ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି ପ୍ରଭୃତିଙ୍କୁ ନେଇ ଏକ କମିଟି ଗଢ଼ାଯାଇଥିଲା। ଉକ୍ତ କମିଟିରେ କଟକ ମ୍ୟୁନିସିପାଲ୍‌ଟି ଚେୟାରମ୍ୟାନ୍ ଭାଗୀରଥି ମହାପାତ୍ରଙ୍କୁ ସଭ୍ୟ ରହିବା ପାଇଁ ପ୍ରସ୍ତାବ ହେଲାବେଳେ ଉପସ୍ଥିତ ଜନସାଧାରଣ ଏକସ୍ୱରରେ 'ନା' 'ନା' ଚିତ୍କାର କରିଥିଲେ। ସଭାରେ ବୀରବାବୁ, ରାୟବାହାଦୁର ଲକ୍ଷ୍ମୀଧର ବାବୁ, ସତ୍ୟନାରାୟଣ ସେନ୍‌ଗୁପ୍ତ, ବାବୁ ହରିହର ମହାପାତ୍ର ପ୍ରମୁଖ ବକ୍ତୃତା ଦେଇ ଶୀଘ୍ର ଏହାର ସମାଧାନ କରିବା ଉଚିତ ବୋଲି ମତ ଦେଇଥିଲେ। ('ଛାତ୍ର' – ୨୪।୪।୩୯)
(ଏ ବିବରଣୀର ସାରାଂଶ ପୂର୍ବରୁ 'ସଂଗ୍ରାମୀ' ପୁସ୍ତକରୁ ଦିଆଯାଇଛି)

**ଓଡ଼ିଶାରେ ଅନ୍ଧାରି ରାଜତ୍ୱ : ମେଡ଼ିକାଲ ଛାତ୍ରାବାସରୁ ଆଲୁଅ ଲିଭିଲା :**

ଆଜି ମେଡ଼ିକାଲ ସ୍କୁଲ ଛାତ୍ରମାନେ ବୋର୍ଡିଂ ଛାଡ଼ି ନ ଯିବାରୁ ସରକାର ସେଠାରୁ ବିଜୁଳିବତି କାଟିଦେଇଛନ୍ତି। ଶୁଣାଯାଏ, ନିକଟରେ ପାଣିକଳ ବନ୍ଦ ହୋଇଯିବ। ଏ ମରୁଡ଼ି ଦେଶରେ ଖରାଦିନେ ଜଳଛତ୍ର ବ୍ୟବସ୍ଥା ହେଉଥିବାବେଳେ ସରକାର ପାଣିକଳ ବନ୍ଦକରିଦେଇ ଏ ଦେଶରେ ଚିରସ୍ଥାୟୀ ଅନ୍ଧାରୀ ରାଜତ୍ୱ ସ୍ଥାପନ କରୁଛନ୍ତି।

**ନାରୀମାନଙ୍କ ପ୍ରତି ସରକାରର ନୃଶଂସ ବ୍ୟବହାର :**
**ମେଡ଼ିକାଲ୍ ଛାତ୍ରୀମାନଙ୍କ ପ୍ରତି ଅମାନୁଷିକ ଆଚରଣ –**

ଆଜି ମେଡ଼ିକାଲ ସ୍କୁଲ ଛାତ୍ରୀମାନଙ୍କର ଛାତ୍ରୀ-ନିବାସରୁ ସରକାର ବିଜୁଳିବତି କାଟିଦେଲେ। ପ୍ରାୟ ୧୫-୨୦ ଜଣ ଛାତ୍ରୀ ଆଜିଠାରୁ ଅନ୍ଧାରରେ ରହିବେ। ସରକାର କେବଳ ଛାତ୍ରମାନଙ୍କୁ ନିର୍ଯାତନା ଦେଇ ସନ୍ତୁଷ୍ଟ ନୁହନ୍ତି; ନାରୀମାନଙ୍କ ପ୍ରତି ମଧ୍ୟ ଅମାନୁଷିକ ବ୍ୟବହାର କରୁଛନ୍ତି। କଂଗ୍ରେସ ସରକାରର ଏପରି ଘୃଣିତ କାର୍ଯ୍ୟରେ ଭାରତର ଜନସାଧାରଣ କ'ଣ କହିବେ? କଟକରେ ସମସ୍ତେ ଏଥିପାଇଁ ସରକାରଙ୍କୁ ଛି ଛି କରୁଛନ୍ତି। ('ଛାତ୍ର' – ୧୦।୪।୩୯)

**ଜୟସ୍ତୁ –**

'ଛାତ୍ର'ର ୨୪.୪.୩୯ ତାରିଖ ସମ୍ପାଦକୀୟ ଉଲ୍ଲେଖ କରାଯାଉଛି– "ଜଣେ ନୁହେଁ, ଦୁଇଜଣ ନୁହେଁ, ଶହ ଶହ ଛାତ୍ର ଶହ ଶହ ଜ୍ୱଳନ୍ତ ମଶାଲ ପରି ଅତ୍ୟାଚାର ଓ ଅବିଚାରର ଅନ୍ଧାର ଦୂରକରିବାକୁ କାରାଗାରକୁ ଯାଉଛନ୍ତି। କାରାଗାରର ଲୁହାଫାଟକ ଅନ୍ତରାଳରେ ଏ ଶହେଟି ଦୀପଶିଖା ବନ୍ଦୀ ହୋଇଛନ୍ତି

ପଛକେ, ନିଭିଯାଇନାହାଂତି। ଏ ନିଆଁକୁ ଲିଭାଇବା ପାଇଁ ବ୍ରିଟିଶ୍ ସାମ୍ରାଜ୍ୟବାଦର ଶକ୍ତି ନାହିଁ– ତା'ର କିଂକରଦଳ ତ ସାମାନ୍ୟ ବ୍ୟକ୍ତି! ଏ ନିଆଁର ଉଦ୍ଧୃତ ଜିଭ ଦେଶରୁ ପ୍ରତିକ୍ରିୟାର ଆୟୁ ଲେହନ କରିଦେବାକୁ ଚାହେଁ– ଶ୍ମଶାନର ଚିତାନଳପରି। କାରାଗାର, ଫାଶୀଖୁଂଟ, ଆଂଡାମାନ୍ ଏ ନିଆଁକୁ କିଛି ସମୟ ପାଇଁ ଦମନନୀତିର ପରଦା ପକାଇ ଲୁଚାଇଦେଇପାରେ ସତ; କିଂତୁ ସବୁଦିନ ପାଇଁ ଲିଭାଇ ପାରିବ ନାହିଁ। ଏ ନିଆଁ ଅନ୍ୟାୟ ଅବିଚାର ପଛରେ ପ୍ରେତାତ୍ମା ପରି ଚିରଦିନ ଗୋଡ଼ାଇବ। ଯେଉଁମାନେ ଏ ଦେଶରେ ପ୍ରତିକ୍ରିୟାର ପଂଡା, ସେମାନେ ସେହି ପ୍ରେତାତ୍ମା ଭୟରେ ଦେଶର ଏମୁଂଡରୁ ସେମୁଂଡ ପର୍ଯ୍ୟଂତ ଆଶ୍ରୟ ଖୋଜିବୁଲିବେ; କିଂତୁ ସେମାନଂକୁ ଆଶ୍ରୟ ମିଳିବ ନାହିଁ। ସେମାନେ ଭିକ୍ଷୁକଂକ ପରି ସମସ୍ତଂକର ଦୟାର ପାତ୍ର ହେବେ। ସେଦିନ ଓଡ଼ିଶାର ଦେଢ଼କୋଟି ହାତମୁଷ୍ଟି ବନ୍ଧ ହୋଇ କହିବ– ଯେଉଁମାନେ ଲୋକଂକର ସରଳ ଦେଶପ୍ରେମର ସୁଯୋଗ ନେଇ ଏ ବିରାଟ ଦେଶକୁ ବିଦେଶୀ ସାମ୍ରାଜ୍ୟବାଦର ପାଦତଳେ ବିକ୍ରି କରିଛଂତି, ସେମାନଂକୁ କ୍ଷମା ଦେବା ପାପ। ସେଦିନ ଦେଶର ମଣିଷ ସେମାନଂକୁ ଅଭିଶାପଦେବ– ଇତିହାସ ସେମାନଂକ ନାମକୁ ସତର୍କତାର ସହିତ ଆଗାମୀ ବଂଶଧରମାନଂକୁ ସ୍ମରଣ କରାଇଦେବ। ଆଉ ଆଜି ଜୟ ତୋରଣ ନିକଟରେ ଦେଖାଗଲାଣି; ତାରୁଣ୍ୟର ଜୟ ସବୁଦିନେ ହୋଇଛି, ଆଜି ବି ହେବ। ଜୟମୁକୁଟ ସଂଗଠିତ ଯୁବଶକ୍ତିର ଅପେକ୍ଷା କରି ବସିଛି। ଦିନ ଆସିବ, ଯେଉଁ ଦିନ ଯୌବନର ବିଜୟୀଶକ୍ତି ନିକଟରେ ପରାଜିତ ପ୍ରତିକ୍ରିୟା ନତଜାନୁ ହୋଇ କ୍ଷମା ଭିକ୍ଷା କରିବ। କ୍ଷମା ହୁଏତ ମିଳିବ; କିଂତୁ ସେ କ୍ଷମାର ସ୍ୱାକ୍ଷର ବହନ କରି ଆଣିବ ମୃତ୍ୟୁର ଆଦେଶ। ସେ ମୃତ୍ୟୁ, ପ୍ରତିକ୍ରିୟା ଓ ଅନ୍ୟାୟ ପ୍ରାଣବଂତ ଯୁବକର ରାଜସଭା ତଳେ ନତଜାନୁହେବ। ପ୍ରାଣଭୀରୁ ପ୍ରତିକ୍ରିୟାର ମୃତ୍ୟୁରେ ଦେଶବାସୀ ଦୁଃଖିତ ନହୋଇ ବରଂ ଗୌରବାନ୍ୱିତ ହେବେ; ଜୟସ୍ତୁ।''

**ପ୍ରଦେଶ କଂଗ୍ରେସ ସଭାପତି ସାଧାରଣ ଓ ସଂପାଦକଂକ ଇସ୍ତଫା –**

ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ସଭାପତି ପଂଡିତ ନୀଳକଂଠ ଦାସ ଏବଂ ସାଧାରଣ ସଂପାଦକ ପଂଡିତ ଗୋଦାବରୀଶ ମିଶ୍ର, ଯେଉଁମାନେ କି ସରକାର ଓ ଛାତ୍ରମାନଂକ ମଧ୍ୟରେ ମଧ୍ୟସ୍ଥି ହୋଇ ମିଳାମିଶା କରାଇଥିଲେ, ସେମାନେ ମୋ' ବିରୁଦ୍ଧରେ ଓ ମଧୁସୂଦନ ମହାଂତିକ ବିରୁଦ୍ଧରେ ସରକାର 'ଛାତ୍ର' ବୁଲେଟିନ୍ ସଂକ୍ରାଂତ ମୋକଦ୍ଦମା ଉଠାଇନନେବାରୁ କିଂବା ଦଂଡବିଧାନ ନାକଚ୍ ନକରିବାରୁ ମିଳାମିଶାର ସର୍ତଭଂଗ ହୋଇଛି ବୋଲି ଅଭିଯୋଗ ଆଣିଥିଲେ। କିଛିଦିନ ପରେ ଗଂଜାମ ଜିଲ୍ଲା ସୁରଡ଼ାଠାରେ ପ୍ରଦେଶ କଂଗ୍ରେସ କମିଟି ବୈଠକ ବସେ। ଏହି ମିଟିଂଗ୍‌ରେ ପଂଡିତ ନୀଳକଂଠ ଦାସ ଏବଂ ପଂଡିତ ଗୋଦାବରୀଶ ମିଶ୍ର ମୋ ବିରୁଦ୍ଧରେ ଓ ମଧୁସୂଦନ ମହାଂତିକ ବିରୁଦ୍ଧରେ ସରକାର କେସ୍

ନଉଠାଇ ଆମକୁ ପ୍ରେସ୍ ଆଇନ୍‌ରେ ଦଂଡିତ କରିଥିବାରୁ ମିଳାମିଶା ପ୍ରସ୍ତାବର ଖିଲାପ କରିଛଂତି ବୋଲି ନିଜ ନିଜ ପଦରୁ ଇସ୍ତଫା ଦେଇଥିଲେ। ଆମ ମୋକଦ୍ଦମା ସହିତ ଅନ୍ୟ କେତେକ ଗୁରୁତର ରାଜନୀତିକ ବିଷୟ ମଧ୍ୟ ସେମାନଂକ ଇସ୍ତଫାର କାରଣ ବୋଲି ସେମାନେ ଦର୍ଶାଇଥିଲେ। ପଂଡିତ ନୀଳକଂଠ ଦାସ ଓ ପଂଡିତ ଗୋଦାବରୀଶ ମିଶ୍ରଂକ ଇସ୍ତଫା ସାରା ଓଡ଼ିଶାରେ ଚହଳପକାଇଦେଇଥିଲା।

**ପଂଡିତ ନୀଳକଂଠ ଦାସ –**

ପଂଡିତ ନୀଳକଂଠ ଦାସ ଜଣେ ସ୍ୱାଧୀନଚେତା ବ୍ୟକ୍ତି ଥିଲେ। ସେ କେନ୍ଦ୍ର ଆସେମ୍ବ୍ଲି ବା ବଡ଼ଲାଟ ସଭାର କଂଗ୍ରେସ ଦଳର ସଂପାଦକ ଥିଲେ। ସେ କେନ୍ଦ୍ର ବିଧାନସଭାରେ ସରକାରଂକର ସାମ୍ୟବାଦୀ ବା କମ୍ୟୁନିଷ୍ଟ ଦମନ ଆଇନ୍ ବିରୁଦ୍ଧରେ ଯେଉଁଭଳି ସାହସିକ ସ୍ୱର ଉଠାଇଥିଲେ ଏବଂ ଏ ବିଲ୍‌ର ପ୍ରତିରୋଧ କରିଥିଲେ, ତାହା ଭାରତରେ ଚାଂଚଲ୍ୟ ସୃଷ୍ଟିକରିଥିଲା। ସେ ତାଂକ ଐତିହାସିକ ଭାଷଣରେ କହିଥିଲେ – ‘ପୃଥିବୀର ସଭ୍ୟତାରେ ଏକ ନୂତନ ଦିଗ୍‌ଦର୍ଶନ ରୂପେ କମ୍ୟୁନିଜିମ୍‌ର ଆବିର୍ଭାବ ହୋଇଛି। ତାହା ଭାରତର ଦିଗ୍‌ବଳୟରେ ଉଦିତହେଉଛି। ସାଧାରଣ ରୀତିରେ ପୂର୍ବର ଅନ୍ୟ ଆଦର୍ଶବାଦମାନଂକ ଉପରେ ତା'ର ପ୍ରଭାବ ପଡ଼ିବ ହିଁ ପଡ଼ିବ, ଏଥିରେ ସଂଦେହ ନାହିଁ।

ଏହା ସାମ୍ରାଜ୍ୟବାଦୀ ଓ ପୁଂଜିବାଦୀମାନଂକ ପାଇଁ ଏକ ମହାବିପଦର କାରଣ ହୋଇଛି। ତା'ର ନାମ ଶୁଣିବା ମାତ୍ରେ ସେମାନେ ଭୟତ୍ରସ୍ତ ହୋଇ ଉଠୁଛଂତି। ଯେକୌଣସି ନୂଆ ଆଦର୍ଶ ଗତାନୁଗତିକ ପଂଥାର ବିପଦରୂପେ ଠିଆହୁଏ। ପୁରୁଣା ପଂଥାରୁ ଲାଭଉଠାଉଥିବା ବ୍ୟକ୍ତିମାନେ ସବୁ ସମୟରେ ତା'ର ବିରୋଧ କରଂତି। ଏହା ଐତିହାସିକ ସତ୍ୟ। ତୁମେ ଏକ ଚମତ୍କାର ଯୁବ ଆଂଦୋଳନକୁ ଦବାଇବାପାଇଁ ତୁମର କ୍ଷମତାବଳରେ ମୁଷ୍ଟିମେୟ ବିଦେଶୀ କମ୍ୟୁନିଷ୍ଟଂକୁ ନିର୍ବାସିତ କରିପାର, କିଂତୁ ତାହାଦ୍ୱାରା କମ୍ୟୁନିଜିମ୍‌କୁ କ'ଣ ହଟାଇପାରିବ ?

ଏ ଦେଶକୁ ନୂତନ ଭାବଧାରାର ପ୍ରଚାର ପାଇଁ ଆସୁଥିବା ଲୋକଂକ ପାଇଁ ଆମ ଦ୍ୱାର ରୁଦ୍ଧ କରିବା ବିଷୟରେ ଆମେ ତୁମ ସଂଗେ ଏକମତ ହୋଇପାରିବୁନାହିଁ। ଦେଶ ଭିତରେ କୌଣସି ନବ ଭାବଧାରା ପ୍ରଚାରକୁ କୌଣସି ଭାରତୀୟ ଖାତିର କରେନାହିଁ। ତୁମେ ଏଥିପାଇଁ ଯଦି ଲୋକମତ ନିଅ, ତେବେ ସେ ନିଶ୍ଚୟ ତୁମ ବିରୁଦ୍ଧରେ ଯିବ।'' (୪।୨।୧୯୩୯ ଏଜନ୍)

**ବି.ଏ. ଫେଲ୍ ଓ ବି.ଏ. ପାସ୍ –**

୧୯୩୯ ମସିହାରେ ମୁଁ ରେଭେନ୍‌ସାରେ ବି.ଏ. ଫାଇନାଲ୍ ପରୀକ୍ଷା ଦେଇଥିଲି। ମାତ୍ର ଶେଷଦିନ ପେପର୍ ଥିଲା Indian Economics. ସେହି ସମୟରେ ତ୍ରିପୁରୀଠାରେ କଂଗ୍ରେସ ଅଧିବେଶନ ଚାଲିଥାଏ ଏବଂ ମୁଁ ପ୍ରାଦେଶିକ କଂଗ୍ରେସ କମିଟିର ସଦସ୍ୟରୂପେ ସେଥିରେ ଯୋଗଦେଇ ଭୋଟ ଦେବା ଆବଶ୍ୟକ

ବୋଲି ତ୍ରିପୁରାରୁ ଶ୍ରୀମତୀ ମାଳତୀ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀ ଟେଲିଗ୍ରାମ୍ କରିଥିଲେ। ସେ କଂଗ୍ରେସ ଅଧିବେଶନରେ ଗାଂଧିଜୀଂକ ବିନା ସମର୍ଥନରେ ନେତାଜୀ ସୁଭାଷ ଚଂଦ୍ର ବୋଷ ରାଷ୍ଟ୍ରପତି ବା କଂଗ୍ରେସ ସଭାପତି ନିର୍ବାଚିତ ହୋଇଥାଂତି। ଗାଂଧିଜୀଂକ ସମର୍ଥିତ ପ୍ରାର୍ଥୀ ଡାକ୍ତର ପଟ୍ଟାଭି ସୀତାରାମାୟାଂକୁ ବହୁ ଭୋଟରେ ସେ ହରାଇ ଥିଲେ। କଂଗ୍ରେସରେ ଗାଂଧିଜୀଂକ ସମର୍ଥକମାନେ, ଯଥା – ସର୍ଦାର ବଲ୍ଲଭଭାଇ ପଟେଲ୍, ରାଜଗୋପାଳାଚାରୀ, ପଂଡିତ ଜବାହରଲାଲ୍ ନେହେରୁ, ଆବୁଲ୍ କାଲାମ୍ ଆଜାଦ୍, ଆଚାର୍ଯ୍ୟ କୃପାଳିନୀ, ଡାକ୍ତର ପଟ୍ଟାଭି ସୀତାରାମାୟା ଏବଂ ଏପରିକି ହରେକୃଷ୍ଣ ମହତାବ, ଯାହାଂକୁ କି ସୁଭାଷ ବୋଷ କଂଗ୍ରେସ ସଭାପତି ହେବା ପରେ ୧୯୩୯ ମସିହାରେ କଂଗ୍ରେସ କାର୍ଯକାରୀ କମିଟିର ସଭ୍ୟ କରିଥିଲେ, ପ୍ରଭୃତି ମେଂଟକରି ରାଷ୍ଟ୍ରପତି ସୁଭାଷଚଂଦ୍ର ବୋଷଂକର କ୍ଷମତା କ୍ଷୁଣ୍ଣ କରିବାକୁ ପ୍ରବଳ ଉଦ୍ୟମ ଚଳାଇଥାଂତି। ତେଣୁ ପ୍ରତି ଭୋଟ ଥିଲା 'ଗହମ ଗୋଟି ଗଣିତା'। ଏପରିସ୍ଥଳେ ମୋତେ ତ୍ରିପୁରା କଂଗ୍ରେସକୁ ଯାଇ ସୁଭାଷଚଂଦ୍ରଂକ ସପକ୍ଷରେ ଭୋଟ ଦେବା ଦରକାର ବୋଲି ସମସ୍ତେ ଚାପଦେଲେ।

ଅଗତ୍ୟା ମୁଁ ଶେଷଦିନର ପେପର୍ ଭାରତୀୟ ଅର୍ଥନୀତି ମାତ୍ର ଅଧଘଂଟାଏ ସମୟ ଲେଖି ଆସାନ୍‌ସୋଲ୍ ଟ୍ରେନ୍ ଧରି ତ୍ରିପୁରା ଅଭିମୁଖରେ ଯାତ୍ରାକଲି। ଫଳରେ ମୁଁ ଭାରତୀୟ ଅର୍ଥନୀତିରେ ଖୁବ୍ ଭଲ କରୁଥିଲେ ମଧ ସେ ପରୀକ୍ଷାରେ ଫେଲ୍‌ହୋଇଗଲି। ମୁଁ ଯଥାସମୟରେ ତ୍ରିପୁରାରେ ପଂହଚି ନେତାଜୀଂକ ସପକ୍ଷରେ ଭୋଟ୍ ଦେଇଥିଲି।

ଏହାପରେ ଦେଢ଼ମାସ ପରେ ବି.ଏ. ସପ୍ଲିମେଂଟାରୀ ପରୀକ୍ଷା ହୁଏ। ମୁଁ ସେଥିରେ ସବୁବିଷୟରେ ଡିଷ୍ଟିଂକସନ୍ ରଖି ପାସ୍ କରିଥିଲି।

**ରେଭେନ୍‌ସାରେ ପଢ଼ିବାପାଇଁ ମନା –**

ମୁଁ ସପ୍ଲିମେଂଟାରୀ ପରୀକ୍ଷାରେ ବି.ଏ. ପାସ୍ କରି ଏମ୍.ଏ. ଓ ଲ' (ଆଇନ୍) ଶ୍ରେଣୀରେ ଭର୍ତିହେବାପାଇଁ ଆବେଦନକଲି। ସେତେବେଳେ ଲ' (ଆଇନ୍) କ୍ଲାସ୍ ସକାଳେ ହେଉଥାଏ। ତେଣୁ ଜଣେ ଛାତ୍ର ଲ' ଓ ଏମ୍.ଏ. ଏକାଠି ପଢ଼ିପାରୁଥିଲେ। ମାତ୍ର ପ୍ରିନ୍‌ସିପାଲ୍ ପରିଜା ସାହେବ ମୋ' ଆବେଦନପତ୍ର ନାମଂଜୁର କରିଦେଲେ। ସେ ମୋ' ଦରଖାସ୍ତ ଉପରେ ଲେଖିଲେ ଯେ, ମୁଁ ଜଣେ ରାଜନୈତିକ ଚରମପଂଥୀ ବ୍ୟକ୍ତି। ମୋର ରେଭେନ୍‌ସା କଲେଜରେ ସ୍ନାତକୋତ୍ତର ଶ୍ରେଣୀରେ ଭର୍ତିହେବା କଲେଜ ପକ୍ଷରେ ନିରାପଦନୁହେଁ। ମୋ ପାଖକୁ ମଧ ଏହି ମର୍ମରେ ଗାଁ ଠିକଣାରେ ଖଂଡିଏ ଚିଠି ଆସିଥିଲା। ତେଣୁ ମୋର ଆଉ ରେଭେନ୍‌ସାରେ ଏମ୍.ଏ. କିଂବା ଲ' (ଆଇନ) ପଢ଼ିବା ସଂଭବ ହେଲାନାହିଁ। ସେତେବେଳେ ରେଭେନ୍‌ସା କଲେଜ ପାଟନା ବିଶ୍ୱବିଦ୍ୟାଳୟ

ଅଧୀନରେ ଥାଏ । ଓଡ଼ିଶାରେ କେବଳ ସେହି ଗୋଟିଏ କଲେଜରେ ଡିଗ୍ରୀ କୋର୍ସ ଓ ସ୍ନାତକୋତ୍ତର କୋର୍ସ ପଢ଼ାଯାଉଥିଲା । ଅନ୍ୟ ତିନୋଟି କଲେଜ ଯଥା – ବ୍ରହ୍ମପୁର ଖଲିକୋଟ୍ କଲେଜ ଓ ପାରଳାଖେମୁଂଡି ମହାରାଜା କଲେଜ ଏବଂ ରେଭେନ୍ସା ବାଳିକା ବିଦ୍ୟାଳୟରେ ଆଇ.ଏ. କୋର୍ସ ପର୍ଯ୍ୟଂତ ପଢ଼ାଯାଉଥିଲା । ତେଣୁ ମୋର ଓଡ଼ିଶାରେ ଛାତ୍ରଜୀବନର ଶେଷହୋଇଗଲା ।

**ମୁଁ ଅଣଛାତ୍ର –**

ମୁଁ ୧୯୪୦ ମସିହାରେ ଓଡ଼ିଶାରେ ହୋଇଥିବା ଛାତ୍ର କନ୍‌ଭେନ୍‌ସନ୍ ଓ ୧୯୪୧ରେ ହୋଇଥିବା ଛାତ୍ର ସମ୍ମିଳନୀ ଉଭୟରେ ସକ୍ରିୟ ଭୂମିକା ନେଇଥିଲି । ଏହାପରେ ନବଗଠିତ ଛାତ୍ର ସଂଘରେ ଆଉ ସଦସ୍ୟ ହୋଇ ରହିଲି ନାହିଁ; ଯଦିଚ ମୁଁ ସବୁଥିରେ ନେତୃଭୂମିକା ଗ୍ରହଣ କରିଥିଲି ।

## ଊନବିଂଶ ଉଲ୍ଲାସ

## ରେଭେନ୍ସା କଲେଜ ଛାତ୍ର-ଧର୍ମଘଟ

**ମୋର କାରାବାସ –**

୧୯୪୦ ମସିହା ଜାନୁୟାରୀ ୨୬ ତାରିଖରେ ରେଭେନ୍ସା କଲେଜ ହତା ମଧ୍ୟରେ ଥିବା ଟେନିସ୍ ପଡ଼ିଆରେ ପ୍ରିନ୍ସିପାଲ୍ ପ୍ରାଣକୃଷ୍ଣ ପରିଜାଂକ ଆଦେଶକୁ ଅମାନ୍ୟ କରି ଛାତ୍ରସଂଘର 'Freedom, Peace, Progress' ଅର୍ଥାତ୍ 'ଶାଂତି-ମୁକ୍ତି-ପ୍ରଗତି'ର ପତାକା ଓ ଜାତୀୟ ତ୍ରିରଂଗା ପତାକା ଉଡ଼ିଲା । କଲେଜ ଛାତ୍ରମାନେ ଶ୍ରେଣୀ ବର୍ଜନକରି ଶ୍ରୀ ନୀଳମଣି ରାଉତରାୟ ଓ ବିବୁଧେଂଦ୍ର ମିଶ୍ରଂକ ନେତୃତ୍ୱରେ 'ଇନ୍‌କିଲାବ ଜିଂଦାବାଦ' ସ୍ଲୋଗାନ ଦେଇ ଚାଲିଆସି ସଭାରେ ଯୋଗଦାନକଲେ । ଏ ଦୁଇଜଣ ଛାତ୍ରନେତା ୪ର୍ଥ-ବାର୍ଷିକ କଳା ଶ୍ରେଣୀର ଛାତ୍ରଥିଲେ । ସେମାନେ ବି.ଏ. ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ହେଉଥିଲେ । ସଭାରେ ନୀଳମଣି ଓ ବିବୁଧେଂଦ୍ର ଦେଶର ସ୍ୱାଧୀନତା ଅର୍ଜନପାଇଁ ଛାତ୍ରମାନେ ନିଜନିଜର ଭୂମିକା ପାଳନ କରଂତୁ ବୋଲି ଓଜସ୍ୱିନୀ ଭାଷଣ ଦେଇଥିଲେ ।

ପ୍ରିନ୍ସିପାଲ ପରିଜା ସାହେବ ଶାସ୍ତିମୂଳକ ବ୍ୟବସ୍ଥାରୂପେ ନୀଳମଣି ଓ ବିବୁଧେଂଦ୍ରଂକୁ କଲେଜ ଶୃଙ୍ଖଳା ଭଂଗକରିଥିବା ହେତୁ ୨୫ ଟଂକା ଲେଖାଏଁ ଜୋରିମାନା ନଦେଲେ ସେମାନେ ବି.ଏ. ପରୀକ୍ଷା ଦେବାରୁ ବଂଚିତ ହେବେ ଏବଂ ସେମାନଂକୁ ପରମିସନ୍ କାର୍ଡ ଦିଆଯିବ ନାହିଁ କି ପରୀକ୍ଷା ହଲ୍ ମଧ୍ୟକୁ ପ୍ରବେଶ କରାଇଦିଆଯିବ ନାହିଁ ବୋଲି ନିର୍ଦ୍ଦେଶ ଦେଇଥିଲେ । ଫଳରେ କଲେଜ ଛାତ୍ରମାନଂକ ମଧ୍ୟରେ ପ୍ରବଳ ଚାଂଚଲ୍ୟ ଖେଳିଗଲା ଏବଂ ବାହାରୁ ମଧ୍ୟ ବହୁ ଛାତ୍ର ଆସି ରେଭେନ୍ସା କଲେଜରେ ରୁଂଡ ହେବାକୁ ଲାଗିଲେ । ସେହି ଦିନ ରାତିରେ ସାଧାରଣ ସଭା ହେଲା ଏବଂ ୧୮ ତାରିଖରୁ ଧର୍ମଘଟ ଆରଂଭ ହେବ ବୋଲି ନିଷ୍ପତ୍ତି ନିଆଗଲା । ମୁଁ ସେତେବେଳକୁ ଗାଁରେ ଥାଏ । ସେଠାରେ ମୁଁ ଟାଇଫଏଡ୍‌ରେ ପୀଡ଼ିତ ଥିଲି । ଚାରି-ପାଂଚଦିନ ହେଲା ଜ୍ୱର ଛାଡ଼ିଥିବାରୁ ମୁଁ ଘରେ ବିଶ୍ରାମ ନେଉଥିଲି । ହଠାତ୍ ଦିନେ ସକାଳେ ନୀଳମଣି ରାଉତରାୟ ଯାଇ ଆମ ଗାଁରେ ଆମ ଘରେ ପହଂଚିଲେ । ମୋତେ କଲେଜରେ ଛାତ୍ର-ଧର୍ମଘଟ କଥା କହିଲେ ଓ ଶୀଘ୍ର କଟକ ଯିବାପାଇଁ ଜିଦ୍‌ଧରିଲେ । ମୁଁ ତାଂକୁ ମୋର ଶାରୀରିକ ଅସୁସ୍ଥତା ଓ ଦୁର୍ବଳତା ବିଷୟ ଯେତେ କହିଲେ ମଧ୍ୟ ସେ ଶୁଣିଲେ ନାହିଁ । ସେ କହିଲେ ତମେ ନଗଲେ କିପରି ହେବ ? ଅଗତ୍ୟା ମୁଁ ଘରେ ସମସ୍ତଂକୁ

କହି କଟକ ବାହାରିଲି । ଘରେ ସମସ୍ତେ ମନାକରୁଥାଂତି; ତଥାପି ନୀଳମଣି ସଂଗେ କଟକ ଆସିବାକୁ ହେଲା ।

**ମୋର ଗିରଫ ଓ କାରାବାସ –**

ମୁଁ ଓ ନୀଳମଣି କଟକରେ ପହଂଚି ସିଧା ପୂର୍ବ-ଛାତ୍ରାବାସରେ ଥିବା ନୀଳମଣିର ରୁମ୍‌ରେ ପହଂଚିଲୁ । ସେଠାରେ ବସି ଆମେ ଛାତ୍ର-ଧର୍ମଘଟ ବିଷୟରେ ବଂଧୁମାନଂକ ସହିତ ଆଲୋଚନା କରୁଥିଲୁ । ପ୍ରାୟ ଅଧଘଂଟା ପରେ ପୁଲିସ୍ ଇନ୍‌ସ୍‌ପେକ୍ଟର ଲକ୍ଷ୍ମଣ ମିଶ୍ର କେତେ ଜଣ କନେଷ୍ଟବଳ ଧରି ସେଠାରେ ଆସି ପହଂଚିଲେ ଏବଂ ମୋତେ ଗିରଫ କରି ତଳକୁ ନେଇଗଲେ । ସେଠାରେ ଗୋଟିଏ ଘୋଡ଼ାଗାଡ଼ିରେ ସେମାନେ ଆଗରୁ କଲେଜ ଫାଟକ ନିକଟରୁ ଅଶୋକ ଦାସଂକୁ ଗିରଫ କରି ବସାଇଥାଂତି । ମୋତେ ସେହି ଗାଡ଼ିରେ ଚଢ଼ିବାକୁ କହିଲେ । ଆମ ଚାରିଆଡ଼େ ଛାତ୍ରସମୁଦ୍ର; ସେମାନେ ଆମର ଜିଂଦାବାଦ୍ କରୁଥାଂତି । ମୁଁ ଓ ଅଶୋକ ଦାସ ମୁହଁ ବଢ଼ାଇ ଉପସ୍ଥିତ ଛାତ୍ରଜନତାକୁ ଏ ଧର୍ମଘଟ ସଫଳ କରିବାପାଇଁ ଜ୍ୱାଳାମୟୀ ଭାଷଣ ଦେଇଥିଲୁ । ଆମେ ପ୍ରାୟ ୧୦ ମିନିଟ୍ ପର୍ଯ୍ୟଂତ ଭାଷଣ ଦେଇଛୁ– ଏହାପରେ ଆମକୁ ଘୋଡ଼ାଗାଡ଼ିରେ ନେଇ କଟକ ଜେଲ୍‌ରେ ଭର୍ତ୍ତିକରାଗଲା । ଆମେ ଗିରଫ ହେବାପରେ ଛାତ୍ରମାନଂକ ମଧ୍ୟରେ ପ୍ରବଳ ଉତ୍ତେଜନା ଖେଳିଯାଇଥିଲା । ଜେଲ୍ ଭିତରେ ଆମେ ବାହାରଜଗତରୁ ଏକପ୍ରକାର ବିଚ୍ଛିନ୍ନ ହୋଇଗଲୁ । ପରେ ପରେ ଅନ୍ୟ ସାଂଗସାଥୀମାନେ ଆସି ଆମ ସହିତ ଯୋଗଦେଲେ । ବୈଦ୍ୟନାଥ ରଥ ଓ ବିବୁଧେଂଦ୍ର ମିଶ୍ର ଆତ୍ମଗୋପନ କରି ରହିଥିଲେ । ସେମାନେ ପରୀକ୍ଷା ବର୍ଜନ ପାଇଁ ଛାତ୍ରମାନଂକ ମଧ୍ୟରେ ପ୍ରଚାର ଚଳାଇଥିଲେ । ସେମାନେ ମଧ୍ୟ ଗିରଫହେଲେ ଏବଂ କଟକ ଜେଲ୍‌ରେ ଆମ ସହିତ ଯୋଗଦେଲେ । ଏହାପରେ ସୁରଯମଲ ଶାହା, ରାମକୃଷ୍ଣ ପତି, ବିଜୟଚଂଦ୍ର ଦାସ, ଦୁର୍ଗାଚରଣ ମହାଂତି, ନୀଳମଣି ରାଉତରାୟ ଓ ବନମାଳୀ ପଟ୍ଟନାୟକ ପ୍ରଭୃତି ଛାତ୍ରନେତାମାନେ ଗିରଫହେଲେ ।

କଲେଜ ଗେଟ୍ ସାମନାରେ ପିକେଟିଂ ଓ ସ୍ଲୋଗାନ ଚାଲିଲା । ପିକେଟିଂରେ ବଳରାମ ମହାଂତି ଓ ମନମୋହନ ମିଶ୍ର ଗିରଫ ହୋଇଗଲେ । ଏହାପରେ ପୁଲିସ୍ ଆଇ.ଜି. ହୟଗ୍ରୀଭ ସାହେବଂକ ହୁକୁମ ଅନୁସାରେ ଲାଠିଚାଲିଲା । ବହୁ ଛାତ୍ର ଆହତହେଲେ । ବହୁ ଛାତ୍ର ହଷ୍ଟେଲ ଛାଡ଼ି ଘରକୁ ଚାଲିଗଲେ । ସମଗ୍ର କଲେଜ ଶ୍ମଶାନ ପରି ଦେଖାଯାଉଥାଏ । ତଥାପି ପରୀକ୍ଷା ବର୍ଜନ ହେଲା । ନୀଳମଣି ରାଉତରାୟ ଓ ବିବୁଧେଂଦ୍ର ମିଶ୍ରଂକୁ କଲେଜରୁ ବହିଷ୍କାର କରିଦିଆଗଲା ।

ଏହାପରେ ରାମଚଂଦ୍ର ରାମ ଏବଂ ଫକିର ମିଶ୍ର ଶୋଭାଯାତ୍ରା ଚଳାଇ ପରୀକ୍ଷା ବର୍ଜନ ପାଇଁ ପ୍ରଚାର ଚଳାଇଥିଲେ । ମୁଁ ପ୍ରାୟ ଏକମାସ ପର୍ଯ୍ୟଂତ ଜେଲ୍‌ରେ ରହିଲି; ଅନ୍ୟମାନେ ମଧ୍ୟ ଊଣା-ଅଧିକେ ସେତିକି ଦିନ ଜେଲ୍‌ରେ ରହିଲେ ।

ଜେଲ୍‌ରେ ଆମେ ଥରେ ଅନଶନ କରିଥିଲୁ । ପ୍ରତି ସଂଧ୍ୟାରେ ଆମେ ଇଂରାଜୀରେ ଡିବେଟିଂ କରୁଥାଉଁ । ସେଥିରେ ମୁଁ ଓ ବିବୁଧେନ୍ଦ୍ର ମିଶ୍ର ବିଶେଷ ଭାଗ ନେଉଥାଉଁ । ସମଗ୍ର ରେଭେନ୍‌ସା କଲେଜ ଏକ ପୁଲିସ ଛାଉଣୀରେ ପରିଣତ ହୋଇଥାଏ । ପୁଲିସମାନେ ବୋର୍ଡିଂରୁ ଛାତ୍ରମାନଂକୁ ବଳପ୍ରୟୋଗକରି ବାହାରକରିଦେଲେ । ଏହାପରେ କଲେଜ ଗେଟ୍ ନିକଟରେ ପିକେଟିଂ କରୁଥିବା ଛାତ୍ରବାହିନୀ ଉପରେ ପୁଲିସ ଲାଠି ଚାର୍ଜ କରିଥିଲେ ଏବଂ କେତେକ ଆହତ ଛାତ୍ରକୁ ନେଇ ରାଣୀହାଟ ପୋଲତଳେ ପକାଇଦେଇଥିଲେ । କଲେଜରୁ ଏବଂ ଛାତ୍ରାବାସରୁ ବିଜୁଳି ଓ ଜଳଯୋଗାଣ ସଂଯୋଗ କାଟିଦେଇଥିଲେ । ପରିଜା ସାହେବ ଭୟରେ ସରକାରୀ କ୍ୱାଟର ଛାଡ଼ି ନିଜ ଘରକୁ ଚାଲିଯାଇଥିଲେ ।

**କଂଗ୍ରେସ ମଂତ୍ରିମଂଡଳର ଇସ୍ତଫା : ବିଶ୍ୱ ମହାଯୁଦ୍ଧ ଆରମ୍ଭ –**

ଏଥିପୂର୍ବରୁ ୧୯୩୯ ମସିହା ସେପ୍‌ଟେମ୍ବର ମାସରେ ହିଟଲରଂକ ନିର୍ଦ୍ଦେଶରେ ଜର୍ମାନୀ ପୋଲାଂଡ ଉପରେ ବର୍ବରୋଚିତ ଆକ୍ରମଣ କଲା । ଏହାପରେ ଫ୍ରାନ୍‌ସ, ହଲାଣ୍ଡ, ବେଲ୍‌ଜିୟମ୍, ଚେକୋସ୍ଲୋଭାକିଆ ପ୍ରଭୃତି ଗୋଟିକ ପରେ ଗୋଟିଏ ୟୁରୋପୀୟ ଦେଶ ହିଟଲରଂକ କର-କବଳିତ ହେଲେ । ନାଜି ସୈନ୍ୟ ଅପରାଜେୟ ବୋଲି ସମସ୍ତଂକ ମନରେ ଧାରଣା ହୋଇଥିଲା । ମୁସୋଲିନି ଆଫ୍ରିକୀୟ ଦେଶମାନଂକୁ ଅଧିକାରକରିବସିଲେ ଓ ଟୁଜୋଂକ ଜାପାନ ଏସୀୟ ମହାଦେଶକୁ ଆକ୍ରମଣକଲେ । ହିଟ୍‌ଲର, ମୁସୋଲିନି ଓ ଟୁଜୋ ଏ ତିନି ଶକ୍ତି ମେଂଟ (Axis) ପୃଥିବୀର ଅଧିକାଂଶ ଦେଶକୁ ଗ୍ରାସ କରିବାକୁ ଲାଗିଲା ।

**ଗାଂଧିଜୀଂକ ଆଦିଷ୍ଟ ବ୍ୟକ୍ତିଗତ ସତ୍ୟାଗ୍ରହ –**

ଭାରତରେ ଗାଂଧିଜୀ ବ୍ୟକ୍ତିଗତ ସତ୍ୟାଗ୍ରହ ଚାଲୁକରିବାକୁ ସ୍ଥିରକଲେ । ତାଂକ ଅନୁମତି ପାଇଥିବା କଂଗ୍ରେସ ଲୋକେହିଁ ବ୍ୟକ୍ତିଗତ ସତ୍ୟାଗ୍ରହ କରିପାରିବେ ବୋଲି ସ୍ଥିରହେଲା । ଗାଂଧିଜୀ ପ୍ରଥମେ ବିନୋବାଜୀଂକୁ ବ୍ୟକ୍ତିଗତ ସତ୍ୟାଗ୍ରହ କରିବାପାଇଁ ବାଛିଥିଲେ । କେବଳ ମହାଯୁଦ୍ଧ ବିରୁଦ୍ଧରେ ପଦେକଥା କହି ସତ୍ୟାଗ୍ରହୀମାନେ କାରାବରଣ କରୁଥିଲେ । ତାହା ହେଉଛି– "ଆପଣମାନେ ଧନ, ଜନ କିଂବା ଉଭୟଦ୍ୱାରା ଏ ଯୁଦ୍ଧକୁ ସାହାଯ୍ୟ କରନ୍ତୁନାହିଁ ।" ଏହାକୁ 'ପ୍ରତୀକାତ୍ମକ ସତ୍ୟାଗ୍ରହ' କୁହାଯାଉଥିଲା ।

ଓଡ଼ିଶାରେ କଂଗ୍ରେସ ମଂତ୍ରିମଂଡଳ ଇସ୍ତଫା ଦେଲା ପରେ କେତେକ ବିଧାନସଭା ସଭ୍ୟ କଂଗ୍ରେସ ଛାଡ଼ି ଚାଲିଗଲେ । ପାରଳାଖେମୁଂଡି ମହାରାଜା ମୁଖ୍ୟମଂତ୍ରୀ ଥାଇ ଏକ ମିଳିତ ମଂତ୍ରିମଂଡଳ ଗଠନ କଲେ । ମହାରାଜା ମୁଖ୍ୟମଂତ୍ରୀ ହେଲେ । ପଂଡିତ ଗୋଦଦାବରୀଶ ମିଶ୍ର ଓ ଅବ୍‌ଦୁଲ୍ ସୋଭାନ୍ ଖାଁ ମଂତ୍ରିମଂଡଳର ଅନ୍ୟତମ ସଦସ୍ୟ ହେଲେ । ଏହି ପାରଳାଖେମୁଂଡି ମଂତ୍ରିମଂଡଳ ଅମଳରେ ମଂତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ରଂକ ଉଦ୍ୟମରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା ।

ମିଳିତ ମଂତ୍ରିମଂଡଳ ଜନପ୍ରିୟ ନଥିଲା। ଏହା ବ୍ରିଟିଶ ସରକାରଂକୁ ସାହାଯ୍ୟ କରିବାପାଇଁ ଗଢ଼ାଯାଇଥିଲା ବୋଲି ଲୋକମାନଂକର ଧାରଣା ଥିଲା। ପଂଡିତ ନୀଳକଂଠ ଦାସଂକ ଅଧ୍ୟକ୍ଷତାରେ ଜାତୀୟ ଯୁଦ୍ଧ ସାମ୍ମୁଖ୍ୟ ଗଠିତ ହେଲା– ଏହାର ସର୍ବଭାରତୀୟ ମୁଖ୍ୟ ହେଲେ ବିପ୍ଳବୀ ଏମ୍.ଏନ୍. ରାୟ। ସେମାନଂକର ଉଦ୍ଦେଶ୍ୟ ଥିଲା ବ୍ରିଟିଶ୍ ସରକାରଂକୁ ଯୁଦ୍ଧରେ ସାହାଯ୍ୟ କରିବା। ମାତ୍ର କଟକରେ ସେମାନେ କୌଣସି ସଭାସମିତି କରିପାରିନଥିଲେ। ଜାତୀୟ ଯୁଦ୍ଧ ସାମ୍ମୁଖ୍ୟ ଆହ୍ୱାନରେ ଟାଉନ୍‌ହଲ୍‌ରେ ଅନୁଷ୍ଠିତ ହେବାକୁ ଥିବା ସଭା ଆରଂଭ ହେବା ପୂର୍ବରୁ ଛାତ୍ରସଂଘର କର୍ମୀମାନେ ଓ ଅନ୍ୟାନ୍ୟ କଂଗ୍ରେସ ଲୋକମାନେ ତାହା ଦଖଲକରିବସିଥିଲେ। ତେଣୁ ପାଟିତୁଂଡ ଓ ଚୌକି ଫୋପଡ଼ା-ଫୋପଡ଼ି ମଧ୍ୟରେ ସଭା ଭାଂଗିଯାଇଥିଲା। ଏମ୍.ଏନ୍. ରାୟ ମଧ୍ୟ କଟକ ଆସି ସଭା କରିବାପାଇଁ ଥରେ ଚେଷ୍ଟାକରିଥିଲେ। ମାତ୍ର ଟାଉନ୍ ହଲ୍‌ରେ ସେ ସଭା କଲାବେଳେ ମୁଁ ଏବଂ ଆଉ କେତେକ ଛାତ୍ର ସଂଘର ନେତା ତାଂକୁ କୁହାଇଦେଇନଥିଲୁ। ସେ ହାତ ଉଂଚାଇ ମୋତେ ମାରିବାପାଇଁ ମଂଚଉପରୁ ଡେଇଁପଡ଼ିଲେ– ମାତ୍ର ଲୋକମାନେ ଧରାଧରି କରି ତାଂକୁ ନିବୃତ୍ତ କଲେ।

**କମ୍ୟୁନିଷ୍ଟ ଷଡ଼ଯଂତ୍ର ମାମଲା –**

କଟକରେ ୧୨.୭.୪୦ ତାରିଖରେ କମ୍ୟୁନିଷ୍ଟ ଷଡ଼ଯଂତ୍ର ମାମଲା ଆରଂଭ ହୋଇଥିଲା। କଟକ ଟାଉନ୍ ଇନିସ୍‌ପେକ୍ଟର ଗଂଗାଧର ଦ୍ୱିବେଦୀଂକ ଏତଲା ଅନୁଯାୟୀ ଓଡ଼ିଶାରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଏକ ଶାଖା ଖୋଲିବାପାଇଁ ଷଡ଼ଯଂତ୍ର କରୁଥିବା ଅଭିଯୋଗରେ ଭଗବତୀ ପାଣିଗ୍ରାହୀ, ବୈଦ୍ୟନାଥ ରଥ, ଅନଂତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ବନମାଳୀ ଦାସ ଓ ଦୁର୍ଗାଚରଣ ମହାଂତି ପ୍ରଭୃତିଂକୁ ଗିରଫ କରାଯାଇଥିଲା ଓ ମୋକଦ୍ଦମା ରୁଜୁ ହୋଇଥିଲା।

ଭାରତ ସରକାରଂକ ବିଂଶପ୍ତି ନଂ. ଏଫ୍. ୭.୮.୩୪, ତା ୨୩.୭.୩୪ ଯେଉଁଥିରେ କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ୍ ଘୋଷଣାକରାଯାଇଥିଲା, ତାହା ଭଂଗକରି ଏମାନେ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ଶାଖା ଗଢ଼ିବାକୁ ଉଦ୍ୟମ କରୁଛଂତି ବୋଲି ଅଭିଯୋଗ ହୋଇଥିଲା। ବିଭିନ୍ନ ସ୍ଥାନ ଖାନ୍‌ତଲାସ କରି ବହୁ କାଗଜପତ୍ର ଓ ଲିଫ୍-ଲେଟ୍, ବହି ଓ ପତ୍ରିକା ଇତ୍ୟାଦି ପୁଲିସ ହସ୍ତଗତ କରିଥିଲେ। ଏହିସବୁ ଗୁପ୍ତଦଲିଲ-ମାନଂକରେ ଭାରତ ସରକାରଂକ ଯୁଦ୍ଧ ଉଦ୍ୟମରେ ବାଧା ଦିଆଯାଇଛି ବୋଲି ଅଭିଯୋଗ କରାଯାଇଥିଲା। ଏଣୁ ଏମାନ୍‌ଂକୁ ଭାରତୀୟ ପିଂଗଲ କୋର୍ଡ଼ର ଫୌଜ-ଦାରୀ ଷଡ଼ଯଂତ୍ର ଭାରତରକ୍ଷା ଆଇନ୍ ଓ କ୍ରିମିନାଲ୍ ଲ' ଆମେଂଡମେଂଟ୍ ଆକ୍ଟ ଅନୁସାରେ ବିଚାର କରାଯାଇଥିଲା। ମୋକଦ୍ଦମାର ବିଚାରପତି ଥିଲେ ପୋଖଉ୍ ଆଇ.ସି.ଏସ୍. ଅଫିସର ହରବଂଶ ଲାଲ୍। ବିଚାର ହେଲା କଟକ ଜେଲ୍ ଭିତରେ ଏକ ସ୍ୱତଂତ୍ର କୋଠରିରେ। ପ୍ରସିକ୍ୟୁଟର୍ ଥିଲେ କଟକର ସରକାରୀ ଓକିଲ ବାଂଛାନିଧି

ମହାପାତ୍ର। ରଣପୁର ବେଙ୍କେଲଗେଟ୍ ମୋକଦ୍ଦମାର ତଦଂତକାରୀ ରାଏସାହେବ ମନବୋଧ ପଂଡା ମୁଦାଲାମାନଂକ ବିପକ୍ଷରେ ମୋକଦ୍ଦମା ଲଢ଼ିଥିଲେ। କଲିକତାର ବାରିଷ୍ଟର ମିଃ ମୁଖାର୍ଜୀ, କଟକର ଓକିଲ ରାଜକିଶୋର ଦାସ (ପରେ ଜଷ୍ଟିସ) ଓ ଦୀନବଂଧୁ ସାହୁ (ପରେ ମଂତ୍ରୀ) ମୁଦାଲାମାଂନକ ସପକ୍ଷରେ ଲଢ଼ିଥିଲେ।

ଏହି ମୋକଦ୍ଦମାର ମୁଦାଲାମାନେ କଟକ ଯୋବ୍ରାକୁଲରେ ଥିବା ଶ୍ରୀ ପୂର୍ଣଚଂଦ୍ର ମହାଂତିଂକ ଘରେ ଏକ ଗୁପ୍ତ ବୈଠକରେ ମିଳିତହୋଇ ଆଲୋଚନା କରୁଥିବାବେଳେ ପୁଲିସ୍ ଘର ଉପରେ ଚଢ଼ାଉକରି ସେମାନଂକୁ ଗିରଫ କରିଥିଲେ। ମୁଁ ମଧ୍ୟ ଉକ୍ତ ବୈଠକରେ ଯୋଗଦେବା ପାଇଁ ଯାଇଥିଲି। ମାତ୍ର ମୁଁ ଅଳ୍ପ କେତେ ମିନିଟ୍ ଡେରିରେ ପହଂଚିଲି। ସେତେବେଳକୁ ପୁଲିସ୍ ଘର ଘେରାଉ କରି ରହିଥାଂତି। ବାରଂଡାରେ ସି.ଆଇ.ଡି. ସବ୍‌ଇନ୍‌ସ୍‌ପେକ୍ଟର ନଂଦ ବାନାର୍ଜି ଛିଡ଼ାହୋଇଥିଲେ; ମୁଁ ଘର ଫାଟକ ନିକଟରେ ପହଂଚିବା ଦେଖି ମୁରୁକି ମୁରୁକି ହସୁଥିଲେ।

ମୁଁ ଫାଟକ ବାହାରେ ଛିଡ଼ା ହୋଇ ରହିଲି। ପରେ ଫାଟକ ଡେଇଁ ଭିତରକୁ ଗଲି। କିଛିକ୍ଷଣ ପରେ ପୁଲିସ୍ ଇନ୍‌ସ୍‌ପେକ୍ଟର, ସବ୍‌ଇନ୍‌ସ୍‌ପେକ୍ଟର ଓ କେତେକ କନେଷ୍ଟବଲ ଘର ଭିତରୁ ବାହାରିଆସିଲେ। ସେମାନଂକ ପଛରେ ଧରାହୋଇ ଆସିଲେ ଭଗବତୀଚରଣ ପାଣିଗ୍ରାହୀ, ବୈଦ୍ୟନାଥ ରଥ, ଅନଂତ ପଟ୍ଟନାୟକ, ବନମାଳୀ ଦାସ, ଦୁର୍ଗାଚରଣ ମହାଂତି ପ୍ରଭୃତି ସାଥୀମାନେ। ମୋ ଆଗରେ ସମସ୍ତ ବିଷୟଟି ପରିଷ୍କାରହୋଇଗଲା। ମୁଁ ସେଠାରୁ ସାଇକେଲ୍ ଫେରାଇ ଚାଲିଆସିଲି। ମୁଁ ଅଳ୍ପକେ ଗିରଫ୍ ହେବାରୁ ରକ୍ଷାପାଇଗଲି।

ସେତେବେଳେ କଂଗ୍ରେସ ସଭାପତି ପଂଡିତ ଜବାହରଲାଲ ନେହେରୁଂକୁ ମୁଁ ସମସ୍ତ ବିଷୟ ଲେଖି ଜଣାଇଥିଲି। ସେ ମୋତେ ଖଂଡିଏ ଚିଠି ଲେଖି ମୋକଦ୍ଦମା ଲଢ଼ିବା ପାଇଁ ଏବଂ ଡିଫେନ୍ସ ବଂଦୋବସ୍ତ କରିବାପାଇଁ ପରାମର୍ଶ ଦେଇ ପତ୍ର ଲେଖିଥିଲେ। ସେ ପତ୍ରଟି କଲିକତାର ଦୈନିକ ଇଂରାଜୀ ପତ୍ରିକା ହିଂଦୁସ୍ଥାନ ଷ୍ଟାଂଡାର୍ଡରେ ପ୍ରକାଶପାଇଥିଲା। ତଦନୁଯାୟୀ କଟକରେ ବିଶିଷ୍ଟ ଓକିଲ ଓ ନାଗରିକମାନଂକୁ ନେଇ ଡିଫେନ୍ସ କମିଟି ଗଢ଼ାଯାଇଥିଲା। ମୋକଦ୍ଦମା ଲଢ଼ିବାପାଇଁ କିଛି ଟଂକାପଇସା ମଧ୍ୟ ସଂଗ୍ରହ କରାଯାଇଥିଲା। ଆମେ କଲିକତାର ବିଖ୍ୟାତ ବାରିଷ୍ଟର ମିଷ୍ଟର ମୁଖାର୍ଜୀଂକୁ ମୋକଦ୍ଦମା ଲଢ଼ିବାପାଇଁ ଅଣାଇଥିଲୁ। ମାତ୍ର, ବିଚାରରେ ଅଭିଯୁକ୍ତମାନଙ୍କୁ କଡ଼ା ସଜା ହେଲା। ଭଗବତୀ, ଗୁରୁଚରଣ ଓ ବୈଦ୍ୟନାଥଂକୁ ୧୮ ମାସ କରି ଜେଲ୍‌ଦଣ୍ଡ ଓ ଏକଶତ ଟଂକା ଜୋରିମାନାରେ ଦଂଡିତ କରାଗଲା। ଏମାନଂକୁ ମଧ୍ୟ କ୍ରିମିନାଲ୍ ଲ' ଆମେଂଡମେଂଟ୍ ଆକ୍ଟର ୧୭(୧) ଦଫା ଅନୁଯାୟୀ ଚାରିମାସ ସଶ୍ରମ କାରାଦଂଡ ହୁକୁମ୍ ହେଲା। ଏହାଛଡ଼ା ଅନ୍ୟମାନଂକୁ ଟିକିଏ ଲଘୁତର ସଜା ମିଳିଥିଲା। ଦୁର୍ଗାଚରଣ ମହାଂତିଂକୁ ନିର୍ଦୋଷରେ ଖଲାସକରିଦିଆଯାଇଥିଲା।

୩।୧୨।୧୯୪୨ ତାରିଖରେ ହରବଂଶ ଲାଲ୍ ଆଇ.ସି.ଏସ୍. ମ୍ୟାଜିଷ୍ଟ୍ରେଟଂକ ରାୟ ପୂରାପୂରି କାଏମ୍ ରଖି ଅପିଲ୍ ଖାରଜକଲେ। ବନ୍ଦୀମାନଂକୁ ଅନୁଗୁଳ ଜେଲ୍‌କୁ ନିଆଯାଇଥିଲା।

**ଛାତ୍ରସଂଘରେ ବିଭେଦ –**

ଏହି ସମୟରେ ସର୍ବଭାରତୀୟ ସ୍ତରରେ ଛାତ୍ରସଂଘରେ ପ୍ରବଳ ବିଭେଦ ଦେଖାଗଲା। ୧୯୪୦ ମସିହାରେ ନାଗପୁରରେ ନିଖିଳ ଭାରତ ଛାତ୍ରସଂଘର ସମ୍ମିଳନୀ ପ୍ରଫେସର ହୀରେନ୍ ମୁଖାର୍ଜୀଂକ ଅଧ୍ୟକ୍ଷତାରେ ବସିଥିଲା। ଏହି ସମ୍ମିଳନୀରେ ଛାତ୍ରସଂଘ ନେତୃତ୍ୱ ମଧ୍ୟରେ କଂଦଳ ଲାଗିଲା। ଏମ୍.ଏଲ୍. ସାହା କମ୍ୟୁନିଷ୍ଟ ଅଣକମ୍ୟୁନିଷ୍ଟ ଭେଦଭାବ ସୃଷ୍ଟିକଲେ। ସେତେବେଳକୁ ଭାରତୀୟ କମ୍ୟୁ-ନିଷ୍ଟପାର୍ଟି ଏକ ବେଆଇନ୍ ଅନୁଷ୍ଠାନରୂପେ କାର୍ଯ୍ୟ କରୁଥାଏ। ଏମ୍.ଏଲ୍. ସାହା ଏବଂ ତାଂକର ସହକର୍ମୀମାନେ ଛାତ୍ରସଂଘରୁ କମ୍ୟୁନିଷ୍ଟ ମତବାଦୀମାନଂକୁ ତଡ଼ିବା ପାଇଁ ଘୋର ଉଦ୍ୟମ କଲେ। ସେହି ସମୟରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଛାତ୍ର ଫରୁକି ଭାଇସ୍ ଚାନ୍‌ସେଲର୍ ସାର୍ ମରିଶ୍ ରାୟଂକ ବିରୁଦ୍ଧରେ ଆଂଦୋଳନ କରି ବହିଷ୍କୃତ ହୋଇଥାଂତି। ଫରୁକି କମ୍ୟୁନିଷ୍ଟ ମତବାଦୀ ଥିଲେ। ମାତ୍ର ସଂଖ୍ୟାଧିକ ଭୋଟରେ ଫରୁକି ନିଖିଳ ଭାରତ ଛାତ୍ରସଂଘର ସାଧାରଣ ସଂପାଦକ ରୂପେ ନିର୍ବାଚିତ ହୁଅଂତି।

ଏହାର ପ୍ରତିକ୍ରିୟା ଓଡ଼ିଶା ଛାତ୍ର ଆଂଦୋଳନକୁ ଯଥେଷ୍ଟ ପ୍ରଭାବିତ କଲା। ଓଡ଼ିଶା ଛାତ୍ରସଂଘରୁ କମ୍ୟୁନିଷ୍ଟ ମତବାଦୀ ଛାତ୍ରମାନଂକୁ ବାହାର କରିବାପାଇଁ କିଂବା ତାହା ହୋଇନ ପାରିଲେ ସଂଘକୁ ବିଭାଜିତ କରିବା ପାଇଁ ଦଳେ ଛାତ୍ର ପ୍ରବଳ ଚେଷ୍ଟା କରିଥିଲେ। ସେତେବେଳକୁ ବିଶ୍ୱନାଥ ପଣ୍ଡାଏତ ଓ ଗଂଗାଧର ମହାପାତ୍ର ଓକିଲାତି ଆରଂଭ କରିଥାଂତି; ଏଣୁ ସାଂଗଠନିକ ଭାବରେ ଛାତ୍ରସଂଘର ସାଧାରଣ ସଂପାଦକ କେହି ନଥାଂତି। ନୀଳମଣି ରାଉତରାୟ ରେଭେନ୍ସା କଲେଜରୁ ବହିଷ୍କୃତ ହୋଇ ବନାରସ ବିଶ୍ୱବିଦ୍ୟାଳୟରେ ପଢ଼ିବାକୁ ଗଲେ। ଯୁଗ୍ମ-ସଂପାଦକ ପଦ ମଧ୍ୟ ଖାଲିପଡ଼ିଥିଲା; ତେଣୁ ସଂପାଦକ କେହି ନଥିଲେ। ସୁରଯମଲ୍ ଶାହା ସେତେବେଳେ ଓଡ଼ିଶା ଛାତ୍ରସଂଘରେ କୋଷାଧ୍ୟକ୍ଷ ଥିଲେ। ସେତେବେଳେ ଓଡ଼ିଶା ଛାତ୍ରସଂଘର ଅଫିସ୍ ହେଉଥିଲା ନୟାସଡ଼କର ସତ୍ୟନାରାୟଣ ଲାଇବ୍ରେରୀରେ। ଏହି ସତ୍ୟନାରାୟଣ ଲାଇବ୍ରେରୀରେ ଶ୍ରୀ ଶାହା ଛାତ୍ରସଂଘର କାର୍ଯକାରୀ କମିଟି ବୈଠକ ଡାକିଲେ। ତାଂକର ଉଦ୍ଦେଶ୍ୟ ଥିଲା ଓଡ଼ିଶା ଛାତ୍ରସଂଘରୁ କମ୍ୟୁନିଷ୍ଟ ମତବାଦୀ ଛାତ୍ରମାନଂକୁ ବହିଷ୍କାର କରିବା।

'ସଚ୍ଚି ରାଉତରାୟ ଏ ସଭାରେ ସଭାପତିତ୍ୱ କରିଥିଲେ। ସେ (ସଚ୍ଚି ରାଉତରାୟ) ଏହାର ବିରୋଧକଲେ ଓ ଛାତ୍ରସଂଗଠନର ଏକତା ଉପରେ ଆଂଚ୍ ନ ଆଣିବାକୁ ବାରଂବାର ଅନୁରୋଧକରି ଏ ପ୍ରସ୍ତାବ ପ୍ରତ୍ୟାହାର କରିବାକୁ ଅନୁରୋଧକଲେ।

ସେ ଯାହାହେଉ, ସୁରଯମଲ୍ ଶାହାଂକ ନେତୃତ୍ୱରେ କାର୍ଯକାରୀ କମିଟିରୁ ରାମହରି ମିଶ୍ର, ଫକିର ଦାସ ଓ ଅନ୍ୟ କେତେକ ଛାତ୍ରନେତା ବାହାରି ଆସିଲେ। ମାତ୍ର କାର୍ଯକାରୀ କମିଟି ବୈଠକରେ ଯୋଗଦେଇଥାଂତି ବୀରେନ୍ ମିତ୍ର, ରାମଚଂଦ୍ର ମିଶ୍ର, ଦୁର୍ଗାଚରଣ ମହାଂତି, ନରସିଂହ ତ୍ରିପାଠୀ, ଜଗତକୃଷ୍ଣ ଦାସ, ଗଂଗାଧର ରଥ। ମୁଁ ସେ ବୈଠକରେ ଅଧକ୍ଷତା କରୁଥାଏ। ସୁରଯମଲ୍ ଶାହାଂକ ପ୍ରଭାବରେ ଆମକୁ ସତ୍ୟନାରାୟଣ ଲାଇବ୍ରେରୀରେ ଆଉ ବୈଠକ ଚାଲୁରଖିବାକୁ ଅନୁମତି ଦିଆଗଲାନାହିଁ, ଆମେ ଆସି ଗୌରୀଶଂକର ପାର୍କରେ ବୈଠକ କଲୁ।

ଏ ସଂବାଦପତ୍ରରେ ଚାଲିଲା ବାଦାନୁବାଦ– ବିବୃତି ଓ ତା'ର ପ୍ରତିବାଦ– ଛାତ୍ରସଂଘ କଟକ, ସଂପାଦକ କିଏ? ଇତ୍ୟାଦି... ଇତ୍ୟାଦି...। ଆମେ ଏ ସମସ୍ତର ଚୂଡ଼ାଂତ ନିଷ୍ପତ୍ତି ନେଲୁ– ଏସବୁ ବିତର୍କର ସମାଧାନ ହେବ ଏକ ରାଜ୍ୟସ୍ତରୀୟ ସମ୍ମିଳନୀ କରିବା ପରେ। ତା' ପୂର୍ବରୁ ଏକ କନ୍‌ଭେନ୍‌ସନ୍ ଡକାଇବାର ପ୍ରସ୍ତାବ ହେଲା। କନ୍‌ଭେନ୍‌ସନ୍‌ରେ ସଭାପତିତ୍ୱ କରିଥିଲେ ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ହୁମାୟୁନ୍ କବୀର୍। ରାମଚଂଦ୍ରଭବନରେ ମହାସମାରୋହରେ କନ୍‌ଭେନ୍-ସନ୍ ଅନୁଷ୍ଠିତହେଲା। କନ୍‌ଭେନ୍‌ସନ୍‌ରେ ଶ୍ରୀ ବୀରେନ୍ ମିତ୍ର ଆକ୍ଟିଂ ଜେନେରାଲ୍ ସେକ୍ରେଟାରୀ ହେଲେ ଓ ୧୯୪୧ରେ ପ୍ରାଦେଶିକ ସମ୍ମିଳନୀ ଆହ୍ୱାନ କରିବାକୁ ପ୍ରସ୍ତାବ ଗୃହୀତହେଲା।

୧୯୪୧ ମସିହାରେ ପ୍ରାଦେଶିକ ସମ୍ମିଳନୀ ଏବଂ ଜିଲ୍ଲା ସମ୍ମିଳନୀମାନ ଅନୁଷ୍ଠିତ ହେଲା। ସେହି ବର୍ଷ କଟକ ଟାଉନ୍ ହଲ୍ ନିକଟସ୍ଥ ପଡ଼ିଆରେ ସ୍ୱତଂତ୍ର ନିର୍ମିତ ମଂଚରେ ପ୍ରାଦେଶିକ ସମ୍ମିଳନୀ ଆରଂଭହେଲା। 'ଆନଂଦବଜାର' ପତ୍ରିକାର ସୁପ୍ରତିଷ୍ଠିତ ସଂପାଦକ ଓ ଭାରତବିଖ୍ୟାତ ସାଂବାଦିକ ସତ୍ୟେନ୍ ମଜୁମ୍‌ଦାର ଏଥିରେ ଅଧକ୍ଷତା କରିଥିଲେ। ଏହା ଏକ ଭଲ ପ୍ରତିନିଧିମୂଳକ ସମ୍ମିଳନୀ ହୋଇଥିଲା। ନାଗପୁର ସମ୍ମିଳନୀରେ ଓ ଓଡ଼ିଶାରେ ଯେଉଁମାନେ ଛାତ୍ରସଂଘକୁ ବିଭେଦଗ୍ରସ୍ତ କଲେ, ସେମାନଂକୁ ନିଂଦାବାଦ୍ କରାଗଲା ଓ ଛାତ୍ରସଂଘର ସୁନାମ ଅକ୍ଷୁଣ୍ଣ ରଖି ଛାତ୍ର-ଏକତାକୁ ବଜାୟ ରଖାଯିବା ପାଇଁ ପ୍ରସ୍ତାବ ଗ୍ରହଣକରାଗଲା। 'ସମାଜ'ର ସୁପ୍ରସିଦ୍ଧ ସାଂବାଦିକ ରାଧାନାଥ ରଥ ଏ ସମ୍ମିଳନୀରେ ଉଦ୍‌ବୋଧନ ଦେଇଥିଲେ।

ଏହାପରେ ଓଡ଼ିଶା ଛାତ୍ରସଂଘ ଫରୁକିଂକଦ୍ୱାରା ପରିଚାଳିତ ନିଖିଳ ଭାରତ ଛାତ୍ରସଂଘ ସହ ସଂପୃକ୍ତହେଲା। ଏମ୍.ଏଲ୍. ଶାହାଂକ ଗୋଷ୍ଠୀ ଦ୍ୱାରା ପରିଚାଳିତ ଛାତ୍ରସଂଘର ସତ୍ତା ସର୍ବଭାରତୀୟ କ୍ଷେତ୍ରରେ କିଂବା ଓଡ଼ିଶାକ୍ଷେତ୍ରରେ ରହିଲାନାହିଁ।

ମୁଁ ସେତେବେଳକୁ ଆଉ ଛାତ୍ର ନଥିଲି। ତେଣୁ ଏହି ଓଡ଼ିଶା ଛାତ୍ର କନ୍‌ଭେନ୍‌ସନ୍ ଓ ଛାତ୍ର ସମ୍ମିଳନୀରେ ମୁଁ ସବୁପ୍ରକାର ସାହାଯ୍ୟ କରିଥିଲେ ମଧ୍ୟ କୌଣସି ପଦାଧିକାରୀ ହୋଇନଥିଲି। ମୁଁ ଇ ସମ୍ମିଳନୀର ପ୍ରଧାନ ଉଦ୍ୟୋକ୍ତା ଥିଲେ ମଧ୍ୟ ନବଗଠିତ ଛାତ୍ରସଂଘରେ ମୁଁ ସଦସ୍ୟ ହୋଇ ରହିନଥିଲି।

# ବିଂଶ ଉଲ୍ଲାସ

## କୃଷକ-ଆଂଦୋଳନରେ ମୋର କର୍ମସୂଚୀ

**ପୂର୍ବାଭାସ –**

୧୯୩୩ ସାଲ ବେଳକୁ ଓଡ଼ିଶାରେ କୃଷକ ଆଂଦୋଳନ ଆରଂଭ ହୋଇଥିଲା। ଗାଁଗହଳରେ କଂଗ୍ରେସ ଆଂଦୋଳନକୁ ବ୍ୟାପକ ଓ ବଳବତ୍ତର କରିବା ପାଇଁ କେତେକ ତୁଂଗ କଂଗ୍ରେସ ନେତା ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ। ହରେକୃଷ୍ଣ ମହତାବ ପ୍ରମୁଖ କଂଗ୍ରେସ ନେତାମାନେ ଏ ଦିଗରେ ଅଗ୍ରଣୀ ଥିଲେ। ସେ ବାଲେଶ୍ୱର ଓ ଅନ୍ୟାନ୍ୟ ଜିଲ୍ଲାମାନଂକରେ କୃଷକମାନଂକର ବହୁ ସଭାସମିତି ଆହ୍ୱାନ କରିଥିଲେ। ସେମାନଂକୁ ଜମିଦାର ଓ ବଡ଼ ବଡ଼ ଭୂମ୍ୟାଧିକାରୀମାନଂକ ଶୋଷଣ ଓ ଅନ୍ୟାୟ ପାଉଣା ଆଦାୟ ପ୍ରଭୃତିର ପ୍ରତିରୋଧ କରିବା ପାଇଁ ଆହ୍ୱାନ ଦେଇଥିଲେ। ୧୯୩୩ ମସିହା ସେପ୍ଟେଂବର ମାସରେ ଓଡ଼ିଶା ଡିଭିଜନର କମିଶନର୍ ଜିଲ୍ଲା ଅଫିସରମାନଂକୁ କୃଷକ ଆଂଦୋଳନ ବିରୁଦ୍ଧରେ ସତର୍କ କରାଇଦେଇଥିଲେ। ସେ ଏପ୍ରକାର ଗଣଆଂଦୋଳନ ବିପଦର କାରଣ ହେବ ବୋଲି ତାଂକ ନିର୍ଦ୍ଦେଶନାମାରେ ସୂଚାଇଥିଲେ।

**କଂଗ୍ରେସ ଓ ସୋସାଲିଷ୍ଟ ପାର୍ଟି –**

୧୯୩୪ ମସିହାରେ ସର୍ବଭାରତୀୟ ସ୍ତରରେ ଆଚାର୍ଯ୍ୟ ନରେଂଦ୍ରଦେବ ଓ ଜୟପ୍ରକାଶ ନାରାୟଣ ପ୍ରମୁଖଂକ ନେତୃତ୍ୱରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠିତହୋଇଥିଲା। ଓଡ଼ିଶାରୁ ନବକୃଷ୍ଣ ଚୌଧୁରୀ ଏହି ସଂଗଠନର ପ୍ରଥମ ଜାତୀୟ କାର୍ଯକାରୀ ସମିତିର ସଭ୍ୟ ଥିଲେ। କଂଗ୍ରେସରେ ଥିବା ସମାଜବାଦୀମାନେ ପଂଡିତ ଜବାହରଲାଲ ନେହରୁଂକଠାରୁ ଉତ୍ସାହ ପାଇ ଏହି କଂଗ୍ରେସ ସୋସାଲିଷ୍ଟ ଦଳ ଗଠନକରିଥିଲେ। ଏଥିରେ ନେତୃତ୍ୱ ନେଇଥିଲେ ଜୟପ୍ରକାଶ ନାରାୟଣ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ୟୁସୁଫ୍ ମେହେରଅଲ୍ଲୀ, ଏମ୍.ଆର୍. ମାସାନୀ ଏବଂ ଡ. ରାମମନୋହର ଲୋହିଆ ପ୍ରମୁଖ ନେତୃବୃନ୍ଦ। କଂଗ୍ରେସ ସୋସାଲିଷ୍ଟ ଦଳର ଏକ ଶାଖା ଓଡ଼ିଶାରେ ମଧ୍ୟ ଗଠିତ ହୋଇଥିଲା। ଏଥିରେ ନବକୃଷ୍ଣ ଚୌଧୁରୀ, ସୁରେନ୍ଦ୍ର ଦ୍ୱିବେଦୀ, ମାଳତୀ ଚୌଧୁରୀ, ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ସାଧୁଚରଣ ମହାଂତି ବଳିଷ୍ଠ ଭୂମିକା ଗ୍ରହଣକରିଥିଲେ।

ମୁଁ ସେତେବେଳକୁ କଲିକତାରେ ପଢୁଥିଲି। ୧୯୩୭-୩୮ ମସିହାରେ ମୁଁ କଲିକତାରୁ ଆସି କଟକ ରେଭେନ୍ସା କଲେଜରେ ବି.ଏ. କ୍ଲାସ୍‌ରେ ନାମ

ଲେଖାଉଥିଲି। ମୁଁ ସେହି ସମୟରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଓଡ଼ିଶା ଶାଖାରେ ଯୋଗଦିଏ। ଭଗବତୀ ଚରଣ ପାଣିଗ୍ରାହୀ, ଅନଂତ ପଟ୍ଟନାୟକ, ବୈଦ୍ୟନାଥ ରଥ, ଗୋକୁଳ ରାୟ ଚୂଡ଼ାମଣି ମଧ୍ୟ ଏଥିରେ ଯୋଗଦେଇଥାନ୍ତି। ଏମାନେ ପରେ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଗଠନକରିଥିଲେ।

**ନିଖିଳ ଭାରତ କୃଷକ ସଂଘ –**

ଭାରତର କୃଷକ ଆଂଦୋଳନକୁ ସଂଘଠିତ ରୂପ ଦେବାପାଇଁ 'ନିଖିଳ ଭାରତ କୃଷକ ମହାସଭା'ର ଜନ୍ମ ହୁଏ। ଅଧ୍ୟାପକ ରଂଗା, ସ୍ୱାମୀ ସଦାନଂଦ ପ୍ରମୁଖ ଏହାର ନେତୃତ୍ୱ ନେଇଥିଲେ। ୧୯୩୫ ମସିହାରେ ଓଡ଼ିଶାରେ ଏକ କିଷାନ ସଂଘ ଗଠିତ ହୁଏ। ଏହାର ଉଦ୍ଦେଶ୍ୟ ଥିଲା, କୃଷକମାନଂକର ସ୍ୱାର୍ଥରକ୍ଷା କରିବା ଏବଂ ଜମିଦାରମାନଂକର ବେଆଇନ ଶୋଷଣ ବଂଦକରିବା। କଂଗ୍ରେସ ପାର୍ଟି କୃଷକ ସଂଗଠନ ଓ ଗ୍ରାମ୍ୟ ପୁନର୍ଗଠନ କାର୍ଯ୍ୟସୂଚୀ ଗ୍ରହଣ କରିଥିଲେ। ୧୯୩୬ ମସିହାର ପ୍ରାରଂଭରେ ବାଗଲପୁରଠାରେ ଏକ ବଡ଼ଧରଣର କୃଷକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ଏହାର ସଭାପତି ଥିଲେ ହରେକୃଷ୍ଣ ମହତାବ। ଏହି ସମ୍ମିଳନୀରେ କୃଷିଜାତ ଦ୍ରବ୍ୟମାନଂକର ବିକ୍ରୟକେନ୍ଦ୍ର ବା ମାର୍କେଟିଙ୍ଗ୍ ସଂଗଠନ ସ୍ଥାପନ ଓ କୃଷକମାନଂକୁ ଋଣଦାତା ମହାଜାନମାନଂକ ଅତ୍ୟାଚାର ଓ ଶୋଷଣ କବଳରୁ ରକ୍ଷାକରିବା ପ୍ରସ୍ତାବମାନ ଗୃହୀତହୋଇଥିଲା। ଏଥିରେ ସ୍ଥିରହୋଇଥିଲା ଯେ, କୃଷକମାନେ ଜମିଦାରମାନଂକୁ ସଲାମି ଦେବେନାହିଁ। ଏହି ସମ୍ମିଳନୀରେ ନିତ୍ୟାନଂଦ କାନୁନ୍‌ଗୋ ଓ ସୁରେଂଦ୍ରନାଥ ଦ୍ୱିବେଦୀ ଭାଷଣ ଦେଇଥିଲେ।

୧୯୩୬ ମସିହା ମାର୍ଚ୍ଚ ମାସରେ ଆଚାର୍ଯ୍ୟ ହରିହର ଦାସଂକ ସଭାପତିତ୍ୱରେ ଅନୁଷ୍ଠିତ କଂଗ୍ରେସ କର୍ମୀ ସମ୍ମିଳନୀରେ କୃଷକ ଶ୍ରମିକମାନଂକର ସ୍ୱାର୍ଥରକ୍ଷା ଲାଗି କୃଷକ ଓ ଶ୍ରମିକ ସଂଗଠନମାନ ଗଠନ କରିବାକୁ ସ୍ଥିରହୋଇଥିଲା। ୧୯୩୬ ସାଲ ମେ ମାସରେ ବାଲେଶ୍ୱର ଓ କଟକ ଜିଲ୍ଲାରେ ବହୁ କୃଷକ ସଭାମାନ ହୋଇ ଜମିଦାରମାନଂକ ବେଆଇନ ପାଉଣା ଆଦାୟକୁ ଦୃଢ଼ ପ୍ରତିରୋଧ କରିବାପାଇଁ ଉଦ୍‌ବୋଧନ ଦିଆଯାଇଥିଲା। ୧୯୩୬ ମସିହା ମେ ୧୦ ତାରିଖରେ ପୁରୀଠାରେ ଓଡ଼ିଶାର କଂଗ୍ରେସ ନେତୃବୃନ୍ଦ ମିଳିତହୋଇ ଏକ କମିଟି ଗଠନକରିଥିଲେ। ଏହାର ସଭ୍ୟ ଥିଲେ ଗୋରାଚାଂଦ ପଟ୍ଟନାୟକ, ପଂଡିତ ଗୋଦାବରୀଶ ମିଶ୍ର, ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ ଓ ଜଗବଂଧୁ ସିଂହ। ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ବା 'ଟେନାନ୍‌ସି ଆକ୍ଟ'ରେ ପରିବର୍ତ୍ତନ ଆଣିବା ସଂବଂଧରେ ଜନମତ ସଂଗ୍ରହ କରିବା ପାଇଁ ଏହି କମିଟିକୁ ଦାୟିତ୍ୱ ଦିଆଯାଇଥିଲା। ୧୯୩୬ ମସିହାରେ ଓଡ଼ିଶାରେ ଅଭୂତପୂର୍ବ ଜନଜାଗରଣ ଦେଖାଦେଇଥିଲା। କାରଣ ଭାରତ ଶାସନ ଆଇନ ୧୯୩୫ ଅନୁଯାୟୀ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥାଏ ଏବଂ ପ୍ରଥମ ବିଧାନସଭା ନିର୍ବାଚନ ହେବାକୁଥାଏ। ଏହି ଉଦ୍ଦେଶ୍ୟରେ କଂଗ୍ରେସ ସଭାପତି

ପଂଡିତ ଜବାହରଲାଲ୍ ନେହେରୁ ମଧ ଓଡ଼ିଶା ପରିଭ୍ରମଣ କରିଥିଲେ ।

ହରେକୃଷ୍ଣ ମହତାବ ୧୯୩୬ ମସିହା ମେ ମାସ ୨୮ ତାରିଖରେ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟିର ଏକ ବୈଠକ ଡକାଇ ପଂଡିତ ଜବାହରଲାଲ୍ ନେହେରୁଂକ ଓଡ଼ିଶା ଆସିବା ସମୟରେ ଓଡ଼ିଶା କୃଷକ ସମ୍ମିଳନୀ ଡକାଇବାକୁ ପ୍ରସ୍ତାବ ଦେଇଥିଲେ । ବିଶ୍ୱନାଥ ଦାଶଂକ ଅଧକ୍ଷତାରେ ପ୍ରଥମ ନିର୍ବାଚନ ସଭା ବ୍ରହ୍ମପୁରଠାରେ ଆରଂଭ ହୋଇଥିଲା । ୧୯୩୬ ଜୁଲାଇ ମାସ ୧୩ ତାରିଖରେ କଟକଠାରେ 'ଶ୍ରୀଜଂଗ ଦିବସ' ପାଳିତ ହୋଇଥିଲା । ଏଥିରେ ଲବଣ ସତ୍ୟାଗ୍ରହ ସମୟରେ ଶ୍ରୀଜଂଗଠାରେ ହୋଇଥିବା ଅମାନୁଷିକ ଅତ୍ୟାଚାରର ତୀବ୍ର ନିଂଦା କରାଯାଇଥିଲା ।

ଉତ୍କଳ ପ୍ରାଦେଶିକ କୃଷକସଂଘ କାର୍ଯ୍ୟକାରୀ କମିଟି ବୈଠକ ପୁରୀଠାରେ ୧୯୩୬ ମସିହା ଅଗଷ୍ଟ ୧୪ ତାରିଖରେ ବସିଥିଲା । ଏଥିରେ କୃଷକମାନଂକର ଅଭାବ ଓ ଅଭିଯୋଗ ସଂପର୍କରେ ତଦନ୍ତ କରିବାକୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିକୁ ରିପୋର୍ଟ ଦେବାପାଇଁ ଏକ ସବ୍‌କମିଟି ଗଠନ ହୋଇଥିଲା । ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ୍, ପଂଡିତ ଲିଂଗରାଜ ମିଶ୍ର ଓ ମାଳତୀ ଚୌଧୁରୀ ଏହି ସବ୍-କମିଟିର ସଦସ୍ୟ ଥିଲେ । ୧୯୩୬ ମସିହା ସେପ୍‌ଟେଂବର ୧ ତାରିଖରେ ସମଗ୍ର ଓଡ଼ିଶାରେ 'ସର୍ବଭାରତୀୟ କୃଷକ ଦିବସ' ପାଳିତ ହୋଇଥିଲା । ସବୁ ସଭାସମିତିରେ ଖଜଣା ହ୍ରାସ, ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ ଓ ଚାଷୀମାନଂକୁ ଗାଁ ମହାଜନ କବଳରୁ ରକ୍ଷା କରିବା ପାଇଁ ଦାବିକରାଯାଇଥିଲା ।

ୟୁସୁଫ୍ ମେହେର ଅଲ୍ଲୀ ସେହି ବର୍ଷ ଅକ୍‌ଟୋବର ମାସରେ କଟକ ଆସି ପଂଡିତ ନେହେରୁଂକର ସମାଜବାଦ ବାର୍ତା ପ୍ରଚାରକରିଥିଲେ । ଅକ୍‌ଟୋବର ଓ ନଭେଂବର ମାସରେ କଟକ ଓ ପୁରୀ ଜିଲ୍ଲାର ବିଭିନ୍ନ ସ୍ଥାନରେ କୃଷକ ସମ୍ମିଳନୀମାନ କରାଯାଇଥିଲା । ସବୁ ସଭାସମିତିରେ ଜମିଦାରୀ ପ୍ରଥାର ଉଚ୍ଛେଦ ଏବଂ କାଏମୀ ସ୍ୱାର୍ଥ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଆହ୍ୱାନ ଦିଆଯାଇଥିଲା । ୧୯୩୬ ମସିହା ନଭେଂବର ମାସରେ ପଂଡିତ ନେହେରୁ ଓଡ଼ିଶା ଆସି ବିଭିନ୍ନ ସ୍ଥାନରେ, ଯଥା – ସାଲେପୁର, ଚାଂଦୋଳ, ବହୁଗ୍ରାମ, କେଂଦ୍ରାପଡ଼ା, ଜଗତ୍‌ସିଂହପୁର, କଟକ, ପୁରୀ, ବ୍ରହ୍ମପୁର ପ୍ରଭୃତି ସ୍ଥାନରେ ସଭାସମିତିମାନଂକରେ ଭାଷଣଦେଇଥିଲେ । ସେ ଲୋକମାଂନକୁ କଂଗ୍ରେସ ପତାକା ତଳେ ଏକଜୁଟ୍ ହୋଇ ବ୍ରିଟିଶ ସାମ୍ରାଜ୍ୟବାଦକୁ ହଟାଇଦେଇ ଦେଶରେ ସମାଜବାଦୀ ଶାସନ ପ୍ରତିଷ୍ଠା କରିବା ପାଇଁ ଉଦ୍‌ବୋଧନ ଦେଇଥିଲେ । ନେହେରୁଂକ ଓଡ଼ିଶା ଆଗମନ ଲୋକମାନଂକ ଉପରେ ପ୍ରବଳ ପ୍ରଭାବ ପକାଇଥିଲା; ଫଳରେ କଂଗ୍ରେସ ନିର୍ବାଚନରେ ଜୟଯୁକ୍ତ ହୋଇଥିଲା ଏବଂ ସଂଖ୍ୟାଗରିଷ୍ଠତା ହାସଲକରିଥିଲା । ମାତ୍ର କଂଗ୍ରେସ ସରକାର ଗଢ଼ିବାକୁ ନାସ୍ତିକରିଦେଇଥିଲା; କାରଣ ଗଭର୍ଣରମାନେ ସେମାନଂକର ସ୍ୱତନ୍ତ୍ର କ୍ଷମତା ପ୍ରୟୋଗ

କରିବେ ନାହିଁ ବୋଲି ପ୍ରତିଶ୍ରୁତି ଦେଇନଥିଲେ। ଫଳରେ ବିଧାନସଭାରେ ସଂଖ୍ୟାଲଘୁ ଦଳର ନେତା ପାରଳାଖେମୁଂଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତିଂକୁ ମଂତ୍ରିମଂଡଳ ଗଢ଼ିବାକୁ ଏବଂ ଶାସନ କ୍ଷମତା ଗ୍ରହଣ କରିବାକୁ ଗଭର୍ଣର ଆହ୍ୱାନ କରିଥିଲେ। ତଦନୁଯାୟୀ ପାରଳାଖେମୁଂଡି ମହାରାଜା ଅନ୍ୟ ୨ ଜଣ ମଂତ୍ରୀଂକ ସହ ସଂଖ୍ୟାଲଘୁ ସରକାର ଗଠନକରିଥିଲେ। ଅନ୍ୟ ୨ ଜଣ ମନ୍ତ୍ରୀ ହେଲେ ମାନଧାଂତା ଗୋରାଚାଂଦ ପଟ୍ଟନାୟକ ଓ ମୌଲବିଲତିଫୁର ରହମନ। ପ୍ରଦେଶର ସର୍ବତ୍ର ଏବଂ ସବୁ ମହଲରୁ ଏହି ସଂଖ୍ୟାଲଘୁ ସରକାରକୁ ଅଗଣତାଂତ୍ରିକ ଏବଂ ବେଆଇନ ବୋଲି ଅଭିଯୋଗ କରାଯାଇଥିଲା। କଂଗ୍ରେସ ଦଳ ଏହି ସରକାର ଗଠନର ଅଯୌକ୍ତିକତା ଦର୍ଶାଇ ଗଭର୍ଣରଂକୁ ଦରଖାସ୍ତ କରିଥିଲେ। ୨୬ ଜାନୁୟାରୀ ୧୯୩୭ ମସିହାରେ ପ୍ରଦେଶର ସର୍ବତ୍ର ସ୍ୱାଧୀନତା ଦିବସ ପାଳିତ ହୋଇଥିଲା। ପ୍ରବଳ ସରକାରୀ ବାଧା ସତ୍ତ୍ୱେ ସଭାସମିତିମାନଂକରେ ସ୍ୱାଧୀନତାର ଶପଥପତ୍ର ପାଠକରାଯାଇଥିଲା। ୧୯୩୭ ମସିହା ଏପ୍ରିଲ୍ ପହିଲା ତାରଖକୁ ଓଡ଼ିଶାର କଂଗ୍ରେସ ମହଲ ଭାରତ ଶାସନ ଆଇନ ୧୯୩୫କୁ, ଜାତୀୟତାବିରୋଧୀ ଓ ପ୍ରତିକ୍ରିୟାଶୀଳ ବୋଲି ଘୋଷଣା କରିଥିଲେ। ସେମାନେ ଏକ କନ୍‌ଷ୍ଟିଚ୍ୟୁଏଂଟ ଆସେଂବ୍ଲି ଗଠନକରି ତାହାରି ଜରିଆରେ ଏକ ଗଣତାଂତ୍ରିକ ସଂବିଧାନ ପ୍ରଣୟନ କରିବାପାଇଁ ଦାବିକରିଥିଲେ।

୧୯୩୭ ମସିହା ଏପ୍ରିଲ୍ ୧୩ ତାରିଖ ଦିନଟି 'ଜାଂଲିଆନାୱାଲାବାଗ୍' ରୂପେ ଓଡ଼ିଶାରେ ସର୍ବତ୍ର ପାଳିତହୋଇଥିଲା। ଜାଂଲିଆନାୱାଲାବାଗ୍‌ଠାରେ ବ୍ରିଟିଶ୍ ସରକାରର ବର୍ବରୋଚିତ ହିଂସା-କାଂଡର ନିଂଦାକରାଯାଇଥିଲା। ଜାଂଲିଆନାୱାଲାବାଗ୍‌ଠାରେ ବହୁଲୋକ ହତାହତ ହୋଇଥିଲେ।

୧୯୩୭ ମସିହା ଜୁନ୍ ୨୧ ତାରିଖ ଦିନ ଭାଇସ୍‌ରାୟ ବା ଗଭର୍ଣର ଜେନେରାଲ୍ କଂଗ୍ରେସ ଦଳକୁ ଆଶ୍ୱାସନା ଦେଇଥିଲେ ଯେ, ଗଭର୍ଣର ମଂତ୍ରୀମାନଂକର ଉପଦେଶ ଅନୁସାରେ ତାଂକର ବିଶେଷ କ୍ଷମତା ପ୍ରୟୋଗ କରିବେ। ଏହାପରେ ସର୍ବଭାରତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିର ଅନୁମତିକ୍ରମେ ଓଡ଼ିଶା କଂଗ୍ରେସ ବିଧାୟକ ଦଳ ମଂତ୍ରିମଂଡଳ ଗଢ଼ିବାକୁ ରାଜିହୋଇଥିଲେ। ପାରଳାଖେମୁଂଡି ମହାରାଜା ଇସ୍ତଫା ଦେଇଥିଲେ।

ଓଡ଼ିଶାର ପ୍ରଥମ କଂଗ୍ରେସ ସରକାର ବିଶ୍ୱନାଥ ଦାଶଂକ ପ୍ରଧାନମଂତ୍ରୀତ୍ୱରେ (ପ୍ରାଇମ୍ ମିନିଷ୍ଟରସିପ୍) ତା୧୯, ଜୁଲାଇ ୧୯୩୭ ମସିହାରେ ଗଠିତ ହୋଇଥିଲା। ପ୍ରଧାନମଂତ୍ରୀ ବା ପ୍ରାଇମ୍ ମିନିଷ୍ଟରଂକ ଛଡ଼ା ଅନ୍ୟ ଦୁଇ ଜଣ ମଂତ୍ରୀ ଥିଲେ ନିତ୍ୟାନଂଦ କାନୁନ୍‌ଗୋ ଏବଂ ବୋଧରାମ ଦୁବେ। ଏହାଛଡ଼ା ୪ ଜଣ ପାର୍ଲାମେଂଟାରୀ ସେକ୍ରେଟେରୀ ମଧ୍ୟ ଥିଲେ, ଯଥା— ଯଦୁମଣି ମଂଗରାଜ, ଜଗନ୍ନାଥ ମିଶ୍ର, ପ୍ୟାରିଶଂକର ରାୟ ଓ ରାଧାକୃଷ୍ଣ ବିଶ୍ୱାସରାୟ। ମୁକୁଂଦ ପ୍ରସାଦ ଦାଶ ଏବଂ ନଂଦକିଶୋର ଦାଶ ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ରୂପେ ନିର୍ବାଚିତ ହୋଇଥିଲେ।

ଏହି ପରିବେଶରେ କୃଷକ ଆଂଦୋଳନ ଆହୁରି ଶକ୍ତିଶାଳୀ ହୋଇଥିଲା। କଂଗ୍ରେସ ସୋସାଲିଷ୍ଟମାନେ କୃଷକ ଆଂଦୋଳନକୁ ବଳିଷ୍ଠ ନେତୃତ୍ୱ ଦେଇଥିଲେ। ଓଡ଼ିଶା କୃଷକସଂଘ ଦାବିକରିଥିଲା ଯେ ଖଜଣାର ୫୦ ଭାଗ ଛାଡ଼ କରାଯାଉ, ଜମିଦାରୀ ପ୍ରଥାର ଉଚ୍ଛେଦ କରାଯାଉ ଏବଂ ପ୍ରଚଳିତ ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ କରାଯାଉ। ଏହାଛଡ଼ା ପ୍ରକୃତ ଚାଷୀକୁ ଜମିର ସ୍ୱତ୍ୱ ମିଳୁ ବୋଲି ସେମାନେ ଦାବି କରିଥିଲେ।

ଓଡ଼ିଶା କୃଷକସଂଘ ଦାବିକରିଥିଲା ଯେ, ଖଜଣାର ୮୦ ଭାଗ ଛାଡ଼କରାଯାଉ, ଜମିଦାରୀ ପ୍ରଥାର ଉଚ୍ଛେଦ କରାଯାଉ ଏବଂ ପ୍ରଚଳିତ ପ୍ରଜାସ୍ୱତ୍ୱ ଆଇନ ସଂଶୋଧନ ବା ଆମେଂଡମେଂଟ କରାଯାଉ। ଏହାଛଡ଼ା ପ୍ରକୃତ ଚାଷୀକୁ ଜମିର ସତ୍ୱ ମିଳୁ ବୋଲି ଦାବି କରିଥିଲା।

ନବଗଠିତ କଂଗ୍ରେସ ମଂତ୍ରିମଂଡଳ ମଧ୍ୟ କୃଷକମାନଂକର ଆଂଦୋଳନ ଯୋଗୁଁ ବହୁ ସମସ୍ୟାର ସମ୍ମୁଖୀନ ହୋଇଥିଲା। ୧୯୩୭ ମସିହା ସେପ୍‌ଟେଂବର ୧ ତାରିଖ ଦିନ କଟକରେ ନିଖିଳ ଭାରତ କିଷାନ ଦିବସ ପାଳିତ ହୋଇଥିଲା। ସେହି ଦିନ ପ୍ରାୟ ଦଶ ହଜାର କୃଷକ ବିଭିନ୍ନ ସ୍ଥାନରୁ ଆସି ପ୍ରଧାନମଂତ୍ରୀ ବିଶ୍ୱନାଥ ଦାଶଂକଠାରେ ସେମାନଂକର ଦାବିପତ୍ର ଦାଖଲକରିଥିଲେ। ପ୍ରଧାନମଂତ୍ରୀ କୃଷକମାନଂକୁ ଆଶ୍ୱାସନା ଦେଇଥିଲେ ଯେ ସେମାନଂକର ଦାବିର ସୁ-ବିଚାର କରିବେ। କେତେକ ଜମିଦାରିରେ କୃଷକ ଆଂଦୋଳନ ପ୍ରବଳ ରୂପ ଧାରଣ କରିଥିଲା। କୃଷକମାନେ ନୂଆ ବର୍ଷ ଦିନ ଜମିଦାରମାନଂକୁ ସେମାନଂକର କୌଣସି ଭେଟି ଦେବାକୁ ନାରାଜ ହୋଇଥିଲେ। ଏହାଛଡ଼ା ଜମିଦାରଂକ ବିନା ଅନୁମତିରେ ଜଂଗଲ କାଟି ସେସବୁ ଜାଗାକୁ ଚାଷଜମିରେ ପରିଣତ କରିଥିଲେ।

କନିକା ଜମିଦାରିରେ ଚକ୍ରଧର ବେହେରା ଏମ୍.ଏଲ୍.ଏ.ଙ୍କ ନେତୃତ୍ୱରେ କୃଷକ ଆଂଦୋଳନ ଅତି ପ୍ରବଳ ହୋଇଥିଲା। କୃଷକମାନଂକ ଦାବି ପୂରଣ ଦିଗରେ ସରକାର କେତେକ ପଦକ୍ଷେପ ନେଇଥିଲେ। ସେଗୁଡ଼ିକ ହେଲା ଓଡ଼ିଶା ପ୍ରଜାସତ୍ୱ ଆଇନ୍, ମାଡ୍ରାସ ଇଷ୍ଟେଟ୍ ଲ୍ୟାଂଡ୍ ଆଇନ୍ ଏବଂ ମହାଜନି ଆଇନର ସଂଶୋଧନ। କୃଷକମାନେ ଏହିସବୁ ପରିବର୍ତ୍ତନ ତୁରନ୍ତ କାର୍ଯ୍ୟକାରୀ ହେଉବୋଲି ଆଂଦୋଳନ କରିଥିଲେ।

ଅପର ପକ୍ଷରେ ରାଜା ଜମିଦାରମାନେ ମଧ୍ୟ ନିଜର ସ୍ୱାର୍ଥରକ୍ଷାପାଇଁ ପ୍ରବଳ ଉଦ୍ୟମ କରିଥିଲେ ଏବଂ କଂଗ୍ରେସ ସରକାରଂକ ପ୍ରସ୍ତାବିତ ସଂଶୋଧନୀ ଉଦ୍ୟମକୁ ପ୍ରତିହତ କରିବାପାଇଁ ଚେଷ୍ଟାକରିଥିଲେ। ପୁରୀ ରାଜା, ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ଏବଂ କନିକା ରାଜା 'ଉତ୍କଳବାର୍ତ୍ତା' ନାମକ ଏକ ଓଡ଼ିଆ ସାପ୍ତାହିକୀ ପତ୍ରିକା ପ୍ରକାଶ କରି କୃଷକ ଆଂଦୋଳନ ବିରୁଦ୍ଧରେ ପ୍ରଚାର ଚଳାଇଥିଲେ। ୧୯୩୭ ମସିହା ସେପ୍‌ଟେଂବର ୨୨ ତାରିଖ ଦିନ ୩୦୦ ଜମିଦାର ଓ

ଜମିମାଲିକ ଓଡ଼ିଶା ବିଭିନ୍ନ ଅଂଚଳରୁ ଆସି କଟକରେ ସମବେତ ହୋଇଥିଲେ ଏବଂ ସରକାରଂକର ପ୍ରସ୍ତାବିତ ସଂଶୋଧନର ତୀବ୍ର ବିରୋଧ କରିଥିଲେ ।

**'କୃଷକ ପତ୍ରିକା' –**

କୃଷକମାନେ ମଧ୍ୟ କଂଗ୍ରେସ ସୋସାଲିଷ୍ଟ ନେତାମାନଂକର ନେତୃତ୍ୱରେ ପ୍ରବଳରୁ ପ୍ରବଳତର ଆଂଦୋଳନ ଚଳାଇଥିଲେ । ଜାନୁୟାରୀ ୧୯୩୮ ମସିହାରେ କଂଗ୍ରେସ ସୋସାଲିଷ୍ଟ ନେତା ସୁରେନ୍ଦ୍ର ନାଥ ଦ୍ୱିବେଦୀଂକ ସଂପାଦକତ୍ୱରେ କଟକରୁ 'କୃଷକ' ନାମକ ସାପ୍ତାହିକ ପତ୍ରିକା ପ୍ରକାଶ ପାଇବାକୁ ଲାଗିଲା ।

'କୃଷକ' ପତ୍ରିକାରେ ଭଗବତୀଚରଣ ପାଣିଗ୍ରାହୀ, ମୁଁ ଓ ଆହୁରି କେତେକ ସାଥୀ ଯାଇ ଲେଖାଲେଖି କରୁଥିଲୁ । ଆମେ କୃଷକ ଆଂଦୋଳନ ସଂକ୍ରାଂତ ବିଭିନ୍ନ ସ୍ଥାନରୁ ଆସିଥିବା ସଂବାଦଗୁଡ଼ିକୁ ସଂପାଦନା କରି ପ୍ରକାଶ ପାଇଁ ଦେଉଥିଲୁ । ଗଡ଼ଜାତ ପ୍ରଜା-ଆଂଦୋଳନ ସଂକ୍ରାଂତ ବହୁ ଲେଖା ଓ କବିତା ମଧ୍ୟ 'କୃଷକ'ରେ ପ୍ରକାଶପାଉଥିଲା । ୧୯୩୮ ମସିହା ଏପ୍ରିଲ୍ ମାସରେ ଓଡ଼ିଶାରେ ଏକ ସାଂବିଧାନିକ ସଂକଟ ଦେଖାଦେଇଥିଲା । ଓଡ଼ିଶାର ଗଭର୍ଣର ବା ରାଜ୍ୟପାଳ ସାର୍ ଜନ୍ ହବାକ୍ ଛୁଟିରେ ଯିବାକୁ ଚାହିଁଥିଲେ । ତାଂକ ସ୍ଥାନରେ ରେଭିନ୍ୟୁ କମିଶନର ଜେ. ଆର୍. ଡେନ୍ ଅସ୍ଥାୟୀ ଗଭର୍ଣରରୂପେ କାର୍ଯ୍ୟଭାର ନେବାପାଇଁ ସ୍ଥିରହୋଇଥିଲା । କିଂତୁ ବିଶ୍ୱନାଥ ଦାଶ ମଂତ୍ରିମଂଡଳ ଜଣେ ଅଧସ୍ତନ କର୍ମଚାରୀ ଅଧୀନରେ କାମ କରିବା ଅପମାନଜନକ ବୋଲି ମନେକରିଥିଲେ ଏବଂ ଇସ୍ତଫା ଦେବାକୁ ଅଡ଼ିବସିଥିଲେ । ହବାକ୍ ସାହେବଂକ ଛୁଟି ନାମଂଜୁର କରାଯିବାରୁ ଏହି ସମସ୍ୟା ସମାଧନ ହୋଇଥିଲା । ଏହି ସାହସିକ ପଦକ୍ଷେପ ନେବା ଦ୍ୱାରା ବିଶ୍ୱନାଥ ଦାଶଂକର ଭାବମୂର୍ତ୍ତି ସାରା ଭାରତରେ ଉଜ୍ଜ୍ୱଳ ହୋଇ ଉଠିଥିଲା ଏବଂ ଓଡ଼ିଶାର ସ୍ୱାଭିମାନ ମଧ୍ୟ ବଢ଼ିଥିଲା ।

**ଗଂଜାମରେ କୃଷକ ଆଂଦୋଳନ –**

ଗଂଜାମ ଜିଲ୍ଲାରେ ପ୍ରାୟ ୧ ହଜାର ଏକରରୁ ଅଧିକ ଜମିର ରୟତ ଥିବା ଶ୍ରୀ ବିଶ୍ୱନାଥ ଦାଶ ଓ ତାଂକ ଭାଇ କୃଷକ ଆଂଦୋଳନର ନେତୃତ୍ୱ ନେଇଥିଲେ । ଏସବୁ ଜମିର ମାଲିକାନା ସତ୍ତ୍ୱ ଖଲିକୋଟ ରାଜା ଓ ଅନ୍ୟ ଜମିଦାର ମାନଂକଠାରେ ନ୍ୟସ୍ତଥିଲା । ରାଜା ଜମିଦାରମାନଂକୁ ରୟତମାନେ ଖଜଣା ଓ ସଲାମି ଇତ୍ୟାଦି ଦେବାକୁପଡୁଥିଲା । ତେଣୁ ରୟତ ହାତକୁ ଜମିର ଅଧିକାର ଆସୁ ବୋଲି ସେମାନେ ଦାବି କରିଥିଲେ । ସେମାନଂକ ଜମିରୁ ନ୍ୟସ୍ତସ୍ୱାର୍ଥ ହଟାଇବା ଦାବିର ଅର୍ଥ ଥିଲା, ବଡ଼ ବଡ଼ ରୟତମାନଂକର ଅଧିକାର କାଏମ୍ କରିବା । ପ୍ରକୃତ ଚାଷୀର ଏଥିରେ ବିଶେଷ କିଛି ଲାଭ ନଥିଲା । ବିଶ୍ୱନାଥ ଦାଶ ପ୍ରଧାନମଂତ୍ରୀ ହେଲା ପରେ 'ମାଡ୍ରାସ ଲ୍ୟାଂଡ୍ ଆକ୍ଟ' ସଂଶୋଧନ କରିଥିଲେ । ଏହି ଆଇନ ଗଂଜାମ ଜିଲ୍ଲା ପ୍ରତି ପ୍ରଯୁଜ୍ୟ ଥିଲା । ଓଡ଼ିଶା କଂଗ୍ରେସ ପ୍ରେସିଡେଂଟ୍

ପଂଡିତ ନୀଳକଂଠ ଦାଶ ଏ ରୟତଓ୍ୱାରୀ ଜମିର ସର୍ବୋଚ୍ଚ ସୀମା (ସିଲିଂ) ଖୁବ୍ ବେଶି ହେଲେ ୧୦୦ ଏକର ପର୍ଯ୍ୟନ୍ତ ଧାର୍ଯ୍ୟ ହେବା ଉଚିତ ବୋଲି ମତ ବ୍ୟକ୍ତ କରିଥିଲେ । ଗଂଜାମର କଂଗ୍ରେସ ଓ କୃଷକ ନେତା ଦିବାକର ପଟ୍ଟନାୟକ ତାଂକୁ ସମର୍ଥନ କରୁଥିଲେ, ଅଥଚ ଉପକୂଳବର୍ତ୍ତୀ ଅଂଚଳରେ ଲୋକେ ବିଶ୍ୱନାଥ ଦାଶଂକୁ ଜଣେ ବଡ଼ କୃଷକ-ନେତା ବୋଲି ଜାଣିଥିଲେ । ପଂଡିତ ନୀଳକଂଠ ଦାଶ 'ମାଡ୍ରାସ୍ ଲ୍ୟାଂଡ୍ ଆକ୍ଟ'ର ପରିବର୍ତ୍ତନକୁ ବିରୋଧ କରୁଛଂତି ଏବଂ କୃଷକ ଆଂଦୋଳନର ବିରୋଧୀ ବୋଲି କେତେକ ମହଲରେ ପ୍ରଚାର ଚାଲିଥିଲା । ସେ ରାଜା ଜମିଦାରଂକ ଏଜେଂଟ୍ ବୋଲି ଗୁଜବ ରଟନା କରାଯାଇଥିଲା ।

**କୃଷକ ସାମ୍ମୁଖ୍ୟରେ ମୋର ଭୂମିକା –**

ମୁଁ ଓଡ଼ିଶାରେ ବହୁ କୃଷକ ସଭାରେ ଯୋଗଦେଉଥିଲି । କୃଷକମାନଂକର ସ୍ୱାର୍ଥରକ୍ଷା ପାଇଁ ଏବଂ ଜମିଦାରୀ ପ୍ରଥାର ଉଚ୍ଛେଦ ଦାବି କରି, ନ୍ୟସ୍ତସ୍ୱାର୍ଥୀମାନଂକୁ ହଟାଇବା ପାଇଁ କୃଷକମାନଂକୁ ଉଦ୍‌ବୋଧନ ଦେଉଥିଲି । ଏହାଛଡ଼ା କୃଷକ ଆଂଦୋଳନ ଉପଲକ୍ଷେ ବହୁ କବିତା ମଧ୍ୟ ରଚନା କରିଥିଲି । ଯଥା 'ଭାତ' 'ରୁଟି' ପ୍ରଭୃତି । 'ଭାତ' କବିତାଟି ତଳେ ଉଦ୍ଧୃତ କରାଗଲା ।

''ବଡ଼ ଭୋକ ବାବୁ, ବଡ଼ ଭୋକ ଆଜି ଖାଇବାକୁ ଦିଅ ଭାତ,
ହକ୍ ପାଉଣା ଗଂଡାକ ପାଇଁ କେତେ ବା ପାତିବୁ ହାତ ?
ଯେଉଁ ଧାନ ଆମେ ବୁଣିଲୁ କାଟିଲୁ ସେହି ଧାନ ଦିଅ ଆଣି,
ପୀଡ଼ିତ ଆତ୍ମା ଗର୍ଜି ଉଠଇ ଶୁଣ ତା ବିପୁଳ ବାଣୀ ।
ଚାରିଆଡ଼େ ଆଜି ଶୁଭୁଛି ଶୁଣ ହେ ଭୋକିଲା ଜୀବନ କଥା,
ଧନଦଉଲତେ ଦୁନିଆ ଉଛୁଳେ, ଧନିକ ଫୁଲାଏ ମଥା ।
ଗରିବ ବାପୁଡ଼ା ମରେ ଦୁଇ ଓଳି ପେଟ ପାଇଁ ଖଟି ଖଟି,
ଝାଳବୁହା ତାର ମିହଂତ ନେଇ ଧନିକ ମାରୁଛି ପଟି ।
ଦୁନିଆରେ ଯେତେ ନିଅଂଟ, ଅଭାବ, ଶୋଷଣ ରହିଛି ପୂରି,
ଧନିକ ହାତର କାରସାଦି ସବୁ, ମାରି ସେ ଶୋଷଣ ଛୁରି ।
ଦିହରୁ ଆମର ଜଳାଣି ବାହାର କଂକାଳ ଆଉ ହାଡ଼ ।
ହା'-ହୁତାଶରେ କଂପି ଉଠଇ ଧରଣୀର ଚାରିଆଡ଼ ।
ମଣିଷର ଗୋଡ଼ ଚିପୁଛି ଭାଇ ହେ ମଣିଷ ପୂଅର ବେକ,
ମଣିଷ ମାଉଁସ ମଣିଷ ଖାଉଛି ନଦେଖିବା କଥା ଦେଖ ।
ଭୋକ-ଉପାସରେ ଉକୁଣି ପରାଏ ଝଡୁଛି ମଣିଷ ପୁଅ,
ଶ୍ୟାମଳା ଧରଣୀ ହେଲାଣି ମଶାଣୀ ବହୁଚି ରକତସୁଅ ।
ଭାଳଇ ମୂଳିଆ କବି
ମଣିଷର ଯୁଗ କେବେ ସେ ଆସିବ, ଉଠିବ ନୂତନ ରବି ?''

(ଏହି କବିତା ମୋର 'ଅଭିଯାନ' ପୁସ୍ତକରେ ସ୍ଥାନିତ ହୋଇଛି।) ଅନ୍ୟ ଏକ ପରବର୍ତ୍ତୀ କବିତା 'ଖାଦ୍ୟ'ରୁ କେତେକ ଅଂଶ ଉଦ୍ଧାର କରାଗଲା।

''ଖାଦ୍ୟ ଥାଉ ଯେଉଁଠାରେ ତାହା ମୋର ଯେଣୁ ମୁଁ କ୍ଷୁଧାର୍ଥ,
ଥାଉ ତାହା ପୁଲିଶ ଘେରରେ, ଅବା କାହା ଗୋଦାମେ, ଖମାରେ
ତାହା ମୋର ଅଗ୍ରଦାବି, ମୋ' କ୍ଷୁଧାର ଅନ୍ନ।
ମୋତେ ବଂଚିବାକୁ ଦିଅ, ଜିଇବା ମୋ' ଜୀବନର ଧର୍ମ।

ମୁଁ ନିଖିଳଭାରତ କୃଷକ ସଂଘର ଯୁଗ୍ମ-ସଚିବ ହେଲି। ଆଂଧ୍ର ପ୍ରଦେଶର ପଲାଶାଠାରେ ନିଖିଳଭାରତ କିଷାନ ସଂଘର ଅଧିବେଶନ ବସିଥିଲା। ଏହି ସର୍ବଭାରତୀୟ ସମ୍ମିଳନୀରେ ସଭାପତି ଥିଲେ ବଂଗର ଏମ୍.ଏଲ୍.ଏ. ବଂକିମ ମୁଖାର୍ଜୀ। ବିହାରର କିଷାନ ନେତା ସ୍ୱାମୀ ସହଜାନଂଦ, ଆଂଧ୍ର ପ୍ରଦେଶର ଅଧ୍ୟାପକ ରଂଗା ସେତେବେଳେ କୃଷକ ଆଂଦୋଳନର ନେତୃତ୍ୱ ନେଇଥିଲେ। ସେମାନେ ଏହି ସମ୍ମିଳନୀରେ ଉଦ୍ଦୀପନାମୟୀ ଭାଷଣମାନ ଦେଇଥିଲେ। ପ୍ରାୟ ୪-୫ ଲକ୍ଷ କୃଷକ ଏହି ସମ୍ମିଳନୀରେ ଯୋଗଦେଇଥିଲେ। ଏହି ସମ୍ମିଳନୀରେ ପ୍ରତିନିଧିମାନଂକର ଚର୍ଚ୍ଚା କରିବା ପାଇଁ ବହୁ ଛାତ୍ରଛାତ୍ରୀ ସ୍ୱେଚ୍ଛାସେବକ ବାହିନୀରେ ଯୋଗଦେଇଥିଲେ। ଆମ ଓଡ଼ିଶା ପ୍ରତିନିଧିଂକ ତତ୍ତ୍ୱ ନେବାପାଇଁ ଦୁଇ-ତିନି ଜଣ ଛାତ୍ରୀ ନିଯୁକ୍ତ ହୋଇଥିଲେ। ରମା ନାମକ ଜଣେ ବି.ଏ. ଛାତ୍ରୀ ମୋର ଖୁବ୍ ଯତ୍ନ ନେଉଥିଲା। ସୁଂଦର ଝିଅଟିଏ। ବହୁତ ଥର ମାଛି ବା ଘୋଳ ଦହି ଆଣି ଦେଉଥିଲା, ଆଉ କଣ ଦରକାର ବୋଲି ପଚାରି ବୁଝୁଥିଲା। ଏହି ସମ୍ମିଳନୀରେ କର୍ମକର୍ତ୍ତା ନିର୍ବାଚନ ବେଳେ ମୋ ନାମ ଯୁଗ୍ମ-ସଂପାଦକ ରୂପେ ପ୍ରସ୍ତାବିତ ହୋଇଥିଲା। ଆଂଧ୍ର, ବଂବେ, ବଂଗ ଓ ଓଡ଼ିଶା ପ୍ରଦେଶର ପ୍ରତିନିଧିମାନେ ମୋତେ ସମର୍ଥନ କରିଥିଲେ। ମୁଁ ଯୁଗ୍ମ-ସଚିବ ଦାୟିତ୍ୱ ନେଇ ଓଡ଼ିଶାରେ ଖୁବ୍ ଜୋର୍‌ସୋରରେ କିଷାନ ସଭା କାର୍ଯ୍ୟକ୍ରମ ଚଳାଇଥିଲି। ଓଡ଼ିଶା କୃଷକ ସଂଘର ମୁଁ ମଧ୍ୟ କେତେ ବର୍ଷ ସଭାପତି ଥିଲି।

**ହଂସପଡ଼ା କୃଷକ ସମ୍ମିଳନୀ –**

ନିମାପଡ଼ା ନିକଟସ୍ଥ ହଂସପଡ଼ାଠାରେ ଏକ ବିରାଟ କୃଷକ ସମ୍ମିଳନୀ ହୋଇଥିଲା। ମୁଁ ସେଥିରେ ସଭାପତି ଥିଲି। ପ୍ରାୟ ଦଶହଜାରରୁ ଅଧିକ କୃଷକ, କୃଷାଣୀ ସେଥିରେ ଯୋଗଦେଇଥିଲେ। ମୋର ଏବେ ମଧ୍ୟ ମନେ ଅଛି, କେମିତି ତଲେଇ ବିଛାଯାଇ ସେଥିରେ ବୋଝ ବୋଝ ଭାତ ରଖାଯାଉଥିଲା। ହଜାର ହଜାର ଲୋକଂକୁ ଖଲିପତ୍ରରେ ଭାତ, ଡାଲମା ଓ ଖଟା ଖାଇବାକୁ ଦିଆଯାଉଥିଲା। ଏହି ସମ୍ମିଳନୀରେ ମୋହନ ଦାସ, ଗତିକୃଷ୍ଣ ସ୍ୱାଇଁ, ସାଧୁଚରଣ ମହାଂତି ଓ ନରସିଂହ ତ୍ରିପାଠୀ ପ୍ରମୁଖ ଯୋଗଦେଇଥିଲେ ଏବଂ ଉଦ୍‌ବୋଧନ ଦେଇଥିଲେ।

**ପଟିଆ ସମ୍ମିଳନୀ –**

ପଟିଆରେ ଆଉ ଏକ ବଡ଼ କୃଷକ ସମ୍ମିଳନୀ ହୋଇଥିଲା । ଏଥିରେ ମୁଁ, ଭଗବତୀଚରଣ ପାଣିଗ୍ରାହୀ, ଅନଂତ ପଟ୍ଟନାୟକ ଓ ବୈଦ୍ୟନାଥ ରଥ ପ୍ରଭୃତି ସଭାପତି ମଂଡଳୀରେ ଥିଲୁ । ଏ ସଭାରେ ପାଞ୍ଚ-ଛଅ ହଜାର ଲୋକ ଯୋଗଦେଇଥିଲେ । ବାରଂଗ, ଭୁବନେଶ୍ୱର, ମଂଚେଶ୍ୱର ଓ ପଟିଆ ପ୍ରଭୃତି ଅଂଚଳରୁ ବହୁ ଲୋକ ଚୁଡ଼ା ଚାଉଳ ବାଂଧି ସଭାକୁ ଆସିଥିଲେ । ସଭା ପରେ ଏକ ବଡ଼ ବଡ଼ ଗଛ ମୂଳେ ଅତିଥିମାନଂକ ପାଇଁ ରଂଧାବଢ଼ା ତଥା ଖିଆପିଆର ବ୍ୟବସ୍ଥା ହୋଇଥିଲା । ଫେରିବାବେଳେ ଟ୍ରେନ୍ ସମୟ ହୋଇଯିବାରୁ ଜଲ୍‌ଦି ଜଲ୍‌ଦି ଖାଇ ଷ୍ଟେସନ୍ ଆଡ଼କୁ ଚାଲିଲୁ । ଦରସିଝା ମାଛ ତରକାରି ଖୁବ୍ ସୁସ୍ୱାଦୁ ହୋଇଥିଲା । ସେଥିରେ କେବଳ ଲୁଣ ଓ ହଳଦୀ ପଡ଼ିଥିଲା । ସେ ତରକାରି କଥା ଭଗବତୀ ବାବୁ ଅନେକ ସମୟରେ କହୁଥିଲେ ।

**ଖୋର୍ଦ୍ଧା ସମ୍ମିଳନୀ –**

ଖୋର୍ଦ୍ଧାଠାରେ ଓଡ଼ିଶା କୃଷକ ସଂଘର ବାର୍ଷିକ ସମ୍ମିଳନୀ ହୋଇଥିଲା । ସେଥିକୁ ମଧ୍ୟ ବହୁ ଦୂରବର୍ତ୍ତୀ ଅଂଚଳରୁ ହଜାର ହଜାର ଲୋକ ଚାଲି ଚାଲି ଓ ଶଗଡ଼ ଗାଡ଼ିରେ ଆସିଥିଲେ । ଖୋର୍ଦ୍ଧା ପଲଟଣ ପଡ଼ିଆରେ ସମ୍ମିଳନୀ ବସିଥିଲା । ମୁଁ ଏଥିରେ ମୂଳ ରାଜନୈତିକ ପ୍ରସ୍ତାବଟି ଆଗତ କରିଥିଲି ଏବଂ ତାହା ସର୍ବ-ସମ୍ମତିକ୍ରମେ ଗୃହୀତ ହୋଇଥିଲା । ପ୍ରାଣନାଥ ପଟ୍ଟନାୟକ, ଗଂଗାଧର ପାଇକରାୟ ପ୍ରଭୃତି ମୋ ପ୍ରସ୍ତାବକୁ ସମର୍ଥନ କରିଥିଲେ ।

ରଞ୍ଜନାପୁରଠାରେ ମଧ୍ୟ ଏକ ବଡ଼ଧରଣର କୃଷକ ସଭା ହୋଇଥିଲା । ଏଥିରେ ଆଖପାଖ ଗଡ଼ଜାତ ଅଂଚଳରୁ ବହୁ କୃଷକ ଓ ନାରୀ ଯୋଗ ଦେଇଥିଲେ । ଯେତେଦୂର ମନେପଡ଼େ, ଏଥିରେ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ପ୍ରମୁଖ ଭାଷଣଦେଇଥିଲେ । ମୁଁ ମଧ୍ୟ ଏଥିରେ ଉଦ୍‌ବୋଧନ ଦେଇଥିଲି ।

ଏହିପରି କୃଷକ ଆଂଦୋଳନରେ ମୋର ଅଭିଜ୍ଞତା କଥା କହିବସିଲେ ଗୋଟିଏ ବଡ଼ ପୋଥି ହେବ । ମୋଟ ଉପରେ ଓଡ଼ିଶାର କୃଷକ ଆଂଦୋଳନ ମୋର ସଭାପତିତ୍ୱରେ ବଳିଷ୍ଠ ରୂପ ନେଇଥିଲା । ଏହା କଂଗ୍ରେସ ତଥା ଜାତୀୟ ଆଂଦୋଳନକୁ ଏକ ପ୍ରଗତିଶୀଳ ଆଭିମୁଖ୍ୟ ଦେଇଥିଲା ଏବଂ ସଂଗ୍ରାମୀ ଭୂମିକା ଆଡ଼କୁ ଆଗେଇନେଇଥିଲା । ଅଧିକାଂଶ ସଭା ସମ୍ମିଳନୀକୁ ଶଗଡ଼ରେ ଯିବାକୁ ହୋଇଥାଏ । ସେତେବେଳେ ବସ୍ ଚଳାଚଳ ଖୁବ୍ କମ୍ ଥିଲା । ତାଛଡ଼ା ବିଲବାଟରେ ଗାଡ଼ି ମଟର ବା ଚାଲିବ କେମିତି ? ଥରେ ଅଧେ ଆଡ୍‌ଭୋକେଟ୍ ଦୀନବଂଧୁ ସାହୁ (ପରେ ମଂତ୍ରୀ) ଓ ମୁଁ ଶଗଡ଼ରେ ଦୂର ଗାଁଗହଳରେ ହୋଇଥିବା କୃଷକ ସଭାରେ ଯୋଗଦେବାକୁ ଯାଇଥିଲୁ । ବାଟରେ ପ୍ରଚଂଡ ଖରାରେ ଶଗଡ଼ ଭିତରେ ଶୋଇପଡୁ । ବାଟରେ କେତେକ ଗ୍ରାମରେ ଏବଂ ସଭାସ୍ଥଳୀ ନିକଟରେ ଶହ

ଶହ ଲୋକଂକ ବାଜା, ମହୁରି, ସଂକୀର୍ତ୍ତନ, ଜୟଧ୍ୱନି ଓ ଶଂଖନାଦରେ ଉଠିପଡୁ। ବାଟଯାକ ଏହିପରି ଅଭ୍ୟର୍ଥନା ଚାଲିଥାଏ। ଗାଁରେ ତୋରଣମାନ ମଧ୍ୟ ତୋଳାଯାଇଥାଏ ଏବଂ ଘର ଦୁଆରମୁହଁରେ ପୂର୍ଣ୍ଣକୁମ୍ଭମାନ ସ୍ଥାପନ କରାଯାଇଥାଏ। ଜାତୀୟପତାକା ଓ କୃଷକ ସଂଘ ପତାକା ଉଡୁଥାଏ।

**ମୋ କବିତାର ଇଂରାଜୀ ଅନୁବାଦ ଓ**
**କବି ହରୀଂଦ୍ରନାଥ ଚଟ୍ଟୋପାଧ୍ୟାୟଂକ ଓଡ଼ିଶା ଆଗମନ—**

ଏହି ସମୟରେ ମୋର କେତେକ ପ୍ରଗତିଶୀଳ କବିତାର ଇଂରାଜୀ ଅନୁବାଦ ଭାରତର ପ୍ରଖ୍ୟାତ କବି ହରୀଂଦ୍ରନାଥ ଚଟ୍ଟୋପାଧ୍ୟାୟ କରିଥିଲେ। ହରୀଂଦ୍ରନାଥ ଥିଲେ ସରୋଜିନୀ ନାଇଡୁଂକ ସାନଭାଇ। ମୋର 'ଭାତ', 'ରୁଟି' ପ୍ରଭୃତି କବିତାର ସେ ସୁଂଦର ଇଂରାଜୀ ଭାଷାଂତର କରିଥିଲେ। ପରବର୍ଷ ତାଂକର ଦ୍ୱିତୀୟା ପତ୍ନୀ ସୁନୀତା ଦେବୀଂକ ସହିତ ଓଡ଼ିଶା ଆସି ମୋର ପ୍ରାୟ ଦୁଇ ମାସ ଅତିଥି ହୋଇଥିଲେ। ମୁଁ ସେତେବେଳେ ରାଣୀହାଟରେ 'ଆରତ' ତ୍ରୈମାସିକ ପତ୍ରିକା ଅଫିସରେ ରହୁଥିଲି। ସେହି ସମୟରେ ସେ ମୋର ବାଜି ରାଉତ କାବ୍ୟରୁ ଇଂରାଜୀ ଅନୁବାଦ କରିଥିଲେ। ତାହା ୧୯୪୨ ମସିହାରେ କଲିକତାରୁ 'The Boatman Boy and other Poems' ନାମରେ ପ୍ରକାଶପାଇଥିଲା। ହରୀଂଦ୍ରନାଥ ଇଂରାଜୀରେ ବହୁ କବିତା, ନାଟକ ପ୍ରଭୃତି ଲେଖି ଭାରତ ଓ ଭାରତ ବାହାରେ ବିଶେଷ ପ୍ରସିଦ୍ଧି ଲାଭକରିଥିଲେ। ସେ କରିଥିବା ମୋର 'ଭାତ'ର ଇଂରାଜୀ ଅନୁବାଦ କଟକ ଶ୍ରୀରାମଚଂଦ୍ର ଭବନରେ ଅନୁଷ୍ଠିତ ଏକ ସ୍ୱତଂତ୍ର ସାହିତ୍ୟ ସଭାରେ ସେ ନିଜେ ପାଠକରିଥିଲେ। ତାହା ଅତି ଚମତ୍କାର ହୋଇଥିଲା। ଏହି ସଭାରେ କଟକରେ ବହୁ ବିଶିଷ୍ଟ ବୁଦ୍ଧିଜୀବୀ, ଅଧ୍ୟାପକ ଓ ଛାତ୍ରଛାତ୍ରୀ ଯୋଗଦେଇଥିଲେ। ଏହାଛଡ଼ା 'ଦି ବଂବେ କ୍ରନିକାଲ୍' ସାପ୍ତାହିକ ପତ୍ରିକାରେ ଏସବୁ କବିତା ବହୁ ଚିତ୍ରଶୋଭିତ ହୋଇ ପ୍ରକାଶ ପାଉଥିଲା। ଏହାକୁ ପଢ଼ି ଭାରତର ବହୁ ବିଶିଷ୍ଟ ବ୍ୟକ୍ତି ମୋତେ ପ୍ରଶଂସା କରି ଚିଠି ଲେଖିଥିଲେ। ପାଠକଂକ ଆଶୁ ଅବଗତି ପାଇଁ ମୋ 'ଭାତ' କବିତାର ହରୀଂଦ୍ରନାଥକୃତ ଇଂରାଜୀ ଅନୁବାଦ ଏଠାରେ ଉଲ୍ଲେଖ କରାଗଲା।

### THE DYING WHO NEVER DIE

"Hunger burns like a bloody heat
Give me a share of food to eat.
Like a beggar I pray from morn to eve.
For my share which I have a right to recieve.

Do you forget, do you forget
That rice comes out of our toil and sweat?

Why! is your heart more hard than stone
That it doesnot melt when it hears our groan?
This world is full of plenty and wealth
Stocked and stored and gotten by stealth
The rich man walks with his head held high
And passes us by, just passes us by –
Was the dying who never die.

Does he forget, does he forget
We water his rice-fields with our sweat?
Without respite we toil and toil
We turn and sow and till the soil
Till our blood runs dry and our weak bones crack
And day-light grows to a glare of black.

Our wants and be wants of our starving sons
Are the handiwork of the wealthy ones
Whose craft and cunning, whose greed and grab.
Have made each of us tombe-stone slab.

Their mighty human foot is pressed
Upon our helpless human breast
The few on the many have set a ban
And now manfeds upon the flesh of man.
The wide green earth and the naked mud
Are stricken with death and stained with our blood.

I the poet of labour stand
With pen for weapon held in the hand
I stand and dream of the day to come
When man shall rise out of martyrdom.

Rise in the dawn of freedom when
A new red sun and my poet's pen
Shall sign the charter of man for men."

ଏହାଛଡ଼ା ବଂବେରୁ ପ୍ରକାଶିତ ଇଂରାଜୀ ପତ୍ରିକା 'The Kaiser-I-Hind' ର ତା ୧୫।୨।୪୨ ରବିବାର ସଂଖ୍ୟାରେ ସେ ମୋ ଲେଖାର ଏକ ମୂଲ୍ୟାୟନ ପ୍ରକାଶ କରିଥିଲେ। ଏହି ପ୍ରବଂଧରେ ସେ ମୋ ସାହିତ୍ୟକୃତି ଏବଂ ଜୀବନୀର ଏକ ଆଲେଖ୍ୟ ଦେଇଥିଲେ।

ଶ୍ରୀ ହରୀନ୍ଦ୍ରନାଥ ଚଟୋପାଧ୍ୟାୟ ଏବଂ ସୁନୀତା ଦେବୀ ସେଥର କଟକ

ଆସି ଇନ୍ଦ୍ରା ପଡ଼ିଆରେ ଭାରତ ସେବକ ଲକ୍ଷ୍ମୀନାରାୟଣ ସାହୁଙ୍କ ଘରେ ରହୁଥିଲେ। ମୁଁ ଏବଂ ନଳିନୀ ତାଙ୍କ ସଂଗେ ଦେଖାକଲୁ। ସେ କବିତାଗୁଡ଼ିକୁ ମୁଁ ଓ ନଳିନୀ ବଂଗଳା ଭାଷାରେ ଅନୁବାଦ କରିଥିଲୁ। ନଳିନୀ ସେଗୁଡ଼ିକ ସୁନ୍ଦର ବଂଗଳା ଅକ୍ଷରରେ ଲେଖିଦେଇଥିଲେ।

**ଜି.ଡି. ବିରଳାଙ୍କଠାରୁ ଚିଠି —**

ଏହି ସମୟରେ ମୁଁ ଭାରତରେ ପ୍ରମୁଖ ଶିଳ୍ପପତି ଜି.ଡି. ବିରଳାଙ୍କଠାରୁ ଖଣ୍ଡିଏ ଚିଠି ପାଇଥିଲି। ସେ ଚିଠିଟି ଥିଲା ଖଣ୍ଡିଏ ପୋଷ୍ଟକାର୍ଡ, ଓଡ଼ିଆରେ ପେନ୍‌ସିଲ୍‌ରେ ଲେଖା। ଚିଠିଟି ଲେଖିଥିଲେ ଜି.ଡି. ବିଳରାଙ୍କର ଓଡ଼ିଆ ସେବକ ଚିନ୍ତାମଣି ମହାକୁଳ।

ସେ ଲେଖିଥିଲେ ଯେ, ଜି. ଡି. ବିରଳା ଟ୍ରେନ୍‌ରେ ଯାଉଥିବାବେଳେ 'ଦି ବଂବେ କ୍ରନିକାଲ୍' ସାପ୍ତାହିକ ପତ୍ରିକାରେ ମୋ କବିତା ପଢ଼ି ଅନେକ ଖୁସି ହେଲେ। ମୁଁ ଆଉ କ'ଣ କବିତା ଲେଖିଛି ଏବଂ ସେଥିରୁ କେତେକ କବିତାର ନକଲ ଜି. ଡି. ବିରଳାଙ୍କୁ ପଠାଇବାକୁ ସେ ବିରଳାଙ୍କ ପକ୍ଷରୁ ଅନୁରୋଧ କରିଥିଲେ। ଚିଠିର ଠିକଣାରେ କେବଳ ଓଡ଼ିଆରେ ଦୁଇଧାଡ଼ି ଲେଖାଥିଲା। 'ସଚି ରାଉତରାୟ, ଉତ୍କଳ'। ମୁଁ ରହୁଥିବା ସହର ଗଳି ଇତ୍ୟାଦି ଲେଖା ନଥିଲା; ଏପରିକି ଓଡ଼ିଶା ନାମ ମଧ୍ୟ ଉଲ୍ଲେଖନଥିଲା। ଚିଠିଟି କିପରି ସୁଦୂର ଦିଲ୍ଲୀରୁ ଆସି କଟକର ରାଣୀହାଟରେ ମୋ ନିକଟରେ ପହଞ୍ଚିଲା — ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ବୋଧହୁଏ ଟ୍ରେନ୍‌ରେ କିଂବା ଡାକଘରେ ସି.ଆଇ.ଡି.ମାନେ, ଯେଉଁମାନେ କି ମୋ ଚିଠିପତ୍ର ସବୁବେଳେ ତନଖିକରୁଥିଲେ, ତାହା ପଢ଼ି ମୋର କଟକସ୍ଥିତ ରାଣୀହାଟରେ ଥିବା ବସାଠିକଣାରେ ଦେବାକୁ ଡାକଘରେ କହିଥିବେ; ନତୁବା ପୋଷ୍ଟ ଅଫିସ୍ କିପରି ଡେଲିଭରି ଦେଇଥାଂତା ?

ମୁଁ ସେ ଚିଠିଟି ପାଇ ଜି.ଡି. ବିରଳାଙ୍କ ଦିଲ୍ଲୀ ଠିକଣାରେ ମୋର ଅନ୍ୟ କେତେକ କବିତାର କପି, ଯଥା — 'ରୁଟି' କବିତାର ଇଂରାଜୀ ଅନୁବାଦ 'When Hunger Burns' ଯାହା ହରୀନ୍ଦ୍ରନାଥ ଅନୁବାଦ କରିଥିଲେ ଏବଂ ତାହା ସହିତ ମୁଁ ନିଜେ ଲେଖିଥିବା କେତେକ ଇଂରାଜୀ କବିତା ତାଙ୍କ ନିକଟକୁ ପଠାଇଦେଇଥିଲି। ତାଙ୍କ ସେକ୍ରେଟାରୀ ବି.ଏଲ୍. ପୁରୋହିତ ତାଙ୍କ ପକ୍ଷରୁ ମୋତେ ସେସବୁ କବିତା ପଠାଇଥିବାଯୋଗୁଁ ଧନ୍ୟବାଦ ଦେଇଥିଲେ ଏବଂ ସେଗୁଡ଼ିକର ପ୍ରାପ୍ତି ସ୍ୱୀକାର କରି ଚିଠି ଦେଇଥିଲେ। ଜି.ଡି.ଙ୍କ ସହିତ ମୋର ଯୋଗାଯୋଗ ସେତେବେଳେ ସେହି ପର୍ଯ୍ୟନ୍ତ ଥିଲା।

# ଏକବିଂଶ ଉଲ୍ଲାସ

## କଂଗ୍ରେସକାର୍ଯ – ପ୍ରଗତି-ସାହିତ୍ୟ

ମୁଁ ରେଭେନ୍‌ସା କଲେଜରେ ପଢ଼ିବାବେଳେ ୧୯୩୯ ମସିହାରୁ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭ୍ୟ ଥିଲି। ମୁଁ ସୁକିଂଦାରୁ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି (ପି.ସି.ସି.)କୁ ନିର୍ବାଚିତ ହୋଇଥିଲି। ମୋର ସଭ୍ୟପଦ କାଳ ପୂରିଯିବା ପରେ ମୁଁ ଖୋରଧାରୁ ପ୍ରଦେଶ କଂଗ୍ରେସ କମିଟିକୁ ନିର୍ବାଚିତ ହେବାକୁ ଚାହିଁଥିଲି। ଖୋରଧାର କେତେକ ବିଶିଷ୍ଟ କଂଗ୍ରେସକର୍ମୀ ମୋ ନାମ ପ୍ରସ୍ତାବ ଓ ଅନୁମୋଦନ କରିଥିଲେ। ପୁରୀ ଜିଲ୍ଲା କଂଗ୍ରେସ କମିଟି ଓ ପ୍ରଦେଶ କଂଗ୍ରେସ କମିଟିକୁ ପ୍ରାର୍ଥୀମାନଂକର ମନୋନୟନପତ୍ର ପୁରୀ ଢୁଢୁଓ୍ୱାଲା ଧର୍ମଶାଳାରେ ଯାଂଚ ହେବାକୁ ଥାଏ। ଯାଂଚ୍ ଅଫିସର୍ ଥାଆଂତି ପୂର୍ବତନ ବାଚ୍‌ସ୍ପତି ନଂଦକିଶୋର ଦାସ। ମୁଁ ନିଧାର୍ଯ ଦିନ ସକାଳ ପ୍ରାୟ ନଅଟାବେଳେ ପୁରୀରେ ପହଞ୍ଚିଲି। ଯାଂଚ୍ ହେବା ସମୟ ସାଢ଼େଦଶଟାରୁ ଅପରାହ୍ଣ ଚାରିଟା ପର୍ଯଂତ ଧାର୍ଯ ହୋଇଥାଏ। ମୁଁ ସିଧା ଯାଇ ପୁରୀର ବିଶିଷ୍ଟ ଓକିଲ ଓ କଂଗ୍ରେସ ନେତା ତଥା ପ୍ରସିଦ୍ଧ ଲେଖକ ଜଗବଂଧୁ ସିଂହଂକ ଘରେ କୁଂଢ଼େଇବେଂଟ ସାହିରେ ପହଞ୍ଚିଲି। ଜଗବଂଧୁ ସିଂହ ମୋର ମଉସା ହେବେ। ତାଂକ ସାନଭାଇ ସତ୍ୟବାଦୀ ସିଂହଂକୁ ହଳଦିଆର ଲାବଣ୍ୟ ମାଉସୀ ବିବାହକରିଥିଲେ। ଜଗବଂଧୁ ମଉସାଂକ ସ୍ତ୍ରୀ, ଯାହାଂକୁ ମୁଁ ମାଉସୀ ବୋଲି ଡାକୁଥିଲି, ଏବଂ ଲାବଣ୍ୟ ମାଉସୀ କହିଲେ, "ତୁ ଗାଧୋଇପଡ଼, ଖାଇଦେଇ କଂଗ୍ରେସ ଅଫିସକୁ ଯିବୁ।" ମୁଁ ଜଗବଂଧୁ ମଉସାଂକ ଦାଂଡ ଅଗଣାରେ ଥିବା କୂଅମୂଳେ ଗାଧୋଇବାକୁ ଗଲି। ଦେହରୁ କୁର୍ତା ଓ ବ୍ୟାଗ୍ ଇତ୍ୟାଦି କୂଅ ପାଖ ପିଂଡାରେ ରଖିଦେଲି।

**ଗାମୁଛା-ବିଭ୍ରାଟ –**

ବଡ଼ମାଉସୀ ଏକ ପାତଳା ଗାମୁଛା ଆଣି ମୋତେ ଦେଲେ। କହିଲେ, "ତୁ ଏଇ ଗାମୁଛା ପିଂଧି ଗାଧୋଇପଡ଼, ତା'ପରେ ପୋଛାପୋଛି ହୋଇ ଲୁଗାପଟା ପିଂଧିବୁ।" ମୁଁ ମୋ ଖଦଡ଼ ଧୋତି ପିଂଡାରେ ରଖିଦେଇ ଗାମୁଛା ପିଂଧି ବାଲ୍‌ଟିରେ କୂଅରୁ ପାଣି କାଢ଼ି ଗାଧୋଇଲି। ସେହି ଗାମୁଛାଟା ମିଲ୍ ସୂତାରେ ବୁଣା ହାତ-ତଂତ କପଡ଼ା ଥାଏ। ଗାଧୋଇ ସାରି ମୋ ଖଦଡ଼ ଧୋତି ଓ ପଂଜାବି ପିଂଧି ଗାମୁଛାଟିକୁ ଚିପୁଡ଼ି ମାଉସୀଂକୁ ନେଇ ଦେଲି। ତା'ପରେ ଖାଇଦେଇ କଂଗ୍ରେସ ଯାଂଚ୍ ଅଫିସକୁ ଗଲି।

ଜଗବଂଧୁ ମଉସାଂକ ଘରେ ମୁରାରି ତ୍ରିପାଠୀ ରହୁଥାଂତି। ସେ ମଧ୍ୟ ପୁରୀର ଜଣେ ନାମଜାଦା କଂଗ୍ରେସକର୍ମୀ; କଂଗ୍ରେସ କାମ ଛଡ଼ା ସମାଜସେବା କାମ ମଧ୍ୟ କରଂତି। ମୁଁ ଗାଧୋଇଲାବେଳେ ସେ ଥରେ ଦୁଇଥର କୂଅ ପାଖ ପିଂଡାରେ ବୁଲି ଚାଲିଗଲେ। ମୁରାରି ତ୍ରିପାଠୀଂକୁ ଆମେ ସମସ୍ତେ 'ମୁରାରି ଭାଇନା' ବୋଲି ଡାକୁଥିଲୁ। ସେ ବଡ଼ ନବଳିଆ ଲୋକ। ଦେଖାହେଲେ ଆଗ ହାତଟାକୁ ମୋଡ଼ିଦେବେ। 'ଆଃ... ଆଃ... କାଟୁଛି' ବୋଲି ପାଟିକଲେ ସେ ହାତ ଛାଡ଼ିଦେବେ। ତାଂକ ପରିଧାନ ଥିଲା ଖଦଡ଼ର ଶାଗୁଆ ରଂଗର ହାଫ୍ ସାର୍ଟ ଓ ହାଫ୍ ପ୍ୟାଂଟ। ସେ ତାକୁହିଁ ପିଂଧି ସାଇକେଲରେ ପୁରୀ ସହର ବୁଲୁଥିଲେ।

ମୋ ନାମ ଡକାହେଲା। ମୁଁ ଯାଇ ଯାଂଚ ଅଫିସର ନଂଦକିଶୋର ଦାସଂକ ପାଖରେ ପହଂଚିଲି। ସେ ମୋତେ ବସିବାକୁ କହି ମୋ ମନୋନୟନ ପତ୍ରଟିକୁ ଭଲଭାବେ ପରୀକ୍ଷା କଲେ। ମୁଁ ଏବଂ ମୋ ପ୍ରସ୍ତାବକ ଓ ସମର୍ଥକ କଂଗ୍ରେସ ସଭ୍ୟ ଅଛଂତି କି ନାହିଁ, ତାହା କଂଗ୍ରେସ ଭୋଟର ତାଲିକାରୁ ଯାଂଚକଲେ। ତା'ପରେ କହିଲେ, 'ଠିକ୍ ଅଛି'। ମୁଁ ଖୁସିହୋଇ ଉଠି ଫେରିବାକୁ ବାହାରିଲି। ତା'ପରେ ସେ ଟିକେ ଗଂଭୀର ହୋଇ ପଚାରିଲେ– ''ତମେ ଜଗବଂଧୁ ସିଂହଂକ ଘରେ ଆଜି ଗାଧୋଇ ଖାଇବା-ପିଇବା କରିଥିଲ?'' ମୁଁ କହିଲି– ହଁ। ସେ ପୁଣି ପଚାରିଲେ– ''ତମେ ମିଲ୍ ଗାମୁଛା ପିଂଧି ଗାଧୋଇଥିଲ?'' ମୁଁ ଟିକେ ଥତମତ ହୋଇଗଲି। ମୁଁ କିଛି କହିବା ଆଗରୁ ସେ କହିଲେ, ''ମୁରାରି ତ୍ରିପାଠୀ କହିଲେ, ତୁମେ ମିଲ୍ ଗାମୁଛା ପିଂଧି ଗାଧୋଇଥିଲ। ଏହା ସତ କି ମିଛ?'' ମୁଁ କହିଲି, ''ମୁଁ ତ ୫ ମିନିଟ୍‌ରେ ଗାଧୁଆ ଶେଷକଲି।'' ସେ କହିଲେ– ''୫ ମିନିଟ୍ ହେଉ ବା ୫ ସେକେଂଡ୍ ହେଉ, ତୁମେ ମିଲ୍ ଲୁଗା ପିଂଧିଥିବା ହେତୁ ପ୍ରାର୍ଥୀ ତାଲିକାରୁ କଟିଗଲ।'' ପ୍ରତ୍ୟେକ କଂଗ୍ରେସ ସଭ୍ୟ ଖଦଡ଼ ପିଂଧିବା ଏକ କଡ଼ା ନିୟମ ଥିଲା। ମୁଁ ମିଲ୍ ଗାମୁଛା ପିଂଧି ଗାଧୋଇଥିବାରୁ ମୋ ପ୍ରାର୍ଥୀପତ୍ର କାଟ୍‌ଖାଇଗଲା। ମୁଁ ମନୋଦୁଃଖରେ ଘରକୁ ଫେରିଲି। ମୁଁ ସେତେବେଳେ ଆମ ଗାଁ ଖୋରଧା ପାଖ ଗୁରୁଜଂଗରେ ଥିଲି।

ସେହିଦିନୁ ମୁଁ ନଂଦକିଶୋର ଦାସ ଓ ମୁରାରିଭାଇନାଂକୁ ହାଡ଼େ ହାଡ଼େ ଚିହ୍ନିଲି। ଏହାର ବହୁବର୍ଷ ପରେ ନଂଦକିଶୋର ଦାସ ମୋ କଟକ ଘରକୁ ବହୁବାର ଆସି ତାଂକ ଗ୍ରାମ ସୋରରେ ହେଉଥିବା ରାଧାନାଥ ଜୟଂତି ଉତ୍ସବରେ ମୁଖ୍ୟଅତିଥି ରୂପେ ଯୋଗଦେବାକୁ ମୋତେ ଅନୁରୋଧ କରିଛଂତି। ମାତ୍ର କେତେକ ଅନିବାର୍ଯ୍ୟ ଅସୁବିଧାବଶତଃ ମୁଁ ତାଂକ ଅନୁରୋଧ ରକ୍ଷା କରିପାରିନାହିଁ।

**ସାଂଗଠନିକ ନିର୍ବାଚନ–**

ତା' ପରବର୍ଷ ସାଂଗଠନିକ ନିର୍ବାଚନ ଆସିଲା। ମୁଁ ଖୋରଧା ନିର୍ବାଚନ ମଂଡଳୀରୁ ପି.ସି.ସି.କୁ ନିର୍ବାଚନ ଲଢ଼ିବା ପାଇଁ ପ୍ରାର୍ଥୀପତ୍ର ଦାଖଲ କରିଥିଲି।

ମୋର ପ୍ରତିଦ୍ୱନ୍ଦ୍ୱୀ ଥିଲେ ବାଙ୍କପୁରର ଚିଂତାମଣି ମିଶ୍ର। ଚିଂତାମଣିବାବୁ ପଂଡିତ ନୀଳକଂଠଂକର ଅଂତରଂଗ ସହଯୋଗୀ ଥିଲେ। ସେ 'ନବଭାରତ' ପତ୍ରିକା ଓ 'ଲୋକମତ' ନାମକ ସାପ୍ତାହିକ ପତ୍ରିକା ପ୍ରକାଶନରେ ପଂଡିତ ନୀଳକଂଠଂକୁ ସାହାଯ୍ୟ କରୁଥାଂତି। ସେ ହରେକୃଷ୍ଣ ମହତାବ ଓ ବିଶ୍ୱନାଥ ଦାଶଂକୁ ଘୋର ସମାଲୋଚନା କରି ଲେଖୁଥାଂତି। ମାତ୍ର ମହତାବ ମୁଖ୍ୟମଂତ୍ରୀ ହେବା ପରେ ସେ ଭେକ ବଦଳାଇ ପ୍ରଥମେ ଲୋକସଂପର୍କ ଅଫିସର ଏବଂ ପରେ ସେହି ବିଭାଗର ସେକ୍ରେଟାରୀ ମଧ୍ୟ ହୋଇପାରିଥିଲେ।

ଭୋଟ ଦିନ ଆସିଲା। ଗୋଟିଏ ବୁଥ୍‌ରେ ଚିଂତାମଣିବାବୁଂକ ପୋଲିଂ ଏଜେଂଟ ଥିଲେ ପଂଡିତ ଗୋଦାବରୀଶ ମିଶ୍ର। ମୋର ପ୍ରଧାନ ସମର୍ଥକ ଥିଲେ ତାପଂଗ ନରଣଗଡ଼ ପ୍ରଭୃତିର କଂଗ୍ରେସ ଭୋଟରମାନେ। ସେମାନଂକ ମଧ୍ୟରୁ ପ୍ରାୟ ଅଢ଼େଇ ଶହ ଭୋଟର ଦଳ ବାନ୍ଧି ଆସୁଥିଲେ। ବୁଥ୍‌ଠାରୁ ମାତ୍ର ଶହେ ଗଜ ଦୂରରେ ଥିବା ବରଗଛମୂଳରେ ସେମାନେ ପହଂଚିଲାବେଳକୁ ୫ଟା ବାଜିଗଲା ଏବଂ ଭୋଟଦାନ ବଂଦହୋଇଗଲା। ମୁଁ ଅଳ୍ପ କେତେକ ଭୋଟରେ ହାରିଗଲି।

**ପ୍ରଗତିଶୀଳ ଲେଖକ ସମ୍ମିଳନୀ –**

ମୁଁ ୧୯୪୦ ମସିହାରେ ଓଡ଼ିଶାରେ ଏକ ପ୍ରଗତିଶୀଳ ଲେଖକ ସମ୍ମିଳନୀ ଆୟୋଜନ କରିଥିଲି। ଏଥିରେ ଓଡ଼ିଶାର ସବୁ ଜିଲ୍ଲାରୁ ଏବଂ ବିଚ୍ଛିନ୍ନାଞ୍ଚଳରୁ ବହୁ ପ୍ରଗତିଶୀଳ ଲେଖକ-ଲେଖିକା ଯୋଗଦେଇଥିଲେ। ଦୁଇ ଦିନଧରି ଏହି ସମ୍ମିଳନୀ କଟକ ଶ୍ରୀରାମଚଂଦ୍ର ଭବନରେ ଅନୁଷ୍ଠିତ ହୋଇଥିଲା। ପ୍ରଥମ ଦିନ ଅଧିବେଶନରେ ସୁପରିଚିତ ପ୍ରଗତିବାଦୀ ବଂଗଳାସାହିତ୍ୟିକ ପ୍ରଫେସର୍ ସୁରେଂଦ୍ରନାଥ ଗୋସ୍ୱାମୀ ମୁଖ୍ୟଅତିଥି ରୂପେ ଭାଷଣ ଦେଇଥିଲେ। ଦ୍ୱିତୀୟ ଦିନ ଅଧିବେଶନରେ ବଂଗଳାର ଲବ୍ଧପ୍ରତିଷ୍ଠ ପ୍ରଗତିଶୀଳ ଲେଖକ ଅଧ୍ୟାପକ ଗୋପାଳ ହାଲ୍‌ଦାର ମୁଖ୍ୟଅତିଥି ରୂପେ ଯୋଗଦେଇଥିଲେ। ଅଧ୍ୟାପକ ହାଲ୍‌ଦାର କେତେକ ପ୍ରଗତିଶୀଳ ସାହିତ୍ୟ ରଚନାକରି ସାରା ଭାରତରେ ପ୍ରସିଦ୍ଧି ଲାଭକରିଥିଲେ। ତାଂକ ପ୍ରଣୀତ 'ସଂସ୍କୃତିର ରୂପାଂତର' ପୁସ୍ତକଟି କଲିକତାର 'ପୁଂଥି ଘର' ପ୍ରକାଶ କଲା ପରେ ତାଂକୁ ପ୍ରଗତି ସାହିତ୍ୟର ଜଣେ ପ୍ରାମାଣିକ ଲେଖକ ବୋଲି ଗଣାଯାଉଥିଲା।

ଅଧ୍ୟାପକ ଗୋସ୍ୱାମୀ ଓ ଅଧ୍ୟାପକ ହାଲ୍‌ଦାର ନିଜ ନିଜ ଭାଷଣରେ ପ୍ରଗତି ସାହିତ୍ୟର 'ଭୂମି ଓ ଭୂମିକା' ସଂବଂଧରେ ସୁଂଦରଭାବେ ବୟାନ କରିଥିଲେ; ଏହାର ଆଂଗିକ ଓ ଆତ୍ମିକ ଏବଂ ଆଭିମୁଖ୍ୟ ସଂବଂଧରେ ସୂଚନା ଦେଇଥିଲେ। ଭାରତରେ ୧୯୩୪ ମସିହାରେ ନିଖିଳ ଭାରତ ପ୍ରଗତିଶୀଳ ଲେଖକ ସଂଘ ଗଢ଼ିଉଠିଥିଲା। ବିଭିନ୍ନ ପ୍ରଦେଶରେ ତାର ଶାଖାମାନ ମଧ୍ୟ ସ୍ଥାପିତ ହୋଇଥିଲା। ଓଡ଼ିଶାରେ 'ନବଯୁଗ ସାହିତ୍ୟ ସଂସଦ' ମଧ୍ୟ ଗଢ଼ାଯାଇଥିଲା। ଏହାର ଉଦ୍ୟୋକ୍ତାମାନେ ଥିଲେ ଭଗବତୀଚରଣ ପାଣିଗ୍ରାହୀ, ଅନଂତ ପଟ୍ଟନାୟକ, ବିଶ୍ୱନାଥ ପଶାୟତ,

ବୈଦ୍ୟନାଥ ରଥ ପ୍ରମୁଖ ଲେଖକ ଓ ସାହିତ୍ୟପ୍ରେମୀ ଯୁବକମାନେ। ମୁଁ ସେତେବେଳେ କଲିକତାରେ ପଢୁଥାଏ। ନବଯୁଗ ସାହିତ୍ୟ ସଂସଦ ତରଫରୁ 'ଆଧୁନିକ' ନାମକ ଏ ପ୍ରଗତିଶୀଳ ପତ୍ରିକା ପ୍ରକାଶପାଇଥିଲା। ଏଥିରେ ମୋର କେତେକ ଲେଖା ଏବଂ 'ଚିତ୍ରଗ୍ରୀବ' ଉପନ୍ୟାସର ଏକ ବିଜ୍ଞାପନ ପ୍ରକାଶପାଇଥିଲା।

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେବ ଯେ ନବଯୁଗ ସାହିତ୍ୟ ସଂସଦ ଓ 'ଆଧୁନିକ' ପତ୍ରିକା ପ୍ରକାଶର ବହୁ ପୂର୍ବରୁ ମୋର କେତେକ ପ୍ରଗତିଶୀଳ ଓ ମାର୍କ୍ସବାଦୀ ରଚନା ଯଥା– 'ଚିତ୍ରଗ୍ରୀବ' ଓ 'ଅଭିଯାନ'ର ବହୁ କବିତା ଏବଂ 'ପ୍ରେମ ଓ ପଣ୍ୟ' ନାମକ ଏକ ପ୍ରବନ୍ଧ ପୁସ୍ତକ ପ୍ରକାଶ ପାଇସାରିଥିଲା।

ସର୍ବଭାରତୀୟ ପ୍ରଗତିଶୀଳ ଲେଖକ ସଂଘର ସଭାପତି ଥିଲେ ହିନ୍ଦୀ ଭାଷାର ପ୍ରସିଦ୍ଧ ଔପନ୍ୟାସିକ ପ୍ରେମ୍‌ଚନ୍ଦଜୀ ଏବଂ ସାଧାରଣ ସଂପାଦକ ଥିଲେ ଡ. ସାଜାଦ୍ ଜହିର। କଲିକତାରେ ମଧ୍ୟ ଏହାର ଏକ ଶାଖା ସ୍ଥାପନ କରାଯାଇଥିଲା।

**ପ୍ରଗତି ସାହିତ୍ୟର ନାନ୍ଦୀ ମୁଖ –**

ପ୍ରଗତି-ସାହିତ୍ୟ ଦେଶର ସଂଖ୍ୟାଗରିଷ୍ଠ ଉତ୍ପାଦକଶ୍ରେଣୀ, ଯେଉଁମାନଙ୍କର ସଂଖ୍ୟା ଶତକଡ଼ା ୯୦ ଭାଗ, ଯଥା– ଚାଷୀ, ମୂଲିଆ, ଶ୍ରମିକ ଓ ନିମ୍ନ-ମଧ୍ୟମ ବର୍ଗର ଜୀବନଚିତ୍ର ଏବଂ ସେମାନଙ୍କର ଆଶା, ଆକାଂକ୍ଷା, ସୁଖ-ଦୁଃଖ ଓ ସଂଘର୍ଷର ବିଶ୍ୱସ୍ତ ପ୍ରତିଫଳନ ହେବାକୁ ଚାହେଁ। ଏଥିରେ ଜୀବନର ବସ୍ତୁନିଷ୍ଠ ପରିପ୍ରକାଶ ଓ ବିଜ୍ଞାନସମ୍ମତ ଦୃଷ୍ଟିଭଂଗୀ ଦେଖିବାକୁ ମିଳେ। ଜାତୀୟ ଜୀବନର ମହାସ୍ରୋତ ସହିତ ସମନ୍ୱୟ ରକ୍ଷାକରିବା ଏହାର ପ୍ରଧାନ ଉଦ୍ଦେଶ୍ୟ। ଏହା ଜୀବନର ଦ୍ୱଂଦ୍ୱାତ୍ମକ ପରିବର୍ତ୍ତନରେ ବିଶ୍ୱାସକରେ। ପରିମାଣାତ୍ମକ ପରିବର୍ତ୍ତନ ଗୁଣାତ୍ମକ ପରିବର୍ତ୍ତନରେ ରୂପାଂତରିତ ହୁଏ – ଏହି ବିଚାରଧାରା ଉପରେ ପ୍ରଗତି ସାହିତ୍ୟ ପ୍ରତିଷ୍ଠିତ। ଯେଉଁ ସାହିତ୍ୟ ଏହାର ବ୍ୟତିକ୍ରମ କରେ, ତାକୁ ମେରୁଦଂଡହୀନ (Sapine), ପ୍ରତିକ୍ରିୟାଶୀଳ ଏବଂ ପଳାୟନପଂଥୀ କହିବାକୁ ପ୍ରଗତିଶୀଳ ସାହିତ୍ୟିକ ପଛାଏନାହିଁ।

ନିଖିଳ ଭାରତ ପ୍ରଗତିଶୀଳ ଲେଖକ ସଂଘ ଏକ ମେନିଫେଷ୍ଟୋ ବା ଘୋଷଣାନାମା ପୁସ୍ତିକାକାରରେ ପ୍ରକାଶକରିଥିଲେ। ସେଥିରେ ସାହିତ୍ୟର ଧର୍ମ ଓ ଧାରଣା ଏବଂ ଅଭିବ୍ୟକ୍ତି ଓ ଉଚ୍ଚାରଣ ସଂବଂଧରେ ଆଲୋଚନା କରାଯାଇଛି।

ଜୀବନର ଦ୍ୱଂଦ୍ୱାତ୍ମକ ପରିବର୍ତ୍ତନ ଏବଂ ଐତିହାସିକ କ୍ରମପରିଣାମ ପ୍ରଗତି ସାହିତ୍ୟର ପ୍ରାଣବସ୍ତୁ। ପ୍ରତ୍ୟେକ ବସ୍ତୁର କାର୍ଯକାରିତା ସମନ୍ୱିତ ବିକାଶଧାରା ଉପରେ ପ୍ରଗତି ସାହିତ୍ୟ ଆଲୋକପାତ କରେ। ଏହା ସାହିତ୍ୟର ଅଂଗୀକାର ସଂବଂଧରେ ସଚେତନ। ଏହା ସମାଜର ପରିବର୍ତ୍ତନ ଘଟାଇବାକୁ ଚାହେଁ। ଲଂଡନର ହାଇଗ୍ରେଟ୍ ଷ୍ଟ୍ରୀଟରେ ଥିବା ମାର୍କ୍ସଂକ ସମାଧିରେ ଯେଉଁ ଫଳକଟି ରହିଛି, ସେଥିରେ ଦେଖିଲି, ସୁନେଲି ଅକ୍ଷରରେ ଲେଖାଅଛି ମାର୍କ୍ସଂକର ଗୋଟିଏ ଉକ୍ତି–

"Philosophers have interpreted the World in various ways. But the point is to change it."

କେତେକ ସନାତନୀ ସାହିତ୍ୟିକ ପ୍ରଶ୍ନ କରଂତି, ସାହିତ୍ୟ ମାଧ୍ୟମରେ କ'ଣ ସମାଜର ପରିବର୍ତନ କରିବା ସଂଭବ? ଏହାର ଦୃଷ୍ଟାଂତ ରାମାୟଣ ଓ ମହାଭାରତ ପ୍ରଭୃତି ଗ୍ରଂଥ, ଯାହା ଭାରତୀୟ ଚରିତ୍ରକୁ ଯଥେଷ୍ଟ ବଦଳାଇଦେଇଛି। ବଂକିମ ଚଂଦ୍ର କେବଳ ଗୋଟିଏ କବିତା ଲେଖିଥିଲେ– 'ବଂଦେ ମାତରମ୍'। ଏହା ଏକ ଶତାବ୍ଦୀରୁ ଊର୍ଦ୍ଧ୍ୱ କାଳଧରି ଭାରତୀୟ ସମାଜ ଓ ଭାରତବାସୀଂକ ଦୃଷ୍ଟିକୋଣରେ ବହୁ ପରିବର୍ତନ ଆଣିଦେଇପାରିଛି। ପାଶ୍ଚାତ୍ୟର ଦୃଷ୍ଟାଂତ ମଧ୍ୟ ଦିଆଯାଇପାରେ। ଫରାସୀ ବିପ୍ଳବୀଂକୁ ରୁଷୋ ଓ ଭଲଟେୟାର୍ ପ୍ରଭୃତିଂକ ଅବଦାନ ଏବଂ ରୁଷ-ବିପ୍ଳବ ଉପରେ ମାର୍କ୍ସ, ଏଂଙ୍ଗେଲସ୍, ଟଲଷ୍ଟୟ, ଗର୍କୀ ପ୍ରଭୃତିଂକ ସାହିତ୍ୟର ପ୍ରଭାବ ସଂବଂଧରେ ସମସ୍ତେ ଜାଣଂତି। ମୋଟକଥା ହେଲା, ପରିବର୍ତନହିଁ ଜୀବନର ମୂଳତତ୍ତ୍ୱ ଏବଂ ସାହିତ୍ୟର ମୁର୍ଧନ୍ୟ ସ୍ୱର।

ମାତ୍ର ଆର୍ଟ ତତ୍ତ୍ୱ ଅନୁସାରେ ଆର୍ଟର ବିବକ୍ଷିତ ପ୍ରଚ୍ଛନ୍ନ ରହିବା ଉଚିତ। କୌଣସି ଜିନିଷକୁ ଯଦି ଖୋଲାଖୋଲି ଭାବେ ବା ପ୍ରଚାରମୂଳକ ଭାବରେ କୁହାଯାଏ, ତେବେ ତାହା ଉଦ୍ଦେଶ୍ୟମୂଳକ ହୋଇପଡ଼ିବ ଏବଂ ପ୍ରୋପାଗାଂଡା ସ୍ତରକୁ ଖସିଆସିବ। କାର୍ଲ ମାର୍କ୍ସ ମଧ୍ୟ ସେହି କଥା କହିଯାଇଛଂତି– "Art lies in concealing itself"। ପ୍ରତ୍ୟେକ ପ୍ରଗତିଶୀଳ ସାହିତ୍ୟିକ ଏହା ମନେରଖିବା ଉଚିତ।

ମୋର 'ବାଜି ରାଉତ' କାବ୍ୟର ହରୀଂଦ୍ରନାଥକୃତ ଇଂରାଜୀ ଅନୁବାଦ 'The Boatman Boy' କଲିକତାରୁ ୧୯୪୨ ମସିହାର ପ୍ରକାଶ ପାଇବା ପରେ ଏହାର ସମୀକ୍ଷା ବିଖ୍ୟାତ ପ୍ରଗତିଶୀଳ ଲେଖକ ଡ. ସାଜାଦ୍ ଜହିର 'People's War', Bombay (1.3.1943) ପତ୍ରିକାରେ କରିଥିଲେ। ସେ ଲେଖିଥିଲେ ଯେ "ଏ ବହିଟି ହେଉଛି ପ୍ରଗତି ସାହିତ୍ୟର ଏକ ଶ୍ରେଷ୍ଠ ନମୁନା; କାରଣ ଏଥିରେ କବି ଲୋକଂକଠାରୁ ଯାହା ପାଇଛି, ତାକୁଇ ଚମତ୍କାର ଓ ରସୋତ୍ତୀର୍ଣ କବିତା ଆକାରରେ ଲୋକଂକୁହିଁ ଫେରାଇଦେଇଛି। ଏହା ପ୍ରଗତି ସାହିତ୍ୟର ସଂଜ୍ଞା ଓ ସ୍ୱରୂପ ନିରୂପଣ କରିବାରେ ସାହାଯ୍ୟକରେ।"

**କଟକରେ ହାରୀନ୍ ଦାଂକ ରହଣି**
**ଓ 'ବାଜି ରାଉତ'ର ଇଂରାଜୀ ଅନୁବାଦ –**

୧୯୪୨ ମସିହା ପ୍ରାରଂଭରେ ହରୀଂଦ୍ରନାଥ ଚଟୋପାଧ୍ୟାୟ ଓ ତାଂକ ଦ୍ୱିତୀୟ ପକ୍ଷର ସ୍ତ୍ରୀ ସୁନୀତା ଦେବୀ କଟକ ଆସଂତି। ମୋର ରାଣୀହାଟ ବସାରେ ସେମାନେ ପ୍ରାୟ ଦୁଇମାସ ମୋର ଅତିଥିରୂପେ ରହିଥିଲେ। ହରୀଂଦ୍ରନାଥ ଚଟୋ-ପାଧ୍ୟାୟ କବି ଓ ଜନନେତ୍ରୀ ସରୋଜିନୀ ନାଇଡୁଂକ ସାନଭାଇ। ତାଂକର ଜନ୍ମ

ଇଂଲଂଡରେ ହୋଇଥିଲା, କାରଣ ତାଂକ ପିତା ଅଘୋର ନାଥ ଚଟୋପାଧ୍ୟାୟ ସେତେବେଳେ ସପରିବାର ଲଂଡନରେ ରହୁଥିଲେ। ହରୀଂଦ୍ର ନାଥଂକୁ ଆମେ ସମସ୍ତେ ହାରିନ୍ ଦା' ବୋଲି ଡାକୁଥିଲୁ। ହାରିନ୍ ଦାଂକର ପ୍ରଥମ ପତ୍ନୀ ଥିଲେ ସୁପ୍ରସିଦ୍ଧା କମଳା ଦେବୀ ଚଟୋପାଧ୍ୟାୟ। କେତେକ ବର୍ଷ ପରେ ସେମାନଂକର ବିବାହ-ବିଚ୍ଛେଦ ଘଟିଥିଲା। ଏହାର କେତେକ ବର୍ଷ ପରେ ହାରିନ୍ ଦା' ବଂବେର ଜଣେ ଅଭିନେତ୍ରୀ ସୁନୀତା ଦେବୀଂକୁ ବିବାହ କରଂତି। ସୁନୀତା ଦେବୀ ଖୁବ୍ ସ୍ନେହଶୀଳା ଓ ମିଷ୍ଟାଳାପୀ ମହିଳା ଥିଲେ। ମୋର ଗୋଟିଏ ଚାକରଟୋକା ଥାଏ। ସେ ଘର ସଫା କରିବାଠାରୁ ରୋଷେଇବାସ ପର୍ଯ୍ୟଂତ ସବୁ କାମ କରୁଥିଲା। ତାର ରୋଷେଇ ସେତେ ରୁଚିକର ନଥିଲା। ଦୁଇ-ତିନିଦିନ ତା ରାଂଧଣା ଖାଇବା ପରେ ହାରିନ୍ ଦା' ଓ ସୁନୀତା ଦେବୀଂକର ଅରୁଚିଧରିଗଲା। ଶେଷରେ ସୁନୀତା ଦେବୀ ନିଜେ ରୋଷଇ କରିବାକୁ ଲାଗିଲେ। ସେ ରାଂଧଂତି; ଆମେ ଖାଉ। ତାଂକ ରାଂଧଣା ବେଶ୍ ତୃପ୍ତିକର।

ହାରିନ୍ ଦା' ମୋ 'ବାଜି ରାଉତ' କାବ୍ୟର ସୁଖ୍ୟାତି ଏଥିପୂର୍ବରୁ ଶୁଣିଥିଲେ। ସେ ତାହାର ଇଂରଜୀ ଭାଷାଂତର କରିବାକୁ ଚାହିଁଲେ। ମୁଁ ଓ ନଳିନୀ ବାଜି ରାଉତ କାବ୍ୟର ବଂଗଳା ଅନୁବାଦ କରିଥିଲୁ। ନଳିନୀ ତାହାକୁ ସୁଂଦର ବଂଗଳା ଅକ୍ଷରରେ ଗୋଟିଏ ଖାତାରେ ଲେଖିଥିଲା। ମୁଁ ସେ ଖାତାଟି ହାରିନ୍ ଦାଂକୁ ଦେଲି। ମୁଁ ଭାବିଥିଲି, ବଂଗଳାରୁ ଇଂରାଜୀ ଅନୁବାଦ କରିବା ତାଂକ ପକ୍ଷରେ ସହଜହେବ। ମାତ୍ର ସେ ଖାତାଟିକୁ ଦେଖି ମୋତେ ଫେରାଇଦେଲେ। କହିଲେ, "ତୁମେ ଇଂରାଜୀରେ ଏହାର ଗଦ୍ୟାନୁବାଦ କର; ମୁଁ ତାହାକୁ କବିତାରେ ରୂପାଂତରିତ କରିବି।"

ଏହାର କାରଣ କ'ଣ, ମୁଁ କିଛି ବୁଝିପାରିଲିନାହିଁ। ପରେ ଜାଣିଲି ହାରିନ୍ ଦା ବଂଗାଳୀ ହେଲେ ମଧ୍ୟ ଭଲ ବଂଗଳା ଜାଣଂତିନାହିଁ। ତାଂକର ଜନ୍ମ ଇଂଲଂଡରେ ହୋଇଥିଲା; ବାଲ୍ୟକାଳ ମଧ୍ୟ ଇଂଲଂଡରେ କଟିଥିଲା। ସେ ଭାରତ ଆସି କିଛି ଦିନ ହାଇଦ୍ରାବାଦରେ କଟାଇଥିଲେ, କାରଣ ତାଂକ ପିତା ଅଘୋରନାଥ ହାଇଦ୍ରାବାଦ ନିଜାମଂକର ଦେୱାନ୍ ଥିଲେ।

ସରୋଜିନୀ ମଧ୍ୟ ଇଂଲଂଡରୁ ଆସି ହାଇଦ୍ରାବାଦରେ ତାଂକର ତରୁଣାବସ୍ଥା କଟାଇଥିଲେ ଏବଂ ମି. ନାଇଡୁଂକୁ ବିବାହ କରିଥିଲେ। ହାରିନ୍ ଦା' ବଂବେକୁହିଁ ନିଜର କର୍ମକ୍ଷେତ୍ରରୂପେ ବାଛିନେଇଥିଲେ। ସେ ପ୍ରାୟ ସେଠାରେ ରହୁଥିଲେ। ଭାରତ ସ୍ୱାଧୀନ ହେବା ପରେ ସେ ଆଂଧ୍ରରୁ (ଲୋକସଭା)କୁ ନିର୍ବାଚିତ ହୋଇଥିଲେ। ହାରିନ୍ ଦା' ଇଂରାଜୀରେ ବହୁ ପୁସ୍ତକ ଲେଖିଛଂତି। ସେଥିମଧ୍ୟରେ 'The Hunters of Kalahasti' ବେଶ୍ ବିଖ୍ୟାତ। ସେ ହିଂଦୀରେ ମଧ୍ୟ ବହୁ କବିତା ଲେଖିଛଂତି। ମୁଁ 'ବାଜିରାଉତ' କାବ୍ୟର ଇଂରାଜୀ ଗଦ୍ୟ ଅନୁବାଦ ବା Phrasing

କରିଦେଉଥାଏ, ସେ ତାହାକୁ ଇଂରାଜୀ ପଦ୍ୟରେ ଭାଷାଂତରିତ କରୁଥାଂତି। ସେ କିଂତୁ ଆକ୍ଷରିତ ଅନୁବାଦ କରୁନଥାଂତି– ଇଂରାଜୀ ଅନୁବାଦରେ ଯଥେଷ୍ଟ ସ୍ୱାଧୀନତା ରଖିଥିଲେ। ତାଂକ 'ବାଜି ରାଉତ' ଇଂରାଜୀ ଅନୁବାଦର କିଛି ଅଂଶ ତଳେ ଦେଲି।

RED FLOWER

"This is no funeral-flame, Comrade.
No funeral-flame, but freedom's leaping-flame.
To cleave the countries darks of deaths and shame.
A sacrificial mystery.
Of death turned life... Flame beyond Price
Lo, you have affered unto history.
The countries supremest bud of breath.
Extremest symbol of high Sacrifice-
Our Boat-man-Boy, proud conquerer of death.
He took the world by storm
Valour's own master-stroke.
Time hath discovered in that little form.
The authentic leader of the starring folk.
Fire-lauretted boatman of the country who will steer.
It like a boat and bring it through.
Nay Boatman! You shall not renounce the Oar
Until that boat has touched the Shore." × × ×

'The Boatman Boy & other Poems' – 12-09-42

ମୂଳ ଓଡ଼ିଆ କବିତା 'ବାଜି ରାଉତ'ର ଏହି ଅଂଶବିଶେଷ ବାରାଂତରେ ପ୍ରକାଶପାଇଛି, ତେଣୁ ଏଠାରେ ତାର ଉଦ୍ଧୃତି ଅନାବଶ୍ୟକ।

କଟକରେ ରହଣି ଭିତରେ ହାରିନ୍ଦା' ଏକ ବିଚିତ୍ରାନୁଷ୍ଠାନ (Variety show)ର ପ୍ରଦର୍ଶନ କରିଥିଲେ। ଏହି ବିଚିତ୍ରାନୁଷ୍ଠାନରେ ମୋର ଏକ ଛୋଟ ନାଟିକା 'ତଳେ ମାଟି, ଉପରେ ଆକାଶ' ଏବଂ ସୁନୀତା ଦେବୀଂକର କେତେକ ନୃତ୍ୟ ଏବଂ ହାରିନ୍ଦାଂକର 'Curd-Seller' ନାମକ ଏକ ଆବୃତ୍ତିମୂଳକ ନୃତ୍ୟ ପରିବେଷଣ କରାଯାଇଥିଲା। ମୋ ନାଟିକାଟି ଦଳିତ ଓ ଶୋଷିତ ଶ୍ରେଣୀର ଜୀବନଚିତ୍ର ଥିଲା। ପର୍ଦା ଉଠିଲାପରେ ଦର୍ଶକମାନେ ଦେଖିଲେ ଏକ କୃଷକ ଦଂପତିର ଛୋଟ କୁଡ଼ିଆ ଘର। ବାହାର କାଂଥକୁ ଡେରି ଥୁଆହୋଇଥିଲା ଏକ ଶଗଡ଼ଚକ।

ହାରିନ୍ଦା' ନିଜେ 'Curd-Seller' ରୂପେ ନୃତ୍ୟ ସହ ଇଂରାଜୀ ଆବୃତ୍ତି କରିଥିଲେ। ସେ ଗୋଡ଼ରେ ଘୁଂଗୁର ପିଂଧି ଇଂରାଜୀ କବିତା ଆବୃତ୍ତି କରି

ବିଚିତ୍ର ଧରଣର ନୃତ୍ୟ କଲାବେଳେ ପ୍ରେକ୍ଷାଳୟ ଦର୍ଶକମାନଂକ ହର୍ଷଧ୍ୱନି ଓ କରତାଳି ନାଦରେ ଉଚ୍ଛୁଳିଉଠିଥିଲା । କଟକର ବହୁ ବିଶିଷ୍ଟ ଭଦ୍ରବ୍ୟକ୍ତି, ମହିଳା, ଛାତ୍ରଛାତ୍ରୀ, ଅଧ୍ୟାପକ-ଅଧ୍ୟାପିକା ତଥା ଲେଖକ-ଲେଖିକା ଏହା ଉପଭୋଗ କରିଥିଲେ । ଏଥିରେ ପ୍ରାୟ ପାଂଚହଜାର ଟଂକାର ଟିକେଟ ବିକ୍ରୟ ହୋଇଥିଲା । ନାରୀସେବାସଦନରେ ଏହା ଅନୁଷ୍ଠିତ ହୋଇଥିଲା । ହାରିନ୍ଦାଂକ ବ୍ୟକ୍ତିତ୍ୱରେ ଏକ ଅଦ୍ଭୁତ ଆକର୍ଷଣୀ ଶକ୍ତି ଥିଲା ଓ ଏହା ତାଂକ ଜନପ୍ରିୟତାର ପ୍ରଧାନ କାରଣ ଥିଲା । ତାଂକର କେତେକ ହିନ୍ଦୀ ଫିଲ୍ମ-ଗୀତ ବିଶେଷ ଜନପ୍ରିୟ ହୋଇଥିଲା । ଯଥା – 'ମେରେ ସାମ୍‌ନେବାଲେ ଖିଡ଼ିକି ମେ ଏକ ଚାଂଦ୍ କା ଟୁକୁଡ଼ା ରହତା ହୈ ।'

ସେ ବଡ଼ ସରଳ, ମେଳାପୀ ଓ ନିରହଂକାରୀ ବ୍ୟକ୍ତି ଥିଲେ । କଟକରେ ପ୍ରାୟ ଦୁଇମାସ ରହି ହାରୀନ ଦା' ଓ ସୁନିତା ଦେବୀ ଫେରିଯାଇଥିଲେ ।

ସେ ଏହି ସମୟରେ ବଂବେରୁ ପ୍ରକାଶିତ ଦୈନିକ ପତ୍ରିକା 'କାଇଜର-ଇ-ହିଂଦ୍'ରେ ମୋ କବିତାର ଏକ ମୂଲ୍ୟାୟନମୂଳକ ପ୍ରବଂଧ ଲେଖିଥିଲେ । ଏହାର ଶୀର୍ଷକ ଥିଲା 'There arises Satchi Rautroy at 27, He has become the voice of the voiceless Millions ।

**ବିଚ୍ଛିନ୍ନାଂଚଳରେ ଓଡ଼ିଆ ଭାଷାର ସୁରକ୍ଷା :**
**ମୋର କିଛି କର୍ମତତ୍ପରତା –**

ବିଚ୍ଛିନ୍ନାଂଚଳରେ ଓଡ଼ିଆ ଭାଷା ଓ ସଂସ୍କୃତି କ୍ରମେ ବିପନ୍ନ ହୋଇପଡୁଥିଲା । ବିହାରର ସିଂହଭୂମି ଜିଲ୍ଲାଟି ଏପର୍ଯଂତ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ଅଂତର୍ଭୁକ୍ତ ଥିଲା । ମାତ୍ର ତାହାକୁ ଓଡ଼ିଶା ପ୍ରଦେଶ କଂଗ୍ରେସ ଅଧୀନରୁ ନେଇ ବିହାର ପ୍ରଦେଶ କଂଗ୍ରେସ ଅଧୀନରେ ରଖାଗଲା । ବାବୁ ରାଜେଂଦ୍ରପ୍ରସାଦ ଏଥିପାଇଁ ମୁଖ୍ୟତଃ ଦାୟୀ । ସେ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଂକ ଉପରେ ଚାପପକାଇ ଓଡ଼ିଶା କଂଗ୍ରେସକୁ କ୍ଷୁଦ୍ରକରିପକାଇଲେ ।

ଏହାଛଡ଼ା ଖଂଡିତ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଗଠିତହେଲା । ପରେ ବିହାର ସରକାର ବିହାରରେ ଥିବା ଓଡ଼ିଆ ସ୍କୁଲଗୁଡ଼ିକ ପ୍ରତି ଅବହେଳା ପ୍ରଦର୍ଶନ କରିବାକୁ ଲାଗିଲେ । ସେମାନେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ସବୁମଂତେ ନିରୁତ୍ସାହିତ କରୁଥିଲେ । ସେମାନେ ସ୍କୁଲଗୁଡ଼ିକରୁ ଓଡ଼ିଆ ଭାଷା ଉଠାଇଦେବାକୁ ଚକ୍ରାଂତ କଲେ । ଆଂଧ୍ର ଓ ବଂଗପ୍ରଦେଶମାନଂକରେ ଓଡ଼ିଆ ଭାଷା ଓ ସଂସ୍କୃତି ଉପରେ ନାନା ଭାବରେ ଆକ୍ରମଣ କରାଗଲା । ଏସବୁ ସଂବାଦ ଓଡ଼ିଶାବାସୀଂକୁ ବିଚଳିତ କରିପକାଇଲା । କଟକରେ ଏବଂ ବ୍ରହ୍ମପୁରରେ ସଭାସମିତିମାନ କରାଯାଇ ବିଚ୍ଛିନ୍ନାଂଚଳରେ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ଦୃଢ଼ ଦାବି କରାଗଲା । ମୁଁ ଏ ସଭା-ସମିତିମାନଂକରେ ପ୍ରତ୍ୟକ୍ଷ ଭୂମିକା ନେଇଥିଲି ।

**ଓଡ଼ିଆ ଭାଷା ଉପରେ ଆକ୍ରମଣ :**
**ପୂର୍ବ ପ୍ରସଂଗ –**

ଏଥିପୂର୍ବରୁ ଓଡ଼ିଶାରେ ଚାକିରିକରୁଥିବା କେତେ ଜଣ ବଂଗାଳୀ କର୍ମଚାରୀ ଓ ଶିକ୍ଷକ ଓଡ଼ିଆ ଭାଷାକୁ ଏମୂଳେ ଲୋପକରିବାକୁ ପ୍ରବଳ ଆଂଦୋଳନ ଚଳାଇଲେ । 'ଓଡ଼ିଆ ଏକ ସ୍ୱତଂତ୍ର ଭାଷା ନୟ' ବୋଲି ସେମାନେ ପ୍ରଚାର କରୁଥିଲେ । ସେମାନଂକ ମତରେ ଓଡ଼ିଆ ଭାଷା ବଂଗଳା ଭାଷାର ଅପଭ୍ରଂଶ । ଓଡ଼ିଶା ସେତେବେଳେ ବଂଗପ୍ରଦେଶରେ ଥିଲା । ତାହା କାଏମ୍ ରହୁ ବୋଲି ସେମାନଂକର ଦାବି ଥିଲା । ଓଡ଼ିଆ ସ୍କୁଲମାନଂକରେ ବଂଗଳା ଭାଷା ମାଧ୍ୟମ ହେଉ ବୋଲି ସେମାନେ ଦାବି କରୁଥିଲେ ।

୧୮୬୯ ମସିହାରେ ଉମାଚରଣ ହାଲ୍‌ଦାର ନାମକ ଜଣେ ଡେପୁଟି ସ୍କୁଲ ଇନ୍‌ସପେକ୍ଟର ଓଡ଼ିଶାର ସ୍କୁଲମାନଂକରେ ଓଡ଼ିଆ ଭାଷା ବଦଳରେ ବଂଗଳା ଭାଷା ଚଳାଇବା ପାଇଁ ଉଦ୍ୟମ କରିଥିଲେ । ତାଂକର ଯୁକ୍ତି ଥିଲା, ଓଡ଼ିଆରେ ଲିଖିତ ପାଠ୍ୟ ପୁସ୍ତକର ଘୋର ଅଭାବ । ତେଣୁ ପିଲାମାନଂକର ଓଡ଼ିଆ ପଢ଼ିବାରେ ଘୋର ଅସୁବିଧା ହେଉଛି । ଆଉ ଜଣେ ବଂଗାଳୀଡେପୁଟି ସ୍କୁଲ ଇନ୍‌ସପେକ୍ଟର ଶିବଦାସ ଭଟ୍ଟାଚାର୍ଯ ମଧ୍ୟ ଅନୁରୂପ ମତ ପ୍ରକାଶ କରି ଓଡ଼ିଆ ଭାଷା ବଦଳରେ ବଂଗଳା ଭାଷାକୁ ଶିକ୍ଷା-ମାଧ୍ୟମ କରିବାକୁ ଚାହୁଁଥିଲେ । ଏଥିରେ ବାଲେଶ୍ୱର ଜିଲ୍ଲାର ଓଡ଼ିଆମାନେ ଭୀଷଣ କ୍ଷୁବ୍ଧ ହୋଇଉଠିଥିଲେ । ସେମାନେ ତାଂକ ବିରୋଧରେ ସରକାରଂକ ନିକଟରେ ଦରଖାସ୍ତ କରିଥିଲେ; ଫଳରେ ତାଂକର ବାଲେଶ୍ୱରରୁ ବଦଳିହୋଇଯାଇଥିଲା । ୧୮୭୦ ସାଲରେ ବାଲେଶ୍ୱର ଜିଲ୍ଲା ସ୍କୁଲର କାଂତିଲାଲ ଭଟ୍ଟାଚାର୍ଯ ନାମକ ଜଣେ ବଂଗାଳୀ ଶିକ୍ଷକ 'ଓଡ଼ିଆ ଏକ ସ୍ୱତଂତ୍ର ଭାଷା ନୟ' ନାମକ ଏକ ପୁସ୍ତକ ରଚନା କରି ଓଡ଼ିଆ ବଂଗଭାଷାର ଏକ ଉପଭାଷା ବୋଲି ପ୍ରମାଣ କରିବାକୁ ଚେଷ୍ଟାକରିଥିଲେ । ବଂଗଳାର ଜଣେ ଖ୍ୟାତନାମା ଐତିହାସିକ ପ୍ରତ୍ନତତ୍ତ୍ୱବିତ୍ ରାଜେଂଦ୍ର ଲାଲ ମିତ୍ର ତାଂକୁ ସମର୍ଥନ କରୁଥିଲେ । ତାଂକ ମତରେ ମାତ୍ର ୨୦ ଲକ୍ଷ ଓଡ଼ିଆ ଓଡ଼ିଆଭାଷା କହଂତି; ତେଣୁ ଏପରି ଏକ ଭାଷାକୁ ସ୍ୱତଂତ୍ର ଭାଷାରୂପେ ସ୍ୱୀକୃତି ଦିଆଯାଇ ନ ପାରେ ।

ଅପରପକ୍ଷରେ ଓଡ଼ିଶାବାସୀ କେତେକ ଶିକ୍ଷିତ ବଂଗାଳୀ ଏବଂ ଓଡ଼ିଆ ବୁଦ୍ଧିଜୀବୀ ଏହାର ତୀବ୍ର ବିରୋଧ କରୁଥିଲେ । ଜଣେ ଓଡ଼ିଶାବାସୀ ବଂଗାଳୀ (ଡୋମିସାଇଲଡ୍) ଗୌରୀଶଂକର ରାୟ ଓଡ଼ିଆ ଭାଷା ଓ ସାହିତ୍ୟର ମର୍ଯାଦା ରକ୍ଷାକରିବାପାଇଁ ବଦ୍ଧପରିକର ହୋଇଥିଲେ । ସେ 'ଉତ୍କଳ ଦୀପିକା' ନାମକ ଏକ ସାପ୍ତାହିକୀ ପତ୍ରିକା ପ୍ରକାଶ ଓ ସଂପାଦନା କରି ଓଡ଼ିଆ ସାହିତ୍ୟ ଓ ଭାଷାର ସ୍ୱାତଂତ୍ର୍ୟ ପ୍ରତିପାଦନ କରିଥିଲେ । ଏହାଛଡ଼ା କଟକର 'ଉତ୍କଳ ହିତୈଷିଣୀ ସଭା'

ମଧ୍ୟ ଓଡ଼ିଆ ଭାଷା ସପକ୍ଷରେ ଆଂଦୋଳନ କରିଥିଲା । କେତେକ ବଂଗାଳୀ ମଧ୍ୟ 'ଉତ୍କଳ ହିତୈଷିଣୀ' ନାମକ ଏକ ସାପ୍ତାହିକ ପତ୍ରିକା ମାଧ୍ୟମରେ ନିଜ ମତାମତ ପ୍ରକାଶକରୁଥିଲେ । ଏହାଛଡ଼ା 'କଟକ ସୋସାଇଟି' ଓ 'ଡିବେଟିଂ କ୍ଲବ' ନାମକ ଅନୁଷ୍ଠାନଦ୍ୱୟ ବଂଗାଳୀମାନଂକ ପକ୍ଷ ସମର୍ଥନ କରୁଥିଲେ ଏବଂ ବଂଗଳା ଭାଷା ସ୍କୁଲମାନଂକରେ ଶିକ୍ଷାମାଧ୍ୟମ ହେଉ ବୋଲି ଆଲୋଡ଼ନ କରୁଥିଲେ । ଓଡ଼ିଶାବାସୀ ଜଣେ ବଂଗାଳୀ କବିବର ରାଧାନାଥ ରାୟ ମଧ୍ୟ ଓଡ଼ିଆ ସାହିତ୍ୟରେ ଯୁଗାଂତର ଆଣି ନାନା କାବ୍ୟ କବିତା ଲେଖି ଓଡ଼ିଆ ଭାଷାର ଶ୍ରୀବୃଦ୍ଧି ସାଧନ କରିବା ସଂଗେ ସଂଗେ ଏହାର ଗୌରବ ଓ ଉଚ୍ଚ ପରମ୍ପରା ପ୍ରତିଷ୍ଠିତ କରିଥିଲେ । ବିଖ୍ୟାତ ଔପନ୍ୟାସିକ ଫକିରମୋହନ ସେନାପତି ବାଲେଶ୍ୱରରୁ 'ସଂବାଦବାହିକା' ନାମକ ଏକ ସାପ୍ତାହିକ ପତ୍ରିକା କାଢ଼ି ଓଡ଼ିଆ ଭାଷାର ସୁରକ୍ଷା ପାଇଁ ତେଜସ୍ୱୀ ପଦକ୍ଷେପ ନେଇଥିଲେ । ଏଠାରେ ଉଲ୍ଲେଖନୀୟ ଯେ, କେତେକ ପ୍ରଖ୍ୟାତ ବଂଗାଳୀ ସାହିତ୍ୟିକ ଓଡ଼ିଆ ଭାଷାର ପକ୍ଷ ସମର୍ଥନ କରି ଲେଖାଲେଖି କରିଥିଲେ । ସେମାନଂକ ମଧ୍ୟରେ ଭୂଦେବ ବଂଦୋପାଧ୍ୟାୟ ଅନ୍ୟତମ । ଗୌରୀଶଂକର ରାୟଂକ ଛଡ଼ା ପ୍ୟାରିମୋହନ ଆଚାର୍ଯ୍ୟ ଓ ବାଲେଶ୍ୱରର ରାଜା ବୈକୁଂଠନାଥ ଦେ ପ୍ରମୁଖ ଓଡ଼ିଶା-ବାସୀ ବଂଗାଳୀମାନେ ମଧ୍ୟ ଦୃଢ଼ତାର ସହ ଓଡ଼ିଆଭାଷାର ପକ୍ଷ ସମର୍ଥନକରିଥିଲେ ।

ଇଂରେଜ ଅଫିସରମାନଂକ ମଧ୍ୟରେ ଡବ୍ଲ୍ୟୁ ଟି. ଓ୍ୱାକିନ୍‌ସନ୍, ଯେ କି ଏହି ସମୟରେ ବେଂଗଲ ଶିକ୍ଷା ମହାନିର୍ଦ୍ଦେଶକ (ଡି.ପି.ଟି.) ଥିଲେ; ଓଡ଼ିଆ ଭାଷା ସଂବଂଧରେ ପ୍ରତିକୂଳ ମନୋଭାବ ପୋଷଣ କରୁଥିଲେ । କିଂତୁ ସୌଭାଗ୍ୟର ବିଷୟ ଯେ, ଏହି ସମୟରେ ଓଡ଼ିଶା ଡିଭିଜନର କମିଶନର ଟି. ଇ. ରେଭେନ୍ସା ଓ ବାଲେଶ୍ୱରର କଲେକ୍ଟର ଜନ୍ ବିମ୍‌ସଂକର ଓଡ଼ିଆ ଭାଷା ସଂବଂଧରେ ଉଚ୍ଚ ଧାରଣା ଥିଲା । ସେମାନଂକ ନିର୍ଦ୍ଦେଶ ଅନୁଯାୟୀ ଓଡ଼ିଶାର ସବୁ ପ୍ରାଇମେରୀ ସ୍କୁଲମାନଂକରେ ଓଡ଼ିଆ ଭାଷା ଶିକ୍ଷାର ମାଧ୍ୟମ ରହିଲା । ଜିଲ୍ଲା ସ୍କୁଲ ଏବଂ ହାଇସ୍କୁଲମାନଂକରେ ଏହା ଅପ୍‌ସନାଲ୍ ବିଷୟ ରୂପେ ବ୍ୟବହାର କରାଗଲା ।

('ଏ ଷ୍ଟଡ଼ି ଅଫ୍ ହିଷ୍ଟ୍ରି ଅଫ୍ ଓଡ଼ିଶା' – ଦ୍ରଷ୍ଟବ୍ୟ)

**ବ୍ରହ୍ମପୁରରେ ଆଂଦୋଳନ –**

ଓଡ଼ିଆ ଭାଷା-ଆଂଦୋଳନ କ୍ରମେ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଗଠନ ଆଂଦୋଳନରେ ପରିଣତ ହେଲା । ଏଠାରେ ଟିକେ ପୂର୍ବସୂଚନା ଦେଲେ ଅପ୍ରାସଂଗିକ ହେବ ନାହିଁ ଯେ, କଟକ, ପୁରୀ, ବାଲେଶ୍ୱରର ଓଡ଼ିଆମାନେ ଯେପରି ବଂଗାଳୀ-ମାନଂକ ଦ୍ୱାରା ପ୍ରପୀଡ଼ିତ ହେଉଥିଲେ, ସେପରି ଗଂଜାମର ଓଡ଼ିଆମାନେ ସେଠାର ସ୍କୁଲମାନଂକରେ ତେଲଗୁଭାଷାର ପ୍ରବର୍ତ୍ତନ ଏବଂ ସରକାରୀ ଚାକିରିରେ ତେଲୁଗୁ-ମାନଂକର ପ୍ରାଧାନ୍ୟ ଯୋଗୁଁ ଲାଂଛିତ ଓ ଅବହେଳିତ ଅବସ୍ଥାରେ ରହିଥିଲେ । ୧୮୭୦ ସାଲ ସେପ୍‌ଟେଂବର ମାସ୍‌ରେ ସେମାନେ ରସୁଲକୋଂଡାଠାରେ ଏକ ସଭା

କରି ଓଡ଼ିଶା ଡିଭିଜନର ଓଡ଼ିଆ ଅଧିବାସୀମାନଂକୁ ସମସ୍ତ ଓଡ଼ିଆଭାଷୀ ଅଂଚଳର ଏକତ୍ରୀକରଣ ନିମଂତେ ଆଂଦୋଳନ କରିବାକୁ ଆବେଦନ କରିଥିଲେ । ୧୮୭୫ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରର ଶ୍ୟାମାନଂଦ ଦେ ସମସ୍ତ ଓଡ଼ିଆଭାଷୀ ଅଂଚଳର ସମ୍ମିଶ୍ରଣ ଦାବି କରି ସରକାରଂକ ନିକଟରେ ଦରଖାସ୍ତ କରିଥିଲେ ।

**ସଂବଲପୁର ଜିଲ୍ଲାରେ ଭାଷା-ଆଂଦୋଳନ :**

**ପୂର୍ବ-ବୃତ୍ତାଂତ –**

ସଂବଲପୁର ଜିଲ୍ଲାରେ ମଧ ହିଂଦୀ ଭାଷାକୁ ସ୍କୁଲମାନଂକରେ ପ୍ରଚଳନ କରିବା ବିରୋଧରେ ପ୍ରବଳ ଜନମତ ସୃଷ୍ଟିହୋଇଥିଲା । ଏହାଛଡ଼ା ସରକାରୀ ଚାକିରିଆମାନଂକୁ ହିନ୍ଦୀ ଟେଷ୍ଟ ପାଶ୍ କରିବାଲାଗି ବାଧ୍ୟକରାଯିବାରୁ ସଂବଲପୁର ଜିଲ୍ଲାର ଲୋକମାନେ ବଡ଼ ଅସଂତୁଷ୍ଟ ଥିଲେ । ବାମଂଡାରୁ ଦେଶସେବୀ ନୀଳମଣି ବିଦ୍ୟାରତ୍ନଂକ ସଂପାଦନାରେ 'ସଂବଲପୁର ହିତୈଷିଣୀ' ପତ୍ରିକା ପ୍ରକାଶପାଇଲା । ଏହା ଓଡ଼ିଆ-ଆଂଦୋଳନର ମୁଖପତ୍ରରୂପେ କାର୍ଯ୍ୟ କରିଥିଲା । ସଂବଲପୁର ସେତେବେଳେ ସି.ପି.(ସେଂଟ୍ରାଲ ପ୍ରୋଭିନ୍ସ)ର ଅଂତର୍ଗତ ଥିଲା । ୧୮୯୫ ମସିହା ଜୁନ ମାସରେ ସଂବଲପୁରର ୩ ହଜାର ଲୋକଂକ ଦସ୍ତଖତରେ ହିଂଦୀଭାଷା ଉଠାଇଦେବାଲାଗି ସି.ପି. ସରକାରଂକୁ ଏକ ଦରଖାସ୍ତ ପଠାଯାଇଥିଲା । ୧୯୦୧ ମସିହା ଜୁଲାଇ ମାସରେ ସଂବଲପୁରର କେତେକ ନେତୃସ୍ଥାନୀୟ ବିଶିଷ୍ଟ ବ୍ୟକ୍ତି ସି.ପି. ପ୍ରଦେଶର ଚିଫ୍ କମିଶନର ଫ୍ରାସରଂକୁ ଭେଟିଥିଲେ ଏବଂ ସଂବଲପୁରରୁ ହିଂଦୀଭାଷା ଉଠାଇଦେବାକୁ ଦାବିକରିଥିଲେ । ଯଦି ତାହା ସଂଭବ ନ ହୁଏ, ତେବେ ସଂବଲପୁର ଜିଲ୍ଲାକୁ ସେଂଟ୍ରାଲ ପ୍ରଭିନ୍ସରୁ ନେଇ ଓଡ଼ିଶା ଡିଭିଜନରେ ମିଶାଇବାପାଇଁ ଦାବିକରିଥିଲେ । ସଂବଲପୁରର କେତେକ ବିଶିଷ୍ଟ ବ୍ୟକ୍ତିଂକର ଏକ ପ୍ରତିନିଧିମଂଡଳୀ ଭାଇସ୍‌ରୟ (ବଡ଼ଲାଟ) ଲର୍ଡ କର୍ଜନଂକୁ ଭେଟି ସେମାନଂକ ଏହି ଦାବି ଉପସ୍ଥାପିତ କରିଥିଲେ, ମାତ୍ର ସେମାନଂକ ଦାବି ଗୃହୀତ ହୋଇନଥିଲା । ସଂବଲପୁରବାସୀଂକର ଏହି ଆଂଦୋଳନକୁ ଓଡ଼ିଶାର ଉପକୂଳ ଅଂଚଳର ଅଧିବାସୀମାନେ ଦୃଢ଼ ସମର୍ଥନ କରିଥିଲେ । ୧୮୯୫ ଖ୍ରୀ:ଅ:ରେ ଓଡ଼ିଶା ଡିଭିଜନର କମିଶନର ଏଚ୍. ଜି. କୁକ୍ ମତ ପ୍ରକାଶ କରିଥିଲେ ଯେ, ସଂବଲପୁର ଜିଲ୍ଲା ଏବଂ କରଦ ରାଜ୍ୟ ପାଟଣା, ସୋନପୁର, ରେଢ଼ାଖୋଲ, ବାମଂଡା, କଳାହାଂଡି ଏବଂ ଗଂଜାମ ଜିଲ୍ଲା ଓଡ଼ିଶା ଡିଭିଜନ ସହିତ ମିଶାଇଦିଆଯାଉ । ମାତ୍ର ତାଂକ ପରାମର୍ଶ ଏ ପର୍ଯଂତ କାର୍ଯ୍ୟକାରୀ ହୋଇନଥିଲା । 'ଉତ୍କଳ ସଭା' ୧୮୯୫ ସାଲ୍ ଜୁନ୍ ମାସରେ ଭାଇସ୍‌ରୟ ଲର୍ଡ ଏଲଗିନଂକୁ ସି.ପି. ଗଭର୍ଣମେଂଟଂକ ନିଷ୍ପତ୍ତି ବିରୋଧରେ ଏକ ସ୍ମାରକପତ୍ର ଦେଇଥିଲେ । ଭାରତ ସରକାର ସଂବଲପୁରବାସୀଂକ ଦାବିର ଯଥାର୍ଥତା ଉପଲବ୍ଧି କରିଥିଲେ ଓ ଓଡ଼ିଆ ଭାଷା ସ୍କୁଲମାନଂକରେ ପୁନଃ ପ୍ରବର୍ତ୍ତିତ ହୋଇଥିଲା ।

**ଗଂଜାମ ଜିଲ୍ଲାରେ ଆଂଦୋଳନ –**

ଏହାପରେ ବ୍ରହ୍ମପୁରଠାରେ ୧୯୦୩ ମସିହାରେ ଶ୍ୟାମସୁଂଦର ରାଜଗୁରୁଂକ ସଭାପତିତ୍ୱରେ ଏକ ସମ୍ମିଳନୀ ବସିଥିଲା। ଏଥିରେ ଓଡ଼ିଶାର ସବୁ ଅଂଚଳର ପ୍ରତିନିଧିମାନେ ଯୋଗଦେଇଥିଲେ। ଏଥିରେ ସ୍ଥିରହୋଇଥିଲା ଯେ, ପ୍ରତି ବର୍ଷ ଏହି ଓଡ଼ିଆ ଜାତୀୟ ସମ୍ମିଳନୀ ବସିବ ଏବଂ ଏହାର ବିବରଣୀ ଲିପିବଦ୍ଧ କରାଯିବ। ୧୯୦୩ ମସିହାରେ ଚିଲିକା କୂଳରେ ରଂଭାଠାରେ ଏକ ସଭା ଡକାଯାଇଥିଲା। ଏଥିରେ ଖଲ୍ଲିକୋଟର ରାଜା ହରିହର ମର୍ଦରାଜ ସଭାପତିତ୍ୱ କରିଥିଲେ। ଏହି ସଭାରେ 'ଗଂଜାମ ଜାତୀୟ ସମିତି' ଗଠନକରାଯାଇଥିଲା।

୧୯୦୩ ମସିହା ଡିସେଂବର ୩୦-୩୧ରେ କଟକଠାରେ ପ୍ରଥମ ଉତ୍କଳ 'ଜାତୀୟ ସମ୍ମିଳନୀ' ବା 'ଉତ୍କଳ ସମ୍ମିଳନୀ'ର ପ୍ରଥମ ବୈଠକ ବସିଥିଲା। ଏହାର ଉଦ୍ୟୋକ୍ତା ଥିଲେ ମଧୁସୂଦନ ଦାସ (ମଧୁବାବୁ), କନିକା ଜମିଦାର ରାଜେଂଦ୍ର ନାରାୟଣ ଭଂଜ ଦେଓ, ମୟୂରଭଂଜର ମହାରାଜା ଶ୍ରୀରାମଚଂଦ୍ର ଭଂଜ ଦେଓ ପ୍ରଭୃତି। ଏହି ସମ୍ମିଳନୀରେ ମୟୂରଭଂଜର ମହାରାଜା ସଭାପତିତ୍ୱ କରିଥିଲେ। ଏଥିରେ ଓଡ଼ିଶାର ବିଭିନ୍ନ ଅଂଚଳରୁ ବହୁ ପ୍ରତିନିଧି ଓ କେତେକ ଇଉରୋପିୟାନ୍ ଅଫିସର, ଜମିଦାର, ଓକିଲ, ସରକାରୀ କର୍ମଚାରୀ ଓ ଛାତ୍ର ଯୋଗଦେଇଥିଲେ। ଏହି ସମ୍ମିଳନୀରେ ସମସ୍ତ ଓଡ଼ିଆଭାଷୀ ଅଂଚଳର ଏକତ୍ରୀକରଣ 'ରିସେଲୀ ସର୍କୁଲାର' ଅନୁଯାୟୀ କରାଯାଉ ବୋଲି ସର୍ବସମ୍ମତିକ୍ରମେ ପ୍ରସ୍ତାବ ଗୃହୀତ ହୋଇଥିଲା। ଏହି ସମ୍ମିଳନୀକୁ 'ଉତ୍କଳ ସମ୍ମିଳନୀ' ଆଖ୍ୟା ଦିଆଯାଇଥିଲା। ଏହି ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତୀୟତାର ଏକମାତ୍ର କେନ୍ଦ୍ର ଅନୁଷ୍ଠାନ ହେଲା।

**ଉତ୍କଳ ସମ୍ମିଳନୀ ଓ ମଧୁବାବୁ –**

ଏହାପରେ ଉତ୍କଳ ସମ୍ମିଳନୀ ବର୍ଷକୁ ବର୍ଷ ଓଡ଼ିଶାର ବିଭିନ୍ନ ସ୍ଥାନରେ ବସୁଥିଲା। ଏହାର ମୁଖ୍ୟ ଦାବି ଥିଲା, ସମସ୍ତ ଓଡ଼ିଆଭାଷୀ ଅଂଚଳର ଏକତ୍ରୀକରଣ ଏବଂ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଗଠନ। ଏହାର ଅବିସଂବାଦୀ ନେତା ଥିଲେ ମଧୁସୂଦନ ଦାସ। ମଧୁବାବୁ ସେତେବେଳକୁ କଟକରେ ଓକିଲାତି ଆରଂଭ କରିଦେଇଥିଲେ। ସେ ଓଡ଼ିଶାରେ ଏକ ପ୍ରବାଦ-ପୁରୁଷ ରୂପେ ପରିଣତ ହୋଇଥିଲେ। ତାଂକୁ ଲୋକେ ଓଡ଼ିଶାର ଆଶା ଆକାଂକ୍ଷା ତଥା ଅଭାବ-ଅସୁବିଧାର ପ୍ରବକ୍ତା ରୂପେ ଗ୍ରହଣକରିଥିଲେ।

୧୯୧୨ ମସିହା ଏପ୍ରିଲ ମାସ ୬-୭ ତାରିଖରେ ବ୍ରହ୍ମପୁରଠାରେ 'ଉତ୍କଳ ସମ୍ମିଳନୀ'ର ୮ମ ବାର୍ଷିକ ଅଧିବେଶନରେ ମଧୁବାବୁ କହିଥିଲେ ଯେ – "ବ୍ରିଟିଶ ଶାସନରେ କୌଣସି ଜାତି ଓଡ଼ିଆଂକ ପରି ଅନ୍ୟାୟୋଚିତ ଏବଂ ନିର୍ଦୟ ବ୍ୟବହାର ପାଇନାହାଂତି; ଅଥଚ ଏଥିପାଇଁ ଓଡ଼ିଆ ଜାତି କୌଣସି ଭୁଲ ତ୍ରୁଟି କରୁନାହାଂତି।"

["There is no people under the Britsh Government who

have been treated more unjustly & unkindly than the people of Orissa who have done nothing to deserve such treatment."]

**କଂଗ୍ରେସ ଓ ଓଡ଼ିଆ ଜାତୀୟତା –**

ଓଡ଼ିଶାର କଂଗ୍ରେସ ଲୋକେ ଦେଶମିଶ୍ରଣ ଆଂଦୋଳନରେ ସେପରି କିଛି ଆଗ୍ରହ ଦେଖାଉନଥିଲେ। ସେମାନେ ମହାଭାରତୀୟ ଭାବଧାରାରେ ମସ୍ତ ଥିଲେ ବୋଲି ଅନେକ ଓଡ଼ିଆ ଜାତୀୟତାବାଦୀ ନେତା ସମାଲୋଚନା କରୁଥିଲେ। ଓଡ଼ିଶାର କଂଗ୍ରେସ ଲୋକେ ଦେଶମିଶ୍ରଣ ଆଂଦୋଳନରେ ସକ୍ରିୟ ଭୂମିକା ନେଉନଥିବାର କାରଣ କ'ଣ, କିଛି ବୁଝିହୁଏନି। ଆଜି ଯଦି ଓଡ଼ିଶା ସ୍ୱତଂତ୍ର ପ୍ରଦେଶ ହୋଇନଥାଂତା, ତା'ହେଲେ ଯେଉଁ କଂଗ୍ରେସ ବା ଅଣକଂଗ୍ରେସ ନେତାଏ ଗତ ୬୦ ବର୍ଷ ଧରି ଓଡ଼ିଶାରେ ବଡ଼ ବଡ଼ ପଦ-ପଦବୀ ଅଧିକାର କରି ବସିଛଂତି ବା ବସିଥିଲେ, ସେମାନେ କେଉଁଠି ଥାଆଂତେ? ଓଡ଼ିଶାର ବହୁ ମୁଖ୍ୟମଂତ୍ରୀ, ମଂତ୍ରୀ, ହାଇକୋର୍ଟ ଜଜ୍, ମୁଖ୍ୟ ନ୍ୟାୟାଧୀଶ ତଥା କୁଳପତି ହୁଏତ ପାଟଣା ସହରର କେଉଁ ଅଳିଆଗଦାରେ ସଢୁଥାଆଂତେ !

**କଂଗ୍ରେସର ଭାଷାଭିତ୍ତିକ ପ୍ରଦେଶ ଗଠନ ନୀତି ଗ୍ରହଣ :**

**ଉତ୍କଳ ସମ୍ମିଳନୀର ନେତୃତ୍ୱ ପରିବର୍ତ୍ତନ –**

ସେ ଯାହାହେଉ, କ୍ରମେ ଅବସ୍ଥା ବଦଳିଗଲା। ୧୯୨୦ ଖ୍ରୀ:ଅ: ଡିସେଂବର ମାସରେ ନାଗପୁରଠାରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଥିଲା। ନାଗପୁର କଂଗ୍ରେସରେ ବ୍ରିଟିଶ ସରକାର ସହିତ ଅସହଯୋଗ ଆଂଦୋଳନ ଚାଲୁକରିବା ଦିଗରେ ଚୂଡ଼ାଂତ ନିଷ୍ପତ୍ତି ଗୃହୀତ ହେବା ସଂଗେ ସଂଗେ ପ୍ରଦେଶ କଂଗ୍ରେସ କମିଟିଗୁଡ଼ିକ ଭାଷାଭିତ୍ତିରେ ଗଠନ କରିବା ନିମଂତେ ସିଦ୍ଧାଂତ ଗ୍ରହଣ କରାଗଲା। ଏହା ଫଳରେ ଓଡ଼ିଆ ଜାତୀୟବାଦୀ ନେତାମାନେ କଂଗ୍ରେସ ଭିତରେ ରହି ଭାଷାଭିତ୍ତିକ ପ୍ରଦେଶ ଗଠନ ଦିଗରେ କାର୍ଯ୍ୟ କରିବାକୁ ସୁଯୋଗ ପାଇଲେ।

ନାଗପୁର କଂଗ୍ରେସର ଅବ୍ୟବହିତ ପରେ ଚକ୍ରଧରପୁରଠାରେ ୧୯୨୧ ମସିହା ଜାନୁୟାରୀ ମାସରେ 'ଉତ୍କଳ ସମ୍ମିଳନୀ'ର ଅଧିବେଶନ ଆରଂଭହୁଏ। ନାଗପୁର କଂଗ୍ରେସରୁ ସଦ୍ୟ-ଫେରଂତା ପଂଡିତ ଗୋପବଂଧୁ ଦାସ ଏହି ଅଧିବେଶନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ। ସେ ପ୍ରସ୍ତାବ ଆଣଂତି ଯେ ଉତ୍କଳ ସମ୍ମିଳନୀ ଆଉ ଏକକ ଅନୁଷ୍ଠାନରୂପେ ନ ରହି ଜାତୀୟ ମହାସ୍ରୋତରେ ମିଶିଯିବା ଉଚିତ ଏବଂ କଂଗ୍ରେସର ଅଂଗୀଭୂତ ହେବା ଆବଶ୍ୟକ। ତା'ହେଲେ ଓଡ଼ିଶାବାସୀ ଜନସାଧାରଣ ଜାତୀୟ ସ୍ୱାଧୀନତା ହାସଲ କରିବାରେ ସହାୟକ ହେବା ସଂଗେ ସଂଗେ ଓଡ଼ିଆଭାଷୀ ଅଂଚଳଗୁଡ଼ିକର ମିଶ୍ରଣରେ ମଧ୍ୟ ବଳିଷ୍ଠ ଭୂମିକା ଗ୍ରହଣ କରିପାରିବେ। ଗୋପବଂଧୁଂକ ପ୍ରସ୍ତାବ ବହୁ ମତରେ ଗୃହୀତହୋଇଯାଏ।

ପ୍ରକାଶ ଥାଉ କି, 'ଉତ୍କଳ ସମ୍ମିଳନୀ'ର ଚକ୍ରଧରପୁର ଅଧିବେଶନରେ ମଧୁସୂଦନ ଦାସ ଯୋଗଦେଇନଥିଲେ। ଉତ୍କଳ ସମ୍ମିଳନୀର ନେତୃତ୍ୱ ଏଣିକି ପଂଡିତ ଗୋପବଂଧୁଂକ ହାତକୁ ଚାଲିଗଲା। ଯେପରି ଜଣାଯାଏ, ଗୋପବଂଧୁ ଓ ମଧୁବାବୁଂକ ମଧ୍ୟରେ ଗୋଟାଏ ଶୀତଳଯୁଦ୍ଧ ଚାଲିଥିଲା।

**ଦେଶମିଶ୍ରଣ ଆଂଦୋଳନ ଓ ଗୋପବଂଧୁ –**

ପଂଡିତ ଗୋପବଂଧୁ (ଲୋକମୁଖରେ 'ଦାସେଆପଣେ') ଓଡ଼ିଶାର ଉପାଂତ ଅଂଚଳରେ ବହୁ ଓଡ଼ିଆ ସ୍କୁଲ ସ୍ଥାପନକରି ଓଡ଼ିଶା ଡିଭିଜନ ବାହାରେ ଥିବା ଓଡ଼ିଆଭାଷୀ ଅଂଚଳଗୁଡ଼ିକରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ଦୃଢ଼ୀଭୂତ କରିବାକୁ ଚେଷ୍ଟା କରିଥିଲେ। ତାଂକ ସହିତ ପଂଡିତ ଗୋଦାବରୀଶ ମିଶ୍ର ମଧ୍ୟ କିଛି ସମୟ ଯୋଗଦେଇଥିଲେ। ସିଂହଭୂମି ଜିଲ୍ଲାର ଚକ୍ରଧରପୁର ଓ ଚାଇଁବସା, ସଢ଼େଇକଳା, ଖରସୁଆଁ ଓ ଅନ୍ୟାନ୍ୟ ସ୍ଥାନରେ ସେ ବହୁ ଓଡ଼ିଆ ସ୍କୁଲ ସ୍ଥାପନ କରିଥିଲେ। ଦାସଆପଣେଂକ ଅଂତେ ୧୯୨୮ ଖ୍ରୀ:ଅ: ପରେ କଂଗ୍ରେସ ନେତୃମଂଡଳୀ ଓଡ଼ିଆ ଜାତୀୟତାବାଦୀ ଆଂଦୋଳନ ପ୍ରତି ପୁଣି ଉଦାସୀନ ହୋଇପଡ଼ିଲେ। କେବଳ ମୌଖିକ ସମର୍ଥନ ବିନା ସେମାନେ ଏ ଦିଗରେ କୌଣସି ବିଶିଷ୍ଟ ଭୂମିକା ନେବାର ଜଣାଯାଏନାହିଁ।

**ବିହାର-ଓଡ଼ିଶା ପ୍ରଦେଶ ଗଠନ –**

୧୯୧୧ ମସିହାରେ ବିହାର-ଓଡ଼ିଶା ପ୍ରଦେଶ ଗଠିତ ହେଲା। ୧୯୦୫ ମସିହାରେ ବଂଗ ଭଂଗ ହେଲା। ଏହାଫଳରେ ପୂର୍ବବଂଗ ପଶ୍ଚିମବଂଗଠାରୁ ଅଲଗା ହୋଇଯାଇଥିଲା। ବର୍ତ୍ତମାନ ସରକାର ବିଭକ୍ତ ବଂଗ ଦେଶକୁ ପୁଣି ଏକତ୍ର ଯୋଡ଼ିଦେଲେ। ଓଡ଼ିଶାକୁ ବଂଗଳାରୁ ନେଇ ବିହାର ସଂଗେ ମିଶାଇ ବିହାର-ଓଡ଼ିଶା ପ୍ରଦେଶ ଗଠନକଲେ। ଏହା ୧୯୧୨ ମସିହା ଏପ୍ରିଲ ପହିଲା ତାରିଖରେ ଉଦ୍‌ଘାଟିତ ହୋଇଥିଲା। ଏହି ନବଗଠିତ ବିହାର-ଓଡ଼ିଶା ପ୍ରଦେଶରେ ବିହାର, ଛୋଟନାଗପୁର ଡିଭିଜନ ଏବଂ ଓଡ଼ିଶା ଡିଭିଜନ ଅଂତର୍ଭୁକ୍ତ ଥିଲା। ଓଡ଼ିଶା ଡିଭିଜନରେ ଅନୁଗୁଳ, କଟକ, ବାଲେଶ୍ୱର, ପୁରୀ ଓ ସଂବଲପୁର ଜିଲ୍ଲାଗୁଡ଼ିକ ଅଂତର୍ଗତ ଥିଲା।

ସରକାରଂକ ଏଭଳି ପଦକ୍ଷେପରେ ସମଗ୍ର ଓଡ଼ିଆ ଜାତି ଭୀଷଣ କ୍ଷୁବ୍ଧ ଓ କ୍ରୋଧାନ୍ୱିତ ହୋଇଉଠିଥିଲେ। ଗଂଜାମବାସୀ ଓଡ଼ିଆମାନେ ତୀବ୍ର ଅସଂତୋଷ ପ୍ରକାଶକରିଥିଲେ। ସେମାନେ ଗଂଜାମ ଜିଲ୍ଲାକୁ ଓଡ଼ିଶା ଡିଭିଜନ ସହିତ ମିଶାଇବାକୁ ପ୍ରବଳ ଦାବି କରିଥିଲେ। ମଂଜୁଷା ରାଜା, ଚିକିଟି ରାଜା, ଖଲ୍ଲିକୋଟ ରାଜା ପ୍ରଭୃତି ଏହି ଆଂଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ। ସେମାନେ ଏକ ପ୍ରତିନିଧିଦଳରେ ମାଡ୍ରାସର ଗଭର୍ଣରଂକୁ ଭେଟି ଏହି ଦାବି ଉପସ୍ଥାପିତ କରିଥିଲେ। ୧୯୧୩ ମସିହା ଡିସେଂବର ମାସରେ ଗଂଜାମର ଓଡ଼ିଆ ସମାଜ

ଏବଂ ଲ୍ୟାଂଡ ହୋଲଡର୍ସ ଆସୋସିଏସନ୍ ମାଡ୍ରାସ ଗଭର୍ଣର ଲର୍ଡ ପେଂଟଲ୍ୟାଡଂକୁ ଏକ ସ୍ମାରକପତ୍ର ଦେଇ ଗଂଜାମ ଜିଲ୍ଲାକୁ ଓଡ଼ିଶାରେ ମିଶାଇବାକୁ ଦାବି କରିଥିଲେ।

୧୯୧୨ ମସିହା ଏପ୍ରିଲ ୬-୭ ତାରିଖରେ ବ୍ରହ୍ମପୁରଠାରେ ଉତ୍କଳ ସମ୍ମିଳନୀ ବସିଥିଲା। ଏଥିରେ ମଧୁବାବୁ ଇଂରେଜ ସରକାରଂକ କାର୍ଯ୍ୟର ତୀବ୍ର ନିଂଦାବାଦ କରିଥିଲେ। ଏହାପୂର୍ବରୁ କୁହାଯାଇଛି, ୧୯୧୪ ମସିହା ଡିସେଂବର ୨୬-୨୭ ତାରିଖରେ ପାରଳାଖେମୁଂଡିଠାରେ 'ଉତ୍କଳ ସମ୍ମିଳନୀ'ର ଦଶମ ଅଧିବେଶନ ବସିଥିଲା। ସେଥିରେ ମଂଜୁଷା ରାଜା ଏକ ଓଜସ୍ୱିନୀ ଭାଷଣ ଦେଇ ଗଂଜାମ ସମେତ ସମସ୍ତ ଓଡ଼ିଆଭାଷୀ ଅଂଚଳର ଏକତ୍ରୀକରଣ ଦାବିକରିଥିଲେ। ସେ କହିଲେ, "ତମେ ଯଦି ମୋ ମୁଂଡଟାକୁ କାଟି ରାଂଚିରେ ରଖିଦେବ, ତେବେ ମଧ୍ୟ ମୁଁ ଜୀବିତ ଅଛି ବୋଲି କହିପାରିବ କି ? ମୋ ଗଂଡିଟାକୁ ବଂଗୋପସାଗରରେ ଫିଂଗିଦିଅ, ମୋ ଗୋଡ଼ ଦୁଇଟାକୁ ମାଡ୍ରାସ ହସପିଟାଲରେ ରଖିଦିଅ – ଏହାହିଁ ହେଉଛି ଆଜି ଆମ ଓଡ଼ିଆମାନଂକ ଅବସ୍ଥା।"

**ମୋର ଯତ୍‌କିଂଚିତ କର୍ମତତ୍ପରତା –**

୧୯୪୦ ସାଲରୁ ୪୨ ସାଲ ମଧ୍ୟରେ ମୁଁ ବିଚ୍ଛିନ୍ନାଂଚଳରେ ଓଡ଼ିଆ ଭାଷାର ସୁରକ୍ଷା ନିମଂତେ କିଛି କାର୍ଯ୍ୟ କରିଥିଲି, ଏହା ପୂର୍ବରୁ ସୂଚନା ଦେଇଛି। କଟକ ଓ ବ୍ରହ୍ମପୁରରେ କେତୋଟି ସଭାସମିତିରେ ମୁଁ ବିଚ୍ଛିନ୍ନାଂଚଳରେ ଓଡ଼ିଆ ଭାଷାର ଓ ଓଡ଼ିଆ ସ୍କୁଲଗୁଡ଼ିକର ସୁରକ୍ଷା ପାଇଁ ଜନମତ ସୃଷ୍ଟି କରିବାକୁ ଚେଷ୍ଟା କରିଥିଲି। ବ୍ରହ୍ମପୁରଠାରୁ ଅଳ୍ପ ଦୂରରେ ଇଚ୍ଛାପୁର ରେଳଷ୍ଟେସନ ନିକଟରେ ସୁରଂଗୀ ରାଜାସାହେବଂକୁ ଭେଟି ସୁରଂଗୀ ସମେତ ଶ୍ରୀକାକୁଲମ୍ ପର୍ଯ୍ୟଂତ ସମସ୍ତ ଓଡ଼ିଆଭାଷାଭାଷୀ ଅଂଚଳରେ ଓଡ଼ିଆ ଭାଷା କିପରି ଅକ୍ଷୁଣ୍ଣ ଓ ଅବ୍ୟାହତ ରହିବ, ସେ ଦିଗରେ ଆଲୋଚନା କରିଥିଲି। ସୁରଂଗୀ ରାଜାସାହେବ ଏ ଦିଗରେ କିଛି ତତ୍ପରତା ପ୍ରକାଶ କରିଥିଲେ। ସୁରଂଗୀ ରାଜା ଓଡ଼ିଆ ବଂଶୋଦ୍ଭବ ଏବଂ ସୁରଂଗୀ ଜମିଦାରିଟି ମଧ୍ୟ ଓଡ଼ିଆ ଅଧ୍ୟୁଷିତ ଅଂଚଳ; ମାତ୍ର ଇଚ୍ଛାପୁର ରେଳଷ୍ଟେସନଠାରୁ ମାଡ୍ରାସ ପର୍ଯ୍ୟଂତ ଏବଂ ମାଡ୍ରାସଠାରୁ କନ୍ୟାକୁମାରୀ ପର୍ଯ୍ୟଂତ ସମସ୍ତ ଦାକ୍ଷିଣାତ୍ୟ ଅଂଚଳ ମାଡ୍ରାସ ପ୍ରେସିଡେନ୍ସିର ଅଂତର୍ଗତ ଥିଲା। ପଂଡିଚେରୀ ଫରାସୀ ଉପନିବେଶ ଥିଲା। ସେତେବେଳକୁ ଆଂଧ୍ରପ୍ରଦେଶ, କେରଳ, କର୍ଣାଟକ ପ୍ରଭୃତି ଅଂଗ ରାଜ୍ୟଗୁଡ଼ିକ ସୃଷ୍ଟି ହୋଇନଥିଲା। ନିଜାମଂକ ହାଇଦ୍ରାବାଦ, ତ୍ରାଭାଂକୋର, ମହୀଶୂର ପ୍ରଭୃତି ମୂଳକ ସ୍ୱତଂତ୍ର ଦେଶୀୟ ରାଜ୍ୟ ରୂପେ ମହାରାଜାମାନଂକ ଶାସନ ଅଧିକାରରେ ଥିଲା। ମୁଁ ବ୍ରହ୍ମପୁର, ଇଚ୍ଛାପୁର, ସୁରଂଗୀ, ଟେକାଲି ପ୍ରଭୃତି କେତୋଟି ବିଚ୍ଛିନ୍ନାଂଚଳର ସଭାରେ ଓଡ଼ିଆ ଭାଷାର ସୁରକ୍ଷା ଦାବି କରି ଭାଷଣମାନ ଦେଇଥିଲି।

**କଲିକତାରେ ଓଡ଼ିଆ ଆଂଦୋଳନ –**

୧୯୪୨ ମସିହା ଶେଷଭାଗରେ ମୁଁ କଲିକତା ଯାଇ ସେଠାରେ କେତେକ ମାସ ରହେ। ମୋର ଇଂରାଜୀ ବହି 'ଦି ବୋଟ୍‌ମ୍ୟାନ ବଏ', 'ବାଜି ରାଉତ' କିପରି ସେଠାରୁ ପ୍ରକାଶପାଇବ, ସେଥିପାଇଁ ମୁଁ ଚେଷ୍ଟାକରୁଥାଏ। ତା'ପରେ ମୁଁ କଲିକତା ଉପକଂଠରେ ମାଟିଆ ବୁରୁଜସ୍ଥିତ ଗାର୍ଡେନ୍ ରିଚ୍ ରୋଡ଼ରେ କେଶୋରାମ୍ କଟନ ମିଲ୍‌ର ମୁଖ୍ୟ ଶ୍ରମମଂଗଳ ଅଫିସରରୂପେ (ଚିଫ୍ ଲେବର ୱେଲଫେୟାର୍ ଅଫିସର) କାର୍ଯ କରେ। ଏହି ମିଲ୍‌ଟି ବିର୍ଲା ବ୍ରଦର୍ସ ପରିଚାଳନାରେ ଥିଲା। ଏଥିରେ ପ୍ରାୟ ୧୨ ହଜାର ଶ୍ରମିକ କାର୍ଯ କରୁଥିଲେ। ସେଥିମଧ୍ୟରୁ ୩-୪ ହଜାର ଶ୍ରମିକ ଓଡ଼ିଆ ଥିଲେ। ପ୍ରାୟ ୧୦ ବର୍ଷ ପରେ ମୁଁ ଏକ୍‌ଜିକ୍ୟୁଟିଭ ଅଫିସର ରୂପେ ପଦୋନ୍ନତି ପାଇ ସେଠାରେ କାର୍ଯ କରେ। ମୋ ଅଧୀନରେ ଶ୍ରମମଂଗଳ ବିଭାଗ ମଧ୍ୟ ରହିଥିଲା। ମୋଟ ଉପରେ ପ୍ରାୟ ମୁଁ ୨୦ ବର୍ଷ ଉକ୍ତ ମିଲ୍‌ରେ ଅଫିସର ରୂପେ କଲିକତାରେ ରହିଥିଲି। ୧୯୬୨ ମସିହାରେ ମୁଁ ମୋ ଚାକିରିରୁ ଇସ୍ତଫା ଦେଇ ଓଡ଼ିଶା ଫେରିଆସିଥିଲି।

କଲିକତା ଭାରତରେ ସର୍ବବୃହତ୍ ଓଡ଼ିଆଭାଷୀ ଅଂଚଳ ଥିଲା। ଏଠାରେ ପ୍ରାୟ ୭-୮ ଲକ୍ଷ ଓଡ଼ିଆ କାର୍ଯ କରୁଥିଲେ। ଅଧିକାଂଶ ଓଡ଼ିଆ କଲିକତା ଉପକଂଠମାନଂକରେ ଥିବା ଶିଳ୍ପାଂଚଳରେ ଶ୍ରମିକ ରୂପେ କାର୍ଯ୍ୟ କରୁଥିଲେ। ଏହା କଟକ ବା ଭୁବନେଶ୍ୱରର ଓଡ଼ିଆମାନଂକ ସଂଖ୍ୟାର ପ୍ରାୟ ୩-୪ ଗୁଣ ଥିଲା।

**ପ୍ରବାସୀ ଓଡ଼ିଆ ସମ୍ମିଳନୀ –**

୧୯୪୮ ମସିହାରେ ମାଟିଆବୁରୁଜଠାରେ ପ୍ରବାସୀ ଓଡ଼ିଆ ସମ୍ମିଳନୀ ଡକାଯାଇଥିଲା। ମୁଁ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ରୂପେ ସମସ୍ତ ଆୟୋଜନର ଦାୟିତ୍ୱ ନେଇଥିଲି। ଏହି ସମ୍ମିଳନୀରେ ପଶ୍ଚିମବଂଗର ପ୍ରଥମ କଂଗ୍ରେସ ମୁଖ୍ୟମଂତ୍ରୀ ଡା. ପ୍ରଫୁଲ୍ଲ ଘୋଷ ଏବଂ ଓଡ଼ିଶାର ମୁଖ୍ୟମଂତ୍ରୀ ଡ. ହରେକୃଷ୍ଣ ମହତାବ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଚିଂତାମଣି ଆଚାର୍ଯ ଯଥାକ୍ରମେ ଉଦ୍‌ଘାଟକ, ସଭାପତି ଏବଂ ମୁଖ୍ୟଅତିଥି ରୂପେ ଯୋଗଦେଇଥିଲେ। ପ୍ରାୟ ୨ ଲକ୍ଷରୁ ଅଧିକ ଓଡ଼ିଆ ଏହି ସମ୍ମିଳନୀରେ ଉପସ୍ଥିତ ଥିଲେ। ଏହି ସମ୍ମିଳନୀରେ ଓଡ଼ିଶାର ସରେଇକଳା, ଖରସୁଆଁ ଓ ଅନ୍ୟାନ୍ୟ ଓଡ଼ିଆଭାଷୀ ଅଂଚଳର ମିଶ୍ରଣ ଓ ଓଡ଼ିଆ ସଂସ୍କୃତିର ସୁରକ୍ଷା ଦାବି କରି ପ୍ରସ୍ତାବମାନ ଗୃହୀତ ହୋଇଥିଲା। ଏହି ସମସ୍ତ ପ୍ରସ୍ତାବ ଭାରତ ସରକାର ଓ ଓଡ଼ିଶା ସରକାରଂକୁ ବିଧିବଦ୍ଧ ଭାବେ ପଠାଯାଇଥିଲା।

ଏହିପରି ପ୍ରତିବର୍ଷ ପ୍ରବାସୀ ଓଡ଼ିଆ ସମ୍ମିଳନୀମାନ କଲିକତାରେ ହେଉଥାଏ। ଏଥିରେ ଲକ୍ଷ ଲକ୍ଷ ଓଡ଼ିଆ ଏବଂ ଭାରତର ବିଶିଷ୍ଟ ନେତୃବୃନ୍ଦ ଯୋଗଦେଇଥାଂତି। ସମସ୍ତ ସମ୍ମିଳନୀରେ ଓଡ଼ିଶାରେ ବିଚ୍ଛିନ୍ନାଂଚଳ ମିଶ୍ରଣ ଦାବି କରି ପ୍ରସ୍ତାବମାନ ଗୃହୀତ ହେଉଥାଏ।

**ନିଖିଳ ଭାରତ ପ୍ରବାସୀ ଉତ୍କଳ ସମ୍ମିଳନୀ –**

୧୯୫୯ ମସିହାରେ କଲିକତାରେ ବହୁବଜାରସ୍ଥ ଇଂଡିଆନ୍ ଆସୋସିଏସନ୍ ହଲ୍‌ରେ ନିଖିଳ ଭାରତ ପ୍ରବାସୀ ଉତ୍କଳ ସମ୍ମିଳନୀର ପ୍ରସ୍ତୁତି କମିଟିର ଏକ ପୂର୍ଣାଂଗ ବୈଠକ ବସିଥିଲା । ମୁଁ ପ୍ରସ୍ତୁତି କମିଟିର ସଭାପତି ଥିଲି । ଶ୍ୟାମସୁଂଦର ମହାପାତ୍ର (ପରେ ଲୋକସଭା ସଭ୍ୟ) ସାଧାରଣ ସଂପାଦକ ଥିଲେ। ସେ ସେତେବେଳେ ବି.ବି.ସି.ରେ ଚାକିରି କରୁଥିଲେ । ଏହାଛଡ଼ା ଶ୍ରୀ ଦୟାନିଧି ଆରଣ ମଧ୍ୟ ଯୁଗ୍ମ-ସଂପାଦକ ଥିଲେ । କେନ୍ଦ୍ର ଉଦ୍‌ଯୋଗ ମଂତ୍ରୀ ଲାଲବାହାଦୁର ଶାସ୍ତ୍ରୀ ଏବଂ ରାଷ୍ଟ୍ରମଂତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଏଥିରେ ମୁଖ୍ୟ ଅତିଥି ରୂପେ ଏବଂ ସମ୍ମାନିତ ଅତିଥି ରୂପେ ଯୋଗଦେଇଥିଲେ । ଏହି ସଭାରେ ଓଡ଼ିଶାରେ ସରେଇକଳା, ଖରସୁଆଁ ମିଶ୍ରଣ ନିମଂତେ ଦାବିକରାଯାଇଥିଲା । ପରେ ୧୯୬୦ ମସିହା ଆରଂଭରେ କଲିକତାର ରାଜା ସୁବୋଧ ମଲ୍ଲିକ ପାର୍କ (ୱେଲିଂଗଟନ ସ୍କୋୟାର)ରେ ଯେଉଁ ୩ ଦିନବ୍ୟାପୀ ନି.ଭା. ପ୍ରବାସୀ ଉତ୍କଳ ସମ୍ମିଳନୀ ବସିଥିଲା, ସେଥିରେ ସରେଇକଳା, ଖରସୁଆଁ ସମେତ ବିଚ୍ଛିନ୍ନାଂଚଳର ଓଡ଼ିଶାରେ ମିଶ୍ରଣ ଦାବି କରାଯାଇଥିଲା । ଓଡ଼ିଆ ଭାଷା, ସଂସ୍କୃତି ଓ କଳାର ବିକାଶ କିପରି ବିଚ୍ଛିନ୍ନାଂଚଳମାନଂକରେ ହେବ, ସେଥିପାଇଁ କେତେକ ଯୋଜନା କରାଯାଇଥିଲା । ଏହି ସମ୍ମିଳନୀ ପ୍ରାୟ ୩ ଦିନ ଧରି ବସିଥିଲା ଏବଂ ପ୍ରତିଦିନ ପ୍ରାୟ ୩ ଲକ୍ଷ ଓଡ଼ିଆ ଏଥିରେ ଯୋଗଦେଉଥିଲେ । ଭାରତର ବହୁ ବିଶିଷ୍ଟ ନେତା, ଯଥା– ପଶ୍ଚିମବଂଗର ଯୋଗାଣମଂତ୍ରୀ ପ୍ରଫୁଲ୍ଲ ସେନ୍, କେନ୍ଦ୍ରମଂତ୍ରୀ ହୁମାୟୁନ କବୀର, ଅଶୋକ ସେନ ପ୍ରମୁଖ ଅତିଥିରୂପେ ଭାଷଣ ଦେଇଥିଲେ । ଏହି ସମ୍ମିଳନୀରେ ଓଡ଼ିଶା ବାହାରେ ଥିବା ଓଡ଼ିଆମାନଂକର ସ୍ୱାର୍ଥରକ୍ଷା ପାଇଁ 'ନିଖିଳ ଭାରତ ଉତ୍କଳ ମହାସଭା' ଗଠିତହୋଇଥିଲା । ମୁଁ ଏହାର ଅଧ୍ୟକ୍ଷରୂପେ ନିର୍ବାଚିତ ହୋଇଥିଲି ।

**ଓଡ଼ିଶା ପ୍ରଦେଶ ଗଠନରେ ପାରଳାଖେମୁଂଡି ମହାରାଜାଂକ ନେତୃତ୍ୱ –**

ଓଡ଼ିଶା ପ୍ରଦେଶ ଗଠନରେ ପାରଳାଖେମୁଂଡି ମହାରାଜା ଗଜପତି କୃଷ୍ଣଚଂଦ୍ର ନାରାୟଣ ଦେବଙ୍କ ନେତୃତ୍ୱ ଓଡ଼ିଆ ଜାତିର ଚିରଦିନ ସ୍ମରଣୀୟ ହୋଇ ରହିବ । ତାଂକ ଜନ୍ମ ୧୮୯୨ ସାଲ ଏପ୍ରିଲ ମାସ ୨୬ ତାରିଖରେ ହୋଇଥିଲା । ସେ ୧୯୩୦ ସାଲରେ ଲଂଡନରେ ଜାତୀୟ ଗୋଲ୍‌ଟେବୁଲ୍ ବୈଠକରେ ଜଣେ ପ୍ରତିନିଧି ରୂପେ ଯୋଗଦେଇ ଓଡ଼ିଶାର ଦାବି ଦୃଢ଼ତାର ସହିତ ଉପସ୍ଥାପିତ କରିଥିଲେ । ୨୧.୮.୧୯୩୨ ତାରିଖରେ ବ୍ରହ୍ମପୁରଠାରେ ଉତ୍କଳ ଇଉନିୟନ୍ ସମ୍ମିଳନୀ ବସିଥିଲା । ଭାଇସ୍‌ରୟଂକୁ 'ଓଡ଼େନାଲ କମିଟି' ସିଦ୍ଧାଂତ ବିରୋଧରେ ଓଡ଼ିଆମାନଂକର ପ୍ରତିବାଦ ଜଣାଇବାପାଇଁ ପାରଳା ମହାରାଜାଂକ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରାଯାଇଥିଲା । ୧୯୩୨ ସାଲ ଡିସେଂବର ୩୧ ତାରିଖରେ ସେ ଲଂଡନରେ ତୃତୀୟ ଗୋଲ୍‌ଟେବୁଲ୍ ବୈଠକରେ ଯୋଗଦେଇଥିବା କଲିକଟ୍

ମହାରାଜାଙ୍କୁ ଏକ କେବଲ୍ (ଟେଲିଗ୍ରାମ୍) ପଠାଇ ପାରଳାଖେମୁଣ୍ଡି ଜମିଦାରିକୁ ଓଡ଼ିଶା ପ୍ରଦେଶରେ ମିଶାଇବାକୁ ଦାବି କରିବା ନିମନ୍ତେ ଚାପଦେଇଥିଲେ। ମାତ୍ର ବ୍ରିଟିଶ ଶ୍ୱେତପତ୍ରରେ, ଯାହା ମାର୍ଚ୍ଚ ୧୯୩୩ରେ ପ୍ରକାଶ ପାଇଥିଲା, ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରି ଦୁଇଟିକୁ ଓଡ଼ିଶାରୁ ଅଲଗା କରି ଦିଆଯାଇଥିଲା। ଏଥିରେ ମହାରାଜା ଖୁବ୍ କ୍ଷୁବ୍ଧ ହୋଇଥିଲେ।

ଉତ୍କଳ ସମ୍ମିଳନୀର ୨୩ଶ ଅଧିବେଶନରେ ପାରଳାଖେମୁଣ୍ଡି ଓ ଜୟପୁରକୁ ଓଡ଼ିଶାରେ ମିଶାଇବାପାଇଁ ଦୃଢ଼ ଦାବି କରାଯାଇଥିଲା। ୩.୭.୧୯୩୩ ତାରିଖରେ ପାରଳା ମହାରାଜା ଲଣ୍ଡନରେ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆଙ୍କୁ ଏକ ପ୍ରତିନିଧିମଣ୍ଡଳୀର ଭେଟି ପାରଳାଖେମୁଣ୍ଡି ଓ ଜୟପୁର ମିଶ୍ରଣ ଦାବି କରିଥିଲେ। ମାତ୍ର ଏକ ତେଲୁଗୁ ପ୍ରତିନିଧିମଣ୍ଡଳୀ ଚାପରେ ଏବଂ ଭାରତ ଓ ମାନ୍ଦ୍ରାସ ସରକାରଙ୍କ ପ୍ରତିକୂଳ ମନୋଭାବ ଯୋଗୁଁ ଭାରତ ସଚିବ ପାରଳାଖେମୁଣ୍ଡିକୁ ଓଡ଼ିଶାରେ ମିଶାଇବାକୁ ରାଜିହୋଇନଥିଲେ। ସେ କେବଳ ଜୟପୁରକୁ ଓଡ଼ିଶାରେ ମିଶାଇବାପାଇଁ ରାଜିହୋଇଥିଲେ। ପାରଳାଖେମୁଣ୍ଡିରେ ତେଲୁଗୁ ସଂଖ୍ୟାଗରିଷ୍ଠତା ଥିବାରୁ ଭାରତ ସରକାର, ମାନ୍ଦ୍ରାସ ସରକାର ଏବଂ ବ୍ରିଟିଶ ସରକାର ପରଳାଖେମୁଣ୍ଡିକୁ ଓଡ଼ିଶାରେ ମିଶାଇବାର ପକ୍ଷପାତୀ ନଥିଲେ। ବ୍ରିଟିଶ ସରକାରଙ୍କ ଏଭଳି ପ୍ରତିକୂଳ ମନୋଭାବ ଦେଖି ପାରଳାଖେମୁଣ୍ଡି ମହାରାଜା ଶେଷରେ ନିଜ ରାଜ୍ୟକୁ ଦୁଇଭାଗ କରି ଖଣ୍ଡେ ମାନ୍ଦ୍ରାସରେ ଏବଂ ଅନ୍ୟ ଖଣ୍ଡକୁ ଓଡ଼ିଶାରେ ମିଶାଇବାପାଇଁ ପ୍ରସ୍ତାବ ଦେଇଥିଲେ।

ସୌଭାଗ୍ୟବଶତଃ ଗଭର୍ଣମେଣ୍ଟ ଅଫ୍ ଇଣ୍ଡିଆ ବିଲ୍ ବଳରେ ନିଯୁକ୍ତ ଜଏଣ୍ଟ ସିଲେକ୍ଟ କମିଟି ମହାରାଜାଙ୍କ ପାରଳାଖେମୁଣ୍ଡିକୁ ଦୁଇଭାଗ କରିବା ପ୍ରସ୍ତାବଟିକୁ ଗ୍ରହଣକରିନେଇଥିଲେ।

**କଲିକତାରେ ପାରଳା ମହାରାଜା –**

ମୁଁ କଲିକତାରେ ଚାକିରି କରୁଥିବାବେଳେ ସମ୍ଭବତଃ ୧୯୪୩ ମସିହାରେ ପାରଳା ମହାରାଜା ଦ୍ୱିତୀୟ ଥର ପାଇଁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିଲାବେଳେ ଥରେ କଲିକତା ଯାଇଥିଲେ। ତାଙ୍କ ସହିତ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ପ୍ୟାରୀଶଙ୍କର ରାୟ (ଯେ କି କଂଗ୍ରେସରୁ ଇସ୍ତଫା ଦେଇ ପାରଳା ମହାରାଜାଙ୍କ ସରକାରରେ ଯୋଗଦେଇଥିଲେ) ଓ ମୁଁ ଏକ ବୈଠକରେ ଉପସ୍ଥିତ ଥିଲୁଁ। ବୈଠକରେ ମୁଁ ଓଡ଼ିଆ ଶ୍ରମିକମାନଙ୍କର ଦୁର୍ଦ୍ଦଶା ସମ୍ବନ୍ଧରେ କହିଥିଲି। ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ପରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇଥିଲେ। ତା'ପରେ ପାରଳାଖେମୁଣ୍ଡି ମହାରାଜା ୩୧.୧୧.୧୯୪୧ ତାରିଖରେ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଶୋଭାନ ଖାଁଙ୍କୁ ନେଇ ଦ୍ୱିତୀୟ ଥର ପାଇଁ ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ। ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ତାଙ୍କୁ କଲିକତାବାସୀ ଓଡ଼ିଆମାନେ

କଲିକତା ଡାକି ନେଇ ଏକ ବୈଠକରେ ପ୍ରବାସୀ ଓଡ଼ିଆଂକର ବିଭିନ୍ନ ସମସ୍ୟା ସଂବଂଧରେ ଅବହିତ କରାଇଥିଲେ। ସମଗ୍ର ଦେଶର ମୁଖ୍ୟ ଧାରାରୁ ବିଚ୍ୟୁତ ହୋଇ ବ୍ରିଟିଶ ସରକାର ସହିତ ଦ୍ୱିତୀୟ ମହାଯୁଦ୍ଧରେ ସହଯୋଗ କରୁଥିବାରୁ ସମସ୍ତେ ତାଂକୁ ଓ ତାଂକ ମଂତ୍ରିମଂଡଳକୁ ସମାଲୋଚନା କରୁଥିଲେ। କଲିକତାର ଓଡ଼ିଆ ସଭା କୌଣସି ରାଜନୈତିକ ଦଳ ଦ୍ୱାରା ପ୍ରଭାବିତ ନଥିଲା। ଏହା କେବଳ ପ୍ରବାସୀ ଓଡ଼ିଆମାନଂକର ବିଭିନ୍ନ ସମସ୍ୟା ବିଷୟରେ ଆଲୋଚନା କରିବାପାଇଁ ଉଦ୍ଦିଷ୍ଟ ଥିଲା। ତେଣୁ ଦଳମତନିର୍ବିଶେଷରେ ପ୍ରବାସୀ ଓଡ଼ିଆ ନେତାମାନେ ଏଥିରେ ଯୋଗଦେଇଥିଲେ।

ସେ ଯାହାହେଉ, ଅଂତର୍ବିବାଦରେ ତାଂକ ମଂତ୍ରିମଂଡଳ ଭୁଷୁଡ଼ିପଡ଼ିଲା। ସେ ୧୯୪୪ ସାଲ୍ ଜୁନ ମାସରେ ଇସ୍ତଫା ପ୍ରଦାନ କରିଥିଲେ। ତାଂକ ମଂତ୍ରୀମଂଡଳର ସ୍ୱଳ୍ପ ସମୟ ମଧ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ଏସ୍.ସି.ବି. ମେଡ଼ିକାଲ କଲେଜ କଟକଠାରେ ପ୍ରତିଷ୍ଠିତ ହୋଇଥିଲା। ମହାରାଜା ମୁଖ୍ୟମଂତ୍ରୀ ଭାବେ ଯେଉଁ ବେତନ ଓ ଭତ୍ତା ପାଉଥିଲେ, ତାହାକୁ ସେ ମେଡ଼ିକାଲ ପାଂଠିକୁ ଦାନକରିଦେଉଥିଲେ।

ଓଡ଼ିଆଭାଷୀ ଅଂଚଳର ଏକତ୍ରୀକରଣ ଏବଂ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଗଠନରେ ପାରଳା ମହାରାଜାଂକ ଐତିହାସିକ ଅବଦାନ ଓଡ଼ିଆ ଜାତିର ଚିରସ୍ମରଣୀୟ ହୋଇ ରହିବ।

# ଦ୍ୱାବିଂଶ ଉଲ୍ଲାସ

## କଟକରେ ସାମାଜିକ ଜୀବନ

**କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟିରେ ବିଭାଜନ – କଲିକତାରେ ରହଣି**

ମୋର କଟକରେ ରହଣିକାଳରେ ମୁଁ ବିଭିନ୍ନ ଜାଗାରେ ରହିଥିଲି। ମହନି ଅପାଂକ ଘର ଛାଡ଼ିବାପରେ ମୁଁ କିଛି ଦିନ ଗୌରୀଶଂକର ପାର୍କ ନିକଟରେ ଥିବା ତୃପ୍ତି ହୋଟେଲରେ ରହିଥିଲି। ତା'ପରେ ରାଣୀହାଟରେ ପାରାଡାଇଜ୍ ହଲ୍‌ରେ କିଛିଦିନ ରହିଥିଲି। ଏହାପରେ ମୁଁ ଓଡ଼ିଆବଜାରସ୍ଥ ଜାନକୀନାଥ ଭବନରେ (ନେତାଜୀ ସୁଭାଷଂକ ଜନ୍ମସ୍ଥାନ) ପ୍ରାୟ ଏକବର୍ଷ ଥିଲି। ଏହାପରେ ରାଣୀହାଟରେ 'ଆରତୀ' ଅଫିସରେ କିଛି ଦିନ ଥିଲି। ସେଠାରୁ ମୁଁ କଲିକତା ଯାଏଁ। କଲିକତାରେ ଦୀର୍ଘ ୨୦ବର୍ଷ କାଳ କେଶୋରାମ୍ କଟନ୍‌ମିଲ୍‌ରେ ଚାକିରି ଜୀବନଅତିବାହିତକରେ।

କଟକରେ ଥିଲାବେଳେ ମୁଁ ପ୍ରାୟ ଚୌଧୁରୀବଜାରସ୍ଥ ପ୍ୟାରିଶଂକର ରାୟଂକ ଘରକୁ ଯାଉଥିଲି। ଏହାଛଡ଼ା କାଠଗଡ଼ାସାହିସ୍ଥ ବୀରେନ୍ ମିତ୍ରଂକ ଘରକୁ ମଧ ଯାଉଥିଲି। ପ୍ୟାରିଶଂକର ରାୟ କର୍ମଯୋଗୀ ଗୌରୀଶଂକର ରାୟଂକ ନାତି। ସେ ବିଶ୍ୱନାଥ ଦାଶ ମଂତ୍ରିମଂଡଳରେ ପାର୍ଲିଆମେଂଟାରୀ ସେକ୍ରେଟେରୀ ଥିଲେ। ୧୯୩୯ ମସିହାରେ କଂଗ୍ରେସ ମଂତ୍ରିମଂଡଳ ଇସ୍ତଫା ଦେଲା ପରେ ସେ ଗାଂଧିଜୀଂକ ଆଦିଷ୍ଟ ବ୍ୟକ୍ତିଗତ ସତ୍ୟାଗ୍ରହୀ ଭାବରେ ଜେଲ୍ ବରଣ କରଂତି। ଜେଲ୍‌ରୁ ଫେରି କିଛିଦିନ ପରେ ସେ କଂଗ୍ରେସରୁ ବାହାରିଯାଇ ପାରଳାଖେମୁଂଡି ମହାରାଜାଂକ ମିଳିତ ମଂତ୍ରିମଂଡଳରେ ପାର୍ଲିଆମେଂଟାରୀ ସେକ୍ରେଟେରୀ ରୂପେ ଯୋଗଦିଅଂତି। ମୁଁ ପ୍ୟାରିବାବୁଂକ ମାଆଂକୁ ମାଉସୀମା' ବୋଲି ଡାକୁଥିଲି। ସେ ବଡ଼ ସ୍ନେହଶୀଳା ଥିଲେ। ତାଂକର ତିନୋଟି ଝିଅ ମଧ୍ୟରୁ ବଡ଼ ଝିଅ ଅଂଶୁମାଳୀ ରାୟ ବଡ଼ ସ୍ନେହପରାୟଣା ଥିଲା। ତାକୁ ସମସ୍ତେ କ୍ଷମା ବୋଲି ଡାକୁଥିଲେ। କ୍ଷମା ତଳଭଉଣୀ ଶୋଭା ମଧ ଆମକୁ ଆଦର ଯତ୍ନ କରୁଥିଲା। ପରେ ସେ ଇତିହାସର ଅଧ୍ୟାପିକା ହୁଏ ଏବଂ ବିବୁଧେଂଦ୍ର ମିଶ୍ରଂକୁ ବିବାହକରେ।

ପ୍ୟାରିଶଂକରଂକ ଦାଦା-ଝିଅ ଭଉଣୀ ରାଜରାଣୀ ମୋର ରେଭେନ୍‌ସା କଲେଜରେ ବି.ଏ. କ୍ଲାସରେ ସହପାଠିନୀ ଥିଲା। ମୁଁ ବେଳେବେଳେ ତାଂକ ଘରକୁ ମଧ ଯାଉଥିଲି। ରାଜରାଣୀର ଭଉଣୀମାନେ ମୋ ପ୍ରତି ବେଶ୍ ସହୃଦୟତା ଦେଖାଉଥିଲେ। ମୁଁ ଏବଂ ବିବୁଧେଂଦ୍ର ମିଶ୍ର ପ୍ୟାରିଶଂକରଂକ ଘରଲୋକ ଭଳି ହୋଇଯାଇଥିଲୁ।

**ନଂଦିକେଶରୀ ପଠାରେ –**

ଥରେ ପ୍ୟାରିଶଂକର ରାୟ, ମାଉସୀମା', ମୁଁ, କ୍ଷମା ଓ ଶୋଭା ଏବଂ ରାଜରାଣୀ ପ୍ରଭୃତି କଟକ ମହାନଦୀ ଆରପାରିରେ ଥିବା ନଂଦିକେଶରୀ ପଠାକୁ ପିକ୍‌ନିକ୍ କରିବାକୁ ଯାଇଥିଲୁ। ଏହା ୧୯୩୮ ସାଲ ଡିସେଂବର ୨୬ ତାରିଖର କଥା। ଡଂଗାରେ ମହାନଦୀ ପାରହୋଇ ଆମେ ସୁବର୍ଣ୍ଣକେଶରୀଂକ କନ୍ୟା ରାଜକୁମାରୀ ନଂଦିକାଂକ ସମାଧିପୀଠ ନିକଟରେ ପହଂଚିଲୁ। ସେଠାରେ ଜିନିଷପତ୍ର ରଖି ରଂଧାବଢ଼ାର ଆୟୋଜନ କଲୁ। ଏଇ ଐତିହାସିକ ପୀଠ ସଂପୂର୍ଣ୍ଣ ଅବହେଳିତ ଅବସ୍ଥାରେ ପଡ଼ିଥିବାର ଦେଖି ବଡ଼ ଦୁଃଖ ଲାଗିଲା। ଚାକୁଂଡା, ଘାସ ଓ ଗୁଳ୍ମ ଲତାରେ ସମଗ୍ର ସ୍ଥାନଟି ଆଚ୍ଛାଦିତ ହୋଇପଡ଼ିଥିଲା। କେଶରୀବଂଶର ଶେଷ ରାଜା ସୁବର୍ଣ୍ଣକେଶରୀଂକ ଏକମାତ୍ର ଦୁହିତା ନଂଦିକା ରାଜ୍ୟର ଉତ୍ତରାଧିକାରିଣୀ ଥିଲେ। ଏହି ସମୟରେ ଗଂଗବଂଶୀୟ ରାଜା ଚୋଡ଼ଗଂଗ କଳିଂଗ ଆକ୍ରମଣ କରଂତି। ସୁବର୍ଣ୍ଣକେଶରୀଂକ ସୈନ୍ୟବାହିନୀ ସଂଗେ ତାଂକ ସୈନ୍ୟବାହିନୀର ଘମାଘୋଟ ଯୁଦ୍ଧ ଚାଲେ। ବହୁସଂଖ୍ୟାରେ ଉଭୟ ପକ୍ଷର ସୈନ୍ୟସାମଂତ ହତାହତ ହୋଇଥିଲେ। ରାଜଜେମା ଏଭଳି ଜନକ୍ଷୟରେ ମର୍ମଂତୁଦ ବେଦନା ଅନୁଭବ କରିଥିଲେ। ତାଂକ କୋମଳ ହୃଦୟ ଅସହ୍ୟ ବ୍ୟଥାରେ କାଂଦିଉଠିଥିଲା। ସେ ଦିନେ ରାତିରେ ଗୋପନରେ ପାଲିଂକିରେ ଜଣେ ଦୁଇଜଣ ଦାସୀଂକ ସହ ଶତ୍ରୁପକ୍ଷ ଚୋଡ଼ଗଂଗ ଦେବଂକ ଶିବିରରେ ଯାଇ ପହଂଚଂତି ଓ ତାଂକର ପ୍ରଣୟ ଭିକ୍ଷା କରଂତି। ସେ ଭାବିଥିଲେ, ଚୋଡ଼ଗଂଗଂକ ସହିତ ସେ ପରିଣୟସୂତ୍ରରେ ଆବଦ୍ଧ ହେଲେ ଦୁଇପକ୍ଷର ଯୁଦ୍ଧ ଆପେ ଆପେ ବଂଦହୋଇଯିବ ଓ ଶାଂତି ସ୍ଥାପିତ ହେବ। ମାତ୍ର ଦୁର୍ଭାଗ୍ୟକୁ ଚୋଡ଼ଗଂଗ ତାଂକର ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରଂତି। ଦୁଃଖ ଓ ଅପମାନରେ ଭାଂଗିପଡ଼ଂତି ନଂଦିକା। ସେ ଶିବିକାରେ ନିଜ ପ୍ରାସାଦକୁ ଫେରିଆସଂତି। ମାତ୍ର ବାଟରେ ଦୁଃଖ ଓ ଆତ୍ମପୀଡ଼ାରେ ଅସ୍ଥିର ହୋଇ ସେ ନିଜ ଆଂଗୁଠିରେ ଥିବା ହୀରା ମୁଦିକୁ ଚୁଷି ବିଷଜ୍ୱାଳାରେ ପ୍ରାଣତ୍ୟାଗକରଂତି। ମହାନଦୀର ଏହି ସ୍ଥାନରେ ତାଂକର ସମାଧିପୀଠ ଅଛି ବୋଲି ଲୋକମୁଖରୁ ଜଣାଯାଏ।

ନଂଦିକା ଓଡ଼ିଶା ଇତିହାସର ଏକ ବିୟୋଗାତ୍ମକ (ଟ୍ରାଜେଡ଼ି) ନାଟକର ଅଭିଶପ୍ତା ନାୟିକା। ତାଂକ କାହାଣୀ ଜନମୁଖରେ ବହୁ ଭାବରେ ପ୍ରଚଳିତ ଅଛି। ତାଂକୁ ନେଇ ବହୁ ଲୋକଗାଥା ରଚିତ ହୋଇଛି।

ମୁଁ ନଂଦିକେଶରୀ ପଠାରୁ ଫେରି ମୋର ହୃଦୟର ଭାବନାଗୁଡ଼ିକୁ ଏକ ଦୀର୍ଘ କବିତାରେ ପ୍ରକାଶକରିଥିଲି। ଏହି କବିତାର ଶୀର୍ଷକ ଥିଲା 'ଅସମାପିକା'। ଏହା ସେତେବେଳେ 'ସହକାର' ପତ୍ରିକାରେ ପ୍ରକାଶପାଇଥିଲା। ଏ କବିତାଟି ପଢ଼ି ସାରା ଓଡ଼ିଶାର ପାଠକପାଠିକାମାନେ ପ୍ରଶଂସା କରି ମୋତେ ଏବଂ

'ସହକାର' ସଂପାଦକଂକୁ ପତ୍ରମାନ ଲେଖିଥିଲେ। ଅନ୍ୟ ଜଣେ ପ୍ରସିଦ୍ଧ ଓଡ଼ିଆ କବି ହରିଶ୍ଚନ୍ଦ୍ର ବଡ଼ାଲ ଅନ୍ୟ ଏକ ଦୀର୍ଘ କବିତା ମୋ କବିତା ଉପରେ ଲେଖିଥିଲେ। ତାହା ମଧ୍ୟ 'ସହକାର'ରେ ପ୍ରକାଶ ପାଇଥିଲା। ମୋ କବିତା 'ଅସମାପିକା'ର କେତେକ ପଂକ୍ତି ତଳେ ଦିଆଗଲା —

''ଅତୀତର ସେଇ କଥା ମନେନାଇ, ଯାଇଅଛି ଭୁଲି,
ତଥାପି ଜାଣେନା କିଆଁ ପଉଷର ଏ ମ୍ଳାନ ଗୋଧୂଳି
ସ୍ମରଣ କରାଏ ତାହା ବାରେ ବାରେ ଆଜି ମୋର ମନେ
ଝରା କୁସୁମର ଗାତି ସେଇ କଥା ବାହୁନେ ଗୋପନେ।

ସଂତରଣ କରି ହେଲେ ଶତାବ୍ଦୀର ସ୍ୱପ୍ନ ପାରାବାର
ଇତିହାସ ସେଇ କଥା ଆଜି ଏଠି କରଇ ପ୍ରଚାର।
ଅଶ୍ରୁ-ସିକ୍ତ ଶୀତର ଆକାଶ
ମାଟିର ମଳିନ ବୁକେ ରଖେ ତାର ମୌନ ଦୀର୍ଘଶ୍ୱାସ।''

''କେବେ ଏକ ରାଜାର କୁମାରୀ
ଦୁନିଆକୁ କହିଥିଲା, 'ମୁହିଁ ନାରୀ, ଆଗେ ମୁହିଁ ନାରୀ।'
ଜଗତର ମନେନାଇ, ଇତିହାସ ଯାଇଚି ତା ଭୁଲି,
ତାହାରି ମାଟିର ଦେହ ଧୂଳି ସାଥେ ହୋଇଚି ତ ଧୂଳି।
ଅଛି ଖାଲି ବ୍ୟଥାର ଆଭାସ
ସ୍ମୃତିର ସାମଗ୍ରୀ ତାହା ସ୍ମରଣର ଥିଲେ ଅବକାଶ॥''

''ଜୀବନର ପ୍ରତିଶୋଧ ନେଇଥାଅ ଯଦି ଏଇପରି
ବାସ୍ତବ କି କ୍ଷମା ଦେବ? କୋଟି ନେତ୍ରୁ ଅଶ୍ରୁ ପଡୁ ଝରି,
ମୂଲ୍ୟ ତାର ରହିବ ଅଦେୟ
ଯାତ୍ରାପଥେ ପରମ ପାଥେୟ
ପାରିନ ସଂଗ୍ରହ କରି ଅସହାୟେ କରିଚ ନିର୍ଭର
ଅପରର ଦୟା ପରେ କେତେ ଦିନ ରହିବ ଅମର?
ହୋଇ ପାରିଥାଂତ ଯାହା,
ତୁମେ ତାହା ପାରିନାହଁ ହୋଇ
ଏ ରାତ୍ରିର ପକ୍ଷତଳେ
ସେଇ ଦୁଃଖ କାଂଦେ କଇଁକଇଁ
ତୁମ ଜୟ ଉତ୍ସବରେ ଚିରଦିନ
ତା ଅସମାପିକା
ରାଜଜେମା ହେ ନାରୀ ନଂଦିକା।'' (ପାଂଡୁଲିପି)

**ବୀରେନ୍ ପ୍ରସଂଗ –**

ଆଗରୁ ବୀରେନ୍ ମିତ୍ର କଥା କେତେ ଥର କହିଛି। ସେ ରେଭେନ୍ସାରେ ମୋର ବି.ଏ. କ୍ଲାସ୍‌ରେ ସହପାଠୀ ଥିଲା। ସେତେବେଳକୁ ସେ ଛୋଟା ହୋଇ ନଥିଲା। ସାଇକେଲ୍‌ରେ ଯିବାଆସିବା ଓ ଚଲାବୁଲା କରୁଥିଲା। ପରେ କୌଣସି ବେମାରିରେ ତାର ଗୋଟାଏ ଗୋଡ଼ ଛୋଟାହୋଇଗଲା। ପ୍ରଥମେ ସେ ଲୟାଲିଷ୍ଟ (ରାଜଭକ୍ତ) ଗୋଷ୍ଠୀରେ ଥିଲା; ଆମ ବିରୁଦ୍ଧରେ ଲିଫ୍‌ଲେଟ୍ ଛାପି ବାଂଟୁଥିଲା। ପରେ ସେ ଆମ ଗୋଷ୍ଠୀରେ ଆସି ମିଶିଲା। ମେଡ଼ିକାଲ ସ୍କୁଲ ଛାତ୍ରଧର୍ମଘଟଠାରୁ ତାର ମୋର ଘନିଷ୍ଠତା କ୍ରମେ ବଢ଼ିଗଲା। ସେ ଓ ମୁଁ ବେଶ୍ ଘନିଷ୍ଠ ହୋଇଗଲୁ। ୧୯୩୯ ମସିହାରେ ଆମେ ଦୁହେଁ ବି.ଏ. ପରୀକ୍ଷା ଦେଇଥିଲୁ। ପରୀକ୍ଷା ପାଇଁ ପ୍ରସ୍ତୁତି ଚାଲିଥାଏ। ଆମେ ଠିକ୍ କଲୁ, ସେ ଦିନେ ରାତିରେ ମୁଁ ରହୁଥିବା ଘରେ ଆସି ଶୋଇବ ଓ ମୁଁ ଦିନେ ରାତିରେ ତା ଘରକୁ ଯାଇ ଶୋଇବି। ରାତି ୨ଟାରେ ଉଠି ଦୁହେଁ ପାଠ ପଢ଼ିବୁ। ତଦନୁସାରେ ସେ ରାତି ୧୦ଟାରେ ଖାଇପିଇ ସାରି ଗୋଟାଏ ଲଂଠନ ଓ ବହିପତ୍ର ଧରି ମୁଁ ରହୁଥିବା ତେଲେଂଗାବଜାର ଘରକୁ ଆସୁଥିଲା। ଆମେ ଗୋଟିଏ ଖଟରେ ଶୋଇପଡୁ। ମାତ୍ର ରାତିରେ ନିଦ ଭାଂଗେନାହିଁ। ପଢ଼ାପଢ଼ି କିଛି ହୁଏନାହିଁ। ସକାଳୁ ଉଠି ମୁଁ ତାକୁ ଦୋଷଦିଏ "ତୁ କାହିଁକି ଉଠାଇଲୁ ନାହିଁ।" ସେ ମଧ୍ୟ ମୋତେ ଦୋଷଦିଏ – ମୁଁ କାହିଁକି ଉଠାଇଲି ନାହିଁ। ତା ପର ରାତିରେ ମୁଁ ଖିଆପିଆ ସାରି ଗୋଟାଏ ଲଂଠନ ଧରି ତା ଘରକୁ ଯାଏ; ଏକାଠି ଗୋଟାଏ ଖଟରେ ଶୋଉ। ମାତ୍ର ରାତିରେ କାହାର ନିଦ ଭାଂଗେନାହିଁ। ଫଳରେ ପଢ଼ାପଢ଼ି କିଛି ହୋଇପାରେନାହିଁ। ସକାଳୁ ସେ ମୋତେ ଏବଂ ମୁଁ ତାକୁ ଗାଳିଦିଆଦେଇହେଉ; କାହିଁକି ଉଠାଇଲୁନାହିଁ ବୋଲି ପରସ୍ପର ବିରୋଧରେ ଅଭିଯୋଗକରୁ। ଆମ ଭିତରେ କଥା-କଥାକେ ପ୍ରାୟ ଦୋ-ଅକ୍ଷରୀ ଚଳୁଥିଲା। ସେହିଥିରୁହିଁ ବାକ୍ୟ ଆରଂଭ ହୁଏ। ବୀରେନ୍‌ର ସାନଭଉଣୀ ଆସି ଆମ ଦୁହିଁଙ୍କୁ ଦୁଇ କପ୍ ଚା' ଧରାଇଦେଇ ଯାଏ। ଆମ ଝଗଡ଼ା ବଂଦହୋଇଯାଏ। ବୀରେନ୍ ପରେ ମୁଖ୍ୟମଂତ୍ରୀ ହୁଏ; ମାତ୍ର ମୁଁ ସକ୍ରିୟ ରାଜନୀତି ଏକପ୍ରକାର ଛାଡ଼ିଦିଏ। ସେତେବେଳେ କିଏ ଜାଣିଥିଲା, ଆମର ଭବିଷ୍ୟତ ଏପରି ମୋଡ଼ ନେବ? ମୁଁ ସକ୍ରିୟ ରାଜନୀତି କାହିଁକି ଛାଡ଼ିଲି ଏବଂ କିପରି ପରିସ୍ଥିତିରେ ଛାଡ଼ିଲି, ତାହା ପରେ କହିବି।

**'ଆରତୀ' ପତ୍ରିକା –**

୧୯୪୧ ସାଲରେ ରାଣୀହାଟର ମୋଚିସାହି ଗଳିରେ ଥିବା ଏକ ଘରୁ 'ଆରତୀ' ପତ୍ରିକା ପ୍ରକାଶପାଏ। ଘରଟି ଏକତାଲାବିଶିଷ୍ଟ ଥିଲା। ସେ ଘରେ ଉପେନ୍ଦ୍ର ସାମଲ ରହୁଥାଂତି। ସେ ଏହି ପତ୍ରିକାର ପ୍ରକାଶକ ଥାଇ ପତ୍ରିକାଟି ପ୍ରକାଶ କରୁଥାଂତି। ପ୍ରଥମେ ଡ. ମାୟାଧର ମାନସିଂ ଏହାର ସଂପାଦକ ଥିଲେ।

ଏହି ପତ୍ରିକାରେ ମୁଁ ନିୟମିତ ଲେଖୁଥାଏ। ମୋର ବିଖ୍ୟାତ ଗଳ୍ପ 'ମଶାଣିର ଫୁଲ', 'ଅଂଧାରୁଆ', 'ମାଟିର ଡାକ', 'ମଲା କଇଁ' ପ୍ରଭୃତି ଏହି ପତ୍ରିକାରେ ପ୍ରକାଶପାଇଥିଲା। ସମାଲୋଚକମାନଂକ ମତରେ ଏହି ଗଳ୍ପଗୁଡ଼ିକ ଓଡ଼ିଆ ଗାଥାସାହିତ୍ୟରେ ଏକ ନୂତନ ଯୁଗ ସୃଷ୍ଟିକରିଥିଲା।

ଏହି ଗଳ୍ପଗୁଡ଼ିକ ମାଧ୍ୟମରେ ଫ୍ରୟଡ଼ୀୟ ମନଃସମୀକ୍ଷା ଏବଂ ମାର୍କ୍ସଂକ ସାମ୍ୟବାଦୀ ବିଚାରଧାରା ଓ ପ୍ରଗତୀବାଦୀ ଦୃଷ୍ଟିକୋଣ ପ୍ରତିଫଳିତ ହୋଇଥିଲା। ଏଥିପୂର୍ବରୁ ୧୯୩୨ ମସିହାରେ ସବୁଜ ସାହିତ୍ୟ ସମିତିର ମୁଖପତ୍ର 'ଯୁଗବୀଣା'ରେ ମୋର 'ବିସର୍ଜନ' ଗଳ୍ପଟି ପ୍ରକାଶପାଇ ମାର୍କସୀୟ ଚିଂତାଧାରାର ମୂଳଦୁଆ ପକାଇଥିଲା। ଏହା ବହୁ ବିଶିଷ୍ଟ ସମାଲୋଚକ ସେମାନଂକ ସଂଦର୍ଭରେ ପ୍ରକାଶ କରିଯାଇଛଂତି, ଯଥା– ଗୋବିଂଦ ତ୍ରିପାଠୀ, ଅଧ୍ୟାପକ ଡ. ମଥୁରାନାଥ ହୋତା, ଅଧ୍ୟାପକ ଡ. ବୈଷ୍ଣବ ସାମଲ, ଅଧ୍ୟାପକ ଡ. ପ୍ରଦୀପ୍ତ ବାରିକ୍ ପ୍ରମୁଖ ସମାଲୋଚକ। ନ୍ୟସ୍ତସ୍ୱାର୍ଥମାନଂକ ପ୍ରଭାବରେ କିପରି ଆନୁଷ୍ଠାନିକ ଧର୍ମ ତାର ମହତ୍ତ୍ୱ ହରାଇବା ସଂଗେ ସଂଗେ ଶୋଷଣର ଶିକୁଳିମାନ ସୃଷ୍ଟିକରୁଛି, ତାହା ଦେଖାଇଦିଆଯାଇଥିଲା। 'ଆରତୀ'ର ୨-୩ଟି ସଂଖ୍ୟା ବାହାରିବା ପରେ ଆରତୀର ସଂପାଦକ ଦାୟିତ୍ୱରୁ ଡ. ମାୟାଧର ମାନସିଂହ ଓହରିଯାଆଂତି, ଉପେନ୍ଦ୍ର ସାମଲ ଏହାର ସଂପାଦକ ହୁଅଂତି। ମାତ୍ର ସଂପାଦନାର ପ୍ରାୟ ସମସ୍ତ ଦାୟିତ୍ୱ ମୋତେହିଁ ନେବାକୁ ପଡୁଥିଲା। 'ଆରତୀ' ପତ୍ରିକା ଓଡ଼ିଶାରେ ଏକ ଉନ୍ନତ ମାନର ତଥା ସଂଭ୍ରାଂତ ରୁଚିର ପତ୍ରିକା ଥିଲା। ଏହାକୁ ପାଠକପାଠିକାମାନେ ଆଜି ପର୍ଯ୍ୟଂତ ମନେରଖିଛଂତି।

କିଛିଦିନ ପରେ ଉପେନ୍ଦ୍ର ସାମଲ କ୍ୟାଟନମେଂଟ୍ ରୋଡ଼ରେ ଏକ ବଡ଼ ବଂଗଳାରେ ରହିଲେ। ମୁଁ 'ଆରତୀ' ଅଫିସ୍‌ରେ ରହିଲି। ସେଥିରେ ୨-୩ଟି ରୁମ୍ ଥିଲା। ଏହା ଏକତାଲାବିଶିଷ୍ଟ ଘର ଥିଲା। ଏହା ପାଖକୁ ଲାଗି ଅନ୍ୟ ଏକ ଏକତାଲା ଘରେ ଘରର ମାଲିକ ବଂଗାଳୀ ଭଦ୍ରଲୋକ ଯତୀନ୍‌ବାବୁ ସପରିବାର ରହୁଥିଲେ। ଦୁଇ ଘର ମଝିରେ ଏକ ଛୋଟ ସରୁ ରାସ୍ତା ଥିଲା। ଏହି ଘରେହିଁ ବିଖ୍ୟାତ କବି ହରୀଂଦ୍ରନାଥ ଚଟ୍ଟୋପାଧ୍ୟାୟ ଏବଂ ତାଂକର ୨ୟ ପକ୍ଷର ସ୍ତ୍ରୀ ସୁନୀତା ଦେବୀ ମୋର ଅତିଥି ଭାବେ ପ୍ରାୟ ୨ମାସ ରହିଥିଲେ। ସେ ଏହି ଘରେ ମୋର ଖଂଡକାବ୍ୟ 'ବାଜି ରାଉତ' ଏବଂ ଅନ୍ୟ କେତେକ କବିତାର ଇଂରାଜୀ ପଦ୍ୟାନୁବାଦ କରିଥିଲେ। ଏହାପୂର୍ବରୁ କୁହାଯାଇଛି।

**'ସହକାର' ସଂପାଦନା : ମୋର ସାମ୍ୟବାଦୀ କବିତା –**

ପୂର୍ବ-ସୂଚନାକ୍ରମେ ମୁଁ ୧୯୩୮ ମସିହାରୁ ୧୯୪୨ ମସିହା ପର୍ଯ୍ୟଂତ 'ସହକାର' ପତ୍ରିକାର ସଂପାଦନା ଦାୟିତ୍ୱରେ ଥିଲି। ବାଳକୃଷ୍ଣ କର ଏହାର ସଂପାଦକ ଥିଲେ। ମୁଁ ଏହି ପତ୍ରିକାରେ ବହୁତ ମାର୍କ୍ସୀୟ ଓ ଫ୍ୟାସିବାଦ ବିରୋଧୀ କବିତା ଲେଖିଥିଲି, ଯଥା– 'କାରାଗାର', 'ହିଟଲର୍', 'ସ୍ପେନ', 'ସର୍ବହରା'

ପ୍ରଭୃତି। ଏସବୁ କବିତା ସେତେବେଳେ ଓଡ଼ିଶାରେ ଚାଂଚଲ୍ୟ ଖେଳାଇଦେଇଥିଲା।

ସ୍ପେନ୍‌ରେ ସେତେବେଳେ ଫାସୀବାଦୀ ଫ୍ରାଂକୋ ବିରୁଦ୍ଧରେ "No Passaran" (ଆଗକୁ ଯିବାକୁ ଦେବୁନାହିଁ)" ଧ୍ୱନି ଦେଇ ଜନଯୁଦ୍ଧ ଚାଲିଥିଲା। ସ୍ପେନ୍ ଯୁଦ୍ଧରେ ବହୁ ବିଖ୍ୟାତ ଲେଖକ, ଯଥା– ଖ୍ରୀଷ୍ଟଫର୍ କଡ଼ୱେଲ୍, ରାଲ୍‌ଫ ଫକ୍ସ, କବି ଓ ନାଟ୍ୟକାର ଲୋର୍‌କା ପ୍ରମୁଖ ଏହି ଯୁଦ୍ଧରେ ସହିଦତ୍ୱ ବରଣ କରିଥିଲେ। ସେମାନେ ବିଶ୍ୱ-ଇତିହାସରେ ଅମର ହୋଇ ରହିଛନ୍ତି। କର୍ଡ଼ ୱେଲଂକ 'Illusion & Reality' ପ୍ରଗତି ସାହିତ୍ୟର ଏକ ପ୍ରାମାଣିକ ତତ୍ତ୍ୱ ଗ୍ରଂଥ। ଭାରତୀୟ ଜାତୀୟ କଂଗ୍ରେସର ତତ୍‌କାଳୀନ ସଭାପତି ପଂଡିତ ଜବାହରଲାଲ୍ ନେହେରୁ ସ୍ପେନ୍‌ର ଜନଯୁଦ୍ଧବାହିନୀ ଏବଂ ଜନସାଧାରଣଂକର ସାହାଯ୍ୟକଳ୍ପେ ଔଷଧପତ୍ର, ଖାଦ୍ୟ ଦ୍ରବ୍ୟ, ବସ୍ତ୍ର ପ୍ରଭୃତି ଏକ ଗୁଡ୍‌ଉଇଲ୍ ମିଶନ୍‌ରେ ପଠାଇଥିଲେ। ମୁଁ ସ୍ପେନ୍ ଉପରେ ଯେଉଁ କବିତା ଲେଖିଥିଲି, ତାର ପ୍ରଥମ ଦୁଇଧାଡ଼ି ହେଲା–

"ସାରା ଧରଣୀର ଇତିହାସଶିରେ ଜାଗିଛି ବିରାଟ ଦେଶ
ଘୋଷଣା ତାହାର ସୂଚନା ଦେଲାଣି ଶୋଷଣବାଦର ଶେଷ।" ('ଅଭିଯାନ')

ମୋର 'ହିଟ୍‌ଲର୍' କବିତାର ପ୍ରଥମ କେତେ ଧାଡ଼ି ହେଲା–

"ରାହିନ୍ କୂଳର ପାଇନ୍ ବନରେ ଶୁଭେ ଝଂଜାର ହାସ
ଗର୍ଭିଣୀ ରାତି କୂଳେ କୂଳେ ଆଜି ନଗ୍ନପ୍ରେତର ରାସ
ଲକ୍ଷ ବେକାର କପାଳରେ ଆଜି ସ୍ୱସ୍ତିକ ଟିକା ଲେଖି
ନାଜିର ନିଶାଣ ନିଜ କଂକାଳ-ସ୍ତଂଭରେ ରଖେ ଟେକି
ଇହୁଦି ରକ୍ତେ ରାହିନ୍‌ର ଜଳ ରାତି ପରି ଦିଶେ କଳା
ସାମ୍ୟବାଦୀର ସୌମ୍ୟ ଶୋଣିତେ ଜର୍ମାନ୍ ମାଟି ଢଳା।" (ପାଂଡୁଲିପି)

'କାରାଗାର' କବିତାର କେତୋଟି ପଂକ୍ତି–

"କାରଗାର। କାରଗାର !!
ତୋ' ମୂଳେ ଗଢ଼ିଛି ବଂଦୀ ନୀରବେ ବେଦନାର ପାରାବାର
ଲକ୍ଷ ଜୀବନ ପାଷାଣେ ତୋହର ଢାଳିଛି ଅକୁହା ଆଶା
ମୂକ ଯଉବନ ତୋ ପଦ ପରଶେ ଫେରିପାଇଛି ତା ଭାଷା।"
"ମୁକ୍ତି ପଥର ଯେତେ ପଥଚାରୀ ତୁହି ତା' ପାଂଥଶାଳା
କ୍ଳାଂତ ବିହଂଗ ସମ ସେ ବାହୁଡ଼େ ତୋ କୋଳେ ସେ ନୀଡ଼ହରା।"
(ଅଭିଯାନ)

'ସର୍ବହରା' କବିତାର କେତୋଟି ପଂକ୍ତି–

"ଜୀର୍ଣ୍ଣ ବୁକୁର ସ୍ପଂଦନୁ ଜାତ ଆରେ ରେ ସର୍ବହରା
ଜାଗ ଆଜି ଦଳି ଚରଣେ ସକଳ ବଂଧନ ବାଧା ଜରା।
ନିଶ୍ୱାସ ତୋର ବଜ୍ର ସମାନ ହାଣୁ ଏ ରାତ୍ରି କୂଳେ

ଘୂର୍ଣ୍ଣି ତୋଫାନ ଉଠଇ ଆଜି ରେ ରୁଦ୍ର ତୋ ଭୁଜ ମୂଳେ।
ଭୋକରୁ ତୋହର ଜନମେ ମଡ଼କ ଚଡ଼କ ଜନମେ ଶୋଷୁ
ଭୂମିକଂପ ତ ଜନ୍ମ ଲଭଇ ଭୈରବ ତୋର ରୋଷୁ।''
ଆରେ ରେ ଶ୍ରମିକ ଚାଷୀ ଓ ମୂଲିଆ ଆରେ ବୁଭୁକ୍ଷୁ ଦଳ
ତୁମେ ତ ଗଢ଼ିଛ ତୁମରି ପାଇଁକି ତୋପ ଓ ବାରୁଦ କଳ।
ତୁମେ ତ ଗଢ଼ିଛ ଜୀବନକୁ ଝାସି ବଂଧୁକ ଆଉ ନଳୀ
ତୁମରି ହାଡ଼ରେ ପରଖ ତାହାର, ସଂଗୀନ୍ ଯାଏ ଗଳି।
ତୁମେ ବନାଇଛ ଦେହଝାଳ ମାରି ବିରାଟ କଏଦିଖାନା
ସେ ଅତିଥିଶାଳୁ ଆସେ ତୁମ ପାଇଁ ତେଣୁ ସଦା ପରବାନା।''

('ଅଭିଯାନ')

**'ପ୍ରଗତୀ'-ପତ୍ରିକା ପ୍ରକାଶ –**

୧୯୩୮ ମସିହା ଶେଷଆଡ଼କୁ ମୁଁ କଟକରୁ 'ପ୍ରଗତୀ' ନାମକ ଏକ ମାସିକ ସାହିତ୍ୟ ପତ୍ରିକା ପ୍ରକାଶକରିଥିଲି। ମୁଁ ଏହାର ପ୍ରକାଶନ ଓ ପରିଚାଳନା ସଂପାଦକ ଥିଲି। ଭଗବତୀ ଚରଣ ପାଣିଗ୍ରାହୀ ଏହାର ସଂପାଦକ ଥିଲେ। ଦୁଇଟି ସଂଖ୍ୟା ବାହାରିବା ପରେ ଏହା ଅର୍ଥାଭାବରୁ ବନ୍ଦହୋଇଗଲା। ଓଡ଼ିଶାରେ ସେତେବେଳେ ସାହିତ୍ୟ ପତ୍ରପତ୍ରିକା ବାହାରକରିବା ଓ ଚଳାଇବା ବଡ଼ କଷ୍ଟସାଧ ଥିଲା। ଏହାଛଡ଼ା ନବକୃଷ୍ଣ ଚୌଧୁରୀଂକ ସଂପାଦିତ 'ସାରଥି' ସାପ୍ତାହିକ ପତ୍ରିକା ଏବଂ ସୁରେନ୍ଦ୍ରନାଥ ଦ୍ୱିବେଦୀଂକ ସଂପାଦିତ ସାପ୍ତାହିକ 'କୃଷକ' ପତ୍ରିକାର ସଂପାଦନା କାର୍ଯରେ ମୁଁ ସାହାଯ୍ୟକରୁଥିଲି।

**ଭୂମିକଂପ –**

ମୁଁ ଦିନେ ସକାଳେ ମୋର ରାଣୀହାଟସ୍ଥ ବାସଭବନରେ ବସିଥିଲି। ଦିନ ପ୍ରାୟ ୧୦ଟା ହେବ। ଆକାଶ ନିର୍ମଳ ଥିଲା। ଆଶ୍ୱିନର ସୂର୍ଯକିରଣ କଟକକୁ ଆଲୋକିତ କରୁଥିଲା। ତାହା ବୋଧହୁଏ ୧୯୪୧ ମସିହା ହେବ। ମୋର ଜଣେ ପ୍ରଶଂସିକା ଓ ବାଂଧବୀ ସୁଷମା ରିକ୍ସାରେ ଆସି ପହଂଚିଲା। ସେ I.A. ଶେଷବର୍ଷର ଛାତ୍ରୀ ଥିଲା। ସୁଷମା ନିଜେ ଭଲ କବିତା ବି ଲେଖୁଥିଲା। ସ୍ୱନାମରେ ହେଉ ବା ବେନାମରେ ହେଉ, ସେ ମୋ ଜୀବନକୁ ବହୁଥର ଆସିଛି। ମୋର ସେତେବେଳର କେତେକ କବିତାରେ ତାର ପାଦଚିହ୍ନ ରହିଛି। ମୁଁ ସୁଷମାକୁ ତାର ଲେଖାଲେଖି କଥା ଏବଂ ସାହିତ୍ୟ କଥା ପଚାରିଲି। ସେ ନିଜ କଥା କହିସାରି ମୋ ବିଷୟରେ ଅନେକ କଥା ପଚାରିଲା। ଆମର ଆଲୋଚନା ବେଶ୍ ଗଭୀର ହୋଇଉଠିଥିଲା। ଆମେ ପରସ୍ପରର ଖୁବ୍ ନିକଟତର ହୋଇଉଠୁଥିଲୁ। ଜେମସ୍‌ଜୟସଂକର 'Ulysis' ବହିର କେତୋଟି ଧାଡ଼ି ଯେପରି ମୂର୍ତ ହୋଇଉଠୁଥିଲା, ଅବଶ୍ୟ ଅପର ପକ୍ଷରୁ –

"...and then I asked him with my eyes to ask him again yes.
and then he asked me would I Yes...
and first I put my arms around him Yes
and drew him down to me so he could
feel by breats all perfume Yes.
and his heart was going like mad
and Yes I said Yes I will yes"...

ମୋର ମନେହେଉଥିଲା, ସେ ଯେପରି ନିରାମ୍ବା । ମୋର ଶୂନ୍ୟତାର ସଂଗିନୀ ଏକ ନୂତନ ଅଂତରୀକ୍ଷ ସୃଷ୍ଟିହୋଇଥିଲା ...

ହଠାତ୍ ମନେହେଲା, ଘରଟା ହଲୁଛି । ଖଟ, ଝରକା ଓ ସବୁକିଛି ଦୋହଲୁଛି । ଆମେ ଧଡ଼ପଡ଼ ହୋଇ ଉଠି ବାହାରକୁ ପଳାଇଆସିଲୁ । ଦେଖିଲୁ ଆମ ପଡ଼ୋଶୀ ଓ ଘରମାଲିକ ଯତୀନ୍‌ବାବୁ ତାଂକ ସ୍ତ୍ରୀ ଓ ପିଲାମାନଂକୁ ନେଇ ବାହାରେ ଛୋଟ ଗଳି ରାସ୍ତାରେ ଛିଡ଼ାହୋଇଛଂତି । ଦାଂଡରେ ବହୁ ଲୋକ ସ୍ଥାନେ ସ୍ଥାନେ ଜମାହୋଇଛଂତି । ଭୂମିକଂପ ! ଏହା ପ୍ରାୟ ୩୦-୩୫ ସେକେଂଡ୍ ସ୍ଥାୟୀ ଥିଲା ।

**କାଳୀବାବୁଂକ 'ଓଡ଼ିଶା ଥିଏଟର୍ସ' –**

କାଳୀଚରଣ ପଟ୍ଟନାୟକ ପ୍ରଥମେ ରାସ କରୁଥିଲେ । ଶେଷକୁ ରାସ ବଂଦହୋଇଗଲା । ତାଂକ ରାସ ମୋହନ ଗୋସ୍ୱାମୀଂକ ରାସପରି ସେତେ ଜନପ୍ରିୟ ନଥିଲା । ମୁଁ ଥରେ ତାଂକ ରାସଲୀଳା ଖୋରଧାରେ ଦେଖିଥିଲି । ଲଳିତାର ଗୋଟିଏ ଗୀତରୁ ଧାଡ଼ିଏ ମନେଅଛି –

"ରେ ବାରିଦ, ଗରଜି ମରୁଛୁ କେତେ
ସରିହେବୁ ବୋଲି ମୋ ସଖୀ କୁଂତଳ ପାଶକୁ ଭାବିଛୁ ସତେ ।"

ମୁଁ ତାଂକ ଜଗନ୍ନାଥବଲ୍ଲଭ ଘରକୁ ବେଳେବେଳେ ଯାଉଥିଲି । ସେ ଏକ ଥିଏଟର କରିବାକୁ ଚିଂତା କରୁଛଂତି ବୋଲି କହୁଥିଲେ । କାଳୀବାବୁ ମୋର ଦୂର-ସଂପର୍କୀୟ ମଉସା ଥିଲେ । ସେ ଆମ ଗାଁ ଗୁରୁଜଂଗର ଗୁଂଡି ବାବୁଂକ କନ୍ୟାଂକୁ ବିବାହ କରିଥିଲେ । ମୁଁ ଗଲେ ତାଂକ ଶୋଇବାଘରେ ତାଂକ ସଂଗେ କଥାବାର୍ତା କରେ ।

ଏହି ସମୟରେ ଗୋଟିଏ କଥା ଘଟିଲା । ଯୋବ୍ରାଠାରେ କେତେଜଣ କମ୍ୟୁନିଷ୍ଟ ବଂଧୁ ଏକ ଭଡ଼ାଘରେ ରହୁଥାଂତି ବୈଦ୍ୟନାଥ, ବିଜୟ, ରାମକୃଷ୍ଣ ପତି ପ୍ରଭୃତି । ଏହାକୁ 'କମ୍ୟୁନିଷ୍ଟ ଡେନ୍' ବୋଲି କେହି କେହି କହୁଥାଂତି । ମୁଁ ସେଠିକି ବରାବର ଯାଉଥାଏ । ଦିନେ ସେମାନେ କହିଲେ, ଆମ ପଡ଼ିଶା ଘରେ ବା ନିକଟରେ ଜଣେ ପ୍ରୌଢ଼ା ମହିଳା ଅଛଂତି । ତାଂକର ଗୋଟିଏ ସୁଂଦରୀ ଝିଅ ଅଛି, ଲକ୍ଷ୍ମୀ । ଝିଅଟି ଜଣେ ଦକ୍ଷିଣଭାରତୀୟ କିରାଣି ମେନନ୍‌କୁ ବିବାହକରିଥିଲା । ମାତ୍ର ସେ କେତେ ମାସ ପରେ କଟକ ଛାଡ଼ି ଚାଲିଗଲେ । ଏବେ ସେ ତା ମା' ଉପରେ ବୋଝ ହୋଇ ରହିଛି । ସେମାନେ ଖାଇବାକୁ ପାଉନାହାଂତି;

ବଡ଼ ଅଭାବରେ ଅଛଂତି। ଆମେ ତାଂକୁ କିଛି ଟଂକା ପଇସା ସାହାଯ୍ୟକରୁ। ମାତ୍ର ତାହା ତାଂକୁ ଅଂଟେନାହିଁ... ଇତ୍ୟାଦି। ମୁଁ ଲକ୍ଷ୍ମୀକୁ ଦେଖିଥିଲି। ବେଶ୍ ଗୋରୀ, ପାତଳୀ ୨୨-୨୩ ବର୍ଷର ସୁଂଦର ଝିଅଟିଏ। ମୋର ତା କଥା ମନେଥାଏ। ଦିନେ ମୁଁ କାଳୀବାବୁଂକୁ ତା ବିଷୟରେ କହିଲି। କାଳୀବାବୁ ତାକୁ ତାଂକ ଘରେ ଛାଡ଼ିଦେବାକୁ କହିଲେ। ସେ ଥିଏଟର୍ କରିବାକୁ ଚାହୁଁଥାଂତି; ଭଲ ନାୟିକା ପାଉନାହାଂତି ବୋଲି କରିପାରୁନାହାଂତି। ମୁଁ ଓ କମ୍ୟୁନିଷ୍ଟ ବଂଧୁମାନେ ଯାଇ ଲକ୍ଷ୍ମୀର ମା' ଓ ଲକ୍ଷ୍ମୀକୁ ଏକଥା କହିଲୁ। ତା ମା' ପ୍ରଥମେ ରାଜିହେଉନଥିଲେ; ପରେ ସେ ଓ ଲକ୍ଷ୍ମୀ ରାଜିହେଲେ। ୨-୩ ଦିନ ପରେ ମୁଁ ଓ ଲକ୍ଷ୍ମୀ ଗୋଟିଏ ରିକ୍ସାରେ ଯାଇ କାଳୀବାବୁଂକ ଘରେ ପହଂଚିଲୁ। ଲକ୍ଷ୍ମୀ କାଳୀବାବୁଂକୁ ପ୍ରଣାମକଲା। କାଳୀବାବୁ କହିଲେ, "ମା, ମା' ଘର ଭିତରକୁ ଯାଅ"। ତାର ବାକ୍ସ ଓ ଅନ୍ୟାନ୍ୟ ଜିନିଷପତ୍ର ଘରକୁ ନେଇଯିବାକୁ ଜଣେ ଲୋକକୁ କହିଲେ। ମୁଁ ନିଶ୍ଚିଂତ ହୋଇ ଫେରିଲି।

୩-୪ ଦିନ ପରେ ମୁଁ ଲକ୍ଷ୍ମୀ କିପରି ଅଛି ଦେଖିବାକୁ ଗଲି। ମୁଁ ଆସିଛି ଶୁଣି କାଳୀବାବୁ ବାହାରକୁ ଆସି ମୋ ସହିତ କଥାବାର୍ତ୍ତା କଲେ। ଲକ୍ଷ୍ମୀ ଭଲଅଛି ବୋଲି କହିଲେ। ମୁଁ ତା ସଂଗେ ଟିକେ ଦେଖାକରିବାକୁ ଚାହେଁ ବୋଲି କହିବାରୁ ମୋତେ ବାହାରେ ଅପେକ୍ଷା କରିବାକୁ କହିଲେ; ଭିତରକୁ ସବୁ ଥର ପରି ଡାକିଲେ ନାହିଁ। ମୋତେ ଟିକେ ଅଡୁଆ ଲାଗିଲା। କିଛି ସମୟ ପରେ ସେ ଲକ୍ଷ୍ମୀକୁ ଡକାଇପଠାଇଲେ। ଲକ୍ଷ୍ମୀ ଆସି ଦାଂଡ କବାଟ କଣରେ ଛିଡ଼ାହେଲା। ପଚାରିବାରୁ ଭଲଅଛି ବୋଲି କହିଲା। ମୋ ପାଖକୁ ଆସିଲାନାହିଁ। ମୋତେ ବଡ଼ ଖରାପଲାଗିଲା। ତା ସହିତ ସେହି ମୋର ଶେଷଦେଖା। ମୁଁ ଆଉ କାଳୀବାବୁଂକ ଘରକୁ ଯାଇନାହିଁ।

କାଳୀବାବୁ 'ଓଡ଼ିଶା ଥିଏଟର୍ସ' କଲେ। କଟକ ଶ୍ରୀରାମଚଂଦ୍ର ଭବନ ପଛଆଡ଼େ ଷ୍ଟେଜ୍ ବାଂଧି ସେ ନାଟକ କରୁଥାଂତି। ଲକ୍ଷ୍ମୀ ହୋଇଥାଏ ନାୟିକା। କ୍ରମେ ଓଡ଼ିଶା ଥିଏଟର୍ସ ଏବଂ ଲକ୍ଷ୍ମୀର ନାମଯଶ ଚାରିଆଡ଼େ ଖେଳିଗଲା। ସମସ୍ତଂକ ମୁହଁରେ ଲକ୍ଷ୍ମୀର ପ୍ରଶଂସା। ଲକ୍ଷ୍ମୀ ଯୋଗୁହିଁ ଓଡ଼ିଶା ଥିଏଟର୍ସ ଉପରକୁ ଉଠିଗଲା। କାଳୀବାବୁଂକ ନାଟକ 'ଭାତ', 'ଅଭିଯାନ' ପ୍ରଭୃତି ଖୁବ୍ ଜନପ୍ରିୟ ହୋଇଉଠିଲା। ଏହାର ୪-୫ ମାସ ପରେ ମୁଁ କଟକ ଛାଡ଼ି କଲିକତା ଚାଲିଗଲି। ସେଠାରେ ପ୍ରାୟ ୨୦ ବର୍ଷ ରହିଗଲି। ମାତ୍ର ଯେଉଁ କେତେ ମାସ ମୁଁ କଟକରେ ଥିଲି, କାଳୀବାବୁ ଦିନେ ବି ତାଂକ ଥିଏଟର ଦେଖିବାକୁ ନିମଂତ୍ରଣପତ୍ର ବା Complimentry Card ପଠାଇନାହାଂତି, ଖବର ବି ଦେଇ ନାହାଂତି। ମୁଁ ମଧ୍ୟ ଟିକେଟ୍ କରି କେବେ ତାଂକ ଥିଏଟର୍ ଦେଖିବାକୁ ଯାଇନାହିଁ।

ମୁଁ କଲିକତାରେ କେଶୋରାମ କଟନ ମିଲ୍‌ରେ ଶ୍ରମମଂଗଳ ଅଫିସର୍

ରୂପେ କାର୍ଯକରୁଥିବାବେଳେ ଥରେ କାଳୀବାବୁ ନାଟକ ଦେଖାଇବାକୁ ମାଟିଆ ବୁରୁଜ ଆସିଥିଲେ। ସେତେବେଳକୁ ତାଂକର ନାୟିକା ହୋଇଥାଏ ସୁମତି। ତା କାଖରେ ଗୋଟେ ଛୋଟ ପିଲା। ଲକ୍ଷ୍ମୀ ବୋଧହୁଏ ସେତେବେଳକୁ ବାହା-ଚୋରା ହୋଇ ରଂଗମଂଚ ଓ ଅଭିନୟ ଛାଡ଼ିଦେଇଥାଏ। ଶୁଣିଲି ସେ ତାର ସହଅଭିନେତା ଓ କୁଶଳୀ କଳାକାର ଦୁର୍ଲଭକୁ ବିବାହକରିଛି। ଏହା ଆନଂଦର କଥା। ସେ ଯା'ହେଉ, ମାଟିଆବୁରୁଜର ସିନେମା ହଲ୍‌ରେ ମୋ ସହାୟତାରେ କାଳୀବାବୁ ଥରେ ନାଟକ ଦେଖାଇଥିଲେ। ଟିକେଟ୍ ବିକ୍ରିରୁ କିଛି ପଇସା ମିଳିଥିଲା।

**ଓଡ଼ିଶା ପ୍ରଦେଶ କଂଗ୍ରେସରେ ବିଭାଜନ –**

୧୯୩୮ ମସିହା ବେଳକୁ ଓଡ଼ିଶା ପ୍ରଦେଶ କଂଗ୍ରେସ ଭିତରେ ଏକ ବଡ଼ ଧରଣର ଗୋଷ୍ଠୀ-ବିବାଦ ଦେଖାଦେଇଥିଲା। ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଂଡିତ ନୀଳକଂଠ ଦାସ ଏବଂ ବିଶ୍ୱନାଥ ଦାଶଂକ କଂଗ୍ରେସ ମଂତ୍ରିମଂଡଳ ମଧ୍ୟରେ ବିଭେଦ କୁହୁଳିଉଠିଥିଲା। ପଂଡିତ ନୀଳକଂଠ ଦାସ ଚାହୁଁଥିଲେ ଯେ ଓଡ଼ିଶା ସରକାର ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ନିୟଂତ୍ରଣରେ ଚାଲୁ। ହରେକୃଷ୍ଣ ମହତାବ ଏହାର ପ୍ରତିବାଦ କରି ଉତ୍କଳ କଂଗ୍ରେସ କମିଟି (P.C.C.) ସଭ୍ୟପଦରୁ ଇସ୍ତଫାଦେଇଥିଲେ। ପଂଡିତ ନୀଳକଂଠ ପ୍ରକାଶ୍ୟରେ ଓଡ଼ିଶା କଂଗ୍ରେସ ମଂତ୍ରିମଂଡଳର କାର୍ଯକଳାପକୁ ତୀବ୍ର ଭାବରେ ସମାଲୋଚନା କରୁଥିଲେ। ଓଡ଼ିଶାର କଂଗ୍ରେସ ମୁଖ୍ୟମଂତ୍ରୀ ବିଶ୍ୱନାଥ ଦାଶ ଏଥିରେ ଘୋର ଆପତ୍ତି କରିଥିଲେ। ୧୯୩୯ ମସିହା ଅଗଷ୍ଟ ମାସରେ ସୁଭାଷଚଂଦ୍ର ବୋଷ ଓଡ଼ିଶା ଆସିଥିଲେ। ସେ ଏଠାର ନିଖିଳ ଉତ୍କଳ ଯୁବ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ। ତାଂକ ଭାଷଣରେ ବହୁ ଯୁବକର୍ମୀ ପ୍ରଭାବିତ ହୋଇଥିଲେ। ଓଡ଼ିଶାରେ ସୁଭାଷ ଚଂଦ୍ରବୋଷଂକ ଅନୁଷ୍ଠାନ ଫରୱାର୍ଡ୍ ବ୍ଲକ୍‌ର ଏକ ଶାଖା ଗଠିତ ହୋଇଥିଲା। ଏଥିରେ ବହୁ କର୍ମୀ ଓ ନେତା ଯୋଗଦେଇଥିଲେ। ପଂଡିତ ନୀଳକଂଠ ଦାସ ଓ ତାଂକର କେତେକ ବଂଧୁ ଯଥା – ଗୋଦାବରୀଶ ମିଶ୍ର ପ୍ରଭୃତି ସୁଭାଷ ବୋଷଂକୁ ସମର୍ଥନ କରୁଥିଲେ। ଏଇମାନେହିଁ ପରେ ଓଡ଼ିଶାରେ ପାରଳାଖେମୁଂଡି ମହାରାଜାଂକ ମୁଖ୍ୟମଂତ୍ରୀତ୍ୱରେ ମିଳିତ ମଂତ୍ରିମଂଡଳ ଗଢ଼ିଥିଲେ। ଏମାନେ ବ୍ରିଟିଶ୍ ସରକାରର ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରିବାର ପକ୍ଷପାତୀ ଥିଲେ। ଏମାନେ କହୁଥିଲେ, ରାଜ୍ୟରେ ଲୋକପ୍ରିୟ ସରକାର ଥିଲେ ସ୍ୱାଧୀନତା ହାସଲ କରିବା ସହଜହେବ।

ଏହାପରେ ୧୯୩୯ ମସିହା ସେପ୍‌ଟେଂବର ମାସରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଯାଏ। ଓଡ଼ିଶାରେ ବିଶ୍ୱନାଥ ଦାଶଂକ କଂଗ୍ରେସ ମଂତ୍ରିମଂଡଳ ଇସ୍ତଫା ଦିଅଂତି। ଇସ୍ତଫାର କାରଣ ଥିଲା ଭାରତର ଲୋକମତ ବିରୋଧରେ ଇଂରେଜ ସରକାର ଭାରତକୁ ବିଶ୍ୱଯୁଦ୍ଧରେ ପୂରାଇବା। ଏହାପରେ ଗାଂଧିଜୀ ବ୍ୟକ୍ତିଗତ ସତ୍ୟାଗ୍ରହ ଆରଂଭକରଂତି। ସେ ପ୍ରଥମେ ସତ୍ୟାଗ୍ରହୀ ରୂପେ ଆଚାର୍ଯ ବିନୋବା ବାଭେଂକୁ

ମନୋନୀତ କରିଥିଲେ। 'ବିନୋବା ଭାରତକୁ ଯୁଦ୍ଧରେ ପୂରାଇବା ନୀତିର ବିରୋଧକର' ବୋଲି କହିବାମାତ୍ରେ ଗିରଫ ହୋଇ ଯାଆଂତି। ଏହିପରି ସମଗ୍ର ଭାରତରୁ ବହୁ କଂଗ୍ରେସ ନେତା ଓ କର୍ମୀ ଜେଲ୍ ବରଣ କରିଥିଲେ। ଓଡ଼ିଶାରୁ ବିଶ୍ୱନାଥ ଦାଶ, ନିତ୍ୟାନଂଦ କାନୁନ୍‌ଗୋ ଆଦି ପୂର୍ବତନ ମଂତ୍ରୀମାନେ ଏବଂ ବହୁ ବ୍ୟକ୍ତି ସତ୍ୟାଗ୍ରହ କରି ଜେଲ୍ ବରଣ କରଂତି। ୧୯୪୦ ମସିହା ମାର୍ଚ୍ଚ ମାସ ପହିଲା ତାରିଖ କଟକ ଏବଂ ବାଲେଶ୍ୱରଠାରେ 'ସହିଦ ଦିବସ' ରୂପେ ପାଳିତ ହୋଇଥିଲା। ସେହି ମାସରେ ରାମଗଡ଼ କଂଗ୍ରେସ ଗାଂଧୀଂକ ବ୍ୟକ୍ତିଗତ ସତ୍ୟାଗ୍ରହ ନୀତିକୁ ଜୋରସୋର୍‌ରେ ପାଳନ କରିବା ପାଇଁ ଏବଂ ବିଶ୍ୱଯୁଦ୍ଧର ବିରୋଧ କରିବାପାଇଁ ଆହ୍ୱାନ ଦେଇଥିଲେ। ବ୍ରିଟିଶ୍ ସରକାରର ଯୁଦ୍ଧ ଉଦ୍ୟମରେ କୌଣସି ପ୍ରକାର ସାହାଯ୍ୟ ନକରିବା ପାଇଁ ଲୋକମାନଂକୁ ନିର୍ଦ୍ଦେଶ ଦିଆଯାଇଥିଲା।

୧୯୪୦ ମସିହା ଏପ୍ରିଲ୍ ମାସରେ କଂଗ୍ରେସଦଳ ଆଇନ ଅମାନ୍ୟ ଆଂଦୋଳନକୁ ତୀବ୍ର କରିବା ପାଇଁ ପ୍ରସ୍ତୁତି ଚଳାଇଥିଲେ। ବରୀଠାରେ ଏକ ଟ୍ରେନିଂ କ୍ୟାଂପ୍ ଖୋଲାଯାଇଥିଲା। ସେଥିରେ ଗାଂଧିଜୀଂକ ନିର୍ଦ୍ଦେଶରେ ଆଇନ ଅମାନ୍ୟ ଓ ସତ୍ୟାଗ୍ରହ ବିଷୟରେ କର୍ମୀମାନଂକୁ ତାଲିମ୍ ଦିଆଯାଉଥିଲା। ଓଡ଼ିଶା ପ୍ରଦେଶ କଂଗ୍ରେସ ଏକ କାର୍ଯସୂଚୀ ବିଭାଗ ହରେକୃଷ୍ଣ ମହତାବଂକ ତତ୍ତ୍ୱାବଧାନରେ ଖୋଲିଥିଲେ। ରାଧାକୃଷ୍ଣ ବିଶ୍ୱାସରାୟ ଓ ମୌଲନା ମହମଦ୍ ଆତାହାର ଯଥାକ୍ରମେ ହରିଜନ ଓ ସଂଖ୍ୟାଲଘୁ ବିଭାଗ ଦାୟିତ୍ୱରେ ଥିଲେ।

୧୯୪୦ ମସିହା ସେପ୍‌ଟେଂବର ୨୭ ତାରିଖରେ ହରେକୃଷ୍ଣ ମହତାବଂକୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି General Director ନିଯୁକ୍ତ କରିଥିଲେ। ଉତ୍କଳ ପ୍ରଦେଶ କଂଗ୍ରେସ ୧୯୪୦ ମସିହା ଡିସେଂବର-୧ ରେ ବ୍ୟକ୍ତିଗତ ଆଇନ ଅମାନ୍ୟ ଆଂଦୋଳନ ଆରଂଭକରିଥିଲେ। ସେଦିନ ହରେକୃଷ୍ଣ ମହତାବ ରେମୁଣାଠାରେ ଏକ ଯୁଦ୍ଧବିରୋଧୀ ଭାଷଣ ଦେଇ କାରାବରଣ କରିଥିଲେ। ଅନ୍ୟମାନଂକ ମଧ୍ୟରେ ସରଳା ଦେବୀ, ବୋଧରାମ୍ ଦୁବେ, ବିଶ୍ୱନାଥ ଦାଶ, ନିତ୍ୟାନଂଦ କାନୁନ୍‌ଗୋ, ସଦାଶିବ ତ୍ରିପାଠୀ ପ୍ରମୁଖ ୯ ଜଣ ନେତୃସ୍ଥାନୀୟ ବ୍ୟକ୍ତି କାରାବରଣ କରିଥିଲେ। କେତେକ କଂଗ୍ରେସ କର୍ମୀ ଓ ନେତା ଗ୍ରାମମାନଂକୁ ଯାଇ ସେଠାରେ ଗାଧିଜୀଂକ ରଚନାତ୍ମକ କାର୍ଯକ୍ରମ ଚଳାଇଥିଲେ। ନିଖିଳ ଭାରତ କଂଗ୍ରେସ କମିଟିର ଏକ ନିର୍ଦ୍ଦେଶନାମାରେ ବ୍ୟକ୍ତିଗତ ସତ୍ୟାଗ୍ରହୀମାନଂକୁ ଜେଲ୍‌ରୁ ଫେରିବା ପରେ ଘରକୁ ନବାହୁଡ଼ି ପୁଣି ଜେଲ୍ ବରଣ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା। ଗାଂଧିଜୀଂକ ବଳିଷ୍ଠ ନେତୃତ୍ୱରେ ସମଗ୍ର ଭାରତବର୍ଷ ବ୍ରିଟିଶ୍ ସାମ୍ରାଜ୍ୟବାଦର ମୁହାଁମୁହିଁ ଅବସ୍ଥାରେ ପହଞ୍ଚିଥିଲା। ମୁଁ ୧୯୩୮ ମସିହା ମାର୍ଚ୍ଚ ୩୧ ତାରିଖରେ ଡେଲାଂଗଠାରେ ହୋଇଥିବା ଗାଂଧୀ ସେବା ସଂଘର ଚତୁର୍ଥ ବାର୍ଷିକ ସମ୍ମିଳନୀରେ ଗାଂଧିଜୀଂକୁ ଭେଟିଥିଲି। ଓଡ଼ିଶାର ଛାତ୍ର ଆଂଦୋଳନ

ଏବଂ ଗଡ଼ଜାତ ପ୍ରଜା-ଆଂଦୋଳନ ବିଷୟ ତାଂକ ଦୃଷ୍ଟିକୁ ଆଣିଥିଲି। ସେ ବଡ଼ ସାଧାସିଧା ଓ କର୍ମଠ ବ୍ୟକ୍ତି ଥିଲେ। ତାଂକ ନେତୃତ୍ୱରେ ସାମ୍ରାଜ୍ୟବାଦବିରୋଧୀ ମୁକ୍ତି-ସଂଗ୍ରାମ ଯେ ସମଗ୍ର ଭାରତରେ ପ୍ରବଳ ଭାବରେ ବ୍ୟାପିଯିବ, ଏଥିରେ ମୋର ସଂଦେହନଥିଲା। ସେ ତେଲାଂଗରେ ରଚନାତ୍ମକ କାର୍ଯ୍ୟ ଉପରେ ବିଶେଷ ଜୋରଦେଇଥିଲେ। ମୋର ଦୃଢ଼ ବିଶ୍ୱାସ ଜନ୍ମିଥିଲା ଯେ ହିଁ ଭାରତର ମୁକ୍ତିଯୁଦ୍ଧକୁ ସଫଳ ନେତୃତ୍ୱ ଦେଇପାରିବେ।

**ଏମ୍.ଏନ୍. ରାୟଂକ ସହିତ ମୁକାବିଲା—**

ଏମ୍.ଏନ୍. ରାୟ ଓରଫ୍ ମାନବେଂଦ୍ର ନାଥ ରାୟ ଜଣେ ବିପ୍ଳବୀ ନେତା ଥିଲେ। ଭାରତକୁ ରୁଷ ଓ ଅନ୍ୟାନ୍ୟ ଇଉରୋପୀୟ ରାଷ୍ଟ୍ରମାନେ ସ୍ୱାଧୀନତା ଲାଭରେ ସାହାଯ୍ୟକରଂତୁ ବୋଲି ସେସବୁ ଦେଶକୁ ଯାଇ ସେ ଦାବି କରିଥିଲେ। ପ୍ରଥମ ମହାଯୁଦ୍ଧ (୧୯୧୪-୧୮) ସମୟରେ ସେ ରୁଷରେ ଲେନିନ୍ ଓ ଅନ୍ୟାନ୍ୟ ନେତାମାନଂକ ସହିତ ମିଶିଥିଲେ। ଲେନିନ୍ ତାଂକୁ ଭାରତରେ ସମାଜବାଦୀ ରାଷ୍ଟ୍ର ସ୍ଥାପନ କରିବା ଦିଗରେ କାର୍ଯ କରିବା ପାଇଁ କେତେକ ଦାୟିତ୍ୱ ଦେଇଥିଲେ ଏବଂ ସେଥିପାଇଁ ଗଠିତ କମିଟିର ସଦସ୍ୟରୂପେ ତାହାଂକୁ ନିଯୁକ୍ତ କରିଥିଲେ। ସେ ବହୁବର୍ଷ ବିଦେଶରେ ରହି ଶେଷରେ ଭାରତକୁ ଫେରିଥିଲେ। ତାଂକ ଦଳର ସଭ୍ୟମାନଂକୁ 'ରୟିଷ୍ଟ' କୁହାଯାଉଥିଲା। ଦ୍ୱିତୀୟ ମହାଯୁଦ୍ଧ ବେଳେ ସେ ଭାରତରେ ଥାଇ ଫାଶିବାଦ ବିରୁଦ୍ଧରେ ବିଶ୍ୱଯୁଦ୍ଧରେ ଯୋଗଦେବାପାଇଁ ପ୍ରଚାରକରିଥିଲେ। ସେ କହୁଥିଲେ ଇଂରେଜ ସରକାରଂକ ଯୁଦ୍ଧ ଉଦ୍ୟମରେ ଭାରତ ସହଯୋଗ କଲେ, ସ୍ୱାଧୀନତା ପାଇବା ସହଜହେବ। ତାଂକ ମତ ପ୍ରସାର କରିବା ପାଇଁ ସେ କଟକ ଆସିଥିଲେ। ଓଡ଼ିଶାର ପଂଡିତ ନୀଳକଂଠ ଦାସ ପ୍ରମୁଖ ଅସଂତୁଷ୍ଟ କଂଗ୍ରେସ ନେତାମାନେ ତାଂକୁ ସମର୍ଥନ କରୁଥିଲେ। ୨୭.୧.୧୯୪୧ ମସିହାରେ କଟକ ଟାଉନ୍ ହଲ୍‌ରେ ପଂଡିତ ନୀଳକଂଠ ଦାସଂକ ସଭାପତିତ୍ୱରେ ଏକ ସଭା ହୋଇଥିଲା। ଏଥିରେ ଏମ୍.ଏନ୍. ରାୟ ଭାଷଣ ଦେଇଥିଲେ ଏବଂ ପଂଡିତ ନୀଳକଂଠ ଦାସ ତାଂକୁ ସମର୍ଥନ କରିଥିଲେ। ଓଡ଼ିଶାରେ ଏମ୍.ଏନ୍. ରାୟଂକ All India Democratic Unionର ଏକ ଶାଖା ଗଠନକରାଯାଇଥିଲା। ଏହି ସଭାରେ ମୁଁ ଓ ମୋର କେତେକ ବଂଧୁ ଏମ୍.ଏନ୍. ରାୟଂକୁ ତୀବ୍ର ବିରୋଧ କରିଥିଲୁ। ଏମ୍.ଏନ୍. ରାୟଂକ ଭାଷଣବେଳେ ଆମେ ଯୁଦ୍ଧବିରୋଧୀ ଧ୍ୱନିମାନ ଦେଇଥିଲୁ। ଏମ୍.ଏନ୍. ରାୟ କ୍ରୋଧରେ ମଂଚ ଉପରୁ ତଳକୁ ଡେଇଁପଡ଼ି ମୋତେ ମାରିବା ପାଇଁ ଦଉଡ଼ିଆସିଥିଲେ। ସେ ଡାହାଣ ହାତର ପଂଜାବି କହୁଣୀ ପର୍ଯଂତ ଟେକି ମୋ ଆଡ଼କୁ ଆଗେଇଆସିଥିଲେ। ତାଂକ ସ୍ତ୍ରୀ ଏଲ୍.ଏନ୍. ରାୟ ଏଥିରେ ତାଂକୁ ଅଟକାଇଥିଲେ। ପ୍ରବଳ ଗୋଳମାଳ ଭିତରେ ସଭା ଭଂଗହୋଇଥିଲା। ଏକଥା ପୂର୍ବରୁ ଥରେ ଆଭାସ ଦିଆଯାଇଛି।

**କଟକରେ ଢେଂକାନାଳ ରାଣୀଂକ ସଭା ଭଂଗୁର –**

୧୯୪୦ ମସିହାରେ କଟକ ଟାଉନ୍ ହଲ୍‌ରେ କଂଗ୍ରେସ ନେତ୍ରୀ ସରଳା ଦେବୀଂକ ଉଦ୍ୟମରେ ଢେଂକାନାଳ ରାଣୀଂକ ଭାଷଣ ଶୁଣିବା ପାଇଁ ଏକ ସଭା ଆୟୋଜନ କରାଯାଇଥିଲା। ଏଥିରେ ଢେଂକାନାଳର ରାଣୀ ଭାଷଣ ଦେଇଥିଲେ। ଢେଂକାନାଳ ରାଣୀ ଷଢ଼େଇକଳା ରାଜାଂକ ଝିଅ ଏବଂ ପାଟଣା ମହାରାଜା ରାଜେଂଦ୍ର ନାରାୟଣ ସିଂହ ଦେଓଂକ ଭଉଣୀ। ଏଥିରେ ଆମେମାନେ ବିଚଳିତ ହୋଇପଡ଼ିଥିଲୁ। ଓଡ଼ିଶାର ତତ୍‌କାଳୀନ ରାଜଧାନୀ କଟକ ନଗରୀର ଛାତି ଉପରେ ଢେଂକାନାଳ ରାଣୀଂକୁ ଡାକି ସଭାକରିବାର ଦୁଃସାହସ କିପରି ଏଇ ନାରୀନେତ୍ରୀମାନଂକର ହେଲା, ଆମେ ବୁଝିପାରିନଥିଲୁ। ଏଇ କଟକର ଖାନନଗର ମଶାଣିରେ ବାଜି ରାଉତ, ହୃଷି ପ୍ରଧାନ, ନଟ, ଗୁରି ପ୍ରଭୃତି ସହିଦମାନଂକର ଚିତାଭସ୍ମ ଏବେ ମଧ ଲିଭିନଥିଲା। ଲକ୍ଷ ଲକ୍ଷ ଲୋକ ବିରାଟ ପଟୁଆରରେ ଏହି ଶବଗୁଡ଼ିକୁ ନେଇ ସେଠାରେ ଦାହକରିଥିଲେ। ସେ ସ୍ମୃତି ଏବେ ମଧ କଟକବାସୀଂକ ମନରୁ ଲିଭିନାହିଁ।

ସଭା ଆରଂଭରେ ସରଳାଦେବୀ ଢେଂକାନାଳ ରାଣୀଂକ ପରିଚୟ କରାଇଦେଲେ ଏବଂ ସେ ଏଠାରେ ନାରୀମାନଂକର ସମସ୍ୟା ଓ ନାରୀ ଜାଗରଣ ସଂବଂଧରେ ଭାଷଣ ଦେବେ ବୋଲି ସୂଚନା ଦେଇଥିଲେ। ସଭାରେ ମୁଁ ଏବଂ ମୋର କେତେକ ସାଥୀ ଉପସ୍ଥିତ ଥିଲୁ। ଢେଂକାନାଳ ରାଣୀ (ବର୍ତ୍ତମାନର ରାଜମାତା) କହିବାକୁ ଉଠିବାମାତ୍ରେ ସଭାରେ ଗୋଳମାଳ ହୋଇଥିଲା। ସେ ତାଂକର ବକ୍ତବ୍ୟ ସାଂଗ କରିବା ପୂର୍ବରୁ ଆମେ କେତେଜଣ ଘୋର ପ୍ରତିବାଦକଲୁ। ତାଂକୁ କଟକ ଆଣି ଭାଷଣ ଦେବା ପାଇଁ ଡାକିବା ଉଚିତ ହୋଇନାହିଁ ବୋଲି ପାଟିକଲୁ। ଏଥିରେ ସଭାକାର୍ଯ୍ୟ ବଂଦହୋଇଗଲା। ମୁଁ ଏ ସଭାରେ ପ୍ରତିବାଦ କରିଥିବାରୁ ସରଳା ଦେବୀ ମୋ ଉପରେ ଅତ୍ୟଂତ କ୍ଷୁବ୍‌ଧ ହୋଇଥିଲେ। ସେ ଅଳ୍ପଦିନ ତଳେ ମୋ କବିତାର ପ୍ରଗତିଶୀଳ ଆଭିମୁଖ୍ୟ ଓ ଗଣଚେତନା ସଂପର୍କରେ ଦୁଇଟି ପ୍ରବଂଧ 'ସହକାର' ପତ୍ରିକାରେ ଧାରାବାହିକ ଭାବରେ ଲେଖିଥିଲେ। ଏ ସଭା ଭଂଗୁର କରିଥିବା ଯୋଗୁଁ ସେ ଓ ତାଂକର ସହକର୍ମିଣୀ ଲତିକା ଦେବୀ ପ୍ରମୁଖ ଭୀଷଣ କ୍ରୁଦ୍ଧ ହୋଇ ଆଂଭମାନଂକୁ ଗାଳିଗୁଲଜ କଲେ।

**କମ୍ୟୁନିଷ୍ଟ ପାର୍ଟିରେ ବିଭେଦ : ଜର୍ମାନୀର ରୁଷ୍ ଆକ୍ରମଣ –**

(ସାମ୍ରାଜ୍ୟବାଦୀ ଯୁଦ୍ଧକୁ ଜନଯୁଦ୍ଧ କହିବାରୁ କମ୍ୟୁନିଷ୍ଟ ପାର୍ଟିରେ ବିଭେଦ) –

ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ (C.P.I.) ଅଂତଃବିରୋଧ ଦେଖାଦେଇଥିଲା। ଭାରତୀୟ କମ୍ୟୁନିଷ୍ଟ ପାର୍ଟି ତାର ଯୁଦ୍ଧବିରୋଧୀ ନୀତି ପରିବର୍ତ୍ତନ କରି ଏହି ସାମ୍ରାଜ୍ୟବାଦୀ ଯୁଦ୍ଧକୁ ହଠାତ୍ ଜନଯୁଦ୍ଧ (People's War) ବୋଲି ଘୋଷଣାକରିଥିଲେ। ହିଟ୍‌ଲର୍ ୧୯୪୧ ମସିହା ଜୁନ୍ ୨୨ ତାରିଖରେ ଋଷ୍

ସହିତ ହୋଇଥିବା ଜର୍ମାନୀର ଅନାକ୍ରମଣ ଚୁକ୍ତି ଭଂଗକରି ଏବଂ ଯୁଦ୍ଧ ଘୋଷଣା ନକରି ଅଧିକୃତ ପୋଲାଂଡରେ ଥିବା ରୁଷ୍ ଜର୍ମାନ୍ ସୀମାରେଖା ଟପି ରୁଷ୍ ଉପରେ ଆକ୍ରମଣ କରିଥିଲା । ନାଜୀବାହିନୀ ପ୍ରବଳ ବେଗରେ ରୁଷ୍‌ର ତିନିଗୋଟି ଅଂଚଳ ଅଧିକାର କରି ଆଗକୁ ମାଡ଼ିଚାଲଂତି । ଫିନ୍‌ଲାଂଡ ମଧ୍ୟ ଏତିକିବେଳେ ତାର ପୂର୍ବ ପରାଜୟର ରାଗ ଶୁଝାଇବାପାଇଁ ରୁଷ୍ ଉପରେ ଆକ୍ରମଣକରେ । ହଂଗେରୀ ମଧ୍ୟ ଏହି ସୁଯୋଗରେ ରୁଷ୍ ବିରୋଧରେ ଯୁଦ୍ଧ ଘୋଷଣା କରେ । ରୁଷ୍‌କୁ ବ୍ରିଟେନ୍ ସମସ୍ତ ପ୍ରକାର ସାହାଯ୍ୟ କରିଥିଲା । ମାତ୍ର ନାଜୀବାହିନୀ ୩ ମାସ ମଧ୍ୟରେ ଲେନିନ୍‌ଗ୍ରାଡ୍ ନିକଟରେ ପହଂଚିଯାଇଥିଲା ଏବଂ ଏହାର ୧ ମାସ ମଧ୍ୟରେ ମସ୍କୋର ଦ୍ୱାରଦେଶରେ ପହଂଚି ଯାଇଥିଲା । ରୁଷ୍‌ର ରାଜଧାନୀ କୁଇବେସେଭ୍‌କୁ ଉଠିଯାଇଥିଲା । ରୁଷ୍‌ର ଅବସ୍ଥା ବଡ଼ ସଂକଟାପନ୍ନ ହୋଇପଡ଼ିଥିଲା । ଜର୍ମାନ୍ ବାହିନୀ ରୁଷ୍ ଖଣିଜସଂପଦ ଅଂଚଳ ସେବାସ୍ତପୋଲ୍ ଓ ଷ୍ଟାଲିନ୍‌ଗ୍ରାଡ୍ ଆଡ଼କୁ ମୁହାଁଇଥିଲେ । ଫାସିଷ୍ଟ ସୈନ୍ୟମାନେ ଷ୍ଟାଲିନ୍‌ଗ୍ରାଡ୍ ଅବରୋଧ କରିଥିଲେ; ମାତ୍ର ରୁଷ୍‌ର ପ୍ରବଳ ବିରୋଧ ଯୋଗୁଁ ତାହାକୁ ଦଖଲ କରିପାରିନଥିଲେ ।

ଏହି ପରିପ୍ରେକ୍ଷୀରେ ଭାରତରେ କମ୍ୟୁନିଷ୍ଟ ପାର୍ଟି ସାମ୍ରାଜ୍ୟବାଦୀ ମହାଯୁଦ୍ଧକୁ 'ଜନଯୁଦ୍ଧ' ବୋଲି ଘୋଷଣାକଲା । ଏହାଫଳରେ କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ ବିଭେଦ ଦେଖାଦେଲା । ବହୁ ସଭ୍ୟ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଏହି ନୀତି ପରିବର୍ତ୍ତନକୁ ଗ୍ରହଣ କରିପାରିଲେ ନାହିଁ । ପାର୍ଟିମଧ୍ୟରେ ବିଭାଜନ ଦେଖାଦେଲା । କମ୍ୟୁନିଷ୍ଟ ପାର୍ଟି ଏପର୍ଯ୍ୟଂତ ଏକ ବେଆଇନ୍ ଅନୁଷ୍ଠାନ ଭାବରେ କାର୍ଯ୍ୟ କରିଆସିଥିଲା । ବ୍ରିଟିଶ୍ ସରକାର ଏହା ଉପରୁ ନିଷେଧାଜ୍ଞା ଉଠାଇନେଲେ । କମ୍ୟୁନିଷ୍ଟ ପାର୍ଟି ଖୋଲାଖୋଲି ଭାବରେ ତାର 'ଜନଯୁଦ୍ଧ' ନୀତି ବୟାନ କରିବାକୁ ଲାଗିଲା ।

ପାର୍ଟିର ବହୁ ସଭ୍ୟଂକୁ ଏହା ବଡ଼ ଅଡୁଆରେ ପକାଇଲା । ଯେଉଁମାନେ ମହାଯୁଦ୍ଧ ଲାଗିବା ଦିନୁ ଆଜିଯାକେ ଏହାକୁ ଜନସ୍ୱାର୍ଥ-ବିରୋଧୀ ସାମ୍ରାଜ୍ୟବାଦୀ ଯୁଦ୍ଧ ରୂପେ ବିରୋଧକରିଆସୁଥିଲେ, ତାହାକୁ ହଠାତ୍ ଜନଯୁଦ୍ଧ ବୋଲି ଗ୍ରହଣ କରିନେବା ସେମାନଂକ ପକ୍ଷେ ସଂଭବ ହେଲାନାହିଁ । କମ୍ୟୁନିଷ୍ଟମାନଂକର ଯୁକ୍ତି ଥିଲା ଯେ ଏହି ମହାଯୁଦ୍ଧ ପରେ କୌଣସି ସାମ୍ରାଜ୍ୟବାଦୀ ଶକ୍ତି ପୂର୍ବପରି ନିଜନିଜର ସାମ୍ରାଜ୍ୟ ବଜାୟ ରଖିପାରିବେନାହିଁ । ସେମାନେ ଏତେ ଦୁର୍ବଳ ହୋଇପଡ଼ିବେ ଯେ, ହଜାର ହଜାର ମାଇଲ୍ ଦୂରରେ ଥିବା ଉପନିବେଶଗୁଡ଼ିକର ଦାୟିତ୍ୱ ସଂଭାଳିବା ସେମାନଂକ ପକ୍ଷରେ କଷ୍ଟକର ହେବ; ଫଳରେ ସେସବୁ ଦେଶକୁ ସ୍ୱାଧୀନତା ଦେବାକୁ ସାମ୍ରାଜ୍ୟବାଦୀ ଶକ୍ତିମାନେ ବାଧ୍ୟହେବେ । ମାତ୍ର ଏ ଯୁଦ୍ଧରେ ଯଦି ଫାସିବାଦୀ ଶକ୍ତି ବିଜୟ ହାସଲ କରେ, ତେବେ ଫାସିବାଦ ସମଗ୍ର ବିଶ୍ୱକୁ କବଳିତ କରିବ ଏବଂ ମଣିଷର ଦାସତ୍ୱ ଓ ପୁଂଜିବାଦୀ ଶୋଷଣ ଅଧିକ ଦୃଢ଼ହେବ । ସେମାନଂକର ଯୁକ୍ତି ଆଂଶିକ ସତ୍ୟ ଥିଲା, ଦ୍ୱିତୀୟ ବିଶ୍ୱଯୁଦ୍ଧ

ପରେ ତାହା ପ୍ରମାଣିତହେଲା । ଯୁଦ୍ଧ ପରେ ଅଧିକାଂଶ ପରାଧୀନ ଦେଶ ସ୍ୱାଧୀନତା ପାଇଲେ । ମାତ୍ର ଲୋକେ ଏହାକୁ ଗ୍ରହଣ କରିପାରିଲେ ନାହିଁ । ସେମାନେ କହିଲେ ଯେ କମ୍ୟୁନିଷ୍ଟମାନେ ଦେଶଦ୍ରୋହୀ ଏବଂ ସୁବିଧାବାଦୀ, ସେମାନେ ଦେଶର ସ୍ୱାଧୀନତା ସଂଗ୍ରାମ ପ୍ରତି ବିଶ୍ୱାସଘାତକତା କରିଛନ୍ତି । ଲୋକମାନଂକର, ବିଶେଷକରି କଂଗ୍ରେସ କର୍ମୀ ଓ ସମର୍ଥକମାନଂକର, ମୁହାଁମୁହିଁ ହେବା କମ୍ୟୁନିଷ୍ଟମାନଂକ ପକ୍ଷରେ ସେତେବେଳେ ପ୍ରକୃତରେ ବଡ଼ କଷ୍ଟକର ଥିଲା । ସେମାନେ ଏକପ୍ରକାର ରାଜନୀତିକ ବାସନ୍ଧ ଘେରରେ ପଡ଼ିଥିଲେ ।

**ମୋର ସ୍ଥିତି –**

ମୁଁ ଓଡ଼ିଶାରେ ବଡ଼ ଏକୁଟିଆ ଅନୁଭବ କରୁଥିଲି । କମ୍ୟୁନିଷ୍ଟ ବଂଧୁମାନେ ଯଥା – ଭବବ୍ରତୀ, ଅନଂତ, ବୈଦ୍ୟନାଥ ପ୍ରଭୃତି ସମସ୍ତେ କମ୍ୟୁନିଷ୍ଟ ଷଡ଼ଯଂତ୍ର ମାମଲାରେ ଜେଲ୍ ଭିତରେ ଥିଲେ । ମୁଁ ବାହାରେ ଏକାକୀ ବିଚ୍ଛିନ୍ନତା କବଳରେ ଛଟପଟ ହେଉଥିଲି । ମୁଁ ଅନୁଭବ କରୁଥିଲି ଯେ, ମୁଁ ଏକାକୀ ଓଡ଼ିଶାରେ କିଛି କରିପାରିବିନାହିଁ । ଏଠାରେ ପ୍ରକାଶଯୋଗ୍ୟ ଯେ ମୁଁ କେବେହେଲେ କମ୍ୟୁନିଷ୍ଟ ପାର୍ଟିର କାର୍ଡଧାରୀ ସଭ୍ୟ ନଥିଲି । ମୁଁ କେବଳ ସେମାନଂକ ସଂଗେ ମିଶି ଛାତ୍ର ଓ କୃଷକ ଆଂଦୋଳନରେ ଏବଂ ଗଡ଼ଜାତ ପ୍ରଜା-ଆଂଦୋଳନରେ ପ୍ରମୁଖ ଭୂମିକା ନେଇଥିଲି ।

ତେଣୁ ସେମାନେ ଜେଲ୍‌ରେ ଥିବା ହେତୁ ମୁଁ ବଡ଼ ବିଚ୍ଛିନ୍ନ ଓ ଏକୁଟିଆ ବୋଧ କରିବା ସ୍ୱାଭାବିକ ଥିଲା । ମୁଁ ଏପର୍ଯ୍ୟଂତ ମୋର ସବୁ ଲେଖାରେ 'ଯୁଦ୍ଧ ବିରୁଦ୍ଧରେ ଯୁଦ୍ଧକର' ବୋଲି କହିଆସୁଥିଲି । ସହକାର ଓ ଅନ୍ୟାନ୍ୟ ପତ୍ରିକାରେ ମୁଁ ଅଜସ୍ର ଲେଖା ଓ କବିତା ଲେଖି ଫାସିବାଦର ବୀଭତ୍ସ ରୂପ ଉଦ୍‌ଘାଟନ କରିବା ସଂଗେ ସଂଗେ ମିଳିତ ସାମ୍ରାଜ୍ୟବାଦୀ ମେଂଟକୁ ମଧ୍ୟ ତୀବ୍ର ସମାଲୋଚନା କରୁଥିଲି ଏବଂ ସେମାନଂକର ଯୁଦ୍ଧ-ଉଦ୍ୟମରେ କୌଣସି ପ୍ରକାର ଅଂଶ ଗ୍ରହଣ ନକରିବାକୁ ଉଦ୍‌ବୋଧନ ଦେଇଆସୁଥିଲି । ମୋର ବକ୍ତବ୍ୟ ଥିଲା, ଏ ମହାଯୁଦ୍ଧ ଦୁଇ ସାମ୍ରାଜ୍ୟବାଦୀ ଗୋଷ୍ଠୀ ମଧ୍ୟରେ ଚାଲିଛି । ଭାରତ ଏଥିରେ ନିରପେକ୍ଷ ରହିବା ଉଚିତ । ଭାରତକୁ ବ୍ରିଟିଶ୍ ସାମ୍ରାଜ୍ୟବାଦ ଜବରଦସ୍ତି ଯୁଦ୍ଧରେ ପୂରାଇଥିବାରୁ ଭାରତ ଏହାର ପ୍ରବଳ ବିରୋଧ କରିବା ଉଚିତ । ବ୍ରିଟିଶ୍‌ର ଯୁଦ୍ଧ-ଉଦ୍ୟମରେ ସଂପୂର୍ଣ୍ଣ ଅସହଯୋଗ କରିବାପାଇଁ ମୁଁ ଡାକରାଦେଇଥିଲି । ମୋର ଏହି ସମୟର ଲେଖା ଓ ବହୁ କବିତା, ଯଥା – 'ହିଟଲର୍', 'ସ୍ପେନ୍', 'ସର୍ବହରା', 'ବିପ୍ଳବର ଜନ୍ମଦିନେ', 'ଲାଲ୍ ନଭେଂବର' ପ୍ରଭୃତି କବିତା ସର୍ବତ୍ର ଚାଂଚଲ୍ୟ ଖେଳାଇଦେଇଥିଲା ଏବଂ ପାଠକସମାଜକୁ ବିଶେଷ ଉଦ୍‌ବୁଦ୍ଧ କରିଥିଲା । ଏହାଛଡ଼ା ମୁଁ 'ଜୀବାଣୁ' ଓ ଅନ୍ୟାନ୍ୟ କେତେକ ପ୍ରବଂଧରେ ଫାସିଷ୍ଟ ବର୍ବର ଅତ୍ୟାଚାର ଓ ଇହୁଦିମାରଣ ନୀତିର ବୀଭତ୍ସ ରୂପ ଉଦ୍‌ଘାଟନ କରିଥିଲି । ହଠାତ୍ ଏହି ସାମ୍ରାଜ୍ୟବାଦୀ ଯୁଦ୍ଧକୁ

ଜନଯୁଦ୍ଧ କହିବା ମୋ ପକ୍ଷରେ ସଂଭବନଥିଲା। ମୁଁ ତେଣୁ ଏକପ୍ରକାର ବିଚାର ସଂକଟରେ ପଡ଼ି ଛଟପଟ ହେଉଥିଲି। ମୋର ମାନସିକ ପ୍ରସ୍ତୁତି ଅଭାବରୁ ମୁଁ କମ୍ୟୁନିଷ୍ଟ ପାର୍ଟିର କାର୍ଯପଂଥାଠାରୁ ଦୂରେଇ ରହିବାକୁ ଚାହୁଁଥିଲି।

**କଲିକତା ଯାତ୍ରା –**

ମୁଁ ଏହି ସମୟରେ ହାରୀଂଦ୍ରନାଥ ଚଟୋପାଧାୟକୃତ 'ବାଜିରାଉତ'ର ଇଂରାଜୀ ଅନୁବାଦ 'The Boatman Boy & Other Poems'ର ପାଂଡୁଲିପି ପୁସ୍ତକାକାରରେ ପ୍ରକାଶ କରିବାପାଇଁ ବିଶେଷ ଭାବରେ ଚେଷ୍ଟିତ ଥିଲି। ମୁଁ କଲିକତା ଏବଂ ଭାରତର କେତେକ ପ୍ରକାଶକଂକୁ ଏହାକୁ ପ୍ରକାଶ କରିବାପାଇଁ ଚିଠି ଦେଇଥିଲି। ମାତ୍ର ସେମାନେ କେହି ସେତେବେଳର ପରିସ୍ଥିତିରେ ଏଭଳି ଏକ ବିପ୍ଳବୀ କବିତା ପୁସ୍ତକ ପ୍ରକାଶ କରିବାକୁ ରାଜିନଥିଲେ। ତେଣୁ ମୁଁ ଓଡ଼ିଶାରେ ଥାଇ ଏ ଦିଗରେ ବିଶେଷ କିଛି ଅଗ୍ରଗତି ହାସଲ କରିପାରୁ ନଥିଲି। ଏହା ମୋ ପକ୍ଷରେ ଏକ ବିଡ଼ଂବନା ଥିଲା।

**ବିଶ୍ୱନାଥ ମୁଖାର୍ଜୀଂକ ଚିଠି –**

ମୋର ବଂଧୁ ବଂଗଦେଶର ଅନ୍ୟତମ କମ୍ୟୁନିଷ୍ଟ ଛାତ୍ରନେତା ବିଶ୍ୱନାଥ ମୁଖାର୍ଜୀଂକୁ ଥରେ ଏ ବିଷୟରେ ଓଡ଼ିଶାରେ କହିଥିଲି। ସେ ଏ ଦିଗରେ ମୋତେ ସାହାଯ୍ୟ କରିବେ ବୋଲି କହିଥିଲେ। ବିଶ୍ୱନାଥ ମୁଖାର୍ଜୀ ପରେ ପଶ୍ଚିମ ବଂଗର ବାମପଂଥୀ ସାମ୍ମୁଖ୍ୟ ସରକାରରେ ଜଣେ ମଂତ୍ରୀ ହୋଇଥିଲେ। ଦିନେ ମୁଁ ଗ୍ରାମରେ ଥିଲାବେଳେ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ଜଣେ ନେତା ରାମକୃଷ୍ଣ ପତିଂକଠାରୁ ଖଂଡିଏ Express Delivery ପୋଷ୍ଟକାର୍ଡ ପାଇଲି। ସେତେବେଳେ ଦୁଇଅଣା ପଇସାର ଅଧିକା ଡାକ ଟିକେଟ ଲଗାଇଲେ Express Delivery ଚିଠି ପଠାଯାଇପାରୁଥିଲା। ଏହାକୁ ସଂପୃକ୍ତ ଡାକଘର ସଂଗେ ସଂଗେ ପିଅନଦ୍ୱାରା ରେଜିଷ୍ଟାର୍ଡ ପୋଷ୍ଟକରି ଘରେ ଦେଇଯାଉଥିଲା ଏବଂ ପ୍ରାପ୍ତିସୂଚକ ଦସ୍ତଖତ ମଧ୍ୟ ନେଉଥିଲା। ରାମକୃଷ୍ଣ ପତି ଲେଖିଥିଲେ ଯେ ବିଶ୍ୱନାଥ ମୁଖାର୍ଜୀ ମୋତେ ଶୀଘ୍ର କଲିକତା ଯିବାକୁ ଲେଖିଛଂତି। ଅତଏବ ମୁଁ ଶୀଘ୍ର କଲିକତା ଯିବା ଉଚିତ। ଏ ଚିଠି ପାଇବାର ୪-୫ ଦିନ ପରେ ମୁଁ 'The Boatman Boy & Other Poem'ର ପାଂଡୁଲିପିଟି ଧରି କଲିକତା ଗଲି। ଏହା ୧୯୪୨ ମସିହା ଜୁନ୍ ମାସର କଥା। କଲିକତାର ବହୁବଜାର ଷ୍ଟ୍ରୀଟ୍‌ରେ ଏକ ବଂଧୁମିଳନରେ ବିଶ୍ୱନାଥ ମୁଖାର୍ଜୀଂକୁ ଭେଟିଲି। ଡ. କାଳୀଦାସ ନାଗ ମଧ୍ୟ ଏହିଠାରେ ଉପସ୍ଥିତ ଥିଲେ। ତାଂକୁ ମଧ୍ୟ ମୁଁ ଜୀବନରେ ପ୍ରଥମ ଥରପାଇଁ ଭେଟିଲି।

ବିଶ୍ୱନାଥ ମୁଖାର୍ଜୀ ମୋତେ କଲିକତାରେ କିଛିଦିନ ରହିବାପାଇଁ କହିଲେ। ସେ ଜଣେ ଦୁଇଜଣ ପ୍ରକାଶକ ବଂଧୁଂକର ନାମ ଓ ଠିକଣା ଦେଲେ, ସେମାନଂକ ସଂଗେ କଥାବାର୍ତ୍ତା କରିବାକୁ କହିଲେ। ମୁଁ କଲିକତାରେ ବହୁବଜାର ମୋଡ଼ରେ

ଥିବା ଉତ୍କଳଭବନରେ ଯାଇ ଗୋଟିଏ ରୁମ୍ ନେଇ ରହିଲି।

ଏଠାରେ କେତେକ ଓଡ଼ିଆ ଛାତ୍ର ଓ କର୍ମଚାରୀ ଏକ ମେସ୍ କରି ରହୁଥାଂତି। ମୁଁ କଲିକତାରେ କେତେକ ଆଗ୍ରହୀ ବ୍ୟକ୍ତିଂକ ସହିତ ସାକ୍ଷାତ କରି ପୁସ୍ତକ ପ୍ରକାଶନ ଦିଗରେ ସେମାନଂକର ସହାୟତା ଲୋଡ଼ିଥିଲି। ତନ୍ମଧ୍ୟରେ ଶଶିଭୂଷଣ ଦେ ଷ୍ଟ୍ରୀଟ୍‌ର ଜଣେ ଭଦ୍ରଲୋକ ମହାଦେବ ସରକାର ଅନ୍ୟତମ। ସେ ଗୋଟିଏ ଛୋଟ ପ୍ରକାଶନ ସଂସ୍ଥା ଖୋଲିଥାଂତି। ତା'ର ନାମ 'ସମବାୟ ପବ୍ଲିଶର୍ସ'। ସେ ମୋତେ କଲିକତାରେ ଆହୁରି କିଛିଦିନ ରହିବାକୁ କହିଲେ। କଲିକତାରେ ରହିବା ଏକ ବ୍ୟୟସାପେକ୍ଷ ବ୍ୟାପାର। ତେଣୁ ମାସ ମାସ ଧରି ମେସ୍ ଖର୍ଚ୍ଚ ଦେଇ ସେଠାରେ ରହିବା ମୋ ପକ୍ଷରେ ବଡ଼ କଠିନ ବ୍ୟାପାର ହୋଇଥିଲା। ତେଣୁ ମୁଁ ବଡ଼ ଅସୁବିଧାରେ ପଡ଼ିଗଲି। ମୁଁ ଯେତିକି ଟଂକା ସାଥିରେ ନେଇଥିଲି, ତାହା ପ୍ରାୟ ସରିଆସିଲା। ସେ ବହିଟି ଛାପିବାକୁ ଆଉ ପ୍ରାୟ ୩-୪ ମାସ ସମୟ ଲାଗିଥାଂତା। କାରଣ ଛାପା ଓ ୨-୩ ଥର ପ୍ରୁଫ୍ ଦେଖା ସମୟସାପେକ୍ଷ, ତେଣୁ ଏତେଦିନ ସେଠାରେ କିପରି ରହିବି ତାହା ମୋର ଏକ ବଡ଼ ଦୁଶ୍ଚିଂତାର କାରଣ ଥିଲା।

ଏହିପରି ନ ଯଯୌ ନ ତସ୍ଥୌ ଅବସ୍ଥାରେ ମୁଁ ଉପାୟ ଚିଂତା କରିବାକୁ ଲାଗିଲି। ଭାବିଲି ଏଠାରେ ଏକ ଚାକିରି ମିଳିଗଲେ ଏ ସବୁ ଆର୍ଥିକ ସଂକଟ ଦୂରହେବ ଏବଂ ମୋର ଇଂରାଜୀ କବିତା ବହିଟି ସୁରୁଖୁରୁରେ ପ୍ରକାଶ ପାଇପାରିବ।

## ତ୍ରୟୋବିଂଶ ଉଲ୍ଲାସ

## କେଶୋରାମ କଟନ୍ ମିଲସ୍‌ରେ ଚାକିରି

ମୋର ହଠାତ୍ ଶିଳ୍ପପତି ଜି.ଡି. ବିରଲାଂକ କଥା ମନେପଡ଼ିଲା। ଆଗରୁ କହିଛି, ସେ ୧୯୪୧ ମସିହାରେ ବଂବେ କ୍ରନିକଲ୍ ନାମକ ସାପ୍ତାହିକୀ ଇଂରାଜୀ ପତ୍ରିକାରେ ବାହାରିଥିବା ମୋର 'ଭାତ', 'ରୁଟି' ପ୍ରଭୃତି କବିତାର ହରୀଂଦ୍ରନାଥ କୃତ ଇଂରାଜୀ ଅନୁବାଦ ପଢ଼ି ସ୍ୱତଃପ୍ରବୃତ୍ତ ହୋଇ ମୋ କବିତାର ପ୍ରଶଂସା କରି ଚିଠି ଲେଖିଥିଲେ। ସେ ଚିଠିଟି ଲେଖିଥିଲେ ଘନଶ୍ୟାମ ଦାସ ବିରଲାଂକ ଓଡ଼ିଆ ସେବକ ଚିଂତାମଣି ମହାଜନ। ମୁଁ ସେ ଚିଠିର ଜବାବ ଓ ମୋର ଅନ୍ୟ କେତେକ କବିତାର ଇଂରାଜୀ ଅନୁବାଦ ଜି.ଡି.ଙ୍କ ନିକଟକୁ ପଠାଇଥିଲି। ତାହା ସହିତ ପଠାଇଥିଲି ବଂବେର କାଇଜର୍-ଇ-ହିଂଦ୍ ପତ୍ରିକାର ୧୫.୨.୧୯୪୨ ସଂଖ୍ୟାରେ ପ୍ରକାଶିତ ହରୀଂଦ୍ରନାଥ ଚଟ୍ଟୋପାଧ୍ୟାୟଂକ ଏକ ଇଂରାଜୀ ପ୍ରବଂଧର ନକଲ। ପ୍ରବଂଧଟିର ଶୀର୍ଷକ ଥିଲା– "There arises Sachi Routroy. At 27 he has become the voice of voiceless millions" –ଏ ପ୍ରବଂଧରେ ହାରୀନ୍‌ଦା ମୋର ବିପ୍ଳବାତ୍ମକ ମାର୍କସ୍‌ବାଦୀ କବିତାଗୁଡ଼ିକର ସମୀକ୍ଷା କରିଥିଲେ। ଏହାର ଉତ୍ତରରେ ଜି.ଡି.ଙ୍କ ପି.ଏ. ବି.ଏଲ୍. ପୁରୋହିତ ମୋତେ ଧନ୍ୟବାଦ ଦେଇ ପତ୍ର ଦେଇଥିଲେ। ଏ ସମସ୍ତ ବିଷୟ ପୂର୍ବରୁ କହିଛି। ସେ ଯାହାହେଉ, ମୁଁ ବର୍ତ୍ତମାନ ଅବସ୍ଥା-ଚକ୍ରରେ ପଡ଼ି ଜି.ଡି.ଙ୍କୁ ଖଂଡିଏ ଚିଠି ଲେଖିଲି। ସେଥିରେ ମୋର କଲିକତାରେ ରହିବା ନିହାତି ଦରକାର ଏବଂ ସେଥିପାଇଁ ତାଂକର କୌଣସି ଶିଳ୍ପ ଅନୁଷ୍ଠାନରେ ମୋତେ ଚାକିରି ଦେବାପାଇଁ ଅନୁରୋଧ କରିଥିଲି। ଉତ୍ତରରେ ଜି.ଡି. ମୋତେ ଖଂଡିଏ ଚିଠି ଦେଇ କଲିକତା ଗାଡେନ ରିଚ୍ ରୋଡ଼ରେ ଥିବା ବିରଲା ବ୍ରଦର୍ସ ଲିଃ. ପରିଚାଳିତ କେଶୋରାମ କଟନ୍ ମିଲ୍‌ର ଜେନେରାଲ୍ ମ୍ୟାନେଜର ବ୍ରଜମୋହନ ବାଗ୍ରି ବା ବି.ଏମ୍. ବାଗ୍ରିଂକ ସହିତ ଦେଖାକରିବାକୁ କହିଲେ। ବାଗ୍ରିଂକୁ ମଧ୍ୟ ଖଂଡିଏ ଚିଠି ଦେଇଥିଲେ। ସେଥିରେ ସେ ମୋତେ ତାଂକ ସହ ପରିଚିତ କରାଇଦେଇଥିଲେ। ଏହାଛଡ଼ା ସେ ବାଗ୍ରିଂକୁ ଟେଲିଫୋନ୍ କରି ମୋ ବିଷୟ କହିଥିଲେ।

ମୁଁ ଜି.ଡି.ଙ୍କ ଚିଠି ଧରି ବାଗ୍ରିଂକ ନିକଟରେ ପହଂଚିଲି। ବାଗ୍ରିଜୀ ମୋତେ କହିଲେ ତୁମେ Labour Welfare ଅଫିସର୍ ରୂପେ ଏ ମିଲ୍‌ରେ କାମ କର ଓ ୨-୩ ଦିନ ମଧ୍ୟରେ ଜଏନ୍ କର। ମୁଁ ୨-୩ ଦିନ ପରେ ମୋର

ଜିନିଷପତ୍ର ଧରି ମିଲ୍‌ରେ ଯୋଗଦେଲି । କେଶୋରାମ କଟନ୍ ମିଲସ୍ ଭାରତରେ ବୃହତ୍ତମ କଟନ୍ ମିଲ୍ ଥିଲା । ଏଥିରେ ୨ ହଜାର ତଂତ ଏବଂ ପ୍ରାୟ ୧ଲକ୍ଷ ୨୦ ହଜାର ସ୍ପିଂଡିଲ୍ ଥିଲା । ଏଥିରେ ପ୍ରାୟ ୧୨ ହଜାର ଶ୍ରମିକ କାମକରୁଥିଲେ । ମୋର ଅଫିସ୍‌ର ହେଡ୍‌କ୍ଲର୍କ ମାଧବବାବୁ ଜଣେ ବଂଗାଳୀ ଭଦ୍ରଲୋକ ଥିଲେ । ଆହୁରି କେତେଜଣ କିରାଣି ମଧ ଥିଲେ । ଏହି ମିଲ୍‌ରେ କାମ କରୁଥିବା ୧୨ ହଜାର ଶ୍ରମିକଂକ ଭିତରେ ପ୍ରାୟ ୩ ହଜାର ଶ୍ରମିକ ଓଡ଼ିଆ ଥିଲେ । ସେମାନେ ସ୍ପିନିଂ ଡିପାର୍ଟମେଂଟରେ କାମ କରୁଥିଲେ । ବାକି ୯,୦୦୦ ଶ୍ରମିକ ବିହାର, ୟୁ.ପି.ବାସୀ ଓ ବଂଗାଳୀ ଥିଲେ । ପ୍ରାୟ ୨୫୦ ଜଣ ନାରୀ ଶ୍ରମିକ ମଧ କାମକରୁଥିଲେ ।

କେଶୋରାମ କଟନ ମିଲସ୍, ଗାର୍ଡେନ୍ ରିଚ୍ ରୋଡ୍, କଲିକତା-୨୪ ଠାରେ ଅବସ୍ଥିତ ଥିଲା । ଏହି ଅଂଚଳ ମାଟିଆବୁରୁଜ ନାମରେ ପରିଚିତ ଥିଲା । କେଶୋରାମ୍ କଟନ୍ ମିଲ୍‌ର ବାମ ପଟକୁ ଲାଗି ଗାର୍ଡେନ ରିଚ୍ ୱାର୍କସପ୍ ନାମକ ଏକ ବଡ଼ ଜାହାଜ ତିଆରି କାରଖାନା । ତାର ଅଳ୍ପ ଦୂରରେ ଖିଦିର୍‌ପୁର ଡକ୍ । ଡାହାଣ ପଟକୁ ଥିଲା କ୍ଲାଇଟ୍ ଜୁଟ୍ ମିଲ୍ । କ୍ଲାଇଟ୍ ଜୁଟ୍ ମିଲ୍ ସାମ୍‌ନାରେ ଏକ ବଡ଼ ପଡ଼ିଆ ଥିଲା । ଏଠାକୁ ଥରେ ଗାଂଧିଜୀଂକୁ ଆଣି ଏକ ବଡ଼ ସଭା କରାଇଥିଲୁ ।

କେଶୋରାମ୍ କଟନ୍ ମିଲସ୍ ସାମ୍‌ନାରେ ମିଲ୍‌ର କେତେକ ଧାଡ଼ି ଧାଡ଼ି ଖପରଲି ଘରେ ଶ୍ରମିକମାନେ ରହୁଥିଲେ । ଏହାକୁ ଲାଇନ୍‌ସ (କୁଲିଲାଇନ୍) କୁହାଯାଉଥିଲା । କେବଳ ଗୋଟିଏ ୪ ତାଲା ବିଶିଷ୍ଟ ବଡ଼ କୋଠାଘର ଥିଲା । ସେଥିରେ କେତେ ମିଲ୍ କିରାଣି ଓ ଶ୍ରମିକ ରହୁଥିଲେ ।

ମିଲ୍‌ର ଉତ୍ତର ପଟରେ ଗଂଗା ନଦୀ । ଗଂଗା ନଦୀବଂଧ ତଳେ ମିଲ୍‌ର ବଡ଼ ବଡ଼ ଅଫିସରଂକ କ୍ୱାଟର ଥିଲା । ମୁଁ ଯାଇ ଲାଇନ୍ ବା ଶ୍ରମିକ ବସ୍ତି ବାହାରର ଥିବା ଏକ ଦୁଇ ତାଲାବିଶିଷ୍ଟ କୋଠାଘରେ ୨ଟି ରୁମ୍ ନେଇ ରହିଲି । ଯାହାସବୁ ଆସବାବପତ୍ର ଦରକାର ହେଲା, ତାହା ମିଲ୍ ଯୋଗାଇ ଦେଲା । ମୋ ଘର ବରାଂଡାରୁ ମେନ୍ ରୋଡ୍ କଡ଼ରେ ମିଲ୍‌ର ବଡ଼ ଫାଟକ ଏବଂ ଦରୱାନ୍‌ମାନେ ଦେଖାଯାଉଥିଲେ । ଶ୍ରମିକ ବସ୍ତିର ଏକ ଖପରଲି ଘରେ ମିଲ୍‌ର ଗୋଟିଏ ଏଲ୍.ପି. ସ୍କୁଲ ଥିଲା । ଏହାର ନାମ ଥିଲା କେଶୋରାମ୍ କଟନ୍ ମିଲସ୍ ଏଲ୍.ପି. ସ୍କୁଲ । ସେ ସ୍କୁଲରେ ଦୁଇ ଜଣ ଶିକ୍ଷକ ଥାଂତି । ଜଣକ ନାମ ବିଜୟ ବାହାଦୁର ସିଂ । ସେ ୟୁ.ପି.ର ବାଲିଆ ଅଂଚଳର ଲୋକ, ମାଟ୍ରିକୁଲେସନ୍ ପାଶ୍‌କରିଥାଂତି । ସେ ଜେନେରାଲ୍ ମ୍ୟାନେଜର ବାଗ୍ରିଜୀଂକ ଘରେ ତାଂକ ଛୋଟ ପୁଅକୁ (ଦେବରନ୍) ପଢ଼ାଉଥାଂତି । ବାଗ୍ରିଜୀଂକ ଘରେ ତାଂକର ଅବାଧ ପ୍ରବେଶ ଥିଲା । ସେ ବେଳେବେଳେ ତାଂକର ଘରୋଇ କାମ ମଧ କରିଦେଉଥାଂତି ।

ସେ ବାଗ୍ଚିଙ୍କ ଘରେ ପ୍ରିୟହୋଇଉଠିଥିଲେ। ତାଂକୁ ପରେ ଲେବର୍ ଅଫିସକୁ ଜଣେ ସହକାରୀଭାବେ ବଦଳିକରାଯାଇଥିଲା। ସେ ମୋ ଅଧୀନରେ କାମ କରୁଥିଲେ। ତାଂକୁ ସମସ୍ତେ 'ମାଷ୍ଟରଜୀ' ବୋଲି ଡାକୁଥିଲେ। ପରେ ମୁଁ ଏହାକୁ ୟୁ.ପି. ଓ ଏମ୍.ଇ. ସ୍କୁଲରେ ପରିଣତ କରାଇଥିଲି। ଦୁଇ ବର୍ଷ ପରେ ଶ୍ରମିକ ବସ୍ତିର ମାଟିଘର ବଦଳରେ ବଡ଼ ବଡ଼ ୪ଟି ଚାରି ତାଲାବିଶିଷ୍ଟ କୋଠାଘର ଗଢ଼ିଉଠିଥିଲା। କେଂଦ୍ରସ୍ଥଳରେ ଲକ୍ଷ୍ମୀନାରାୟଣ ମନ୍ଦିର ତୋଳାଗଲା। ମୁଁ ଏହି ସ୍କୁଲଟିକୁ କ୍ରମେ +୩ କଲେଜ ପର୍ଯ୍ୟଂତ ବଢ଼ାଇଥିଲି। ବର୍ତ୍ତମାନ ଏହା ଏକ ପୂର୍ଣାଂଗ କଲେଜରେ ପରିଣତ ହୋଇଛି। ଏହା ସାମ୍ନାରେ ଏକ ସ୍ୱତଂତ୍ର କୋଠାଘରେ ମହିଳା କଲେଜ ଚାଲିଛି। ମୁଁ ଏହି ସ୍କୁଲ୍‌ର ସେକ୍ରେଟାରୀ ଥିଲି। ୧୯୪୫ ମସିହାରେ ମୁଁ କେଶୋରାମ୍ କଟନ୍ ମିଲ୍‌ରେ ଲେବର ଓ୍ୱେଲ୍‌ଫେଆର୍ ଅଫିସର୍ ରୂପେ କାର୍ଯ୍ୟଭାର ନେବାପରେ ଶ୍ରମିକମାନେ ବଡ଼ ଆନଂଦିତ ହୋଇଥିଲେ। ସେମାନେ ଆଗରୁ ଜାଣିଥିଲେ ଯେ, ମୁଁ ଜଣେ ମାର୍କ୍‌ସ୍‌ପଂଥୀ ଥିଲି। ଓଡ଼ିଶାରେ ଶ୍ରମିକ ଆଂଦୋଳନ, କୃଷକ ଆଂଦୋଳନ, ଗଡ଼ଜାତ ଆଂଦୋଳନ ଏବଂ ଛାତ୍ର ଏବଂ କଂଗ୍ରେସ ଆଂଦୋଳନରେ ମୁଁ ବିଶେଷ ଭାଗନେଇ ଜେଲ୍ ବରଣ କରିଥିଲି। ଏ ଖବର କ୍ରମେ ମିଲ୍‌ରେ ବ୍ୟାପିଗଲା ଏବଂ ମୋତେ ଶ୍ରମିକମାନେ ଜଣେ ପ୍ରକୃତ ସହାୟକଭାବେ ଦେଖିବାକୁ ଲାଗିଲେ।

ମିଲ୍‌ର ପ୍ରଶାସନ, ଡିପାର୍ଟମେଂଟ ହେଡ଼ସ୍ ଏବଂ ଶ୍ରମିକମାନଂକ ମଧ୍ୟରେ ମୁଁ ଏକ ମଧ୍ୟସ୍ଥି ପରି କାର୍ଯ୍ୟ କରୁଥିଲି। ଶ୍ରମିକମାନଂକ ପ୍ରତି କିଛି ଅନ୍ୟାୟ କରାଗଲେ ମୁଁ ଡିପାର୍ଟମେଂଟ ମୁଖ୍ୟମାନଂକୁ କହି ବା ଲେଖି, ତହିଁର ପ୍ରତିକାର କରୁଥିଲି। ମୁଁ ଅନେକ ସମୟରେ ଶ୍ରମିକମାନଂକ ପକ୍ଷ ନେଇ ଡିପାର୍ଟମେଂଟର ଶୃଙ୍ଖଳା ନଷ୍ଟ କରୁଛି ବୋଲି ଡିପାର୍ଟମେଂଟ ମୁଖ୍ୟମାନେ ଜେନେରାଲ୍ ମ୍ୟାନେଜର ଓ ଅନ୍ୟ କର୍ତ୍ତୃପକ୍ଷଂକଠାରେ ଅଭିଯୋଗ କରୁଥିଲେ। ଉଇଭିଂ ମାଷ୍ଟର ଥିଲେ ଜଣେ ଇଂରେଜ। ନାମ W. Firth। ଫାର୍ଥ ସାହେବ ସବୁବେଳେ ମୋ ବିରୁଦ୍ଧରେ ମିଲ୍ ମ୍ୟାନେଜରଂକୁ ଅଭିଯୋଗ କରୁଥିଲେ। ସେ କହୁଥିଲେ, "ମୁଁ ଲେବର ଅଫିସରଂକ ସ୍ଲିପ୍‌ର ଉତ୍ତର ଦେବି ନା ଡିପାର୍ଟମେଂଟ ଚଳାଇବି ? ମୋର ଏତେ ସମୟ କାହିଁ।" ମୋତେ କର୍ତ୍ତୃପକ୍ଷଂକୁ କୈଫିୟତ୍ ଦେବାକୁ ପଡୁଥିଲା। ମ୍ୟାନେଜର ମଧ୍ୟ ବେଳେବେଳେ ଡିପାର୍ଟମେଂଟ ମୁଖ୍ୟମାନଂକ ପକ୍ଷ ନେଇ ମୋ ପ୍ରତି ବିରକ୍ତି ପ୍ରକାଶ କରୁଥିଲେ; ମାତ୍ର ମୋ କାମ ମୁଁ ସୁରୁଖୁରୁରେ କରିଯାଉଥିଲି। ଡିପାର୍ଟମେଂଟ ମୁଖ୍ୟମାନେ ମୋ ସୁପାରିଶ ଗ୍ରହଣ ନକଲେ ମୁଁ ମିଲ୍ ମ୍ୟାନେଜରଂକୁ ଜଣାଉଥିଲି।

ଏହିପରି ଭାବରେ କେତେ ମାସ ବିତିଗଲା। ମିଲ୍‌ର ଏବଂ ଆଖପାଖ ଅଂଚଳରେ ସମସ୍ତେ ମୋତେ 'ରାୟସାହେବ' ବୋଲି ଡାକୁଥିଲେ। କାରଣ ରାଉତରାୟ ଶବ୍ଦଟି ଲୋକେ ଉଚ୍ଚାରଣ କରିବାରେ ଅସୁବିଧା ହେଉଥିଲା; ତେଣୁ

ସେମାନେ ତାହାକୁ କାଟଛାଂଟ କରି 'ରାୟସାହେବ'ରେ ପରିଣତ କରିଥିଲେ। ମିଲ୍ ପ୍ରଶାସନ ଓ ଶ୍ରମିକମାନଂକ ଛଡ଼ା ମୋତେ ବେଂଗଲ୍ ସରକାରଂକ ଲେବର୍ କମିଶନର୍ ଓ ତାଂକ ଅଫିସରମାନଂକ ସହିତ ମଧ୍ୟ ଅନେକ ସମୟରେ ଯୋଗାଯୋଗ ସ୍ଥାପନ କରିବାକୁ ପଡୁଥିଲା। ଶ୍ରମିକ arbitrationରେ ମୋତେ ସେମାନଂକ ସହିତ ଆଲୋଚନା କରିବାକୁ ପଡୁଥିଲା। ମିଲ୍ର ପ୍ରତିନିଧିଭାବେ ମୁଁ ତାଂକ ସହିତ ଆଲୋଚନା କରୁଥିଲି। ମୁଁ କେତେ ଥର ଲେବର୍ କମିଶନରଂକ ଅଫିସ୍ ଷ୍ଟାଫ୍‌ମାନଂକ ଟିମ୍ ସହିତ ଆମ ମିଲ୍ ଶ୍ରମିକମାନଂକ ଟିମ୍‌ର ଫୁଟବଲ୍ ମ୍ୟାଚ୍‌ର ଆୟୋଜନ କରିଥିଲି। ମୁଁ ନିଜେ ମଧ୍ୟ left-outଭାବେ ମିଲ୍ ଟିମ୍ ପକ୍ଷରେ ଖେଳୁଥିଲି। ମୁଁ ଓଡ଼ିଶାରେ ଥିଲାବେଳେ ଜଣେ ଫୁଟବଲଖେଳାଳିଭାବେ ସୁଖ୍ୟାତି ଅର୍ଜନ କରିଥିବା କଥା ପୂର୍ବରୁ କହିଛି। ବେଂଗଲ୍ ସରକାରଂକ ଶ୍ରମମଂତ୍ରୀ ଓ ଅନ୍ୟାନ୍ୟ ମଂତ୍ରୀମାନଂକ ସହିତ ମଧ୍ୟ ମୋତେ ଯୋଗଯୋଗ କରିବାକୁ ପଡୁଥିଲା।

ମୁଁ ବଂଗଳା ଓ ଓଡ଼ିଶାର କେତେକ ମଂତ୍ରୀଂକୁ ମିଲ୍‌କୁ ନିମଂତ୍ରଣ କରି ମିଲ୍‌ର ବିଭିନ୍ନ ସମସ୍ୟା ବିଷୟରେ ପ୍ରଶାସନ ଓ ଶ୍ରମିକ ପ୍ରତିନିଧିଂକ ସହିତ ଆଲୋଚନା କରାଉଥିଲି। ଏହାଛଡ଼ା ସ୍ଥାନୀୟ ପୌର ପ୍ରତିଷ୍ଠାନ ଓ ସାଧାରଣ ଅନୁଷ୍ଠାନମାନଂକ ସହିତ ଯୋଗାଯୋଗ ରଖିଥିଲି। ମିଲ୍ ଲାଇନରେ କେତେ ବର୍ଷ ପରେ ପୂର୍ବପଟେ ଶ୍ରୀଜଗନ୍ନାଥ ମଂଦିର ତୋଳାହୋଇଥିଲା।

**ବଂଗଦେଶରେ ମହାଦୁର୍ଭିକ୍ଷ –**

୧୯୪୧ ମସିହା ଅକ୍ଟୋବରରେ ଉତ୍ତର-ପୂର୍ବ ବଂଗଦେଶର ବହୁ ଅଂଚଳ ପ୍ରଳୟଂକରୀ ବାତ୍ୟାରେ ନଷ୍ଟଭ୍ରଷ୍ଟ ହୋଇଯାଇଥିଲା। ପ୍ରାୟ ୩୦୦୦ ବର୍ଗମିଟର ଧାନଜମି ସଂପୂର୍ଣ ବିଧ୍ୱସ୍ତ ହୋଇଯାଇଥିଲା ଏବଂ ୧୧୦୦ ଲୋକ ପ୍ରାଣ ହରାଇଥିଲେ ବୋଲି ଜଣାଯାଏ (Universal Encyclopedia)। ପୂର୍ବ ବଂଗହିଁ ବଂଗଦେଶର ଶସ୍ୟଭଂଡାର ଥିଲା। ଏହାର ଗୁରୁତର ପରିଣାମ ବଂଗଦେଶର ଜୀବନଯାତ୍ରାକୁ ମାରାତ୍ମକଭାବେ ଆଘାତ କରିଥିଲା।

୧୯୪୨ ମସିହା ଆରଂଭରେ ସମଗ୍ର ବଂଗଦେଶରେ ଭୟଂକର ଦୁର୍ଭିକ୍ଷ ଦେଖାଦେଲା। ଲକ୍ଷ ଲକ୍ଷ ନରନାରୀ ହା-ଅନ୍ନ, ହା-ଅନ୍ନ କରି ପଦାକୁ ବାହାରି ଆସିଲେ। ସେମାନେ ସବୁ ମଫସଲ ଅଂଚଳରୁ ହଜାର ହଜାର ସଂଖ୍ୟାରେ ପଳାଇଆସି କଲିକତା ନଗରୀରେ ଆଶ୍ରୟ ନେଲେ। ଯେଉଁଠି ଖାଲି ସ୍ଥାନ ପାଇଲେ, ସେଠି ଜିନିଷପତ୍ର ରଖି ତିନି ଖଂଡ ଇଟା ପକାଇ ରୋଷେଇବାସ ଆରଂଭକଲେ। ହାଓଡ଼ା ରେଳଷ୍ଟେସନ୍ ଏବଂ ଶିଆଲ୍‌ଦା ରେଳଷ୍ଟେସନ୍ ଏମାନଂକଦ୍ୱାରା ଭରିଗଲା। କଲିକତାର ସବୁ ଫୁଟ୍‌ପାଥ ଏମାନେ ଅଧିକାର କରିବସିଲେ। ରାସ୍ତାରେ ଚାଲିବା କଷ୍ଟକର ହେଲା। ବହୁ ସ୍ଥାନରେ ଦୁର୍ଭିକ୍ଷଗ୍ରସ୍ତଂକ ମୃତଦେହ ପଡ଼ିରହିଥାଏ। କୁକୁର ଓ କାଉମାନେ ମଢ଼କୁ ଝିଂକି ଖାଉଥାଂତି। କଲିକତାରେ ସେ ଦୃଶ୍ୟ ଅତ୍ୟଂତ ମର୍ମସ୍ପର୍ଶୀ।

ଏହା ବ୍ରିଟିଶ୍ କୁଶାସନର ଏକ ଜଘନ୍ୟ ଦୃଷ୍ଟାଂତ । କେତେକ ଦୁର୍ଭିକ୍ଷଗ୍ରସ୍ତ ଲୋକ ନିଜ ପେଟ ନିଜେ ଭରିନପାରି ନିଜ ପିଲାଂକ ମାଂସ ଖାଉଥିବା କଥା ଶୁଣାଯାଉଥିଲା । ପ୍ରାୟ ୫୦ ଲକ୍ଷ ଲୋକ ଏହି ମହାଦୁର୍ଭିକ୍ଷରେ ଅନାହାରରେ ମୃତ୍ୟୁମୁଖରେ ପଡ଼ିଥିଲେ ବୋଲି ବେସରକାରୀ ସୂତ୍ରରୁ ଜଣାଯିବାବେଳେ ସରକାରୀ ସୂତ୍ରରୁ ୧୦ ଲକ୍ଷରୁ ବେଶୀ ଲୋକ ଦୁର୍ଭିକ୍ଷରେ ମରିଥିବା କଥା ଜଣାଯାଏ । ବ୍ରିଟିଶ୍ ରାଜଧାନୀ ଲଂଡନ୍‌ରୁ ପ୍ରକାଶିତ 'New Universal Encyclopedia' ଅନୁଯାୟୀ "In 1942 disastrous famine resulted from failure of the rice crop & faults in distribution, nearly a million perishing'. (page-1085) ଅର୍ଥାତ୍ "ଇଂରେଜ ସରକାରଂକ ଅବହେଳା ଓ ତାଂକ ପ୍ରଶାସନର ଆବଂଟନ ପ୍ରଣାଳିରେ ଅବ୍ୟବସ୍ଥା ଯୋଗୁ ପ୍ରାୟ ଦଶଲକ୍ଷ ଲୋକ ଅନାହାରରେ ମୃତ୍ୟୁ ବରଣ କରିଥିଲେ ।" ଏହି ନାହିଁ ନଥିବା ଦୁର୍ଭିକ୍ଷକୁ ଇତିହାସରେ The Great Bengal Famine ବୋଲି କୁହାଯାଇଛି । ୧୯୯୫ରେ ବଂଗଦେଶରେ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା । ତଥାପି କୁଢ଼ କୁଢ଼ ମୂର୍ଦାର ରାସ୍ତାଘାଟରେ ପଡ଼ିଥାଂତି । ବ୍ରିଟିଶ୍ ଶାସନର ନଗ୍ନ ସ୍ୱରୂପ ବଂଗଳା ମହାଦୁର୍ଭିକ୍ଷ ଖୋଲିଦିଏ । ଇଂରେଜ ପ୍ରଶାସନ ମହାଯୁଦ୍ଧରେ ଖାଦ୍ୟ ଓ ଅନ୍ୟାନ୍ୟ ଜିନିଷପତ୍ର ସରବରାହ କରିବାରେ ବ୍ୟସ୍ତ ଥାଏ । ତାଂକୁ ଦୁର୍ଭିକ୍ଷ ନିବାରଣ କରିବାକୁ ବେଳ ନଥାଏ । ଅତ୍ୟଧିକ ପରିମାଣରେ ନୋଟ୍ ଛାପି ସେମାନେ ମୁଦ୍ରାସ୍ଫିତି ସଂଗକୁ ଜିନିଷପତ୍ରର ମୂଲ୍ୟ ଅତିମାତ୍ରାରେ ବଢ଼ାଇଚାଲିଥାଂତି । ତେଣୁ ଖାଦ୍ୟଶସ୍ୟର ଦୁର୍ମୂଲ୍ୟ ଏହି ଦୁର୍ଭିକ୍ଷର ଅନ୍ୟତମ କାରଣ ।

**ମିଲ୍ ତରଫରୁ ଅନ୍ନଛତ୍ର –**

କେଶୋରାମ୍ କଟନ୍ ମିଲ୍‌ର ଅଳ୍ପ ଦୂରରେ ଆଖଡ଼ା ରୋଡ୍‌ରେ ମିଲ୍‌ର ଏକ ବଡ଼ ଜାଗା ଥାଏ । ତାହା ସରକାରଂକ ମାଧ୍ୟମରେ ଆକ୍ୱାୟାର କରାଯାଇଥାଏ । ସେଥିରେ କେତୋଟି ଛୋଟ ଛୋଟ ବାସ ଉପଯୋଗୀ ଘର ମଧ୍ୟ ଥାଏ । ପିଇବା ପାଣି କଳ ପ୍ରଭୃତି ଥାଏ । ଦୁର୍ଭିକ୍ଷପୀଡ଼ିତ ବୁଭୁକ୍ଷୁ ନରନାରୀ, ଶିଶୁ ବୃଦ୍ଧଂକୁ ପେଟଭରି ଖାଇବାକୁ ଦେବାପାଇଁ ଆଖଡ଼ା ରୋଡ୍‌ରେ ମିଲ୍ ତରଫରୁ ଅନ୍ନଛତ୍ର ଖୋଲାଯାଇଥାଏ । ପ୍ରତିଦିନ ମଧ୍ୟାହ୍ନରୁ ଅପରାହ୍ଣ ପର୍ଯ୍ୟଂତ ପ୍ରାୟ ୨-୩ ହଜାର ଲୋକଂକୁ ମାଗଣାରେ ଖାଇବାକୁ ଦିଆଯାଉଥାଏ । ସେ ଦୃଶ୍ୟ ଅତ୍ୟଂତ କରୁଣ । ଧାଡ଼ି ଧାଡ଼ି କଂକାଳ ଯେତେବେଳେ ସେମାନଂକର ଆଲୁମିନିୟମ ପାତ୍ରଟି ବଢ଼ାଇ ଅନ୍ନ ନେବାପାଇଁ ଆଗେଇ ଆସୁଥାଂତି, ତାହା ଜୀବନରେ ଭୁଲିହେବନାହିଁ । ଏହାଛଡ଼ା ପଂକ୍ତିଭୋଜନର ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ଶହ ଶହ ଭୋକିଲା ଲୋକଂକୁ ଧାଡ଼ି ଧାଡ଼ି କରି ବସାଇ ପ୍ରାୟ ୪-୫ ଧାଡ଼ିର ଲୋକଂକୁ ଭାତ ଡାଲ୍‌ମା ପ୍ରଭୃତି ଦିଆଯାଉଥିଲା । ମୁଁ ଏହିସବୁ ବ୍ୟବସ୍ଥାର କିଛିଦିନ ତଦାରଖ କରୁଥିଲି । ଏହା ଏକ ବଡ଼ ଦାୟିତ୍ୱ ଥିଲା ।

**'ଭାରତ-ଛାଡ଼' ଆଂଦୋଳନ –**

ଇଆରି ମଧ୍ୟରେ 'ଭାରତ ଛାଡ଼' ଆଂଦୋଳନର ଡାକ ବାଜିଉଠିଲା । ୧୯୪୨ ସାଲ ଜୁଲାଇ ମାସରେ ୱାର୍ଧାଠାରେ କଂଗ୍ରେସ ୱର୍କିଂ କମିଟି ବସି ବ୍ରିଟିଶ୍ ସରକାର ଭାରତ ନ ଛାଡ଼ିଲେ ବ୍ୟାପକ ଆଇନ ଅମାନ୍ୟ ଆଂଦୋଳନ ଆରଂଭ କରିବାପାଇଁ ଜାତିକୁ ଆହ୍ୱାନ ଦିଆଗଲା । 'କର ବା ମର' ଥିଲା ଏହି ବିଦ୍ରୋହର ଧ୍ୱନି । ଏହାପରେ କେଂଦ୍ରୀୟ ଓ ପ୍ରାଦେଶିକ ସରକାରମାନେ ଏହି ବିଦ୍ରୋହକୁ ଦୃଢ଼ହସ୍ତରେ ଦମନ କରିବାପାଇଁ ଲାଗିପଡ଼ିଲେ । ଓଡ଼ିଶାର ଓ ଅନ୍ୟାନ୍ୟ ରାଜ୍ୟର ସୂଚନାବିଭାଗୀୟ ଅଫିସରମାନେ ପ୍ରସ୍ତାବିତ ଆଇନ ଅମାନ୍ୟ ଆଂଦୋଳନ ବିରୋଧରେ ଲୋକମାନଂକ ମଧ୍ୟରେ ପ୍ରବଳ ପ୍ରଚାର ଆରଂଭକରିଦେଇଥିଲେ । ଓଡ଼ିଶାରେ କେତେକ ରାଜଭକ୍ତ ଅନୁଷ୍ଠାନ, ଯଥା– Oriya Pupil's Association, Oriya Mahamedans Association, Women's League of Service, Domeciled Bengali Association ପ୍ରଭୃତି ବ୍ରିଟିଶ୍ ସରକାରକୁ ସମର୍ଥନ ଜଣାଇଲେ । କଂଗ୍ରେସଦଳ ଭାରତରେ ବ୍ରିଟିଶ୍ ସରକାରଂକର ଆଇନ ଭଂଗକରିବା ପାଇଁ ଏବଂ ପଂଚାୟତରାଜ ଓ ଶାଂତି ସେନା ଗଠନ କରିବାପାଇଁ ନିର୍ଦ୍ଦେଶଦେଲେ ।

ନିଖିଳ ଭାରତ କଂଗ୍ରେସ କମିଟି ୧୯୪୨ ସାଲ୍ ଅଗଷ୍ଟ ମାସ ୮ ତାରିଖରେ ବଂବେଠାରେ ବସି 'ଭାରତ ଛାଡ଼' ପ୍ରସ୍ତାବ ଗ୍ରହଣ କଲେ । ତା' ପରଦିନ ବଂବେଠାରେ ସମ୍ମିଳିତ ହୋଇଥିବା ସମସ୍ତ କଂଗ୍ରେସ ନେତା ଓ କାର୍ଯ୍ୟକାରୀ କମିଟି ସଦସ୍ୟମାନେ ଗିରଫହେଲେ । ସେମାନଂକ ମଧ୍ୟରେ ମହାତ୍ମା ଗାଂଧି, ପଂଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍, ସରୋଜିନୀ ନାଇଡୁ, ଜେ.ବି. କୃପାଳିନୀ, ଡ. ପ୍ରଫୁଲ୍ଲ ଘୋଷ, ହରେକୃଷ୍ଣ ମହତାବ, ଡ. ମୌଲାନା ଆବୁଲ୍ କାଲାମ୍ ଆଜାଦ୍, ଡ. ପଟ୍ଟାଭି ସୀତାରାମାୟା ଓ କସ୍ତୁରୀବା ଗାଂଧୀ କାରାବରଣକଲେ । ଏହାଛଡ଼ା ସରକାର ଗେଜେଟ୍‌ରେ ଏକ ବିଜ୍ଞପ୍ତି ପ୍ରକାଶକରି ଓଡ଼ିଶାର ସମସ୍ତ କଂଗ୍ରେସ ଅନୁଷ୍ଠାନକୁ ବେଆଇନ ଘୋଷଣାକଲେ । ଭାରତର ଅନ୍ୟାନ୍ୟ ରାଜ୍ୟରେ ମଧ୍ୟ ସେହିପରି କରାଗଲା ।

ଓଡ଼ିଶାରେ ଥିବା କଂଗ୍ରେସ ଅଫିସ୍‌ମାନ ବଂଦ କରି ସିଲ୍‌ମୋହର ଦିଆଗଲା । ଏହା ବ୍ୟତୀତ ସବୁ ଜିଲ୍ଲାର ପ୍ରମୁଖ କଂଗ୍ରେସ ନେତାମାନଂକୁ ଗିରଫ୍ କରାଗଲା । ଏହିସବୁ ଦମନ ଫଳରେ ଅବସ୍ଥା ଟିକେ ଶାଂତପଡ଼ିଲା । ମାତ୍ର କିଛି ଦିନ ପରେ ସେହି ସୁପ୍ତ ଝଡ଼ ପୁଣି ପ୍ରବଳ ତେଜରେ ମାତିଉଠିଲା । ଲୋକେ ସରକାରୀ ଅଫିସ୍, ଥାନା ଆଦି ପୋଡ଼ିଦେଲେ । ରେଭେନ୍‌ସା କଲେଜର ଛାତ୍ରମାନେ ବିପ୍ଳବରେ ଯୋଗଦେଇଥିଲେ । ଅଗଷ୍ଟ ମାସ ଶେଷବେଳକୁ ଏହି ଆଇନ୍ ଅନ୍ୟାନ୍ୟ ଆଂଦୋଳନ ଅତି ପ୍ରବଳ ଆକାର ଧାରଣକଲା । କ୍ଷିପ୍ତ ଜନତା ଭାବୁଥିଲେ ଯେ ବ୍ରିଟିଶ୍

ସରକାର ଆଉ ନାହିଁ; ଭାରତରେ ସ୍ୱରାଜ୍ୟ ହୋଇଗଲାଣି। ନେତାମାନେ ସମସ୍ତେ ଜେଲ୍‌ରେ ଥିବାରୁ ସେମାନଂକୁ କେହି ପଥପ୍ରଦର୍ଶନ କରିବାପାଇଁ ନଥିଲେ। ସେମାନେ ଅବାଧରେ ସରକାରୀ ଅଫିସ୍‌ସବୁ ଭଂଗାରୁଜା କରିବାକୁ ଲାଗିଲେ। କେତେକ ଥାନା, ପୋଷ୍ଟଅଫିସ୍, ରେଭିନ୍ୟୁ ଅଫିସ୍, P.W.D. ଅଫିସ୍ ପ୍ରଭୃତି ଜଳାପୋଡ଼ାରେ ନଷ୍ଟହୋଇଗଲା।

**ବାଲେଶ୍ୱର ଜିଲ୍ଲାରେ ଗଣ-ବିପ୍ଳବ –**

'ଭାରତ ଛାଡ଼' ବିଦ୍ରୋହ ଯାହାକୁ 'ଅଗଷ୍ଟ ବିପ୍ଳବ' କୁହାଯାଉଥିଲା, ବାଲେଶ୍ୱର ଜିଲ୍ଲାରେ ତାହା ସବୁଠାରୁ ଗୁରୁତର ଆକାର ଧାରଣକଲା। ଉତ୍‌କ୍ଷିପ୍ତ ଜନତା ସରକାରୀ ଅଫିସ୍ ଓ ପୁଲିସ୍ ଥାନା ପୋଡ଼ି ଭାଂଗିରୁଜିଦେଇଥିଲେ। ୧୯୪୨ ମସିହା ଅଗଷ୍ଟ ୧୭ରେ ବାଲେଶ୍ୱରର ଭଂଡାରିପୋଖରୀ ଥାନା ଉପରେ ପ୍ରାୟ ୫ ହଜାର ସଶସ୍ତ୍ର ଜନତା ଚଢ଼ାଉକରିଥିଲେ। ସେମାନେ ସବୁ ଜିନିଷପତ୍ର ଜଳାପୋଡ଼ା ଭଂଗାରୁଜା କରିଦେଇଥିଲେ। ସେମାନଂକର ୨ ଜଣ ନେତା ଜଗନ୍ନାଥ ଦାସ ଓ ଦ୍ୱାରିକା ପ୍ରସାଦ ଦାସଂକୁ ପୋଲିସ୍ ଗିରଫ୍ କରି ନେଇଥିଲେ। ଏମାନେ କଂଗ୍ରେସ ଏମ୍.ଏଲ୍.ଏ. ଥିଲେ। ଲୋକଂକୁ ଶାସ୍ତିଦେବାପାଇଁ ସରକାର ଏଠାରେ ୬୦୦୦ ଟଂକା ପିଟୁଣି ଟିକସ ବା ସାମୂହିକ ଜୋରିମାନା ପାଖଆଖ ୧୨ଟି ଗ୍ରାମରେ ଜାରିକରିଥିଲେ। ଅଗଷ୍ଟ ୨୧ ତାରିଖରେ ଧାମନଗରଠାରେ ଜନତା ଓ ପୋଲିସ ମଧ୍ୟରେ ସଂଘର୍ଷ ଲାଗିଯାଇଥିଲା। ପୋଲିସ୍ ଗୁଳିଚାଳନାରେ ୬ଜଣ ଲୋକ ମରିଥିଲେ ଏବଂ ୫ଜଣ ଗୁରୁତର ଆହତ ହୋଇଥିଲେ। ୧୯୪୨ ସାଲ୍ ସେପ୍‌ଟେଂବର ୨୮ରେ ଖଇରା ଥାନା ଉପରେ ଜନତା ଆକ୍ରମଣ କରିଥିଲା। ପୋଲିଶ୍ ଗୁଳିରେ ୨ ଜଣ ଲୋକ ମରିଥିଲେ ଓ ଜଣେ ଆହତ ହୋଇଥିଲେ।

ସବୁଠାରୁ ଗୁରୁତର ସଂଘର୍ଷ ହୋଇଥିଲା ଏରମ୍‌ଠାରେ। ଏରମ୍ ଭଦ୍ରକ ସବ୍‌ଡ଼ିଭିଜନର ବାସୁଦେବପୁର ଅଂଚଳର ଗୋଟିଏ ଗ୍ରାମ। ବର୍ଷାଦିନେ ଏଠାକୁ ଯିବାଆସିବା କରିବା ଅତି କଷ୍ଟସାଧ ଥିଲା। ୧୯୪୨ ମାର୍ଚ୍ଚ ୨୮ ତାରିଖରେ କେତେକ ନେତାଂକୁ ଗିରଫ୍ କରିବାପାଇଁ ପୋଲିସବାହିନୀ ଇରମ୍ ଆସିଥିଲେ। ପୋଲିସ୍ ପହଂଚିବା ମାତ୍ରେ ଶଂଖଧ୍ୱନି ଶୁଣି ପ୍ରାୟ ୫ ହଜାର ଲୋକ ଲାଠି ନେଇ ଜମାହୋଇଥିଲେ। ପୋଲିସ୍ ସେମାନଂକୁ ଚାଲିଯିବାକୁ କହିବାରୁ ସେମାନେ ଭ୍ରୂକ୍ଷେପ କରିନଥିଲେ। ପୋଲିସ୍ ୧୩୦ ରାଉଂଡ ଗୁଳି ଚଳାଇଥିଲେ। ଗୁଳିମାଡ଼ରେ ୩୫ ଜଣ ଲୋକ ଘଟଣାସ୍ଥଳରେ ମୃତ୍ୟୁବରଣ କରିଥିଲେ। ସରକାରୀ ରିପୋର୍ଟରେ ୨୬ ଜଣ ବ୍ୟକ୍ତି ମରିଥିବା କଥା କୁହାଯାଇଥିଲା। ଏରମ୍ ଓଡ଼ିଶାର ଜାଲିଆନାୱାଲାବାଗ କହିଲେ ଅତ୍ୟୁକ୍ତି ହେବନାହିଁ। ରକ୍ତତୀର୍ଥ ଏରମ୍ ସ୍ୱାଧୀନତା ଇତିହାସରେ ଏକ ମାଇଲଖୁଂଟ।

**କୋରାପୁଟ ଜିଲ୍ଲାରେ 'ଅଗଷ୍ଟ-ବିପ୍ଲବ' –**

ଆଦିବାସୀ-ଅଧ୍ୟୁଷିତ କୋରାପୁଟ ଜିଲ୍ଲାରେ ଏହା ଅତି ଭୟଂକର ହୋଇଥିଲା। କୋରାପୁଟର ଜୟପୁରଠାରୁ ୨ ଜଣ ବୀର ତରୁଣ ଲକ୍ଷ୍ମଣ ନାଏକ ଏବଂ ତାଂକ ସାଥୀ କଂଗ୍ରେସ ପତାକା ଧରି ଗାଁଗଂଡା ବୁଲି ବିପ୍ଳବର ବାଣୀ ପ୍ରଚାର କରିବାକୁ ଲାଗିଲେ। ସେମାନେ ପ୍ରାୟ ୨୦୦ ଆଦିବାସୀଂକୁ ନେଇ ଏକ ସୈନ୍ୟବାହିନୀ ଗଠନ କରି ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ସରକାରୀ ଅଫିସ୍ ଉପରେ ଆକ୍ରମଣ କରିବାକୁ ଲାଗିଲେ। ସେମାନେ ମାଥିଲି ଥାନା ଉପରେ ଚଢ଼ାଉ କରିଥିଲେ ଏବଂ କେତେକ ପୋଲିସଂକୁ ଆହତ କରିଥିଲେ; ଫଳରେ ପୋଲିସ ଗୁଳି ଚଳାଏ। ପୋଲିସ୍‌ର ଗୁଳିମାଡ଼ରେ ୪ ଜଣ କଂଗ୍ରେସ କର୍ମୀ ମୃତ୍ୟୁବରଣ କରଂତି; ନିଜେ ଲକ୍ଷ୍ମଣ ମଧ୍ୟ ଗୁଳି ମାଡ଼ରେ ଆହତ ହୋଇଥିଲେ। ସେ ସେହି ଗୁଳିଚୋଟରେ ତଳେ ପଡ଼ିଯାଇ ସମସ୍ତଂକୁ ଉଦ୍‌ବୋଧନ ଦେଇଥିଲେ ଯେ– ଆମେ ସ୍ୱାଧୀନ। ବ୍ରିଟିଶ୍ ଏ ଦେଶରୁ ପଳାଇଲାଣି। ମହାତ୍ମା ଗାଂଧୀ ଆମର ରାଜା, ଜୟପୁରର ରାଜା ମଧ୍ୟ ଆଉ ନାହିଁ... ଇତ୍ୟାଦି ଇତ୍ୟାଦି। ଶେଷରେ ତାଂକୁ ପୋଲିଶ୍ ଗିରଫ୍ କରି ବ୍ରହ୍ମପୁର ଜେଲ୍‌ରେ ରଖିଥିଲେ ଏବଂ ଏକ ଲୋକଦେଖାଣିଆ ବିଚାରପରେ ତାକୁ ୧୯୪୩ ଅଗଷ୍ଟ ମାସ ୨୯ ତାରିଖରେ ବ୍ରହ୍ମପୁର ଜେଲ୍‌ରେ ଫାଶୀ ଦେଇଥିଲେ। ସହିଦ ଲକ୍ଷ୍ମଣ ନାଏକ ଚୀର ଅମର। ୧୯୪୨ ସାଲ ଗଣବିପ୍ଳବକୁ ଦବାଇବାପାଇଁ ଇଂରେଜ୍ ସରକାର କେତେକ ସ୍ଥାନରେ ଉଡ଼ାଜାହାଜରୁ ବୋମା ପକାଇ ଧନଜୀବନ ନଷ୍ଟ କରିଥିଲା। ଏ ସମସ୍ତ ଖବର ମୋତେ କଲିକତାରେ ବିଚଳିତ କରୁଥାଏ। କଲିକତାରେ ଓଡ଼ିଶାର ସବୁ ଅଂଚଳର ପ୍ରାୟ ମୋଟ ୭ ଲକ୍ଷ ଓଡ଼ିଆ ବିଭିନ୍ନ କ୍ଷେତ୍ରରେ କାମ କରୁଥାଂତି। ବସ୍ତୁତଃ ଏହା ଥିଲା ଭାରତର ବୃହତ୍ତମ ଓଡ଼ିଆଭାଷୀ ନଗରୀ; ଓଡ଼ିଶାର ସମସ୍ତ ଖବର ଏଠାରେ ତୁରଂତ ପହଂଚୁଥିଲା।

# ଚତୁର୍ବିଂଶ ଉଲ୍ଲାସ

## ସ୍ୱାଧୀନତା ସଂଗ୍ରାମ

ସମଗ୍ର ବଂଗଦେଶରେ 'ଭାରତ-ଛାଡ଼' ଆଂଦୋଳନ ପ୍ରବଳ ଆକାର ଧାରଣ କରିଥିଲା । ମେଦିନାପୁରରେ ଜନ-ଆଂଦୋଳନକୁ ଦବାଇବାପାଇଁ ପୋଲିସ୍ ବହୁବାର ଗୁଳିଚାଳନା କରିଥିଲେ । ମାତଂଗିନୀ ହାଜରା ପ୍ରମୁଖ ବହୁ ନାରୀ ବିପ୍ଳବିନୀ ପୋଲିସ୍ ଗୁଳିରେ ପ୍ରାଣହରାଇଥିଲେ । କଲିକତାରେ ସ୍ୱାଧୀନତା ସଂଗ୍ରାମ ତୀବ୍ର ଆକାର ଧାରଣ କରିଥିଲା । ରାଇଟରସ୍ ବିଲ୍‌ଡିଂ ଉପରେ ଜାତୀୟ ପତାକା ଉଡ଼ାଇବାକୁ ଯାଇ କେତେକ ବୀର ଯୁବକ ପୋଲିସ୍ ଓ ସୈନ୍ୟମାନଂକ ଗୁଳିରେ ମୃତ୍ୟୁ ବରଣ କରିଥିଲେ ।

**'ଅଗଷ୍ଟ-ବିପ୍ଳବ' ଓ ମୁଁ –**

ଅଗଷ୍ଟ-ବିପ୍ଳବ ବା ଭାରତ-ଛାଡ଼ ଆଂଦୋଳନରେ ମୁଁ ସକ୍ରିୟ ଅଂଶ ଗ୍ରହଣ କରିପାରିଲିନାହିଁ । ତାର କାରଣ ମୁଁ ପ୍ରାୟ ୩ ମାସ ହେଲା କେଶୋରାମ୍ କଟନ୍ ମିଲ୍‌ରେ ଜଏନ୍ କରିଥାଏ । ମୋ ଉପରେ ବହୁ ଦାୟିତ୍ୱ ରହିଥାଏ । ବିଶେଷକରି କେଶୋରାମ୍ କଟନ୍ ମିଲ୍‌ର ଶ୍ରମିକ ମଂଗଳ କର୍ମସୂଚୀକୁ ତ୍ୱରାନ୍ୱିତ କରିବା ଏବଂ ମିଲ୍ ବାହାରେ ଦୁର୍ଭିକ୍ଷ-ପୀଡ଼ିତ ହଜାର ହଜାର ନରନାରୀଂକର ରିଲିଫ୍ ସେଂଟରଗୁଡ଼ିକ ଚଳାଇବା ଇତ୍ୟାଦି ବହୁ କାମରେ ମୁଁ ବ୍ୟସ୍ତଥିଲି । ବେଳେବେଳେ ଚାକିରି ଛାଡ଼ିଦେଇ ସ୍ୱାଧୀନତା ସଂଗ୍ରାମରେ ଲଂଫ ଦେବାପାଇଁ ପ୍ରବଳ ଇଚ୍ଛା ହେଉଥାଏ ।

ସେତେବେଳେ ଓଡ଼ିଶା ଗଡ଼ଜାତ-ଆଂଦୋଳନର ପ୍ରମୁଖ ନେତା ସାରଂଗଧର ଦାସ କଲିକତାର ପାଣିହାଟୀଠାରେ ଏକ ୱାଟର୍ ପ୍ରୁଭ୍ କାରଖାନାରେ ଜଣେ ଅଫିସର୍ ରୂପେ କାର୍ଯ୍ୟ କରୁଥାଂତି । ମୋର ତାଂକ ସଂଗେ କେତେ ଥର ଏ ବିଷୟରେ ଆଲୋଚନା ହୋଇଛି । ତାଂକ ଆଗରେ ମଧ୍ୟ ସେଇ ଏକାଭଳି ସମସ୍ୟା ଥିଲା – କଣ କରିବା ? ସେ ସ୍ଥିରକଲେ ଯେ ଚାକିରି ଛାଡ଼ିଦେଇ ଓଡ଼ିଶା ଫେରିଯିବେ ଏବଂ ଭାରତ-ଛାଡ଼ ଆଂଦୋଳନରେ ଯୋଗଦେଇ ଜେଲ୍‌ବରଣ କରିବେ । କିଛିଦିନ ପରେ ସେ ଚାକିରିରୁ ଇସ୍ତଫାଦେଇ ଓଡ଼ିଶା ଫେରିଗଲେ ଏବଂ ଆଂଦୋଳନରେ ଯୋଗଦେଲେ । ସେ ଓଡ଼ିଶା ଫେରୁଥିବା ଦିନ ମୁଁ ତାଂକୁ ହାଓଡ଼ା ରେଲଷ୍ଟେସନ୍‌ରେ ସଂବର୍ଦ୍ଧନା ଜଣାଇଥିଲି ।

ମୋର ଓଡ଼ିଶା ଫେରିବାର ପ୍ରଧାନ ବାଧା ଥିଲା କମ୍ୟୁନିଷ୍ଟ ପାର୍ଟିର ସାମ୍ରାଜ୍ୟବାଦୀ ଯୁଦ୍ଧକୁ 'ଜନଯୁଦ୍ଧ' କରିବା ନୀତିକୁ ମୁଁ ଗ୍ରହଣ କରି ପାରୁନଥିଲି ।

ମୋର ଲକ୍ଷ୍ୟ ଥିଲା ଏକ ସ୍ୱାଧୀନ ସମାଜବାଦୀ ରାଷ୍ଟ୍ର ଗଠନ। ମାତ୍ର ଶତ୍ରୁ ଇଂରେଜ ସରକାର ସଂଗେ ମିଶି ଏ ଯୁଦ୍ଧରେ ସାହାଯ୍ୟ କରିବା ମୋ ପକ୍ଷରେ ଗ୍ରହଣୀୟ ନଥିଲା। ଏଥିପାଇଁ ମୁଁ କମ୍ୟୁନିଷ୍ଟ ପାର୍ଟିରେ ଏବଂ କଂଗ୍ରେସରେ ବଡ଼ ଅସ୍ୱସ୍ତିକର ଅବସ୍ଥାରେ ପଡ଼ିଥିଲି। କଂଗ୍ରେସ ଦଳ ମୋତେ ନିଜର ବୋଲି ଗ୍ରହଣ କରି ପାରୁନଥିଲା। ମୁଁ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ନଥିଲେ ମଧ୍ୟ ସେମାନଂକ ସହିତ ମିଳିମିଶି ସବୁ କ୍ଷେତ୍ରରେ କାର୍ଯ୍ୟ କରୁଥିଲି। ମୁଁ ଶୁଣିଲି ଯେ, କମ୍ୟୁନିଷ୍ଟ ଷଡ଼ଯଂତ୍ର ମାମଲାରେ ଜେଲ୍‌ରେ ଥିବା ବଂଧୁମାନେ ଯଥା– ଭଗବତୀ ଚରଣ ପାଣିଗ୍ରାହୀ, ଅନଂତ ପଟ୍ଟନାୟକ, ବୈଦ୍ୟନାଥ ରଥ ପ୍ରଭୃତି କମ୍ୟୁନିଷ୍ଟ ପାର୍ଟିର ନେତୃବୃନ୍ଦ 'ଜନଯୁଦ୍ଧ' ନୀତିକୁ ଗ୍ରହଣକରିନେଇଛଂତି। ବାହାରେ ଥିବା ସମସ୍ତ କମ୍ୟୁନିଷ୍ଟମାନଂକୁ ସେମାନେ ଏ ଯୁଦ୍ଧକୁ 'ଜନଯୁଦ୍ଧ' ବୋଲି ଗ୍ରହଣକରିନେବାକୁ ଗୁପ୍ତ ନିର୍ଦ୍ଦେଶ ପଠାଇଥାଂତି ବୋଲି ଶୁଣିଲି। ଏପରି ଅବସ୍ଥାରେ ମୋତେ ଓଡ଼ିଶା ଫେରିବାକୁ ମନ ହେଉନଥାଏ। ଏଣୁ ମୁଁ କଲିକତାରେହିଁ ରହିବି ବୋଲି ସ୍ଥିର କଲି; କଲିକତାକୁ ମୋର କର୍ମସ୍ଥଳୀ ହିସାବରେ ଗ୍ରହଣକରିନେଲି।

ସ୍ୱାଧୀନତା ସଂଗ୍ରାମ ଉପଲକ୍ଷ୍ୟରେ ଆମେମାନେ ସମଗ୍ର ଲାଇନ୍‌ରେ କିଛି ସମୟ ପାଇଁ ମିଲ୍ ଉପରେ ଜାତୀୟପତାକା ଉଡ଼ାଇଥିଲୁ। ସେ ପତାକାମାନ ବହୁ ଘଂଟା ରହିବାପରେ ଶେଷରେ ପୋଲିସ୍ ଫୌଜ୍ ଆସି ସେଗୁଡ଼ିକ କାଢ଼ିନେଲେ। ଆମ ଭିତରୁ କେତେକ ବ୍ୟକ୍ତିଂକୁ ଗିରଫ୍ କରି ଥାନାକୁ ନେଇ କେତେ ଘଂଟା ପରେ ଛାଡ଼ିଦେଲା।

**ବଂଗ-ଦେଶରେ ଗଣ ବିପ୍ଳବ –**

ଇଆଡ଼େ ସମଗ୍ର ବଂଗଦେଶ ବିସ୍ଫୋରଣରେ ହୁତୁହୁତୁ ହୋଇ ଜଳୁଥାଏ। 'ଅଗଷ୍ଟ-ବିପ୍ଳବ' ଚାରିଆଡ଼କୁ ବ୍ୟାପିଯାଇଥାଏ। ଛାତ୍ର ଓ ଯୁବକମାନେ ଏ ବିପ୍ଳବରେ ଅଗ୍ରଣୀ ହୋଇଥାଂତି। ଅଗ୍ନିଯୁଗର ବୈପ୍ଳବିକ ପରମ୍ପରା 'ଅଗଷ୍ଟ-ବିପ୍ଳବ'ରେ ପ୍ରେରଣା ଦେଉଥାଏ। ଅଗଷ୍ଟ ୧୦ ତାରିଖରେ ବେଂଗଲ ପି.ସି.ସି.କୁ ସରକାର ବେଆଇନ୍ ଘୋଷଣାକଲେ। ୧୧ ତାରିଖରେ କଲିକତା ୱେଲିଂଟନ୍ ସ୍କୋୟାର୍‌ରେ ହୋଇଥିବା ଏକ ବିରାଟ ଜନସଭାକୁ ଛତ୍ରଭଂଗ କରିବାପାଇଁ ପୋଲିସ୍ ପ୍ରଥମେ ଲାଠି ଓ ପରେ ଗୁଳିଚାଳନା କରିଥିଲେ। ସହିଦ ହୋଇଥିଲେ ବିପ୍ଳବୀ ବୈଦ୍ୟନାଥ ସେନ୍। ପରଦିନ ଭବାନୀପୁରଠାରେ ଗୁଳିଚାଳିଥିଲା। ଏଥିରେ ୬ ଜଣ ନିହତ ଓ ୩୩ ଜଣ ଆହତ ହୋଇଥିଲେ। ଧର୍ମତାଲାରୁ ଭବାନୀପୁର ପର୍ଯ୍ୟଂତ ମାଟି ସହିଦ ରକ୍ତରେ ଲାଲ ହୋଇଥିଲା। ଉତ୍ତ୍ୟକ୍ତ ଜନତା ବହୁ ସ୍ଥାନରେ ସରକାରୀ ଅଫିସ୍‌ମାନ ଧ୍ୱଂସକରିଦେଲେ। ଏସବୁ ସଂବାଦ ନ ଛାପିବାପାଇଁ ଖବରକାଗଜମାନଂକ ଉପରେ ନିଷେଧ ଆଦେଶ ଜାରି କଲେ। ଏହାର ପ୍ରତିବାଦରେ ବହୁ ସଂବାଦପତ୍ର ସେମାନଂକର ପ୍ରକାଶନ ବଂଦକରିଦେଲେ।

ଉପକୂଳ ଅଂଚଳରେ ବିପ୍ଳବ ଭୟଂକର ହୋଇଥିଲା । ଜାପାନୀମାନେ ଯେକୌଣସି ମୁହୂର୍ତ୍ତରେ ଓହ୍ଲାଇ ପଡ଼ିବେ ବୋଲି ସରକାର ପ୍ରଚାର ଚଳାଇ ଅମାନୁଷିକ ଅତ୍ୟାଚାର ଚଳାଇଲେ । ସମସ୍ତ ସାଇକେଲ୍, ରିକ୍ସା, ଲଂଚ୍, ନୌକା ଓ ଗାଡ଼ି ମଟର ଆଦି ଜବଦ କଲେ । ଲୋକମାନେ ଭୀଷଣ ଅସୁବିଧାରେ ପଡ଼ିଲେ ଓ ସେମାନେ ଅଧିକ ଉତ୍ତ୍ୟକ୍ତ ହେଲେ । ବିପ୍ଳବୀ ମେଦିନାପୁର ଜିଲ୍ଲା କ୍ରୋଧରେ ଫାଟିପଡ଼ିଲା । ସରକାର ଏହି ଜିଲ୍ଲାର ତମ୍‌ଲୁକ୍, ପାଁଶୁଗୁଡ଼ା, ନଂଦୀଗ୍ରାମ, ସୂତାହାଟ, ମହିଷାଦଳ ପ୍ରଭୃତି ଅଂଚଳରେ ଇଭାକ୍ୱେସନ୍ ଅର୍ଡର ଦେବାପରେ ଲୋକମାନଂକର ଉତ୍ତେଜନା ଚରମ ସୀମାରେ ପହଂଚିଲା । ସତୀଶ ସାମଂତ, ଅଜୟ ମୁଖାର୍ଜୀ, ଖୁସୀଲ୍ ଧାଂଡା ପ୍ରଭୃତି ବିପ୍ଳବୀଂକ ନେତୃତ୍ୱରେ ଲୋକେ ସଂଗଠିତହେଲେ । ଦାନିପୁର ଚାଉଳ କଳର ମାଲିକ ଇଂରେଜ ସୈନ୍ୟବାହିନୀ ପାଇଁ ପ୍ରଚୁର ଚାଉଳ ଯୋଗାଉଥିଲା । ବଂଗଳା ସେତେବେଳେ ଘୋର ଦୁର୍ଭିକ୍ଷର ସମ୍ମୁଖୀନ । ଲୋକମାନେ ଲୋକ-ଅଦାଲତ ଗଢ଼ି ଧାନକଳ ମାଲିକଂକ ବିଚାର କରି ତାଂକୁ ଦଂଡିତକଲେ । ଇଂରେଜମାନଂକୁ ଚାଉଳ ନ ଯୋଗାଇବାକୁ କଠୋର ନିର୍ଦ୍ଦେଶ ଦେଲେ । ଧାନକଳ ମାଲିକ ଏହା ମାନିନେବା ଛଡ଼ା ଅନ୍ୟ ଉପାୟ ନଥିଲା । ତାମ୍‌ଲୁକ୍ ତାଲୁକ୍‌ରେ ଇଂରେଜ ସରକାର ଲୋପ ହେଲା ବୋଲି ଘୋଷଣାକରି ଜନ-ଅଦାଲତ ଗଢ଼ି ସେଠାରେ ଜନସାଧାରଣ ସମାଂତରାଳ ସରକାର ଗଠନକଲେ । ମହିଷାଦଳ, ତାଲୁକ ଓ ପାଶଗୁଡ଼ାକୁ ନେଇ ସ୍ୱାଧୀନ ସରକାର ଗଠିତହେଲା । ତିନି ଥାନାକୁ ଦେଶର ଅନ୍ୟ ଅଂଚଳରୁ ବିଚ୍ଛିନ୍ନ କରିଦିଆଗଲା । ଏ ଜାତୀୟ ସରକାରର ମୁଖ୍ୟ ହେଲେ ଅଜୟ ମୁଖାର୍ଜୀ । ଏଥିରେ ସ୍ୱରାଷ୍ଟ୍ର, ଶିକ୍ଷା, ଜେଲ୍‌ଖାନା, ଡାକ, ସଂବାଦ ଓ ଦେଶରକ୍ଷା ପ୍ରଭୃତି ବିଭିନ୍ନ ବିଭାଗ ରହିଲା ।

ଏହାପରେ ସେପ୍‌ଟେଂବର ୨୯ ତାରିଖରେ ଦଳକୁ ଦଳ ବିପ୍ଳବୀବାହିନୀ ଆସି ମେଦିନାପୁର ଥାନା ଉପରେ ଚଢ଼ାଉକଲେ । ପୋଲିସ୍‌ବାହିନୀ ସହିତ ସେମାନଂକର ସଶସ୍ତ୍ର ସଂଗ୍ରାମ ଚାଲିଲା । ଇଂରେଜ ସରକାର ଉତ୍‌କ୍ଷିପ୍ତ ଜନତାକୁ ଘଉଡ଼ାଇବାପାଇଁ ଆକାଶମାର୍ଗରୁ ଉଡ଼ାଜାହାଜରୁ ବୋମାବର୍ଷଣ କରିଥିଲେ । ଗୋଟିଏ ଦଳର ନେତ୍ରୀ ଥିଲେ ୭୩ ବର୍ଷ ବୟସ୍କା ମାତଂଗିନୀ ହାଜରା ।

**ବିରାଂଗନା ମାତଂଗିନୀ –**

ମାତଂଗିନୀ ହାଜରା ବିପ୍ଳବ ଇତିହାସରେ ଏକ ସ୍ମରଣୀୟ ନାମ । ସେ ଦଳର ଅଗ୍ରଭାଗରେ ଗୋଟିଏ ହାତରେ ଶଂଖ, ଅନ୍ୟ ହାତରେ ଜାତୀୟ ପତାକା ଧରି ଥାନା ଉପରେ ଆକ୍ରମଣ କରିଥିଲେ । ତାଂକ ହାତରେ ପୋଲିସ୍ ଗୁଳି ବାଜିଲା; ତଥାପି ସେ ହଟିଲେ ନାହିଁ । ଶେଷରେ ଦ୍ୱିତୀୟ ଗୁଳିରେ ଟଳିପଡ଼ିଲେ । ମାତଂଗିନୀ ଏ ଦେଶର ବିପ୍ଳବିନୀ ନାରୀଶକ୍ତିର ଏକ ଉଜ୍ଜ୍ୱଳ ତାରକା ।

ଏହାପରେ ପ୍ରାୟ ୩୦ ହଜାର ଜନତା ଦକ୍ଷିଣ-ପଶ୍ଚିମ ଦିଗରୁ ମାଡ଼ିଆସି

ମହିଷାଦଳ ଥାନା ଉପରେ ଝାଂପ ଦେଇ ଥାନା ଅଧିକାରକଲେ। ୬ଟି ରାଇଫଲ୍ ଓ କେତେକ ତରବାରି ମଧ୍ୟ ଜବତ କଲେ ଏବଂ ଥାନା ପୋଡ଼ିଦେଲେ। ଏହାଛଡ଼ା ନନ୍ଦୀପୁର, କାଂଥୀ, ଖେଜୁରିପଦା ଓ ଭବାନୀପୁର ଥାନା ଦଖଲ କଲେ! ଏହିଭଳି ଭାବେ ମେଦିନାପୁର ଜିଲ୍ଲାର ଅଧିକାଂଶ ଅଂଚଳରେ ଦୀର୍ଘଦିନ ଧରି ଇଂରେଜ ଶାସନ ଲୋପପାଇଥିଲା। ସେଠାରେ ଗାଂଧିଜୀଙ୍କ ନିର୍ଦ୍ଦେଶ ମାନି ଅଜୟ ମୁଖାର୍ଜୀ ଇସ୍ତଫା ଦେବା ପର୍ଯ୍ୟଂତ ଜାତୀୟ ସରକାର ବିଧିବଦ୍ଧ ଭାବରେ ଚାଲିଥିଲା। ଅଜୟ ମୁଖାର୍ଜୀ ପରବର୍ତ୍ତୀ କାଳରେ ପଶ୍ଚିମ ବଂଗର ମୁଖ୍ୟମଂତ୍ରୀ ହୋଇଥିଲେ।

**ପ୍ରଫୁଲ୍ଲ ଦାସଂକ ପ୍ରଣୀତ 'ଭାରତର ସଶସ୍ତ୍ର ମୁକ୍ତି ସଂଗ୍ରାମ' :**
**ଅନ୍ୟାନ୍ୟ ପ୍ରଦେଶରେ 'ଅଗଷ୍ଟ-ବିପ୍ଳବ' –**

ଅନ୍ୟାନ୍ୟ ପ୍ରଦେଶମାନଂକରେ ମଧ୍ୟ 'ଅଗଷ୍ଟ-ବିପ୍ଳବ' କ୍ଷିପ୍ରଗତିରେ ବ୍ୟାପିଥିଲା। ବଂବେର ପଟଲାଧୀଶମଲ୍‌ର ୨ୟ ମହଲା ୩୦ ନମ୍ବର କୋଠରିରେ କଂଗ୍ରେସର ଗୁପ୍ତ ଅଫିସ୍ ଖୋଲାଯାଇଥିଲା। ଏମ୍.ଏ. କ୍ଲାସ ଛାତ୍ରୀ ଉଷା ମେହେଟାଂକ ତତ୍ତ୍ୱାବଧାନରେ ଏକ ଗୋପନ ବେତାର କେନ୍ଦ୍ର ଖୋଲାଯାଇଥିଲା। ସେଥିରୁ ଦେଶର ଚାରିଆଡ଼େ ବିପ୍ଳବବାର୍ତ୍ତା ପ୍ରଚାର କରାଯାଉଥିଲା। ପ୍ରଥମ ଦିନହିଁ ପୋଲିସ୍ ଗୁଳିରେ ୫ ଜଣ ସଂଗ୍ରାମୀ ସହିଦ ହୋଇଥିଲେ ଏବଂ ୨୦ ଜଣ ଆହତ ହୋଇଥିଲେ। ଅହମଦାବାଦ ଓ ପୁନାଠାରେ ପୋଲିସ୍ ଗୁଳିରେ ୨ ଜଣ ପ୍ରାଣ ହରାଇଥିଲେ। ଅଗଷ୍ଟ ୧୧ ତାରିଖରେ ପୋଲିସ୍ ଗୁଳିରେ [illegible] ଜଣ ସହିଦ ହୋଇଥିଲେ। ୧୨ ତାରିଖରେ ଜଣେ ଶିଶୁ ଓ ଗୋଟିଏ ନାରୀ ପୋଲିସ୍ ଗୁଳିର ଶିକାର ହୋଇଥିଲେ। ବଂବେ ସହରରେ ଅଧିକାଂଶ ଥାନା, ପୋଷ୍ଟ ଅଫିସ୍ ଗୃହ ପୋଡ଼ି ଛାରଖାର କରିଦିଆଯାଇଥିଲା। ସଂଧାତୀ ଜେଲ୍‌କୁ ବିଦ୍ରୋହୀମାନେ ଦଖଲ କରି ଅଧିକାଂଶ ବଂଦୀଂକୁ ମୁକ୍ତକରିଦେଇଥିଲେ। ବଂବେ ବଂଦରରେ ନୌବାହିନୀ ବିଦ୍ରୋହ କରିଥିଲେ। ଏହା ଇଂରେଜ ସରକାର ପ୍ରତି ଏକ ବଡ଼ ଧକ୍କା ଥିଲା।

ଗୁଜୁରାଟରେ ମଧ୍ୟ ବହୁଲୋକ ପୋଲିସ୍ ଗୁଳିରେ ସହିଦ ହୋଇଥିଲେ। ଅଗଷ୍ଟ ୧୮ ତାରିଖରେ ଇଂରେଜ ପୋଲିସ୍ ୫ ଜଣ ଛାତ୍ରନେତାଂକୁ ଟ୍ରେନ୍‌ରୁ ଟାଣିଆଣି ପ୍ଲାଟ୍‌ଫର୍ମରେ ବସାଇ ଗୁଳିକରି ମାରିଥିଲେ। ଏହା ଇଂରେଜ ବର୍ବରତାର ଏକ ନମୁନା।

**ବିହାର –**

'ଅଗଷ୍ଟ-ବିପ୍ଳବ'ର ପ୍ରଧାନ ସେନାପତି ଜୟପ୍ରକାଶ ଥିଲେ ବିହାରର ଅଧିବାସୀ। ଜୟପ୍ରକାଶଂକୁ ପୋଲିସ୍ ଜେଲ୍‌ରେ ରଖିଥିଲେ। ସେ ଜେଲ୍‌ରୁ ପଳାଇଆସି ଦୀର୍ଘ ଅଢ଼େଇ ବର୍ଷକାଳ ଆତ୍ମଗୋପନ କରି ବିପ୍ଳବ କାର୍ଯ୍ୟ ଚଳାଇଥିଲେ। ତାଂକ ସ୍ତ୍ରୀ ପ୍ରଭାବତୀ ଦେବୀ ମଧ୍ୟ ବିପ୍ଳବରେ ବିଶେଷ ଭାଗ ନେଇଥିଲେ। ଏହାପରେ

ଭାରତ-ନେପାଳ ସୀମାର ଘନଜଙ୍ଗଲ ମଧ୍ୟରେ ସେ ଏକ ବୋମା ତିଆରି କାରଖାନା ଖୋଲିଥିଲେ । ଅଗଷ୍ଟ ୧୧ ତାରିଖରେ ହଜାର ହଜାର ଲୋକ ପାଟଣା ହାଇକୋର୍ଟ୍ ଦଖଲ କରିବାକୁ ଉଦ୍ୟମ କରିଥିଲେ । ଏଥିରେ ୭ ଜଣ ଲୋକ ପୋଲିସ୍ ଗୁଳିରେ ଟଳିପଡ଼ିଲେ । ଏହାଛଡ଼ା ବୀରପଂଥୀରେ ୫ ଜଣ, ବିଜିପୁରରେ ୮ ଜଣ, ସାହାବାଦରେ ୮ ଜଣ, ଲେହେଉଆ ସାହିର ୯ ଜଣ, ଚଂପାରଣରେ ୨ ଜଣ ବିପ୍ଳବୀ ସହିଦ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ବିହାରର ଭାଗଲପୁର ଜେଲ୍‌ରେ ବନ୍ଦୀ ଓ ପୋଲିସ୍ ମଧ୍ୟରେ ବାରଂବାର ସଂଘର୍ଷ ହେଉଥିଲା । ଏଥିରେ ୩ ଜଣଂକୁ ଫାଶୀ ଓ ୭ ଜଣଂକୁ ଦ୍ୱୀପାଂତର ହୋଇଥିଲା ।

**ଦକ୍ଷିଣ-ଭାରତରେ ବିପ୍ଳବ –**

ଦକ୍ଷିଣ-ଭାରତରେ ବିପ୍ଳବର ଦାବାଗ୍ନି ଖେଳିଯାଇଥିଲା । କେରଳରେ ବା ତତ୍‌କାଳୀନ ତ୍ରିଭାଂକୁଡ଼ ରାଜ୍ୟର ସହରମାନଂକରେ ଧର୍ମଘଟ, ହରତାଳ ଓ ସରକାରୀ ଗୃହର ଧ୍ୱଂସସାଧନ ଅବାଧ ଗତିରେ ଚାଲିଥିଲା । ବିପ୍ଳବୀମାନେ ଏର୍ଣାକୁଲମ୍‌ରେ ଥିବା ଲାଟ୍ ଭବନ ଧ୍ୱଂସ କରିଦେଇଥିଲେ । ଜେଲ୍ ଭିତରେ ଥିବାବେଳେ ଗୁଜୁରାଟୀ ଛାତ୍ର ନବୀନ ଚନ୍ଦ୍ର ସ୍ତ୍ରଫ୍ ସହିଦ ହୋଇଥିଲେ ।

ଅଗଷ୍ଟ ୧୪ରେ ମାଂଦ୍ରାଜ୍‌ର ଉତ୍ତ୍ୟକ୍ତ ଜନତାକୁ ଛତ୍ରଭଂଗ କରିବାକୁ ପୋଲିସ୍ ଯେଉଁ ଗୁଳିଚାଳନା କରିଥିଲା, ସେଥିରେ ୪ ଜଣ ବିପ୍ଳବୀ ସହିଦ ହୋଇଥିଲେ । ବହୁ ଥାନା ଓ ସରକାରୀ ଅଫିସ୍ ବିଦ୍ରୋହୀମାନେ ପୋଡ଼ିଦେଇଥିଲେ । ବାଂଗାଲୋର୍‌ରେ ୭ ଜଣ, ରାମନାଦରେ ୬ ଜଣ, ଆଂଧ୍ରର ଗୋଦାବରୀରେ ୫ ଜଣ ଓ ମଦୁରାଇରେ ୩ ଜଣ ବିପ୍ଳବୀ ସହିଦ ହୋଇଥିଲେ ।

ଉତ୍ତରପ୍ରଦେଶର ବାଲିଆଠାରେ ଏକ ଜାତୀୟ ସରକାର ଗଠନ କରାଯାଇଥିଲା । ଏହା 'ଅଗଷ୍ଟ-ବିପ୍ଳବ'ର ଏକ ଉଲ୍ଲେଖନୀୟ ଅବଦାନ । ଅଗଷ୍ଟ ୧୯ ତାରିଖରେ ବିଦ୍ରୋହୀମାନେ ବାଲିଆ ମାଜିଷ୍ଟ୍ରେଟଂକୁ ବନ୍ଦୀକରିଥିଲେ । ତା ପୂର୍ବରୁ ଜିଲ୍ଲା ମାଜିଷ୍ଟ୍ରେଟ୍ ବିପ୍ଳବୀମାନଂକ ନିକଟରେ ଆତ୍ମସମର୍ପଣ କରିଥିଲେ । ଲୋକେ ସାରା ଜିଲ୍ଲାର ଖଜଣା ବନ୍ଦ କରିଦେଇଥିଲେ ଏବଂ ଜଂଗଲ ଆଇନ ଅମାନ୍ୟ କରିଥିଲେ ।

ମଧ୍ୟପ୍ରଦେଶର ଅଷ୍ଟି ଓ ଚିମୁରାଠାରେ ପୋଲିସ୍ ୧୩୦ ଜଣ ବିଦ୍ରୋହୀଂକୁ ଏକ ଛୋଟ ଘରେ ବନ୍ଦୀ କରି ରଖିଥିଲେ । ତା ପରଦିନ [illegible]ଳ ଦେଖାଗଲା ସେଥିରୁ ଅଧିକାଂଶ ଲୋକ ମୃତ୍ୟୁମୁଖରେ ପଡ଼ିଥିଲେ । ଏହା କ୍ଲାଇବଂକର ଅଂଧକୂପହତ୍ୟାର ପୁନରାବୃତ୍ତି ହିସାବରେ ଇତିହାସରେ ଏକ କଳଂକମୟ ଘଟଣା । ଏହାଛଡ଼ା ବହୁ ମହିଳାଂକ ଉପରେ ମଧ୍ୟ ପାଶବିକ ଅତ୍ୟାଚାର ହୋଇଥିଲା । ଉତ୍ତ୍ୟକ୍ତ ଜନତା ରାମଟେକ୍ ରେଲଷ୍ଟେସନ୍ ଧ୍ୱଂସକରିଦେଇଥିଲେ ଏବଂ ଜଣେ ପୋଲିସ୍ ଏ.ଏସ୍. ଆଇଂକୁ ଗିରଫ କରିଥିଲେ । ପୋଲିସ୍‌ମାନଂକ ମୁଂଡରେ

ଗାଂଧି ଟୋପି ପିଂଧାଇ ହାତରେ ଜାତୀୟ ପତାକା ଧରାଇ ଚଳାଇଥିଲେ ।

ଆସାମ ପ୍ରଦେଶରେ ବିପ୍ଳବର ବହ୍ନିଶିଖା ଜଳିଉଠିଥିଲା । ଅଗଷ୍ଟ ୨୦ରେ ଆସାମର ଏକ ବିରାଟ ଛାତ୍ରସଭା ଉପରେ ପୋଲିସ୍ ଅତର୍କିତ ଆକ୍ରମଣ କରି ବହୁ ଛାତ୍ରଂକୁ ଲାଠିମାଡ଼ରେ ଓ ବଂଧୁକମୁନରେ ଆହତ କରିଥିଲେ । ଏଥିରେ ସମଗ୍ର ରାଜ୍ୟବାସୀ ଉତ୍ତ୍ୟକ୍ତ ହୋଇଥିଲେ । ସେପ୍ଟେଂବର ୧୬ ତାରିଖରେ ବହୁ ଲୋକ ଏକତ୍ରିତ ହୋଇ ଏକ ଶୋଭାଯାତ୍ରା କରିଥିଲେ । ପୋଲିସ୍‌ଗୁଳିରେ ଆହତ ହୋଇଥିଲେ ରତ୍ନମାଳା; ମାତ୍ର ସେ ନିଜ ହାତରୁ ଜାତୀୟ ପତାକା ଛାଡ଼ିନଥିଲେ । ଅଗଷ୍ଟ ୨୦ ତାରିଖରେ ଗୋଇପୁର ଥାନା ଦଖଲବେଳେ ପ୍ରାଣବଳୀ ଦେଲେ କୁମାରୀ କକେଲ ଏବଂ ତା'ପରେ ମୁକୁଳ କାକତି । ଅଗଷ୍ଟ ୨୧ ତାରିଖରେ ତେଜପୁର ମଇଦାନରେ ଏକ ବିରାଟ ଜନସଭା ଉପରେ ପୋଲିସ୍ ଗୁଳିଚାଳନା କରି ଶତାଧିକ ଲୋକଂକୁ ମୃତାହତ କରିଥିଲେ । ଜୋରାହାଟ୍ ଜେଲ୍‌ରେ ରାଜନୈତିକ ବଂଦୀମାନଂକ ଉପରେ ନିର୍ମମ ଲାଠିଚାଳନା କରାଯାଇଥିଲା । ଏଥିରେ ୧୮୧ ଜଣ ଆହତ ହୋଇଥିଲେ ।

ଏହିପରି ସମଗ୍ର ଭାରତବର୍ଷରେ 'ଅଗଷ୍ଟ-ବିପ୍ଳବ' ଏକ ରକ୍ତାକ୍ତ ପଟ୍ଟଭୂମି ରଚନା କରିଥିଲା ।

**ଅଗଷ୍ଟ ବିପ୍ଳବର ପ୍ରଭାବ : ଚାକିରିରୁ ବହିଷ୍କାର ଆଦେଶ –**

'ଅଗଷ୍ଟ-ବିପ୍ଳବ' ବା 'ଭାରତ-ଛାଡ଼' ଆଂଦୋଳନ ଏବଂ ଆଜାଦ୍‌ହିଂଦ ଫୌଜ୍‌ର ଭାରତ ଅଭିଯାନ ମୋର ଲେଖନୀ ଉପରେ ଗଭୀର ପ୍ରଭାବ ପକାଇଥିଲା । ମୁଁ ସେତେବେଳେ କଲିକତାରେ କେଶୋରାମ୍ କଟନ୍ ମିଲ୍‌ରେ ମୁଖ୍ୟ ଶ୍ରମମଙ୍ଗଳ ଅଫିସରରୂପେ କାର୍ଯ୍ୟ କରୁଥିଲି । ସେତେବେଳେ ବହୁ ଦେଶାତ୍ମବୋଧକ କାବ୍ୟ କବିତା ରଚନାକରି ସମଗ୍ର ଦେଶରେ ଆଲୋଡ଼ନ ସୃଷ୍ଟିକରିଥିଲି । ମୋ ଲିଖିତ କବିତାମାନ ଯଥା – 'ଆମେରୀ', 'ଜୟହିଂଦ', 'ବୋମାରୁ', 'ସେଂଟ' ପ୍ରଭୃତି କବିତାମାନ ଓଡ଼ିଆ ପତ୍ରପତ୍ରିକାମାନଙ୍କରେ ପ୍ରକାଶ ପାଇ ଜାଗରଣ ସୃଷ୍ଟି କରିଥିଲା । ଗଡ଼ଜାତ ପ୍ରଜାଆଂଦୋଳନ ସଂବଂଧରେ ମୁଁ କେତେକ ଉତ୍ସାହପୂର୍ଣ୍ଣ କବିତା ସାପ୍ତାହିକ ପତ୍ରିକା 'କୃଷକ'ରେ ପ୍ରକାଶ କରିଥିଲି । ଏହି କବିତାଗୁଡ଼ିକ ମଧ୍ୟରେ 'ଦେଖିନେବୁ ତାକୁ ଛାଡ଼ିଦେ ହାତ', 'ଚିହ୍ନିଥାଅ', 'ସେହି ଠକ ରାଜାକୁ' ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ । ଏହା ଗଡ଼ଜାତ ମିଶ୍ରଣ ପୂର୍ବରୁ ଅର୍ଥାତ୍ ୧୯୪୨-୪୮ ମଧ୍ୟରେ ପ୍ରକାଶ ପାଇଥିଲା । ଏହାଛଡ଼ା ୧୯୪୩ରେ ମୋର କବିତା ସଂକଳନ 'ଉଠ ଜାଗ ଭୋକି ବଂଦୀ' ପୁସ୍ତକ ବ୍ରିଟିଶ ସରକାରଦ୍ୱାରା ବାଜ୍ୟାପ୍ତ ହୋଇଥିଲା । ଏହାଛଡ଼ା ମୋର ବାଜିରାଉତ କବିତାର ଇଂରାଜୀ ଅନୁବାଦ 'The Boatman Boy and other poems' ୧୯୪୨ ମସିହା ସେପ୍ଟେଂବର ମାସରେ କଲିକତାରୁ ପ୍ରକାଶ ପାଇ ଭାରତର ସ୍ୱାଧୀନତା ଆଂଦୋଳନର ପ୍ରଚୁର ପ୍ରେରଣା ଯୋଗାଇଥିଲା ।

ଏହି ପୁସ୍ତକରେ ସନ୍ନିବିଷ୍ଟ କେତୋଟି କବିତା ସାପ୍ତାହିକୀ Bombay Chronicle ଓ ଅନ୍ୟାନ୍ୟ ପତ୍ରିକାମାନଂକରେ ପ୍ରକାଶ ପାଇ ଧନତଂତ୍ର ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ଅଦମ୍ୟ ସ୍ୱର ଉତ୍ତୋଳନ କରିଥିଲା। ସେ କବିତାଗୁଡ଼ିକ ହେଲା 'The Dying Who Never Die' ଏବଂ 'Hunger Burns' ପ୍ରଭୃତି।

ଏହିସବୁ କାରଣରୁ ମିଲ୍ କର୍ତୃପକ୍ଷଂକ ସହିତ ମୋର ମତାଂତର ସୃଷ୍ଟି ହୋଇଥିଲା। ସେମାନେ ମୋତେ ମିଲ୍ ଚାକିରିରୁ ଇସ୍ତଫା ଦେଇଦେବାପାଇଁ କହିଥିଲେ। ମାତ୍ର ମୁଁ ବି.କେ. ବିରଲାଂକୁ ଦେଖାକରି ଏଥିରୁ ଅବ୍ୟାହତି ପାଇଥିଲି। ମୋଟଉପରେ ଜଣେ ଲେଖକ ଓ କବି ହିସାବରେ ମୁଁ 'ଅଗଷ୍ଟ-ବିପ୍ଳବ' ଓ 'ଆଜାଦ୍-ହିଂଦ' ଅଭିଯାନକୁ ମୋ କାବ୍ୟ କବିତାରେ ରୂପାୟିତ କରିବାରେ ପଶ୍ଚାଦ୍‌ପଦ ହୋଇନାହିଁ। ଏହାହିଁ ଥିଲା ଜଣେ କବି ହିସାବରେ ମୋର ପ୍ରମୁଖ ମାର୍ଗ। ମୁଁ ଏଥିରୁ ବିଚ୍ୟୁତ ହୋଇନାହିଁ।

**ନେତାଜୀ ସୁଭାଷ ଓ ଆଜାଦ୍ ହିଂଦ୍ ଫୌଜ –**

ସବୁଠାରୁ ଯାହା ଭାରତରେ ଇଂରେଜ ଶାସନକୁ ବେଶୀ ଦୋହଲାଇ ଦେଇଥିଲା, ତାହା ହେଉଛି ନେତାଜୀ ସୁଭାଷଂକର ଆଜାଦ୍ ହିଂଦ୍ ଫୌଜ। ଏଥି ପୂର୍ବରୁ ୧୯୪୧ ମସିହା ଡିସେଂବର ୭ ତାରିଖରେ ଆମେରିକାର ନୌବଂଦର ପାର୍ଲ୍ ହାର୍ବର ଉପରେ ବୋମା ନିକ୍ଷେପ କରି ଜାପାନ୍ ମହାଯୁଦ୍ଧରେ ଯୋଗଦେଇଥିଲା। ସେହିଦିନ ଜାପାନ ଆନୁଷ୍ଠାନିକ ଭାବରେ ଇଂଲଂଡ଼ ଓ ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲା। ଜାପାନ ଫାସିବାଦୀ ମେଂଟରେ (Axis) ଯୋଗଦେବା ଫଳରେ ମହାଯୁଦ୍ଧର ପରିସର ପୂର୍ବ-ଏସିଆକୁ ପ୍ରସାରିତ ହୁଏ। ଜାପାନ ଯେକୌଣସି ମୁହୂର୍ତରେ ଭାରତ ଆକ୍ରମଣ କରିପାରେ ବୋଲି ସବୁ ମହଲରେ ଆଶଂକା ହୋଇଥିଲା।

ନେତାଜୀ ସୁଭାଷବୋଷ ୧୯୪୧ ମସିହା ଜାନୁୟାରୀ ୨୬ ତାରିଖରେ ଭାରତରୁ ଲୁଚି ସ୍ଥଳପଥରେ ଜର୍ମାନୀ ଚାଲିଗଲେ। ଏହା ସମଗ୍ର ଭାରତରେ ଚହଳ ପକାଇଦେଲା। ସେ ଜର୍ମାନୀରେ ୧୯୪୧ ନଭେଂବର ୨ ତାରିଖରେ 'Free India Centre' & 'Indian League' ନାମକ ଏକ ଅନୁଷ୍ଠାନ ସେଠାରେ ଥିବା ୩୫ ଜଣ ଭାରତପ୍ରେମୀଂକୁ ନେଇ ଗଠନକଲେ। ସେ ଜର୍ମାନୀର ଡିକ୍‌ଟେଟର୍ ହିଟ୍‌ଲରଠାରୁ ପ୍ରତିଶ୍ରୁତି ଆଦାୟ କରିଥିଲେ ଯେ ଯୁଦ୍ଧ ପରେ ଭାରତ ସ୍ୱାଧୀନ ହେବାରେ ନାଜି ଜର୍ମାନୀ ଯେଉଁ ସାହାଯ୍ୟ ଦେବ, ତାହା ନିଃସ୍ୱାର୍ଥ ଓ ନିଃସର୍ତ ହେବ। ମହାଯୁଦ୍ଧ ପରେ ଜର୍ମାନୀ ଭାରତ ଆକ୍ରମଣ କରିବ ନାହିଁ। ଭାରତ ଏକ ସାର୍ବଭୌମ ସ୍ୱାଧୀନ ରାଷ୍ଟ୍ରରୂପେ ରହିବ।

ଅନେକ ଲୋକ ଆଶଂକା କରୁଥିଲେ ଯେ, ସୁଭାଷ ହୁଏତ ନାଜି ଜର୍ମାନୀର ଏଜେଂଟରୂପେ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଆରଂଭ କରିଛଂତି; ସେ ଭାରତକୁ

ନାଜି ଜର୍ମାନୀ ହାତରେ ଟେକିଦେବେ। ମାତ୍ର ଏ ଦିଗରେ ସୁଭାଷଂକର ମର୍ମବାଣୀ ସ୍ପଷ୍ଟ ଶବ୍ଦରେ ଉଚ୍ଚାରିତ ହୋଇଛି। ସେ ଲେଖୁଛଂତି– ''ଦେଶବାସୀଂକ ପକ୍ଷରୁ ଲୋକଚକ୍ଷୁର ଅଂତରାଳରେ ତିଳେ ତିଳେ ଜୀବନ ଦେଇ ତପସ୍ୟା କରିଯିବି, ତା'ପରେ ମୃଂତ ଉପରେ ଯଦି ଭଗବାନ୍ ଥାଂତି, ପୃଥିବୀରେ ଯଦି ସତ୍ୟ ପ୍ରତିଷ୍ଠା ହୁଏ, ତେବେ ମୋର ଅଂତରର କଥା ନିଶ୍ଚୟ ଦିନେ ଲୋକେ ବୁଝିବେ।''

ଏହାପରେ ଜର୍ମାନୀରେ ସୁଭାଷ ଆଜାଦ୍ ହିନ୍ଦ୍ ଫୌଜ୍ ଗଠନ କରଂତି। ୧୯୪୧ ମସିହା ସେପ୍ଟେଂବର ମାସରେ ଆଜାଦ୍ ହିଂନ୍ଦ୍ ବାହିନୀର ପ୍ରଥମ ସମରକୌଶଳ ପ୍ରଦର୍ଶିତ ହୋଇଥିଲା। ନେତାଜୀଂକ ସହ ଜର୍ମାନୀରେ ଥିବା ଜାପାନୀ ମିଲିଟାରୀ ଆଟାଚ୍ଚି କର୍ଣ୍ଣେଲ ମାୟାମାଟୋ ଏହି ପ୍ରଦର୍ଶନୀ ନିରୀକ୍ଷଣ କରିଥିଲେ। ଫ୍ରି ଇଂଡିଆ ସେଂଟରର ପ୍ରଧାନ କାର୍ଯଥିଲା ପ୍ରଚ୍ଚାର ପାଇଁ ବେତାର କେଂନ୍ଦ୍ର ସ୍ଥାପନ। ବଂବେ କଂଗ୍ରେସ କମିଟିର ସଭ୍ୟ ଜି. ଏନ୍. ଗୁଣପୁଲେ, ଯେ କି ସେତେବେଳେ ଜର୍ମାନୀରେ ଥିଲେ, ସେ ସୁଭାଷଂକ ସହିତ ଯୋଗଦେଇଥିଲେ। ନିଷିଦ୍ଧ ବେତାର କେଂନ୍ଦ୍ରରୁ ନେତାଜୀ ନିୟମିତ ଭାଷଣମାନ ଦେଉଥିଲେ। ସେ ଯେତେବେଳେ କହଂତି– ''ଆମି ସୁବାସ ବୋଲ୍‌ଛି'' ସେତେବେଳେ ପୃଥିବୀର ଲକ୍ଷ ଲକ୍ଷ ଭାରତୀୟ ରୋମାଂଚ୍ଚିତ ହୋଇଉଠୁଥିଲେ। ବର୍ଲିନ୍‌ରେ ୩ ଗୋଟି ବେତାର କେଂନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା। ଆଜାଦ୍ ହିଂନ୍ଦ୍ ରେଡ଼ିଓ, ସଟ୍‌ୱେଭ ୧୯.୭୧ ଇଂଡିଆନ୍ ନ୍ୟାସନାଲ୍ କଂଗ୍ରେସ ରେଡ଼ିଓ ସଟ୍‌ୱେଭ୍ ୨୦.୩୪ ଓ ଆଜାଦ୍ ମୁସ୍‌ଲିମ୍ ରେଡ଼ିଓ, ସଟ୍‌ୱେଭ୍ ୨୨.୬୫ ମିଟର। ବିଦେଶରେ ଥିବା ଲକ୍ଷ ଲକ୍ଷ ପ୍ରବାସୀ ଭାରତୀୟ ବହୁସଂଖ୍ୟାରେ ଆଜାଦ୍ ହିଂନ୍ଦ୍ ଫୌଜ୍‌ରେ ଯୋଗଦେଇଥିଲେ। ତାଂକ ଭିତରେ ବହୁତ ମୁସଲ୍‌ମାନ ଥିଲେ। ସାତଟି ଭାଷାରେ ଏହି ବେତାର କେଂନ୍ଦ୍ରମାନଂକର ସଂବାଦ ଓ ବାର୍ତା ପ୍ରଚ୍ଚାରିତ ହେଉଥିଲା। ସେଗୁଡ଼ିକ ହେଲା ଇଂରାଜୀ, ହିଂଦୀ, ବଂଗଳା, ତାମିଲ୍, ତେଲ୍‌ଗୁ ଓ ଫାର୍ସୀ। ସେହି ବେତାରରେ ଭାରତର ଜାତୀୟ ସଂଗୀତ ରୂପେ 'ଜନଗଣ ମନ-ଅଧିନାୟକ...' ଗୃହୀତ ହୋଇଥିଲା। ପରେ ସ୍ୱାଧୀନ ଭାରତର ଏହା ଜାତୀୟ ସଂଗୀତ ହେଲା।

ଏସିଆ ମହାଦେଶରେ ବର୍ମାଠାରୁ ଜାପାନ ପର୍ଯଂତ ସବୁଠାରେ ପ୍ରବାସୀ ଭାରତୀୟ ଜାଗିଉଠିଲେ। ଜାପାନରେ ଥିବା ପ୍ରବାସୀ ଭାରତୀୟ ବିପ୍ଳବୀ ରାସବିହାରୀ ବସୁ ସୁଭାଷଂକୁ ସମର୍ଥନ କରିଥିଲେ। ପ୍ରଥମ ଦିନ ଯୁଦ୍ଧବେଳେ ବିପ୍ଳବରେ ଯୋଗଦେଇଥିବା ଏବଂ ମାଂଡାଲେ ଜେଲ୍‌ରେ ବଂଦୀଥିବା ବାବା ଅମର ସିଂ ଜେଲ୍‌ରୁ ଖଲାସ ହେବା ପରେ ଥାଇଲାଂଡ ଯାଇ ଏକ ସଶସ୍ତ୍ର ବିପ୍ଳବୀ ଦଳ ଗଢ଼ିଥିଲେ। ଏମାନଂକ ଲକ୍ଷ୍ୟ ଥିଲା ଭାରତର ପୂର୍ଣ ସ୍ୱାଧୀନତା ପାଇଁ ସଶସ୍ତ୍ର ସଂଗ୍ରାମ କରିବା।

ଏହାପରେ ରାସବିହାରୀ, ବାବା ଅମରସିଂ ଓ ତାଂକ ପ୍ରଧାନ ସହକାରୀ ମୋହନ ସିଂକ ଉଦ୍ୟମରେ ଭାରତୀୟ ଜାତୀୟ ବାହିନୀ (ଆଇ.ଏନ୍.ଏ.) ଗଠିତ ହେଲା। ସେଥିରେ ପ୍ରଥମ ଜି.ଓ.ସି. ହେଲେ ମୋହନ ସିଂ। କ୍ରମେ ବ୍ରିଟିଶ୍‌ଦ୍ୱାରା ବଂଦୀହୋଇଥିବା ପ୍ରାୟ ୩୦ ହଜାର ସୈନ୍ୟ ଆଇ.ଏନ୍.ଏ.ରେ ଯୋଗଦେଲେ। ଏହି ଆଇ.ଏନ୍.ଏ.ର କ୍ରିୟାନୁଷ୍ଠାନ କମିଟି ନେତାଜୀ ସୁଭାଷଂକୁ ଏହାର ନେତୃତ୍ୱ ନେବାକୁ ଅନୁରୋଧ କରିଥିଲେ ଏବଂ ତାଂକୁ ଜର୍ମାନୀରୁ ଆଣିବାପାଇଁ ବ୍ୟବସ୍ଥା କରାଯାଇଥିଲା। ଏହି ପ୍ରସ୍ତାବ ସହ ଖଂଡିଏ ବ୍ୟକ୍ତିଗତ ଚିଠି ଲେଖି ରାସବିହାରୀ ସୁଭାଷଂକୁ ସବୁକଥା ଜଣାଇଥିଲେ। ଏହି ବିପ୍ଳବୀ ସୈନ୍ୟବାହିନୀ ଗଠନରେ ରାସବିହାରୀଂକ ନେତୃ-ଭୂମିକା ସର୍ବଦା ସ୍ମରଣୀୟ ରହିବ।

ଏହାପରେ ନେତାଜୀ ସୁଭାଷ ଜାପାନ ଆସି ଆଇ.ଏନ୍.ଏ.ର ନେତୃତ୍ୱ ଗ୍ରହଣ କରିଥିଲେ। ଏହାର ଅଭିଯାନ ଆରଂଭ ହେବା ପୂର୍ବରୁ ଜାପାନର ପ୍ରଧାନମଂତ୍ରୀ ଟୋଜୋ ଏକ ଐତିହାସିକ ଭାଷଣ ଦେଇଥିଲେ। ସେଥିରେ ସେ କହିଥିଲେ– "ଏ ଯୁଦ୍ଧରେ ଭାରତ ଇଂରେଜର କ୍ରୁର ଅତ୍ୟାଚାର ଓ ଶୋଷଣରୁ ନିଜକୁ ମୁକ୍ତକରିପାରିବ। ଜାପାନ ଆଶାକରେ ଯେ, ଭାରତ ଇଂରେଜମାନଂକର ଗୋଲାମିରୁ ମୁକ୍ତହୋଇ ତାର ହଜାର ହଜାର ବର୍ଷର ସଂସ୍କୃତି ଓ ଇତିହାସକୁ ପୁନରୁଦ୍ଧାର କରିବାରେ ସଫଳ ହେବ। ଭାରତ ଯଦି ଏ ଯୁଦ୍ଧରେ ସଫଳ ହୁଏ, ତେବେ ଭାରତ ଭାରତୀୟମାନଂକର ହୋଇ ରହିବ।" ଜାପାନ ମଧ୍ୟ ଏ ଯୁଦ୍ଧରେ ଭାରତକୁ ସମସ୍ତ ପ୍ରକାର ସାହାଯ୍ୟ କରିବ ବୋଲି ଟୋଜୋ ବ୍ୟାଂକକ୍ ସମ୍ମିଳନୀକୁ ଏକ ବାର୍ତାରେ କହିଥିଲେ? ଟୋଜୋଂକର ପ୍ରତିଶ୍ରୁତି ବାଣୀ ବହୁ ଲୋକ ବିଶ୍ୱାସ କରୁନଥିଲେ। ତାର କାରଣ ଜାପାନ ସେତେବେଳେ ଚୀନର ମାଂଚୁରିଆ ପ୍ରଭୃତି ଅଂଚଳ ଦଖଲକରିବସିଥାଏ। ଭାରତରେ ଓ ଭାରତ ବାହାରେ ନେତାଜୀଂକ ଉପରେ ବହୁଲୋକ ଆସ୍ଥା ସ୍ଥାପନ କରିପାରୁନଥିଲେ; ଯଦିଚ ତାଂକର ତୁଂଗ ଦେଶଭକ୍ତି ସଂବଂଧରେ ସମସ୍ତେ ନିଃସଂଦେହ ଥିଲେ।

ଭାରତୀୟ ଜାତୀୟ ବାହିନୀ ସିଂଗାପୁର, ମାଲ୍‌ଦୀପ୍, ବର୍ମା, ମଣିପୁର ପ୍ରଭୃତି ଭାରତୀୟ ଅଂଚଳ ଦଖଲକରିଥିଲେ। ସେମାନେ ଭାରତୀୟ ସୀମା ପର୍ଯଂତ ବିପୁଳ ଇଲାକା ଅଧିକାର କରିନେଇଥିଲେ।

ଆଜାଦ୍ ହିଂଦ ଫୌଜର ଯୁଗାଂତକାରୀ ଅଭିଯାନ ଓ ମୁକ୍ତି ଯୁଦ୍ଧ ପରେ ଦିଲ୍ଲୀ ଲାଲ କିଲ୍ଲାରେ ମହାନାୟକ– ମେଜର ସାହାନ୍‌ୱାଜ୍, ମେଜର ଜେନେରାଲ ଧିଲନ୍ ଏବଂ କ୍ୟାପ୍‌ଟେନ୍ ଲକ୍ଷ୍ମୀ ଓ ଅନ୍ୟାନ୍ୟ ଜେନେରାଲ୍‌ମାନଂକର ବିଚାର ଉପରେ ମୁଁ କେତେକ କବିତା ଲେଖିଥିଲି, ଯଥା– 'ଜୟହିଂଦ୍' 'ଆମେରୀ' ପ୍ରଭୃତି। ସେସବୁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଥିଲା। ସେ ସବୁ କବିତା ମୋର 'ପାଂଡୁଲିପି' ପୁସ୍ତକରେ ସ୍ଥାନ ପାଇଛି। 'ଜୟହିଂଦ୍'

କବିତାଟି ତଳେ ଦିଆଗଲା—

''ଏବେ ବି ତ ଦିଲ୍ଲୀ ବହୁ ଦୂରେ
ଆଗେ ଅଛି ଦୀର୍ଘ ପଥ ପଶ୍ଚାତ ଯେ ତାହା ପାଇଁ ଝୁରେ
ମନେରଖ ଅଭିଯାତ୍ରୀ ସଂଗ୍ରାମ ତ ହୋଇନାହିଁ ଶେଷ
ଏବେ ବି ତୋ ହୋଇ ନାହିଁ ଆଜାଦ୍ ତୋ ଶୁଭ୍ର ମହାଦେଶ।
ଲାଲ୍‌କିଲ୍ଲା ହୋଇ ନାହିଁ ଜିଣା
ବହୁ ଜନ୍ମ ମୃତ୍ୟୁ ଡେଇଁ ମୁକ୍ତି ଶେଷେ ହେବ ସିନା କିଣା।
ଲଂଘି ସତ ଗଡ଼ାଣି ଉଠାଣି
ସ୍ରୋତମୁଖ ପୁଣି ରେ ଉଜାଣି,
ବାହିବାକୁ ହେବ ତୋତେ ତରୀ—
ତୋ ପାଇଁ ନୁହେଁ ତ ଆଜି ଗତ କାଲି ନୁହେଁ ବି ତୋହରି
ପଶ୍ଚାତର ବହୁ ତ୍ରୁଟି ଗ୍ଲାନି
ସମ୍ମୁଖର ଦିଆଲିରେ ହେବ ସେ ତ ତୋର ଦୀପଦାନି
ତାହାପାଇଁ କରିବାକୁ ଦୁଃଖ
ବେଳ ନାହିଁ ବେଳ ନାହିଁ ଡାକେ ତୋତେ ବିରାଟ ସମ୍ମୁଖ।
ଆଗାମୀର ଶୁଭ୍ର ମୁକ୍ତି ତାଜ
ହୋଇନି ତ ଏବେ ଗଢ଼ା; ଚାରିଆଡ଼େ ଫିରିଂଗିର ରାଜ
ତୋଳିଅଛି ମାୟାର ଖିଲାଣ।
ଲାଲ୍ କିଲ୍ଲା ଶିରେ ବଂଧୁ ଉଡ଼ିନି ତ ଲାଲ୍ ଧ୍ୱଜାମାନ
ତହିଁ ଆଜି ତୁମେ ବିଚାରକ।
ଚାଲିଛି ବିଚାର ତହିଁ ଶୃଙ୍ଖଳର ଯା ଅଭିଭାବକ
ଅପରାଧୀ ଏ ସାମ୍ରାଜ୍ୟ ଶାହୀ।
କିବା ଶାସ୍ତି ଦବ ତାରେ କହ, କହ ମୁକ୍ତିର ସିପାହି।
ଖସିପଡ଼େ ଯୁକ୍ତିର ନିର୍ମୋକ—
ଉଚ୍ଚାରିତ ଐକ୍ୟ ତାନେ ଶୁଣ, ଶୁଣ ଆଜାଦିର ଶ୍ଳୋକ
ମୁଖରେ ଏ ଦିଲ୍ଲୀର ଆକାଶ—
ଜୟହିଂଦ୍, ଜୟହିଂଦ୍,
ଛିଡ଼ିପଡ଼େ ଗୋଲାମିର ଫାଶ
ଅରାଜକ ରାତ୍ରି ଯାଏ ମରି . . .
ସୂର୍ଯ୍ୟର ଶପଥ ନିଏ, ପ୍ରତ୍ୟୁଷର ସୁବର୍ଣ୍ଣ କାକଳୀ।''   ('ପାଂଡୁଲିପି')

ବ୍ରିଟିଶ୍ ସରକାରର ତତ୍‌କାଳୀନ ଭାରତ-ସଚିବ ଆମେରିଂକ ଉପରେ ଲିଖିତ ମୋର ଏକ କବିତାର କେତେକ ଅଂଶ ଦିଆଗଲା।

"ଆମେରି !
'ଭାରତର କ୍ରୁଦ୍ଧ ଆତ୍ମା ଡାକି କହେ– ଶୁଣ ହେ ଆମେରି,
ଦେଖିଅଛ ଭାରତର ମାନଚିତ୍ର, ଦେଖିନ ତ ଫେରି . . .
ଏ ଦେଶର କୋଟି ବୁକେ ଜାଗିଅଛି କି ମହା ସ୍ପନ୍ଦନ
ଅତୀତର ପ୍ରତିକ୍ରିୟା ଶିର ଦଳି ଲୁହାର ସ୍ୟନ୍ଦନ
ଛୁଟିଛି ପ୍ରଗତିର, ଦେଖିନାହ ହେ ରକ୍ଷଣଶୀଳ
ନ୍ୟସ୍ତ-ସ୍ୱାର୍ଥ ଶୋଷଣର, ବଣିକର ଇତର, ଅଶ୍ଳୀଳ
ବ୍ୟଭିଚାରୀ ମନୋବୃତ୍ତି, ପରଭୋଜୀ ଲଂପଟ ସଭ୍ୟତା
ପଦେ ଦଳି ଛୁଟିଅଛି ଅଗ୍ରଗାମୀ ବିଶ୍ୱର ଜନତା
ତୁମର ଭାରତ
ଅମଲାର ସ୍ୱର୍ଗ ଭୂଇଁ ନୌକରୀର ସେ ଯେ ମହାତୀର୍ଥ
କିରାନିର ସିରସ୍ତାରେ, ଫିରିଂଗିର ନିର୍ଜୀବ ଦପ୍ତରେ
ଲେଖାଅଛି ନାମ ତାର କାଳ କାଳ ଅଂଗାର ଅକ୍ଷରେ ।
ସୌଦାଗିରି ଶୋଷଣ ହାଟେ
ମୋ ଦେଶ ଭାରତ ଆଜି ମରିଅଛି ଶମଶାନ ଘାଟେ ।
ପଚମାନ ଶବ ଦେହ ତାର
ହେ ଆମେରି ! ଦେଖ, ଦେଖ କାହା ନଖ ଜିଭର ଶିକାର ?
ଜନତାର ଶାଣିତ ଶପଥ . . .
ଜାଳିଦିଏ ଆମେରିର କିରାନି ଓ ଦାସର ଭାରତ ।
ଜନ୍ମ ଲଭେ ସ୍ୱାଧୀନ ସ୍ୱଦେଶ . . .
ଭାବୀ ପ୍ରଭାତର ବଂଧୁ, ସେଇ ମୋର, ସେଇ ମୋର ଦେଶ ।' ('ପାଂଡୁଲିପି')

ଭାରତ ଭିତରେ ଓ ଭାରତ ବାହାରେ ବିରାଟ ସଶସ୍ତ୍ର ମୁକ୍ତି-ସଂଗ୍ରାମ ଚାଲିଥିଲା । ଏହା ଫଳରେ ଭାରତବାସୀଂକ ମନରେ ନୂତନ ଆଶା ଓ ନିଜ ଭାଗ୍ୟ ନିଜେ ନିୟଂତ୍ରଣ କରିବାର ସ୍ୱପ୍ନ କ୍ରମେ ସଫଳ ହୋଇଉଠିଲା ।

**'ଅଗଷ୍ଟ-ବିପ୍ଳବ' ଓ ମୁଁ : ପୁସ୍ତକ ବାଜ୍ୟାପ୍ତି–**

୧୯୪୨ ସାଲ୍ ସେପ୍‌ଟେଂବର ମାସରେ ମୋର ବିଖ୍ୟାତ କବିତା "ବାଜିରାଉତ"ର ଇଂରାଜୀ ଅନୁବାଦ– 'The Boatman Boy & other Poems' ପ୍ରକାଶିତ ହୁଏ । ଏହାର ପ୍ରକାଶକ ଥିଲେ କଲିକତାର ଶଶିଭୂଷଣ ଦେ ଷ୍ଟ୍ରୀଟ୍‌ର ସମବାୟ ପବ୍ଲିଶର୍ସ । ଏହି ବହିଟି ପ୍ରକାଶ ପାଇବା ପରେ ଭାରତର ବିଭିନ୍ନ ରାଜ୍ୟରେ ସ୍ୱାଧୀନତା ସଂଗ୍ରାମୀଂକ ମନରେ ଅଦ୍‌ଭୁତ ପ୍ରେରଣା ଓ ଉତ୍ସାହ ଆଣିଦେଇଥିଲା । ଭାରତର ସବୁ ଅଂଚଳର ପ୍ରଗତିଶୀଳ ପାଠକ-ପାଠିକା ଏହି ବହିଦ୍ୱାରା ଅନୁପ୍ରାଣିତ ହୋଇଥିଲେ । କେରଳର ଜନନେତା ଇ.ଏସ୍. ନାମ୍ବୁଦ୍ରିପଦ

ଯେ କି ପରେ କେରଳର ମୁଖ୍ୟମଂତ୍ରୀ ହୋଇଥିଲେ, ଏବଂ କାଶ୍ମୀରର ପ୍ରମୁଖନେତା ଓ ପରେ ମୁଖ୍ୟମଂତ୍ରୀ ସେକ୍ ଅବଦୁଲା ଏ ବହିଟିକୁ ଯଥାକ୍ରମେ ମାଲୟାଲାମ୍ ଓ କାଶ୍ମିରୀ ଭାଷାରେ ଅନୁବାଦ କରିଥିଲେ। କଲିକତାର ବିଖ୍ୟାତ ଇଂରାଜୀ ପତ୍ରିକା, 'Statesman' ଏହି ବହିର ସମୀକ୍ଷା କରିବାକୁ ଯାଇ ଲେଖିଥିଲା: ''ଗାଂଧୀଂକ ପରବର୍ତ୍ତୀ ଭାରତକୁ ଜାଣିବାକୁ ହେଲେ ଏ ବହିଟି ପଢ଼ିବା ଏକାଂତ ଆବଶ୍ୟକ।'' ଏ ବହିଟିର ରିଭ୍ୟୁ କରାଇବାରେ ଜ୍ୟୋତିବସୁ (ପରେ ପଶ୍ଚିମବଂଗର ମୁଖ୍ୟମଂତ୍ରୀ) ବିଶେଷ ସାହାଯ୍ୟ କରିଥିଲେ। ୧୯୪୨ ମସିହାରେ ସେ ରାଜନୀତିରେ ସୀମା ମାଡ଼ିନଥିଲେ। ବିଲାତରୁ ବାରିଷ୍ଟରୀ ପାଶ୍ କରି ସେ ସଦ୍ୟ କଲିକତା ଫେରିଥାଂତି। ନିଉ ଆଲିପୁର ରୋଡ଼ରେ ରହୁଥିବା ମୋର ବଂଧୁ ସ୍ନେହାଂଶୁ ଆଚାର୍ଯ୍ୟ (ମୟମନ୍ ସିଂ ମହାରାଜାଂକ କନିଷ୍ଠ ପୁତ୍ର, ପରେ ପଶ୍ଚିମବଂଗ ବାମପଂଥୀ ସାମ୍ମୁଖ୍ୟ ସରକାରଂକ (Advocate General) ଘରେ ଜ୍ୟୋତି ବାବୁଂକ ସହିତ ମୋର ବରାବର ସାକ୍ଷାତ ଓ ଆଲୋଚନା ହେଉଥାଏ। ସ୍ନେହାଂଶୁ ଆଚାର୍ଯ୍ୟଂକୁ ଆମେ ଥଟ୍ଟା କରି 'କମ୍ୟୁନିଷ୍ଟ ପ୍ରିନସ୍' ବୋଲି ଚିଡ଼ାଉଥାଉ। ସେ ବିଲାତରେ ଜ୍ୟୋତି ବସୁଙ୍କର ସହପାଠୀ ଥିଲେ ଏବଂ ଏକାସାଙ୍ଗରେ ଦୁହେଁ ବାରିଷ୍ଟରୀ ପାଶ୍‌କରିଥିଲେ।

ଏହାଛଡ଼ା ୧୯୪୩ ସାଲ୍‌ରେ ମୋର କବିତାସମ୍ବଳିତ ପୁସ୍ତକ 'ଉଠ ଜାଗ ଭୋକୀ ବନ୍ଦୀ' ବ୍ରିଟିଶ୍ ସରକାରଙ୍କଦ୍ୱାରା ବାଜ୍ୟାପ୍ତ ହୋଇଥିଲା। ଏ ବହିଟିରେ ମୋର କେତୋଟି ବିପ୍ଳବାତ୍ମକ କବିତା ସନ୍ନିବିଷ୍ଟ ଥିଲା। ମୁଁ ସେତେବେଳେ କେଶୋରାମ୍ କଟନ୍ ମିଲ୍‌ରେ ଚାକିରି କରୁଥାଏ।

**କଲିକତାରେ ବୋମାବୃଷ୍ଟି –**

୧୯୪୩-୪୪ରେ କଲିକତାରେ ଜାପାନୀମାନେ ବୋମାବର୍ଷଣ କରୁଥାନ୍ତି। କେତେକ ଜାହାଜ ଭାଙ୍ଗିରୁଜିଯାଇଥିଲା ଓ କେତେକ ଲୋକ ମୃତାହତ ହୋଇଥିଲେ। ସେମାନେ ପ୍ରତିଦିନ ରାତି ୧୨ଟାଠାରୁ ୪ଟା ମଧ୍ୟରେ ଆମ ମିଲ୍ ନିକଟସ୍ଥ ଖିଦିରପୁର ଡକ୍‌ରେ ବୋମାପକାଉଥାନ୍ତି। ଜାପାନୀ ଉଡ଼ାଜାହାଜ ଆସିବା ପୂର୍ବରୁ କଲିକତାର ଚାରିଆଡ଼େ ବ୍ଲାକ୍‌ଆଉଟ୍ ହୋଇଯାଏ ଓ ସାଇରନ୍ ବାଜି ଉଠେ ଏବଂ ଆମେ ସବୁ ବାସସ୍ଥାନ ଛାଡ଼ି ମିଲ୍ ଭିତରକୁ ଚାଲିଯାଇ ସେଠାରେ ସେଲ୍‌ଟର ମଧ୍ୟରେ ଆଶ୍ରୟନେଉ। ଜାପାନୀମାନେ ୪-୬ଟା ବୋମା ପକାଇ ଦେଇ ଫେରିଯାନ୍ତି। ସେମାନେ ଚାଲିଯିବା ପରେ ନିରାପଦ ସାଇରନ୍ ବାଜିଉଠେ ଏବଂ ଆମେମାନେ ସେଲ୍‌ଟର୍‌ରୁ ନିଜ ନିଜ କ୍ୱାଟରକୁ ଫେରିଯାଉ। ଏହି ସମୟରେ ରଚିତ ୨-୩ଟି କବିତା ମୋର 'ପାଣ୍ଡୁଲିପି' ପୁସ୍ତକରେ ରହିଛି। ଯଥା – 'ସେଲଟର୍', 'ବୋମାରୁ' ଇତ୍ୟାଦି। ଗୋଟିଏ କବିତାରେ ('ସେଲ୍‌ଟର୍‌ରେ') ମୋ ପାଖରେ ବସିଥିବା ଜଣେ ସଙ୍ଗିନୀଙ୍କର ଟିକିଏ ଆଭାସ ମିଳେ। ବୋମା ବର୍ଷୁଥିବାବେଳେ

''ତୁମର ସାମ୍ପୁକରା କେଶର ସୁରଭି'' ଆଜି ବେଶ୍ କୌତୂହଳଜନକ ମନେହୁଏ । ତଳେ 'ସେଲଟର' କବିତାର କିଛି ଅଂଶ ଦିଆଗଲା –

''ଚୁପ୍‌କରି ବସ – ସାଇରନ୍
କ୍ଷୁଧାର୍ତ୍ତ ଇଗଲ ପରି ଦଳକୁ ଦଳ ସେମାନେ ଆସୁଛଂତି
ଏଇ ହରିତ ରାତିର ବୁକୁ ଚିରି
ଚଂଚୁରେ ସେମାନଙ୍କର ମୃତ୍ୟୁର ପୀତ ନାମ-ଫଳକ
ଆଖିରେ ବିଷାକ୍ତ ହୀରାର ଆଲୋକ
ନିଷ୍ପ୍ରଦୀପ ରାତିର ଝର୍କାରେ ଝର୍କାରେ
ଅନୁଚିତ ଆଲୁଅର ଝଲକ ।
ବତି ନିଭିଯାଏ, ସାଇରନ୍ ବାଜୁଛି ।
ଏଇ କଳା ବଣ୍ୟ ଆଲୁଳାୟିତ ଅଂଧାରେ
ହାଣ ତୁମର ଶୁଭ୍ର ତ୍ୱକ୍‌ର ପାଲିସ୍,
ତୁମର ଛିନ୍ନ ନିଶ୍ୱାସର ସୁରଭି,
ଅଂଧକାରର ଛିଦ୍ରସବୁ ଭରିଉଠୁ ତୁମର ସାଂପୁକରା କେଶର ନୂତନ ସ୍ୱାଧୀନତାରେ
ଏଇ ଅଂଧାରରେ ବି
ତୁମର ଶୁଭ୍ର ନଖର ପାଲିସ୍ କି ପରିଷ୍କାର । (ପାଂଡୁଲିପି)

'ବୋମାରୁ' କବିତାଟି ତଳେ ଦେଲି –

''ସେମାନେ ଧାଇଁଆସୁଛନ୍ତି ଉଡ଼ନ୍ତା ସାପପରି ଜିଭ ବଢ଼ାଇ
ଭାସମାନ ଉଲ୍‌କା ପରି ନିଆଁର ପୁଚ୍ଛ ତୋଳି
ସେମାନଙ୍କର ମଖମଲ୍ ପଖାରେ ଆରାକାନ୍ ଜଂଗଲର
ଜଳୀୟବାଷ୍ପ
ପ୍ରଶାନ୍ତ ମହାସାଗରର ଫସ୍‌ଫରସ୍
ମୁଁ ଗ୍ରହଣ କରିବାକୁ ଚାହେଁ ସେମାନଙ୍କ ସବୁତକ ନିଶ୍ୱାସ
ମୋର ଶ୍ୱାସ ପ୍ରଦୋଷରେ
ନୀଳକଣ୍ଠ ପରି ମୁଁ ଏକାଇ ପାନକରିବାକୁ ଚାହେଁ
ସେମାନଙ୍କର ସବୁ ବିଷ
କଳାମଦ ପରି ।
ମୋର ସମସ୍ତ ପୌରୁଷକୁ ଆହ୍ୱାନ ଜଣାଇ
ସେମାନେ ମାରୁଛଂତି ବାହ୍ୱାସ୍ଫୋଟ
ମଝିରେ ମଝିରେ ଏ.ଆର୍.ପି.ର ସାବଧାନ ବଂଶୀ

ତଳେ ଘାସର କାଚ୍‌ରେ ନେଳୀ ଜାପାନୀ ଆଲୁଅର ପ୍ରେତଛାଇ
ମୁଁ ଭାସିଯିବାକୁ ଚାହେଁ ସେଇ ଭୟାନକ ବିମାନଗୁଡ଼ିକ ନିକଟକୁ
କଳ୍ପନାର ଛୋଟ ଛୋଟ ଜଂଗୀ ବିମାନ ପରି
ସାଦାମେଘର ଢେଉରେ, ରାଜହଂସୀର ନର୍ମ ବିହ୍ୱଳ ଛନ୍ଦରେ
ସେମାନଙ୍କ ମେସିନ୍‌ଗନ୍ ଧୂଆଁରେ ନିଜକୁ ଭସାଇଦେଇ
ଖେଳିବୁଲିବାକୁ ଚାହେଁ ମୋର ତୀବ୍ର ସଂତରଣପ୍ରିୟ ମନ,
ମରୁ ମରୁ ହଠାତ୍ ବଂଚିଯିବାର କୌତୁକ କୌଶଳେ
କଳା ଅଶ୍ଳୀଳ ବିପଦର ହଠାତ୍ କଂପନେ
ମୃତ୍ୟୁର ଭୟଙ୍କର ଏବଂ ରେଶମ୍ ପରି ପିଚ୍ଛିଳ ଆତଂକେ
ଜୀବନର ନୂଆ ନୂଆ ରୋମାଂଚ ଭିତରେ ମୁଁ ବଂଚିରହିବାକୁ ଚାହେଁ .
ଆସନ୍ନ ଝଡ଼ର ଭାରୀ, ବେପରୱା ଶୀତ୍‌କାରେ . . . ।'' (ପାଣ୍ଡୁଲିପି)

ଏହିପରି ବୋମାବର୍ଷା ଭିତରେ ଆମର ପ୍ରାୟ ୨ ମାସ କଟିଯାଇଛି। ମାସ-ମାସଧରି ରାତିରେ ଏହି ଆତ୍ମରକ୍ଷା ଉଦ୍ୟମ କ୍ରମେ ଅଭ୍ୟାସଗତ ହୋଇ-ଯାଇଥିଲା। ପ୍ରାୟ ସବୁଦିନ ଉଡ଼ାଜାହାଜବିଧ୍ୱଂସୀ କମାଣ ଓ ବନ୍ଧୁକ ଜାପାନୀ ବୋମାରୁମାନଙ୍କୁ ଲକ୍ଷ କରି ଗୁଳି ମାରୁଥିଲେ; ମାତ୍ର କୌଣସି ଜାପାନୀ ଉଡ଼ାଜାହାଜ ଦୀର୍ଘଦିନ ଭିତରେ ତଳେ ପଡ଼ିଯିବାର ଜଣାଯାଇନାହିଁ। ଥରେ ଗୋଟିଏ ବୋମା ଆମ ମିଲ୍ ପଡ଼ିଶା କାରଖାନା କ୍ଲାଇବ୍ ଝୁଟ୍ ମିଲ୍ ପଡ଼ିଆରେ ପଡ଼ିଥିଲା; ମାତ୍ର କେହି ହତାହତ ହୋଇନଥିଲେ। କଲିକତାରେ ସବୁବେଳେ କିଛି ନା କିଛି ବିପଦ ଲାଗିରହିଥାଏ। ୨-୩ ବର୍ଷ ପରେ ୧୯୪୬ ମସିହାରେ ମାଟିଆବୁରୁଜରେ ଦେଶର ବୃହତ୍ତମ ହିନ୍ଦୁ-ମୁସଲମାନ ଦଙ୍ଗା ଲାଗିଲା; ଶହସ୍ରାଧିକ ଲୋକ ମୃତାହତ ହୋଇଥିଲେ। ବହୁ ଧନ ଜୀବନ ନଷ୍ଟହୋଇଥିଲା ଓ ଘରଦ୍ୱାର ଜଳିପୋଡ଼ିଯାଇଥିଲା। ଏହା ଇତିହାସରେ ''The Great Calcutta Killing'' ନାମରେ ଅଭିହିତ ହୋଇଛି। ଏ ବିଷୟ ପରେ ଲେଖିବି।

# ପଞ୍ଚବିଂଶ ଉଲ୍ଲାସ

## ବିବାହ : ଇତିହାସର ନୂଆ ମୋଡ଼ : ସ୍ୱାଧୀନ ଭାରତର ଜନ୍ମ

ମୋ ବିବାହ ସଂବଂଧରେ ଲୋକଂକ ମନରେ କିଛିଟା କୌତୂହଳ ରହିଛି; ତେଣୁ ସେ ବିଷୟରେ ଟିକିଏ ବିଶଦ ବିବରଣୀ ଦେବା ଆବଶ୍ୟକ।

ମୋର ବିବାହ ହୁଏ ୧୯୪୫ ମସିହା ମଇ ମାସ ୨୧ ତାରିଖରେ ଆନ୍ଧ୍ର ପ୍ରଦେଶର କୃଷ୍ଣା ଜିଲ୍ଲା ଅଂତର୍ଗତ ନୁଜଭିର ତାଲୁକର ଜଣାଶୁଣା ଜମିଦାର ବଂଶରେ। ମୋର ଶ୍ୱଶୁର ରାଜା ଶ୍ରୀମାନ୍ ନାରାୟଣ ଆପାରାଓ ବାହାଦୁର ଗୋଲାପଲ୍ଲୀ ଇଷ୍ଟେଟ୍‌ର ଜମିଦାର ଥିଲେ। ଜମିଦାରମାନଂକୁ ସେତେବେଳେ ରାଜା କୁହାଯାଉଥିଲା। ତାଙ୍କ ସ୍ତ୍ରୀଙ୍କର ନାମ ଥିଲା ରାଣୀ ଭେଂକଟ ଚିନୟାମା ରାଓ। ସେ ପେଦାପାବନି ରାଜାଂକ ଝିଅ ଥିଲେ। ସେମାନଂକର ଚାରୋଟି କନ୍ୟା ଥିଲେ। ମୋ ସ୍ତ୍ରୀ ଭୂଦେବୀ ତାଙ୍କର କନିଷ୍ଠା କନ୍ୟା। ବଡ଼ଝିଅ ଇନ୍ଦିରା ଦେବୀ ପିଠାପୁରମ୍ ମହାରାଜାଂକ କନିଷ୍ଠପୁତ୍ର ଅମ୍ମୁଂକୁ ବିବାହକରିଥିଲେ। ତାଙ୍କର ଭଲ ନାମ ଭେଂକଟ ସୂର୍ଯ୍ୟ ରାଓ। ତାଙ୍କର ଗୋଟିଏ ଝିଅ ଅଛି– ନାମ ଚିନାମାଂବା। ସେ ମହୀଶୂର ରାଜବଂଶର ଜଣେ ଲେଫଟ୍‌ନାଣ୍ଟ କର୍ଣ୍ଣେଲ ଶ୍ରୀ ଅର୍ସଂକୁ ବିବାହ କରିଥିଲେ। ମୋର ବଡ଼ ଶାଳୀ ଏହି ଝିଅଟି ଜନ୍ମ ହେବାର କେତେ ମାସ ପରେ ଜାହଲୀଳା ସାଂଗକରଂତି। ତା'ପରେ ଅମ୍ମୁ ମୋ ସ୍ତ୍ରୀର ଦାଦାଝିଅ ଭଉଣୀ ପଦ୍ମାକୁ ବିବାହକରନ୍ତି। ଅମ୍ମୁ ଦେଖିବାକୁ ଯେପରି ଲମ୍ବା ଚଉଡ଼ା ଓ ମୋଟା, ସ୍ୱଭାବ ମଧ୍ୟ ସେହିପରି ସରଳ ଓ ହାସ୍ୟପ୍ରିୟ। ଆମେ କଲିକତାରେ ଥିଲାବେଳେ ସେ ଓ ପଦ୍ମା କେତେ ଥର ଆସି ଆମକୁ ସଂଖୋଳିଯାଇଥିଲେ। ଅମ୍ମୁ ବାପାଂକର ଖୁବ୍ ପ୍ରିୟ ଥିଲେ। ତାଂକର ଏକ ଜନ୍ମଦିନରେ ତାଂକ ପିତା ପିଠାପୁରମ୍ ମହାରାଜା ତାଂକୁ ଏକ ରୋଲ୍‌ସରୟସ୍ ଗାଡ଼ି ଉପହାର ଦେଇଥିଲେ। ଅମ୍ମୁଙ୍କର କେତେ ବର୍ଷ ତଳେ ମୃତ୍ୟୁ ହୋଇଯାଇଛି। ମୋର ମଝିଆ ଶାଳୀ ସୁଶୀଳା ଦେବୀ ବିଜୟୱାଡ଼ା ନିକଟସ୍ଥ ନର୍ଥ ମାୟାଲାଭରମ୍ ଜମିଦାର କୃଷ୍ଣ ରାଓଙ୍କୁ ବିବାହକରିଥିଲେ। ତାଙ୍କର ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଅଛନ୍ତି। ତୃତୀୟ ଝିଅ ରୁକ୍ମିଣୀ ବିବାହପୂର୍ବରୁ ମୃତ୍ୟୁମୁଖରେ ପଡ଼ିଥିଲେ।

ମୋ ଶ୍ୱଶୁରଙ୍କ ତିନି ଭାଇଂକ ମଧ୍ୟରୁ ବଡ଼ଭାଇ ଭୂୟୁର ଜମିଦାର ରାଜା ଭେଂକଟେଦ୍ରି ଆପାରାଓ ବାହାଦୁର ଏବଂ ଅନ୍ୟଭାଇ କପିଳେଶ୍ୱର ଷ୍ଟେଟ୍‌ର ଜମିଦାର ରାଜା ଶ୍ରୀନିବାସ ଆପାରାଓ ବାହାଦୁର ଥିଲେ। ତାଙ୍କର ତିନିଭଉଣୀ ମଧ୍ୟରୁ

ଜ୍ୟେଷ୍ଠା ଭଗ୍ନୀ ପିଠାପୁରମ୍ ମହାରାଜାଂକୁ ବିବାହକରିଥିଲେ। ମୋ ଶ୍ୱଶୁରଂକ ପିତା ରାଜା ଭେଂକଟରଙ୍ଗାୟା ଆପାରାଓ ବାହାଦୂର। ଭୂୟୁରୁ ଜମିଦାରଂକୁ ପୋଷ୍ୟ-ପୁତ୍ର ହୋଇ ଯାଇଥିଲେ।

ମୋର ବିବାହ ଗୋଲାପଲ୍ଲୀର ରାଜବାଟୀ (ଯାହାର ନାମ ଥିଲା ଭେଂକଟରଂଗା ପ୍ୟାଲେସ୍)ର ସମ୍ମୁଖସ୍ଥ ରଘୁନାଥ ବିଳାସ ଗାର୍ଡ଼େନରେ ସମାରୋହ ସହିତ ଅନୁଷ୍ଠିତ ହୋଇଥିଲା। ମୋର ବିବାହ ପରେ ବାହାବେଦି ସାମ୍ନାରେ ଏକ କବି-ସମ୍ମିଳନୀ ହୋଇଥିଲା। ସେଥିରେ ଆନ୍ଧ୍ର ପ୍ରଦେଶର ବହୁ ବିଶିଷ୍ଟ କବି ଯୋଗଦେଇଥିଲେ ଏବଂ ସ୍ୱରଚିତ କବିତାମାନ ପଢ଼ିଥିଲେ। ସେମାନଙ୍କ ମଧ୍ୟରେ ତେଲୁଗୁ ଛାୟାବାଦୀ କବିତାର ଅଗ୍ରସୂରୀ କୃଷ୍ଣ ଶାସ୍ତ୍ରୀ ଓ ନାରାୟଣବାବୁ ପ୍ରଭୃତି ଯୋଗଦେଇ କବିତା ପାଠ କରିଥିଲେ। ବିଖ୍ୟାତ ସଂଗୀତଶିଳ୍ପୀ ଅନସୂୟା ଓ ତାଙ୍କ ଭଉଣୀ ସୀତା ମଧ୍ୟ ଯୋଗଦେଇଥିଲେ। ଏବଂ ସଂଗୀତ ପରିବେଷଣ କରିଥିଲେ। ଭୂୟୁରୁ ଯୁବରାଜ ଅର୍ଥାତ୍ ମୋର ବଡ଼ଶଳା ଏମ୍. ଆର୍. ଆପାରାଓ କବିମାନଂକୁ ସଂବର୍ଦ୍ଧନା କରି-ଥିଲେ। ଏମ୍. ଆର୍. ପରେ ସଂଜୀବ ରେଡ୍ଡୀ ମଂତ୍ରିମଣ୍ଡଳରେ କ୍ୟାବିନେଟ୍ ମନ୍ତ୍ରୀ ଥିଲେ ଏବଂ ପରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ। ପାର୍ଲାମେଣ୍ଟର ରାଜ୍ୟସଭା ସଭ୍ୟରୂପେ ମନୋନୀତ ହୋଇଥିଲେ। ତାଂକର ଜଣେ ସାନଭାଇ ଏମ୍.ଏସ୍. ଆପାରାଓ ଜଣେ ସୋସିଆଲିଷ୍ଟ ନେତାରୂପେ ସୁପରିଚିତ। ସେ ରାମ-ମନୋହର ଲୋହିଆଂକର ଘନିଷ୍ଠ ସହଯୋଗୀ ଥିଲେ। ସେ ମାଡ୍ରାସରେ ରହନ୍ତି।

ମୋ ସାଂଗରେ ବରଯାତ୍ରୀ ରୂପେ ମୋର ପୋଷ୍ୟପିତା (ବଡ଼ ଦଦେଇ) ସଦାନଂଦ ରାଉରାୟ, ମହନୀ ଅପା (ସୌଦାମିନୀ) ଏବଂ ତାଙ୍କର ଦୁଇଝିଅ ସରୋଜିନୀ ଓ ଶର୍ମିଷ୍ଠା ଏବଂ ଦାଦାପୁଅ ଭାଇ ବାସୁଦେବ (ପରେ ବ୍ରିଗେଡ଼ିଅର୍ ଓ ମିଲିଟାରୀ ଡାକ୍ତର, ବର୍ତ୍ତମାନ ଅବସର ନେଇ ଦିଲ୍ଲୀରେ ପ୍ରାକ୍ଟିସ୍ କରୁଛି) ଯାଇଥିଲେ।

ମୋ ଶ୍ୱଶୁରଂକ ସହିତ ମୋର କଲିକତାରେ ୧୯୪୪ ମସିହାରେ ଜଣେ ଭଦ୍ରଲୋକଂକ ଅଫିସରେ ଦେଖାହୋଇଥିଲା। ସେ ଜଣେ ବଡ଼ ସଂସ୍କୃତିସଂପନ୍ନ ଲୋକ ଥିଲେ। ସେ ମୋତେ ତାଙ୍କର ଗୋଲାପଲ୍ଲୀ ଘରକୁ ଥରେ ଯିବାପାଇଁ ନିମଂତ୍ରଣ କରିଥିଲେ। ମୁଁ ମାଡ୍ରାସରୁ ଫେରିବା ବାଟରେ ଥରେ ତାଙ୍କ ଗୋଲାପଲ୍ଲୀ ପ୍ୟାଲେସ୍‌ରେ ଦୁଇଦିନ ଅତିଥି ହୋଇଥିଲି। ସେହି ସମୟରେ ମୋର ଭୂଦେବୀ ସହ ପରିଚୟ ଓ ଆଳାପ ହୋଇଥିଲା; ତା ପରବର୍ଷ ତାହା ବିବାହରେ ପରିଣତହେଲା। ମୋ ଶ୍ୱଶୁର ଗୋଲାପଲ୍ଲୀ ଜମିଦାର ଜଣେ କଂଗ୍ରେସପ୍ରେମୀ ଥିଲେ। ସେ ସବୁବେଳେ ଖଦଡ଼ ପିନ୍ଧୁଥିଲେ। ସେ ତାଙ୍କ ତିନି ଝିଅଙ୍କର ଶିକ୍ଷା ପାଇଁ ବହୁଦିନ ମାଡ୍ରାସରେ ରହିଥିଲେ। ମୋ ସ୍ତ୍ରୀ ସେତେବେଳେ ମାଡ୍ରାସ କନ୍‌ଭେଣ୍ଟ୍ ସ୍କୁଲ୍‌ରେ ପଢ଼ୁଥିଲେ। ପରେ ଗୋଲାପଲ୍ଲୀରେ ରହିଲାବେଳେ ସେ ମସୁଲିପଟନମ୍ କଲେଜର ଅବସରପ୍ରାପ୍ତ ପ୍ରିନ୍‌ସିପାଲ୍ ଯେ କି ନୁଜ୍‌ଭିଡ଼ରେ ରହୁଥିଲେ,

ତାଙ୍କଠାରୁ ଶିକ୍ଷାଲାଭକରୁଥିଲେ। ସେ ଇଂରାଜୀରେ ବହୁ କାବ୍ୟ ନାଟକ ଆଦି ତାଂକ ପାଖରୁ ଶିକ୍ଷାକରିଥିଲେ। ହିନ୍ଦୀରେ ମଧ୍ୟ 'ପରିଚୟ' ପାଶ୍ କରିଥିଲେ। ବିବାହ ପରେ ସେ ଓଡ଼ିଆ ଶିଖି ବହିପତ୍ର, ମାଗାଜିନ୍ ଓ ଖବରକାଗଜ ଆଦି ପଢ଼ଂତି ଏବଂ ଓଡ଼ିଆରେ କଥାବାର୍ତ୍ତା କରଂତି।

ବିବାହ ପୂର୍ବରୁ କଲିକତାରେହିଁ ନିର୍ବଂଧ ହୋଇଥିଲା। ମୋ ଶ୍ୱଶୁରଂକ ଭାଣିଜୀ ପିଠାପୁରମ୍ ମହାରାଜାଂଙ୍କର ଜ୍ୟେଷ୍ଠାକନ୍ୟା ମଂଗଳାଦେବୀ, ଯେ କି ଆସାମରେ ସିଡ଼ିଲ ରାଜାଂକୁ ବିବାହକରିଥିଲେ ଏବଂ ପରେ ସେ ଆସାମ ଗୋଲପଡ଼ାରୁ ପାର୍ଲିଆମେଣ୍ଟ୍ ସଭ୍ୟରୂପେ (ଲୋକସଭାକୁ) ନିର୍ବାଚିତ ହୋଇଥିଲେ। ତାଂଙ୍କର କଲିକତା ବାଲିଗଂଜରେ ଥିବା ସିଡ଼ିଲ ହାଉସ୍‌ରେ ମାଳି ମହାପ୍ରସାଦ ବା ନିର୍ବଂଧ ଅନୁଷ୍ଠିତ ହୋଇଥିଲା। ସେ ସମସ୍ତ ଆୟୋଜନ କରିଥିଲେ।

ନୁଜଭିର ରାଜବଂଶର ଆଉ ଜଣେ କନ୍ୟା ସୁଜ୍ଞାନୀ କୁମାରୀ ଦେଓ (ଖଲିକୋଟ ରାଣୀ) ମଧ୍ୟ ଓଡ଼ିଶାରେ ବିବାହ କରିଛନ୍ତି। ସେ ମୋ ସ୍ତ୍ରୀଙ୍କର ଝିଆରୀ ହେବେ। ବର୍ତ୍ତମାନ ସେ ଓଡ଼ିଶା ବିଧାନସଭାର ବିଧାୟିକା ଅଛନ୍ତି।

ଏହି ନୁଜଭିର ରାଜବଂଶର ଶାଖା-ପ୍ରଶାଖା ଆନ୍ଧ୍ରର ଚାରିଆଡ଼େ ଏବଂ ଆନ୍ଧ୍ର ବାହାରେ ମାଡ଼ିଯାଇଛି। ସେମାନେ ଜାତିରେ ଭେଲେମା ବା କ୍ଷତ୍ରିୟ। ପିଠାପୁରମ୍ ମହାରାଜାଂଙ୍କର ଦ୍ୱିତୀୟା କନ୍ୟା କମଳାଦେବୀ କୁଚ୍‌ବିହାର ରାଜକୁମାରଂକୁ ବିବାହ କରିଥିଲେ। ଏହାଛଡ଼ା ଭେଂକଟଗିରି, ବବିଲି, ବିଜୟନଗର ପ୍ରଭୃତି ରାଜାମାନଂକ ସଂଗେ ଏମାନଙ୍କର ନିକଟ ବୈବାହିକ ସଂପର୍କ ଥିଲା। ଭୂଦେବୀଂକ ଦୁଇଜଣ ଦଦାଝିଅ ଭଉଣୀ ଯଥାକ୍ରମେ ବବିନ୍ଦ କାନ୍ନାମା ଓ ରାଧା ଗଜପତି ମହାରାଜାଂକୁ ବିବାହ କରିଛଂତି। ମୋ ସ୍ତ୍ରୀଙ୍କର ଜଣେ ଦାଦାଝିଅ ଭଉଣୀ କମଳା ଜଣେ ଅର୍ଜେଣ୍ଟିନାବାସୀଙ୍କୁ ବିବାହକରିଛଂତି। ଏଥିରୁ ଏ ବଂଶର ସୁଦୂରପ୍ରସାରୀ ଦୃଷ୍ଟିକୋଣ ଓ ସମ୍ପର୍କ ବିଷୟରେ ସୂଚନା ମିଳେ।

ମୋ ଶ୍ୱଶୁର ଗୋଲାପଲ୍ଲୀ ରାଜା ଜଣେ ଉଚ୍ଚଭାବାପନ୍ନ ଓ ଉଦ୍‌ଯୋଗୀ ବ୍ୟକ୍ତି ଥିଲେ। ସେ ଗୋଲାପଲ୍ଲୀର ୬୦ ଏକରରୁ ଅଧିକ ଜାଗା ଭିତରେ ତାଙ୍କର ଗଂବୁଜବିଶିଷ୍ଟ ଦୁଇତାଲା ପ୍ୟାଲେସ୍ (ରାଜବାଟୀ) ନିର୍ମାଣ କରିଥିଲେ। ଏହି ଷାଠିଏ ଏକର ଜମିରେ ଆମ୍ବତୋଟା ଥିଲା। ସାମ୍ନାରେ ଏକ ସପେଟା ବଗିଚା ଥିଲା। ହଠାତ୍ ଦିନେ ସେ ଆମ୍ବତୋଟାର ଅଧିକାଂଶ ଆମ୍ବଗଛ କଟାଇ ଦେଇ ଏକ ଏରୋଡ୍ରମ୍ ଓ ଉଡ଼ାଜାହାଜ ପଡ଼ିଆ ତିଆରିକରାଇଥିଲେ। ଗୋଟିଏ ଏରୋପ୍ଲେନ୍ କିଣି ସେଠାରେ ଚାଟାର୍ଡରେ ଚଳାଉଥିଲେ। ସେଥିପାଇଁ ଜଣେ ପାଇଲଟ୍ ରଖିଥିଲେ। ସେ ନିଜେ ମଧ୍ୟ ପାଇଲଟ୍ ଲାଇସେନ୍‌ସ ହାସଲ କରିଥିଲେ। ତାହା କେତେ ବର୍ଷ ଚାଲିଲା ପରେ କ୍ଷତି ହେବାରୁ ସେ ଏରୋପ୍ଲେନ୍ ବିକ୍ରି କରିଦେଲେ। ଏହାଛଡ଼ା ସେ ନିଜ ରାଜବାଟୀ ହତାରେ ଗୋଟିଏ ଧାନକଳ

ଓ ଗୋଟିଏ ତେଲକଳ ସ୍ଥାପନ କରିଥିଲେ । ଏହା ଭଲରେ ଚାଲୁଥିଲା । ଗୋଳାପଲ୍ଲୀ ରାଜବାଟୀରେରେ ପ୍ରାୟ କୋଡ଼ିଏ ପଚିଶ ଜଣ ଚାକର-ଚାକରାଣୀ ଥିଲେ । ମିଲ୍ ଚଳାଇବା ଲୋକ ମଧ୍ୟ ସ୍ୱତଂତ୍ର ଥିଲେ । ମୋର ବିବାହ ପରେ ମୁଁ ଓ ମୋ ସ୍ତ୍ରୀ କଲିକତାରେ ରହୁଥିବାବେଳେ ମୋ ଶ୍ୱଶୁରାଳୟ ବରାବର ଚାକରାଣୀ ପଠାଉଥିଲେ । ଚାକରାଣୀ ପିଲାମାନଙ୍କର ହିଫାଜତ୍ ନେଉଥିଲା ଓ ରୋଷେଇବାସ ମଧ୍ୟ କରୁଥିଲା । ମୋ ପିଲାମାନେ ସେମାନଙ୍କଠାରୁ ଅଳ୍ପ ଅଳ୍ପ ତେଲୁଗୁ ଶିଖିଯାଉଥିଲେ । ଏହିପରି କିଛି ବର୍ଷ ଚାଲିଲା ପରେ ଚାକରାଣୀ ଆସିବା ବନ୍ଦ-ହୋଇଗଲା, କାରଣ ସେଠାରେ ମଧ୍ୟ ଚାକର ଚାକରାଣୀ କ୍ରମେ ଦୁଷ୍ପ୍ରାପ୍ୟ ହେଲେ ।

**ବିନୋବା ବାଭେଂକ ସହ –**

ଗୋଳାପଲ୍ଲୀ ରାଜବାଟୀର କିଛି ଅଂଶ ନେଇ ଗୋଳାପଲ୍ଲୀ ହାଇସ୍କୁଲଟି ଗଢ଼ିଉଠିଥିଲା । ୧୯୫୫ ମସିହାରେ ମୁଁ ଆମେରିକାରୁ ଫେରି ଗୋଳାପଲ୍ଲୀରେ କିଛିଦିନ ରହଣି ଭିତରେ ଥରେ ବିନୋବା ବାଭେଂକ ସହିତ କେତେ ଘଂଟା ଆଲୋଚନା କରିବାର ସୁଯୋଗ ପାଇଥିଲି ଏବଂ ତାଂକ ସଂଗେ ଆଠ ମାଇଲ୍ ପଦଯାତ୍ରା କରିଥିଲି । ସେ ତାଂକ ପଦଯାତ୍ରା-ଅବସରରେ ଉକ୍ତ ସ୍କୁଲ୍‌ରେ ଏକ ରାତ୍ରି କଟାଇଥିଲେ । ସେ କଥା ପରେ କହିବି ।

**ରାମପାଦ –**

ଗୋଳାପଲ୍ଲୀ ପ୍ୟାଲେସ୍‌ର ଉତ୍ତରପଟେ ଏକ ଝରଣା ଅଛି । ତାହା କୂଳରେ ରାମପାଦ ରହିଛି । ଲୋକେ କହଂତି, ଶ୍ରୀରାମଚନ୍ଦ୍ର ଏହି ବାଟେ ଯାଇଥିଲେ – ତାଂକ ପାଦଚିହ୍ନ ଏଠି ରହିଯାଇଛି । ମୁଁ ଏବଂ ଭୂଦେବୀ କେତେଥର ସଂଜବେଳେ ବୁଲିଯିବା ବେଳେ ଏହି ଝରଣା ନିକଟରେ ବସି କିଛି ସମୟ କଟାଇଛୁ । ନିକଟରେ ଗୋଟିଏ ବଡ଼ ପାଟ ଅଛି; ତାହା ଦୁଇ ତିନି ମାଇଲ୍ ବିସ୍ତୃତ । ସେଥିରେ ପାଣି ଭରିରହିଥାଏ । ଆମେ ଏହି ପାଟ ପାଖରେ କେତେ ଥର ବସି ସମୟ କଟାଇଛୁ ।

ଏହି ଗୋଳାପଲ୍ଲୀ ମୌଜାରେ ରଘୁନାଥ ଜୀଉଂକର ମଂଦିର ଅଛି । ଏହା ଜମିଦାରଂକ ପୂର୍ବପୁରୁଷମାନେ ତୋଳାଇଥିଲେ । କିଛି ମଂଗଳ କାର୍ଯ୍ୟ ହେଲେ ସମସ୍ତେ ଏହି ମଂଦିରକୁ ଆସି ପୂଜା କରଂତି । ଏଠାରେ ରୋଜ ଭୋଗରାଜ ଓ ପୂଜାପାଠ ହୁଏ । ଜଣେ ଦୁଇଜଣ ପୂଜକ ରହିଥାଂତି ।

ଗୋଳାପଲ୍ଲୀରେ ମୋ ଶ୍ୱଶୁରଂକ ଉଦ୍ୟମରେ ଏକ ସ୍ୱାସ୍ଥ୍ୟକେନ୍ଦ୍ର ସ୍ଥାପନ କରାଯାଇଥିଲା । ଏଥିରେ ଜଣେ ଏମ୍.ବି.ବି.ଏସ୍. ପାସ୍ କରିଥିବା ଡାକ୍ତର ଓ କେତେକ କଂପାଉଣ୍ଡର୍ ଥିଲେ । ଡାକ୍ତରବାବୁ ଜଣେ ମେଳାପୀ ଓ ଧର୍ମପରାୟଣ ବ୍ୟକ୍ତି ଥିଲେ । ସେ ଅନେକ ସମୟରେ ଆସି ମୋ ସହିତ ଆଳାପ-ଆଲୋଚନା କରୁଥିଲେ । ସେ ଜଣେ ରାମଭକ୍ତ ଥିଲେ । ସେ କାଗଜରେ କୋଟିଏ ଥର ରାମନାମ ଲେଖିଥିଲେ ।

**ରାଜନୈତିକ ପରିସ୍ଥିତି –**

**କ୍ରିପସ୍ ମିଶନ୍‌ର ବିଫଳତା –** ସାର୍ ଷ୍ଟାଫୋର୍ଡ୍ କ୍ରିପସ୍ ୧୯୪୨ ମସିହା ମାର୍ଚ୍ଚ ମାସ ୨୩ ତାରିଖରେ ଭାରତୀୟ ନେତାମାନଂକ ସହିତ ଆଲୋଚନା କରି ସମାଧାନର ସୂତ୍ର ବାହାର କରିବା ପାଇଁ ଭାରତକୁ ଆସିଥିଲେ । ମାତ୍ର ସେ ଭାରତର ବିଭିନ୍ନ ଦଳର ତୁଂଗ ନେତାମାନଂକ ସହ ଆଲୋଚନା କରି କୌଣସି ସମାଧାନର ପନ୍ଥା ବାହାରକରିପାରିନଥିଲେ । ତା'ପରେ ସେ ହଠାତ୍ ବିଲାତ ଫେରିଯିବାରୁ ବ୍ରିଟିଶ୍ ସରକାରଂକର ଏ ଦିଗରେ ଆଂତରିକତା ନାହିଁ ବୋଲି ସମସ୍ତଂକର ଧାରଣା ସୃଷ୍ଟିହୋଇଥିଲା । ସେ ସ୍ୱାୟତ୍ତଶାସନ କ୍ଷମତା ଯୁଦ୍ଧପରେ ଦେବାକୁ ସୁପାରିଶ୍ କରି ୧୯୪୨ ମସିହା ମାର୍ଚ୍ଚ ୩୦ ତାରିଖରେ ତାଂକ ପ୍ରସ୍ତାବ ଦେଇଥିଲେ । ମାତ୍ର ଏହାକୁ ମୁସଲିମ୍ ଲିଗ୍ ଓ କଂଗ୍ରେସ ଉଭୟେ ପ୍ରତ୍ୟାଖ୍ୟାନ କରିଥିଲେ । ମହାତ୍ମା ଗାଂଧୀ ଏହାକୁ ଏକ 'Post-dated Cheque' ବୋଲି କହିଥିଲେ । ମୁସଲିମ୍ ଲିଗ୍ ଏହାକୁ ତାଂକର ତା ୧୧-୪-୧୯୪୨ ପ୍ରସ୍ତାବରେ ପ୍ରତ୍ୟାଖ୍ୟାନ କରିଥିଲେ; କାରଣ ଏଥିରେ ପାକିସ୍ଥାନ କଥା ନଥିଲା । ତେଣେ ବିଲାତରେ ଚର୍ଚ୍ଚିଲ୍ ସରକାର ମଧ୍ୟ କ୍ରିପସଂକ କ୍ଷମତା ହସ୍ତାଂତର ପ୍ରସ୍ତାବକୁ ଗ୍ରହଣ କରିନଥିଲେ । ତେଣୁ ଏହା ସବୁ ଦିଗରୁ ବିଫଳ ହୋଇଥିଲା ।

ଏଣୁ ଜାପାନର ଭାରତ ଆକ୍ରମଣ କ୍ରମେ ଅଧିକ ବିପଦଜନକ ହୋଇଉଠୁଥିଲା । ଜାପାନ ୧୯୪୧ ମସିହା ଡିସେମ୍ବର ମାସରେ ସିଂଗାପୁର, ମାଳୟ ଓ ଇଣ୍ଡୋଚାଇନା ଅଧିକାର କରିନେଇଥିଲା । ୧୯୪୭ ମସିହା ମାର୍ଚ୍ଚରେ ଜାପାନ ବର୍ମାର ରାଜଧାନୀ ରେଂଗୁନ୍ ଦଖଲକଲା । ନେତାଜୀ ସୁଭାଷ ବୋଷଂକ ନେତୃତ୍ୱରେ ଆଜାଦ ହିଂଦ୍ ଫୌଜ ରେଂଗୁନଠାରୁ ଭାରତ-ଅଭିଯାନ ଚଳାଇ ରାମୁ, କୋହିମା ଓ ମଣିପୁର ଦଖଲ କରିଥିଲେ । 'ଦିଲ୍ଲୀ ଚଲୋ' ଧ୍ୱନି ଦେଇ ସେମାନେ ଭାରତ ଆଡ଼କୁ ଅଗ୍ରସର ହେଉଥିଲେ । ଏହି ଆଜାଦ ହିଂଦ୍ ଫୌଜ ଭାରତୀୟ ସୈନ୍ୟବାହିନୀର ଏକ ଅଂଶବିଶେଷ ଥିଲା । ୧୯୪୧ ମସିହା ଡିସେମ୍ବର ୭ ତାରିଖରେ ଜାପାନ ବ୍ରିଟେନ୍ ଶକ୍ତି ବିରୁଦ୍ଧରେ ଯୁଦ୍ଧ ଘୋଷଣା କରେ ଏବଂ ସିଂଗାପୁର ଓ ମାଳୟ ପ୍ରଭୃତି ଦଖଲକରେ । ସେଠାରେ ରାଜୀବ ଭାରତୀୟ ସୈନ୍ୟମାନଙ୍କୁ ନେଇ ଯେଉଁମାନଂକର ସଂଖ୍ୟା ପ୍ରାୟ ୪୫,୦୦୦ ଥିଲା; ଆଜାଦ୍ ହିଂଦ୍ ଫୌଜ ଜାପାନରେ ନିର୍ବାସିତ ବିପ୍ଳବୀ ନେତା ରାସବିହାରୀ ବୋଷ ଓ ମୋ ନେତୃତ୍ୱରେ ଗଠିତ ହୋଇଥିଲା । ପରେ ସେମାନଂକ ନିମଂତ୍ରଣକ୍ରମେ ଆସି ଏହାର ଅଧିନାୟକତ୍ୱ ଗ୍ରହଣ କରିଥିଲେ । ନେତାଜୀଂକ ପ୍ରେରଣା . . . ଯୁକ୍ତରାଷ୍ଟ୍ର ଆମେରିକାର ପ୍ରେସିଡେଂଟ୍ ରୁଜ୍‌ଭେଲ୍‌ଟ ଏବଂ ଚୀନ୍‌ର ପ୍ରଧାନମଂତ୍ରୀ ଚ୍ୟାଂଗ୍-କାଇସେକ୍ ମଧ୍ୟ ଭାରତକୁ ସ୍ୱାଧୀନତା ଦେବାକୁ ଏବଂ କ୍ଷମତା ହସ୍ତାତଂର କରିବାପାଇଁ ବ୍ରିଟିଶ୍ ସରକାର ଉପରେ ଚାପ ଦେଉଥାଂତି । ଭାରତର ବଡ଼ଲାଟ୍ ଲିନ୍‌ଲିଥ୍‌ଗୋ ସ୍ୱାଧୀନତା ସଂଗ୍ରାମକୁ

ଦବାଇବାପାଇଁ ଦମନନୀତି ଚଳାଇଥାଂତି। ସେ ବଦଳିହୋଇଯାଇ ତାଂକ ସ୍ଥାନରେ ଲର୍ଡ ୱାଭେଲ୍ ବଡ଼ଲାଟ୍ ହୁଅଂତି।

**ବ୍ରିଟିଶ୍ ପ୍ରଧାନମଂତ୍ରୀ ଅଟଲିଂକ ଘୋଷଣା –**

ବ୍ରିଟିଶ୍ ସରକାର ମଧ୍ୟ ପରିବର୍ତ୍ତିତ ହୁଏ। ଯୁଦ୍ଧ ପରେ ପ୍ରଧାନମଂତ୍ରୀ ଚର୍ଚ୍ଚିଲ୍ ଇସ୍ତଫା ଦିଅଂତି; ତାଂକ ସ୍ଥାନରେ ଶ୍ରମିକଦଳ (ଲେବର ପାର୍ଟି) କ୍ଷମତାକୁ ଆସେ। ପ୍ରଧାନମଂତ୍ରୀ ହୁଅଂତି ମି. ଅଟଲି। ମି. ଅଟଲି ଓ ତାଂକ ଶ୍ରମିକ ଦଳ ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦେବାର ପକ୍ଷପାତୀ ଥିଲେ। ସେ ଭାରତୀୟ ନେତାମାନଂକ ସହିତ ସ୍ୱାଧୀନତା ପ୍ରଦାନ ବିଷୟରେ ଆଲୋଚନା କରିବା ପାଇଁ ଏକ କ୍ୟାବିନେଟ୍ ମିଶନ ପଠାଇଥିଲେ। ଏହି କ୍ୟାବିନେଟ୍ ମିଶନ୍‌ର ସଭ୍ୟ ଥିଲେ ବ୍ରିଟିଶ୍ ସରକାରଂକ ଭାରତ ସଚିବ ପେଥିକ୍ ଲରେନ୍ସ, ସାର୍ ଷ୍ଟାଫୋର୍ଡ କ୍ରିପସ୍ ଏବଂ ଏ.ଭି. ଆଲେକ୍‌ଜାଣ୍ଡାର୍ ପ୍ରମୁଖ। ପ୍ରଧାନମଂତ୍ରୀ ଅଟଲୀ ଘୋଷଣା କଲେ: "The Cabinet Mission was visiting India with the intention of enabling India to achieve her independence" ଅର୍ଥାତ୍: "ଭାରତକୁ ସ୍ୱାଧୀନତା ପାଇବାରେ ସବୁପ୍ରକାର ସାହାଯ୍ୟ କରିବା ଉଦ୍ଦେଶ୍ୟରେ କ୍ୟାବିନେଟ୍ ମିଶନ ଭାରତ ପରିଦର୍ଶନ କରୁଛନ୍ତି।" କ୍ୟାବିନେଟ୍ ମିଶନ ୨୪-୩-୧୯୪୬ ତାରିଖରେ ଦୀଲ୍ଲିରେ ପହଂଚିଥିଲେ। ସେମାନେ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍‌ର ନେତାମାନଂକ ସହିତ ଆଲୋଚନା ଚଳାଂତି। ମୁସ୍‌ଲିମ୍ ଲିଗ୍ ଏବଂ ତାଂକର ନେତା ମି. ମହମ୍ମଦ ଅଲ୍ଲି ଜିନ୍ନା ଏକା ଜିଦ୍ ଧରିବସିଥାଂତି ଯେ ଭାରତ ହିଂଦୁସ୍ଥାନ ଓ ପାକିସ୍ଥାନ ଦୁଇଟି ଭାଗରେ ବିଭକ୍ତ ହେବ ଏବଂ ମୁସଲମାନମାନଂକୁ ପାକିସ୍ତାନ ଦିଆଯିବ। ପାକିସ୍ଥାନରେ ଆସାମ, ସଂପୂର୍ଣ୍ଣ ବଂଗଦେଶ, ସଂପୂର୍ଣ୍ଣ ପଂଜାବ, ସିଂଧୁ, ନର୍ଥ-ୱେଷ୍ଟ୍ ଫ୍ରଂଟିୟର୍ ପ୍ରଭିନ୍ସ, ବେଲୁଚିସ୍ଥାନ ଅଂତର୍ଗତ ହେବ। ମାତ୍ର କ୍ୟାବିନେଟ୍ ମିଶନ ମୁସ୍‌ଲିମ୍ ଲିଗ୍‌ର ଦାବିକୁ ଗ୍ରହଣ କରିପାରିନଥିଲା। ମିଶନର ଯୁକ୍ତି ଥିଲା ଏପରି କରାଗଲେ ସଂଖ୍ୟାଲଘୁ ସମସ୍ୟା ପୂର୍ବପରି ରହିବ; କାରଣ ଲିଗ୍ ଦାବିକରୁଥିବା ରାଜ୍ୟଗୁଡ଼ିକରେ ବହୁସଂଖ୍ୟାଗରିଷ୍ଠ ହିଂଦୁ ଅଂଚଳ ରହିଯିବ, ସେମାନେ କହିଥିଲେ– "We are mindful of the rights of the minorities and the minorities should be able to live free from fear. On the other hand we can not allow a minority to place their veto on the advance of the majority." ଅର୍ଥାତ୍– "ଆମେ ସଂଖ୍ୟାଲଘୁ ସଂପ୍ରଦାୟର ସ୍ୱାର୍ଥ ବିଷୟରେ ଅବହିତ ଅଛୁ। ଆମେ ଚାହୁଁ ସେମାନେ ସ୍ୱାଧୀନଭାବରେ ଭୟମୁକ୍ତ ହୋଇ ବାସକରଂତୁ। ଅନ୍ୟପକ୍ଷରେ ସଂଖ୍ୟାଗରିଷ୍ଠ ସଂପ୍ରଦାୟର ଲୋକମାନଂକ ଅଗ୍ରଗତିକୁ ପଂଡକରିବାପାଇଁ ସେଥିରେ 'ଭିଟୋ' ପ୍ରୟୋଗ କରିବାକୁ ସେମାନଂକୁ ଅନୁମତି ଦିଆଯିବ ନାହିଁ।"

୧୯୪୭ ସାଲ ମାର୍ଚ୍ଚ ମାସରେ ଲର୍ଡ ମାଉଁଟବେଟନ ଲର୍ଡ ୱେଭଲଂକ ସ୍ଥାନରେ ଭାରତବର୍ଷର ଭାଇସ୍‌ରୟ ଏବଂ ଗଭର୍ଣର ଜେନେରାଲ ରୂପେ କାର୍ଯଭାର ଗ୍ରହଣକରଂତି। ସେ ଭାରତ ସ୍ୱାଧୀନତା ପାଇବାର ପ୍ରସ୍ତୁତିପର୍ବରେ ପ୍ରଧାନ ଭୂମିକା ଗ୍ରହଣ କରିଥିଲେ।

**ଯୁଦ୍ଧ ପରିସ୍ଥିତି –**

ଜର୍ମାନୀ ହିଟଲରଂକ ନେତୃତ୍ୱରେ ସମଗ୍ର ୟୁରୋପ ପ୍ରତି ପ୍ରବଳ ବିପଦ ସୃଷ୍ଟିକରିଥିଲା। ନାଜୀ ଜର୍ମାନ୍ ବାହିନୀ ଡେନ୍‌ମାର୍କ, ପୋଲାଂଡ଼, ନରଓୟେ, ହଲାଂଡ଼, ବେଲ୍‌ଜିୟମ୍ ଏବଂ ଫ୍ରାନ୍‌ସ ଅଧିକାର କରିଥିଲା। ମାତ୍ର ଚର୍ଚ୍ଚିଲ୍ ଇଂଲଂଡ଼ର ପ୍ରଧାନମଂତ୍ରୀ ହେବାପରେ ଅବସ୍ଥା ସୁଧାରିଯାଏ।

ତାଂକ ନେତୃତ୍ୱରେ ମିତ୍ର ବାହିନୀ ନାଜୀ ଜର୍ମାନୀର ଅଗ୍ରଗତିକୁ ପ୍ରତିହତ କରି ବହୁଦେଶ ପୁନଃଅଧିକାର କରଂତି।

**ଫାସିଷ୍ଟମାନଂକର ପରାଜୟ –**

୧୯୪୫ ମସିହା ମଇ ମାସ ୭ ତାରିଖରେ ନାଜୀ ଜର୍ମାନୀ ଓ ଜାପାନ ବିନା ସର୍ତରେ ଆତ୍ମସମର୍ପଣ କଲେ। ଏହାପରେ ଦ୍ୱିତୀୟ ମହାଯୁଦ୍ଧର ଅବସାନ ଘଟିଲା। କେଉଁଠି କାଁ-ଭାଁ ଟିକିଏ ଯୁଦ୍ଧ ଲାଗିଥାଏ ସତ; ମାତ୍ର ମୋଟ ଉପରେ ବିଶ୍ୱଯୁଦ୍ଧ ପରିସମାପ୍ତ ହୋଇଥିଲା।

**ପରମାଣୁ ବୋମା –**

ଏହି ପରିପ୍ରେକ୍ଷୀରେ ଯୁକ୍ତରାଷ୍ଟ୍ର ଆମେରିକା ୧୯୪୫ ମସିହା ଅଗଷ୍ଟ ୮ ତାରିଖରେ ଜାପାନର ନାଗାସାକୀ ଓ ହିରୋସିମା ଉପରେ ପରମାଣୁ ବୋମା ନିକ୍ଷେପକରେ। ଫଳରେ ଲକ୍ଷାଧିକ ଲୋକଂକର ମୃତ୍ୟୁ ହୋଇଥିଲା ଏବଂ ହଜାର ହଜାର ଲୋକ ଆହତ ଓ ବିକଳାଂଗ ହୋଇଥିଲେ। ଦୁଇଟିଯାକ ସହର ଧ୍ୱଂସସ୍ତୂପରେ ପରିଣତ ହୋଇଥିଲା। ଏଭଳି ନାରକୀୟ କାଂଡ ଯେ ମଣିଷ କରିପାରେ, ତାହା ବିଶ୍ୱାସ କରିବା କଠିନ। ଯୁଦ୍ଧ ସରିଆସିବା ଯରେ ଏବଂ ମଇ ମାସରେ ଜାପାନ ଆତ୍ମସମର୍ପଣ କରିବାର ତିନିମାସ ପରେ ଏଭଳି ସାମୂହିକ ଗଣହତ୍ୟାର ଦୃଷ୍ଟାଂତ ଇତିହାସରେ ବିରଳ ଓ ସଂପୂର୍ଣ ଅମାନୁଷିକ। ଯୁକ୍ତରାଷ୍ଟ୍ର ଆମେରିକାରେ ସେତେବେଳେ ଡେମୋକ୍ରେଟିକ୍ ପାର୍ଟି ଶାସନକ୍ଷମତାରେ ଥାଂତି। ଟ୍ରୁମ୍ୟାନ ଥାଂତି ପ୍ରେସିଡେଂଟ। ଏ ଘଟଣାପାଇଁ ମନୁଷ୍ୟ ଜାତି କଦାପି ଆମେରିକାକୁ କ୍ଷମାଦେବେନାହିଁ।

**ନେତାଜୀ ସୁଭାଷ ବୋଷ –**

ଜାପାନର ଶୋଚନୀୟ ପରାଜୟ ପରେ ନେତାଜୀ ସୁଭାଷ ବୋଷ ଏକ ଉଡ଼ାଜାହାଜରେ ଜାପାନ ପଳାଇଯାଆଂତି। ମାତ୍ର ବାଟରେ ଦୁର୍ଘଟଣାଗ୍ରସ୍ତ ହୋଇ ସେ ଉଡ଼ାଜାହାଜଟି ଧ୍ୱଂସ ହୋଇଯାଏ ବୋଲି ପ୍ରକାଶ। ଆଜାଦ୍ ହିଂଦ୍ ଫୌଜର ଅନ୍ୟାନ୍ୟ ନେତାମାନଂକର ଦିଲ୍ଲୀ ଲାଲକିଲ୍ଲାରେ ଏକ ସ୍ୱତଂତ୍ର କୋର୍ଟରେ ବିଚାର

ହୁଏ। ତିନିଜଣ ମୁଖ୍ୟସେନାଧକ୍ଷ ସାହାନଓ୍ୱାଜ, ମେଜର ଧିଲନ୍ ଓ ସାଇଗଲ ମୃତ୍ୟୁଦଂଡରେ ଦଂଡିତ ହୁଅଂତି। ମାତ୍ର ଭାଇସରୟ ନିଜର ସ୍ୱତଂତ୍ର କ୍ଷମତା ପ୍ରୟୋଗକରି ସେମାନଂକୁ ମାଫ୍ କରିଦିଅଂତି। ଆଇ.ଏନ୍.ଏ. ପକ୍ଷରେ ଲଢୁଥିଲେ ବିଖ୍ୟାତ ଆଇନଗ୍ୟଁ ଭୁଲାଭାଇ ଦେଶାଇ, ତେଜ ବାହାଦୁର ସାପ୍ରୁ ପ୍ରଭୃତି।

**ଭାରତରେ ସାଂପ୍ରଦାୟିକ ଦଂଗା –**

ଏହାପୂର୍ବରୁ ଭାରତରେ ଭୟଂକର ସାଂପ୍ରଦାୟିକ ଦଂଗା ଦେଖାଦେଇଥିଲା। ୧୯୪୬ ମସିହା ଅଗଷ୍ଟ ମାସରେ ପାକିସ୍ଥାନର ଅଂତର୍ଭୁକ୍ତ ପଂଜାବରେ ଓ ବଂଗରେ ହିଂଦୁ ମୁସଲମାନମାନଂକ ମଧ୍ୟରେ ହଣାକଟା, ଲୁଟତରାଜ ଓ ନାରୀଧର୍ଷଣ ପ୍ରଭୃତି ଆରଂଭ ହୋଇଯାଏ। ପାକିସ୍ଥାନରେ ଅଂତର୍ଭୁକ୍ତ ପଂଜାବର ବହୁ ଅଂଚଳରୁ ହିଂଦୁମାନେ ପିଲାପିଲିନେଇ ନିରାପଦ ଅଂଚଳକୁ ପଳାଇଯାଆଂତି। ଭାରତ ଅଂତର୍ଗତ ପଂଜାବର ବହୁ ମୁସଲମାନ ନରନାରୀ ପିଲାପିଲି ନେଇ ପାକିସ୍ଥାନ ପଳାଇଯାଇଥିଲେ। ବହୁ ନାରୀ ପିଲାମାନଂକୁ ନେଇ କୂଅ ପୋଖରୀକୁ ଡେଇଁପଡ଼ି ଆତ୍ମହତ୍ୟାକରଂତି। ହଜାର ହଜାର ସଂଖ୍ୟାରେ ହିଂଦୁ ମୁସଲମାନ ନରନାରୀ ମୃତାହତ ହୁଅଂତି। ବଂଗଦେଶରେ ସାଂପ୍ରଦାୟିକ ଦଂଗା ବ୍ୟାପୀଯାଏ। କଲିକତାରେ ଏବଂ ମାଟିଆ ବୁରୁଜରେ ଦଂଗା ଭୀଷଣ ଆକାର ଧାରଣକରେ।

**ମାଟିଆବୁରୁଜରେ ଭୀଷଣ ଦଂଗା –**

୧୯୪୬ ମସିହା ଅଗଷ୍ଟ ମାସରେ ନାହିଁନଥିବା ଦଂଗା ଜୀବନଯାତ୍ରାକୁ ସଂପୂର୍ଣ୍ଣ ଅଚଳ କରିଦିଏ। ଆମ କେଶୋରାମ କଟନ୍ ମିଲ୍‌ର ତିନିପାଖରେ ମୁସଲମାନ ବସ୍ତି। ଉତ୍ତରପଟରେ ମିଲ୍ ଓ ଗଂଗାନଦୀ। ଆମ ମିଲ୍ ଲାଇନ୍‌ରେ ପ୍ରାୟ ଚାରି-ପାଂଚ ହଜାର ହିଂଦୁ ଶ୍ରମିକ ଚାରି-ପାଂଚଟି ବଡ଼ ବଡ଼ ଚାରିମହଲା କୋଠାରେ ରହୁଥାଂତି। ବାହାରୁ ମଧ୍ୟ ବହୁସଂଖ୍ୟାରେ ହିଂଦୁ ଶ୍ରମିକ ପଳାଇ ଆସି ସେଠାରେ ଆଶ୍ରୟ ନେଇଥାଂତି। ମୁଁ ମଧ୍ୟ ଶ୍ରମିକ ଲାଇନ୍‌ରେ ଗୋଟିଏ ସ୍ୱତଂତ୍ର କ୍ୱାଟରରେ ଚାରିତାଲାରେ ରହିଥାଏ। ଲାଇନ୍ ଚାରିପଟେ ଶକ୍ତ ଇଟାର ପାଚେରି। ମଝିରେ ଗେଟ୍; ବଂଧୁକଧାରୀ ଦରୁଆନମାନେ ଜଗିରହିଥାଂତି। ଲାଇନ୍‌ର ସବୁ ଶ୍ରମିକ ହିଂଦୁ ଥିଲେ। ମୁସଲମାନମାନେ ବାହାରୁ ଆସି ଆମ ଲାଇନ୍ ଭିତରେ ପଶି ଦଂଗାହଂଗାମା କରିବା ସଂଭବନଥିଲା; କାରଣ ଏହା ଏକ ସୁରକ୍ଷିତ ଦୁର୍ଗ ପରି ଥିଲା। ମାତ୍ର ଯେଉଁ ହିଂଦୁ ଶ୍ରମିକ ବାହାରେ ଭଡ଼ାଘରେ ରହୁଥିଲେ ସେମାନଂକ ମଧ୍ୟରୁ ଅଧିକାଂଶ ଦଂଗାରେ ମୃତାହତହୋଇଥିଲେ; କେତେକ ମଧ୍ୟ ନିଖୋଜ ହୋଇ-ଯାଇଥିଲେ। ପ୍ରାୟ ହଜାର ହଜାର ସଂଖ୍ୟାରେ ହିଂଦୁ ନାଗରିକ ଏବଂ ବହୁସଂଖ୍ୟକ ମୁସଲମାନ ନରନାରୀ ପରିବାର ସହ ଏହି ଦଂଗାରେ ପ୍ରାଣହରାଇଥିଲେ।

ରାତିରେ ଯେତେବେଳେ ହଜାର ହଜାର ମୁସଲମାନ ଲାଇନ୍ ସେପଟୁ "ଆଲ୍ଲା ହୋ ଆକବର" ଧ୍ୱନି ଦିଅଂତି, ସେତେବେଳେ ହିଂଦୁମାନେ ଭୟତ୍ରସ୍ତ

ହୋଇପଡ଼ନ୍ତି । ଆମେ ସବୁ ଲାଇନ୍ ଓ ମିଲ୍ ଭିତରେ ଥାଉଁ । ବେଳେବେଳେ ସେମାନେ "ଲଢ଼କେ ଲେଂଗେ ପାକିସ୍ଥାନ" ଧ୍ୱନି ଦେଉଥାଂତି ।

ଏହି ମାଟିଆବୁରୁଜ ଦଂଗା ଉପରେ ଲିଖିତ ମୋର କବିତା 'ମାଟିଆ ବୁରୁଜର ଜହ୍ନ' 'ପାଂଡୁଲିପି' ପୁସ୍ତକରେ ସନ୍ନିବିଷ୍ଟ ହୋଇଛି । ତାହା ଅନେକ ପାଠକ-ପାଠିକା ଆଜିଯାଏ ମନେରଖିଛନ୍ତି । ସେଥିରୁ କେତେକ ପଂକ୍ତି ତଳେଦିଆଗଲା –

**'ମାଟିଆବୁରୁଜର ଜହ୍ନ' –**

ମାଟିଆବୁରୁଜର ମଇଳା ଆକାଶରେ
ଜହ୍ନ ଉଠିଛି ।
ଛୋଟ ଛୋଟ ଆଲୁଅର ବିଚି
ଚାରିଆଡ଼େ ଖେଳେ ।
ଜହ୍ନ ଉଠିଛି ଆହା, ଉଠୁ ଉଠୁ,
ପଦ୍ମ ଫୁଟୁ
ଏଇ ଅଂଧାରେ
ମୋ ମନରେ ବି ବେଳେବେଳେ
ଜହ୍ନ ଉଠେ
ସୂର୍ଯ୍ୟ ଛୁଟେ ।
ମୁଁ ବି କବିତା ଲେଖେ
ସ୍ୱପ୍ନ ଦେଖେ,
ଛଂଦ ଶିଖୀ ପୁଚ୍ଛତୋଳି ନାଚେ,
ମୋ ମନର ପାହାଚେ
ଉଦୟର ପାଦଚିହ୍ନ ଫୁଟେ ।
କିଂତୁ ତାପରେ ଯେତେବେଳେ ଅତି ବେଗେ ଛୁଟେ,
ଝଡ଼ର ଇଗଲ –
ପ୍ରାଂତିକ ପାତାଳ
ଆଉ ଆକାଶର ମର୍ମସ୍ଥଳୁ ଉଠେ ହାହାକାର
ଶୁକ୍ରତାରା ନିଭିଯାଏ ।
ରାତି ପାହେ କିଂତୁ ସକାଳ ହୁଏନା
ସଂକୀର୍ଣ୍ଣ ଇଦ୍‌ର ଜହ୍ନ ଓ ଅପରିଚ୍ଛନ୍ନ
ସେ ପାରି ଉହାଡ଼େ ଡଂକିମାରେ
ଆମ ମଣିଷକୁ ମୁଁ ଆଦିମ ତୁଷାର ବନର
ଜାନୁଆର ସାଂଗରେ
ତୁଳନା କରେ ॥

ଭାବେ କଣ ଆମେ ସଭ୍ୟତାର
ଶ୍ୱାପଦଂକଠାରୁ
ଆମଠାରୁ ସେ ଅଧିକ ବର୍ବର
ହୋଇପାରେ ବି ଅଧିକ ନଖର
ଆହୁରି କର୍କଶପୂର୍ଣ ଅତୀବ ଲୋମଶ
କିଂତୁ ଢେର୍ ପରିଚ୍ଛନ୍ନ ସେମାନେ ଆମଠୁ
ଯେହେତୁ ସେମାନଂକଠୁ –
ଝରେ ନାଇ ଅମୁକ-ସମୁକ ବାଦ
ଜୀବନର ସ୍ୱାଧୀନ ଆନଂଦର ସ୍ୱାଦ
ସେମାନଂକର ରକ୍ତଗଢ଼ା
ସେମାନେ ନୁହଂତି ହିଂଦୁ କିଂବା ମୁସଲମାନ
ଧର୍ମ ସେମାନଂକର ଏକାଠି ରହିବା
କିଂବା ଲଢ଼େଇ କରିବା
ପ୍ରେମ ପାଇଁ ଖାଦ୍ୟ ପାଇଁ
କିଂବା ଏଇ କଳ୍ପିତ ଧର୍ମଛଡ଼ା ସବୁକିଛି ପାଇଁ।
ହଠାତ କିଂତୁ ସବୁ ନିର୍ଜନ ହୋଇଗଲା
ହଠାତ୍ ହୋଇଗଲା
ଜନଶୂନ୍ୟ ଲାଗେ ଜନପଦ
ଅସଂଖ୍ୟ ଜୀବନର ଭଂଗା ନୀଡ଼
ଏଠାରେ ଝଡ଼ରେ ଗଲା ପଡ଼ି
କେହି ପାରିଲେନି ରକ୍ଷାକରି
କେହି ଜଣେହେଲେ ନୁହେଁ॥
ସେ ଝାଳ ଲହୁ ଲୁହେ
କିଏ କାଟିଲା ନାରୀର ସ୍ତନ
କିଏ ତାର ଯୌନଦ୍ୱାରରେ ବିଦ୍ଧ କଲା ଛୁରି
ରାସ୍ତାର ସିମେଂଟ ଗଲା ଲୁହ ଆଉ ଲହୁରେ ବତୁରି
ବିଧର୍ମୀ ନାରୀର ଶବ
ଶିଶୁ ବୃଦ୍ଧ, ରୁଦ୍ଧ ଆର୍ତରବ
ଗଲାନାଇ ଶୁଣା
ଏଇ ଅତ୍ୟଂତ ପୁରୁଣା
କଥା ପୁଣି ଗଲା ଶୁଣା
ଏ ଯୁଗରେ ॥

**ବିଶ୍ୱନାଥ ଦାସଂକ ଆଗମନ –**

ଦଂଗାଗୋଳ ଲାଗିବାର ପ୍ରାୟ ୩-୪ ଦିନ ବିତିଯାଇଥିଲେ ମଧ୍ୟ ବଂଗ ସରକାର ମାଟିଆବୁରୁଜକୁ କୌଣସି ପୁଲିସ ଫଉଜ ପଠାଇନଥିଲେ। ଏହି ସମୟରେ କୌଣସି ସାହାଯ୍ୟ ନପାଇ ମାଟିଆବୁରୁଜର ଲୋକେ କି ହିଂଦୁ, କି ମୁସଲମାନ ବଡ଼ ଭୟଭୀତ ହୋଇ ରହିଥାଂତି। ଏହି ସମୟରେ ମୁଁ ଓଡ଼ିଶାର ଭୂତପୂର୍ବ କଂଗ୍ରେସ ପ୍ରଧାନମଂତ୍ରୀ ଓ ଓଡ଼ିଶା ପି.ସି.ସି. ସଭାପତି ବିଶ୍ୱନାଥ ଦାସଂକୁ ଏକ ଟେଲିଗ୍ରାମ କରି ମାଟିଆବୁରୁଜର ଶ୍ରମିକ, ବିଶେଷକରି ଓଡ଼ିଆ ଶ୍ରମିକମାନଂକର ଅବସ୍ଥା ବୁଝି ପ୍ରତିକାର କରିବାପାଇଁ ଅନୁରୋଧକଲି। ସେ ଟେଲିଗ୍ରାମ୍ ପାଇ ସଂଗେସଂଗେ କଲିକତା ଆସି ମାଟିଆବୁରୁଜରେ ମୋର ଅତିଥି ହୋଇରହିଲେ।

ସେତେବେଳେ ମୁଁ ଏକୁଟିଆ ମୋ କ୍ୱାଟରରେ ରହୁଥାଏ। ମୋ ସ୍ତ୍ରୀ ଓ ବଡ଼ ଝିଅ ମଂଜୁଶ୍ରୀ ଗୋଲାପଲ୍ଲୀରେ ଥାଂତି। ମୁଁ ସେମାନଂକୁ କଲିକତା ଆଣୁନଥାଏ। କାରଣ କଲିକତାର ଅବସ୍ଥା ବଡ଼ ଆଶଂକାଜନକ ଥାଏ। ମୋ ବଡ଼ଝିଅ ମଂଜୁଶ୍ରୀର ଜନ୍ମ ୧୯୪୬ ମସିହା ମାର୍ଚ୍ଚ ୧୫ ତାରିଖରେ ଗୋଲାପଲ୍ଲୀଠାରେ। ସେତେବେଳକୁ ସେ ୪-୫ ମାସର ପିଲା।

ବିଶ୍ୱନାଥ ଦାସ ଆସିବାପରେ ସେ ଓ ମୁଁ ଏକ ଗାଡ଼ିରେ ଯାଇ ଅବିଭକ୍ତ ବଂଗର ପ୍ରଧାନମଂତ୍ରୀ ସୁରାବର୍ଦ୍ଦି ସାହେବଂକ ସହ ସାକ୍ଷାତକଲୁ ଓ ତାଂକୁ ମାଟିଆବୁରୁଜରେ ହୋଇଥିବା ଭୀଷଣ ଦଂଗା ବିଷୟରେ ସମସ୍ତ ତଥ୍ୟ ଦେଲୁ। ମାଟିଆବୁରୁଜ ବଜାରରେ ଏଲ୍ଲିୟାସ ବିଲ୍‌ଡ଼ିଂରେ ବହୁ ଓଡ଼ିଆ ଶ୍ରମିକ ରହୁଥାଂତି। ସେମାନଂକର ପତ୍ତା ମିଳୁନଥାଏ। ଏ ସମସ୍ତ ବିଷୟ ଶୁଣି ସେ ତୁରଂତ ପୁଲିସ ଓ ସୈନ୍ୟ ପ୍ରାୟ ୪-୫ ଗାଡ଼ି ପଠାଇବାକୁ ସଂପୃକ୍ତ କର୍ତ୍ତୃପକ୍ଷଂକୁ ଟେଲିଫୋନ୍‌ରେ ନିର୍ଦ୍ଦେଶଦେଲେ। ପୁଲିସ ଓ ସୈନ୍ୟମାନେ ଆସିବା ପରେ ଅବସ୍ଥା ଥଂଡା ପଡ଼ିଲା।

**ଶାଂତି ଶୋଭାଯାତ୍ରା –**

ମାଟିଆବୁରୁଜ ଦଂଗା ଲାଗିବାର ଚତୁର୍ଥ ଦିନ ଆମେ ଗୋଟିଏ ଶାଂତି ଶୋଭାଯାତ୍ରା ବାହାରକରିଥିଲୁ। ଗୋଟିଏ ଖୋଲା ଜିପ୍‌ରେ ମୁଁ ଓ ଗାର୍ଡ଼େନ୍‌ରିଚ୍ ମୁନିସିପାଲିଟିର ଚେୟାରମ୍ୟାନ, ଡା. କବୀରଂକ ଜ୍ୟେଷ୍ଠପୁତ୍ର ଏସ୍.ଏମ୍. ଅବ୍‌ଦୁଲ୍ଲା କଂଗ୍ରେସ ଓ ମୁସଲିମ୍ ଲିଗ୍ ପତାକା ଧରି ମାଟିଆବୁରୁଜ ପରିଭ୍ରମଣ କରି ଦଂଗା ବଂଦକରିବାପାଇଁ ସମସ୍ତଂକୁ ହାତଯୋଡ଼ି ଅନୁରୋଧ କରିଥିଲୁ। ସଂଗରେ ୪-୫ ଜଣ ହିଂଦୁ ମୁସଲମାନ ନାଗରିକ ମଧ୍ୟ ଥାଂତି। ଆମେ ଶୋଭାଯାତ୍ରାରେ ଗଲାବେଳେ ଆମ ପଛରେ ବହୁ ହିଂଦୁ ଓ ମୁସଲମାନ ଭାଇ ମଧ୍ୟ ଚାଲିଥାଂତି। ସମସ୍ତେ "ହିଂଦୁ ମୁସଲମାନ୍ ଭାଇ ଭାଇ" ଓ "ଦଂଗା ବଂଦକର" ଧ୍ୱନି ଦେଉଥାଂତି। ଏହାପରେ ଦଂଗା ବଂଦହୋଇଗଲା। ଆମେ ଶାଂତି ପଟୁଆରରେ ଗଲାବେଳେ ଆମ ଦୁଇପାଖ ରାସ୍ତାକଡ଼ରେ ବହୁ ହିଂଦୁ ମୁସଲମାନଂକ ମୃତଦେହ

ପଡ଼ିଥିବାର କରୁଣ ଦୃଶ୍ୟ ଦେଖିଥିଲୁ। କେତେକ ନାରୀଂକର ସ୍ତନ କାଟି-ଦିଆଯାଇଥିଲା। ସେମାନେ ମୁମୂର୍ଷୁ ଅବସ୍ଥାରେ ପଡ଼ିଥିଲେ। ଟିକିଏ ପାଣି ଦିଅ ବୋଲି କ୍ଷୀଣ ସ୍ୱରରେ କହୁଥାଂତି। ସେ ଦୃଶ୍ୟ ମୁଁ କଦାପି ଭୁଲିପାରିବିନାହିଁ।

**ଦେଶ ବିଭାଜନ –**

ଲର୍ଡ ମାଉଂଟବେଟେନ୍ ୧୯୪୭ ମସିହା ମାର୍ଚ ମାସରେ ଭାରତର ବଡ଼ଲାଟ ହୋଇ ଆସିବାପରେ ଭାରତକୁ ସ୍ୱାଧୀନତା ଦେବା ଦିଗରେ ପଦକ୍ଷେପ ନେଲେ। ସେ କଂଗ୍ରେସ ଓ ମୁସଲିମ୍ ଲିଗ୍‌ର ନେତାମାନଂକ ସହ ଘନ ଘନ ଆଲୋଚନା ଚଳାଇଲେ। ମୁସଲିମ୍ ଲିଗ୍‌ର ନେତାମାନେ ପାକିସ୍ଥାନ ଦାବି କରି ପ୍ରବଳ ଆଂଦୋଳନ ସୃଷ୍ଟିକଲେ। ମହାତ୍ମା ଗାଂଧୀ ପ୍ରଥମେ ଭାରତ ବିଭାଜନର ଘୋର ବିରୋଧୀ ଥିଲେ। ସେ କହିଥିଲେ, ''ମୋ ମୃତ ଦେହ ଉପରେହିଁ ପାକିସ୍ଥାନ ଗଢ଼ାଯିବ।'' ମାତ୍ର ପରେ ପଂଡିତ ନେହେରୁ, ସର୍ଦାର ପଟେଲ ଓ ଅନ୍ୟାନ୍ୟ ନେତାମାନଂକ ଚାପରେ ସେ ଦେଶ-ବିଭାଜନ ନୀତିକୁ ମାନିବାକୁ ବାଧ୍ୟହୋଇଥିଲେ। ତାଂକର ଏବଂ ଭାରତବାସୀଂକର ସ୍ୱପ୍ନ ଥିଲା ଅବିଭକ୍ତ ସ୍ୱାଧୀନ ଭାରତ; ମାତ୍ର ସମୟର ପରିହାସରେ ତାହା ସଂଭବ ହେଲାନାହିଁ।

ଲର୍ଡ ମାଉଂଟବେଟେନ୍ ଦେଶ-ବିଭାଜନକୁ ସମାଧାନର ସୂତ୍ରରୂପେ ଗ୍ରହଣକଲେ। ସେ କହିଲେ, ''ଅଖଂଡ ଭାରତହିଁ ପ୍ରକୃତ ଉତ୍ତର; ମାତ୍ର ଦେଶରେ ଯେଉଁଭଳି ସାଂପ୍ରଦାୟିକ ଦଂଗା ଚାଲିଛି ସେ ଦୃଷ୍ଟିରୁ ପାକିସ୍ଥାନ ଦାବିକୁ ମାନିନେବା ଛଡ଼ା ଅନ୍ୟ ଉପାୟ ନାହିଁ।''

"My own feeling was that a united Inida was ofcourse the right answer. But the riot and bloodshed throughout the country made the prospects of its acceptance obviously pretty remote. All Muslim League leaders to whom I spoke made it absolutely clear that they desired partition."

ମହାତ୍ମା ଗାଂଧୀ ମୁସଲିମ୍ ଲିଗ୍ ନେତା ମହମ୍ମଦ ଅଲ୍ଲି ଜିନ୍ନାଂକୁ ପ୍ରସ୍ତାବ ଦେଇଥିଲେ ଯେ ସେ ଅବିଭକ୍ତ ଭାରତର ପ୍ରଧାନମଂତ୍ରୀ ହୁଅଂତୁ; ମାତ୍ର ଭାରତ ଅଖଂଡ ରହୁ। ତାଂକର ଏହି ପ୍ରସ୍ତାବରେ କଂଗ୍ରେସର ଅନ୍ୟ ବରିଷ୍ଠ ନେତାମାନେ ଏକମତ ନଥିଲେ। ପଂଡିତ ନେହେରୁ, ସର୍ଦାର ପଟେଲ ଓ ମୌଲାନା ଆଜାଦ୍ ପ୍ରଭୃତି ଆଶଂକା କରୁଥିଲେ ଯେ ଜିନ୍ନା ଭାରତର ପ୍ରଥମ ପ୍ରଧାନମଂତ୍ରୀ ହେଲେ ସାଂପ୍ରଦାୟିକ ଦଂଗା ଆହୁରି ଭୟଂକର ହେବ ଏବଂ ଦେଶ ରକ୍ତନଦୀରେ ବୁଡ଼ିଯିବ। ସେ ଯାହାହେଉ, ଭାରତ ବିଭାଜନ-ଭିତ୍ତିରେ ସ୍ୱାଧୀନତା ଦେବାକୁ ବ୍ରିଟିଶ ସରକାର ସମ୍ମତ ହେଲେ ଏବଂ ଭାରତୀୟ ନେତୃବୃନ୍ଦ ସେହି ପ୍ରସ୍ତାବକୁ ଗ୍ରହଣକରିନେଲେ। ଭାରତବାସୀଂକର ଯୁଗଯୁଗର ସ୍ୱପ୍ନ ଅଖଂଡ ସ୍ୱାଧୀନ ଭାରତ ସ୍ୱପ୍ନରେହିଁ ମିଳାଇଗଲା।

**ନେତାଜୀ ସୁଭାଷ ବୋଷ ଓ I.N.A. –**

ଏସିଆ ମହାଦେଶରେ ନେତାଜୀ ସୁଭାଷ ବୋଷ ୧୯୪୩ ସାଲ ଜୁନ ମାସରେ ଜର୍ମାନୀରୁ ଆସି ଆଜାଦ ହିନ୍ଦ୍ ଫୌଜର ସେନାନାୟକତ୍ୱ ଗ୍ରହଣ କଲେ । ସେ ସିଂଗାପୁରଠାରେ ଏକ ଅସ୍ଥାୟୀ ସରକାର ସ୍ଥାପନ କଲେ । ଏହି ସରକାରକୁ ଜାପାନ, ଜର୍ମାନୀ, ଫିଲିପିନ୍‌ସ, କୋରିଆ, ଚାଇନା ଏବଂ ଇରିଶ ସରକାରମାନେ ସ୍ୱୀକୃତି ଦେଇଥିଲେ । ପୂର୍ବରୁ କହିଛୁ, ଆଜାଦ୍ ହିନ୍ଦ୍ ଫୌଜ ୧୯୪୪ ମସିହାରେ ରେଙ୍ଗୁନଠାରୁ ଭାରତ ଆକ୍ରମଣ କରିବାକୁ ଅଗ୍ରସର ହେଲେ । ରାମୁ, କୋହିମା ଏବଂ ମଣିପୁର ଆଜାଦ୍ ହିନ୍ଦ୍ ଫୌଜ ଦ୍ୱାରା ଅଧିକୃତ ହେଲା । ନେତାଜୀ ଘୋଷଣା କଲେ, "ଆମ ମାତୃଭୂମି ମୁକ୍ତିର ସଂଧାନ କରିଛି, ମୁଁ ସେ ବିପ୍ଳବୀମାନଂକୁ ଅପେକ୍ଷା କରି ବସିଛି ଯେଉଁମାନେ ଶତ୍ରୁ ବ୍ରିଟିଶ୍ ସୈନ୍ୟକୁ ରକ୍ତରେ ବୁଡ଼ାଇଦେବେ । ମୋତେ ତୁମେ ରକ୍ତ ଦିଅ; ମୁଁ ତୁମକୁ ସ୍ୱାଧୀନତା ଦେବି (Give me blood; I will give you Independence) ।"

**ଦଂଗାଗ୍ରସ୍ତଂକୁ କ୍ଷତିପୂରଣ –**

କଲିକତା ଓ ମାଟିଆବୁରୁଜରେ ଯେଉଁ ପ୍ରବଳ ଦଂଗା ହୋଇଥିଲା, ସେଥିରେ ବହୁ ଓଡ଼ିଆ ଶ୍ରମିକ କ୍ଷତିଗ୍ରସ୍ତ ଓ ମୃତାହତ ହୋଇଥିଲେ । ସେମାନଂକୁ ଏବଂ ସେମାନଂକ ପରିବାରବର୍ଗଂକୁ କ୍ଷତିପୂରଣ ଦେବାପାଇଁ ଆମେ କଲିକତାର 'ଓଡ଼ିଆ ସମାଜ' ତରଫରୁ ପଶ୍ଚିମବଂଗ ସରକାରଂକଠାରେ ଦାବିକରିଥିଲୁ । ଓଡ଼ିଶା ପି.ସି.ସି.ର ସଭାପତି ବିଶ୍ୱନାଥ ଦାସ ଥରେ ଦୁଇଥର କଲିକତା ଆସି ଏ ଦିଗରେ ଆମକୁ ସାହାଯ୍ୟ କରିଥିଲେ । ଦଂଗାଗ୍ରସ୍ତଂକ ପକ୍ଷରୁ ପଶ୍ଚିମବଂଗ ସରକାରଂକୁ ସାହାଯ୍ୟ ପାଇଁ ନିର୍ଦ୍ଦିଷ୍ଟ ଫର୍ମରେ ଦରଖାସ୍ତ କରାଯାଇଥିଲା । ନୀଳମଣି ରାଉତରାୟ ସେତେବେଳେ ହାଓଡ଼ାରେ ତାଂକ ବଡ଼ଭାଇଂକ ଘରେ କିଛିଦିନ ରହି ସମସ୍ତ ଦରଖାସ୍ତ ପୂରଣ କରି ଦାଖଲ କରିବାରେ ସାହାଯ୍ୟକରିଥିଲେ । କଲିକତାରୁ ପ୍ରକାଶିତ ଓଡ଼ିଆ ମାସିକପତ୍ର 'ଆସଂତାକାଲି'ର କାର୍ଯ୍ୟକାରୀ ସଂପାଦକ ହୃଦାନଂଦ ମଲ୍ଲିକ ଏବଂ ବୃହତ୍ତର କଲିକତା ଓଡ଼ିଆ ସମାଜର ସଂପାଦକ ରାମଚଂଦ୍ର ପଟ୍ଟନାୟକ ଉଲ୍ଲେଖନୀୟ ସହଯୋଗ କରିଥିଲେ । ହୃଦାନନ୍ଦ ମଲ୍ଲିକ ଓ ରାମଚନ୍ଦ୍ର ପଟ୍ଟନାୟକ ପରେ ଓଡ଼ିଶା ବିଧାନସଭାର ସଭ୍ୟ ହୋଇଥିଲେ । ସେମାନେ ଯଥାକ୍ରମେ ବାଲେଶ୍ୱର ଜିଲ୍ଲାର ଭଂଡ଼ାରୀପୋଖରୀ ଓ ପୁରୀ ଜିଲ୍ଲାର ଡେଲାଂଗରୁ ବିଧାନସଭାର ସଭ୍ୟ ହୋଇଥିଲେ । ଆମ ମିଲ୍‌ର ଶ୍ରମିକମାନଂକୁ ମିଲ୍‌ର ଟାଇମ୍ କିପରି ଅଫିସ ମାଧମରେ କ୍ଷତି ପୂରଣ ଟଂକା ଦିଆଯାଇଥିଲା । ବହୁ ଶ୍ରମିକ ଓ ତାଂକ ପରିବାରବର୍ଗ କ୍ଷତିପୂରଣ ପାଇଥିଲେ । ଓଡ଼ିଆ ଶ୍ରମିକମାନେ ସେମାନଂକ କ୍ଷତିପୂରଣ ଟଂକାରୁ କଲିକତାରେ ଉତ୍କଳ ଭବନ ପ୍ରତିଷ୍ଠା ପାଇଁ କିଛି କିଛି ଚାଂଦା ଦେଇଥିଲେ । ସେ ଟଂକା ଆମେ ବିଶ୍ୱନାଥ ଦାସଂକ ହାତରେ ଦେଇଥିଲୁ । କେତେବର୍ଷପରେ ଓଡ଼ିଶା ସରକାର

କଲିକତାର ଧର୍ମତାଲା ଷ୍ଟ୍ରିଟ୍‌ରେ ଗୋଟିଏ ବଡ଼ ଘର କିଣି ଉତ୍କଳଭବନ ସ୍ଥାପନ କରିଥିଲେ। କଲିକତା ଉତ୍କଳଭବନ ଓଡ଼ିଶା ସରକାରଂକ ଅତିଥିଶାଳାରୂପେ ଚାଲିଛି।

ଓଡ଼ିଆ ଶ୍ରମିକମାନଂକ ଥଇଥାନ ବ୍ୟବସ୍ଥା ମଧ୍ୟ ଯେତେଦୂର ସଂଭବ କରାଯାଇଥିଲା। ମାଟିଆବୁରୁଜରେ ଅଧିକାଂଶ ଘର ମୁସଲମାନମାନଙ୍କର ଥିଲା। ଆମ ମିଲ୍‌ର ଜଣେ ଓଡ଼ିଆ ହେଡ୍‌ମିସ୍ତ୍ରି ଆନଂଦଚଂଦ୍ର ଦାସ କେତେଶାଲା ପରଲି ଘର କରି ଶ୍ରମିକମାନଂକୁ ଭଡ଼ାଦେଇଥିଲେ। ତାହା ଅପେକ୍ଷାକୃତ ନିରାପଦ ଥିଲା। ଏହାକୁ ଲୋକେ 'ଆନୁମିସ୍ତ୍ରି ବାଡ଼ି' ବୋଲି କହୁଥିଲେ। ତାଂକ ବାପା ସ୍ୱର୍ଗତ ଫକିର ମିସ୍ତ୍ରି ଆମ ମିଲ୍‌ରେର ସ୍ପିନିଂ ବିଭାଗରେ ଜଣେ ହେଡ୍‌ମିସ୍ତ୍ରି ଥିଲେ।

**ରାଜ୍ୟପାଳଂକ ମିଲ୍ ପରିଦର୍ଶନ –**

ଏହି ସମୟରେ ଅବିଭକ୍ତ ବଂଗର ଶେଷ ରାଜ୍ୟପାଳ ଆର୍. ଜି. କ୍ୟାସି ଆମ ଅନୁରୋଧକ୍ରମେ କେଶୋରାମ କଟନ୍ ମିଲ୍ ପରିଦର୍ଶନ କରିଥିଲେ। ସେ ମିଲ୍‌ର କେତେକ ବଡ଼ ବଡ଼ ବିଭାଗ ବୁଲି ଦେଖିଥିଲେ। ଆମ ମିଲ୍‌ର ଜେନେରାଲ୍ ମ୍ୟାନେଜର ତାଂକ ସହିତ ମିଲ୍‌ର ଅଫିସରମାନଂକୁ ପରିଚିତ କରାଇଦେଇଥିଲେ। ମୁଁ ମଧ୍ୟ ତନ୍ମଧ୍ୟରେ ଥିଲି। ଗଭର୍ଣର ସବୁ ଅଫିସରଂକ ସହିତ ହାତ ମିଳାଇ ଅଭିବାଦନ କରିଥିଲେ। ମି. କାସି ଅଷ୍ଟ୍ରେଲିୟାର ମେଲ୍‌ବୋର୍ଣ ନଗରୀର ଅଧିବାସୀ ଥିଲେ। ୧୯୫୨ ମସିହାରେ ମୁଁ ଭାରତ ସରକାରଂକ ପ୍ରତିନିଧିରୂପେ ଅଷ୍ଟ୍ରେଲିଆ ଓ ନ୍ୟୁଜିଲ୍ୟାଂଡ଼ରେ ଅନୁଷ୍ଠିତ ଆଂତର୍ଜାତିକ ସମାଜ-ମଂଗଳ ସମ୍ମିଳନୀ (International Social Welfare Conference)ରେ ଯୋଗଦେବାକୁ ଯାଇଥିଲି। ଅଷ୍ଟ୍ରେଲିଆର ମେଲ୍‌ବୋର୍ଣଠାରେ ପ୍ରାୟ ଦୁଇମାସ ଅବସ୍ଥାନ କରିଥିଲି। ସେହି ଅବସରରେ ମୁଁ ମି. କ୍ୟାସିଂକ ଘରକୁ ଯାଇଥିଲି। ସେ ଏବଂ ତାଂକ ସ୍ତ୍ରୀ ବଡ଼ ଆନଂଦରେ ମୋର ଚର୍ଚ୍ଚା କରିଥିଲେ। ସେ ବିଷୟ ଯଥାସ୍ଥାନରେ କୁହାଯିବ।

**ସ୍ୱାଧୀନ ଭାରତର ଜନ୍ମ-ଜାତକ –**

୧୯୪୭ ସାଲ ଜୁଲାଇ ୫ ତାରିଖରେ ବ୍ରିଟିଶ ପାର୍ଲିଆମେଂଟ ଭାରତ ସ୍ୱାଧୀନତା ଆଇନ (Indian Independence Act) ପାସ୍ କରଂତି। ଏହା ଅଟଲି ସରକାରଂକର ଏକ ଯୁଗାଂତକାରୀ ପଦକ୍ଷେପ ଥିଲା। ଭାରତୀୟ ସ୍ୱାଧୀନତା ଆଇନର ପ୍ରଥମ ଧାରା ହେଲା– ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରୁ ଭାରତ ଓ ପାକିସ୍ତାନ ଦୁଇଟି ସ୍ୱାଧୀନ ରାଷ୍ଟ୍ରରୂପେ ପରିଣତହେବେ। ବ୍ରିଟିଶ ପାର୍ଲିଆମେଂଟ ଓ ସରକାର ନିର୍ଦ୍ଦିଷ୍ଟ ତାରିଖରେ କ୍ଷମତା ହସ୍ତାଂତର କରିବେ। ଦ୍ୱିତୀୟ ଧାରାଟି ହେଲା– ଭାରତୀୟ ସ୍ୱାଧୀନତା ଆଇନ ଅନୁଯାୟୀ ଏ ଦୁଇ ଦେଶର ଅଂତର୍ଭୁକ୍ତ ଅଂଚଳଗୁଡ଼ିକ ଚିହ୍ନିତ ହେବ। ପଂଜାବ ଓ ବଂଗର ବିଭାଜନ ସାର ସିରିଲ୍ ରେଡ଼କ୍ଲିଫଂକ ଅଧକ୍ଷତାରେ ଗଠିତ ସୀମା କମିଶନଂକ ଦ୍ୱାରା ନିର୍ଦ୍ଧାରିତ ହେବ।

ଏହାଛଡ଼ା ଏ ଆଇନବଳରେ ଦୁଇ ଦେଶରେ ଜଣେ ଜଣେ ଗଭର୍ଣର

ଜେନେରାଲ୍ ନିଯୁକ୍ତହେବେ। ଯଦି ଦୁଇଦେଶ ସହମତ ହୁଅଂତି, ତେବେ ଜଣେ ଗଭର୍ଣ୍ଣର ଜେନେରାଲ୍ ମହାମାନ୍ୟ ସମ୍ରାଟଂକ ପ୍ରତିନିଧି ରୂପେ ଦାୟିତ୍ୱ ନେଇପାରଂତି। ଏହି ଗଭର୍ଣ୍ଣର ଜେନେରାଲ୍ ମହାମାନ୍ୟ ସମ୍ରାଟଂକଦ୍ୱାରା ଦୁଇ ଦେଶର ପରାମର୍ଶକ୍ରମେ ନିଯୁକ୍ତହେବେ। ପ୍ରତି ଦେଶରେ ସାର୍ବଭୌମ ବ୍ୟବସ୍ଥାପକ ସଭା (Sovereign Legislature) ରହିବ, ଯାହା ସବୁ ଆଇନ ପ୍ରଣୟନ କରିବାର ପୂର୍ଣ୍ଣ ଅଧିକାର ପାଇବ। ୧୯୪୭ ସାଲ ଅଗଷ୍ଟ ୧୫ ତାରିଖରେ ବ୍ରିଟିଶ ପାର୍ଲିଆମେଂଟ ପାସ୍ କରିଥିବା କୌଣସି ଆଇନ ଏହି ଦୁଇ ଦେଶ (Dominion) ପ୍ରତି ପ୍ରଯୁଜ୍ୟ ହେବନାହିଁ। ଦୁଇ ଦେଶ (Dominion) ସଂବିଧାନ ପ୍ରଣୟନ ସଭାଦ୍ୱାରା (Constituent Assembly) ନିଜ ନିଜ ସଂବିଧାନ ପ୍ରଣୟନ କରିବେ। ଉଭୟ ଦେଶ (Dominion)ର ସଂବିଧାନ ସଭା ଇଚ୍ଛା କଲେ ବ୍ରିଟିଶ କମନୱେଲଥିରୁ ଅଲଗାହୋଇଯିବା କ୍ଷମତା ରହିବ ଇତ୍ୟାଦି, ଇତ୍ୟାଦି।

ଡ. ରାଜେନ୍ଦ୍ର ପ୍ରସାଦଂକ ମତରେ ଏହି ଆଇନ୍ ପାସ୍ ହେବା ପରେ ଭାରତରେ ବ୍ରିଟିଶ ଶାସନର ଅବସାନ ଘଟିଲା ଏବଂ ଦୁଇଦେଶ ମଧ୍ୟରେ ସଂପର୍କ ସମାନତା (equality) ଭିତ୍ତିରେ ସ୍ଥାପିତହେଲା। ମହାରାଣୀ ଭିକ୍ଟୋରିଆଂକ ବିରାଟ ସାମ୍ରାଜ୍ୟ, ଯେଉଁଥିରେ ସୂର୍ଯ୍ୟ ଅସ୍ତ ହେଉନଥିଲା, ସେଥିରେ ତାଂକର ଅଣନାତି ଲୁଇସ୍ ମାଉଁଟବେଟେନ୍ ଶେଷ ଯବନିକା ଟାଣିଦେଲେ।

**ମଧ୍ୟରାତ୍ରିର ସୂର୍ଯ୍ୟ –**

୧୯୪୭ ମସିହା ଅଗଷ୍ଟ ମାସ ୧୪ ତାରିଖ ରାତି ୧୨ଟାବେଳେ ସ୍ୱାଧୀନ ଭାରତର ଜାତୀୟପତାକା ଏକ ବର୍ଣ୍ଣାଢ୍ୟ ସମାରୋହରେ ଦିଲ୍ଲୀ ଲାଲକିଲ୍ଲା ଉପରେ ଉଡ଼ାଇଦିଆଗଲା। ପତାକା ଉତ୍ତୋଳନ କରିଥିଲେ ଭାରତର ପ୍ରଥମ ପ୍ରଧାନମଂତ୍ରୀ ପଂଡିତ ଜବାହରଲାଲ ନେହୁରୁ। ଏଥିରେ ଯୋଗ ଦେଇଥିଲେ ଲର୍ଡ ମାଉଂଟବେଟେନ୍, ଲେଡ଼ି ମାଉଂଟବଟେନ୍, ସର୍ଦାର ବଲ୍ଲଭଭାଇ ପଟେଲ, ମୌଲାନା ଆବୁଲ କାଲାମ ଆଜାଦ ପ୍ରମୁଖ ନେତୃବୃନ୍ଦ। ପଂଡିତ ନେହୁରୁ ତାଂକ ଭାଷଣରେ କହିଥିଲେ, "ଆଜିଠାରୁ ଆମେ ଅଦୃଷ୍ଟର ଅଭିସାରରେ ବାହାରିଲୁ। ସ୍ୱାଧୀନ ହେଲୁ।" ଭାରତର ଲକ୍ଷ ଲକ୍ଷ ନରନାରୀ ଏହି ଉତ୍ସବରେ ଯୋଗଦେଇଥିଲେ। ବହୁ ଲୋକ ପଲ୍ଲୀଗ୍ରାମମାନଂକରୁ ଶଗଡ଼, ଘୋଡ଼ା ଗାଡ଼ି, ଟଂଗା, ମୋଟର, ସାଇକେଲ, ସ୍କୁଟର ଓ ଡଂଗାରେ ଚଢ଼ି ଦିଲ୍ଲୀ ଆସିଥିଲେ। ସମସ୍ତଂକ ମୁହଁରେ ସେହି ଗୋଟିଏ କଥା "ଆଜିଠାରୁ ଆମେ ସ୍ୱାଧୀନ, ନେହୁରୁ ନୂତନ ପତାକା ଉଡ଼ାଇବେ।"

**ମିଲ୍‌ରେ ସ୍ୱାଧୀନତା ଦିବସ –**

ଅଗଷ୍ଟ ୧୪ ତାରିଖ ରାତି ୧୨ଟାବେଳେ ଅର୍ଥାତ୍ (୧୫ ତାରିଖ ପ୍ରତ୍ୟୁଷରେ) କେଶୋରାମ କଟନ ମିଲ୍‌ରେ ମହାସମାରୋହରେ ସ୍ୱାଧୀନତା ଦିବସ ପାଳିତ ହୋଇଥିଲା। ରାତି ୧୨ଟା ବାଜିବା ମାତ୍ରେ ଘଂଟ ଓ ଶଂଖ ଧ୍ୱନି ଭିତରେ

ବହୁ ଶ୍ରମିକ ମିଲ୍ ଓ ମିଲ୍ ବାହାରେ ଜମାହୋଇ 'ସ୍ୱାଧୀନ ଭାରତ କି ଜୟ, ଜୟ ହିଂଦ୍' ପ୍ରଭୃତି ଧ୍ୱନି ଦେଇଥିଲେ। ବହୁତ ବାଣ ଫୁଟାଯାଇଥିଲା। ଅଂସଖ୍ୟ ବେଲୁନ୍ ଉଡ଼ାଯାଇଥିଲା। ଚାରିଆଡ଼େ ଜାତୀୟପତାକା ଉଡ଼ାଯାଇଥିଲା। ଶ୍ରମିକମାନଂକ ମଧ୍ୟରେ ଏକ ନୂତନ ଭାବୋଲ୍ଲାସ ଦେଖାଦେଇଥିଲା। ରାତି ପ୍ରାୟ ତିନିଟା ପର୍ଯଂତ କେହି ଶୋଇନଥିଲେ। ଅନ୍ୟାନ୍ୟ ମିଲ୍‌ର ବହୁ ଶ୍ରମିକ ମଧ୍ୟ ଉତ୍ସବର ଆୟୋଜନ କରିଥିଲେ।

**ଅଦୃଷ୍ଟର ପରିହାସ –**

ଇଆଡ଼େ ଭାରତର ପୁରପଲ୍ଲୀ ଓ ସହରମାନଂକରେ ସ୍ୱାଧୀନତାର ଜୟ ଶଂଖ ବାଜୁଥିଲାବେଳେ ସିଆଡ଼େ ଭାରତର ଛିନ୍ନ ଅଂଗରୁ ମଣିଷରକ୍ତର ପ୍ରଖର ଧାରା ଛୁଟିଥିଲା। ଦେଶ-ବିଭାଜନ ଯୋଗୁ ଭାରତ ଓ ପାକିସ୍ତାନ ମଧ୍ୟରେ ଲୋକଶକ୍ତି ବିନିମୟ ପ୍ରକ୍ରିୟା (Exchange of population) ଆରଂଭ ହୋଇଯାଇଥିଲା। ଲକ୍ଷ ଲକ୍ଷ ଲୋକ ପୂର୍ବ ପଂଜାବ ଓ ପୂର୍ବ ବଂଗ ଦେଶରୁ ପଳାଇଆସୁଥିଲେ ଏବଂ ଭାରତର ବହୁଲୋକ ପାକିସ୍ତାନ ପଳାଉଥିଲେ। ଯେଉଁ ଅଳ୍ପ କେତୋଟି ରେଳଗାଡ଼ି ଚାଲିଥିଲା, ତାହା ଲୋକଭିଡ଼ରେ ଭରପୂର ହୋଇ-ଯାଇଥିଲା। ଲୋକମାନେ ଟ୍ରକ୍, ମୋଟର, ସ୍କୁଟର, ବସ୍ ଏବଂ ଶଗଡ଼ ଗାଡ଼ିରେ କିଂବା ଚାଲି ଚାଲି ଘରଦ୍ୱାର ଓ ଦେଶ ଛାଡ଼ି ଅନ୍ୟ ଦେଶକୁ ପଳାଉଥିଲେ। ବାଟରେ ସେମାନେ ଭୀଷଣ ଅତ୍ୟାଚାର ଓ ଲୁଟ୍‌ତରାଜର ଶିକାର ହେଉଥିଲେ। ବହୁ ପଳାତକ ନରନାରୀ, ଶିଶୁ, ବୃଦ୍ଧ ମୃତ୍ୟୁମୁଖରେ ପଡୁଥିଲେ। ସଂଖ୍ୟାଗରିଷ୍ଠ ଶ୍ରେଣୀର ଘାତକମାନେ ସେମାନଂକର ସର୍ବସ୍ୱ ଛଡ଼ାଇନେଉଥିଲେ। ଉଭୟ ପଂଜାବରେ ସାଂପ୍ରଦାୟିକ ଦଂଗା ପୁଣି ସୃଷ୍ଟି ହୋଇଥିଲା।

**କଲିକତାରେ ଗାଂଧିଜୀ –**

ମହାତ୍ମା ଗାଂଧୀ ୧୯୪୭ ମସିହା ଅଗଷ୍ଟ ମାସରେ କଲିକତା ଆସିଥିଲେ। ସେ ଦଂଗା ବଂଦକରିବା ପାଇଁ ଲୋକମାନଂକୁ ଆଂତରିକ ନିବେଦନ କରିଥିଲେ। ସେ କଲିକତାର ବେଲିଆଘାଟା ବା ନାରକେଲଡଂଗାରେ ଗୋଟିଏ ଘରେ ରହୁଥିଲେ। ତାଂକର ଦୁଇ ନାତୁଣୀ ଆଭା ଗାଂଧୀ ଓ ମନୁ ଗାଂଧୀ ଏବଂ ଅନ୍ୟ କେତେଜଣ ସହକର୍ମୀ ତାଂକ ସଂଗେ ରହୁଥିଲେ। ଗାଂଧିଜୀ ଶାଂତି ସ୍ଥାପନ ପାଇଁ ଏବଂ ସଦ୍‌ଭାବ ଫେରେଇଆଣିବା ପାଇଁ ଅନଶନ ଆରଂଭ କରିଥିଲେ। ଉଭୟ ସଂପ୍ରଦାୟର ନେତୃବର୍ଗ ଶାଂତି ସ୍ଥାପନ କରିବେ ବୋଲି ପ୍ରତିଶ୍ରୁତି ଦେବାରୁ ସେ ଅନଶନ ଭଂଗ-କରିଥିଲେ। ଲୋକମାନଂକୁ ଭ୍ରାତୃହତ୍ୟା ଓ ହିଂସାକାଂଡରୁ ନିବୃତ୍ତ ହେବାପାଇଁ ସେ ସମସ୍ତଂକୁ ଅନୁରୋଧ କରିଥିଲେ। ତାଂକ ସଭାସମିତିରେ ହଜାର ହଜାର ହିଂଦୁ ମୁସଲମାନ ଏକତ୍ରିତ ହେଉଥିଲେ। କଲିକତା ମୈଦାନରେ ପ୍ରାୟ ଚାରି-ପାଂଚ ଲକ୍ଷରୁ ଅଧିକ ଲୋକ, ହିଂଦୁ ମୁସଲମାନ, ଏକତ୍ରିତ ହୋଇ ତାଂକ ଭାଷଣଶୁଣିଥିଲେ।

ଏହି ସମୟରେ ଲିଖିତ ଏକ ଚିଠିରେ ଲର୍ଡ ଲୁଇସ ମାଉଂଟବେଟେନ୍ ଲେଖିଥିଲେ, "In Bengal, our force consists of one man and there is no rioting. As a military leader and administrator the last Viceroy humbly asked to be allowed to pay tribute to my one man boundary force, In Punjab we have 55,000 soldiers and large scale rioting on our hands. ('Freedom At Midnight') ଅର୍ଥାତ୍ ବଂଗରେ ଶାଂତି ସ୍ଥାପନ କରିବାପାଇଁ ଆମର କେବଳ ଜଣେ ଲୋକକୁ ନେଇ ଗଠିତ ସୀମାଂତ ବାହିନୀ ଅଛି। ସେ ଜଣକ ହେଉଛଂତି ଗାଂଧିଜୀ। ପଂଜାବରେ ଆମେ ୫୫,୦୦୦ ସୈନ୍ୟ ମୁତୟନ କରି ଦଂଗା ବଂଦ କରି ପାରିନଥିଲୁ। ମାତ୍ର ବଂଗରେ ଜଣେ ଲୋକ ଦଂଗା ବଂଦକରିପାରି-ଥିଲା" ... ଇତ୍ୟାଦି। ଭାରତର ଶେଷ ଭାଇସ୍‌ରୟ ସେଥିପାଇଁ ଗାଂଧିଜୀଂକୁ ଶ୍ରଦ୍ଧାଂଜଳି ଅର୍ପଣ କରିଥିଲେ।

**ଗାଂଧିଜୀଂକ ସହ କେତୋଟି ଦିନ –**

ଗାଂଧିଜୀ ୧୯୪୭ ମସିହା ଅଗଷ୍ଟ ମାସରେ କଲିକତା ଆସିଥିଲେ। ସେଠାରେ ଶାଂତି ଓ ସୌହାର୍ଦ୍ଦ୍ୟର ବାତାବରଣ ସୃଷ୍ଟିକରିବାରେ ଆଶ୍ଚର୍ଯ୍ୟ ସାଫଲ୍ୟ ଲାଭକରିଥିଲେ। ସେ ଚାରିଆଡ଼େ ସଭାସମିତି କରି ଅହିଂସା ଓ ଶାଂତିର ବାଣୀ ପ୍ରଚାର କରିଥିଲେ। ନୂଆ ସୃଷ୍ଟିହୋଇଥିବା ପଶ୍ଚିମବଂଗର ପ୍ରଧାନମଂତ୍ରୀ ସୁରାବର୍ଦ୍ଦି ସାହେବ ଦିନେ ମୋତେ ଡାକି କହିଲେ, ପ୍ରତିଦିନ ଗାଂଧିଜୀଂକୁ ନେବାଆଣିବା କରିବା ପାଇଁ ତୁମେ ମିଲ୍‌ରୁ ଗାଡ଼ି ପଠାଇବ। କେଶୋରାମ କଟନ୍ ମିଲ୍‌ର ଗୋଟିଏ ବଡ଼ କାଇଜର ଗାଡ଼ି ଥାଏ। ସେ ଗାଡ଼ିଟାକୁ ନେଇ ମୁଁ ପ୍ରତିଦିନ ଗାଂଧିଜୀ ରହୁଥିବା ବେଲିଆଘାଟାକୁ ଅପରାହ୍ଣ ୪ଟାବେଳେ ଯାଉଥିଲି। ଗାଂଧିଜୀଂକୁ ନେଇ ସଭାସ୍ଥଳକୁ ଯିବା ଏବଂ ସଭାପରେ ସେଠାରୁ ତାଂକୁ ଆଣି ତାଂକ ବେଲିଆଘାଟା ବାସଭବନରେ ଛାଡ଼ିବା ମୋର କାମ ଥିଲା। ମୁଁ ଗାଡ଼ି ଆଗ ସିଟ୍‌ରେ ଡ୍ରାଇଭର ପାଖରେ ବସୁଥିଲି। ପଛ ସିଟ୍‌ରେ ଗାଂଧିଜୀ, ମନୁ ଗାଂଧୀ ଓ ଆଭା ଗାଂଧୀ ବସୁଥିଲେ। ଏହିପରି ପ୍ରାୟ ୧୦-୧୨ ଦିନ ଗାଂଧିଜୀଂକ ସାନ୍ନିଧ ଲାଭକରିବାର ସୌଭାଗ୍ୟ ଘଟିଥିଲା। ବାଟରେ ଗଲାବେଳେ ଗାଂଧିଜୀ ସେଦିନ କଲିକତା ଅବସ୍ଥା ବିଷୟରେ ଏବଂ କେଉଁଠି କିଛି ଗୋଳମାଳ ଘଟିଛି କି ନାହିଁ ପଚାରି ବୁଝୁଥିଲେ। ମୁଁ ଯଥାସାଧ ଉତ୍ତର ଦେଉଥିଲି।

ଗୋଟିଏ ଦିନର ଘଟଣା ବେଶ୍ ମନେଅଛି। ଆମେ ମିଲ୍‌ରୁ ଗାଡ଼ି ନେଇ ବାହାରିଲୁ। ଡ୍ରାଇଭର ଥାଏ ଯଶୋବଂତ, ଜଣେ ଓଡ଼ିଆ। ମୁଁ ଆଗ ସିଟ୍‌ରେ ବସିଥାଏ। କିଛି ସମୟ ପୂର୍ବରୁ ଅସରାଏ ବର୍ଷା ହୋଇଯାଇଥାଏ। ଗାଡ଼ିଟା ରିଂଗ ରୋଡ଼ ଉପରେ ଗଲାବେଳେ ହଠାତ୍ ଖସଡ଼ିଯାଇ ଗୋଟିଏ ଗଛ ପାଖରେ

ଅଟକିଗଲା । ଆଉ ଟିକେ ଆଗକୁ ଯାଇଥିଲେ ଗଛରେ ବାଜି ବଡ଼ଧରଣର ଦୁର୍ଘଟଣା ଘଟିଥାଂତା । ସଭାକୁ ଗଲାବେଳେ ମୁଁ ଏକଥା ବାପୁଜୀଂକୁ କହିଲି । ସେ ମୁରୁକି ହସି କହିଲେ, "God saved you" । ଥରେ ବାପୁଜୀଂକୁ ଆମ କେଶୋରାମ କଟନମିଲ୍‌ର ପଡ଼ିଶା ମିଲ୍ 'କ୍ଲାଇଭ ଜୁଟ ମିଲ' ପଡ଼ିଆରେ ଏକ ବଡ଼ ସଭାକୁ ଡାକିଥିଲୁ । ମୁଁ ଗାଂଧିଜୀଂକୁ ସଭାକୁ ଆସିବାକୁ କହିବାମାତ୍ରେ ସେ ରାଜି ହୋଇଗଲେ । ମନୁ ଓ ଆଭା ମଧ୍ୟ ଆସିଥିଲେ । ସେମାନେ ସଭାରେ 'ରାମଧୂନ୍' ଗାଇଲେ ତାପରେ ସଭା ଆରଂଭ ହେଲା ।

ଗାଂଧିଜୀ ହିନ୍ଦୁ ମୁସଲମାନ ଐକ୍ୟ ଓ ସଦ୍‌ଭାବ ବଜାୟରଖିବାକୁ ସମସ୍ତଂକୁ ଅନୁରୋଧ କଲେ । ସେ କହିଲେ, "ଭାରତ ଓ ପାକିସ୍ତାନ ମଧ୍ୟରେ ବଂଧୁତା ଓ ସହଯୋଗ ଉଭୟ ଦେଶର ଉନ୍ନତି ଓ ପ୍ରଗତି ପାଇଁ ଏକାଂତ ଅନିବାର୍ଯ୍ୟ ।" କଲିକତାରେ ହିଂଦୁ ମୁସଲମାନ ଭାଇମାନଂକୁ କାୟମନୋବାକ୍ୟରେ ଅହିଂସାନୀତି ପାଳନ କରିବାପାଇଁ ସେ ଉପଦେଶ ଦେଲେ । ସେଦିନ ସଭା ବିଷୟରେ 'ମୁଁ ଗାଂଧିଜୀ ଗହଣେ' ନାମକ ଏକ କବିତା ଲେଖିଥିଲି । ତାହା ମୋର 'ଅଭିଜ୍ଞାନ' ପୁସ୍ତକରେ ସ୍ଥାନିତହୋଇଛି । ସେ କବିତାର କେତୋଟି ପଂକ୍ତି ତଳେ ଦେଲି ।

'ଗାଂଧିଜୀ-ଗହଣେ'

"ବେଲିଆଘାଟାରୁ ଦୂରେ ମାଟିଆବୁରୁଜ
ମାଇଲ ମାଇଲ ଧରି ମଣିଷର ସୁଅ
ଝିଦିରିପୁରଠି ଦେଖୁଁ ବୁଡ଼ିଲା ସୂରୁଯ
ଆଗକୁ ଓହଳିଆସେ ଲକ୍ଷ ଲକ୍ଷ ମୁହଁ
ଗାଂଧିଜୀ ଆସିବେ ।
ଗାଂଧିଜୀ ଆସିବେ, କହେ ଜନତାର ଧାଡ଼ି
ରାଜପଥ ଦୁଇଧାରେ ।
ହଠାତ୍ ଆମକୁ ଟପି ଗାଂଧିଜୀଂକ ଗାଡ଼ି
ମୋଡ଼ ଟପି ଗଲା ମାଡ଼ି
କ୍ଷଣକ ଆଗକୁ
ବାଆଁପଟ ଛ'କୁ
ଶୁଣାଗଲା ଏକ ସ୍ୱରେ 'ଗାଂଧିଜୀ ଗାଂଧିଜୀ'
ଚିରିଯାଏ ଲୁଗାପଟା, ଫାଟେ କା' କାମିଜି
ବେକ ନାଇ ଦେଖିବାକୁ
ଦିନ ପରା ନିଭେ ।।
ଧାମ ଗାଡ଼ି ପଛେ ଚାଲେ ସାଂଗେ ଆମ
ସହିଦ ସାହେବ ।

ଏ.ପି.ର ଡଗର ଥୋକେ
କହୁଥାଂତି – ବର୍ଷାଟାରେ କି ସଭା ହେବ ?

× ×

ତା'ପରେ ସଭା
ରାମ୍‌ଧୁନ୍ କଲେ ମନୁ, ଆଭା
ସଭାରେ ମାମୁଲି କଥା, ସାଧାରଣ
ମାମୁଲି ଭଜନ
ଅତି ଅଳ୍ପ ସରଳ ଭାଷଣ,
ପୁରୁଣା କେତୋଟି ଶବ୍ଦ
ନାଇ କାହିଁ ମିଥ୍ୟାର ଆଘ୍ରାଣ ।।
ଅସଂଭବ ଲଂବା ହାତ
ଆଶ୍ଚର୍ଯ୍ୟ ଓ ଉଜ୍ଜ୍ୱଳ ଚମଡ଼ା
ଖୁବ୍ ଡହ କାନଦୁଇ
ଏଇ ଯାହା ଖାଲି ଦେଖିବାର
ତଥାପି ତ ମନେହୁଏ
ତମ ଆମ ସବୁ ଜୀବନର
ଅନାଗତ ନୂତନ ଖସଡ଼ା
ଏଇ ଛୋଟ ମଣିଷଟି ଜାଣେ
କୋଟି କୋଟି ଲୋକଭିଡ଼େ
ଏକା ଏକା – ଏଇମାତ୍ର ଜଣେ ('ଅଭିଜ୍ଞାନ' ୧୯୪୮)

**ପାକିସ୍ତାନର ବିପର୍ଯ୍ୟୟ –**

ଦେଶ-ବିଭାଜନ ଫଳରେ ପାକିସ୍ତାନର ଅର୍ଥନୀତି ଚରମ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା । ପାକିସ୍ତାନରେ ଚମଡ଼ା, ଝୋଟ, କପା ପ୍ରଭୃତି ପ୍ରଚୁର ପରିମାଣରେ ଉତ୍ପନ୍ନ ହେଉଥିଲା; କିଂତୁ ଏଗୁଡ଼ିକୁ ପ୍ରସେସ୍ କରିବା ପାଇଁ ଟାନେରୀ ବା ସୂତା କଳ ନଥିଲା । ଏସବୁ କଂଚାମାଲ ଗୋଦାମରେ ଜମା ହୋଇ ରହିଥିଲା । ସମଗ୍ର ଦେଶର ଚାରିଭାଗରୁ ଅଧିକ ଧୂଆଁପତ୍ର ପାକିସ୍ତାନରୁହିଁ ଉତ୍ପନ୍ନ ହେଉଥିଲା, ମାତ୍ର ଗୋଟିଏ ଦିଆସିଲି କାରଖାନା ମଧ ନଥିଲା । ପାକିସ୍ତାନର ବ୍ୟାଂକଗୁଡ଼ିକରେ ଅଚଳ ଅବସ୍ଥା ସୃଷ୍ଟିହୋଇଥିଲା । କାରଣ ବ୍ୟାଂକର ଅଧିକାଂଶ କର୍ମଚାରୀ ଓ ମ୍ୟାନେଜର ହିଂଦୁ ଥିଲେ । ସେମାନେ ଭାରତକୁ ପଳାଇଯାଇଥିଲେ; ଫଳରେ ବ୍ୟାଂକଗୁଡ଼ିକ ବହୁଦିନଯାଏ ବନ୍ଦହୋଇଯାଇଥିଲା । ସୈନ୍ୟବାହିନୀର ଜିନିଷପତ୍ର ଆବଂଟନ ପାଇଁ ପାକିସ୍ତାନରେ ନିଯୁକ୍ତ ଫିଲଡ୍ ମାର୍ଶାଲ ଅଚିନଲେକ୍ ସେଥିପାଇଁ କହିଥିଲେ ''ଦିଲ୍ଲୀରେ ଯେଉଁମାନେ ଶାସନକର୍ତ୍ତା ହୋଇ ବସିଛଂତି ସେମାନେ

ପାକିସ୍ତାନ Dominion କୁ ଧ୍ୱଂସ କରିଦେବାକୁ ଚାହାଂତି।'' ସେ ଯାହାହେଉ, ଭାରତ ଓ ପାକିସ୍ତାନ ଉଭୟ ଦେଶ ଚରମ ଦୁର୍ଦଶାର ସମ୍ମୁଖୀନ ହୋଇଥିଲେ।

**ଦାୟୀ କିଏ ? –**

ଦେଶ ବିଭାଜନ ପାଇଁ ମୁଖ୍ୟତଃ ମୁସଲିମ୍ ଲିଗ୍ ଏବଂ ଏହାର ନେତା ମହମ୍ମଦ ଅଲ୍ଲୀ ଜିନ୍ନା ଦାୟୀ। ଜିନ୍ନା ପ୍ରଥମେ ଭାରତୀୟ ଜାତୀୟ କଂଗ୍ରେସର ଜଣେ ପଦାଧିକାରୀ ଥିଲେ। କଂଗ୍ରେସ ମହାତ୍ମା ଗାଂଧୀଂକ ନେତୃତ୍ୱରେ ଖିଲାପତ୍ ଆଂଦୋଳନକୁ ସମର୍ଥନ କରିଥିଲା। ପ୍ରଥମ ବିଶ୍ୱଯୁଦ୍ଧରେ ତୁର୍କୀ ଏହାର ସୁଲତାନ ଖଲିଫାଂକ ନିର୍ଦ୍ଦେଶରେ ଜର୍ମାନୀ ପକ୍ଷରେ ଯୋଗଦେଇଥିଲା ଏବଂ ବ୍ରିଟେନ୍ ଓ ମିତ୍ର ଶକ୍ତି ବିରୁଦ୍ଧରେ ଲଢ଼ିଥିଲା। ଯୁଦ୍ଧରେ ଜୟଲାଭ କରିବା ପରେ ବ୍ରିଟେନ ଓ ମିତ୍ରଶକ୍ତି ତୁର୍କୀ ଆକ୍ରମଣ କରିବା ପାଇଁ ଅଗ୍ରସର ହୋଇଥିଲେ। ତୁର୍କୀର ସୁଲତାନ ବା ଖଲିଫା ମୁସଲିମଖ ଜଗତର ଧର୍ମ-ମୁଖ୍ୟ ଥିଲେ। ତେଣୁ ଭାରତ ଓ ଅନ୍ୟାନ୍ୟ ଦେଶର ମୁସଲମାନମାନେ ବ୍ରିଟେନ ବିରୁଦ୍ଧରେ ପ୍ରବଳ ଆଂଦୋଳନ କରିଥିଲେ। କଲିକତାରେ ଲାଲା ଲାଜପତ୍ ରାୟଂକ ସଭାପତିତ୍ୱରେ କଂଗ୍ରେସର ଏକ ସ୍ୱତଂତ୍ର ଅଧିବେଶନ ବସି ବ୍ରିଟିଶ ସରକାରର କାର୍ଯ୍ୟକୁ ତୀବ୍ର ବିରୋଧ କରିଥିଲେ। ମହମ୍ମଦ ଅଲ୍ଲୀ ଓ ଶୈଖତ ଅଲ୍ଲୀ ଦୁଇ ଭାଇ ବିଲାତ ଯାଇ ଏ ଆଂଦୋଳନ ସପକ୍ଷରେ ଲୋକମତ ସୃଷ୍ଟିକରିଥିଲେ; ମାତ୍ର କିଛି ଫଳ ହେଲାନାହିଁ। ଅଲ୍ଲୀ ଭ୍ରାତୃଦ୍ୱୟ କଂଗ୍ରେସର ପ୍ରମୁଖ ନେତା ଥିଲେ। ଏହାପରେ ଜାଲିଆନାୱାଲାବାଗ ଗଣହତ୍ୟା ମୁସଲମାନମାନଂକ ମଧ୍ୟରେ ବ୍ରିଟିଶ-ବିରୋଧୀ ମନୋଭାବ ସୃଷ୍ଟିକରିଥିଲା। ମହାତ୍ମା ଗାଂଧୀ ଓ କଂଗ୍ରେସ ୧୯୨୧ ମସିହାରେ ବ୍ରିଟିଶ ଶାସନ ବିରୁଦ୍ଧରେ ସ୍ୱାଧୀନତା ଦାବିକରି ଓ ଖିଲାଫତ୍ ଆଂଦୋଳନକୁ ସମର୍ଥନକରି ଅସହଯୋଗ ଆଂଦୋଳନ ଆରଂଭ କରିଥିଲେ। ଏଥିରେ ମୁସଲମାନମାନେ ଯୋଗଦେଇଥିଲେ; ମାତ୍ର ୧୯୩୦ ମସିହାରେ ମହାତ୍ମା ଗାଂଧୀଂକ ନେତୃତ୍ୱରେ କଂଗ୍ରେସ ଯେତେବେଳେ ଆଇନ-ଅମାନ୍ୟ ଆଂଦୋଳନ ଓ ଲବଣ ଆଇନ ଭଂଗ ଆଂଦୋଳନ ଆରଂଭ କଲେ, ଜିନ୍ନା ଓ ମୁସଲିମ୍ ଲିଗ୍ କଂଗ୍ରେସରୁ ଦୂରେଇଗଲେ। ବ୍ରିଟିଶ ସାମ୍ରାଜ୍ୟବାଦୀମାନେ 'Divide and Rule' ନୀତିକୁ କାର୍ଯ୍ୟକାରୀ କରିବାପାଇଁ ଜିନ୍ନାଂକୁ ପ୍ରୋତ୍ସାହନ ଦେଉଥିଲେ। ହିଂଦୁ ମୁସଲମାନ ମଧ୍ୟରେ ବିଭେଦ ବ୍ରିଟିଶ ଶାସନ କଳକୁ ସୁହାଉଥିଲା ଏବଂ ସାମ୍ରାଜ୍ୟବାଦୀଂକ ହାତମୁଠା ଟାଣକରିଥିଲା।

ଜାତୀୟତାବାଦୀ ମୁସଲିମ୍ ନେତାମାନେ, ଯଥା– ଖାଁ ଅବ୍ଦୁଲ୍ ଗଫୁର ଖାଁ, ମୌଲାନା ଆଜାଦ ଏବଂ ଡ. ଆନସାରି ପ୍ରଭୃତି କଂଗ୍ରେସର ସ୍ୱାଧୀନତା ସଂଗ୍ରାମରେ ପୂର୍ଣପ୍ରାଣରେ ଯୋଗଦେଇଥିଲେ।

ଏ ସମସ୍ତ ସତ୍ତ୍ୱେ କଂଗ୍ରେସ ଯେ ମୁସଲିମ୍ ଜନସାଧାରଣଂକର ଆସ୍ଥାଭାଜନ ହୋଇ ପାରିଲା ନାହିଁ, ଏହା ଚରମ ଦୁର୍ଭାଗ୍ୟର ବିଷୟ। ଭାରତର କଂଗ୍ରେସ

ନେତାମାନେ, ଯଥା– ଗାଂଧୀ, ନେହେରୁ, ସର୍ଦାର ପଟେଲ, ଆଜାଦ ଓ ରାଜଗୋପାଳାଚାରୀ ପ୍ରମୁଖ ମଧ ସଂପୂର୍ଣ ଦୋଷମୁକ୍ତ ନୁହଂତି। ମୁସଲିମ୍ ଜନସାଧାରଣ ତାଂକୁ କଂଗ୍ରେସ ଭିତରକୁ ଆଣିବାପାଇଁ ଏବଂ କଂଗ୍ରେସକୁ ସେମାନଂକର ଆସ୍ଥାଭାଜନ କରାଇବା ପାଇଁ ସେମାନଂକର ଉଦ୍ୟମ ଯଥେଷ୍ଟ ହେଲାନାହିଁ। ଏହାର ପରିଣାମ ଭୋଗିବାକୁ ପଡ଼ିଲା କୋଟି କୋଟି ଭାରତୀୟଂକୁ– ହିଂଦୁ ମୁସଲମାନ ନିର୍ବିଶେଷରେ। ଭାରତ ବିଭାଜନ ଯୋଗୁଁ କୋଟି କୋଟି ଲୋକ ଜୀବନର ସର୍ବସ୍ୱ ହରାଇଛଂତି। ସେମାନଂକୁ ଭିଟାମାଟି ଛାଡ଼ି ଅନ୍ୟତ୍ର ଚାଲିଯିବାକୁ ପଡ଼ିଛି। ଏଭଳି ଦୁର୍ଦଶା ପୃଥିବୀରେ ଖୁବ୍ କମ୍ ଘଟିଛି।

ଏ ସଂପର୍କରେ କବି ଅନ୍ନଦାଶଂକରଂକ ଗୋଟିଏ ବଂଗଳା ଡବା (ଛଡ଼ା) ମନେପଡ଼େ– "ଗୋଟିଏ ଛୋଟ ପିଲା ତା ମାଆକୁ କହୁଛି, 'ମା' ତେଲ ଶିଶିଟା ଭାଂଗିଦେଲି ବୋଲି ତୁ ମୋତେ ମାରିଲୁ; ମାତ୍ର ଏଡ଼େ ବଡ଼ ଦେଶଟାକୁ ଯେଉଁମାନେ ଭାଂଗିଦେଲେ ସେମାନଂକର କିଏ କଣ କଲା ?"

**ପୂର୍ବ-ପାକିସ୍ତାନରେ ଗାଂଧିଜୀ –**

"ଏକ୍‌ଲା ଚଲୋ ରେ" – ସେତେବେଳକୁ ରେକର୍ଡ଼ପତ୍ରରେ ଦେଶ ବିଭାଜନ ହୋଇସାରିଥାଏ। ପୂର୍ବ-ପାକିସ୍ତାନ ଓ ପଶ୍ଚିମ-ବଂଗଳା ସୃଷ୍ଟି ହୋଇସାରିଲାଣି। ପୂର୍ବ-ବଂଗକୁ ପୂର୍ବ ପାକିସ୍ତାନ କୁହାଯାଉଥାଏ। ପୂର୍ବ-ପାକିସ୍ତାନରେ ପ୍ରବଳ ହିଂଦୁ ମୁସଲମାନ ଦଂଗା ଲାଗିଥାଏ। ବହୁ ହିଂଦୁ ନରନାରୀ ଶିଶୁ ବୃଦ୍ଧ ମୃତାହତ ହେଉଥାଂତି। ବହୁ ଲୋକ ଘରଦ୍ୱାର ଛାଡ଼ି ଭାରତକୁ ପଳାଇଆସୁଥାଂତି। ଏ ଖବର କଲିକତା ଓ ପଶ୍ଚିମ-ବଂଗଳାବାସୀଂକୁ ବିଚଳିତ କରୁଥାଏ।

୧୯୪୭ ମସିହା ନୂଆ ବର୍ଷର ସକାଳକୁ ଗାଂଧିଜୀ ଶ୍ରୀରାମପୁର, ନୂଆଖାଲିଠାରେ ଅଭିନଂଦନ ଜଣାଇଥିଲେ। ସେ ଗୋଟିଏ କାଠ ପୋଲ ଉପରେ ଚାଲି ଚାଲି ଯାଇ ନୂଆଖାଲିରେ ପହଂଚିଲେ। ପାକିସ୍ତାନରେ ମଧ ଗାଂଧିଜୀଂକୁ ଦେଖିବାପାଇଁ ଏବଂ ତାଂକ କଥା ଶୁଣିବାପାଇଁ ଲୋକଂକ ଭିତରେ ପ୍ରବଳ ଆଗ୍ରହ ଦେଖାଦେଇଥିଲା। ଗାଂଧିଜୀ ରବୀଂଦ୍ରନାଥଂକର ସେହି କବିତାଟି ଆବୃତ୍ତି କରିବାପାଇଁ କହୁଥାଂତି– "କେଉ ଯଦି ତୋର ଡାକ ନା ଶୋନେ

ଏକ୍‌ଲା ଚଲୋ, ଏକ୍‌ଲା ଚଲୋ, ଏକ୍‌ଲା ଚଲୋ ରେ"

ପୂର୍ବ-ପାକିସ୍ତାନର କେଉଟ, ଚାଷୀ ଓ ଜନତାଂକ ମୁହଁରେ ସେହି ସଂଗୀତ ପ୍ରତିଧ୍ୱନିତ ହେଉଥାଏ। ମୋର 'ଅଳକା ସାନ୍ୟାଲ' କବିତାରେ 'ନୂଆଖାଲି'ର ଉଲ୍ଲେଖ ରହିଛି, ଯଥା –

"× × × ×

ଆଜି କିଂତୁ ଦେଖାଦେଲା ସମୟର ଡେଇଁ ଚୋରାବାଲି,
ତୁମକୁ ଲୁଚାଇଥିଲା ଶଙ୍କାନିତ ଦଂଗା ନୂଆଖାଲି" (ପାଂଡୁଲିପି)

**ଶରଣାର୍ଥୀଙ୍କ ସୁଅ –**

ବର୍ତ୍ତମାନ ଦେଶ-ବିଭାଜନପରେ ଶରଣାର୍ଥୀଙ୍କ ସୁଅ ଛୁଟିଚାଲିଲା । ପାକିସ୍ତାନ ପଂଜାବରୁ ବହୁ ହିନ୍ଦୁପରିବାର ଭାରତକୁ ପଳାଇଆସିଥିଲେ । ବାସ୍ତୁହରା ମଣିଷର ସ୍ରୋତ ଅନବରତ ଛୁଟିଚାଲିଥାଏ । ଦିଲ୍ଲୀ ରେଳଷ୍ଟସନରେ ବହୁ ଶରଣାର୍ଥୀ ନିରୁଦ୍ଦିଷ୍ଟ ଭାବରେ କୁଆଡ଼େ ଯିବେ, କିଛି ଠିକ୍‌କରିପାରୁନଥାଂତି । କୃପାସିଂଧୁ ମିଶ୍ର, ଆଇ.ସି.ଏସ୍. ଦିଲ୍ଲୀ ଷ୍ଟେସନରେ ଶରଣାର୍ଥୀମାନଂକର ଅବସ୍ଥା ବୁଝିବା ପାଇଁ ମୁତୟନ ହୋଇଥାଂତି । ଶୁଣାଯାଏ, ଜଣେ ହାବିଲଦାର କେତେକ ଶରଣାର୍ଥୀଂକ ଜିନିଷପତ୍ର ଛଡ଼ାଇନେଇଥିଲା । ଶ୍ରୀ ମିଶ୍ର ତାକୁ ଶାସ୍ତିଦେବାକୁ ଧମକାଇବାରୁ ସେ ହାବିଲଦାର କ୍ରୁଦ୍ଧହୋଇ ତାଂକୁ ଦିଲ୍ଲୀ ଷ୍ଟେସନ ପ୍ଲାଟଫର୍ମରେ ଗୁଳିକରି ହତ୍ୟାକରିଥିଲା । କୃପାସିଂଧୁ ମିଶ୍ର ଓଡ଼ିଶାର ଅନ୍ୟତମ ପୁରୁଣା ଆଇ.ସି.ଏସ୍. ଅଫିସର ଥିଲେ ।

ପାକିସ୍ତାନ ଓ ଭାରତର ଯେତେ ଶରଣାର୍ଥୀ ଗଣ-ପ୍ରସ୍ଥାନ (Exodus) କରିଥିଲେ, ତାହା ପୃଥିବୀ ଇତିହାସରେ ବିରଳ । କେତେକ ଲେଖକ-ଲେଖିକା ଲେଖିଛଂତି ଯେ, ଏତେ ସଂଖ୍ୟାରେ Exodus ବା ଗଣ-ପ୍ରସ୍ଥାନ ଏହା ପୂର୍ବରୁ କେଉଁଠି ହୋଇନଥିଲା । ହିଟ୍‌ଲରର ଜର୍ମାନୀ ଓ ନାଜି ଅଧିକୃତ ୟୁରୋପରୁ ପଳାଇଯାଇଥିବା ଇହୁଦୀମାନଂକର Exodus ଏହା ତୁଳନାରେ କମ୍‌ଥିଲା ।

ଲକ୍ଷ ଲକ୍ଷ ସଂଖ୍ୟାରେ ପୂର୍ବ-ବଂଗରୁ (ବର୍ତ୍ତମାନ ବାଂଲାଦେଶ) ଲୋକେ ଘରଦ୍ୱାର ଛାଡ଼ି ପିଲା-କବିଲା ଧରି ପଶ୍ଚିମ-ବଂଗକୁ ପଳାଇଆସୁଥିଲେ । ସେମାନେ ଭାରତର ସୀମାଂତ ଟପି ଭାରତୀୟ ଅଂଚଳରେ ପଡ଼ିରହିଥିଲେ । ସେମାନଂକୁ ରିଲିଫ ଦେବା ଓ ଥଇଥାନ କରିବାପାଇଁ ସରକାରୀ ଓ ବେସରକାରୀ ଉଦ୍ୟମରେ ବହୁ ଶରଣାର୍ଥୀ ଶିବିର ଖୋଲାଯାଇଥିଲା । ସେଥିରେ ସେମାନଂକୁ ରଖାଯାଇଥିଲା ଏବଂ ଖାଇବାପିଇବା ଦିଆଯାଉଥିଲା ।

**ବନଗାଁଓ ଶିବିର –**

ବନଗାଁଓ ଭାରତ ଓ ପାକିସ୍ତାନ ସୀମାରେ ଏକ ଭାରତୀୟ ଗ୍ରାମ । ଏହା କଲିକତାଠାରୁ ପ୍ରାୟ ୧୦୦ ମାଇଲ ଦୂରରେ ଅବସ୍ଥିତ । ସେଠାରେ ଆମ କେଶୋରାମ କଟନ୍ ମିଲ୍ ତରଫରୁ ଏକ ବଡ଼ ଶରଣାର୍ଥୀ ଶିବିର ଖୋଲାଯାଇଥିଲା । ଅନ୍ୟ କେତେକ ବ୍ୟବସାୟ ପ୍ରତିଷ୍ଠାନ ମଧ୍ୟ ଏଭଳି ଶିବିର ବନଗାଁଓଠାରେ ଖୋଲିଥିଲେ । ଆମ ମିଲ୍ ଶିବିରରେ ପ୍ରାୟ ତିନି-ଚାରି ହଜାର ଶରଣାର୍ଥୀ ଓ ତାଂକ ପିଲାଛୁଆ ରହୁଥିଲେ । ସେମାନଂକୁ ଶିବିରର ରଂଧାଶାଳରେ ପ୍ରସ୍ତୁତ ଖାଦ୍ୟ ଭାତ ରୁଟି ତରକାରି, ଯୋଗାଇଦିଆଯାଉଥିଲା । କିଛି ଜଳଖିଆ ମଧ୍ୟ ଦିଆଯାଉଥିଲା । ଏହାଛଡ଼ା ନଳକୂଅ ବସାଇ ପିଇବାପାଣିର ବ୍ୟବସ୍ଥା କରାଯାଇଥିଲା ।

ମୁଁ ଏହି ଶିବିରକୁ କେତେ ଥର ଯାଇ ସେଠାର ବ୍ୟବସ୍ଥା ପର୍ଯ୍ୟବେକ୍ଷଣ

କରିଥିଲି । ଶରଣାର୍ଥୀ ଶିବିରମାନଂକରେ ବହୁ ସମସ୍ୟା ଥାଏ । ରୋଗରେ ପଡ଼ିଲେ ସେମାନଂକ ଚିକିତ୍ସା ବ୍ୟବସ୍ଥା କରିବାକୁ ହୁଏ । ଏହାଛଡ଼ା ଶିବିର ଭିତରେ ସେମାନଂକ ମଧ୍ୟରେ କଳିକଜିଆ ଓ ମାଡ଼ଗୋଳ ମଧ୍ୟ ଲାଗିଯାଏ । କେଉଁ ଶିବିରରୁ ପୁଅ ଝିଅ କୁଆଡ଼େ ଚାଲିଯାଇଥିବାର ଖବର ମିଳେ । ଏ ସବୁ କଥା ବୁଝିବାପାଇଁ ମଝିରେ ମଝିରେ ଶିବିର ପରିଦର୍ଶନ କରିବାକୁ ପଡ଼େ ।

ଶରଣାର୍ଥୀଂକ ସଂଖ୍ୟା ବଢ଼ିଚାଲିଥାଏ । ଇନ୍ଦିରା ଗାଂଧୀଂକ ବେଳକୁ । ପ୍ରାୟ ୧୯୭୦-୭୧ ସାଲରେ ଭାରତରେ ପାକିସ୍ତାନୀ ଶରଣାର୍ଥୀଂକ ସଂଖ୍ୟା ପ୍ରାୟ ଏକ କୋଟିକୁ ଛୁଇଁଥିଲା । ତା'ପରେ ପୂର୍ବପାକିସ୍ତାନରେ ମୁକ୍ତି-ସଂଗ୍ରାମ ଆରଂଭ ହୋଇଯାଏ । ଭାରତୀୟ ସୈନ୍ୟବାହିନୀ ସହାୟତାରେ ପୂର୍ବପାକିସ୍ତାନୀମାନେ ପାକ୍ ସୈନ୍ୟମାନଂକୁ ପରାସ୍ତ କରି ସ୍ୱାଧୀନ ବାଂଗଲାଦେଶ ଗଠନ କରଂତି । ବାଂଗଲାଦେଶ ସୃଷ୍ଟି ହେବା ପରେ ଶରଣାର୍ଥୀଂକ ସମସ୍ୟା ବହୁପରିମାଣରେ କମିଯାଇଥିଲେ ମଧ୍ୟ ବହୁ ହିଂଦୁ ଶରଣାର୍ଥୀ ଭାରତ ଅର୍ଥାତ୍ ପଶ୍ଚିମ-ବଂଗକୁ ଓ ଆସାମକୁ ପଳାଇଆସୁଥିଲେ ।

**ବାଂଲାଦେଶ ଉପରେ କବିତା –**

ମୋର କେତୋଟି କବିତା ବାଂଲାଦେଶର ମୁକ୍ତି-ସଂଗ୍ରାମ ଉପରେ ରଚିତ ହୋଇ ବିଶେଷ ଜନପ୍ରିୟ ହୋଇଥିଲା । ମୋର 'ରୋସନାରା' କବିତାଟି ବଂଗଳାଭାଷାରେ ପ୍ରଫେସର୍ ଅବ୍‌ଦୁଲ ରହମାନଂକଦ୍ୱାରା ଅନୂଦିତ ହୋଇ ଢାକାର 'ଅଳିନଂଦ' ପତ୍ରିକାରେ ପ୍ରକାଶପାଇଥିଲା । ଏହା ସାରା ବାଂଲାଦେଶରେ ବଡ଼ ଜନପ୍ରିୟ ହୋଇଥିଲା । ଏହାଛଡ଼ା ମୋର ସେ ସମୟର କବିତା 'ମୁଜିବୁର ରହମାନ', 'ଏହିୟା ଖାଁ', 'ଉପକଥା' ପ୍ରଭୃତି କବିତା ବାଂଲାଦେଶ ମୁକ୍ତିସଂଗ୍ରାମକୁ ନେଇ ରଚିତ ହୋଇଥିଲା । ଏ ସବୁ କବିତା ପରେ ଯଥାସ୍ଥାନରେ ଉଦ୍ଧୃତ କରାଯିବ ।

ମୁଁ ୧୯୭୨ ମସିହାରେ ବାଂଲାଦେଶର ମଇମନ୍‌ସିଂରେ ଅବସ୍ଥିତ କୃଷିବିଶ୍ୱବିଦ୍ୟାଳୟର ନିମଂତ୍ରଣକ୍ରମେ ବାଂଲାଦେଶକୁ ଯାଇଥିଲି । ୧୯୭୫ ମସିହାରେ ଢାକାର ବାଂଲା ଏକାଡେମୀର ନିମଂତ୍ରଣକ୍ରମେ ସେଥିରେ ଯୋଗଦେଇଥିଲି । ୧୯୭୨ ମସିହାରେ ବାଂଗଲାଦେଶର ରାଷ୍ଟ୍ରପତି ମୁଜିବୁର ରହମାନଂକ ସହିତ ଢାକାରେ ମୋର ସାକ୍ଷାତ ଓ ଆଲୋଚନା ହୋଇଥିଲା । ବିରୋଧୀ ଦଳର ନେତା ମୌଲାନା ଭାସାନିଂକ ସହିତ ମଧ୍ୟ ଆଲୋଚନା ହୋଇଥିଲା । ସେମାନେ ମୋର 'ରୋସନାରା' ଓ ଅନ୍ୟାନ୍ୟ କବିତାର ଉଚ୍ଚ ପ୍ରଶଂସା କରିଥିଲେ ।

## ଷଡ୍‌ବିଂଶ ଉଲ୍ଲାସ

## ଶେଷ ଯବନିକା : ଆଲୁଅ ଲିଭିଗଲା

**କଳା ବାଦଲ –**

ଗାଂଧିଜୀ ୧୯୪୭ ମସିହା ସେପ୍‌ଟେଂବର ମାସ ବେଳକୁ କଲିକତା ଛାଡ଼ି ଦିଲ୍ଲୀ ଗଲେ। ସେ ଦିଲ୍ଲୀସ୍ଥ ବିରଳା ଭବନରେ ରହିଲେ। ତାଂକ ସହିତ ଥିଲେ ଆଭା ଗାଂଧୀ ଓ ମନୁ ଗାଂଧୀ, ତାଂକର ଦୁଇ ନାତୁଣୀ (Grand niece)। ସେମାନେ ଛାୟାପରି ଗାଂଧିଜୀଂକ ପାଖେ ପାଖେ ରହିଥାଂତି। ଆଉ ଥିଲେ ଗାଂଧିଜୀଂକ ସେକ୍ରେଟାରୀ ପ୍ୟାରିଲାଲ ନାୟାର ଏବଂ ତାଂକ ଭଉଣୀ ଡାକ୍ତର ସୁଶୀଳା ନାୟାର। ସେ ଗାଂଧିଜୀଂକ ସ୍ୱାସ୍ଥ୍ୟ ଉପରେ ଦୃଷ୍ଟି ରଖିଥାଂତି। ଗାଂଧିଜୀଂକ ସ୍ୱାସ୍ଥ୍ୟର ହିପାଜତ କରିବାପାଇଁ ତାଂକୁ ଆମେରିକାରେ ଥିବା ଜାତିସଂଘ ଏକ ଫେଲୋସିପ୍ ମଂଜୁର କରିଥାଂତି।

ଗାଂଧିଜୀ କଲିକତା ଛାଡ଼ିବା ପୂର୍ବଦିନ ରାତିରେ ମୁଁ ତାଂକ ନିକଟକୁ ଯାଇ ବିଦାୟନେଇଥିଲି। ତାଂକ ପଦଧୂଳି ନେଲାବେଳେ, କିଏ ଜାଣିଥିଲା, ଯେ ଏହାହିଁ ତାଂକ ସହିତ ମୋର ଶେଷ ଦେଖାହେବ ! ଗାଂଧିଜୀଂକ ମୁଂଡ ଉପରେ ତାଂକ ଜୀବନର ଶେଷ ଯବନିକା ନଇଁଆସୁଥିଲା, ଏକଥା ସମସ୍ତେ ଊଣା-ଅଧିକେ ଅନୁଭବ କରୁଥିଲେ। ଭାରତୀୟ ମୁସଲମାନମାନଂକ ନିରାପତ୍ତା ବିଷୟରେ ସେ ଯେପରି ଅତ୍ୟଧିକ ଜୋର ଦେଉଥିଲେ, ପାକିସ୍ତାନରେ ଥିବା ହିନ୍ଦୁ ଓ ଶିଖମାନେ ହଜାର ହଜାର ସଂଖ୍ୟାରେ ରୋଜ ଦଂଗାର ଶିକାର ହେଉଥିଲେ ମଧ୍ୟ ଏବଂ ନାରୀ ଧର୍ଷଣ ସୀମା ଟପିଥିଲେ ମଧ୍ୟ ସେବିଷୟକୁ ସେ ସେତେ ବେଶି ଗୁରୁତ୍ୱ ଦେଉନଥିଲେ। ଏହାଫଳରେ ଭାରତୀୟ ହିଂଦୁମାନେ ତାଂକ ପ୍ରତି ଉତ୍ତ୍ୟକ୍ତ ହୋଇଉଠିଥିଲେ। ୧୯୪୮ ମସିହା ଜାନୁୟାରୀ ୧୩ ତାରିଖରୁ ୧୮ ତାରିଖ ପର୍ଯ୍ୟଂତ ସେ ଦିଲ୍ଲୀର ମୁସଲମାନ-ମାନଂକର ସୁରକ୍ଷା ଦାବି କରି ଅନଶନ କରିଥିଲେ।

ଏଥିପୂର୍ବରୁ ସେ ପ୍ରାର୍ଥନାଂତିକ ସଭାମାନଂକରେ ବହୁ ଭାଷଣ ଦେଉଥିଲେ। ଅବଶ୍ୟ ସେ ପାକିସ୍ତାନ ଯିବାପାଇଁ ବେଳେବେଳେ ଜିଦ୍ ଧରି ବସୁଥିଲେ; ମାତ୍ର ତାଂକର ସ୍ୱାସ୍ଥ୍ୟ କଲିକତା ଅନଶନ ପରେ ସଂପୂର୍ଣ ଭାଂଗିପଡ଼ିଥିଲା। ସେ ବିରଳା ଭବନରେ ଏକ କୋଠରିରୁ ଅନ୍ୟ କୋଠରିକୁ ଯିବାକୁ ମଧ୍ୟ ଅସମର୍ଥ ଥିଲେ। ଏଥିରେ ସେ ପାକିସ୍ତାନ ଯାଇ ଶାଂତିବାର୍ତ୍ତା ପ୍ରଚାର କରିଥାଂତେ କିପରି ? ଆଭା ଓ ମନୁ ଗାଂଧି ତାଂକର ଦୁଇପାଖରେ ରହିଥାଂତି। ସେ ସେମାନଂକ କାଂଧରେ

ଭରାଦେଇ ବିରଳା ଭବନର ପଛ ହତାରେ ବସୁଥିବା ପ୍ରାର୍ଥନାସଭାରେ ପ୍ରତି ଅପରାହ୍ଣରେ ନିୟମିତ ଯୋଗଦେଉଥାଂତି । ଠିକ୍ ୫ଟାବେଳେ ସେ ପ୍ରାର୍ଥନା ସଭାରେ ପହଂଚୁଥିଲେ; ଟିକିଏ ଡେରିହେଲେ ବିରକ୍ତି ପ୍ରକାଶକରୁଥିଲେ । ବହୁ ହିଂଦୁ ଓ ମୁସଲମାନ ନରନାରୀ ପ୍ରତିଦିନ ତାଂକ ପ୍ରାର୍ଥନା ସଭାରେ ସମବେତ ହେଉଥିଲେ ।

ହଠାତ୍ ସେ ଦିଲ୍ଲୀ ମୁସଲମାନମାନଂକ ନିରାପତ୍ତା ଦାବିକରି ଅନଶନ କରିବେ ବୋଲି ଘୋଷଣାକଲେ । ଏଥିରେ ସମସ୍ତେ ଆତଂକିତହେଲେ । ତାଂକୁ ଅନଶନ ନକରିବାପାଇଁ ବହୁ ସମାଜସେବୀ ଓ ଆତ୍ମୀୟ-ସ୍ୱଜନ ସାନୁନୟ ଅନୁରୋଧ କରିଥିଲେ । ତାଂକ ସାନପୁଅ ଦେବଦାସ ଆସି ବହୁତ ବୁଝାଇଥିଲେ ଅନଶନ ନକରିବା ପାଇଁ । ସେ କହିଥିଲେ, "ଆପଣ ବଂଚିରହିଲେ ଦେଶର ବହୁ ସେବା କରିପାରିବେ, କିଂତୁ ଆପଣ ଚାଲିଗଲେ ଦେଶବାସୀ ସେଥିରୁ ବଂଚିତହେବେ"; ମାତ୍ର ଗାଂଧିଜୀ ନିଜ ଜିଦ୍‌ରେ ଅଟଳ ରହିଲେ । ସେ ନିତ୍ୟନୈମିତ୍ତିକ ଆହାର ଯଥା ଦୁଇଖଂଡ ଚପାତି, ଗୋଟିଏ ସେଉ, ୧୬ ଆଉନ୍‌ସ ଛେଳି କ୍ଷୀର ଓ କିଛି ଅଂଗୁର ଖାଇସାରି ଡାକ୍ତର ସୁଶୀଳା ନାୟାରଂକୁ ତାଂକର ପ୍ରିୟ ଖ୍ରୀଷ୍ଟିଆନ ଭଜନଟି ଗାଇବାକୁ କହିଥିଲେ । "When I survey the wondrous Cross" —ଏହି ଗୀତଟି ସେ ଦକ୍ଷିଣ-ଆଫ୍ରିକାରେ ଥିଲାବେଳେ ବହୁତ ବୋଲା-ହେଉଥିଲା । ଗୀତଟି ଶୁଣିବାପରେ ସେ ନିଜର ଖଟିଆ ଉପରେ ଶୋଇପଡ଼ିଲେ । ଦିନ ଦ୍ୱିପ୍ରହର ହୋଇଥିଲେ ମଧ୍ୟ ଘୁଂଗୁଡ଼ି ମାରିବାକୁ ଲାଗିଲେ । ତାଂକର କେତେଜଣ ଅଂତରଂଗ ବଂଧୁ ଯଥା ଜବାହରଲାଲ ନେହେରୁ, ସର୍ଦାର ପଟେଲ ପ୍ରମୁଖ ସେତେବେଳେ ସେଠାରେ ଉପସ୍ଥିତଥିଲେ ।

ଗାଂଧିଜୀ ତାଂକ ଅନଶନର ସର୍ତ ରଖିଥିଲେ— ପାକିସ୍ତାନରେ ଯେତେ ହିଂଦୁ ଓ ଶିଖ ଦଂଗାରେ ମରଂତୁ ପଛକେ, ଦିଲ୍ଲୀରେ ଗୋଟିଏ ମୁସଲମାନ ପିଲା ଦେହରେ କେହି ହାତ ଦେଇପାରିବେ ନାହିଁ । ଦ୍ୱିତୀୟ ସର୍ତଟି ଥିଲା, ପାକିସ୍ତାନକୁ ଭାରତ ଯେଉଁ ୫୫ କୋଟି ଟଂକା ଦେବାର କଥା ଥିଲା, ଭାରତ ତାହା ଶୀଘ୍ର ଦେଇଦେଉ । ଏଥିରେ ସମସ୍ତ ହିଂଦୁସମାଜ କ୍ଷୁବ୍ଧ ଓ କ୍ରୁଦ୍ଧ ହୋଇଉଠିଥିଲେ । ଲୋକେ ପ୍ରଶ୍ନକରୁଥିଲେ, ଜିନ୍ନାଂକର ଦେବାଳିଆ ଅବସ୍ଥା ସୁଧାରିବା ପାଇଁ ଗାଂଧିଜୀଂକର ଏତେ ପ୍ରାଣବ୍ୟଥା କାହିଁକି ? ଗାଂଧିଜୀଂକ ଅନଶନ ଜାନୁଆରୀ ୧୩ରୁ ୧୮ ତାରିଖ ପର୍ଯ୍ୟଂତ ଚାଲିଥିଲା ।

ତାଂକର ୭୮ ବର୍ଷ ବୟସ୍କ ଶରୀର ଉପରେ ଏ ଅନଶନ ଭୀଷଣ କ୍ଷୟକାରୀ ପ୍ରଭାବ ପକାଇଥିଲା । ତାଂକର ଜୀବନୀଶକ୍ତି ପ୍ରତି ମୁହୂର୍ତ୍ତରେ କ୍ଷୀଣତର ହୋଇଆସୁ-ଥିଲା । ଅନଶନର ପ୍ରଥମ ୨୪ ଘଂଟା ପରେ ଦୁଇ ପାଉଂଡ ଓଜନ କମିଯାଇଥିଲା । ଦ୍ୱିତୀୟ ଦିନ ବେଳକୁ ତାଂକର ଓଜନ ୧୦୯ ପାଉଂଡ ଥିଲା । ତାଂକ ଦେହର ପ୍ରୋଟିନ୍ ଅନଶନ ଖାଇଯାଉଥିଲା । ତାଂକ କିଡ୍‌ନୀ ବା ମୂତ୍ରାଶୟ କଲିକତା

ଅନଶନ ବେଳେ ବଡ଼ ଦୁର୍ବଳ ହୋଇପଡ଼ିଥିଲା । ତେଣୁ ସେ ଦିଗରୁ ଦିଲ୍ଲୀ ଅନଶନ ବଡ଼ ବିପଜ୍ଜନକ ମନେକରାଯାଉଥିଲା । ଗାଂଧିଜୀଂକ ସ୍ୱାସ୍ଥ୍ୟ ଅବସ୍ଥା ଦେଖି ଡାକ୍ତର ସୁଶୀଳା ନାୟାର କଣ କରିବେ କିଛି ସ୍ଥିର କରିପାରୁନଥିଲେ । ସେ ନିକଟରେ ଥିବା ଏକ ସର୍ପଗଂଧା ଗଛରୁ କିଛି ଛେଲି ଆଣି ତାକୁ ବାଟି ତାର ରସ ଟିକିଏ ଖାଇବାକୁ ଦେଇଥିଲେ; ମାତ୍ର ଗାଂଧିଜୀ ତାହା ମଧ୍ୟ ଖାଇବାକୁ ଅସ୍ୱୀକାର କରିଦେଲେ, କାରଣ ତାହା ଅନଶନ ନିୟମର ବିରୋଧୀ ଥିଲା । ବିଚାରୀ ସୁଶୀଳା ନାୟାର ଆଉ କଣ କରିପାରିଥାଂତେ ?

ସମଗ୍ର ଦିଲ୍ଲୀରେ ଘୋର ଉତ୍ତେଜନା । ସମସ୍ତେ ଗାଂଧିଜୀଂକର କଡ଼ା ସମାଲୋଚନା କରୁଥାଂତି । କାହିଁକି ଏ ଅନଶନ; ଦିଲ୍ଲୀରେ । ଦଂଗା ଲାଗିନାହିଁ ? କଲିକତା ଭଳି ଏଠାରେ ପରିସ୍ଥିତି ହିଂସାତ୍ମକ ହୋଇନାହିଁ । ତେବେ ଗାଂଧିଜୀ କାହିଁକି ଏଭଳି କଠୋର ପଂଥା ବାଛିନେଲେ ? ସିଆଡ଼େ ପାକିସ୍ତାନରେ ହଜାର ହଜାର ହିଂଦୁ, ଶିଖ ନରନାରୀ ରୋଜ ଦଂଗାର ଶିକାର ହେଉଥାଂତି; ନାରୀଧର୍ଷଣ, ନାରୀହରଣ ଅବାଧ ଗତିରେ ଚାଲିଥାଏ; ଅଥଚ ଦିଲ୍ଲୀ ଏ ପର୍ଯ୍ୟଂତ କ୍ଷୁବ୍ଧ ହେଲେ ମଧ୍ୟ ଶାଂତରହିଥାଏ । 'ଲାଇଫ୍' ମାଗାଜିନର ମାର୍ଗାରେଟ୍ ବର୍କ ହ୍ୱାଇଟ୍ ଅନଶନ ପୂର୍ବଦିନ ପ୍ରାର୍ଥନା ସଭାରେ ସସ୍ନେହରେ ଗାଂଧିଜୀଂକ ଫଟୋ ନେଲାବେଳେ କିଂତୁ ଅନ୍ୟପ୍ରକାର ଭାବିଥିଲେ । ତାଂକ ମତରେ ଏହାଥିଲା ଗାଂଧିଜୀଂକର ଏକ ଧାର୍ମିକ ସଂକଳ୍ପ । ସେ ସମଗ୍ର ଜାତିର ସୌହାର୍ଦ୍ଦ୍ୟ ପାଇଁ ଏପରି ଏକ ଧାର୍ମିକ ପଦକ୍ଷେପ ନେଇଛଂତି ।

**ପୁନା, ୧୩ । ୧ । ୧୯୪୮ –**

ସେଆଡ଼େ ଭାରତର ରାଜଧାନୀଠାରୁ ସାତଶହ ମାଇଲ ଦୂର ପୁନାଠାରେ 'ହିଂଦୁ ରାଷ୍ଟ୍ର' ନାମକ ପତ୍ରିକାର ଉଦ୍‌ଘାଟନ ଉତ୍ସବ ସମାରୋହରେ ଚାଲିଥାଏ । ବହୁ ଅତିଥି ଓ ସାଂବାଦିକ ସେଠାରେ ଠୁଳହୋଇଥାଂତି । ଟେଲିପ୍ରିଂଟରରୁ ଦେଶର ସଂବାଦ ଘନ ଘନ ଆସି ପହଂଚୁଥାଏ ।

ସେହି ଉତ୍ସବରେ ଦୁଇଜଣ ମହାରାଷ୍ଟ୍ରୀୟ ବ୍ରାହ୍ମଣ ଯୁବକ ଉପସ୍ଥିତ ଥିଲେ । ସେମାନେ ଗଂଭୀରମୁହଁରେ ଏଣେତେଣେ ପଦଚାରଣା କରୁଥାଂତି । ସେମାନେ ହେଲେ ନାଥୁରାମ ଗଡ୍‌ସେ ଓ ନାରାୟଣ ଆପ୍ଟେ । କିଛିକ୍ଷଣ ପରେ ଦେଖାଗଲା ଗଡ୍‌ସେ ଏକ ଖିଡ଼ିକୀ ପାଖରେ ଯାଇ ଛିଡ଼ାହୋଇ କଣ ଭାବୁଛି । ଆପ୍ଟେ ଆସି ତା ସହିତ ଯୋଗଦେଲା । ଦିଲ୍ଲୀର ଘଟଣା ସେମାନଂକ ମନରେ ଗଭୀର ରେଖାପାତ କରିଥାଏ । ଗଡ୍‌ସେ କିଛିକ୍ଷଣ ଚୁପ୍‌ହୋଇ ଛିଡ଼ାହେବାପରେ ଆପ୍ଟେକୁ କହିଲା "Gandhi must die" । ଆପ୍ଟେ ମୁହଁ ହଲାଇ ସମ୍ମତି ଜଣାଇଲା ।

('Freedom at Midnight.')

ଗଡ୍‌ସେ କହିଲା "ଗାଂଧୀକୁ ବଳପୂର୍ବକ ଏ ଦୁନିଆରୁ ହଟାଇଦେବାକୁ ହେବ । ତା ନହେଲେ ଭାରତର ସମଗ୍ର ବିଶ୍ୱରେ ଦୁର୍ନାମ ରଟୁଥିବ ।" ଗଡ୍‌ସେ କାହିଁକି

ଗାଂଧିଜୀଂକୁ ହତ୍ୟା କରିବାକୁ ଶପଥ ନେଲା ? ସେ ତ କିଛି ବର୍ଷ ପୂର୍ବେ ତାଂକ ନେତୃତ୍ୱରେ ଚାଳିତ ସ୍ୱାଧୀନତା ଆଂଦୋଳନରେ ଯୋଗଦେଇ ଜେଲ ବରଣ କରିଥିଲା ? ହଠାତ୍ ସେ ତାଂକୁ ହତ୍ୟାକରିବାପାଇଁ ମନସ୍ଥ କରି ବସିଲା । ପ୍ରଥମେ ସେମାନେ ହାଇଦ୍ରାବାଦଠାରେ (ସିଂଧ) ଜିନ୍ନାଂକୁ ହତ୍ୟା କରିବାଲାଗି ଯୋଜନା କରିଥିଲେ; ମାତ୍ର ଶେଷରେ ଗାଂଧିଜୀଂକୁ ହତ୍ୟା କରିବା ପ୍ରଥମକାର୍ଯ ବୋଲି ସ୍ଥିରକଲେ । ଗଡ୍‌ସେ ଓ ଆପ୍ତେଂକ ଛଡ଼ା ଆଉ ଦୁଇଜଣ ସହଯୋଗୀ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ସେମାନେ ମଧ୍ୟ ଗଡ୍‌ସେର ପ୍ରସ୍ତାବ ସହିତ ସହମତ ଥିଲେ । ସେମାନେ ହେଲେ ଡେକାନ ଗେଷ୍ଟ ହାଉସ୍‌ର ମାଲିକ ବିଷ୍ଣୁ କାରକରେ ଓ ମଦନଲାଲ, ଯେ କି ୬ ମାସ ପୂର୍ବେ ଦଂଗାରେ ଆହତ ତା ପିତାଂକୁ ଫିରୋଜପୁର ହାସପାତାଲରେ ଭର୍ତିକରି ପ୍ରତିହିଂସା ନେବାପାଇଁ ଦିଲ୍ଲୀରେ ସୁଯୋଗ ଖୋଜୁଥିଲା ।

ହିଂଦୁ ରାଷ୍ଟ୍ର ଅଫିସରୁ ଏହି ଚାରି ଜଣଯାକ ଅସ୍ତ୍ରଶସ୍ତ୍ର ଚୋରାବିକାଳି ଦିଗଂବର ବ୍ୟାଡ଼ଂକ ଘରକୁ ଗଲେ । ଦିଗଂବର ସନ୍ନ୍ୟାସୀ ବେଶରେ ଅସ୍ତ୍ରଶସ୍ତ୍ର ବିକ୍ରିକରୁଥାଏ । ତା ଘରେ ବହୁ ହାତବୋମା ଓ ବିସ୍ଫୋରକ ପ୍ରଭୃତି ବ୍ରିକିପାଇଁ ମହଜୁଦ୍ ଥାଏ । ସେମାନେ କିଛି ହାତବୋମା କିଣିଲେ, ମାତ୍ର ଯାହା ଅସଲ ଜିନିଷ ସେହି ପିସ୍ତଲଟି ତା ପାଖରେ ନଥିଲା । ସେମାନେ ସେଠାରୁ ଚାଲିଆସି କଣ କରିବେ ମସୁଧା କଲେ । ଆପ୍ତେ ସେମାନଂକୁ ୧୪ ତାରିଖରେ ବଂବେରେ ଦାଦାରରେ ଥିବା ହିଂଦୁ ମହାସଭା ଅଫିସରେ ଭେଟିବା ପାଇଁ କହିଲା ।

ବଂବେ, ୧୪ । ୧ । ୧୯୪୮ –

ଗଡ୍‌ସେର ଜନ୍ମ ଓ ଲାଳନପାଳନ ବଂବେରେ ହୋଇଥିଲା । ସେହିଠାରେହିଁ ସେ ଶିକ୍ଷାଦୀକ୍ଷା ଲାଭକରିଥିଲା । ତାର ମତବାଦ ବି ସେହିଠାରେ ଗଢ଼ିଉଠିଥିଲା । ବଂବେରେ ପହଂଚି ସେ ତାର ପ୍ରିୟ ନଗରୀକୁ ଭଲ କରି ଥରେ ଦେଖିନେଲା । ସେ ଓରିଏଂଟାଲ୍ ଲାଇଫ୍ ଇନ୍‌ସୁରାନ୍‌ସ ଅଫିସକୁ ଯାଇ ସେଠାରେ ଜଣେ କିରାଣି ହାତକୁ ଦୁଇଖଂଡ କାଗଜ ବଢ଼ାଇଦେଲା; ତାହା ହେଉଛି ତାର ଦୁଇଟି ବିମା ପଲିସି ପତ୍ର । ସେଥିରେ ତା ଅଂତେ କିଏ ବୀମା ଟଂକା ପାଇବେ; ଅର୍ଥାତ୍ କିଏ Beneficiary ହେବ ତାର, ନାମ ନଥିଲା । ସେ ଦୁଇଜଣ Beneficiaryଙ୍କ ନାମ ପଲିସିରେ ବସାଇବାକୁ କହିଲା । ପ୍ରଥମ ପଲିସିଟି ହଜାରେ ଟଂକାର ଥିଲା; ତାର Beneficiary ହିସାବରେ ସେ ତା ସାନଭାଇର ସ୍ତ୍ରୀକୁ ମନୋନୀତକଲା । ସେ ଗଡ୍‌ସେକୁ ଦିଲ୍ଲୀଠାରେ ପିସ୍ତଲ୍ ଯୋଗାଇଦେବ ବୋଲି କଥା ଦେଇଥିଲା । ଦ୍ୱିତୀୟ Beneficiary ହେଲା ଆପ୍ତେର ସ୍ତ୍ରୀ । ଯେପରି ମୃତ୍ୟୁବରଣ କରିବା ଆଗରୁ ଫାଶୀ ଆସାମୀ ବ୍ୟବହାର କରଂତି ଗଡ୍‌ସେ ସେହିପରି ନିଜର ଶେଷ ଦଲିଲ ସଂପୂର୍ଣ କରିବାକୁ ଚାହୁଁଥିଲା । ବର୍ତମାନ ଗଡ୍‌ସେ ମୃତ୍ୟୁପାଇଁ ପ୍ରସ୍ତୁତ ହୋଇଯାଇଥିଲା । ସେ ଏଭଳି ଏକ ଲୋକକୁ ହତ୍ୟା କରିବାକୁ

ଚାହୁଁଥିଲା ଯାହାକୁ ସମଗ୍ର ବିଶ୍ୱ ଜଣେ ଋଷି ବୋଲି ଭାବୁଥିଲା ।

**ବଂବେ, ୧୫ । ୧ । ୧୯୪୮ –**

ଏହାପରେ ଗଡ୍‌ସେ ଓ ତାର ଦୁଇଜଣ ସାଥୀ ବଂବେର ଏକ ହିଂଦୁ ମଂଦିରକୁ ଗଲେ । ସେଠାରେ ଭଂଡ ସନ୍ନ୍ୟାସୀ ବ୍ୟାଜ ତାଂକୁ ଗୋଟାଏ ତବଲା ଭିତରେ ଲୁଚାଇଥିବା ଅସ୍ତ୍ରଶସ୍ତ୍ର ଦେଖାଇଲା । ତା ଭିତରେ ଏକ ଦେଶୀ ପିସ୍ତଲ୍ ଥିଲା । ସେମାନେ ତାହା ସଂଗ୍ରହକଲେ । ତା'ପରେ ଦୁଇଜଣ ଟ୍ରେନ୍‌ଯୋଗେ ଦିଲ୍ଲୀ ଯାଇଥିଲେ; ଗଡ୍‌ସେ କିଂତୁ ବିମାନଯୋଗେ ଯାଇଥିଲା । ସେମାନେ ଦିଲ୍ଲୀରେ ବିରଳା ମଂଦିର ନିକଟସ୍ଥ ହିଂଦୁ ମହାସଭା ଭବନର ଲଜ୍‌ରେ ରହିଲେ ।

**ଦିଲ୍ଲୀ, ୧୩ । ୧ ରୁ ୧୮ । ୧ । ୧୯୪୮ –**

ଏଣେ ଦିଲ୍ଲୀରେ ଗାଂଧିଜୀଂକ ଅବସ୍ଥା ଦ୍ରୁତ ସଂକଟାପନ୍ନ ହେଉଥାଏ । ୧୫ ତାରିଖ ସକାଳେ ଡାକ୍ତର ସୁଶୀଳା ନାୟାର ଗାଂଧିଜୀଂକ ମୂତ୍ର ପରୀକ୍ଷା କରାଇ ଦେଖିଲେ ସେଥିରେ ମାରାତ୍ମକ Acetone and Acetic Acid ରହିଛି । ଗାଂଧିଜୀଂକ ଦେହରେ କାର୍ବୋହାଇଡ୍ରେଟ୍ ଯାହା ଥିଲା, ତାହା କ୍ଷୟହୋଇଗଲାଣି । ତାଂକ ଦେହ ଯେପରି ତାଂକ ଅଂତନାଡ଼ିକୁ ଖାଇ ବଂଚିଛି । ଗତ ୨୪ ଘଂଟା ମଧ୍ୟରେ ତାଂକୁ ୬୮ ଆଉନ୍‌ସ ଉଷୁମ ପାଣିରେ ବାଇକୋର୍ବୋନେଟ୍ ସୋଡ଼ା ମିଶାଇ ପିଇବାକୁ ଦିଆଯାଇଥିଲା । ଡାକ୍ତର ସୁଶୀଳା ନାୟାର ପରୀକ୍ଷା କରି ଦେଖିଲେ ସେ ମାତ୍ର ୨୮ ଆଉନ୍‌ସ ଛାଡ଼ିଛଂତି । ତାଂକ କିଡ୍‌ନୀ ମଧ ଠିକ୍ ଭାବେ କାମ କରୁନଥିଲା; ତାହା ତ ଆଗରୁ କଲିକତା ଅନଶନ ବେଳେ କ୍ଷତିଗ୍ରସ୍ତ ହୋଇଥିଲା । ଡା. ସୁଶୀଳା ତାଂକୁ ସେ କିପରି ସଂକଟାପନ୍ନ ଅବସ୍ଥାରେ ଅଛଂତି, ବୁଝାଇବାକୁ ଚେଷ୍ଟାକରିଥିଲେ; ମାତ୍ର ସେ ନାରାଜ । ତାଂକର ସେହି ଏକ କଥା – ଯାହା ଭଗବାନଂକର ଇଚ୍ଛା, ତାହାହିଁ ହେବ । ଡା. ସୁଶୀଳା ଆଉ କଣ କରିପାରିଥାଂତେ ? ଚାରିଆଡ଼େ ଉଦ୍‌ବେଳିତ ଜନତା ମୁହଁରେ କେବଳ ଗାଂଧିଜୀଂକ କଥା ଚର୍ଚ୍ଚା ହେଉଥାଏ । ଅଧିକାଂଶ କହୁଥାଂତି, "ବୁଢ଼ା ମରୁ; ଦୁଶ୍ଚିଂତା ଯିବ" । ଦଳକୁ ଦଳ ଶରଣାର୍ଥୀ ଦିଲ୍ଲୀର ବିଭିନ୍ନ ଆଡ଼ୁ ଶୋଭାଯାତ୍ରା କରି ଗାଂଧିଜୀ ରହୁଥିବା ଆକବରରୋଡ଼ସ୍ଥିତ ବିରଳା ଭବନ ଆଡ଼କୁ ମୁହାଁଇ ନାନାପ୍ରକାର ଧ୍ୱନି ଦେଉଥାଂତି । ସେମାନେ ପାକିସ୍ତାନରେ ସର୍ବସ୍ୱ ହରାଇ ଭାରତକୁ ପଳାଇଆସିଥାଂତି । ସେମାନଂକର ବନ୍ଧୁ ଆତ୍ମୀୟ ଦଂଗାରେ ପ୍ରାଣ ହରାଇଥାଆଂତି । ଶୋଭାଯାତ୍ରୀଂକ ଧ୍ୱନି ଅଳ୍ପ ଅଳ୍ପ ଗାଂଧିଜୀଂକ କାନରେ ପଡୁଥାଏ । ସେ ତାଂକ ସେକ୍ରେଟାରୀ ପ୍ୟାରିଲାଲଂକୁ ପଚାରିଲେ, "ସେମାନେ କଣ କହୁଛଂତି ।" ପ୍ୟାରିଲାଲ୍ ଇତସ୍ତତଃ ହୋଇ ପରେ କହିଲେ, "ସେମାନେ କହୁଛଂତି, ଗାଂଧୀ ମରୁ ।"

ଏହିପରି ଅବସ୍ଥାରେ ସ୍ୱାଧୀନ ଭାରତର ନେହେରୁ ସରକାର ବ୍ୟତିବ୍ୟସ୍ତ ହୋଇପଡ଼ିଥାଏ । କେନ୍ଦ୍ର ମଂତ୍ରିମଂଡଳର କେତେକ ସଭ୍ୟ ପାକିସ୍ତାନକୁ ଭାରତ ସଂଗେ

ସଂଗେ ୫୫ କୋଟି ଟଂକା ଦେବା ବିରୋଧରେ ମତ ଦେଉଥାଂତି। ଗାଂଧିଜୀଂକ ଚାରପାଇ (ଖଟିଆ) ଚାରିପାଖରେ ଭାରତ ସରକାରଂକ କ୍ୟାବିନେଟ୍ ମିଟିଂ ବସିଥାଏ। ନେହେରୁ, ପଟେଲ୍, ଆଜାଦ୍ ସମସ୍ତେ ବିରଲା ଭବନର ସେହି ପ୍ରକୋଷ୍ଠରେ ମୃତ୍ୟୁମୁଖରେ ଆଗେଇଚାଲିଥିବା ମହାତ୍ମା ଗାଂଧୀଂକ ଚାରିପାଖରେ ଘେରିରହିଥାଂତି। ଶେଷରେ ଭାରତସରକାର ପାକିସ୍ତାନକୁ ତାର ପ୍ରାପ୍ୟ ଟଂକା ଦେଇଦେବାକୁ ଘୋଷଣାକଲେ। ସର୍ଦାର ପଟେଲ୍ ଏ ଦିଗରେ ଗାଂଧିଜୀଂକୁ ବିଶେଷ ସମର୍ଥନ କରିଥିଲେ। ମହାତ୍ମା ଗାଂଧୀ ତାଂକର ଶେଷ ଅନଶନ ଭଂଗକଲେ।

**ନୂଆଦିଲ୍ଲୀ, ୧୬।୧ରୁ ୩୦।୧।୧୯୪୮ –**

ଇଆଡ଼େ ଗଡ୍‌ସେ ଓ ତାହାର ସହଯୋଗୀମାନେ ଗାଂଧିଜୀଂକୁ ମାରିବା ପାଇଁ ନାନାପ୍ରକାର କଳ୍ପନା-ଜଳ୍ପନା କରୁଥାଂତି। ଯଦିଚ ଗଡ୍‌ସେ ଗାଂଧିଜୀଂକୁ ମାରିବ ବୋଲି ସଂକଳ୍ପ ନେଇଥାଏ, ତଥାପି ତାର ସେ ବିଷୟରେ କୌଣସି ଧାରଣା ବା ନିର୍ଦିଷ୍ଟ କାର୍ଯ-ପ୍ରଣାଳୀ ନଥିଲା। କିପରି ସେ ପିସ୍ତଲରୁ ଗୁଳି କରିବ, ସେ ବିଷୟ ସେ କିଛି ସ୍ଥିରକରିପାରିନଥିଲା। ପ୍ରଥମେ ସେମାନେ ଭାବିଥିଲେ, ଏକ ପୁରୁଣା କ୍ୟାମେରା ଭିତରେ ପିସ୍ତଲ୍‌ଟା ରଖି ଗାଂଧିଜୀଂକ ଫଟୋ ନେବା ଛଳରେ ପିସ୍ତଲ୍ ଚଳାଇବ। ତଦନୁସାରେ ସେମାନେ ଏକ ପୁରୁଣା କ୍ୟାମେରା କିଣି ତା ଭିତରେ ପିସ୍ତଲ୍ ରଖି ପରୀକ୍ଷା କଲେ; ମାତ୍ର ତାହା ଠିକ୍ ଲକ୍ଷ୍ୟଭେଦ କରିପାରିବ ବୋଲି ମନେହେଲାନାହିଁ। ତା'ପରେ ସେମାନେ ଠିକ୍ କଲେ, ଗଡ୍‌ସେ ଏକ ବୁର୍ଖା ପିଂଧି ସଭାସ୍ଥଳକୁ ଯାଇ ପକେଟ୍‌ରୁ ପିସ୍ତଲ୍ କାଢ଼ି ଗାଂଧିଜୀଂକ ଉପରେ ଗୁଳିକରିବ। ଅନେକ ମୁସଲ୍‌ମାନ ମହିଳା ବୁର୍ଖା ପିଂଧି ଗାଂଧିଜୀଂକ ପ୍ରାର୍ଥନା ସଭାକୁ ଆସୁଥାଂତି; ତେଣୁ ସେ ଦିଗରୁ କିଛି ଅସୁବିଧା ହେବନାହିଁ। ସେମାନେ ସବୁଠାରୁ ବଡ଼ ସାଇଜର ଗୋଟିଏ ବୁର୍ଖା କିଣି ଗଡ୍‌ସେକୁ ପିଂଧାଇ ଦେଖିଲେ ଯେ, ତାହା ତାକୁ ବଡ଼ କସ୍ ହେଉଛି; ତା ଭିତରେ ପକେଟ୍‌ରୁ ପିସ୍ତଲ୍ କାଢ଼ିବା ସହଜ ହେବନାହିଁ। ତେଣୁ ସେମାନେ ସେଥିରୁ ନିବୃତ୍ତ ହେଲେ। ସେତେବେଳକୁ ଗଡ୍‌ସେ ଓ ତାହାର ସହଯୋଗୀ ନାରାୟଣ ଆପ୍ଟେ ଓ କରକାରେ ହିଂଦୁମହାସଭା ଭବନରେ ଥିବା ଲଜ୍ ଛାଡ଼ି ଦିଲ୍ଲୀ ସେଂଟ୍ରାଲ୍ ରେଲ୍‌ୱେ ଷ୍ଟେସନ୍‌ର ରିଟାୟାରିଂ ରୁମ୍‌ର ୬ ନଂବର କୋଠରିରେ ରହୁଥାଂତି। ଶେଷରେ ସେମାନେ ସ୍ଥିରକଲେ ୩୦ ତାରିଖ ଦିନ ଗାଂଧିଜୀଂକ ପ୍ରାର୍ଥନା ସଭାକୁ ଯାଇ ସେଠାରେ କାମ ହାସଲ୍ କରିବେ। ଗଡ୍‌ସେ ପ୍ରଥମେ ଯିବ; ତାପରେ ଅନ୍ୟମାନେ ଯିବେ। କାଳେ ବିରଲା ଭବନ ଫାଟକ ପାଖରେ ଥିବା ପୋଲିସମାନେ ତାକୁ ତଲାସକରିବେ, ସେ ଭୟ ସେମାନଂକର ଥାଏ। ସେ ଯାହାହେଉ, ଗାଂଧିଜୀଂକ ସଭାକୁ ଯିବା ପୂର୍ବରୁ ସେମାନେ ବିରଲା ମଂଦିରକୁ ଯାଇଥିଲେ ବୋଲି କାରକରେଂକ ସାକ୍ଷ୍ୟରୁ ଜଣାଯାଏ। ଗଡ୍‌ସେ କିଂତୁ ମଂଦିରରେ ଥିବା ଲକ୍ଷ୍ମୀ-ନାରାୟଣ ମୂର୍ତି ଏବଂ

ଅନ୍ୟ ଦେବଦେବୀଙ୍କ ମୂର୍ତ୍ତି ନିକଟକୁ ଯାଇନଥିଲା । ସେ ମନ୍ଦିର ବେଢ଼ା ବାହାରେ ବଗିଚାରେ ଥିବା ଶିବାଜୀଙ୍କ ମୂର୍ତ୍ତି ନିକଟରେ ଛିଡ଼ାହୋଇ କଣ ଭାବୁଥିଲା । ଶିବାଜୀ ଥିଲେ ମହାରାଷ୍ଟ୍ରୀୟ ଜାତୀୟତାର ତୁଙ୍ଗ ନେତୃ-ପୁରୁଷ । କିଛି ସମୟ ପରେ ତାର ସାଥୀମାନେ ଆସିବାରୁ ସେମାନେ ବିରଲା ଭବନ ଆଡ଼କୁ ଚାଲିଲେ । ଗଡ୍‌ସେ ଆଗରୁ ଯାଇ ସଭାସ୍ଥଳରେ ପହଂଚିଯାଇଥିଲା । ବିରଲା ଭବନ ଫାଟକରେ କଡ଼ା ପୁଲିସ୍ ଜଗୁଆଳି ଥିଲେ ମଧ୍ୟ କେହି ତାର ତଲ୍ଲାସି ନେଇନଥିଲେ । ଅନ୍ୟ ଦୁଇଜଣ କାରକରେ ଓ ଆପ୍ଟେ ସେଠାରେ ପହଂଚିଲେ ଏବଂ ଗଡ୍‌ସେଠାରୁ କିଛି ଦୂରରେ ରହିଲେ । ସେମାନେ ଗଡ୍‌ସେ ଆଡ଼କୁ ସିଧାସଳଖ ଚାହୁଁନଥିଲେ କି ତା ସହିତ କୌଣସି କଥାବାର୍ତ୍ତା କରୁନଥିଲେ; ସେମାନେ ତାର ଦୁଇ ପାଖରେ ଅଳ୍ପ ଦୂରରେ ଛିଡ଼ାହୋଇଥିଲେ । ବିରଲା ଭବନର ସଦର ଫାଟକରେ କଡ଼ାକଡ଼ି ପୁଲିସ ପହରା ଥିଲା । ଗାଂଧିଜୀଙ୍କ ଜୀବନ ଉପରେ ଆଘାତ ଆସିପାରେ ବୋଲି ପୋଲିସ୍ ଖବର ପାଇଥିଲା; ତଥାପି ସେମାନେ ଫାଟକ ଭିତରକୁ ଲୋକଂକୁ ଛାଡ଼ିବାବେଳେ କୌଣସି ପ୍ରକାର ତଦାରଖ ବା ତନଖି କରୁନଥିବା କଥା ଆଶ୍ଚର୍ଯ ଲାଗେ । ପୁନାରେ ଗଡ୍‌ସେ ଓ ଆପ୍ଟେଂକ ଗତିବିଧି ଲକ୍ଷ୍ୟକରିବା ପାଇଁ ଜଣେ ସାଧା ପୋଷାକଧାରୀ ପୁଲିସ କର୍ମଚାରୀ ମୁତୟନ ହୋଇଥିଲେ; ମାତ୍ର ଘଟଣାର ତିନିମାସ ପୂର୍ବରୁ ତାହାକୁ ଉଠାଇନିଆଯାଇଥିଲା । ଏଥିରୁ ଜଣାପଡ଼େ, ସରକାରୀ କର୍ତ୍ତୃପକ୍ଷ ଗାଂଧିଜୀଂକ ହତ୍ୟା ଷଡ଼ଯଂତ୍ରର ସଂଧାନ ପାଇ ମଧ୍ୟ ନିରବଥିଲେ ।

**ନେହେରୁ-ପଟେଲ୍ ମତଭେଦ : ସର୍ଦ୍ଦାର ପଟେଲଂକ ଇସ୍ତଫା –**

ଗାଂଧିଜୀ ଜାନୁୟାରୀ ୩୦ ତାରିଖରେ ମଧ୍ୟାହ୍ନ ଭୋଜନ କରିସାରିବା ପରେ କେତେକ ଲୋକଂକୁ ଭେଟିଥିଲେ । ଶେଷ ସାକ୍ଷାତ୍‌କାରଟି ଥିଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସେ ନେହେରୁ ଓ ପଟେଲଂକୁ ଡାକି ଦୁହିଂକ ମଧ୍ୟରେ କୁହୁଳୁଥିବା ମତଭେଦ ଦୂରକରିବାପାଇଁ ଚେଷ୍ଟାକରିଥିଲେ । ପଟେଲ୍ ଥିଲେ ଭାରତର ଉପପ୍ରଧାନମଂତ୍ରୀ । ପ୍ରଧାନମଂତ୍ରୀ ନେହେରୁଂକ ସହିତ ତାଂକର ଅନେକ ବିଷୟରେ ମତଭେଦ ଘଟୁଥିଲା । ଶେଷରେ ସେ ନିଜ ପଦବୀରୁ ଇସ୍ତଫା ଦେଇଦେଲେ । ପଟେଲ୍ ନେହେରୁ ସରକାରରୁ ଚାଲିଗଲେ ଏହା ଦୁର୍ବଳ ହୋଇଯିବ । ଭାରତର ଲୌହମାନବ ସର୍ଦ୍ଦାର ପଟେଲ୍ ଥିଲେ ନେହେରୁ ସରକାରର ଏକ ଶକ୍ତିସ୍ତଂଭ; ତେଣୁ ତାଂକ ଇସ୍ତଫା ଗ୍ରହଣ କରାନଯାଉ ବୋଲି ଗାଂଧିଜୀ ଚାହୁଁଥିଲେ । ଲର୍ଡ ମାଉଂଟ୍‌ବ୍ୟାଟେନ୍ ମଧ୍ୟ ଗାଂଧିଜୀଂକୁ ଟେଲିଫୋନ୍‌ରେ ସର୍ଦ୍ଦାର ଯେପରି ତାଂକ ଇସ୍ତଫାପତ୍ର ପ୍ରତ୍ୟାହାର କରିନିଅଂତି, ସେଥିପାଇଁ ତାଂକୁ ପ୍ରବର୍ତ୍ତାଇବା ନିମନ୍ତେ ଅନୁରୋଧ କରିଥିଲେ । ଶେଷରେ ଗାଂଧୀଂକ କଥା ରଖି ସର୍ଦ୍ଦାର ପଟେଲ୍ ନିଜର ଇସ୍ତଫାପତ୍ର ପ୍ରତ୍ୟାହାର କରିନେବାକୁ ରାଜିହୋଇଥିଲେ ।

ଏଆଡ଼େ ପ୍ରାର୍ଥନା ସଭା ସମୟ ୧୦ ମିନିଟ୍ ଡେରିହୋଇଗଲାଣି । ସମସ୍ତେ

ଉଦ୍‌ବିଗ୍ନ, ଗାଂଧିଜୀ କାହିଁକି ଆସୁନାହାଂତି ? ସେ ସଭାରେ ଗୋଟିଏ ମିନିଟ୍ ଡେରିରେ ପହଂଚିବାକୁ ଚାହାଂତିନି ।

ଶେଷରେ ଗାଂଧିଜୀ ୫ଟା ୧୦ ମିନିଟ୍ ପରେ ପ୍ରାର୍ଥନା ସଭାକୁ ଆସିଥିଲେ । ସେ ତାଂକ ଦୁଇପାଖରେ ଥିବା ଆଭା ଓ ମନୁ ଗାଂଧୀଂକ କାଂଧରେ ଭରା ଦେଇ ସଭାସ୍ଥଳରେ ପହଂଚିଥିଲେ । ତାଂକୁ ବାଟଛାଡ଼ିଦେବାପାଇଁ ଲୋକମାନେ ଦୁଇପାଖରେ ଆଡ଼େଇଗଲେ । ଗଡ୍‌ସେ ମଧ୍ୟ ସେ ଲୋକଂକ ସାଂଗରେ ମିଶି ପ୍ରାର୍ଥନା ମଂଚ ନିକଟରେ ଛିଡ଼ାହୋଇରହିଲା । ଗାଂଧିଜୀ ଆଭା ଓ ମନୁ ଗାଂଧୀଂକ କାଂଧ ଉପରୁ ହାତ ଉଠାଇନେଇ ସମସ୍ତଂକୁ ନମସ୍କାରକଲେ । ସେ ସଭାମଂଚ ଆଡ଼କୁ ଆଗେଇ ଚାଲିଲେ । ସଭାମଂଡପରେ ଆଭା ଓ ମନୁ ଗାଂଧୀ ତାଂକର ଜିନିଷପତ୍ରଗୁଡ଼ିକ ସବୁଦିନ ପରି ନେଇ ରଖିଲେ – ତାହା ହେଲା ଚଷମା, ଭଗବଦ୍‌ଗୀତା ଓ ଗୋଟିଏ ନୋଟ୍‌ବୁକ୍, ଯେଉଁଥିରେ ତାଂକ ଭାଷଣର କେତେକ ସୂଚନା ଲେଖାଯାଇଥିଲା । ଆଉ ରଖିଲେ ପିତଳର ଏକ ପିକଦାଡ଼ଇ । ଏହା ସବୁଦିନ ପ୍ରାର୍ଥନାସଭାକୁ ନିଆଯାଏ ।

ହଠାତ୍ ଗଡ୍‌ସେ ତା ପ୍ୟାଂଟ ପକେଟରୁ ପିସ୍ତଲ କାଢ଼ି ହାତରେ ଲୁଚାଇଧରି ଗାଂଧୀଂକ ସାମ୍ନାରେ ଯାଇ ଛିଡ଼ାହୋଇଗଲା । କହିଲା, "ନମସ୍ତେ ଗାଂଧିଜୀ !" ମନୁ ଗାଂଧୀ ଦେଖିଲେ ମିଲ୍‌ଟାରି ଖାକି ପୋଷାକପିଂଧା କିଏ ଜଣେ ଯୁବକ ଗାଂଧିଜୀଂକୁ ଅଭିନଂଦନ ଜଣାଉଛି । ତା'ପରେ ସେ ନଇଁପଡ଼ି ଗାଂଧିଜୀଂକ ପାଦ ଆଡ଼କୁ ହାତ ବଢ଼ାଇଲା । ମନୁ ଭାବିଲେ, ସେ ବୋଧେ ଗାଂଧିଜୀଂକ ପଦଧୂଳି ନେଉଛଂତି । ତା'ପରେ ଗଡ୍‌ସେ ଗାଂଧିଜୀଂକ ପେଟକୁ ଲକ୍ଷ୍ୟକରି ତିନୋଟି ଗୁଳି ଫୁଟାଇଲା । ତିନୋଟିଯାକ ଗୁଳିହିଁ ଗାଂଧିଜୀଂକ ପେଟ ଭେଦକରିଥିଲା । ଗାଂଧିଜୀ ଆଉ ପାଦେ ଆଗେଇଗଲେ । ମନୁ ଗାଂଧୀ ଦେଖିଲେ ରକ୍ତଧାର ଛୁଟିଛି । ତା'ପରେ "ହେ ରାମ୍" କହି ଗାଂଧିଜୀ ତଳେ ପଡ଼ିଗଲେ । ତାଂକ ଶେଷ ନିଃଶ୍ୱାସ ଦିଲ୍ଲୀର ପବନରେ ମିଳାଇଗଲା । କୋଟି କୋଟି ଭାରତବାସୀଂକର ପିତୃ-ପ୍ରତିମ ବାପୁଜୀ, ଯେ କି ସମଗ୍ର ବିଶ୍ୱର ଏକ ପ୍ରବାଦ-ପୁରୁଷରେ ପରିଣତ ହୋଇଥିଲେ, ସେହିଠାରେ ଟଳିପଡ଼ିଲେ । ('Freedom at Midnight')

"ଆଲୁଅ ଲିଭିଗଲା" –

ମହାମାନବର ମହାପ୍ରୟାଣରେ ସମଗ୍ର ବିଶ୍ୱବାସୀ ଶୋକାକୁଳ ହୋଇପଡ଼ିଲେ । ଦିଲ୍ଲୀର ହଜାର ହଜାର ହିଂଦୁ ମୁସଲମାନ ଶୋକାକୁଳ ହୋଇପଡ଼ିଲେ । ଦିଲ୍ଲୀରେ ହଜାର ହଜାର ହିଂଦୁ ମୁସଲମାନ ନରନାରୀ ଗାଂଧିଜୀଂକ ଶେଷଦର୍ଶନ ପାଇଁ ବିରଳା ଭବନ ଆଡ଼କୁ ଛୁଟିଚାଲିଲେ । ପଂଡିତ ଜବାହରଲାଲ ନେହେରୁ ବାଷ୍ପ-ଗଦ୍‌ଗଦ କଂଠରେ କହିଲେ, "ଆଲୁଅ ଲିଭିଗଲା ।" ଭାରତର ଅଗଣିତ ନରନାରୀଂକ ହୃଦୟରେ ପ୍ରତିଧ୍ୱନି ଉଠିଲା "ଆଲୁଅ ଲିଭିଗଲା ।"

ଆମେ କଲିକତାରେ ଗାଂଧିଜୀଂକ ମୃତ୍ୟୁଖବର ରାତି ପ୍ରାୟ ୭ଟାରେ ରେଡ଼ିଓରୁ ପାଇ ଦୁଃଖ ଶୋକରେ ଭାଂଗିପଡ଼ିଲୁ। ମିଲ୍ ବଂଦକରିଦିଆଗଲା। ହଜାର ହଜାର ଶ୍ରମିକ ରାସ୍ତାରେ ଦଳଦଳ ହୋଇ କହୁଥାଂତି, "ଗାଂଧିଜୀ ଅମର ହେ।"

**ଗାଂଧିଜୀଂକ ଅଂତିମ କାହାଣୀ –**

ମୁଁ ମୋ ଆତ୍ମଜୀବନୀରେ ଗାଂଧିଜୀଂକ ଅତିଂମ କାହାଣୀ କାହିଁକି ଲେଖିଲି ? ପ୍ରଥମରୁ କହିଛି, ମୋ ଆତ୍ମଜୀବନୀ କେବଳ ମୋର ଆତ୍ମଜୀବନୀ ନୁହେଁ; ତାହା ମୋ ସମୟର ଆତ୍ମଲିପି ଏବଂ ଏକ ବ୍ୟାଖ୍ୟା ମଧ୍ୟ। ତେଣୁ ଗାଂଧିଜୀଂକ ଅଂତିମ କାହାଣୀ ନଲେଖିଥିଲେ ମୋ ଆତ୍ମକଥା ସଂପୂର୍ଣ ହୋଇନଥାଂତା। ମୋ ଶତାବ୍ଦୀର ଇତିହାସ ତାର ଆତ୍ମା-ପୁରୁଷ ଗାଂଧିଜୀଂକ ଇତିହାସ। ତେଣୁ ଗାଂଧିଜୀ ତାଂକ ଶେଷ-ନିଃଶ୍ୱାସରେ ସେହି ଇତିହାସକୁ ଏକ ଅଦ୍‌ଭୁତ ପରିଣାମ ଆଡ଼କୁ ଆଗେଇନେଇଛଂତି।

**ଶେଷ-ସ୍ମାରକ –**

ଏ ଘଟଣାର ତିନି-ଚାରି ମାସପରେ ମୁଁ କୌଣସି କାମରେ ଦିଲ୍ଲୀ ଯାଇଥାଏ। ସେଠାରେ ପହଂଚି ମୁଁ ବିରଳା ଭବନସ୍ଥ ପ୍ରାର୍ଥନା ପଡ଼ିଆକୁ ଯାଇଥିଲି। ସେଠାରେ କେହି ନଥିଲେ। ବିରାଟ ପଡ଼ିଆଟା ଖାଁ-ଖାଁ କରୁଥାଏ। ମୁଁ ଚାରିଆଡ଼କୁ ଭଲକରି ଥରେ ଦେଖିନେଲି। ସବୁ ଶୂନ୍‌ଶାନ୍। କିଛିକ୍ଷଣପରେ ଖଂଡେ ଧଳା ପଥର ମୋ ଦୃଷ୍ଟି ଆକର୍ଷଣ କଲା। ମୁଁ ସେଠାକୁ ଯାଇ ଦେଖିଲି ସେହି ଧଳା ମାର୍ବଲ ଉପରେ ହିଂଦୀରେ ଲେଖା ଅଛି ମାତ୍ର ତିନୋଟି ଅକ୍ଷର – "ହେ ରାମ"।

ମୁଁ ନୀରବ ନିସ୍ତବ୍ଧ ହୋଇ ସେଠାରେ ଏକ ଘଂଟା କାଳ ବସିରହିଲି। ମୋ ଆଖି ଆଗରେ ନାଚିଗଲା ଗାଂଧିଜୀଂକର ସେହି ମୃଣ୍ମୟ-ଚିନ୍ମୟ-ବାଙ୍‌ମୟ ମୂର୍ତି। ତାଂକର ଛୋଟ ଦେହଟି ଭିତରେ ଥିଲା ବିଶ୍ୱ-ମାନବର ପ୍ରେରଣା ଓ ସ୍ୱପ୍ନ। ଏହା ଥିଲା ବିଶ୍ୱରେ ଦ୍ୱିତୀୟ କ୍ରୁଶ-ଆରୋହଣ। ଦିଲ୍ଲୀର ସେହି ବିଷର୍ଣ ସଂଧ୍ୟାରେ, ମୁଁ ସେହି ମହାମାନବଂକୁ ପ୍ରଣାମ ଜଣାଇ ସେଠାରେ ଏକ ଗଭୀର ଦୀର୍ଘଶ୍ୱାସ ରଖି ମୋ ବାସସ୍ଥାନକୁ ଫେରିଗଲି।

ବିଚାରରେ ଗଡ୍‌ସେକୁ ଫାଶୀଦଂଡ ଦିଆଯାଇଥିଲା। ଅନ୍ୟମାନଂକୁ ଦୀର୍ଘ କାରାଦଂଡ ମିଳିଥିଲା।

**ପିତୃ ବିୟୋଗ –**

୧୯୪୮ ମସିହା ଏପ୍ରିଲ ମାସରେ ମୋର ଜନ୍ମିତ ପିତା ପ୍ରସନ୍ନ କୁମାର ରାଉତରାୟଂକର ମୃତ୍ୟୁ ହୋଇଥିଲା। ସେ ବାସିଲେରୀ ଡିସେଂଟ୍ରୀରେ କିଛିଦିନ ଭୋଗି ମୃତ୍ୟୁମୁଖରେ ପଡ଼ିଥିଲେ। ମୁଁ ସେତେବେଳକୁ ଗୋଲାପଲ୍ଲୀରେ ଥିଲି।

ମାର୍ଚମାସ ୩୧ ତାରିଖରେ ମୋର ସାନଝିଅ ଚିତ୍ରୋତ୍ପଳା ଓରଫ ଚିତ୍ରାର ଜନ୍ମ ହୋଇଥିଲା। ଗୋଲାପଲ୍ଲୀ ନିକଟସ୍ଥ ନୁଜ୍‌ଭୀଠାରେ ଏକ ବଡ଼ ଆମେରିକାନ୍ ମିସନାରୀ ହସ୍‌ପିଟାଲ୍ ଥାଏ। ସେଠାରେ ଏକ ସ୍ୱତଂତ୍ର ରୁମ୍ ନେଇଥିଲୁ। ସେହି

ହସପିଟାଲ୍‌ରେ ଚିତ୍ରାର ଜନ୍ମ ହୋଇଥିଲା । ମୁଁ, ମୋ ସ୍ତ୍ରୀ ଓ ବଡ଼ଝିଅ ମଂଜୁଶ୍ରୀ ମୋ ସ୍ତ୍ରୀଂକ ବଡ଼ବାପା ଭୂୟରୁ ରାଜାଂକ ରାଜବାଟୀ ନୁଜ୍‌ଭୀରେ ରହିଥିଲୁ । ଆଂଧ୍ରର ପ୍ରଥା ଅନୁସାରେ ପ୍ରଥମ ଓ ଦ୍ୱିତୀୟ ସଂତାନ ଜନ୍ମର ସମସ୍ତ ବ୍ୟବସ୍ଥା ଶ୍ୱଶୁରଘର କରିବା କଥା । ମୋ ନିଜ ଶ୍ୱଶୁର ଗୋଲାପଲ୍ଲୀ ଜମିଦାର କିଛିଦିନ ଆଗରୁ ମୃତ୍ୟୁବରଣ କରିଥାଂତି । ତେଣୁ ଭୂୟରୁ ବଡ଼ବାପା ମୋ ସ୍ତ୍ରୀଂକୁ ଡାକିନେଇ ତାଂକ ଘରେ ରଖିଥିଲେ ।

ଚିତ୍ରା ଜନ୍ମ ହେବାର କିଛିଦିନ ପରେ ଆମେ ଗୋଲାପଲ୍ଲୀ ଚାଲିଆସିଲୁ । ସେହିଠାରେ ମୁଁ ମୋ ପିତାଂକ ଅସୁସ୍ଥତା ବିଷୟରେ ଟେଲିଗ୍ରାମ୍ ପାଇଲି । ନଂଦ ଦଦାଂକ ଟେଲିଗ୍ରାମ ପାଇ ସଂଗେ ସଂଗେ ଗାଁକୁ ଚାଲିଆସିଲି । ମୁଁ ଆସିବା ପୂର୍ବଦିନ ତାଂକର ଶବଦାହ ହୋଇଯାଇଥିଲା; ତେଣୁ ମୁଁ ତାଂକର ଶେଷଦର୍ଶନ କରିପାରିନଥିଲି । ଏହା ମୋ ଜୀବନରେ ଏକ ବଡ଼ ଦୁଃଖ ରହିଗଲା । ମୁଁ ଜନ୍ମିତ ପିତାଂକର ଶ୍ରାଦ୍ଧ ଦିଏନାହିଁ; କାରଣ ମୁଁ ବଡ଼ବାପା ସଦାନଂଦ ରାଉତରାୟଂକର ପୋଷ୍ୟପୁତ୍ର ହୋଇଯାଇଥିଲି । ମୁଁ ପ୍ରତିଦିନ ଫାଲ୍‌ଗୁନ ଶୁକ୍ଳ-ଦ୍ୱାଦଶୀ ତିଥିରେ ତାଂକର ଶ୍ରାଦ୍ଧ ଦିଏ । ମାମାର ଶ୍ରାଦ୍ଧ ମଧ ବୈଶାଖ ଶୁକ୍ଳ-ଦ୍ୱାଦଶୀ ତିଥିରେ ଦିଏ ।

ମୋ ଜନ୍ମିତ ମାତାଂକର (ବୋଉର) ଶ୍ରାଦ୍ଧ ମଧ ମୁଁ ଦିଏନାହିଁ । ମୋ ସାନଭାଇ ମୁନିଆ ବା ଶ୍ୟାମାନଂଦ, ସାନ ଦଦେଇ ଓ ବୋଉର ଶ୍ରାଦ୍ଧ ଦିଏ । ମାମା ୧୯୪୦ ମସିହା ବୈଶାଖ ଶୁକ୍ଳ-ଦ୍ୱାଦଶୀରେ ବାଂକି ନରଣପୁରଠାରେ ଇହଲୀଳା ତ୍ୟାଗକରିଥିଲେ ।

ମୋର ଜନ୍ମଦାତା ପ୍ରସନ୍ନ କୁମାର, ଯାହାଂକୁ ମୁଁ ସାନଦଦେଇ ବୋଲି ଡାକୁଥିଲି, ସେ ଜଣେ ଋଷିପ୍ରତିମ ଲୋକ ଥିଲେ । ସେ କାହାର ଅନିଷ୍ଟ ଚିଂତା କରୁନଥିଲେ । ସେ ବଡ଼ ଶାଂତ ନିରୀହ ପ୍ରକୃତିର ମଣିଷ ଥିଲେ । ସେ ଥିଲେ ଖୋର୍ଧାର ପ୍ରସିଦ୍ଧ ମୁକ୍ତାର । ଆଇନଜୀବୀ ଭାବରେ ତାଂକର ଖୁବ୍ ସୁଖ୍ୟାତି ଥିଲା । ବହୁତ ବଡ଼ ବଡ଼ ଲୋକ, ଯଥା— ପଂଡିତ ଗୋଦାବରୀଶ ମିଶ୍ର, ପଂଡିତ କୃପାସିଂଧୁ ହୋତା, ପଂଡିତ ନୀଳକଂଠ ଦାସ ପ୍ରଭୃତି ଆମ ଘରକୁ ଆସି ତାଂକ ସହିତ ପରାମର୍ଶ କରି ଯାଉଥିଲେ । ମୁଁ ସେତେବେଳକୁ ପିଲାଥିଲି ।

ସାନଦଦେଇ ଥିଲେ ଜଣେ କଂଗ୍ରେସପ୍ରେମୀ ଲୋକ । ସେ ଖୋର୍ଧା ମଂଡଳ କଂଗ୍ରେସର କିଛିଦିନ ସଭାପତି ଥିଲେ । ଖୋର୍ଧାରେ କଂଗ୍ରେସ ସଭା ହେଲେ ସେ ସଭାପତିତ୍ୱ କରୁଥିଲେ । ସେ ଧଳା ଖଦଡ଼ର ପ୍ୟାଂଟ ଓ ଗଳାବଂଦ କୋଟ ପିଂଧି କଚେରିକୁ ଯାଉଥିଲେ ।

ସେ ମୋତେ ବଡ଼ ଭଲପାଉଥିଲେ । ମୁଁ କଲିକତାରେ ଚାକିରି କରୁଥିବାବେଳେ ସେ ମୋତେ ବରାବର ଇଂରାଜୀରେ ଚିଠି ଦେଉଥିଲେ । ତାଂକର କିଛିଦିନ ମୋ ପାଖରେ କଲିକତାରେ ରହିବାପାଇଁ ଇଚ୍ଛାଥିଲା; ମାତ୍ର ମୁଁ ତାହା ପୂରଣ କରିବାପୂର୍ବରୁ ସେ ଇହଧାମ ତ୍ୟାଗକଲେ ।

# ସପ୍ତବିଂଶ ଉଲ୍ଲାସ

## ବିଷାଦ ଅଂକ : କେତୋଟି ଇତିବୃତ୍ତ

**ମାମାର ଦେହାଂତ –**

୧୯୪୦ ମସିହା ବୈଶାଖ ଶୁକ୍ଳ-ଦ୍ୱାଦଶୀ ଦିନ ମାମାର ତାର ଜନ୍ମସ୍ଥାନ ବାଂକୀ ନରଣପୁରଠାରେ ଦେହାଂତ ହୋଇଯାଇଥିଲା । ଏକଥା ମୁଁ ଏଥିପୂର୍ବରୁ ସୂଚନା ଦେଇଛି । ମାମାର ବଡ଼ବାପା ପୁଅ ଭାଇ ଆର୍ତବଲ୍ଲଭ ମାମୁଂକର ନରଣପୁରଠାରେ ଝାଡ଼ାବାଂତି ରୋଗରେ ମୃତ୍ୟୁ ହୋଇଯାଇଥିଲା । ସେ ସବ୍‌ରେଜିଷ୍ଟର ଚାକିରିରୁ ଅବସର ନେବା ପରେ ନିଜ ଗାଁ ନରଣପୁରରେ ରହୁଥିଲେ । ସେ ମାମାଠୁ ବୟସରେ ବଡ଼ । ମାମା ତାଂକ ଶୁଦ୍ଧିକ୍ରିୟାରେ ଯୋଗଦେବାପାଇଁ ନରଣପୁର ଯାଇଥିଲା । ସେତେବେଳେ ତ ଖୋର୍ଧାଠୁ ବାଂକୀ ଶଗଡ଼ ଗାଡ଼ିରେ ଯିବାକୁହିଁ ହେଉଥାଏ । ମାମା ନରଣପୁରରେ ଝାଡ଼ାବାଂତି ରୋଗରେ ଆକ୍ରାଂତ ହେଲା । ମୁଁ ସେତେବେଳେ କଟକରେ ରାଣୀହାଟଠାରେ ଥିବା ପୂର୍ବର 'ଆରତୀ' ଅଫିସରେ ରହୁଥାଏ । ମୋତେ ନରଣପୁରରୁ ଲୋକ ପଠାଇ ଦାମ ମାମୁ ଓ ପିତାଂବର ମାମୁଁ ଏ ଖବର ଦେଇଥିଲେ । ମୁଁ ଏହା ଶୁଣିବାମାତ୍ରେ କଟକ ମେଡିକାଲ ସ୍କୁଲର ଜଣେ ଉଚ୍ଚଶ୍ରେଣୀର ଛାତ୍ର ଓ ଜଗଦୀଶ କଂପାଉଂଡରକୁ ନେଇ ଖୋର୍ଧା ଗଲି । ସଂଗରେ କିଛି ସାଲାଇନ୍, ସିରିଂଜ ଏବଂ ଔଷଧପତ୍ର ନେଇ ଯାଇଥିଲୁ । ଖୋର୍ଧାରୁ ଗୋଟିଏ ଟ୍ୟାକ୍ସି ଭଡ଼ାକରି ବାଂକୀ ଗଲୁ । ସେଠାର ଡାକ୍ତରଖାନାରୁ କିଛି ଔଷଧପତ୍ର ମଧ୍ୟ ସଂଗ୍ରହକଲୁ । ମାତ୍ର ଆମେ ନରଣପୁର ଗାଁମୁଂଡରେ ପହଂଚିଲା ବେଳକୁ ମାମୁମାନେ ଆସି ତାଂକ ଘରକୁ ଯିବା ପାଇଁ ନିଷେଧକଲେ; କହିଲେ "ଅପା ଆଜି ସକାଳୁ ଚାଲିଗଲେ । ତମେ ଆଉ ଆମ ଘରକୁ ଯିବା ଦରକାରନାହିଁ । ହଇଜା ବଡ଼ ସଂକ୍ରାମକ ରୋଗ, ତମେ ଏ ଗାଁମୁଂଡ ସ୍କୁଲ ଘରେ ବସିଥାଅ । ଆମେ ଘଂଟାକ ଭିତରେ ଶବ ନେଇ ଶ୍ମଶାନକୁ ଗଲେ ତମେ ଯାଇ ମୁଖାଗ୍ନି ଦେବ ।" ସେହିପରି ହେଲା ।

ଖଇଫୁଟା ଖରାତାତି । ଆମେ ଟ୍ୟାକ୍ସିରେ ଶ୍ମଶାନଯାଏ ଗଲୁ । ସେଠାରୁ ଅଳ୍ପଦୂର ପାଦରେ ଚାଲି ଶବ ନିକଟରେ ପହଂଚିଲୁ । ମାମା ଚିତା ଉପରେ ଶୋଇଥାଏ । ତା ମୁହଁ ଶାଢ଼ିରେ ଢଂକା ଯାଇଥାଏ । ମୁଁ ପହଂଚିବାରୁ ତା' ମୁହଁରୁ ଲୁଗା କାଢ଼ିଦେଲେ । ମୁଁ ମାମାକୁ ଦେଖି କାଂଦିଉଠିଲି । ତା'ପରେ ମୋ ହାତକୁ ଏକ ଜଳିତା ବଢ଼ାଇଦେଲେ । ମୁଁ ମାମା ମୁହଁରେ ମୁଖାଗ୍ନି ଦେଇ ଏକମୁହାଁ ହୋଇ ଟ୍ୟାକ୍ସିକୁ ଫେରିଆସିଲି । ତା'ପରେ ମୁଁ ଓ ସଂଗୀମାନେ ଆମ ଗାଁ

ଗୁରୁଜଂଗ ଆସିଲୁ। ମୁଁ ସେଠାରେ ୧୪ ଦିନ ରହି ସବୁ କ୍ରିୟାକର୍ମ ଓ ଶ୍ରାଦ୍ଧ ଇତ୍ୟାଦି ସାରି କଟକ ଫେରିଗଲି। ମାମାର ଚିତାଭସ୍ମ ଓ ଅସ୍ଥି ନରଣପୁରରୁ ଅଣାଗଲା। ତାକୁ ଆମ ଗାଁମୁଂଡ ପଶ୍ଚିମ ପଟ ଟାଂଗିରେ ଗୋଟିଏ ସମାଧି କରି ରଖାଗଲା। ମୁଁ ଗାଁରେ ଥିଲାବେଳେ ପ୍ରାୟ ପ୍ରତିଦିନ ଉପରବେଳା ସେଠାକୁ ଯାଇ ସେହି ସମାଧି ପାଖରେ କିଛି ସମୟ ବସିରହେ। ଚାରିଆଡ଼େ ନିଛାଟିଆ ପଡ଼ିଆ; କେବଳ କେଇଟା କୋଚିଲା ଗଛ ଏଠିସେଠି ଛିଡ଼ାହୋଇଥାଂତି। ଏଣୁତେଣୁ ନାନା କଥା ଭାବୁଥାଏ। ସୁଦୂର ଅତୀତର ବହୁକଥା ମୋ ମନ ଭିତରେ ଉଂକି ମାରିଦେଇ ଯାଉଥାଏ। ସେଠାରେ କିଛି ସମୟ ବସିରହିବା ପରେ ମୁଁ ଘରକୁ ଫେରେ। ମାମା ଥିଲା ଏକ ସର୍ବସଂହା ନାରୀମୂର୍ତ୍ତି। ଦୁଃଖରେ ତାର ଜୀବନ ଗଢ଼ାହୋଇଥିଲା, ଦୁଃଖରେହିଁ ଲୀନ ହୋଇଗଲା।

**ମୋ' ଶ୍ୱଶୁରଂକ ମୃତ୍ୟୁ –**

ମୋ' ଶ୍ୱଶୁରଂକ ମୃତ୍ୟୁ ବିଷୟ ପୂର୍ବରୁ କହିଛି। ମୋ ଶ୍ୱଶୁର, ଗୋଲ୍ଲାପଲ୍ଲୀ ଜମିଦାର (ଲୋକମୁଖରେ ରାଜା) ଗୋଲ୍ଲାପଲ୍ଲୀଠାରୁ ୫-୬ ମାଇଲ ଦୂରରେ ଥିବା ଏକ ଗାଁକୁ ଯାଇଥିଲେ। ସେଠାରେ ସେ ରାତିରେ ଡାକବଂଗଳାରେ ରହିଥିଲେ। ହଠାତ୍ ସକାଳେ ଚଉକିଦାର ଖିଡ଼ିକିବାଟେ ଦେଖିଲାବେଳକୁ ସେ ଆଉ ଜୀବନରେ ନାହାଂତି। ରାତିରେ କଣ ହେଲା ଏହା କେହି ଜାଣିପାରିଲେନାହିଁ। ବୋଧହୁଏ ହାର୍ଟଫେଲ୍ ବା ହୃଦ୍‌ଯଂତ୍ର କ୍ରିୟା ବଂଦହୋଇଯାଇଥିଲା। ତାଂକ ମୃତ ଦେହକୁ ଗୋଲାପଲ୍ଲୀକୁ ଅଣାଯାଇ ସେଠାରେ ତାଂକର ଅଂତ୍ୟେଷ୍ଟି କ୍ରିୟା ସମାପନ କରାଯାଇଥିଲା। ତାଂକର କେହି ପୁତ୍ର-ସଂତାନ ନଥିବାରୁ ଜଣେ ନିକଟ ଆତ୍ମୀୟ ତାଂକର ଶେଷକୃତ୍ୟ ସମାପନ କରିଥିଲେ; କ୍ରିୟା ଧରିଥିଲେ। ମୁଁ ତାଂକର ମୃତ୍ୟୁ ହେବାର ତୃତୀୟ ଦିନ କଲିକତାରୁ ସପରିବାର ଆସି ପହଂଚିଲି ଏବଂ ୧୦-୧୨ ଦିନ ରହି ଶ୍ରାଦ୍ଧକର୍ମରେ ଆମେ ଯୋଗଦେଇଥିଲୁ। ସେ ଥିଲେ ଜଣେ ପ୍ରିୟଦର୍ଶୀ ସର୍ବତୋ ଭଦ୍ର ମଣିଷ। ତାଂକର ଜୀବନ-ଜିଗୀଁସାର ଭିତ୍ତିଭୂମି ଥିଲା ମାନବିକ ମୂଲ୍ୟବୋଧ, ଯାହା ଆମ ସମୟରେ ବିରଳ।

**ପ୍ରବାସୀ ଓଡ଼ିଆ ସମ୍ମିଳନୀ –**

ପୂର୍ବରୁ କହିଛି, କଲିକତାର ମାଟିଆବୁରୁଜୁଠାରେ ୧୯୪୮ ମସିହାରେ ପ୍ରଥମ ପ୍ରବାସୀ ଓଡ଼ିଆ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ମୁଁ ଏହାର ଅଭ୍ୟର୍ଥନା ସମିତିର ସଭାପତି ଥିଲି। କଲିକତା ଓ ଏହାର ଉପକଂଠ ଅଂଚଳରୁ ପ୍ରାୟ ଲକ୍ଷାଧିକ ଓଡ଼ିଆ ଏଥିରେ ଯୋଗଦେଇଥିଲେ। ଏଥିରେ ମୁଖ୍ୟ ଅତିଥି ଥିଲେ ପଶ୍ଚିମ-ବଂଗର ପ୍ରଥମ କଂଗ୍ରେସ ମୁଖ୍ୟମଂତ୍ରୀ ଡ. ପ୍ରଫୁଲ୍ଲ ଘୋଷ। ସେତେବେଳେ ମୁଖ୍ୟମଂତ୍ରୀମାନଂକୁ ପ୍ରଧାନମଂତ୍ରୀ କୁହାଯାଉଥିଲା। ଓଡ଼ିଶାର ମୁଖ୍ୟମଂତ୍ରୀ ଡ. ହରେକୃଷ୍ଣ ମହତାବ ଏହା ଉଦ୍‌ଘାଟନ କରିଥିଲେ। ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଚିଂତାମଣି ଆଚାର୍ଯ୍ୟ

ଏଥିରେ ସଭାପତିତ୍ୱ କରିଥିଲେ। ଏହି ସମ୍ମିଳନୀରେ କଲିକତା ପ୍ରବାସୀ ଓଡ଼ିଆ-ମାନଂକର ଅଭାବ ଅସୁବିଧା ଦୂରୀକରଣ ଏବଂ ସାଂସ୍କୃତିକ ବିକାଶ ଇତ୍ୟାଦି ବିଷୟରେ କେତେକ ପ୍ରସ୍ତାବ ଓ କାର୍ଯକ୍ରମ ଗୃହୀତ ହୋଇଥିଲା। ଓଡ଼ିଶାରେ ଷଡେଇକଳା ଓ ଖରସୁଆଁ ମିଶ୍ରଣ ଏବଂ ବିଚ୍ଛିନ୍ନାଂଚଳମାନଂକରେ ଓଡ଼ିଆ ଭାଷା ସଂସ୍କୃତିର ସୁରକ୍ଷା ଓ ଉନ୍ନୟନ ବିଷୟରେ କେତେକ ଆଶୁ ପଦକ୍ଷେପ ନେବା ପାଇଁ ସ୍ଥିରହୋଇଥିଲା।

**ନିଖିଳ ଭାରତ ଉତ୍କଳ ମହାସଭା –**

୧୯୫୯ ମସିହାରେ କଲିକତାରେ ନିଖିଳ ଭାରତ ପ୍ରବାସୀ ଓଡ଼ିଆ ସମ୍ମିଳନୀର ଆୟୋଜନ କରାଯାଇଥିଲା। ଏ ବିଷୟ ପୂର୍ବରୁ ଦେଶ-ମିଶ୍ରଣ ପ୍ରସଂଗରେ କୁହାଯାଇଛି। ମୁଁ ଏହାର ପ୍ରସ୍ତୁତି କମିଟିର ସଭାପତି ଥିଲି। ଶ୍ୟାମସୁନ୍ଦର ମହାପାତ୍ର (ପରେ ଏମ୍.ପି.) ଏହାର ସାଧାରଣ ସଂପାଦକ ଥିଲେ। ବଉବଜାରଷ୍ଟ୍ରିଟସ୍ଥିତ ଇଂଡିଆନ୍ ଇନଷ୍ଟିଚ୍ୟୁଟ୍ ହଲ୍‌ରେ ଏହାର ପ୍ରସ୍ତୁତି କମିଟିର ଏକ ପୂର୍ଣାଂଗ ବୈଠକ ବସିଥିଲା। ଏଥିରେ ମୁଖ୍ୟ ଅତିଥି ରୂପେ ଭାଷଣ ଦେଇଥିଲେ କେନ୍ଦ୍ର ଉଦ୍‌ଯୋଗ ମଂତ୍ରୀ ଲାଲବାହାଦୁର ଶାସ୍ତ୍ରୀ। କେନ୍ଦ୍ରର ଉଦ୍‌ଯୋଗ ମଂତ୍ରାଳୟର ରାଜସ୍ୱମଂତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଏଥିରେ ଯୋଗଦେଇଥିଲେ। ଏଥିରେ ଏକ ନିଖିଳ ଭାରତ ଉତ୍କଳ ମହାସଭା ଗଠନ କରାଯାଇଥିଲା। ମୁଁ ତାର ସଭାପତି ଥିଲି। ଏହାଛଡ଼ା ଓଡ଼ିଶାରେ ଷଢ଼େଇକଳା ଖରସୁଁଆ ମିଶ୍ରଣ, ବିଚ୍ଛିନ୍ନାଂଚଳରେ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତିର ଅଭିବୃଦ୍ଧି ପାଇଁ ପଦକ୍ଷେପ ନିଆଯାଇଥିଲା। ଏହାଛଡ଼ା କଲିକତା ପ୍ରବାସୀ ଓଡ଼ିଆମାନଂକର ନାନା ସମସ୍ୟା ଏବଂ ଅଭାବ ଅସୁବିଧା ଦୂରୀକରଣ ଦିଗରେ କେତେକ କାର୍ଯକ୍ରମ ଗ୍ରହଣ କରାଯାଇଥିଲା।

ଦୁଇ ମାସ ପରେ ମୁଖ୍ୟ ସମ୍ମିଳନୀ ଓୟେଲିଂଗଟନ ସ୍କୋୟାରରେ ତିନିଦିନଧରି ବସିଥିଲା। ଏଥିରେ ପ୍ରାୟ ତିନି-ଚାରି ଲକ୍ଷ ପ୍ରବାସୀ ଓଡ଼ିଆ ପ୍ରତିଦିନ ଯୋଗଦେଉଥିଲେ। ପଶ୍ଚିମ ବଂଗର ବିଭିନ୍ନ ଜିଲ୍ଲାର ଅଧିବାସୀ ବହୁ ଓଡ଼ିଆ ଭଦ୍ରଲୋକ ଆସି ଏଥିରେ ଅଂଶଗ୍ରହଣ କରୁଥିଲେ।

ବହୁ କେନ୍ଦ୍ର ମଂତ୍ରୀ ଯଥା ହୁମାୟୁନ କବିର, ଅଶୋକ ସେନ, ପଶ୍ଚିମ ବଂଗର ଖାଦ୍ୟମଂତ୍ରୀ ପ୍ରଫୁଲ୍ଲ ସେନ ପ୍ରମୁଖ ଏଥିରେ ଭାଷଣ ଦେଇଥିଲେ। ଷଢ଼େଇକଳାର ପ୍ରଖ୍ୟାତ ଛଉନାଚ ପ୍ରଦର୍ଶିତ ହୋଇଥିଲା। ୧୯୪୮ ମସିହାରୁ ୧୯୬୦ ମସିହା ପର୍ଯଂତ ପ୍ରାୟ ପ୍ରତିବର୍ଷ ପ୍ରବାସୀ ଓଡ଼ିଆ ସମ୍ମିଳନୀମାନ କଲିକତାରେ ଆୟୋଜିତ ହେଉଥିଲା। ମୁଁ ଏଥିରେ ସକ୍ରିୟ ଭୂମିକା ଗ୍ରହଣ କରୁଥିଲି। ମୁଁ ୧୯୬୨ ମସିହାରେ କଲିକତା ଛାଡ଼ିବାପରେ ଏହି ସମ୍ମିଳନୀ ପ୍ରାୟ ହେଉନାହିଁ– ଏହା ବଡ଼ ଦୁଃଖର କଥା।

ଏହି ସମ୍ମିଳନୀରେ ନିଖିଳ ଭାରତ ଉତ୍କଳ ମହାସଭା ଗଠନ କାର୍ଯ୍ୟ ଚୂଡ଼ାଂତ

କରାଯାଇଥିଲା । ଓଡ଼ିଶାରେ ଷଢ଼େଇକଳା ଖରସୁଁଆ ମିଶ୍ରଣ, ବିଚ୍ଛିନ୍ନାଂଚଳ ମାନଂକରେ ଓଡ଼ିଆ ଭାଷା-ସଂସ୍କୃତିର ସଂରକ୍ଷଣ ଓ ଉନ୍ନୟନ ତ୍ୱରାନ୍ୱିତ କରିବାପାଇଁ କମିଟିମାନ ଗଠନ କରାଯାଇଥିଲା ।

**ପ୍ରବାସୀ ଓଡ଼ିଆ ସାହିତ୍ୟ ସମ୍ମିଳନୀ –**

ଏହାଛଡ଼ା ମୋର ଅଧ୍ୟକ୍ଷତାରେ କଲିକତାଠାରେ ପ୍ରବାସୀ ଓଡ଼ିଆ ସାହିତ୍ୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ପୂର୍ବରୁ ଏ ବିଷୟରେ ସୂଚନା ଦିଆଯାଇଛି । ଏହା ବଡ଼ବଜାରଷ୍ଟ୍ରିଟସ୍ଥ ଇଂଡିଆନ ଇନଷ୍ଟିଚ୍ୟୁଟ୍ ହଲରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଓଡ଼ିଶାର ପ୍ରଖ୍ୟାତ କବି ଓ କଥାକାର କାଳିଂଦୀ ଚରଣ ପାଣିଗ୍ରାହୀ, ପଶ୍ଚିମ-ବଂଗର ଲବ୍ଧପ୍ରତିଷ୍ଠ ଔପନ୍ୟାସିକ ତାରାଶଂକର ବଂଦୋପାଧ୍ୟାୟ ଓ ଅନ୍ନଦାଶଂକର ରାୟ ପ୍ରମୁଖ ମୁଖ୍ୟ ଅତିଥି ଓ ମୁଖ୍ୟ ବକ୍ତା ଭାବରେ ଭାଷଣଦେଇଥିଲେ । ଓଡ଼ିଆ ସାହିତ୍ୟ ଓ ବଂଗସାହିତ୍ୟର ସଂପର୍କ, ଶ୍ରୀ ଚୈତନ୍ୟ ମହାପ୍ରଭୁଂକଠାରୁ ଆରଂଭକରି ଆଜି ପର୍ଯ୍ୟଂତ ଓଡ଼ିଶା ଓ ବଂଗ ପ୍ରଦେଶ ମଧ୍ୟରେ ଥିବା ସାଂସ୍କୃତିକ ଓ ଧାର୍ମିକ ସଂପର୍କ ତଥା ଉଭୟ ରାଜ୍ୟ ମଧ୍ୟରେ ଥିବା ମୈତ୍ରୀ ଓ ସୌହାର୍ଦ୍ଦ୍ୟ ସଂବଂଧରେ ବିଶେଷ ଆଲୋଚନା କରାଯାଇଥିଲା । ଚୈତନ୍ୟ ମହାପ୍ରଭୁଂକର ନବଦ୍ୱୀପରୁ ଶ୍ରୀକ୍ଷେତ୍ର ଯିବା ବାଟକୁ ଆଜି ମଧ୍ୟ ଲୋକେ 'କୀର୍ତ୍ତନ-ପଥ' କହଂତି । ଏ ବିଷୟରେ କେତେକ ବକ୍ତା ଆଲୋଚନା କରିଥିଲେ ।

କଲିକତାର ବହୁ ବଂଗାଳୀ ସାହିତ୍ୟିକ ଓ ଓଡ଼ିଶାର ବହୁ ଲେଖକ-ଲେଖିକା ଏଥିରେ ଯୋଗଦେଇଥିଲେ । ଓଡ଼ିଶା ବାହାରୁ ମଧ୍ୟ ବିଚ୍ଛିନ୍ନାଂଚଳମାନଂକରୁ କେତେକ ସାହିତ୍ୟିକ ପ୍ରତିନିଧି ଏହି ସମ୍ମିଳନୀରେ ଯୋଗଦେଇଥିଲେ ।

**ଉତ୍ପାଦନ ବୃଦ୍ଧି : ମିଲ୍ ରବିବାରେ ଚାଲିଲା –**

ଏହି ସମୟରେ ଆମ ମିଲ୍‌ରେ ଏକ ନୂଆକଥା ଘଟିଲା । ଉତ୍ପାଦନ ବୃଦ୍ଧି ପାଇଁ ରବିବାର ଦିନ ମିଲ୍ ଚାଲିଲା । ସ୍ୱାଧୀନତାର ଅବ୍ୟବହିତ ପରେ ଭାରତର ଉପ-ପ୍ରଧାନମଂତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ କଳକାରଖାନାମାନଂକରେ ଉତ୍ପାଦନ ବଢ଼ାଇବାପାଇଁ ଆହ୍ୱାନ ଦେଇଥିଲେ । ସେ କହିଥିଲେ, ଦେଶର ଉତ୍ପାଦନ ବୃଦ୍ଧି ହେଲେ ଦାରିଦ୍ର୍ୟ ହଟାଇବା ସଂଭବହେବ । ଆମ ମିଲ୍‌ରେ ସେତେବେଳେ ଆର୍. ସି. ଶର୍ମା ମ୍ୟାନେଜର ଥାଂତି । ସେ ରବିବାର ଦିନ ମିଲ୍ ଚାଲିବ ବୋଲି କହିଲେ । ଏଥିରେ ଶ୍ରମିକମାନଂକର ସହଯୋଗ ମଧ୍ୟ ମିଳିଥିଲା । ଜଣେ ଶ୍ରମିକ ଦିନେ ବିଶ୍ରାମ ନନେଇ ସପ୍ତାହରେ ସାତଦିନ ଦୈନିକ ଆଠ ଘଂଟା କାମ କରିବା ଅସଂଭବ ଏବଂ ବେଆଇନ ମଧ୍ୟ । ଫ୍ୟାକ୍ଟରୀ ଆକ୍ଟରେ ମଧ୍ୟ ଏ ବିଷୟରେ କଡ଼ା ନିଷେଧ ଥିଲା । ତେଣୁ ସ୍ଥିର ହେଲା, ଯେଉଁ ବଦଳି ଶ୍ରମିକମାନେ ଅଛଂତି, ସେମାନଂକୁ ସପ୍ତାହକେ ୬ଦିନ କାମ ମିଳେନାହିଁ । ସେମାନଂକୁ ନେଇ ଏବଂ କିଛି ଅଧିକା ଶ୍ରମିକ ନିଯୁକ୍ତ କରି ରବିବାର ଦିନ ସେମାନଂକ

ଦ୍ୱାରା ମିଲ୍ ଚାଲୁକରାଯିବ। ଶ୍ରମିକ ଓ ମିଲ ଅଫିସ ଷ୍ଟାଫଂକୁ ପ୍ରାପ୍ୟ ବେତନ ଛଡ଼ା କିଛି ଅଧିକ ମଜୁରି ଓ ବେତନ ଦିଆଯିବ। ଭାରତର ଅନ୍ୟ କୌଣସି କାରଖାନାରେ ଏପରି ଉଦ୍ୟମ ହୋଇନଥିଲା। ତେଣୁ କେଶୋରାମ କଟନ୍ ମିଲ୍ ଏ ଦିଗରେ ଏକ ନୂଆ ପରଂପରା ସୃଷ୍ଟି କରିଥିଲା। ପ୍ରାୟ ଏକ ବର୍ଷକାଳ ମିଲ୍ ରବିବାର ଦିନ ଚାଲୁଥିଲା; ପରେ ଏ ବ୍ୟବସ୍ଥା ବନ୍ଦହୋଇଗଲା। ସୋଭିଏତ୍ ରୁଷରେ କଳକାରଖାନାରେ ଉତ୍ପାଦନ ବଢ଼ାଇବାପାଇଁ ୩୦ ଦଶକରେ 'ଷ୍ଟାଚ୍ୟନୋଭାଇଟ୍ ଆଂଦୋଳନ' ଆରଂଭ ହୋଇଥିବା କଥା କେତେକ ପୁସ୍ତକରେ ପଢ଼ିଥିଲି। ସେଥିପାଇଁ ସ୍ଥାନୀୟ ଓ ଜାତୀୟ ସ୍ତରରେ ବହୁ ପ୍ରୋତ୍ସାହନ ଦିଆଯାଉଥିଲା, ଜାତୀୟ ପୁରସ୍କାର ଖଂଜାଯାଇଥିଲା। ମାତ୍ର ସୋଭିଏତ୍ ୟୁନିୟନ ଏକ ସମାଜବାଦୀ ରାଷ୍ଟ୍ର; ସେଠାରେ ଉତ୍ପାଦନ ବୃଦ୍ଧିର ଫାଇଦା ରାଷ୍ଟ୍ରର କରଗତ ହେଉଥିଲା। ମାତ୍ର ଭାରତଭଳି ଏକ ଧନତାଂତ୍ରିକ ଦେଶରେ ଉତ୍ପାଦନ ବୃଦ୍ଧିର ଫାଇଦା ମାଲିକହିଁ ଉପଭୋଗକରେ; ତଥାପି ଏହା ଜାତୀୟ ଆର୍ଥିକ ସଂବଳ ବୃଦ୍ଧିକରିବାରେ ସହାୟକ ହେବ, ଏଥିରେ କିଛି ସଂଦେହ ନାହିଁ।

**ବଂଧୁମାନଂକ ଆଗମନ : ବୈଷ୍ଣବ ପଟ୍ଟନାୟକଂକ ବଂବେଯାତ୍ରା –**

ଢେଂକାନାଳ ପ୍ରଜା ଆଂଦୋଳନର ତୁଂଗ ନେତା ବୈଷ୍ଣବ ଚରଣ ପଟ୍ଟନାୟକ କଲିକତାରେ ଆତ୍ମଗୋପନ କରି ରହିଥିଲେ। ସେ ଢେଂକାନାଳ ଜେଲର ପାଚେରି ଡେଇଁ ପଳାଇ ଆସିବା ବେଳେ ତାଂକର ପିଠିର ଗୋଟିଏ ପଟେ ଗୁଳି ବାଜିଥିଲା। ତଥାପି ସେ କୌଣସି ବାଧାବିଘ୍ନ ନମାନି ପୁଲିସ ହାତରୁ ଖସିପଳାଇଥିଲେ। ସେ ଦିନେ ମୋ କଲିକତା କ୍ୱାଟରରେ ଆସି ପହଂଚିଲେ। ଆମେ ତାଂକର ନିରାପତ୍ତା ବିଷୟ ଆଲୋଚନାକଲୁ। ମୁଁ ତାଂକୁ କିଛି ଟଂକା ଦେଇ ବଂବେ ଚାଲିଯିବାକୁ କହିଲି। ସେ ବଂବେ ଯାଇ 'ନେସନାଲ ଫ୍ରଣ୍ଟ' ପତ୍ରିକାର ସଂପାଦକ ଏବଂ କମ୍ୟୁନିଷ୍ଟ ନେତା ପି. ସି. ଯୋଶିଂକୁ ଦେଖାକଲେ। କମ୍ରେଡ଼ ଯୋଶି ତାଂକୁ ବଂବେରେ କୌଣସି ଏକ ଗୋପନୀୟ ସ୍ଥାନରେ ରହିବାର ବ୍ୟବସ୍ଥା କରିଦେଲେ। ତାଂକ ଚିକିତ୍ସାର ମଧ୍ୟ ବ୍ୟବସ୍ଥା କରିଥିଲେ। ତାଂକର କ୍ଷତ ଭଲ ହୋଇଗଲା। ଏହାପରେ ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେବାପରେ ଏବଂ ୧୯୪୮ ମସିହାରେ ଗଡ଼ଜାତ ମିଶ୍ରଣ ପରେ ତାଂକ ଉପରୁ ୱାରେଂଟ୍ ଉଠିଗଲା। ସେ ଢେଂକାନାଳ ଫେରି ନିରାପଦରେ ରହିଲେ। ଏହି ବୈଷ୍ଣବ ପଟ୍ଟନାୟକଂକ ଜୀବନୀ ଗୋବିଂଦ ମହାଂତି 'ବୀର ବୈଷ୍ଣବ' ନାମକ ଏକ ପୁସ୍ତକରେ ଲେଖିଯାଇଛଂତି।

ଜେଲ୍‌ରୁ ଫେରି ଭଗବତୀଚରଣ ପାଣିଗ୍ରାହୀ, ଅନଂତ ପଟ୍ଟନାୟକ, ବୈଦ୍ୟନାଥ ରଥ ପ୍ରମୁଖ କମ୍ୟୁନିଷ୍ଟ ବଂଧମାନେ ମଝିରେ ମଝିରେ କଲିକତା ଆସିଲେ ମୋ ପାଖକୁ ବରାବର ଆସୁଥିଲେ। ପ୍ରାଣନାଥ ପଟ୍ଟନାୟକ ମଧ୍ୟ କେତେ ଥର ଆସି

ଖୋର୍ଦ୍ଧା କଲେଜ ପାଇଁ ମୋର ସହୟତା ଲୋଡ଼ିଥିଲେ। ମୁଁ ମଧ ତାଂକୁ ଏ ଦିଗରେ ସାହାଯ୍ୟକରିଥିଲି।

ଲେଖକ ବଂଧୁମାନଂକ ମଧ୍ୟରେ କାଳିଂଦୀଚରଣ ପାଣିଗ୍ରାହୀ, ସୁରେଂଦ୍ର ମହାଂତି, ଡ. କୁଂଜବିହାରୀ ଦାଶ ପ୍ରମୁଖ ମଝିରେ ମଝିରେ ମୋ ନିକଟକୁ ଆସୁଥିଲେ। ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମଂତ୍ରୀ ପଦରୁ ଇସ୍ତଫା ଦେବା ପରେ ଥରେ ବୀରେନ ମିତ୍ର ଚିକିତ୍ସା ପାଇଁ ତାଂକୁ ସଂଗରେ ଧରି ମୋ ନିକଟକୁ ଆସିଥିଲେ। ମୁଁ ତାଂକୁ ସାହାଯ୍ୟ କରିଥିଲି।

**ମିଲରେ ଶ୍ରମିକ ଅଶାଂତି –**

କେଶୋରାମ କଟନ ମିଲରେ ମଝିରେ ମଝିରେ ଶ୍ରମିକ ଅଶାଂତି କୁହୁଳୁଥିଲା। ଶ୍ରମିକମାନଂକର କେତେକ ଦାବି ମିଲ କର୍ତ୍ତୃପକ୍ଷ ଟାଳଟୁଳ କରି ପୂରଣକରୁନଥିଲେ। ଏ ଦିଗରେ ଲେବର କମିସନରଂକ ମଧ୍ୟସ୍ଥତା ବିଶେଷ କାମଦେଉନଥିଲା। ବୋନସ୍, ଓଭରଟାଇମ୍, ଛଟେଇ ପ୍ରଭୃତି ବହୁ ଅଭିଯୋଗ ଓ ଦାବି ଶ୍ରମିକମାନଂକର ଥିଲା। କମ୍ୟୁନିଷ୍ଟମାନଂକର ନେତୃତ୍ୱରେ ଚାଳିତ ୟୁନିୟନ୍ ପ୍ରବଳ ଆଂଦୋଳନ କରିଥିଲା। ଅନ୍ୟ ୟୁନିୟନଗୁଡ଼ିକ ମିଲ୍ ମାଲିକଂକ ପୃଷ୍ଠପୋଷକତାରେ ଚାଲିଥିଲା। ଏମାନେ ଶ୍ରମିକମାନଂକର ଆସ୍ଥାଭାଜନ ହୋଇପାରିନଥିଲେ। ଅଧିକାଂଶ ଶ୍ରମିକଂକର କମ୍ୟୁନିଷ୍ଟ ୟୁନିୟନ ଉପରେ ଆସ୍ଥା ଥିଲା। କମ୍ୟୁନିଷ୍ଟ ୟୁନିୟନର ନେତା ଥିଲେ ଫରୁକି; ପରେ ଅରୁଣ ସେନ ଆସି ଯୋଗଦେଲେ। ଅନେକ ସମୟରେ ଫରୁକି ଓ ଅରୁଣ ସେନ ମୋ କ୍ୱାଟରକୁ ଆସି ମୋ ସହିତ କେତେକ ବିଷୟରେ ଆଲୋଚନା କରୁଥିଲେ। ମିଲ୍ ମ୍ୟାନେଜର ଏହା ଜାଣିପାରି ମୋ ଉପରେ ଅସଂତୋଷ ପ୍ରକାଶ କରିଥିଲେ। ସେମାନଂକୁ ମିଲ୍ ଭିତରକୁ ନଆସିବାକୁ କହିବା ପାଇଁ ମୋତେ କହିଥିଲେ। ସେମାନେ ଓ କମ୍ୟୁନିଷ୍ଟ ଶ୍ରମିକମାନେ ଆଉ ମୋ କ୍ୱାଟରକୁ ଆସିନଥିଲେ। ଶ୍ରମିକମାନେ ସେମାନଂକର ଦାବି ମୋତେ ଅଫିସରେ ଭେଟି ଜଣାଉଥିଲେ। ମାତ୍ର ସେମାନଂକର ବଡ଼ ବଡ଼ ଦାବିଗୁଡ଼ିକ, ଯଥା ବୋନସ୍ ମୋ ଅକ୍ତିଆର ବା ଅଧିକାର ବାହାରେ ଥିଲା। ସେ ସବୁ କେବଳ ମିଲ୍‌ର ଉଚ୍ଚ କର୍ତ୍ତୃପକ୍ଷ ଏବଂ ମ୍ୟାନେଜିଂଗ ଏଜେଂଟ ବିରଲା ବ୍ରଦର୍ସ ଫଇସଲା କରିପାରିବେ। ଏକଥା ଶ୍ରମିକମାନେ ମଧ ବେଶ୍ ଜାଣିଥିଲେ।

ଆମ ମିଲ୍‌ରେ ମଝିରେ ଥରେ ମଧ ଧର୍ମଘଟ ହୋଇଥିଲା। ତାହା ପଂଦର-କୋଡ଼ିଏ ଦିନ ଚାଲିଥିଲା। ଧର୍ମଘଟର କିଛିଦିନ ପରେ ମିଲ୍ କର୍ତ୍ତୃପକ୍ଷ ଲକ୍‌ଆଉଟ ଘୋଷଣା କରି ମିଲ୍ ବଂଦକରିଦେଇଥିଲେ। କିଛିଦିନ ପରେ ଗୋଟାଏ ଫଇସଲା ହୋଇ ଧର୍ମଘଟ ଓ ଲକ୍‌ଆଉଟ୍ ପ୍ରତ୍ୟାହାର କରିନିଆଯାଇଥିଲା।

ମିଲର ସ୍ପିନିଂଗ ମାଷ୍ଟର ବିଶ୍ୱନାଥମ୍ ମିଲ୍‌ର ମ୍ୟାନେଜର ନିଯୁକ୍ତ ହୋଇଥିଲେ। ସେ ମୋର ଜଣେ ବଂଧୁ ଥିଲେ। ସେ କମ୍ୟୁନିଷ୍ଟ ୟୁନିୟନ ନେତାମାନଂକ

ସହିତ ଆପୋଷ-ଆଲୋଚନା କରି ସ୍ଥାୟୀ ସମାଧାନ କରିବାକୁ ଚାହୁଁଥିଲେ। ସେ ମୋତେ ଡାକି ଏହା ଜଣାଇଲେ ଏବଂ କଲିକତାର କୌଣସି ଏକ ସ୍ଥାନରେ ଆଲୋଚନାର ଆୟୋଜନ କରିବା ପାଇଁ କହିଲେ; କାରଣ ସେମାନଂକୁ ମିଲ୍‌ଭିତରେ ଅଫିସକୁ ଡାକି ସେ ପ୍ରକାଶ୍ୟ ଆଲୋଚନା କରିବାକୁ ଚାହୁଁନଥିଲେ। ମୁଁ ଫରୁକି ଓ ଅରୁଣ ସେନଂକୁ ଏହା ଜଣାଇଥିଲି। ଡେଲହାଉସୀ ସ୍କୋୟାରରେ ଥିବା ଏକ ହୋଟେଲରେ ମିଳାମିଶାର ଆୟୋଜନ କରିଥିଲି। ମୁଁ ଓ ବିଶ୍ୱନାଥମ୍ ମିଲ୍‌ପକ୍ଷରୁ ଏବଂ ଫରୁକି ଓ ଅରୁଣ ସେନ ୟୁନିୟନ ପକ୍ଷରୁ ଆଲୋଚନା କରିଥିଲୁ। ଏଥିରେ ବିଶେଷ କିଛି ସୁଫଳ ହେଲାନାହିଁ; ତଥାପି ଭବିଷ୍ୟତରେ ମିଳାମିଶା ଓ ଆପୋଷ-ଆଲୋଚନା ପାଇଁ ଏକ ବାଟ ଫିଟିଗଲା।

ବିଶ୍ୱନାଥମ୍ ଅମଳରେ ମୋର ପାହିଆରେ ଉନ୍ନତି ହୋଇଥିଲା। ତାଂକ ପୂର୍ବରୁ ଯେଉଁ ମାରୁଆଡି ଓ ହିଂଦୁସ୍ଥାନୀ ମ୍ୟାନେଜରମାନେ ଥିଲେ, ସେମାନେ ମୋ ସହିତ ଟିକିଏ ଦୂରଛଡ଼ା ବ୍ୟବହାର କରୁଥିଲେ। ମୋର ସହକାରୀ ବିଜୟବାଦ ବାହାଦୁର ଓ ସୁଧୀର ସେନ ସେମାନଂକର ଅଧିକ ବିଶ୍ୱାସଭାଜନ ଥିଲେ। ମୁଁ ଉପରେ ମୁଖ୍ୟ ଶ୍ରମମଂଗଳ ଅଫିସର ଥିଲେ ମଧ୍ୟ ସେମାନଂକ ସହିତ ଜମେଇପାରୁନଥିଲି। ଦୁଇବର୍ଷ ପରେ ବିଶ୍ୱନାଥମ୍ ମିଲ୍‌ରୁ ବିଦାୟ ନେଇ ଅନ୍ୟତ୍ର ଚାଲିଗଲେ।

କଲିକତାର ବଡ଼ ବଡ଼ ହିଂଦୀ ଓ ଇଂରାଜୀ ପତ୍ରିକାମାନଂକରେ ମୋର ଲେଖା ଓ ମୋ ସଂବଂଧରେ ଅନ୍ୟମାନଂକ ଲିଖିତ ବହୁ ପ୍ରବଂଧ ପ୍ରକାଶପାଉଥିଲା। ଦୈନିକ ହିଂଦୁସ୍ଥାନ ଷ୍ଟାଂଡାର୍ଡ, ଦୈନିକ ଆଡ଼ଭାନ୍‌ସ ଏବଂ ଦୈନିକ ହିଂଦୀ ପତ୍ରିକା 'ବିଶ୍ୱାମିତ୍ର', ଲୋକମାନ୍ୟ ପ୍ରଭୃତିରେ ମୋ ସଂବଂଧରେ ଏବଂ ମୋ ସାହିତ୍ୟ କୃତି ସଂବଂଧରେ ପ୍ରବଂଧମାନ ମୋର ଫଟୋ-ଚିତ୍ର ସହ ପ୍ରକାଶ ପାଉଥିଲା। ଏଥିରେ ଆମ ମିଲ୍ କର୍ତ୍ତୃପକ୍ଷ ମୋତେ ଟିକିଏ ଭୟ କରୁଥିଲେ ଏବଂ କେତେକାଂଶରେ ମୁଁ ଜଣେ ପ୍ରଚ୍ଛନ୍ନ କମ୍ୟୁନିଷ୍ଟ ବୋଲି ସଂଦେହ କରୁଥିଲେ; ତେଣୁ ମୁଁ ସ୍ଥିରତା ଅନୁଭବ କରିପାରୁନଥିଲି। ମିଲ୍ ପରିଚାଳନାର ମୁଖ୍ୟ ସ୍ରୋତରୁ ମୁଁ ଟିକିଏ ଦୂରରେ ରହିଲାପରି ବୋଧକରୁଥିଲି। ତେଣୁ କେଶୋରାମ କଟନ ମିଲ୍‌ରେ ମୁଁ ମାନସିକ ଶାଂତି ପାଇପାରିନଥିଲି। ଏଥିପୂର୍ବରୁ ୧୯୪୨ ମସିହାରେ କଲିକତାରୁ ପ୍ରକାଶିତ ମୋର 'The Boatman Boy and other Poems' ପୁସ୍ତକରେ କେତେକ କମ୍ୟୁନିଷ୍ଟ ଭାବାପନ୍ନ କବିତା ପଢ଼ି ମିଲ୍ କର୍ତ୍ତୃପକ୍ଷ ମୋତେ ଟିକିଏ ଟିକିଏ ସଂଦେହ କରୁଥିଲେ। ତାହା କ୍ରମେ ଦୃଢ଼ୀଭୂତ ହେଉଥିଲା।

**ଭି. ଭି. ଗିରି.—**

ଭାରତର ବିଖ୍ୟାତ ଶ୍ରମିକନେତା ଏବଂ ଟ୍ରେଡ୍ ୟୁନିୟନ କଂଗ୍ରେସର ଜଣେ ପୂର୍ବତନ ସଭାପତି ଭି. ଭି. ଗିରିଂକ ସହ ମୋର ଆଗରୁ ଅଳ୍ପ ପରିଚୟ

ଥିଲା । ନେହେରୁ ମଂତ୍ରିମଂଡଳରେ ସେ ଶ୍ରମମଂତ୍ରୀ ରୂପେ ଯୋଗ ଦେଲେ, ପରେ ସେ ଭାରତର ରାଷ୍ଟ୍ରପତି ହେଲେ । ତାଂକ ଘର ଓଡ଼ିଶାର ବ୍ରହ୍ମପୁରରେ । ସେ କଲିକତା ଆସିଥିବାବେଳେ ମୁଁ ୨-୩ ଥର ତାଂକ ସହିତ ସାକ୍ଷାତକରିଥିଲି । ସେ ସହର ଭିତରେ କେଉଁଠି ନରହି ହାଉଡ଼ା ରେଳଷ୍ଟେସନରେ ଲାଗିଥିବା ତାଂକ ସେଲୁନ୍‌ରେ ରହୁଥିଲେ । ସେଲୁନ୍‌ରେ ପ୍ୟାଂଟ୍ରି ଓ କିଚ଼ିନ୍ (ରଂଧାଶାଳ) ପ୍ରଭୃତି ମଧ୍ୟ ଲାଗିଥିଲା । ମୁଁ ସେହି ସେଲୁନ୍‌ରେ ତାଂକ ସହିତ ଦେଖାକରିଥିଲି । ସେ ଇଚ୍ଛାକରିଥିଲେ କଲିକତା ରାଜଭବନ କିଂବା ଷ୍ଟେଟ ଗେଷ୍ଟ ହାଉସରେ ରହିପାରିଥାଂତେ, କିଂତୁ ସେ ସେଲୁନ୍‌ରେ ତାଂକ ଷ୍ଟାଫ୍ ସହିତ କାହିଁକି ରହୁଥିଲେ, ବୁଝିହେଉନଥିଲା । ଥରେ ସେ ମୋତେ Colombo Plan ସଂବଂଧରେ ସୂଚନା ଦେଇଥିଲେ । ଭାରତ Colombo Plan ସଂସ୍ଥାର ଜଣେ ସଦସ୍ୟ ଥିଲା ।

ସେତେବେଳେ Colombo Plan ଆନୁକୂଲ୍ୟରେ ଅଷ୍ଟ୍ରେଲିଆ ଓ ନ୍ୟୁଜିଲାଂଡରେ ଏକ ଆଂତର୍ଜାତିକ ସମାଜକଲ୍ୟାଣ ସେମିନାର ଅନୁଷ୍ଠିତ ହେବାର ଥାଏ । ଏ ସେମିନାରରେ ଦକ୍ଷିଣ-ପୂର୍ବ ଏସୀୟ ଦେଶମାନଂକର ପ୍ରତିନିଧିମାନେ ଦୁଇମାସବ୍ୟାପୀ ଅଷ୍ଟ୍ରେଲିଆ ଓ ନ୍ୟୁଜିଲ୍ୟାଂଡ ଆଲୋଚ଼ନା-ଚକ୍ରରେ ଅଂଶ ଗ୍ରହଣ କରିବେ । ସେ ମୋତେ ଏ ସମ୍ମିଳନୀରେ ଭାରତର ଜଣେ ପ୍ରତିନିଧିରୂପେ ଯୋଗଦେବା ପାଇଁ ମୁଁ ଆଗ୍ରହୀ କି ନାହିଁ ବୋଲି ପଚ଼ାରିଲେ । ମୁଁ ମୋର ସମ୍ମତି ଜଣାଇଥିଲି । ଏହି ସେମିନାର ୧୯୫୨ ମସିହା ଜାନୁୟାରୀ ଦ୍ୱିତୀୟ ସପ୍ତାହରେ ମେଲବୋର୍ଣଠାରେ ଆରଂଭ ହେବାକୁ ଥାଏ । ମୋ ହାତରେ ପ୍ରାୟ ତିନି-ଚାରି ମାସ ସମୟ ଥିଲା, ତେଣୁ ମୁଁ ହଁଭରିଲି । ଭାରତ ସରକାର ତିନିଜଣ ପ୍ରତିନିଧି ପଠାଇବାର କଥା ଥିଲା । ପ୍ରତିନିଧିମାନଂକର ଯିବାଆସିବା ଉଡ଼ାଜାହାଜ ଖର୍ଚ୍ଚ Colombo Plan ପାଂଠିରୁ ଦିଆଯିବ । ଅଷ୍ଟ୍ରେଲିଆ ଓ ନ୍ୟୁଜିଲ୍ୟାଂଡରେ ରହିବା ଖର୍ଚ୍ଚ ସେଠାର Common Wealth ସରକାରମାନେ ବହନକରିବେ । ସେଠାରେ ସ୍ଥାନୀୟ ଆତିଥ୍ୟର ଦାୟିତ୍ୱ ନିମଂତ୍ରଣକାରୀ ଦେଶମାନଂକ ଉପରେ ନ୍ୟସ୍ତଥିଲା ।

**ଶ୍ରୀହର୍ଷର ଜନ୍ମ –**

୧୯୫୦ ମସିହା ଡିସେଂବର ୨୬ ତାରିଖରେ ମୋ ପୁଅ ଶ୍ରୀହର୍ଷର ଜନ୍ମ ହୁଏ । ମୁଁ ତିନିମାସପାଇଁ ବିଦେଶ ଗଲେ ମୋ ପରିବାରକୁ ଅର୍ଥାତ ମୋ ସ୍ତ୍ରୀ, ଦୁଇ ଝିଅ ମଂଜୁଶ୍ରୀ ଓ ଚ଼ିତ୍ରା ଏବଂ ବର୍ଷକର ପୁଅ ଶ୍ରୀହର୍ଷକୁ ଗୋଲ୍ଲାପଲ୍ଲୀରେ ଛାଡ଼ିଦେଇ ଯିବି ବୋଲି ଠିକ୍‌କଲି । ମୁଁ ପ୍ରାୟ ତିନିମାସ ପାଇଁ ବିଦେଶ ଯିବାକୁ ମିଲ୍ ମ୍ୟାନେଜମେଂଟ ରାଜିହେଲେ । ସେମାନେ ସବେତନ ଛୁଟି ମଧ୍ୟ ମଂଜୁରକଲେ; ତେଣୁ କିଛି ଅସୁବିଧା ରହିଲା ନାହିଁ ।

**ବଂଧୁ-ବାଂଧବ –**

କଲିକତାରେ ମୋର ସାହିତ୍ୟିକ ବଂଧୁମାନଂକ କଥା ପୂର୍ବରୁ କିଛି କହିଛି। ସେଠାରେ ଡକ୍ଟର କାଳୀଦାସ ନାଗ, ଡଃ ନିହାରରଞ୍ଜନ ରାୟ, ହୁମାୟୁନ କବିର, କବି ବିଷ୍ଣୁ ଦେ, କଥାଶିଳ୍ପୀ ତାରାଶଂକର ବଂଦୋପାଧ୍ୟାୟ, କବି ଓ ଗାଳ୍ପିକ ପ୍ରେମେନ୍ଦ୍ର ମିତ୍ର, କବି ଓ ଔପନ୍ୟାସିକ ବୁଦ୍ଧଦେବ ବସୁ, କବି ମନୀନ୍ଦ୍ର ରାୟ, କବି କାମାକ୍ଷା ପ୍ରସାଦ ଚଟ୍ଟୋପାଧ୍ୟାୟ ଏବଂ ତାଂକ ଆତ୍ମୀୟ ଦେବୀପ୍ରସାଦ ଚଟ୍ଟୋପାଧ୍ୟାୟ, କବି ସୁଭାଷ ମୁଖୋପାଧ୍ୟାୟ ଓ କବି ବାଣୀ ରାୟ, କବି ନରେଂଦ୍ର ଦେବ ଓ ତାଂକ ସ୍ତ୍ରୀ ରାଧାରାଣୀ ଦେବୀ ପ୍ରଭୃତିଂକ ସହ ମୋର ଘନିଷ୍ଠ ସଂପର୍କ ଥିଲା। ଆମେ ବହୁ ସଭାସମିତିରେ ଏବଂ ଘରୋଇ ବୈଠକରେ ମିଶୁଥିଲୁ।

ମୁଁ ଭାରତ ସରକାରଂକ ଫିଲ୍ମ ସେନସର୍ ବୋର୍ଡର ଜଣେ ସଦସ୍ୟ ଥିଲି। ସେହି ଅବସରରେ ବହୁ ବଂଗଳା, ଅସମୀୟା ଏବଂ ଓଡ଼ିଆ ଫିଲ୍ମ ମୋତେ ସେନ୍‌ସର କରିବାକୁ ପଡୁଥିଲା। ପ୍ରେମେନ୍ଦ୍ର ମିତ୍ର, ତାରାଶଂକର ବଂଦୋପାଧ୍ୟାୟ ଏବଂ ଲେଡି ରାନୁ ମୁଖାର୍ଜି ପ୍ରଭୃତି ମଧ୍ୟ ସେନସର ବୋର୍ଡର ମେଂବର ଥାଂତି; ତେଣୁ ଆମେ ସପ୍ତାହକେ ଦିନେ ଦି'ଦିନ ଏକାଠିହେଉ। ଲେଡି ରାନୁ ମୁଖାର୍ଜି ଓଡ଼ିଶାର କଳା-ସଂସ୍କୃତି ସଂବଂଧରେ ବିଶେଷ ଆଗ୍ରହୀ ଥିଲେ। ଓଡ଼ିଶାର ଶିଳ୍ପୀ ବିଭୂତି କାନୁନଗୋଂକଦ୍ୱାରା ସଂଗୃହୀତ ଓ ସଂକଳିତ ଓଡ଼ିଶୀ ପଟ୍ଟଚିତ୍ରାବଳୀ 'ରାମାୟଣ' ଗ୍ରଂଥରେ ସେ ମୁଖବଂଧ ଲେଖିଚଂତି। ଶିଳ୍ପୀ ଯାମିନୀ ରାୟଂକ ସହିତ ମଧ୍ୟ ମୋର ବିଶେଷ ପରିଚୟ ଥିଲା। ମୁଁ କେତେ ଥର ତାଂକ ଘରକୁ ଯାଇ ତାଂକ ଅଂକିତ ଚିତ୍ରସଂଭାର ଦେଖି ମୁଗ୍ଧହୋଇଛି। ଥରେ ଜଣେ ଆମେରିକାନ୍ ଅଭିନେତ୍ରୀ ମିସେସ୍ ହ୍ୟାରିସନଂକୁ ତାଂକ ଚିତ୍ରକଳା ଦେଖାଇବାକୁ ନେଇଯାଇଥିଲି। ତାଂକର ତିନୋଟି ଯୀଶୁ ଖ୍ରୀଷ୍ଟଂକ ଛବି ଦେଖି ମିସେସ୍ ହ୍ୟାରିସନ୍ ଅଭିଭୂତ ହୋଇପଡ଼ିଥିଲେ।

**କୁମାରୀ ବୀଣା ଦାସ –**

ବିପ୍ଳବିନୀ କୁମାରୀ ବୀଣା ଦାସ ମୋର କ୍ୱାଟରକୁ କେତେଥର ଆସିଛଂତି। ସେ କଲିକତା ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବରେ ବଂଗ ଗଭର୍ଣରଂକ ଉପରେ ଗୁଳିକରିଥିଲେ। ଯାବଜ୍ଜୀବନ କାରାଦଂଡ ଭୋଗକରି ସେ ଫେରିଥିଲେ। ସେ ଆମ ମିଲ୍‌ର ଶ୍ରମିକମାନଂକର ଅବସ୍ଥା ସେମାନଂକ ରୁମ୍ ଭିତରକୁ ଯାଇ ବୁଲି ଦେଖୁଥିଲେ ଏବଂ ସେମାନଂକର ସମସ୍ୟା ବୁଝୁଥିଲେ। ସେ ଥିଲେ ବିପ୍ଳବର ଅଗ୍ନିଶିଖା। ସେ ସେତେବେଳର ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଅଭୂତପୂର୍ବ ପ୍ରଭାବ ପକାଇଥିଲେ।

**ବାରୀନ୍ଦା –**

ଶ୍ରୀ ଅରବିନ୍ଦଂକ ସାନଭାଇ ବାରୀଂଦ୍ର କୁମାର ଘୋଷ ଅଲିପୁର ବୋମା କେଶରେ ଧରାପଡ଼ି ଯାବଜ୍ଜୀବନ ଦ୍ୱୀପାଂତର ଦଂଡ ପାଇଥିଲେ । ଦଂଡ ଭୋଗପରେ ସେ ପଣ୍ଡିଚେରିରେ ଶ୍ରୀ ଅରବିଂଦ ଆଶ୍ରମରେ କେତେକ ବର୍ଷ ରହିଥିଲେ । ତା'ପରେ ସେ କଲିକତା ଚାଲିଆସିଲେ । ସେଠାରେ ଯୋରାଶଂକରେ ଥିବା ରବୀଂଦ୍ରନାଥଂକ ପୈତୃକ ବାସଭବନରେ ଦୁଇଟି ରୁମ୍ ନେଇ ସସ୍ତ୍ରୀକ ରହିଲେ । ତାଂକ ସ୍ତ୍ରୀ ଜଣେ ନର୍ସ ଥିଲେ ଏବଂ ଖୁବ୍ ମିଷ୍ଟଭାଷିଣୀ ଓ ସ୍ନେହଶୀଳା ଥିଲେ । ବାରୀଂଦା ଓ ତାଂକ ସ୍ତ୍ରୀ ମୋତେ ଖୁବ୍ ସ୍ନେହକରୁଥିଲେ । ମୁଁ ନିୟମିତ ତାଂକ ବାସଭବନକୁ ଯାଉଥିଲି । ସେ ମୋତେ ବହୁ ବୁଦ୍ଧିଜୀବୀ ଓ ତରୁଣ-ତରୁଣୀଂକ ସହ ପରିଚିତ କରାଇଦେଉଥିଲେ । ବାରୀଂଦାଂକ ଅମାୟିକ ପ୍ରକୃତି ଓ ସରଳ ବ୍ୟବହାର ତାଂକୁ ସମସ୍ତଂକର ପ୍ରିୟ କରିଥିଲା ।

**ଚିତ୍ରଶିଳ୍ପୀ ଶୁଭୋ ଠାକୁର –**

ରବୀଂଦ୍ରନାଥଂକର ପୁତୁରା ଶୁଭୋ ଠାକୁରଂକ ସହିତ ମୋର ଘନିଷ୍ଠ ସଂପର୍କ ଥିଲା । ସେ ତାଂକ ପରିବାର ସହ ଚୌରଂଘି ରୋଡ଼ରେ ଏକ ଭଡ଼ା ଫ୍ଲାଟ୍‌ରେ ରହୁଥିଲେ । ତାଂକର ଅଂକିତ ଚିତ୍ରାବଳୀ ଏକ ପୁସ୍ତକାକାରରେ ପ୍ରକାଶପାଇଥିଲା । ଏହାର ଶୀର୍ଷକ ଥିଲା 'The Art of Subho Tagore' । ଏହାର ଉନ୍ମୋଚନ ଉତ୍ସବ କଲିକତା ରାଜଭବନରେ ପଶ୍ଚିମବଂଗ ଗଭର୍ଣରଂକ ଦ୍ୱାରା ହୋଇଥିଲା । ମୁଁ ସେଥିରେ ଯୋଗଦେଇଥିଲି । ଏହାଛଡ଼ା ସେ 'ସୁଂଦରମ୍' ନାମକ ଏକ ସଚିତ୍ର 'ସଂଭ୍ରାଂତ' ସାହିତ୍ୟ ପତ୍ରିକା ପ୍ରକାଶକରୁଥିଲେ । ତାଂକର କେତୋଟି କବିତା ସଂକଳନ ମଧ୍ୟ ପ୍ରକାଶପାଇଥିଲା । ସେ ମୋ ସହିତ ମଝିରେ ମଝିରେ ସାକ୍ଷାତ କରୁଥିଲେ । ପ୍ରଧାନମଂତ୍ରୀ ଜବାହରଲାଲଂକ ପୃଷ୍ଠପୋଷକତାରେ ସେ ଭାରତ ବାହାରେ ନିଜର ଚିତ୍ର ପ୍ରଦର୍ଶନୀମାନ କରିଥିଲେ । ୟୁରୋପର କେତେକ ଦେଶର ରାଜଧାନୀରେ ଏବଂ ଥାଇଲ୍ୟାଂଡରେ ସେ ଚିତ୍ର-ପ୍ରଦର୍ଶନୀମାନ କରିଥିଲେ । ଏହିପରି କଲିକତାରେ ବହୁ କବି, ଶିଳ୍ପୀ, ଲେଖକଲେଖିକାମାନଂକ ସହିତ ମୋର ଘନିଷ୍ଠ ସଂପର୍କ ରହିଥିଲା ।

**କାବ୍ୟ-ନାୟିକା –**

କଲିକତା ରହଣି ଭିତରେ କେତେକ ନାରୀ-ବଂଧୁଂକ ସହିତ ମୋର ଘନିଷ୍ଠତା ଥିଲା । ଏମାନଂକ ମଧ୍ୟରୁ କେତେଜଣ ମୋର କାବ୍ୟ-ନାୟିକା ଥିଲେ । ଏମାନେ ମୋର ସାହିତ୍ୟସୃଷ୍ଟିରେ ବହୁତ ପ୍ରେରଣା ଦେଇଛଂତି । ମୋ ସାହିତ୍ୟକର୍ମ ଏମାନଂକ ନିକଟରେ ସବୁଦିନ ଋଣୀ ହୋଇ ରହିବ ।

ଇଭା ମେନନ୍ ଥିଲା ଏକ ତାମିଲ ପରିବାରର ଝିଅ । ସେ ଏବଂ ତାର ମାଆ ଓ ସାନଭାଇ ହାଉଡ଼ାରେ ରହୁଥିଲେ । ସେ ବି.ଏ. ପାସ୍‌କରି A.R.P.

(Air Raid Prevention) ବିଭାଗରେ କାମକରୁଥିଲା । ସେ ଏକ ସୁନ୍ଦର ମେଳାପୀ ଝିଅ । ସେ ମୋର କେତେକ ବଂଗଳା କବିତା ତାମିଲ ଭାଷାରେ ଅନୁବାଦ କରିଥିଲା । ତାହା ମାଡ୍ରାସର କେତେକ ପତ୍ରିକାରେ ବାହାରିଥିଲା । ମୁଁ ତାଂକ ଘରକୁ କେବେ କେବେ ଗଲେ ସେ, ତାର ମାଆ ଓ ଭାଇ ସମସ୍ତେ ଖୁସି ହେଉଥିଲେ । କେତେଥର ଆମେ ବାହାରେ ମଧ୍ୟ କିଛି ସମୟ କଟାଇଛୁ । ବଟାନିକାଲ୍ ଗାର୍ଡେନ୍ ଖୁବ୍ ଭଲଲାଗେ । ତା ସହିତ ମୋର ମାନବିକ ସଂପର୍କ ବେଶ୍ ଘନିଷ୍ଠ ହୋଇଉଠିଥିଲା । ମୋର 'ପାଂଡୁଲିପି' ବହିରେ 'ସ୍ମରଣ' କବିତାର ଶୀର୍ଷକ ତଳେ ତାର ନାମ ଲିଖିତ ଅଛି ।

"ସ୍ମରଣ"

(ଇଭା ମେନନଂକୁ)

"ଗତ ଶତାବ୍ଦୀର ଏକ ଭାବପ୍ରଣେ କ୍ଷଣେ
ତମ ସଂଗେ ମୋର ପ୍ରଥମ ଦେଖାର ସ୍ମରଣେ
ତମର କଣ ମନେପଡ଼େ ?
ଇଆ ଭିତରେ ମୁଁ ଆଗେଇଆସିଛି ଦେଖ ତ କେତେଦୂର
ଏକ ଶତାବ୍ଦୀର ଅନେକ ଅନେକ ଧୂସର ପଥ
ମୋର ଜଗତ
ନରମ ସ୍ୱପ୍ନର ସୁନେଲି ତଂବୁର ବାହାରେ
ଗଢ଼ିଉଠିଛି,
କ୍ରମଶଃ ମୁଁ ବଡ଼ହୋଇଉଠିଛି ମୋତେ ଅତିକ୍ରମ କରି ।
ତମେ କିଂତୁ ପଡ଼ିରହିଅଛ ସେହିଠାରେ ।
ସ୍ଥାଣୁ ।।
କେହି ପଛେ ନଜାଣୁ ମୁଁ ଜାଣେ
ତମର ସ୍ଥାବର ମନେ ନାହିଁ ଜମା ଆକସ୍ମିକତା,
ପଶୁପରି ହଠାତ୍ ତଳକୁ ଖସିଯିବା କ୍ଷମତା,
କିଂବା ଦେବତାପରି ଉର୍ଧକୁ ଲଂଫ ଦେବାର ନିଶା ।
ସେଇ ସଂଭ୍ରାଂତ ପ୍ରେମର ଅଚଳାୟତନ ଭିତରେ
ଆଜି ଶୁଣାଯାଏ ତୁମର କାଂଦଣା ।।
ତୁମର ଅଶ୍ରୁ କେବଳ ଡାକେ— କେବଳ ଡାକେ
ତେଣୁ ଭଲଇ କରିଛ ଏ.ଆର୍.ପି.ରେ ମିଶି ।
ରକ୍ତରେ ତୁମର କଂଚା ଦ୍ରାବିଡ଼ର ରକ୍ଷଣଶୀଳ ଶ୍ରୀ
ମୁହଁରେ ତୁମର ଶ୍ୟାମଳ ରଂଗର ଅରୁଣିମା
ମୁଁ କରିଛି ତାର ପ୍ରାପ୍ତି ସ୍ୱୀକାର

ଉତ୍କଳରେ ଉଦାସ ଆଉ ନିଷ୍ପୃହ ବ୍ୟକ୍ତିତ୍ୱର ସ୍ୱାକ୍ଷରେ
ରବର ପରି ମୋର ସଂପ୍ରସାରଣଶୀଳ ମନେ ।
ତୁମର ଏ.ଆର୍.ପି. ସଫଳ ହେଉ ।।''

ଏ କବିତାଟି ୧୯୪୩ ସାଲରେ ପ୍ରଥମେ ବଂଗଳାରେ ରଚିତ ହୋଇ ଏକ ବଂଗଳା ପତ୍ରିକାରେ ବାହାରିଲା ।

ରମଲା ମଜୁମ୍‌ଦାର ସଂଗେ ମୋର ବଂଧୁତା ଏକ ଉଚ୍ଚ ଆୟତନ ସ୍ପର୍ଶ କରିଥିଲା । ସେ ଏମ୍.ଏ. ପାଶ୍‌କରି ଚାକିରି ସଂଧାନରେ ଥିଲା । ତା ବାପା ଥିଲେ ଜଣେ ବଡ଼ ସରକାରୀ କର୍ମଚାରୀ । ସେ ମୋତେ ଥରେ ଛୁଟିରେ ତା ଘରକୁ ଜଲପାଇଗୁଡ଼ିକୁ ନିମଂତ୍ରଣ କରିଥିଲା । ତା ବାରଂଡାରେ ଛିଡ଼ାହୋଇ ମୁଁ ପ୍ରଥମେ ହିମାଳୟ ଦେଖିଥିଲି । କବିତାଟିର ନାମ –

''ସୁଚରିତାସ୍ତୁ . . .''

''ତମ ଚିଠି ପାଇଛି
ଆକାଶରେ ସାନ ସାନ ବଉଦର ବୀଚି ।
ଜେଟିରେ ନୂତନ ଜାହାଜର ବଂଶୀ,
ଦେଖାଯାଏ ତା ମାସ୍ତୁଲ ।
ଅଜଣା ଘାଟରେ ଲାଗିଛି
ପୁଣି ଚାଲିଯିବ ଅଜଣା ଘାଟକୁ
ତୁମେ ଲେଖିଛ 'ଭୁଲ୍' . . .
କାହାର 'ଭୁଲ୍' ?
ହଁ, ମୋର ବେଶ୍ ମନେଅଛି –
ତମର ବାଂରଡାରେ ଛିଡ଼ାହୋଇ
ପ୍ରଥମେ ଯେ ଦିନ ମୁଁ ହିମାଳୟ ଦେଖିଥିଲି
ତମେଇ ଆଂଗୁଠିରେ ଦେଖେଇଦେଇଥିଲ ।।
ଚାରିଆଡ଼େ ଗେରୁଆ ରଂଗର କୁହୁଡ଼ି
ଘୁମଂତ ଜଲପାଇଗୁଡ଼ି ।
ନୀଳ ନୀଳ
ପାହାଡ଼ ଉପରେ ବରଫର ଢାଂକୁଣି,
ପ୍ରାଗୈତିହାସିକ ଯୁଗର ନିହାରିକାପରି,
ପୁଣି ବରଫର ଝଡ଼
ମୁଁ ହାତଯୋଡ଼ି କରିଥିଲି ପ୍ରଣାମ –
ନମ, ନମ,
ନମ ଗିରିରାଜ ।।''

('ପାଂଡୁଲିପି')

'ଆକାଶ' କବିତାରେ ସିପ୍ରାକୁ ଲେଖିଥିଲି—

''ତୁମ ମୁହଁକୁ ଫିଂଗିଥିଲି ମୁଁ ମୁଠାଏ ଆକାଶ,
ଭାବିଥିଲି ସ୍ୱପ୍ନ ଦେଖିବ ଅନ୍ୟମନସ୍କ ହେବ।
ଅଂଧାରରେ ବସି ଅବା ନଖରେ କାଟିବ ଗାର
ଯେଉଁପରି କ୍ଷୀଣ ପ୍ରତିପଦ . . .।
ତୁମ ଦିହର ଲଳିତ ଗିରିରେ ଫୁଟିଉଠିବ ସୀତା — ତାର ମୂର୍ତ୍ତି. . .।
କିଂତୁ ହାୟ ହାୟ ଏ କଣ ହେଲା
ତୁମ ହୃଦୟର ସାଦା କାଗଜରେ ତ ପଡ଼ିଲାନି ଗାର।
ତୁମର ଜଡ଼ତା କିଂତୁ ରହିଲା ପୂର୍ବାପର
ମଉଳିଗଲା ଆକାଶ,
ଆହା ନିଭିଲା ଚୈତ୍ର ମାସ।
ମଂଦୀଭୂତ ଜୀବନର କ୍ଷିୟଷ୍ଣୁ ଦ୍ୱାପର . . .।।'' (''କବିତା ୧୯୬୨')

ଏହାଛଡ଼ା ପାଂଡୁଲିପି 'ଝଡ଼' ଏବଂ 'ହେ ମୋର ନିରପରାଧ ଦେଶ' ରେଭେନ୍‌ସାରେ ସହପାଠିନୀ ରେବା ମଲ୍ଲୀକର ଦୀର୍ଘଶ୍ୱାସ ବହନକରେ। ସେତେବେଳେ ଆମକୁ କେନ୍ଦ୍ରକରି ଯେଉଁ ଝଡ଼ ଉଠିଥିଲା, ତାହା ଏ କବିତାରେ କିଂଚିତ୍ ପ୍ରତିଧ୍ୱନିତ ହୋଇଛି।

ଏମାନେ ଏବଂ ଆହୁରି କେତେ ଅନାଗତା, ମୋର ବଂଧୁ। ଆଜି ନଦୀର ଅପର ପାର୍ଶ୍ୱରୁ ବଡ଼ପାଟିରେ ଡାକିବାକୁ ଇଚ୍ଛାହୁଏ ''ବଂଧୁ, ବଂଧୁ, ବଂଧୁ''। ଦେହ ଓ ମନ, ବାକ୍ୟର ମିଳନ ଓ ସମନ୍ୱୟହିଁ ବଂଧୁତା। ଏକ ପର୍ଯାୟରେ ଏହା ପ୍ରେମ; ଅନ୍ୟ ପର୍ଯାୟରେ ଏହା ମୃତ୍ୟୁ। ଗୋଟିଏ ସତ୍ତା ଅନ୍ୟ ସତ୍ତାରେ ମିଶି ହଜିଯିବାହିଁ ପ୍ରେମ। ଦେହ ଯଦି ନିରୁତ୍ତର ରହେ, ପ୍ରେମ ସାର୍ଥକହୁଏନା। ସଂପୂର୍ଣ ହୁଏନା, ଏହି ସତ୍ତାର କ୍ରମଲୟକୁ ମୃତ୍ୟୁ ବି କୁହାଯାଇପାରେ। ପ୍ରେମ ଓ ମୃତ୍ୟୁ ସାର୍ଥକ ହୁଅଂତି ଆତ୍ମବିଲୟରେ।

ଭଲପାଇବା ଯେଉଁଠି କେବଳ ଦେହରେ ସୀମିତ, ସେଠି ତାହା ଦାସତ୍ୱ— ସେକ୍ସ ଦାସତ୍ୱ। ଏହା ଜୀବନପଥରେ ଦୁଇ ସହଯାତ୍ରୀଂକର ବଂଧନହୀନ ଗ୍ରଂଥି ନୁହେଁ; ବରଂ ଶୃଙ୍ଖଳ। ଏହା ଆଗକୁ ଚାଲିବାକୁ ଦିଏନାହିଁ; ବରଂ ବାଟର ସେହି ସ୍ଥାନରେ ବାଂଧିରଖେ।

# ପରିଶିଷ୍ଟ – ଗ୍ରନ୍ଥସୂଚୀ

ଓଡ଼ିଆ ପୁସ୍ତକ –

**କବିତା :** ପାଥେୟ (୧୯୩୨), ପୂର୍ଣ୍ଣିମା (କାବ୍ୟନାଟିକା) (୧୯୩୩) ଅଭିଯାନ (୧୯୩୮), ବାଜିରାଉତ (୧୯୩୮,୪୨), ରକ୍ତଶିଖା, (୧୯୩୯ – ବ୍ରିଟିଶ୍ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ), ପଲ୍ଲିଶ୍ରୀ (୧୯୪୦), ଉଠ, କାଳ ଭୋକୀ ବଂଦୀ, (୧୯୪୩ – ବାଜ୍ୟାପ୍ତ) ପାଂଡୁଲିପି (୧୯୪୭), ଅଭିଜ୍ଞାନ (୧୯୪୮), ହସଂତ (୧୯୪୮), ଭାନୁମତୀର ଦେଶ (୧୯୪୯), ସ୍ୱଗତ (୧୯୫୮), କବିତା – ୧୯୬୨ (କେଂଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ), କବିତା – ୧୯୬୯, ଏସିଆର ସ୍ୱପ୍ନ (୧୯୬୯), କବିତା – ୧୯୭୧, କବିତା – ୧୯୭୪, ମାୟାକୋ-ଭସ୍କି କବିତା ସଂଗ୍ରହ (୧୯୬୫, ସୋଭିଏତ୍ ଲ୍ୟାଂଡ ନେହୁରୁ ପୁରସ୍କାରପ୍ରାପ୍ତ), କବିତା – ୧୯୮୩, କବିତା – ୧୯୮୫, କବିତା – ୧୯୮୭, କବିତା – ୧୯୯୦, କବିତା – ୧୯୯୮ (ଯଂତ୍ରସ୍ଥ) ।

**ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ :** ଚିତ୍ରଗ୍ରୀବ (୧୯୩୬, ଉପନ୍ୟାସ), ମଶାଣିର ଫୁଲ, (ଗଳ୍ପସଂଗ୍ରହ, ୧୯୪୭), ମାଟିର ତାଜ୍ (ଗଳ୍ପସଂଗ୍ରହ, ୧୯୪୭), ଛାଇ (ଗଳ୍ପ-ସଂଗ୍ରହ, ୧୯୪୮) ମାଂକଡ଼ ଓ ଅନ୍ୟାନ୍ୟ ଗଳ୍ପ (୧୯୮୩), ନୂତନ ଗଳ୍ପ, ୧୯୯୦ ।

**ସମାଲୋଚନା :** ସାହିତ୍ୟ ବିଚାର ଓ ମୂଲ୍ୟବୋଧ (୧୯୭୨) ।
ଆଧୁନିକ ସାହିତ୍ୟର କେତେକ ଦିଗ, (୧୯୮୩) ।

**ଗବେଷଣା :** ସାହିତ୍ୟରେ ମୂଲ୍ୟବୋଧ, (୧୯୭୪) ।

**ଗ୍ରଂଥାବଳୀ :** ସଚ୍ଚି ରାଉତରାୟ ଗ୍ରଂଥାବଳୀ, (୧ମଭାଗ,ପଦ୍ୟ-୧୯୬୫)
ସଚ୍ଚି ରାଉତରାୟ ଗ୍ରଂଥାବଳୀ, (୨ୟଭାଗ, ଗଦ୍ୟ-୧୯୭୫)

**ମୂଲ୍ୟାୟନ :** Sachi Raut-Roy - A Poet of the People : (Modern Review Press, Calcutta-9, 1955)

**ଲେଖକବୃଂଦ :** ଡ. କାଳିଦାସ ନାଗ, ଡ. ସୁନୀତି କୁମାର ଚାଟାର୍ଜି, ହୁମାୟୁନ କବିର୍, ଡ. କେ. ଆର୍. ଶ୍ରୀନିବାସ ଆୟାଂଗାର, ପ୍ରଫେସର୍ ଗୋପାଳ ହାଲ୍‌ଦାର, ଡ. ସାଜାଦ୍ ଜହୀର୍, ଡ. ପ୍ରାଣକୃଷ୍ଣ ପରିଜା, ଡ. ହରୀଂଦ୍ରନାଥ ଚଟ୍ଟୋପାଧ୍ୟାୟ ପ୍ରମୁଖ ।

Sachi Raut-Roy – The Poet : କାହ୍ନୁଚରଣ ମିଶ୍ର (କଟକ, 1988) ।

ପଦ୍ମଶ୍ରୀ ସଚ୍ଚି ରାଉତରାୟ, ଲେଖକ – ରଣଜିତ୍ ସିଂ ।

**ଅଭିନଂଦନ ଗ୍ରଂଥ :** ଲେଖକବୃଂଦ – ଡ. ଖଗେଶ୍ୱର ମହାପାତ୍ର, ଡ. ମଥୁରାନାଥ ହୋତା ପ୍ରମୁଖ, ପ୍ରକାଶକ : ମଂଜୁଲତା ବିଶ୍ୱାଳ, ସଚ୍ଚି ରାଉତରାୟ ସଂବର୍ଧନା ସମିତି, ରାଉରକେଲା, 1986 ।

ଇଂରାଜୀରେ ଅନୂଦିତ –

**The Boatman Boy and other Poems :** (ହରୀଂଦ୍ରନାଥ ଚଟ୍ଟୋପାଧ୍ୟାୟଙ୍କ ଦ୍ୱାରା ଅନୂଦିତ), କଲିକତା, ୧୯୪୨ ।

**The Boatman Boy and Forty Poems :** (ହରୀଂଦ୍ରନାଥ ଚଟ୍ଟୋପାଧ୍ୟାୟ,

ବି. ସିହ୍ନା ଏବଂ ଲେଖକଂକ ଦ୍ୱାରା ଅନୂଦିତ), Modern Review Press କଲିକତା, ୧୯୫୫ ।

**Pratima Nayak & others Poems** : ମହାନଦୀ ବୁକସ୍, କଟକ, ୧୯୮୩

**Where flows the Bhanumati (Poem)** : (ଡ. ଶଶିକଳା ଚୌଧୁରୀଂକ ଦ୍ୱାରା ଅନୂଦିତ), କଟକ, ୧୯୮୮ ।

**Veriticals of Life** : (କେ. ସା. ଏକା., ନୂଆଦିଲ୍ଲୀ ଦ୍ୱାରା ପ୍ରକାଶିତ, ୧୯୯୬ ।

**କ୍ଷୁଦ୍ରଗଳ୍ପ ସଂଗ୍ରହ : Short Stories of Sachi Raut-Roy**

(ଇଂରାଜୀ ଅନୁବାଦ ପ୍ରଫେସର କେ.ବି. ପଟ୍ଟନାୟକ)

(ପ୍ରକାଶକ : ଜେ. ମହାପାତ୍ର ଆଣ୍ଡ ସନ୍ସ, କଟକ-୨, ୧୯୭୨)

Speeches & Addresses – Published in Booklets

Memorial Lectures at Visva Bharati, Santiniketan, 1980

Presidential Addresses at All India Poets' Conferences held in Calcutta, 1968 and Rourkela, 1988.

Inaugural Speech at Harvard University, International Seminar of Arts & Science, U.S.A. 1955.

Addresses at Pushkin Seminar, Soviet Russia, 1979 and Exhibitions of Orissan Palm-leaf and Pata painting in London University. 1982, UNESCO, Paris 1980, Moscow University, 1979, Warsaw University, Polland, 1979, Art's College, Bangkok, 1952-Bangla University, Mymensingh, 1972, at Bangla Academy, Dacca. 1975 - Acceptance Speech at Jnanpith Award Function, New-Delhi, 1988, (Published in Booklets in English and Hindi)

**ହିନ୍ଦୀ ଅନୁବାଦ –**

**"Basant ke Ekant Zilleme"**

( କବିତା ସଂଗ୍ରହ, Publisher : Bharatiya Jnanpith, New Delhi, 1988)

"Andharoa" (ଗଳ୍ପ ସଂଗ୍ରହ)

Publisher : Bharatiya Jnanpith, New-Delhi, 1988.

**Mashanka Ful 'o' Anyanya Kahaniya,**

Publisher : National Book Trust India, New-Delhi, 1995.

**ତେଲୁଗୁ ଅନୁବାଦ –**

Sachi Raut-Roy, **'Kathalu'** ବେଜୁୱାଡ଼ା, 1977 – ଅନୁବାଦ ଅଧ୍ୟାପିକା ସି. ତୁଳସୀ ।

**ପଂଜାବୀ ଅନୁବାଦ –**

ସଚି ରାଉତରାୟ କାହାନୀ ସଂଗ୍ରହ **'ଅଂଧାରୁଆ'**, ପାତିଆଲା : ପଞ୍ଜାବ ସରକାର ।

ଏହାଛଡ଼ା ଡଃ ସଚି ରାଉତରାୟଙ୍କର ବହୁ କବିତା ଓ ଗଳ୍ପ ଫରାସୀ, ଜର୍ମାନ୍, ବୁଲ୍‌ଗେରିଆନ୍ ଏବଂ ବଂଗଳା, ଆସାମୀ, ମହାରାଷ୍ଟ୍ରିଆନ୍, ଗୁଜୁରାଟୀ, କନାଡ଼ି ଏବଂ ତାମିଲ୍ ଭାଷାରେ ଅନୂଦିତ ହୋଇ ବିଭିନ୍ନ ପତ୍ର ପତ୍ରିକା ମାନଙ୍କରେ ପ୍ରକାଶ ପାଇଛି ।